ଶୁଦ୍ରମୁନି ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ରମୁନି ୰ ଶାରଳା ଦାସଙ୍କ ବିରଚିତ

# ମହାଭାରତ

## ଆଦ୍ୟପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :




ଧର୍ମଗ୍ରନ୍ଥ ଷ୍ଟୋର

ପ୍ରତିଷ୍ଠାତା- ଶ୍ରୀ ବିଦ୍ୟାଧର ସାହୁ

ପରିଚାଳକ- ଶ୍ରୀ ମହିମା ପ୍ରସାଦ ସାହୁ

ଅଲିଶା ବଜାର, କଟକ-୨

ଫୋନ୍ : ୦୬୭୧- ୨୫୦୮୨୯୬

ବହିର ମୂଲ୍ୟ : ଟ. ୧୩୦/- (ଏକଶହ ତିରିଶି ଟଙ୍କା ମାତ୍ର)

ସାଧା ମୂଲ୍ୟ : ଟ. ୯୫୦/- (ନଅଶହ ପଚାଶ ଟଙ୍କା ମାତ୍ର)

ବନ୍ଧାଇ ସହିତ ସମ୍ପୂର୍ଣ୍ଣ ସେଟ୍‌ର ମୂଲ୍ୟ :

ଟ. ୧୩୦୦/- (ତେରଶହ ଟଙ୍କା ମାତ୍ର)

# ମହାଭାରତ ଆଦ୍ୟପର୍ବର

# ସୂଚୀପତ୍ର

ଆଦ୍ୟପର୍ବ ସୂଚୀପତ୍ର ସମାପ୍ତ



# ବିଜ୍ଞାପନ

ବୃହତ୍ ଭଜନମାଳା
ବିଷ୍ଣୁଗର୍ଭ ପୁରାଣ
ଅଲେଖ ଲୀଳା
ଗୋବିନ୍ଦବାବାଙ୍କ ଭଜନ
ଦୟାନନ୍ଦ ଭଜନ
ଜୟକୃଷ୍ଣ ଭଜନ
ଅନନ୍ତରାମ ଭଜନ
ଦେବଦର୍ଶନ ପୁରାଣ
ଶୂନ୍ୟବାଣୀ ଭଜନ
ଲକ୍ଷ୍ମଣବାବାଙ୍କ ଭଜନ
ଭଜନ ମଧୁସାଗର ଓ ଭକ୍ତିବେଦ
ରାମାନନ୍ଦ ଭଜନ
ସ୍ତୁତି ଚିନ୍ତାମଣି
ଚଉତିଶା ଗ୍ରନ୍ଥମାଳା
ଚଉଷଠି ପଟଳ
ଭୀମଭୋଇ ପଦ୍ମକଳ୍ପ
ପୂର୍ଣ୍ଣ ସଂହିତା
ବଡ଼ କୃପାସିନ୍ଧୁ ବାବାଙ୍କ ଜୀବନୀ
ସାଧୁସଙ୍ଗ ତତ୍ତ୍ୱ ନିରୂପଣ
ନିରାକାର ଭଜନ
ନିର୍ଗୁଣ ମାହାତ୍ମ୍ୟ
ନିର୍ବେଦ ସାଧନା
ଏକାମ୍ର ପୁରାଣ
ନାରଦ ପଞ୍ଚରାତ୍ର
ଆନନ୍ଦ ରାମାୟଣ
ବିଶ୍ୱମିତ୍ର ପୁରାଣ
ନାରଦ ପୁରାଣ
ଅଧ୍ୟାତ୍ମ ରାମାୟଣ
ବୃହତ୍ ଜ୍ୟୋତିଷଶାସ୍ତ୍ର—
ପାରାଶର ହୋରା

ଶାଙ୍କର ଭାଷ୍ୟ—
ବ୍ରହ୍ମସୂତ୍ର ସେଟ୍
ଚନ୍ଦ୍ରମୋହନୀ ରାମାୟଣ ସେଟ୍
ପଣ୍ଡିତ ସର୍ବସ୍ୱ
ଆଦର୍ଶ ତୁଳସୀ ରାମାୟଣ
କୂର୍ମ ପୁରାଣ
ତତ୍ତ୍ୱବୋଧିନୀ
ଯୋଗ ତତ୍ତ୍ୱନିଧି
ଜ୍ଞାନ ତତ୍ତ୍ୱନିଧି
ତତ୍ତ୍ୱସାର ବୈଜୟନ୍ତୀ
ଶୂନ୍ୟ ରାହାସ
ବ୍ରହ୍ମନିରୂପଣ ଗୀତା
ଆଦିଅନ୍ତ ଗୀତା
ଅଷ୍ଟକବିହାରୀ ଗୀତା
ଶ୍ରୁତିନିଷେଧ ଗୀତା
ପ୍ରଣବ ବ୍ୟାହୃତି ଗୀତା
ଆଦି ସଂହିତା
ଅନାଦି ସଂହିତା
ପରମ ସଂହିତା
ଜୀବପରମ ସଂହିତା
ମହିମା ବିନୋଦ
ଶିବ ସ୍ୱରୋଦୟ
ଗଣେଶ୍ୱରବାବାଙ୍କ ଭଜନ
ଭୀମଭୋଇ ଜୀବନୀ
ମହିମାଭକ୍ତି ରସାମୃତ
ଅଲେଖ ପୁରାଣ
ଓଡ଼ିଆ ସାହିତ୍ୟରେ ଭୀମଭୋଇ

ପ୍ରାପ୍ତିସ୍ଥାନ—**ଧର୍ମଗ୍ରନ୍ଥ ଷ୍ଟୋର**, ଅଲିଶା ବଜାର, କଟକ—୨

 - ୬୦୨୯୬୮ / ୬୦୭୯୨୨

**ଅକ୍ଷରସଜ୍ଜା : ଟେକ୍‌ନୋସଫ୍‌ଟ କମ୍ପ୍ୟୁଟର ସର୍ଭିସ୍, କଟକ, ଫୋନ୍ - ୬୦୮୩୦୨**

# ମହାଭାରତ

## ଆଦ୍ୟପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠ ତି ଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ର ନୂତଂ କବିନ୍ଦ୍ରଂ ।
କୃଷ୍ଣଦ୍ୱି ଷଂ କନକ ପିଙ୍ଗଜଟା କଳାପଂ,
ବ୍ୟାସଂ ନମାମି ଶିରସା ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତରାଷ୍ଟ୍ରପାଣ୍ଡୁ ଜନନ ଲାକ୍ଷାଗୃହେ ଦାହନଂ,
ଦ୍ୟୁତେ ହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମଦ୍ରୋଣ ଦୁଯୋଧନାଦି ଦଳନଂ ଏତନ୍ମହାଭାରତଂ
ଭୀଷ୍ମ ଦ୍ରୋଣତଟାଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶାଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନ ବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଂଡ଼ବୈଃ ରଣନଦୀ ଯକ୍ରୁର୍ଣ୍ଣୋଧାରୋହରିଃ ।

ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା,
ବିରାଟ ପର୍ବଂ ବିଜ୍ଞାଶଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍‌ଯୋଗ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃପରଂ ।

ସପ୍ତମଂ ଦ୍ରୋଣପର୍ବଂ ସ୍ୟାଦ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂ ସ୍ୟାଦ୍ ଗଦାପର୍ବଂ ତତଃପରଂ,
ଐଷିକଂ ତୁ ତଥା ପ୍ରୋକ୍ତଂ ଗର୍ଭନାଶନମେବ ଚ ।

ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନ ମୁଦକସ୍ୟ ତୁ
ଶାନ୍ତିଂ ପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ ।
ସ୍ୱର୍ଗାରୋହଣ କଂ ଚୈବ୍ୟ ହରିବଂଶ ତଥୈବ ଚ
ଇତ୍ୟଷ୍ଟାଦଶପର୍ବାଣାଂ ସଂଖ୍ୟା ଦ୍ୱୈପାୟନେ ଚିତାଃ ।
ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।
ଭାରତ ଶ୍ରୁତି ମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବ ପାପୈଂ ପ୍ରମୁଚ୍ୟତେ ।
ବ୍ୟାସ ବଶିଷ୍ଟନପ୍ତାରଂ ଶକ୍ତେ ପୌତ୍ରମକଲ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ।
ତତ୍ରେ ଚ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ
ସର୍ବାଣି ତୀର୍ଥାନିବସନ୍ତି ତତ୍ର ଯତ୍ରାଚୁତୋଦାରକଥା ପ୍ରସଙ୍ଗଃ ।

## ଗଣେଶଙ୍କ ବନ୍ଦନା

ଜୟ ଜୟ ଦଧିମଙ୍ଗଳ ହେ ବିଘ୍ନରାଜ
ଯାହାର ପ୍ରସନ୍ନେ ସିଦ୍ଧି ହୁଏ ସର୍ବକାର୍ଯ୍ୟ ।
ଅମଙ୍ଗଳ ନାଶକାରୀ ଜୟ ଗଜାନନ
ଯୋଗେଶ ପରମାନନ୍ଦ ପାର୍ବତୀ ନନ୍ଦନ ।
ଶଙ୍ଖ ଚକ୍ର ପଦ୍ମଧର ଶ୍ରୀ ଦଧିବାମନ
ମଙ୍ଗଳ ବରଦ ତୁ ସର୍ବଜ୍ଞ ଗଜାନନ ।
ମହାବ୍ରହ୍ମ ଲୋକେଶ ସିନ୍ଦୁରେ ମୁଖଶୋଭା
ଅଗ୍ରପୂଜା ସର୍ବଦା ବନ୍ଦିତ ସର୍ବଦେବା ।
ଜୟ ଜୟ ଦେବାସୁର ସିଦ୍ଧି ଲମ୍ବୋଦର
ଜୟ ତୁ ଜୟ ତୁଦେବ ସର୍ବବିଘ୍ନ ହର ।
ଜୟ ତୁ ଜୟ ତୁ ଦେବ ଶରଣ ରକ୍ଷଣ
ଜୟ ତୁ ଜୟ ତୁ ଦେବ ପ୍ରସନ୍ନ ବଦନ ।
ସଂଗ୍ରାମରେ ବଧ ଯହୁଁ ନୋହିଲା ତ୍ରିପୁର
ତୋର ବୁଦ୍ଧିବଳେ ନାଶ ହୋଇଲା ଅସୁର ।
ହେଲେ ବଧ କଲୁ ଷଷ୍ଟି ସହସ୍ର ବରଷେ
ଆକାଶରୁ ସାଧୁ ସାଧୁ କରିଲେ ତ୍ରିଦଶେ ।
ତୋଷେ ତୋତେ ବର ଦେଲେ ପ୍ରଭୁ ଦେବରାଜ
ସମସ୍ତ ଭୁବନେ ତେଣୁ ହେଲୁ ଅଗ୍ରପୂଜ୍ୟ ।
ଯେଉଁଦିନ ଲେଖା ଅନୁକୂଳ କଲେ ବ୍ୟାସ
ଲିଖନେ ଆଦେଶ ଦେଲେ ପ୍ରଭୁ ବିଶ୍ୱବାସ ।
ଗ୍ରନ୍ଥକୁ କବିତା କଲେ ଆସି ମହାମୁନି
ଲେଖନ ଧରିଲୁ ତୁହି ଶୁଭଯୋଗ ଘେନି ।
ଗଙ୍ଗା ଯେ ଯମୁନା ସରସ୍ୱତୀ ତିନିନଦୀ
ସଙ୍ଗମ ହୋଇଲେ ରାମଘାଟ ତୀର୍ଥ ଭେଦି ।
ପଶ୍ଚିମ ପାରୁଶେ ଅଛି ବାଞ୍ଛା କଳ୍ପବଟ
ପଶ୍ଚିମ ମୁଖା ଧବଳ ସରସ୍ୱତୀ ତଟ ।
ସେ ସିଦ୍ଧଦାତା ବିଜୟ କଲେ ସେହି ସ୍ଥାନେ
ତ୍ରିବେଣୀରେ ସ୍ନାନ କରି ମାଧବ ଦର୍ଶନେ ।
ଶ୍ରୀହସ୍ତେ ଲେଖନ ଧରି ବସି ଯୋଗାସନେ
ମାଧବଙ୍କ ଆଜ୍ଞାରେ ସେ ବାଞ୍ଛା କରି ମନେ ।
ବ୍ୟାସ କହନ୍ତି ଲିଖନ କର ତୁହି ସ୍ୱାମୀ
ଆଦି ଗ୍ରନ୍ଥକୁ ଦେବ ତୁ ବାଣ୍ଟି ଦେଲୁ ଜାଣି ।
ସ୍ୱାମୀ ଯେବେ ଲିଖନ ତୁ କଲୁ ଶାସ୍ତ୍ରଯୋଗେ
ସେ ଅମୃତ ଦୃଷ୍ଟି ମୋତେ ଦିଅ ମୁହିଁ ମାଗେ ।
ଯୋଗେ ଯୋଗେଶ୍ୱର ସଦାନନ୍ଦର ତନୟ
ଅବ୍ୟୟ ଅଜପା ଜପେ ଥାଇ ଅବା ଲୟ ।
କରୁଣାମୟ ନାଥ ତୁ ଅଭୟ ବରଦ
ସଂସାର ବାରିଧି କି ଯେ ନାବ ତୋର ପାଦ ।
ବିସ୍ତାର ଉଦର ତୋର ଜ୍ଞାନ ଅତି ଶୁଚି
ପୃଥୁକ ଶରୀର ନାଥ କଳାଭୟ ବଞ୍ଚି ।
ଏ ଘୋର ସଂସାରେ ମୁହିଁ ବଳାଇଲି ଇଚ୍ଛା
ଦୁସ୍ତର ତାରଣ ନାଥ ପୂରାଅ ମୋ ବାଞ୍ଛା ।

ବତିଶଗୁଣେ ଶ୍ରୀକଣ୍ଠ ମିଳିଲି ତୋ କଳା
ଗଣନାଥ କୁତୁହଳେ ରଙ୍ଗ ରସେ ଭୋଳା ।
ଦିବାରାତ୍ର ନ ଜାଣଇ ସେ ମହା ମହିମ
ଅନନ୍ତ କଳ୍ପ ବଞ୍ଚଇ ପୁରୁଷ ଉତ୍ତମ ।
ପୁରୁଷଙ୍କ ମଧ୍ୟେ ସିଦ୍ଧ ଦେବତାଙ୍କ ଆଦି
ପ୍ରସନ୍ନ ଦୁସ୍ତର ହରୁ ହରୁ କାର୍ଯ୍ୟ ସିଦ୍ଧି ।
ତୋର ଶ୍ରୀଚରଣେ ମୋର ଶରଣ ଯେ ସେବା
ଭାରତ କହିବି ମୋତେ ପ୍ରସନ୍ନ ହୋଇବା ।
ତବ ପାଦପଦ୍ମେ ମୋର ବିନୟ ଭକତି
ପରଶୁ ପାଗ ଧାରଣ ନାଥ ଗଣପତି ।
ଆଦି ଅନ୍ତ ମଧ୍ୟରେ ତୁ ପୁଣି ଅବସାନେ
ଗ୍ରନ୍ଥ କଲୁ ଭୂତ ଭବିଷ୍ୟତ ବର୍ତ୍ତମାନେ ।
ଶ୍ରୀ ମାତା ଶାରଳା ଦେବୀ ଶ୍ରୀଚରଣେ ଦାସ
କହଇ ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

—୦—

## ଶାରଳାଙ୍କ ବନ୍ଦନା

ଜୟ ଜଗତ ମୋହିନୀ ସ୍ୱାମୀ ବାସୁଦେବ
ସୁଦୟା ହୋଇ ଭକତ ଜନେ ସ୍ୱର୍ଗଦେବ ।
ଜମ୍ବୁଦ୍ୱୀପ ଭ୍ରତଖଣ୍ଡ ଉଡ଼ାଷ୍ଟ ମଣ୍ଡଳେ
ଉତ୍ପଳେଶ୍ୱର ଯେ ଲିଙ୍ଗ ଚିତ୍ରୋତ୍ପଳା କୂଳେ ।
ଜୟନ୍ତ ଭୂମି ଯେ ଯାଜପୁର ସନ୍ନିକଟେ
ଶ୍ରୀ ଯମେଶ୍ୱର ଯେ ଲିଙ୍ଗ ମହୋଦଧି ତଟେ ।
ନୀଳ ସୁନ୍ଦର ପର୍ବତ କଳ୍ପବଟ ତଳେ
ଦକ୍ଷିଣ କୁଶସ୍ଥଳୀ ଶ୍ରୀଦ୍ୱାରକା ମଣ୍ଡଳେ ।
ବିଜୟ ଶ୍ରୀ ରାମକୃଷ୍ଣ ସୁଭଦ୍ରା ଏ ତିନି
ଚାରିଲକ୍ଷ ବତିଶ ସହସ୍ର ଦେବ ଘେନି ।
କଳିମଳ ବିଧ୍ୱଂସିନୀ କୋଟି ଦେବୀ ପୂଜା
ପ୍ରମାଣ ମାତ୍ରେ ଖଣ୍ଡଇ କପିଳାଶ ରାଜା ।
ସେ ନୀଳ ସୁନ୍ଦର ଗିରି ଉତ୍ତର କକ୍ଷରେ
ସାରଭୂମି ତୀର୍ଥଖଣ୍ଡ ଈଶାନ ପୂର୍ବରେ ।
ଚନ୍ଦ୍ରଭାଗା ନାମ ବହେ ପୁଣ୍ୟନଦୀ ଗୋଟି
ବୃଦ୍ଧ ମାତଙ୍ଗୀ ପୁରୁଷ ମହୋଦଧି ଫୁଟି ।
ସେ ନଦୀ ତୀର୍ଥେ ପରଶୁରାମଙ୍କ ପାଟଣା
କନକାବତୀ ବୋଲି ସେ ନଗର ରଚନା ।
ଉତ୍ତର ଝଙ୍କଡ଼ ନାମେ ଅଛି ଗ୍ରାମ ଖଣ୍ଡି
ବିଜେ ତହିଁ ମାହେଶ୍ୱରୀ ଶ୍ରୀ ଶାରଳା ଚଣ୍ଡୀ ।
ମହାଯୋଗେଶ୍ୱରୀ ସେହି ପରମ ବୈଷ୍ଣବୀ
ପ୍ରତ୍ୟକ୍ଷ ବରଦାୟିନୀ ପରମା ସାଧବୀ ।
ବାଞ୍ଛା ଫଳକୁ ସେ ଦେବୀ ସାର୍ଥକ କରଇ
ପାଷାଣ ଗାର ତା ବାକ୍ୟ କହି ନ ତୁଟଇ ।
ସର୍ବମଙ୍ଗଳା ରୂପିଣୀ ମାତା ମତ୍ତ ଭୋଳା
ଗ୍ରନ୍ଥର ରସ ଘେନଇ ହୋଇ କୁତୁହଳା ।
ଶାରଳା ଚଣ୍ଡୀ ସାକ୍ଷାତେ ଅଟଇ ଭୈରବୀ
ତାହାର ପୁତ୍ର ଶାରଳା ଦାସ ମୁହିଁ କବି ।
ସୁପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକମ୍ଭରୀ
ଲଭ ତୁ ବିଳାସ ମହାଭାରତ ବିସ୍ତାରି ।
ଶୁଣ ସୂକ୍ଷ୍ମ ବୁଧଜନେ କରି ଏକ ଚିତ୍ତ
ଜନ୍ମରୁ ମୂରୁଖ ମୁହିଁ ନୁହଇ ପଣ୍ଡିତ ।
ଏକଲୟ କରି ଏବେ ଶୁଣ ସାବଧାନେ
ତୁଟିବ ଦୁଷ୍କୃତ ପାପ ନ ଛୁଇଁବ ମନେ ।

—୦—

## ସୋମବଂଶାନୁ ଚରିତ

କୁମ୍ଭ ଋଷିଙ୍କ ନନ୍ଦନ ଅଗସ୍ତି ମହର୍ଷି
ମହାବ୍ରହ୍ମବେତ୍ତା ପୁଣି ସେ ଅମୃତ ଭାଷୀ ।
ବୈବସ୍ୱତ ମନୁ ପୂଜା କଲେ ଅଗସ୍ତିଙ୍କି
କହ ହେ ମହାପଣ୍ଡିତ ଦିବ୍ୟରସ ଛାଙ୍କି ।
ଶ୍ରୀ ମହାଭାରତ ନାମେ ହୋଇଲା କେମନ୍ତେ
ଏହା ତଦନ୍ତ କରିଣ କହିଦିଅ ମୋତେ ।
ଶୁଣ ମହାରାଜା ମନୁ ଏ ଆଦି ଚରିତ
ଦେବତାମାନେ ତୁଳିଲେ ଭଣି ସର୍ବଗ୍ରନ୍ଥ ।
ଦ୍ୱାଦଶ ଯୋଜନ କଲେ ତୁଳାଦଣ୍ଡ କାଠି
ତିନି ଯୋଜନ ବିସ୍ତାର ଚତୁଷ୍କୋଣ କୋଠି ।
ବିଷ୍ଣୁର ବ୍ରହ୍ମାଣ୍ଡ ଅଟେ ଅନନ୍ତ ଯେ କୋଟି
ତହିଁରୁ ଯେତେକ ଗ୍ରନ୍ଥ କଲେକ ଏକାଠି ।
ଅଷ୍ଟାଦଶ ପୁରାଣ ଯେ ଶାସ୍ତ୍ର ହିଁ ପ୍ରତ୍ୟକ୍ଷ
ରାମାୟଣ ଚଣ୍ଡୀଯୁଦ୍ଧ ଅଟେ ପାଞ୍ଚଲକ୍ଷ ।
ଶ୍ରୀ ବିଷ୍ଣୁପୁରାଣ ପୁଣି ମାର୍କଣ୍ଡ ପୁରାଣ
ଗାୟତ୍ରୀ ଶିବପୁରାଣ ନାରଦ ପୁରାଣ ।
ଏ ଆଦି ସପ୍ତମ ଉପ ପୁରାଣକୁ ଆଣି
ତୁଳଦଣ୍ଡେ ବସାଇଲେ ଏକ ପାଖେ ପୁଣି ।
ଆର ପାଖରେ ସେ ମହାଭାରତ ଥୋଇଲେ
ସମସ୍ତ ଶାସ୍ତ୍ର ହୁଁ ମହାଗୁରୁ ସେ ହୋଇଲେ ।
ସବୁରି ତୁହୁଁ ହୋଇଲେ ଯହୁଁ ମହାଭାରା
ଶ୍ରୀ ମହାଭାରତ ତହୁଁ ଦେଲେକ ଅଙ୍ଗିରା ।
ସେଦିନୁ ହୋଇଲା ମହାଭାରତ ତା ନାମ
ତୁଳରେ ଯହୁଁ ନୋହିଲେ ତାକୁ କେହି ସମ ।
ଶୁଣି ବୈବସ୍ୱତ ମନୁ କଲେକ ପ୍ରଣାମ
ବେନି ପାଣି ଶିରେ ଯୋଡ଼ି ଉଭା ହେଲେ ପୁଣ ।
ପଖାଳିଲେ ସହସ୍ରେକ ଶଙ୍ଖେ ପାଦ ବେନି
ମୋକ୍ଷର କାରଣ ମୋତେ କହ ମହାମୁନି ।

ବସନ କୁଣ୍ଡଳ ରତ୍ନମାଳା ସୁଚନ୍ଦନ
ଧୂପ ଦୀପ ଉପହାର ନାନା ଦ୍ରବ୍ୟମାନ ।
ଏତେକ ଦେଇଣ ସେହି ମନୁବଂଶ ରାଜା
ଭକତିରେ ମୁନିଙ୍କର କଲେ ପାଦପୂଜା ।
ଘଟ ଋଷି ସୁତ ମୋତେ ପ୍ରତିକାର କର
ତୋର ପାଦପଦ୍ମ ସେବା ନିତ୍ୟ ହିଁ ମୋହର ।
ବଦନ୍ତି ଅଗସ୍ତି ଶୁଣ ହେ ମନୁ ନୃପତି
ସୋମବଂଶ ସପ୍ତଦ୍ୱୀପା ପୃଥ୍ୱୀ ଅଧିପତି ।
ଆଦ୍ୟରୁ ଶୂନ୍ୟ ହିଁ ଜାତ ଶୂନ୍ୟରୁ ପବନ
ପବନରୁ ଜାତ ଯୋଗ ପୁରୁଷ ସମାନ ।
ଯାଗପୁରୁଷ ହୁଁ ଜାତ ହେଲେ ଗାୟତିରୀ
ଏହା ତହୁଁ ଉପୁଜିଲା ମହାମନ୍ତ୍ର ଚାରି ।
ମହାମନ୍ତ୍ରୁ ଉପୁଜିଲା ଚାରିଗୋଟି ବେଦ
ତହୁଁ ଉତପତ୍ତି ହେଲା ସାତଗୋଟି ଛନ୍ଦ ।
ଛନ୍ଦ ତହୁଁ ଉତପତ୍ତି ହେଲା କର୍ମ ଜାଣ
ଏହା ତହୁଁ ଉତପତ୍ତି ହୋଇଲା ନିର୍ଗୁଣ ।
ନିର୍ଗୁଣରୁ ଉତପତ୍ତି ଅଣ୍ଡ ସ୍ୱର୍ଣ୍ଣବର୍ଣ୍ଣ
ଅଣ୍ଡ ପୁତ୍ର ଗୋଟି ହେଲା ଦେବ ନିରଞ୍ଜନ ।
ନିରଞ୍ଜନ ଉତପତ୍ତି ହୋଇଣ ତପନ
ସେହି ତେଜରୁ ଶକତି ହେଲା ଉତପନ୍ନ ।
ଶକତିରୁ ଉତପତ୍ତି ହେଲେ ପୁତ୍ର ତିନି
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଗୁଣତ୍ରୟ ଘେନି ।
ତିନିପୁର ଲୋକ ମିଳି ମନ୍ଥିଲେ ସମୁଦ୍ର
ତହିଁରୁ ଯେ ଉତପତ୍ତି ହେଲା ଜାଣ ଚନ୍ଦ୍ର ।
ଶଶଧର ହୋଇଲାକ ସାଗର ସନ୍ତତି
ସତାଇଶ କନ୍ୟା ଦେଲେ ଦକ୍ଷ ପ୍ରଜାପତି ।
ଚନ୍ଦ୍ର ହରିଲାକ ବୃହସ୍ପତି ଭାର୍ଯ୍ୟା ତାରା
ରମଣ ରସରେ ପଡ଼ି କଲା ପରଦାରା ।
ଚନ୍ଦ୍ରଙ୍କର ବୀର୍ଯ୍ୟେ ପୁଣ ରାଜାଙ୍କର ରଜେ
ଜାତ ହେଲା ବୁଧ ନାମେ ଅପୂର୍ବ ଆତ୍ମଜେ ।
ବୁଧଙ୍କର ନନ୍ଦନ ଯେ ହେଲେ ପୁରୁରବା
ଅମରାଧିନାଥ ହେଲେ ମହାତ୍ମା ମଘବା ।
ପୁରୁରବା ବାଣ୍ଟିନେଲେ ସପ୍ତଦ୍ୱୀପା ପୃଥ୍ୱୀ
ନବଦ୍ୱୀପା ସପ୍ତସିନ୍ଧୁ ବସାଇ ନୃପତି ।
ପୁରୁରବାର ନନ୍ଦନ ଆୟ ମହୀପାଳ
ଏ ସପତ ଦ୍ୱୀପା ପୃଥ୍ୱୀ କଲା କରତଳ ।
ଆୟୁର ନନ୍ଦନ ହେଲେ ନୃପତି ନ ହୁଷ
ଇନ୍ଦ୍ରପଦେ ବସିଲେ ସେ ଅମର ଆକାଶ ।
ପୁରୁରବା ଜାତ ହେଲେ ଜାଣ କୁରୁବଂଶେ
ନହୁଷ ନନ୍ଦନ ହୋଇ ଯଯାତି ପ୍ରକାଶେ ।

ବଡ଼ ପ୍ରତାପୀ ହୋଇଲା ନୃପତି ଯଯାତି
ନବ ଗୋଟି କନ୍ୟା ବିଭା ହେଲା ସେ ନୃପତି ।
ଶୁକ୍ରର ଦୁହିତା ନାମ ଅଟେ ଦେବଯାନୀ
ଦେବକୁଳରୁ ଘେନିଲା ଦାନ ସେ ନନ୍ଦିନୀ ।
ତକ୍ଷକ ନାଗର କନ୍ୟା ଘେନିଲା ସେ ତ୍ୱଷ୍ଟା
ଅସୁର କୁଳରୁ ଜାତ ଘେନିଲା ସର୍ମିଷ୍ଠା ।
ଯକ୍ଷକୁଳୁ କନ୍ୟା ଏକ ଘେନିଲା ସେ ଦାନ
ତାର ନାମ ତାରା ସେହି ଗୁଣବତୀ ଜାଣ ।
ମାନବ କୁଳର ରାଜା ଅଟେ ବୁଧସେନ
ଦୁହିତା ବୃନ୍ଦାବତୀ କି କଲା ସେ ପ୍ରଦାନ ।
ଗୋପାଳ ବଂଶର ରାଜା ଋତୁଧ୍ୱଜ ବୀର
ଯୋଗବତୀ ବୋଲି ଏକ ଦୁହିତା ତାହାର ।
ତାହାକୁ ପ୍ରଦାନ କଲେ ନୃପତି ଯଯାତି
ନିଷାଦ କୁଳରୁ ଦାନ ଘେନିଲେ ରେବତୀ ।
ଶବର ଜାତିର ରାଜା ଅଟେ ବନଚର
ମୃଗାକ୍ଷୀ ନାମେ ଦୁହିତା ଅଟଇ ତାହାର ।
କାହାକୁ ବିବାହ କଲେ ନୃପତି ଯଯାତି
କନ୍ୟାଏ ଥିଲା କୁଶଳ ବ୍ରାହ୍ମଣ ନୃପତି ।
ପଶ୍ଚିମ ସୌରାଷ୍ଟ୍ର ରାଜା ସେହି ଇନ୍ଦ୍ରବଂଶେ
ତାହାର ଦୁହିତା ନାମ କୃଷ୍ଣା ତାକୁ ବାସେ ।
ବିଭା ହେଲେ ଯଯାତିଙ୍କୁ ଆପେ ବରି ଆଣି
ସେ କନ୍ୟା ତାଙ୍କର ହେଲା ନବମ ତରୁଣୀ ।
ଏମନ୍ତ ନବ କନ୍ୟାଙ୍କୁ କଲେ ସେ ପ୍ରଦାନ
ନବ ପୁତ୍ର ଉପୁଜିଲେ ଯଯାତି ସମାନ ।
ସସାଗରା ପୃଥ୍ୱୀକୁ ସେ ନବ ଭାଗ କଲେ
ନବଖଣ୍ଡ ପୃଥ୍ୱୀ ନବ ପୁତ୍ରେ ବାଣ୍ଟି ଦେଲେ ।
ତାଙ୍କ ଜ୍ୟେଷ୍ଠ ପୁତ୍ର ଅଟେ ପ୍ରବୀର ନୃପତି
ଓଡ଼ିଶା ରାଜ୍ୟର ଏହି ପୁତ୍ରଗୋଟି ନାତି ।
ମାତାଙ୍କର ଭାଗ ଉଡ଼ରାଷ୍ଟ୍ର ଯେ ମଣ୍ଡଳେ
ଭାରତ ଖଣ୍ଡ ଓଡ଼ିଶା ତହୁଁ ସର୍ବକାଳେ ।
ଏ ପୁରର ରାଜନ ଯେ ପ୍ରବୀର ଭୂପତି
ବାରରାଷ୍ଟ୍ର ଭିଆଇଲା ଉଡ଼ରାଷ୍ଟ୍ର ପତି ।
ଏକା ଖଣ୍ଡିକ ଯେ ତହୁଁ କଲା ସାତଖଣ୍ଡ
ମଣ୍ଡନ ଭିଆଇ ଭିଆଇଲା ପାରିଦଣ୍ଡ ।
ପ୍ରବୀର ନନ୍ଦନ ହେଲା ମତ୍ତ ନାମେ ବୀର
ଅନେକ ଦୁଷ୍ଟ ମାରି ସେ ଉଶ୍ୱାସିଲା ଭାର ।
ଏହାଙ୍କ ନନ୍ଦନ ଅନୁପମ ଚକ୍ରବର୍ତ୍ତୀ
ବଳେ ବଳବନ୍ତ ଯେହୁ ପ୍ରବୀର ସନ୍ତତି ।
ଥାଟ ସୈନ୍ୟ ନ ଥାଇ ସେ ଏହାଙ୍କର ତୁଲେ
ନବଖଣ୍ଡ ମେଦିନୀକୁ ଏକେ ସାଧ୍ୟ କଲେ ।

ଆପେ ସେହି ଭିଆଇଲେ ସପ୍ତଦ୍ୱୀପା ପୃଥ୍ୱୀ
ମହାପୁରୁଷ ସେ ଅନୁପମ ଚକ୍ରବର୍ତ୍ତୀ ।
ଅନୁପମଙ୍କ ନନ୍ଦନ ଅଟଇ ସମୀର
ଦୁଷ୍ମନ୍ତ ବୋଲିଣ କରି ପୁତ୍ରେକ ତାହାର ।
ମନ୍ଦର ଦେଶର ରାଜା କୌସ୍ତୁଭ ନୃପତି
ତାହାର ଦୁହିତା ନାମ ଅଟେ ମେନାବତୀ ।
ଏ ଦୁଷ୍ମନ୍ତ ମହିମା ଯେ ନ ଯାଇ କଳନ
ସମୁଦ୍ର ଘୁଞ୍ଚାଇ ଦେଲା ଅଶୀ ସସ୍ର ଯୁଣ ।
ସମୁଦ୍ର ଭିତରେ ନେଇ ଖଣ୍ଡେକ ପୋତିଲା
ସେଠାରୁ ସମୁଦ୍ର ତାଙ୍କୁ ଲଙ୍ଘି ନ ପାରିଲା ।
ତୋଷେ ମୋଦବତୀ କନ୍ୟା ଦେଲା ବରମାଳ
ଆବର ଭାରିଯା ତାର ହେଲା ଶକୁନ୍ତଳା ।
ଦୁଷ୍ମନ୍ତର ନନ୍ଦନ ସେ ଅଟଇ ଭରତ
ଏ ସମୁଦ୍ର ଘୁଞ୍ଚାଇଲେ ଯୋଜନ ଯେ ସାତ ।
ଶତ ଶତ ଯୋଜନରେ ଖଣ୍ଡ ଖଣ୍ଡ କଲା
ତହୁଁ ସେ ଭାରତ ଖଣ୍ଡ ମେଦିନୀ ହୋଇଲା ।
ଏହି ସିନା ଭିଆଇଲେ ଗ୍ରାମର ସୀମାଏ
ନଳ ମାପେ ପୃଥିବୀକୁ ବାଙ୍କି କରିଦିଏ ।
ଭରତର ନନ୍ଦନ ଯେ ଅଟଇ ଭୁମନ୍ୟୁ
ସବୁ ଶାସ୍ତ୍ର ସାଧି ଭୂତ ଭବିଷ୍ୟତ ଜ୍ଞାନୁ ।
ଏ ପୃଥ୍ୱୀର ପୁଣ ସ୍ଥାନମାନ ମୂଳ କଲେ
ମଣ୍ଡଳ କରିଣ ନବ ସୃଷ୍ଟି ଭିଆଇଲେ ।
ଭୁମନ୍ୟୁର ନନ୍ଦନ ଯେ ଅଟଇ ସୁହୋତ୍ର
ଏହି ଭିଆଇଲେ ଯୋଦ୍ଧିପାତ୍ର ଯେ ଅମାତ୍ୟ ।
ଏହାଙ୍କର ନନ୍ଦନ ଯେ ହସ୍ତୀ ନାମେ ବୀର
ଅଜମୀଢ଼ ଅଟନ୍ତି ହେ ଏହାଙ୍କ କୁମର ।
ଅଜମୀଢ଼ର ନନ୍ଦନ ହେଲା ସମ୍ବରଣ
ବଶ ପଳ ମାଢ଼ ବର୍ଷ କଲେକ ଭିଆଣ ।
ବିଭା ହେଲେ ଏ ସୂର୍ଯ୍ୟର ଦୁହିତା ତପତୀ
ଦେବେ ସହି ନ ପାରିଲେ ସେ କନ୍ୟାର ଜ୍ୟୋତି ।
କେବଣ ମତେ ତାହାକୁ ସଂଜ୍ଞା ଜନ୍ମ ଦେଲେ
ଅତି ତେଜରୁ କତିକି ଯାଇ ନ ପାରିଲେ ।
ଆକାଶରେ ସ୍ୱୟମ୍ବର କଲେ ଦେବ ଆଦି
ଦିଗପାଳମାନଙ୍କୁ ଯେ ସଭାରେ ସମ୍ପାଦି ।
ତ୍ରିଦଶ ଦେବ ଆସିଣ ବସିଲେ ଆସ୍ଥାନେ
ତପତୀର ସ୍ୱୟମ୍ବର ଚରିତ ବିଧାନେ ।
ନବଦ୍ୱୀପର ବ୍ରାହ୍ମଣମାନଙ୍କୁ ସେ ଘେନି
ମରାଳ ବାହନେ ଯାଇ ବିଜେ ପଦ୍ମ ଯୋନି ।
ଚଉଦ କୋଟି ଯେ ଶିବଗଣଙ୍କର ତୁଲେ
ବୃଷଭ ବାହନେ ଯାଇ ରଦ୍ର ବିଜେ କଲେ ।

ଅଳକା ଭୁବନ ତେଜି କୁବେର ଦେବତା
ସାତପଦ୍ମ ସୈନ୍ୟ ଘେନି ବିଜେ କଲେ ରଥ ।
ଅମର ଭୁବନ ତେଜି ଅମରାଧିନାଥ
ବିଜେ କଲେ ଆରୋହିଣ ଗଜ ଐରାବତ ।
ଚୌଷଠି ପୁତ୍ର ଘେନିଣ ଅମର ନିକର
ସୂର୍ଯ୍ୟଙ୍କ ସଭାରେ ବିଜେ କଲେ ସୁରେଶ୍ୱର ।
ଅଣଚାଶ ପବନ ଯେ ରାକ୍ଷସ କିନ୍ନର
କାଳଗଣ ଘେନି ଯମ ମଇଁଷି ଉପର ।
ମଧୁକର ଘେନି ବିଜେ ମଳୟ ବସନ୍ତ
ବିଜୟ କରୁଣାକର ଗଗନାଧି ନାଥ ।
ଗର୍ଜନ ନାଦ କରିଣ ନିର୍ଘାତ ନୃପତି
ସମ୍ମାରେ ବିଜୟ ଯାଇ ମଣ୍ଡଳାଧିପତି ।
ମେଘମାଳା ସହିତରେ ନୃପ ହିମବନ୍ତ
ସଙ୍ଗତେ ଅଛଇ ତାର ଆଗ୍ନେୟ ପର୍ବତ ।
ଗନ୍ଧର୍ବ ଯକ୍ଷ କିନ୍ନର ସୁର ସିଦ୍ଧ ମୁନି
ସ୍ୱୟମ୍ବର କଲେ ସୂର୍ଯ୍ୟ ଦେବତାଙ୍କୁ ଘେନି ।
ଏସନକ ସ୍ୱୟମ୍ବର ଦେଖି ବିବୁଧାଦି
ଦେବତାଙ୍କୁ ଅଭ୍ୟର୍ଥନା କଲେ ଦେବ ଆଦି ।
ତ୍ରିଦଶ ଦେବତାମାନେ ବସିଲେ ଆସ୍ଥାନେ
ବିନୟେ ପଚାରୁଛନ୍ତି ଗଗନେ ରାଜନେ ।
ଏ ମୋହର ଦୁଲ୍ଲଣୀ ଯେ ଅଟଇ ତପତୀ
ସ୍ୱୟମ୍ବର ନିମନ୍ତେ ମୁଁ ବରିଲି ସବୁନ୍ତି ।
ଯାହାର ଗଳାରେ ନେଇ ଦେବ ପୁଷ୍ପମାଳି
ସେ ତାର ବଲ୍ଲଭ ହେବ ସତ୍ୟ ପ୍ରତିପାଳି ।
ତ୍ରିଦଶ ଦେବ ସୁବେଶ ହୋଇ ହୃଷ୍ଟମନେ
ବିଜେ କଲେ ବୃନ୍ଦାରକେ ସୁପଦ୍ମ ଆସନେ ।
ବଦନ୍ତି ଗଗନ ନାଥ ଶୁଣ ଗୋ ତପତୀ
ତୋହର ନିମନ୍ତେ ମୁହିଁ ବରିଲି ସବୁନ୍ତି ।
ଯାହାକୁ ଇଚ୍ଛାକରୁ ଗୋ ବର ତୋଷ ଚିତ୍ତେ
ପାରିଜାତ ପୁଷ୍ପମାଳ ଦିଅ ହୃଦଗତେ ।
ପିତାର ବଚନ ଶୁଣି ଦୁହିତା ତପତୀ
ମାଳାଏ ଘେନି ମିଳିଲା ସୁରନାଥ କତି ।
ତପତୀର ତେଜକାନ୍ତି ଅନଳ ପରାୟ
ଭୟରେ ଅନ୍ତର ହେଲେ ଦୂରୁଁ ସୁରରାୟ ।
ଇନ୍ଦ୍ରଦେବ ଯହୁଁ ଡରେ ଅନ୍ତର ହୋଇଲେ
ମାଳା ଘେନି କୁବେରଙ୍କ ସନ୍ନିଧ୍ୟେ ମିଳିଲେ ।
କତିକି ଆସନ୍ତେ ସେହୁ ସଂଜ୍ଞାର ଅବଳା
ତାହାର ତେଜ ଲାଗିଣ ପାଇ ମହାଜ୍ୱାଳା ।
କୁବେର ଦେବତା ସଭା ମଧ୍ୟେ ନ ରହିଲେ
ଉଠି ଆପଣା ଭୁବନେ ତହୁଁ ଚଳିଗଲେ ।

ତହୁଁ ମାଳା ଘେନିଗଲା ସୂର୍ଯ୍ୟଦେବ ବାଳି
ପଦ୍ମଯୋନି ସନ୍ନିଧିରେ ବେଗେ ଯାଇ ମିଳି ।
ତା ପତିର ତେଜ ମହା ଅନଳ ପରାୟେ
ମରାଳ ଆରୋହି ପିତା ଅନ୍ତର୍ଦ୍ଧାନ ହୋଏ ।
ପିତାର ଅନ୍ତର ଦେଖି ସେ ସୁର କୁମାରୀ
ମାଳ ଘେନି ଭେଟେ ଯହୁଁ ବିଜେ ତ୍ରିପୁରାରି ।
ସଦାଶିବଙ୍କ କତିରେ ମିଳନ୍ତେ ଅବଳା
ରୁଦ୍ରର ଶରୀରେ ଯାଇ ଲାଗେ ମହାଜ୍ୱାଳା ।
ଭୟରେ ଘୁଞ୍ଚିଲେ ଦେବ ସେ ପଞ୍ଚମଉଳି
ଶିବଗଣଙ୍କୁ ଘେନିଣ କମ୍ପିଲାସେ ମିଳି ।
ପୁଷ୍ପମାଳା ଘେନି ବିଜେ ହିମବନ୍ତ କତି
ଦେଖି ଭୟ କଲା ହିମବାନ ଶୈଳପତି ।
ତପତୀର ଜ୍ୱାଳା ସେହୁ ସହି ନ ପାରିଲା
ଶୂନ୍ୟପଥେ ନ ରହିଲା ଅନ୍ତରୀକ୍ଷେ ଗଲା ।
ପଳାଇଲେ ତପତୀର ତେଜେ ବୃନ୍ଦାରକେ
ଯେ ଯାହାର ଭୁବନକୁ ଗଲେ ଦେବଲୋକେ ।
ଆଦିତ୍ୟ ବୋଇଲେ ସ୍ୱୟମ୍ବର ତ ସରିଲା
କେହି କନ୍ୟାକୁ ମୋହର ବିଭା ନ ହୋଇଲା ।
ଦୁହିତା ହୋଇଲେ ପିତାଘରେ ରଜୋବତୀ
ପିତୃଲୋକମାନେ ତାର ପାନ୍ତି ନର୍କଗତି ।
ଏସନକ ବିଚାରନ୍ତି ଦେବ ଦେବ ସୂର୍ଯ୍ୟ
ଅଶ୍ୱେକ ଚଢ଼ି ମିଳିଲା ସମ୍ବରଣ ରାଜ ।
ବଦନ୍ତି ଯେ ଦିବାକର ଶୁଣ ଗୋ ତପତୀ
ଏ ମହାରାଜା ଗୋ ସୋମବଂଶ ନରପତି ।
ଏହାର ବଂଶେ ବାନ୍ଧନ୍ତି ଅମର ଗୋ ପାଟ
ମାଳା ଘେନି ତ ଏହାର ସନ୍ନିଧିରେ ଭେଟ ।
ପିତାର ବଚନ ଶୁଣି ହରିଣୀ ନୟନୀ
ମିଳିଲା ସୁନ୍ଦରୀ କରେ ଫୁଲମାଳା ଘେନି ।
ଅଶ୍ୱେ ବିଜେ କରିଛନ୍ତି ରାଜା ସମ୍ବରଣ
ତପତୀର ତେଜ ଦିଶେ ଅନଳ ସମାନ ।
ପଦ୍ମମାଳା ଦେଲା ନେଇ ନୃପତିର ଗଳେ
ଭୁଜ ଧରି ସମ୍ବରଣ ବସାଇଲା କୋଳେ ।
ଦେଖି ପରମ ସାନନ୍ଦ ଦେବ ଅଂଶୁମାଳି
ସାଧୁ ସମ୍ବରଣ ବୋଲି ଜୟଧ୍ୱନି ତୋଳି ।
ଅନେକ ସମ୍ଭାର ଘେନି ପୂଜା ଧାମନିଧି
ତପତୀ ପ୍ରଦାନ କଲେ ଅଛି ଯଥାବିଧି ।
ସମ୍ବରଣ ବିଳସଇ ସୁନ୍ଦରୀ ତପତୀ
କୁରୁନାମେ ପୁତ୍ର ତହୁଁ ହେଲା ଉତପତ୍ତି ।
ଏହା ତହୁଁ ଉପୁଜିଲା ପୃଥୁର ସନ୍ତତି
ପ୍ରତୀପ ନାମରେ ହେଲା ପୃଥୁର ସନ୍ତତି ।

ପ୍ରତୀପ ଭାରିଜା ନାମ ଅଟେ ଚିତ୍ରୋପଳା
ଶାନ୍ତନୁ ରାଜରଷି ସେ ଏହାଙ୍କର ବଳା ।
ଏ ଶାନ୍ତନୁ ମହାରାଜା ରୁଦ୍ରସେବା କଲା
ଏ ସପତ ଦ୍ୱୀପ ସେହି ଏକଛତ୍ର କଲା ।
ଅତ୍ୟନ୍ତ ଭକ୍ତିରେ କାଶିବାସୀ ସେବା କରି
କଷା କଉପୀନ ବହି ମାଥେ ଜଟା ଧରି ।
ସୋମ ରୁଦ୍ରରୂପେ ହର ଗୋରୁହତ୍ୟା କଲେ
ହଟକେଶ୍ୱର ନାମରେ ପାତାଳେ ରହିଲେ ।
ଶିବ ସେବା କରି ତହିଁ ରହିଲେ ଶାନ୍ତନୁ
ମର୍ତ୍ତ୍ୟକୁ ନ ଆସନ୍ତି ସେ ପାତାଳ ଭୁବନୁ ।
ପାତାଳେ ଥାଇ ମଞ୍ଚକୁ ଥାଏ ତାଙ୍କ ଦୃଷ୍ଟି
ଦିବ୍ୟ ଚକ୍ଷୁରେ ଦେଖନ୍ତି ପଡ଼ିଲେ ଅରିଷ୍ଟି ।
ଦଇତ୍ୟ ଦାନବ ସେହୁ କରନ୍ତି ଅନୀତି
ପାତାଳେ ଥାଇ ନାରାଚେ ମାରନ୍ତି ସବୁନ୍ତି ।
ଏସନକ ସେବା କରୁଥାନ୍ତି ବିଶ୍ୱନାଥ
ସପ୍ତଦ୍ୱୀପେ ରାଜ୍ୟ କରେ ହୋଇ ଏକଛତ୍ର ।
ସପତ ନାରାଚ ସପ୍ତଦ୍ୱୀପକୁ ସେ ପେଶି
ସୁଦର୍ଶନ ଚକ୍ର ପ୍ରାୟ ବୁଲେ ଦିବା ନିଶି ।
ଦୁର୍ଜ୍ଜନ ଲୋକଙ୍କୁ ଦେଖି ପଳାନ୍ତି ସେ ଛେଦି
ଏମନ୍ତେ ସେ ସପ୍ତଦ୍ୱୀପରାଜା ସତ୍ୟବାଦୀ ।
ପରଜାଏ ଉପୁଜାନ୍ତି ରାଜ୍ୟେ ଯେଉଁ କୃଷି
ବାଟିକେ ଚିନାଏ ଦେଇ ଆଣନ୍ତି ବିଶେଷି ।
ଇନ୍ଦ୍ରଦେବତାର ତୁଲେ ଅନେକ ପୀରତି
କୃଷ୍ଣ ଭୂମିରେ ସେ ମେଘ ବରଷନ୍ତି ନିତି ।
ଏମନ୍ତ ସୁରେ ପାଳନ୍ତି ସେହି ଜନ ପ୍ରଜା
ଶାନ୍ତନୁ ହୋଇଲେ ଜାଣ ସୋମବଂଶ ରାଜା ।
ଗଙ୍ଗା ଜାତ ହୋଇଲେ ସେ ନିର୍ଘାତର ଘରେ
ଧବଳ ରୁଚିର ବପୁ ସକଳ ଶରୀରେ ।
ନିର୍ଘାତମାଳ କନ୍ୟା ଯେ ଅନାଦି ରଞ୍ଜନୀ
ତ୍ରିଦଶ ବରଷ ଯହୁଁ ହୋଇଲା ନନ୍ଦିନୀ ।
ନିର୍ଘାତ ବୋଲେ ମାଗୋ ମୁଁ କେମନ୍ତ କରିବି
ଯୁବା ରୂପ ହୋଇଲୁ କାହାକୁ ମୁହିଁ ଦେବି ।
ବଡ଼ ନିରାକୁଳ ଆଗୋ ଅଟୁ ମହାମାୟେ
ତୋତେ ଦେଖିକରି ମୁଁ ଗୋ କଲି ମହାଭୟେ ।
ଗଙ୍ଗା ବୋଇଲେ ତୁମ୍ଭେ ଶୁଣ ହେ ମୋର ପିତା
ମୋହର ବଲ୍ଲଭ ଅଟନ୍ତି ରୁଦ୍ରଦେବତା ।
ସେ ମୋହର ପ୍ରାଣନାଥ ଅଟନ୍ତି ତ୍ରିଶୂଳୀ
ସେହି ଯେ ସହି ପାରନ୍ତି ମୋହର ଆର୍ଦ୍ଧୋଳି ।
ନିଘାତ ବୋଇଲେ ମାଗୋ ଶୁଣ ଧବଳାଙ୍ଗୀ
ବ୍ରହ୍ମହତ୍ୟା କରି ଯେ ରୁଦ୍ର ପରମ ଯୋଗୀ ।

ଅନେକ ତୀର୍ଥ ସେ କରିଲେକ ବିଶ୍ୱବାସୀ
ପାତାଳେ ପେଶିଲେ ସେ ହୋଇଣ ମହାଦୋଷୀ ।
ଗଙ୍ଗା ବୋଇଲେକ ପିତା ଥିବି ତୁମ୍ଭ ଘରେ
କେକୋଳେ ଆସିଲେ ରହିବି ଏ ପ୍ରକାରେ ।
ଶ୍ରୀ ଚଣ୍ଡୀ ଶାରଳାଙ୍କର ପାଦତଳେ ଦାସ
ଶୁଦ୍ରମୁନି ଅପଣ୍ଡିତ ଶ୍ରୀ ସାରଳା ଦାସ ।
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ
ସାଧୁ ସୁଜ୍ଞଜନେ ଏଥେ ମୋର ଦୋଷ ନାହିଁ ।

—o—

## ଶାନ୍ତନୁ ବିବାହ

ବଦନ୍ତି ଅଗସ୍ତି ପୁଣି ମନୁ ଦଣ୍ଡଧାରୀ
ପବିତ୍ର ଭାରତ ଶୁଣି ଭବୁ ହୁଅ ପାରି ।
ଏମନ୍ତ କହି ଅଛଇ ସେହି ଗଙ୍ଗାବଳୀ
କୁମାରୀମାନଙ୍କ ସଙ୍ଗେ କୁତୂହଳେ ଖେଳି ।
ସହସ୍ରେ ବରଷ ଯେଣୁ ଏହିପରି ଗଲା
ଦୁହିତାକୁ ଚାହିଁ ଦିନେ ନିଘାତ କହିଲା ।
ସ୍ତିରୀଜନ୍ମ ନିଷ୍ଫଳ ଗୋ କରିଛୁ କାହିଁକି
ସ୍ୱୟମ୍ବର କରିବି କି ଦେଇ ତାଙ୍କୁ ଡାକି ।
ଯାହାକୁ ଭାବିବୁ ମାଗୋ ତୋର ମନଇଚ୍ଛା
ମାଳା ଦେଇଣ ବରଣ କରିବୁ ଗୋ ବତ୍ସା ।
ଗଙ୍ଗା ବୋଇଲେ ବିମୁଖ ନୁହଁ ଆହେ ତାତ
ରୁଦ୍ର ହୁଁ ଆନ ମୋ ପ୍ରିୟ ନାହିଁ ଏହି ବ୍ରତ ।
ସେ ମୋହର ବଲ୍ଲଭ ମୁଁ ତାହାର ଯେ ନାରୀ
ଅନେକ ଜନ୍ମରୁ ସଦାଶିବ ମନୋହାରୀ ।
ନିର୍ଘାତ ବୋଇଲା ମାଗୋ କହଇ ମୁଁ ତୋତେ
ତୁ ବିଭା ନୋହିଲେ ଦୋଷ ଲାଗିବଟି ମୋତେ ।
ଦୁହିତା ବୋଇଲେ ପିତା ଘରେ ରଜୋବତୀ
ଏକୋଇଶ ପୁରୁଷ ଯେ ତାର ନର୍କଗତି ।
ଗଙ୍ଗା ବୋଇଲେ ଅନେକ ଯୁଗ ବହିଯିବ
ଏହି ମତେ ଥିବି ତାତ ବହି ବାଳଭାବ ।
ନିର୍ଘାତ ପରମାନନ୍ଦ ଦୁହିତା ବଚନେ
ରହନ୍ତି ସେ ଦେବୀ ପିତା ଘରେ ତୋଷମନେ ।
ଏହି ପରକାରେ ସତ୍ୟଯୁଗ ବହିଗଲା
ରୁଦ୍ର ଦେବତାର ଗଙ୍ଗା ଭେଟ ନ ପାଇଲା ।
ସତର ଲକ୍ଷ ସତାଶୀ ସହସ୍ର ବରଷେ
ଖେଳଇ ନିଘାତ ଘରେ ବାହୁତ ବୟସେ ।
ବାରଲକ୍ଷ ଛୟାଣୋଇ ସହସ୍ର ବରଷ
ଗଙ୍ଗାଦେବୀ ସଙ୍ଗେ ଭେଟ ନୋହିଲେ ମହେଶ ।
ତ୍ରେତ୍ରାଯୁଗ ଅନ୍ତେ ନାମେ ଏକ ରୁଦ୍ରମନ୍ୟୁ
ଦିବା ରାତ୍ର ଜପନ୍ତି ସେ ନୃପତି ଶାନ୍ତନୁ ।

ସଦାନନ୍ଦ ପୁରୁଷ ଯେ ପ୍ରବେଶ ହୋଇଲେ
ଦ୍ୱିତୀୟ ଇନ୍ଦ୍ର ପଦକୁ ଶାନ୍ତନୁକୁ ଦେଲେ ।
ବୋଲନ୍ତି କପାଳୀ ଆସି ତୁ ଭୁବନ ମଞ୍ଚ
ଭ୍ରମି କରି ଦେଖ ତୁହି ଭୁବନ ସୁସଞ୍ଚ ।
ପ୍ରବଣ ପୁରେ ବସନ୍ତି କେବଣ ହିଁ ଦେବେ
ଦେଖ ଯାଇଁ ତୁ ହୋ ରାଜା ଭ୍ରମି ଠାବେ ଠାବେ ।
ସଦାନନ୍ଦ ବଚନେ ଚଳନ୍ତି ସୋମବଂଶୀ
ରୁଦ୍ର ଅବତାର ସେ ଶାନ୍ତନୁ ମହାଋଷି ।
ବୃଷଭ ଆରୋହିଣ ମଥାରେ ଜଟା ଭାରୀ
ଧବଳ ଶରୀର ସେହି ଦ୍ୱିତୀ ତ୍ରିପୁରାରି ।
ଭ୍ରମଇ ଆକାଶେ ସୋମବଂଶୀ ଅଧିପତି
ଲକ୍ଷେକ ଡମ୍ବରୁ ବାଦ୍ୟ ଶୂନ୍ୟରେ ବଜାନ୍ତି ।
ପିନାକ ସମାନ ଧନୁ ଧରିଅଛି କରେ
ତ୍ରିଶୂଳ ଗୋଟିଏ ଶୋହେ ଆରେକ ଭୁଜରେ ।
ଭସ୍ମଲେପନ ରୁଦ୍ରାକ୍ଷମାଳା ଶୋହେ ହୃଦେ
ପ୍ରକଳ ଶରୀର ପ୍ରତ୍ୟକ୍ଷ କି ସଦାନନ୍ଦ ।
ଏସନକ ରୂପେ ଆସେ କରି ଦିଗ ବିଜେ
ଈଶ୍ୱରମଣି ପୂଜନ୍ତି ପ୍ରଭୁ ଦେବରାଜେ ।
ଅର୍ଥଁଳାର ତଳେ ଗଙ୍ଗା ତପ କରୁଥିଲେ
ଭୋଳମତି ହୋଇ ସେହୁ ଚିତ୍ତ ବଳାଇଲେ ।
ଦେଖିଣ ବଚନ ତାଙ୍କୁ ବୋଇଲା ନିର୍ଘାତ
ବ୍ରତ ତୋର ପୂରିଲା ଗୋ ଶୁଣ ଜଗନ୍ମାତ ।
ପିତାର ବଚନେ ତୁଷ୍ଟ ହେଲେ ଧବଳାଙ୍ଗୀ
ଶାନ୍ତନୁର ଗଳେ ମାଳା ଦେଲେ ସେହି ଲାଗି ।
ଜଳ ତିଳ ଘେନି ରାୟେ ସଙ୍କଳପ କଲେ
ଏ ଦୁହିତା ତୋତେ ଦେବି ସତ୍ୟ ମନାସିଲେ ।
ବରବେଶେ ବସିଲେ ଯେ ଶାନ୍ତନୁ ମହର୍ଷି
ମିଳିଲେ ଦୁର୍ବାସା ମହାଋଷି ବେଗେ ଆସି ।
ମେଷ ଶୁକ୍ଳ ତ୍ରୟୋଦଶୀ ତିଥି ଚନ୍ଦ୍ର ବାର
ହସ୍ତା ନକ୍ଷତ୍ର ଯେ ବେଳ ଚତୁର୍ଥ ପ୍ରହର ।
କନ୍ୟାଲଗ୍ନ ତାର ଚନ୍ଦ୍ର ଶୁଦ୍ଧ ଶୁଭବେଳ
ବ୍ରହ୍ମ ନାମେ ଯୋଗ ପୁଣି କରଣ ତୈତିଳ ।
ଏସନ ସମୟେ ବିଭା ସୀଉକାର ସାରି
ଉଭୟ କୁଳର ଗୋତ୍ରମାନ ସେ ଉଚ୍ଚାରି ।
ବୋଲନ୍ତି ଯେ ପୁରୋହିତ ଗୋତ୍ର କୁହ ବୀର
ତୁମ୍ଭ ପିତା ନାମ କିସ ତୁମ୍ଭେ ତାହା ଧର ।
ଶାନ୍ତନୁ ବୋଇଲେ ଆମ୍ଭେ ଅଟୁ ସୋମଗୋତ୍ରୀ
ଆମ୍ଭ ପଣଅଜା ସମ୍ବରଣ ନରପତି ।
ସମ୍ବରଣର ଯେ ପୁତ୍ର ଅଟେ କୁରୁନାଥ
ପୃଥୁ ତାଙ୍କ ପୁତ୍ର ଆମ୍ଭେ ଅଟୁ ତାଙ୍କ ପୁତ୍ର ।

ଶାନ୍ତନୁ ରାଜାଙ୍କ ମୁଖୁ ଏ ବଚନ ଶୁଣି
ବିସ୍ମୟ ହୋଇ ବସିଲେ ଗଙ୍ଗା ଠାକୁରାଣୀ ।
ଗଙ୍ଗା ବୋଇଲେ ଯେ ମନ୍ଦକୃତ୍ୟ କଲୁ ତାତ
ଏତ ଈଶ୍ୱର ନୁହଇ ଦେବ ବିଶ୍ୱନାଥ ।
ଈଶ୍ୱର ଦେବତାର ତ କୁଳ ଗୋତ୍ର ନାହିଁ
ପିତୃ ପିତାମହ ପଣ ଅଜା ଅଛି କାହିଁ ।
ଯେଉଁ ସ୍ୱାମୀ ଅଟଇଟି ଈଶ୍ୱର ଦୈବତ
ନାହିଁ କୁଳ ମାର୍ଗ ଚାରି ନିଷ୍କଳଙ୍କ ଗୋତ୍ର ।
କହି ଗଙ୍ଗା ଉଠିଲେ ଯେ ପିତାର କୋଳରୁ
ନିର୍ଘାତ ବୋଇଲେ କିମ୍ପା ତୁହି ନାସ୍ତିକରୁ ।
ଗଙ୍ଗା ବୋଇଲେ ଈଶ୍ୱରେ କରିବି ମୋ ଇଚ୍ଛା
ଦୁଇଯୁଗ ଦୁଃଖ ପାଇ ନ ପୂରିଲା ବାଞ୍ଛା ।
ନିର୍ଘାତ ବୋଇଲା ମାଗୋ ମୁଁ ଯେ ସତ୍ୟକଲି
ସଂକଳପ କରି ମୁହିଁ ତୋତେ ପଚାରିଲି ।
ତାହାର ବଚନେ ସତ୍ୟ କଲି ମୁଁ ଏହାଙ୍କୁ
ସତ୍ୟ ଭଗ୍ନ ଦୋଷ ଏବେ ଲାଗିଛି ଆମ୍ଭଙ୍କୁ ।
ପିତାର ବଚନ ଶୁଣି ଦେବୀ ଧବଳାଙ୍ଗୀ
ବୃଷଭ ଚଢ଼ି ଆସିଲା ମାଳା ଦେଲି ବେଗି ।
ଗଙ୍ଗା ବୋଇଲେ ତୁ ଏବେ ଶୁଣ ହେ ଶାନ୍ତନୁ
ମୋହର ବଲ୍ଲଭ ଅଟେ ଶିବା ହିଁ ଆଜନ୍ମୁ ।
ଈଶ୍ୱର ବୋଲି ମୁଁ ତୋତେ କଲି ସନମତ
ନ ଜାଣିମା ପଣେ ସତ୍ୟ କଲେକ ନିର୍ଘାତ ।
ତୋହର ମନେ ବିଚାର କର ତୁହି ଭାଳି
ତୁ ସହି ପାରିବୁ କି ହୋ ମୋହର ଆର୍ଦ୍ଦୋଳି ।
ଈଶ୍ୱର ଦେବତା ପୂର୍ବେ ସହି ନ ପାରିଲା
ବ୍ରହ୍ମାଙ୍କର କମଣ୍ଡଳୁ ମଧ୍ୟେ ଦେଇ ଗଲା ।
ପିତା ସହି ନ ପାରିଲା ମୋହର ଆର୍ଦ୍ଦୋଳି
ବାମନ ବିଷ୍ଣୁର ପାଦତଳେ ନେଇ ଢାଳି ।
ବାମନ ଦେବତା ମୋତେ ନ ପାରିଲା ବହି
ମେରୁ ପୃଷ୍ଠେ ଛାଡ଼ିଲା ମୁଁ ସୁଖେ ଗଲି ରହି ।
ଜାହ୍ନବୀ ହୋଇଣ ମୁହିଁ ଲଭିଲି ଅଗତି
ତେଣୁ ଗୃହବାସ ପାଇଁ ବଳାଇଲି ମତି ।
ନିର୍ଘାତ ଘରେ ଆସି ମୁଁ ଲଭିଲି ଜନମ
ଆରତ ହେଲି ନ ଦେଖିଦେବ ତ୍ରିଲୋଚନ ।
ଏବେ ଯେବେ ତୋହର ମୁଁ ହେବି ମନୋହାରୀ
ସମ୍ଭାଳି ପାରିବୁଟି କି ଆହେ ଦଣ୍ଡଧାରୀ ।
ଶାନ୍ତନୁ ବୋଇଲେ ଅଟୁ ତୁ ବଡ଼ ଜଞ୍ଜାଳୀ
ଭର୍ତ୍ତା କି ସହଇ କେବେ ଭାରିଯା ଆର୍ଦ୍ଦୋଳି ।
ପତିର ଆର୍ଦ୍ଦୋଳି ଯେବେ ଭାର୍ଯ୍ୟା ନ ସହିବ
କେସନେକ ପତି ପତ୍ନୀ ଗୃହବାସ ହେବ ।
ଗଙ୍ଗା କହଇ ମୁଁ ତୋତେ ବୋଲି ନିରାଧାର
ମୁହିଁ ସେ ବାତୁଳୀ ଦ୍ରୋହ କରିବି ଅପାର ।
ଅନେକ ଦୋଷ କଲେ ତୁ କୋପ ନ କରିବୁ
ସର୍ବ ଦ୍ରବ୍ୟ ନାଶ କଲେ କିଛି ନ ବୋଲିବୁ ।
ଭର୍ତ୍ସନା ନ କରିବୁ ନ ଦେବୁ ମୋତେ ଗାଳି
ଅନୁକ୍ଷଣେ ଖଟିଥିବୁ ମୋତେ ପ୍ରତିପାଳି ।
ଗଙ୍ଗା ବୋଲି ବୋଲୁଥିବୁ ତୁ ଅନବରତେ
ଗାଙ୍ଗୀ ବୋଇଲେ ନ ଥାଇ ମୁଁ ତୋର ପୁରତେ ।
ଏତେକ ବ୍ରତ ମୋହର ପୂରଇ ନିୟତ
ଗଙ୍ଗା ବୋଇଲେ ମୁଁ ଯିବି ବାରାଣସୀ କ୍ଷେତ୍ର ।
ଶାନ୍ତନୁ ବୋଇଲେ ସତ୍ୟ ସତ୍ୟ ମୋର ଏହି
ଅନେକ ଦୋଷ କଲେ ମୁଁ ନିଶ୍ଚେ ଥିବି ସହି ।
ଏସନକ ସତ୍ୟ କଲେ ରାଜା ସତ୍ୟବାଦୀ
ପ୍ରସନ୍ନ ହେଲେ ସେ ଦେବୀ ଧବଳାଙ୍ଗୀ ଆଦି ।
ନିର୍ଘାତ ପ୍ରଦାନ କରେ କନ୍ୟାକୁ ତାହାଙ୍କୁ
ଦଶ ଦୋଷ ମାଗିନେଲେ କହି ଶାନ୍ତନୁଙ୍କୁ ।
ଦିନ ପାଞ୍ଚ ସାତ ରାଜା ଗଲେ ମନ ତୋଷେ
ପ୍ରବେଶ ହେଲେ ବାରୁଣାବନ୍ତେ ନିଜ ଦେଶେ ।
ଯମୁନା ନଦୀର କୂଳେ ଆପଣାର ରାଜ୍ୟେ
ଗଙ୍ଗା ସମେତ ସେ ପୁରେ କଲେ ରାଜା ବିଜେ ।
ଏମନ୍ତ କରିଲେ ତହିଁ ଅନେକ ପୀରତି
ଗଙ୍ଗା ଦେବୀଙ୍କର ତୁଲେ ଶାନ୍ତନୁ ନୃପତି ।
ସହସ୍ରେ ବରଷ ଏହିମତେ ଗଲା ପୁଣି
ଅତି ଆନନ୍ଦରେ ରହିଥାନ୍ତି ବେନି ପ୍ରାଣୀ ।
ଜୟ ତୁ ଶାରଳା ମାଗୋ ଜୟ ମାହେଶ୍ୱରୀ
ସତ୍ୟଯୁଗେ ଦୁର୍ଗାରୂପେ ତୁହି ଅବତରି ।
ଶୁମ୍ଭ ନିଶୁମ୍ଭଙ୍କୁ ମାରି ରଖିଲୁ ଅମର
ଜନ୍ମେ ଜନ୍ମେ ମୁହିଁ ତୋର ଚରଣେ କିଙ୍କର ।
ଜନ୍ମରୁ ମୁରୁଖ ମୋର ନାହିଁ ଶାସ୍ତ୍ରଜ୍ଞାନ
ତୁ ଯାହା କହୁ ମୁଁ ତାହା କରଇ ଲେଖନ ।
ମୋଠାରେ ସୁଦୟା ଏବେ କର ମହାମାୟୀ
ଶାରଳା ଦାସ ମୁଁ ତୋର ଶରଣ ମାଗଇ ।

—o—

## ଚିତ୍ରାଙ୍ଗଦା, ବିଚିତ୍ରବୀର୍ଯ୍ୟ ଓ ଭୀଷ୍ମ ଜନ୍ମ

ପୁନରପି ବୈବସ୍ୱତ ମନୁ ମହାରାଜା
ଧୂପ ଦୀପ ଦେଇ କଲେ ମୁନି ପାଦପୂଜା ।
ଭୋ ମୁନି ବିଚାର କରି କହ ସୁଧାବାଣୀ
ଅଗସ୍ତି କହନ୍ତି ଶୁଣ ମନୁ ନୃପମଣି ।

ବଡ଼ ଜଞ୍ଜାଳୀ ଅଟଇ ନିର୍ଘାତର ଧାଳୀ
ଶାନ୍ତନୁ ରାଜାର ସଙ୍ଗେ ନିତ୍ୟ କରେ କଳି ।
ବାସ୍ତରୀ ଯେ ଉପବାସ ମୁନିଙ୍କର ଥିଲା
କଟାଳ କରି ସେ ବ୍ରତ ସବୁ ଛଡ଼ାଇଲା ।
ଶ୍ରୀ ଏକାଦଶୀ ଯେ ଏକା ଅଛି ରାଜର୍ଷିର
ତହିଁ କି କଟାଳ ତାର ଅଛଇ ଅପାର ।
ମକର ମାସ ସୁକଳ ପକ୍ଷ ଏକାଦଶୀ
ଅନେକ ନିଷ୍ଠାରେ କରନ୍ତି ସେ ମହାଋଷି ।
ଶାନ୍ତନୁଙ୍କ ଏ ନିଷ୍ଠାରେ ବ୍ରତଭାବ ଦେଖି
ପ୍ରୀତି ବଢ଼ାଇଲେ ଧବଳାଙ୍ଗୀ ଶଶୀମୁଖୀ ।
ବୋଇଲେକ ଧବଳାଙ୍ଗୀ ଶୁଣ ସୋମବଂଶୀ
ବଡ଼ ନିଷ୍ଠୁରେ ତ ବସିଅଛ ଦିବା ନିଶି ।
ଶାନ୍ତନୁ ବୋଇଲେ ପ୍ରିୟେ ଶୁଣ ମୋର ମତ
ମୁକତିର କାରଣ ଏ ଏକାଦଶୀ ବ୍ରତ ।
ନାରାୟଣ ଆତ୍ମଲୟ ମହାବ୍ରହ୍ମ ସିନା
ରାଗ ମୋହ ଅହଙ୍କାର ସଂସାର ରଚନା ।
ଯେ ଯେତେକ କର୍ମ କରି ରାଗ ନୋହେ ହିଂସି
ସଂସାର ସାଗରେ ଅନାଚାର ଜନେ ଧ୍ୱଂସି ।
ଏ କାରଣୁ କହଇ ମୁଁ ଶୁଣସିରେ ପ୍ରିୟା
ତୋହର ମୋହର ଏକ ଆତ୍ମା ଭିନ ହିୟା ।
ତୁ ସଖୀରେ କର ଆଜ ଏକାଦଶୀ ବ୍ରତ
ଦୁହେଁ ଯାଇ ବଇକୁଣ୍ଠେ ବସିବା ସଙ୍ଗାତ ।
ଏସନକ ମହିମା ଏ ବ୍ରତ ଏକାଦଶୀ
ପାରିଲେ ଅବଶ୍ୟ ହେବା ବଇକୁଣ୍ଠବାସୀ ।
ବୋଇଲେ ଯେ ଏ ବଚନ ଶୁଣି ଧବଳାଙ୍ଗୀ
ନୋହିଲେ କିମ୍ପାଇଁ ତୁମ୍ଭେ କହ ମହାଯୋଗୀ ।
ରାଜପଦ ଆବୋରିଲ ସଂସାର ନିମନ୍ତେ
କ୍ଷତ୍ରୀ ବୃତ୍ତି ଛାଡ଼ିଲ ଯେ ବଂଶରକ୍ଷା ଅର୍ଥେ ।
ରାଜପଦ ଅଟଇ ଯେ ଅତ୍ୟନ୍ତ ଉତ୍କର୍ମ
କ୍ଷତ୍ରୀ ବୃତ୍ତି ଆବୋରିଲେ କିସ ତପ ଧର୍ମ ।
ରାଜାର ତ ଉପବାସ ନୋହେ ରାଜନୀତି
ତୁମ୍ଭର କାହିଁକି ଉପବାସ ନରପତି ।
ପରଜା ପାଳିବ ଘେନି ବଳେ ପରରାଷ୍ଟ୍ର
ସମ୍ଭାର ଘେନିଣ ସାଧୁଥିବ ପରଥାଟ ।
ଦଣ୍ଡ ପଲାଣ ଘେନି ଯେ ଦୁଷ୍ଟ ନିବାରିବ
ସଜ୍ଜନ ପାଳିବ ତପୋଧନ ଉଦ୍ଧାରିବ ।
ତୁହି ମହାଭାଗ୍ୟବନ୍ତ ଅଟ ମହାଋଷି
ରାଜପଦେ ଥାନ୍ତୁ କିମ୍ପା କରୁ ଏକାଦଶୀ ।
ଦୁର୍ଭାର ବଚନ ଯହୁଁ ବୋଇଲେ ଜାହ୍ନବୀ
ରାଜ୍ୟେ ପଶି ତୁ କିମ୍ପାଇଁ ବ୍ରତରାଜ ସେବୀ ।

ଧର୍ମଙ୍କୁ ଦୂଷିତ କରି ଲୋଡ଼ନ୍ତି ପୁଣ୍ୟତୋୟା
ଋଷି ମିଶି ନ ପାରନ୍ତି ତାହାଙ୍କର ମାୟା ।
ଅନେକ ଅଭାବ କଥା ବୋଲି ମହାସତୀ
ରାଜଋଷିଙ୍କର ତୁଲେ ବଢ଼ାଇଲେ ପ୍ରୀତି ।
ଦିବାରାତ୍ର ଯେଣି ଦେବୀ ରମଣେ ଅଶାନ୍ତି
ସତ୍ୟବ୍ରତଙ୍କୁ ଯେ ପାଳିଥାନ୍ତି ମହାଯତି ।
ଛାଡ଼ିଲେ ବ୍ରତରାଜ ଯେ ଜଞ୍ଜାଳୀର ଭାବେ
ଇଛିଲେ ଶୃଙ୍ଗାର ରସ ସେ ଶାନ୍ତନୁ ଦେବେ ।
ଏମନ୍ତେ ଅନେକ ଦିନ ପୁଣି ବହିଗଲା
ପୁଣି ହିଁ ବେନି ସହସ୍ର ବରଷ ହୋଇଲା ।
ଯେଣୁ ଯେ ଚଞ୍ଚଳ ଦୁଷ୍ଟ ତାଙ୍କର ପ୍ରକୃତି
ନିଶ୍ଚଳ ଭାବରେ ତାର ରହିବ କି କତି ।
ବାହାର ହୋଇଯିବାକୁ ଯେ ଭାବ ଛାଡ଼ିଲେ
ଅନେକ ଦୁଃଖ ଶାନ୍ତନୁ ଋଷିଙ୍କୁ ସେ ଦେଲେ ।
ଅନ୍ନ ଦେଲେ ତାକୁ ପୁଣି ନ ଦିଅନ୍ତି ପାଣି
ଋଷିଙ୍କ ଯେ ପରିତ୍ୟଜ କରନ୍ତି ରଜନୀ ।
ତପ ଧର୍ମ ଛାଡ଼ି ଋଷି ପଶିଲେ ସଂସାରେ
କେବେ ଦର୍ଶନ ହୋଇ ସେ ପଳାଇଲେ ଦୂରେ ।
ଅନେକ ଚାଟୁ ବଚନ ଗଙ୍ଗାଙ୍କୁ କହନ୍ତି
ସେ ତାଙ୍କୁ କଥା ନ କହି ମାନିନୀ ହୁଅନ୍ତି ।
ଯେ କାଳେ ପୁରାଣ ବ୍ୟାଖ୍ୟା କରେ ବ୍ରହ୍ମଚାରୀ
ସେ ତାହା ନ ଶୁଣି ଯାଇ ପଶେ ଅନ୍ତଃପୁରୀ ।
ଦଣ୍ଡ କମଣ୍ଡଳୁ ଶ୍ରୁବ ଶ୍ରୁଚ ଯେ ପ୍ରୋକ୍ଷଣୀ
ଚୂଲୀରେ ଦେଇ ଜାଳନ୍ତି ଯତନେ ତରୁଣୀ ।
କୁଶବିଡ଼ି ଆଦି କରି ଆବର କର୍ପଟୀ
ଜ୍ୱଳନ୍ତ ଅନଳେ ଭଲ କରି ପରିପାଟୀ ।
ଏମନ୍ତ ଅନେକ ମତେ କରାଇ ବିମୁଖ
ଗୃହବାସ ନିମନ୍ତେ ସେ ସହୁଥାନ୍ତି ଦୁଃଖ ।
ଭୋକବେଳେ ଜାଣି ଅନ୍ନ ନ ଦିଅଇ ପାଞ୍ଚି
ଅଭୋକ ବେଳରେ ସେ ଅନେକବାର ଯାଚି ।
ଅନେକ ସୁବେଶ ହୋଇ ଶାନ୍ତନୁ ରାଜର୍ଷି
ଗଙ୍ଗାଦେବୀଙ୍କ ନିକଟେ ମିଳନ୍ତେ ସେ ଆସି ।
ପଛୁଁ ଆସି କୋଳ କରି ଲୋଡ଼ନ୍ତେ ଶାନ୍ତନୁ
ବଳାକାରେ ବାହାର ସେ ହୁଅନ୍ତି ଭବନୁ ।
ପଳାଇ ପଶନ୍ତି ଯାଇଁ ସ୍ତିରୀଙ୍କର ମେଳେ
କାମ କଷ୍ଟେ ସେ ମହାତ୍ମା ଅନେକ ବିକଳେ ।
ବିନ୍ଧଚିତ୍ର ପିତୁଳାଏ ଅଛନ୍ତି ଯେ କାନ୍ଥେ
ତାହାଙ୍କୁ ଦେଖିଣ ମୁନି ମଦନ ଆରତେ ।
ଧାତିକାରେ କାମବିନ୍ଦୁ ହୋଇଲା ସ୍ଖଳିତ
ତତକ୍ଷଣେ ଉତପତ୍ତି ହେଲା ଏକ ପୁତ୍ର ।

ସେହି ତନୁଜକୁ ଦେଖି ଆନନ୍ଦ ଅପାର
ଚିତ୍ରାଙ୍ଗଦ ବୋଲି ନାମ ଦେଲେ ନୃପବର ।
ପୁତ୍ରକୁ ଘେନିଣ ରାଜା ବାହାର ହୋଇଲେ
ଗଙ୍ଗାକୁ ଲୁଚାଇ ଦେଲେ ସତ୍ୟବତୀ କାଳେ ।
ଗଙ୍ଗା ଯେ ନ ଜାଣୁ ତୁମ୍ଭେ ପାଳ ପୁତ୍ରମଣି
ପୁତ୍ରକୁ କୋଳେ ଧଇଲେ ପରାଶର ମୁନି ।
ପୁତ୍ରକୁ ଯତ୍ନେ ପାଳିଲେ ଦେବୀ ସତ୍ୟବତୀ
ବଢ଼ଇ ଅଯୋନି ଜାତ ପୁତ୍ର ଧରି ମୂର୍ତ୍ତି ।
ଗଙ୍ଗାର ମେଳେ ଭାବନ୍ତି ପୁଣି ତପୋଧନ
ମାନିନୀ ହୋଇ ଗଙ୍ଗା ନ ବୋଲନ୍ତି ବଚନ ।
ପରାଶର ଶାନ୍ତନକୁ ଗୁପତେ ବସାଇ
କହନ୍ତି ମଧୁର ସ୍ନେହ ବଚନ ଯେ ରାଇ ।
ବାବୁ ତୁ ଶାନ୍ତନୁ ଏବେ ମୋର ବୋଲ କର
ସତ୍ୟବ୍ରତେ ବନ୍ଧାହୋଇ କଲୁ ଏ ସଂସାର ।
ଆମ୍ଭେ ତୋର ପିତା ତୁଲ୍ୟ ଆମ୍ଭଙ୍କୁ ନ ଭାଳି
ତାହାକୁ ବିଭା ହୋଇଲୁ ସେ ବଡ଼ ଜଞ୍ଜାଳି ।
ତାହାକୁ ଉପେକ୍ଷା କରିଦିଅ ଏବେ ବାବୁ
ଅନେକ ଦୁଃଖ ପାଇବୁ ପ୍ରାଣେ ନାଶ ଯିବୁ ।
ନ କରନ୍ତି ଗୁରୁଜନ ବାକ୍ୟେ ଯେଉଁ ବଳା
ବଂଶ ନାଶ ଯାଇ ପୁଣି ବୁଡ଼େ ତାର ଭେଳା ।
ରୁଦ୍ରଦେବତାଙ୍କୁ ନିତ୍ୟ ଭଜନ ଜାହ୍ନବୀ
ଈଶ୍ୱର ଦେବତାର ସେ ଅଟଇ ବଲ୍ଲଭୀ ।
ଶାନ୍ତନୁ ବୋଇଲେ ତୁମ୍ଭେ ମୋର ଗୁରୁଜନ
ଦ୍ରୋହୀ ହେବି ବଞ୍ଚାଇଲେ ତୁମ୍ଭର ବଚନ ।
ମାତା ବଚନ ମେଣ୍ଟିଲେ ଆୟୁ କ୍ଷୟ ହୁଏ
ପିତା ବଚନ ମେଣ୍ଟିଲେ ଧର୍ମ ନାଶ ଯାଏ ।
କି କହିବି ତୁମ୍ଭଙ୍କୁ ମୁଁ ଶାନ୍ତନୁ ବୋଇଲେ
ଦିନ ନ ସରଇ ମୋର ଗଙ୍ଗା ନ ଦେଖିଲେ ।
ତୁମ୍ଭେ ମୋର ଗୁରୁଜନ ପିଅର ସଞ୍ଜାତ
ତୁମ୍ଭଙ୍କୁ ଉପେକ୍ଷିପାରେ ଗଙ୍ଗାର ନିମିତ୍ତ ।
ଗୁରୁଜନଙ୍କ ବଚନ ମେଣ୍ଟି ପ୍ରିୟ ଭାବେ
ଗଙ୍ଗାକୁ ବିନୟୀ ହେଉଥାନ୍ତି ରାଜ ଦେବେ ।
ଏକଦିନେ ଶାନ୍ତନୁଙ୍କୁ ପୁଚ୍ଛେ ଗଙ୍ଗା ମାତ
ତୁମ୍ଭେ ପରା ହୋଇଅଛ ରୁଦ୍ରଙ୍କ ଭକତ ।
ସେ ବିଶ୍ୱଦେବତା କାହିଁ ଅଛନ୍ତି ମୁନି ହେ
କହିବା ହେଉ ଯେମନ୍ତେ ସନ୍ଦେହ ନ ରହେ ।
ଶାନ୍ତନୁ ରାଜା ବୋଇଲେ ପାତାଳ ଭୁବନେ
ହଟକେଶ୍ୱର କୈଳାସେ ବିଜେ ତ୍ରିଲୋଚନେ ।
ଶୁଣି ପରମ ଆନନ୍ଦ ହୋଇଲେ ଜାହ୍ନବୀ
ପୋତୁ ଏ ବାହାର ହୋଇ ଏହା ଘରୁ ଯିବି ।

ଅବିରତେ ପେଟ ମାଡ଼ି ଶୋଇଥାଇ କାନ୍ଦି
ତିନିଦିନେ ଅନ୍ନ ବେଳେ ନ ଦିଅଇ ରାନ୍ଧି ।
ସନ୍ନିଧିରେ ବସି ସଦା ଶାନ୍ତନୁ ନୃପର
ଆଉଁଷି ଦିଅନ୍ତି ହସ୍ତେ ଗଙ୍ଗାର ଶରୀର ।
କପାଳେ ଆଉଁଷି କୋଳେ କରି ତୋଳି ଧରି
ଗାଢ଼େ ଧରନ୍ତେ ଦିଅନ୍ତି ମୁନିବରେ ପେଲି ।
ଗାଢ଼େଣ ଧରନ୍ତି ଯେତେବେଳେ ତପୋବନ୍ତ
କେଶ ଧରି ମୁନିଙ୍କୁ ସେ ମାରନ୍ତି ବହୁତ ।
ମାଥେ ମୁଥ ମାରି ପୁଣି ପାଦେ ପ୍ରହାରନ୍ତି
ଶରୀରକୁ ନଖଦନ୍ତ ଘାତେ ବିଦାରନ୍ତି ।
ଋଷିଙ୍କ ବସନ ଖଣ୍ଡ ଖଣ୍ଡ କରି ଚିରି
ବାଙ୍ଗୀରେ ପକାନ୍ତି ମାଳୀ ବେଦ ଆଦି କରି ।
ଏମନ୍ତ ଅନେକ ଶାସ୍ତି ଦେଲେ ତାଙ୍କୁ ଗଙ୍ଗା
ବୋଲନ୍ତି ତୁ ବୁଢ଼ା ପୁଣି ଅଟୁରେ କୁଢ଼ଙ୍ଗା ।
ଏସନେକ ମନ୍ଦ ବୋଲି ଦିଏ ବହୁ ଗାଳି
ଶାନ୍ତନୁ ବୋଇଲେ ଗଙ୍ଗା ତୁ ଏଡ଼େ ଜଞ୍ଜାଳି ।
ସଜ ଘରକୁ ଅସଜ କରୁ ଅନିମିତ୍ତେ
ସଂସାରଯାକ ବୋଲନ୍ତି କଳିହୁଡ଼ି ତୋତେ ।
ପୁରୁଷର ଆଶାଭଗ୍ନ କରନ୍ତି ଯେ ନାରୀ
ଜନ୍ମେ ଜନ୍ମେ ପାପ ତାଙ୍କ ଦେହେ ଥାଏ ଘାରି ।
ଶପଥ କରାଇ ତୁହି ମନ୍ଦ କଥା କହୁ
ସୁପଥେ ଛାଡ଼ି ଅମଡ଼ା ପଥ ମାଡ଼ିଯାଉ ।
ସୁପକ୍ୱ କରି ରନ୍ଧନ କରନ୍ତି ଯେ ନାରୀ
ସଂସାରେ ଲୋକେ ପ୍ରଶଂସା ତାହାରି ଉଚ୍ଚାରି ।
ଅନୀତି ବଚନ କହି ଲଗାନ୍ତି ଯେ କଳି
ରାନ୍ଧଣା ପାଗ ପକାଇ ପକାନ୍ତି ସେ ତୋଳି ।
ସଂସାରେ ତାହାର ନିନ୍ଦା କରନ୍ତି ସକଳେ
ଏ ବଚନ ଶୁଣି ଗଙ୍ଗା କାନ୍ଦନ୍ତି ବିକଳେ ।
ଋଷି ବୋଲନ୍ତି ଯେ ରହ ରହ ଗୋ ସଙ୍ଗାତ
କିମ୍ପାଇଁ ଲୋତକ ପୂର୍ଣ୍ଣ କରୁ ତୋର ନେତ୍ର ।
ବହୁତ କହିଲେ ଋଷି ଏମନ୍ତ ଆଶ୍ୱାସି
ଭୂମି ଉପରେ ଶୋଇଲେ ଗଙ୍ଗାଦେବୀ ରୁଷି ।
ଏମନ୍ତ ଦଶ ସହସ୍ର ବରଷ ରାଜନ
ସହିଲେ ଜାହ୍ନବୀଙ୍କର ତୁକାର ବଚନ ।
ସମୟେକ ଗଙ୍ଗାଦେବୀ ହେଲେ ଗର୍ଭବତୀ
ଅନେକ ଆନନ୍ଦ ହେଲେ ଦେଖି ମହାଯତି ।
ଉତ୍ସବ କଲେ ସେ ଗ୍ରହପୁତ୍ରଙ୍କୁ ହକାରି
ଦଶମାସ ସମ୍ପୂର୍ଣ୍ଣରେ ହେଲା ଗର୍ଭଭାରି ।
କନ୍ୟାମାସ ଶୁକ୍ଳପକ୍ଷ ନବମୀ ଯେ ତିଥି
ଶ୍ରବଣା ନକ୍ଷତ୍ର ପୁଣି ବାର ବୃହସ୍ପତି ।

ସେଦିନ ରାତ୍ର ହୋଇଛି ପଞ୍ଚଦଶ ଘଡ଼ି
ଗଙ୍ଗାର ଗର୍ଭରୁ ପୁତ୍ର ଏକ ଅବତରି ।
ଗଣ୍ଡଦୋଷ ନାସ୍ତି ଜାଣି ଶ୍ରବଣା ମକରେ
ପୁତ୍ର ଦର୍ଶନେ ଶାନ୍ତନୁ ପଶିଲେ ଭିତରେ ।
ସୁବର୍ଣ୍ଣ ପାତ୍ରରେ ଅର୍ଘ୍ୟ ସଜାଡ଼ିଣ ଘେନି
ଭିତର ପୁରକୁ ପଶିଯାନ୍ତି ମହାମୁନି ।
ଶାନ୍ତନୁ ଆସିବା ତାଙ୍କୁ ଦେଖି ମାହେଶ୍ୱରୀ
ପୁତ୍ରକୁ ଧରି ହାଣିଲେ ବେନି ଖଣ୍ଡ କରି ।
ନାରାୟଣ ନାରାୟଣ ବୋଲନ୍ତି ଶାନ୍ତନୁ
ବିମୁଖେ ବାହାର ହେଲେ ଆପଣା ଭୁବନୁ ।
କୋପେଣ ମହାତ୍ମା ଅତି ବିମୁଖ ହୋଇଲେ
ପଣ୍ଡିତ ସ୍ୱଭାବେ ପୁଣି କୋପେ ସଂହାରିଲେ ।
ଦଶମାସ ଗର୍ଭେ କଷ୍ଟେ ଧଇଲା ଯେ ଧାତା
ସେ ଯେବେ ସହି କାଟିଲା ଜାତ ପୁତ୍ର ମଥା ।
ଆମ୍ଭର ହିଁ କିସ ଗଲା ବୋଲି ବିଚାରିଲେ
ଏତେ ବି ବିଚାରି ମୁନି କିଛି ବୋଇଲେ ।
ଆମ୍ଭେ କୋପ କଲେ ଘରୁ ବାହାରି ସେ ଯିବ
ଘର ଖଣ୍ଡେ କରିଅଛୁ ଏକ୍ଷଣି ଭାଙ୍ଗିବ ।
ଏତେ ବୋଲି ସେ ମହାତ୍ମା କୋପକୁ ସଂହାରି
ଗଙ୍ଗା ସନ୍ନିଧ୍ୟେ ପ୍ରବେଶ ହୋଇଲେ ବାହୁଡ଼ି ।
ଅନେକ ମତେ ଖଟନ୍ତେ ପୁଣି ସେ ଜଞ୍ଜାଳି
ମହାମୁନିଙ୍କର ତୁଲେ ଲଗାଇଲେ କଳି ।
ଶାନ୍ତନୁଙ୍କୁ ପୂରାଇ ନ ଦେଲେ ପୁଣି କତି
କାମବାଣ ସଂହାରଣ କରି ବ୍ରହ୍ମଯତି ।
ଅନେକ ମତେ ଯେ ଚାଟୁକଥାମାନ ବୋଲି
କର୍ଣ୍ଣରେ ନ ଶୁଣି ତାଙ୍କୁ ପକାଇଲେ ପେଲି ।
ବାହାରି ସେ ପଳାଇଲେ ଆପଣା ଭୁବନୁ
କାମବାଣେ ଅଚେତନ ହୋଇଲେ ଶାନ୍ତନୁ ।
ଚିତ୍ରଲିଖନ ପିତୁଳି ଦେଖି ଅସମ୍ଭାଳ
ବିବସନ ହୋଇଯାଇ କଲେ ତାକୁ କୋଳ ।
ବିଚିତ୍ର ଗତି କରିଣ କୋଳକରୁ ଯତି
ଢାଳିଲା ଅମୋଘ ରେତ ପଡ଼ିଲାକ କ୍ଷିତି ।
ଋଷିର ଅମୋଘ ରେତ ବିନାଶ ନୋହିଲା
ଅଯୋନି ସମ୍ଭୂତ ପୁତ୍ର ଏକ ଉପୁଜିଲା ।
କୋଳେଣ ଶାନ୍ତନୁ ଯାଇଁ ଧରିଲେ ଆତ୍ମଜ
ବିଚିତ୍ରବୀର୍ଯ୍ୟ ତା ନାମ ଦେଲେ ମହାରାଜ ।
ଗଙ୍ଗାକୁ ଲୁଚାଇ ଘେନିଗଲେ ନିଶାରାତି
ଗଙ୍ଗାର ଉରେ ପାଳିଲେ ତାହା ସତ୍ୟବତୀ ।
ବଦନ୍ତି ଅଗସ୍ତି ଶୁଣ ମନୁଦଣ୍ଡଧର
ଏମନ୍ତେ ହେଲେ ବିଚିତ୍ରବୀର୍ଯ୍ୟ ଅବତାର ।

ପୁଣି ହିଁ ସେହି ସଂସର୍ଗ କଲେ ଗଙ୍ଗାତୁଲେ
ଗଙ୍ଗାଦେବୀ ଗର୍ଭବତୀ ପୁଣି ହିଁ ହୋଇଲେ ।
ମିଥୁନ ଶୁକ୍ଳ ପକ୍ଷେ ପୂର୍ଣ୍ଣମୀର ରାତି
ଉତ୍ତରାଷାଢ଼ା ନକ୍ଷତ୍ରେ ପୁତ୍ର ଉତପତ୍ତି ।
ପୁତ୍ର ଦେଖିବାକୁ ହର୍ଷେ ଗଲେ ତପୋନିଷ୍ଠ
ପୁତ୍ର ମୁଣ୍ଡ କାଟି ଗଙ୍ଗା କଲେ ତାକୁ ନଷ୍ଟ ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଶାନ୍ତନୁ ରାଜନ
ନାରାୟଣ ନାରାୟଣ ସ୍ମରି ତପୋଧନ ।
ଆତ୍ମଜ ନିଧନେ ବ୍ୟଥା ବହୁତ ପାଇଲେ
କ୍ରୋଧେ ଭର୍ତ୍ସନା କରିବା ବୋଲି ବିଚାରିଲେ ।
ପୁନରପି ବୋଇଲେ ଏ ମାତା ଗର୍ଭେ ଧରି
ଦଶମାସଯାଏ କେତେ କଷ୍ଟ ସହ୍ୟ କରି ।
ସେ ଯେବେ ସ୍ୱହସ୍ତେ ଜାତ କରି ନାଶକଲା
ଆମ୍ଭେ କିମ୍ପା ଗାଳିଦେବା ଆମ୍ଭର କି ଗଲା ।
ଏତେକ ବୋଲି ମହାତ୍ମା କୋପ ସଂହାରିଲେ
ଗଙ୍ଗାଙ୍କୁ ଆଶ୍ୱାସି ପୁଣି ବହୁତ ବୋଇଲେ ।
ମକର ମାସ ଯେ କୃଷ୍ଣ ପ୍ରତିପଦ ଦିନ
ଅଶ୍ଳେଷା ନକ୍ଷତ୍ର ସୋମବାର ବିଦ୍ୟମାନ ।
ସେଦିନ ଗଲେ ଯେ ଋଷି ମହୋଦଧି ସ୍ନାନେ
ଗଙ୍ଗାଦେବୀଙ୍କୁ ସଙ୍ଗତେ ନେଲେ ତପୋଧନେ ।
ପରାଶର ସତ୍ୟବତୀ ଗଲେ ସମୁଦ୍ରକୁ
ସଙ୍ଗେ ନେଇ ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟକୁ ।
ଚନ୍ଦ୍ରଭାଗା ସମୁଦ୍ରରେ ସ୍ନାନ କଲେ ପଶି
ବାଳପୁଅ ଘେନି ପରାଶର ମହାଋଷି ।
ଏମନ୍ତ ସମୟେ ଯାଇ ମିଳିଲେ ଶାନ୍ତନୁ
ଦୁଇ କୁମାର ବାହାର ହେଲେ ଜଳୋଦ୍ୟାନୁ ।
ଭୋ ପିତା ବୋଲି ଧଇଲେ ଶାନ୍ତନୁଙ୍କ ପାଦ
ଦେଖିଣ ସେ ଧବଳାଙ୍ଗୀ ପାଇଲେ ବିଷାଦ ।
ଗଙ୍ଗା ପଚାରିଲେ ଏହି କାହାର ତନୟ
ତୁମ୍ଭର ନନ୍ଦନ ପ୍ରାୟ ଦିଶନ୍ତି ଏ ଦୟ ।
ଉରେ ଶାନ୍ତନୁ ବୋଇଲେ ଆମ୍ଭର ନୁହଇ
ନ ପୁଣ ପୁତ୍ର ବୋଇଲେ ଏହାର ମାରଇ ।
ଏତେ ବିଚାରି ଯେ ତପୋନିଷ୍ଠ ଲୁଚାଇଲେ
ଏ ତୁମ୍ଭର ପୁତ୍ର ଦୁଇ ଜାହ୍ନବୀ ବୋଇଲେ ।
ଶାନ୍ତନୁ ବୋଇଲେ ଆମ୍ଭେ ତା ପାଇବୁ କାହିଁ
ତୋହର ତହୁଁ ଆମ୍ଭର ଆନ ଭାର୍ଯ୍ୟା ନାହିଁ ।
ଏହା ଶୁଣି କୋପ କଲେ ସେହି ସୁରେଶ୍ୱରୀ
ଭୂତ ଭବିଷ୍ୟତ ଜ୍ଞାନ ଅଛଇ ତାଙ୍କରି ।
କୋପେ ବୋଇଲେ ଶାନ୍ତନୁ ଲୁଚାଇଲୁ ମୋତେ
ଅପୁତ୍ରିକ ପୁଅ ତୋର ମରନ୍ତୁ ଏ ପୁତ୍ରେ ।

ଏହି ଅଭିଶାପ ଯହୁଁ ଦେଲେ ଧବଳାଙ୍ଗୀ
ପୁତ୍ରକୁ ଘେନିଣ ଗଲେ ପରାଶର ଯୋଗୀ ।
ପ୍ରବେଶ ହୋଇଲେ ଯାଇ ଯମପ୍ରସ୍ଥପୁରେ
ସ୍ନାନ କରିଣ ଶାନ୍ତନୁ ମିଳିଲେ ରାଜ୍ୟରେ ।
ଗଙ୍ଗା ଶାନ୍ତନୁଙ୍କର ବଢ଼ିଲା ପୀରତି
ସମୟେକ ଗଙ୍ଗାଦେବୀ ହେଲେ ଗର୍ଭବତୀ ।
ପଚାରନ୍ତି ପ୍ରେମରସ ବେଳେ ତପୋଧନ
କିମ୍ପାଇ କରୁ ଗୋ ପ୍ରିୟେ ପୁତ୍ରକୁ ନିଧନ ।
ଗଙ୍ଗା ବୋଇଲେ ମୋହର ସେ ଦୁଷ୍ଟ ପ୍ରକୃତି
ସଦ୍‌ଭାବ ନାହିଁ ମୋର ପତି ପୁତ୍ର ପ୍ରତି ।
ତୁଳ କୃଷ୍ଣ ତୃତୀୟା ଯେ ତିଥି ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ର ବେଳ ଦେଢ଼ ଯେ ପ୍ରହର ।
ପୁତ୍ର ଏକ ଉପୁଜିଲା ଗଙ୍ଗା ଗର୍ଭଗତେ
ପୁତ୍ର ମୁଖ ଦେଖିବାକୁ ଗଲେ ମୁନିବ୍ରତେ ।
ଋଷିଙ୍କୁ ଦେଖନ୍ତେ ଗଙ୍ଗା ଧଇଲେକ ଟେକି
ରହ ରହ ଗଙ୍ଗା ବୋଲି ଶାନ୍ତକୁ ଯେ ବୋଲି ।
କୋପେଣ ଖଡ଼ଗ ଏକ ଘେନି ଗୋସାମଣି
କରେ ଟେକି ଧରି ତାକୁ ପକାଇଲେ ହାଣି ।
ବାହୁଡ଼ିଲେ ଶିବ ଶିବ ବୋଲି ତପଚାରି
ସତ୍ୟଭଗ୍ନ ନିମନ୍ତେ ସେ ବୋଲି ତ ନ ପାରି ।
ପୁଣି ଗଙ୍ଗା ସମୟେକ ହେଲେ ଗର୍ଭବତୀ
ପୁତ୍ର ଏକ ଉପୁଜିଲା ମଦନ ଆକୃତି ।
ଋଷିଙ୍କର ଦେଖନ୍ତେ ସେ କଲା ଶିରଚ୍ଛେଦ
ଶାନ୍ତନୁ ବୋଇଲେ ପୁତ୍ର ବଡ଼ଇ ପ୍ରମାଦ ।
ଏମନ୍ତେ ଗଙ୍ଗାର ଷଡ଼ପୁତ୍ର ଉପୁଜିଲା
ଋଷିଙ୍କ ଅଗ୍ରତେ ତାହା ସବୁ ନାଶକଲା ।
ପୁଣି ହିଁ ସେ ସମୟେକ ହେଲେ ଗର୍ଭବତୀ
କିଛି ହିଁ ନ ବୋଲନ୍ତି ସେ ବ୍ରହ୍ମମହାଯତି ।
ଦଶମାସ ଭାର ସହି ନ ପାରିଲା ତନୁ
କୋଳ କରି ଆଶ୍ୱାସନା କରନ୍ତି ଶାନ୍ତନୁ ।
ଗଙ୍ଗା ବିଚାରନ୍ତି କଷ୍ଟ ଅନେକ ମୁଁ ଦେଲି
ଆମ୍ଭରୁ ଜାତ କରିଣ ପୁତ୍ରଙ୍କୁ ମାଇଲି ।
ଏତେ ବୋଲି ମୋତେ ମଧ୍ୟେ କୋପ ସେ ନ କଲା
ଭର୍ତ୍ସନା ନ କରି ମୋତେ ଗାଙ୍ଗୀ ନ ବୋଇଲା ।
ଛାଡ଼ିଯାଇ ନ ପାରଇ ବନ୍ଧା ସତ୍ୟବ୍ରତେ
ସତ୍ୟକୁ ଲଙ୍ଘି ମୁଁ ଏଥୁ ଯିବଇଁ କେମନ୍ତେ ।
ଏ ଘାନ୍ତି ପୁତ୍ର ଗୋଟି କି ଆଉ ନ ମାରିବି
ଭର୍ତ୍ସନା ନ ବୋଇଲେ ତୋଟେଟି କାଟିଦେବି ।
ଏସନକ ବିଚାରନ୍ତେ ହେଲା ଗର୍ଭ ଭାରି
ମହାବଳବନ୍ତ ପୁତ୍ର ସହିତ ନ ପାରି ।

ବୋଲନ୍ତି ସେ ମାହେଶ୍ୱରୀ ଶୁଣ ମହାରାୟ
ବଡ଼ ବଳବନ୍ତ ହେବ ଏ ତୁମ୍ଭ ତନୟ ।
ଋଷି ବୋଇଲେ ସୁନ୍ଦର ବଳିଷ୍ଠ ବା ହେଉ
ପ୍ରାପତ ଯେବେ ନୋହିବ ହେବ କିସ ଆଉ ।
ଏତେ ବୋଲି ବିଚାରନ୍ତି ନୃପତି ଶାନ୍ତନୁ
ଦଶମାସ ସମ୍ପୂର୍ଣ୍ଣ ଯେ ଆଳସ୍ୟ ସୁତନୁ ।
ବିଛା ମାସ କୃଷ୍ଣପକ୍ଷ ପ୍ରତିପଦା ଦିନ
ରୋହିଣୀ ନକ୍ଷତ୍ର ଭୃଗୁବାର ବିଦ୍ୟମାନ ।
ସିଦ୍ଧି ନାମେ ଯୋଗ ପୁଣି କରିଣ ବାଣିଜ୍ୟ
ରାତ୍ର ଯେ ପାଞ୍ଚଘଡ଼ିରେ ଉପ୍ତତ୍ତି ତନୁଜ ।
ପୁତ୍ର ଜନ୍ମ ହେବା ଶୁଣି ରାଜନ ମହର୍ଷି
ଅମୃତ ଯୋଗେ ଏ ପୁତ୍ର ଜାତ ହେଲା ଆସି ।
ରୋହିଣୀ ବୃକ୍ଷ ରାଶି ଯେ ହୋଇଲା ଏହାର
ବଳବନ୍ତ ଗୁଣବନ୍ତ ହେବ ଏ କୁମର ।
ଶୁକ୍ରଙ୍କ ବେଳେ ଉପ୍ତତ୍ତି ହେଲା ଏହି ବଳା
ବତିଶ ଗୁଣେ ସୁନ୍ଦର ପୂର୍ଣ୍ଣ ଷୋଳ କଳା ।
ପଞ୍ଚମରେ ଶନୈଶ୍ଚର କୋଣେ ବୃହସ୍ପତି
ରବି ପଞ୍ଚମରେ ଚନ୍ଦ୍ର ଏକାଦଶେ ଛନ୍ତି ।
ତୃତୀୟେ ହେ ରାହୁଗ୍ରହ କେତୁ ନବମରେ
ମଙ୍ଗଳ ଯେ ଦଶମରେ ଶୁକ୍ର ଚତୁର୍ଥରେ ।
ଷଷ୍ଠ ସ୍ଥାନେ ଗୁରୁ କ୍ଷେତ୍ରେ ବୁଧଗ୍ରହ ବସେ
ବାମେ ଯୋଗିନୀ ପୂରୁବ ଦିଗେ ଅଛି ମେଷେ ।
ଆଠ ଦଣ୍ଡରେ ଅଛଇ ଅମୃତ ଯେ ଯୋଗ
ଦୁଇଦଣ୍ଡ ଯାଇ ଚୌଦଦଣ୍ଡ ଅଛି ଭୋଗ ।
ପ୍ରଥମ ପାଦେ ଜନମ ହୋଇଲାକ ବାଳ
ଦେଖିଣ ଜାହ୍ନବୀ ତାକୁ ଧଇଲେକ କୋଳ ।
ଶାନ୍ତନୁ ବୋଇଲେ ବଡ଼ ବିଚକ୍ଷଣ ବଳା
ଜଗଜ୍ଜିତା ସୁଲକ୍ଷଣ ପୂର୍ଣ୍ଣ ଷୋଳ କଳା ।
ବୋଲନ୍ତି ଜାହ୍ନବୀ ଦେବୀ ଆସ କିନା ରାୟ
ଦେଖ କିନା ମୁନି ଏବେ ତୁମ୍ଭର ତନୟ ।
ଶାନ୍ତନୁ ବୋଇଲେ ଏହି ଅପ୍ରାପ୍ୟ ଆମ୍ଭଙ୍କୁ
ଆମ୍ଭେ ଦେଖନ୍ତେ ନ ସହେ ତୋହର ପୁଅକୁ ।
ଆସ ଆସ ମୁନି ଏବେ ଦେଖ କିନା ପୁତ୍ର
ଜୀବନ୍ତେ ପୁଣ୍ୟ ଆବର ମଲେ ହେବ ମୁକ୍ତ ।
ପୁତ୍ର ଗୋଟି ଉପୁଜଇ ଗର୍ଭୁ ଯେତେବେଳେ
ମୁଖ ଦେଖି ମାତା ପିତା ତରିଥାନ୍ତି କାଳେ ।
ଦ୍ୱିତୀୟେ ପିତା ତାହାର ଚାହିଁଲେ ବଦନ
ଜନ୍ମେ ଜନ୍ମେ ତୁଟଇ ତା ଅପୁତ୍ର ଲକ୍ଷଣ ।
ଜୀଉ ଅବା ମରୁ ସେହି ତାର ମନ୍ଦକର୍ମ
ପିତାଙ୍କୁ ମୁକତି ଦେଖାଯାଏ ତାର ଧର୍ମ ।

ଏମନ୍ତ କହୁଁ ବିଚାରି ଯେ ବିଜ୍ଞ ପଣ୍ଡିତ
ସ୍ୱର୍ଣ୍ଣପାତ୍ରେ ଅର୍ଘ୍ୟ ଘେନି ଧରି ବେନି ହସ୍ତ ।
ସୁବର୍ଣ୍ଣ ଦୀପରେ ଗୁଆଘୃତ ଯେ ପୂରାନ୍ତି
ନେତ ବଳିତାଏ ଦେଇ ଶ୍ରୀଫଳ ଘେନନ୍ତି ।
ଚଳନ୍ତି ସେହି ମହାତ୍ମା ପୁତ୍ର ଦେଖିବାକୁ
ପୁତ୍ରକୁ ନିରୀକ୍ଷି ଚଳିଯାନ୍ତି ଭିତରକୁ ।
ଅନ୍ତୁଡ଼ି ଘରେ ପଶିଲେ ଯାଇ ସୋମବଂଶୀ
ପୁତ୍ର କୋଳେ ଘେନି ଗଙ୍ଗାଦେବୀ ଛନ୍ତି ବସି ।
ଦେଖ ହୋ ମହାତ୍ମା ଏବେ ଏ ମୋହର ପୁତ୍ର
ଅର୍ଘ୍ୟ ଘେନି ନିରେଖନ୍ତି ସେ ପୁତ୍ରର ଗାତ୍ର ।
ଦେଖନ୍ତେ ଘେନିଲେ ଗଙ୍ଗା କରରେ କଟାରୀ
ସେ ପୁତ୍ର ଗୋଟିକି ଧରି ଲୋଡ଼ନ୍ତେଣ ମାରି ।
ଗଙ୍ଗାର ହସ୍ତକୁ ଯାଇ ଧରନ୍ତି ଶାନ୍ତନୁ
ଆଲୋ କେତେ ପୁତ୍ର ନାଶ କଲୁଣି ସୁତନୁ ।
ଷଡ଼ ପୁତ୍ର ମାରି ତୋର ନ ପୁରେ ଅଭୀଷ୍ଟ
ଆଲୋ ଆଲୋ ଗାଙ୍ଗୀ ତୁହି ଏଡ଼େ ମନ୍ଦ ଦୁଷ୍ଟ ।
ଯେତେ ଅଛନ୍ତି ସଂସାରେ ଦୋଷୀ ଅପବିତ୍ର
ସବୁରି ପାତକ ପଡୁ ତୋ ମୁଣ୍ଡରେ ନିତ୍ୟ ।
କୁଠାର ଘେନିଲେ ରୋଷେ ଚାପୋଡ଼େଇ ମାରି
ପେଲି ପକାଇ ପୁଅକୁ ଘେନିଲେ ଉଚ୍ଛୁଡ଼ି ।
ଗଙ୍ଗା ଉସତ ହୋଇଲେ ଶାନ୍ତନୁ ବଚନେ
ସତ୍ୟ ଏବେ ପୂରିଲା ତ ଯାଉଛି ହେ ମୁନେ ।
ଏତିକି ବୋଲିବାକୁ ମୁଁ ବାଟ ଚାହିଁଥିଲି
ଗାଙ୍ଗୀ ବୋଲିବା ନିମନ୍ତେ ଛ' ପୁତ୍ର ମାଇଲି ।
ଏତେ ବୋଲି ଦେବୀ ତହୁଁ ଉଠିଲେ ବହନେ
ପୁତ୍ର ଛାଡ଼ି ଗଙ୍ଗାଦେବୀ ଯାନ୍ତି ତୋଷମନେ ।
ଶାନ୍ତନୁ ଉଠି ଧଇଲେ ଯାଇଁ କୋଳ କରି
ନିଶ୍ଚୟ ଯେବେଟି ବ୍ରତ ପୂରିଲା ତୋହରି ।
ଏ ଯେ ଅତ୍ୟନ୍ତ ବାଳୁତ ଜାତ ପୁତ୍ର ତୋର
କେମନ୍ତେ ବର୍ତ୍ତିବ କହ ନ ପାଇଲେ କ୍ଷୀର ।
ଲେଉଟି ଚାହିଁଣ ତାକୁ ଜାହ୍ନବୀ ବୋଇଲା
ଜୀଇଁଲେ ଜୀଉଁ ସେ ମଲେ ମରୁ କିସ ଗଲା ।
ଅନୁରାଗେ କୋଳ କରି ଧଇଲେ ଯେ ମୁନି
ରାଗେ ପେଲି ପକାଇଲେ ତାଙ୍କୁ କାତ୍ୟାୟନୀ ।
ତୁ ହୋ କିମ୍ପାଇ ଆବର ମୋତେ ଆସି ଧରୁ
ବ୍ରତ ପୂରିଲା ହୋଇଲି ମୁହିଁ ତୋର ଗୁରୁ ।
ସତ୍ୟ ମାନିଥିଲୁ ଯେତେଦିନ ପରିଯନ୍ତେ
ଭୃତ୍ୟପଣେ ସେବା ମୁହିଁ କରିଥିଲି ତୋତେ ।
ଗଙ୍ଗା ବୋଲୁଥାଇ ଗାଙ୍ଗୀ ବୋଲୁ ଯେ ନ ଥାଇ
ଗାଙ୍ଗୀ ବୋଇଲୁ ଯାଉଛି ମୁଁ ବ୍ରତ ପୂରାଇ ।
ମାତା ଏବେ ମୁଁ ତୋହର ତୁହି ମୋର ପୁଅ
ଗୁରୁପତ୍ନୀ କି କିମ୍ପାଇଁ ଇଚ୍ଛୁ ମହାରାୟ ।
ଏ ପୁତ୍ର ଆତ୍ମାରୁ ଜାତ ହେବ ଯେଉଁ ପୁତ୍ରେ
ଭୋ ଶାନ୍ତନୁ ତୋର ଶିର ଛେଦ ତାଙ୍କ ହସ୍ତେ ।
ଡରେ ଛାଡ଼ନ୍ତେ ଶାନ୍ତନୁ ଦେବୀ କାତ୍ୟାୟନୀ
ତକ୍ଷଣେ ଜଳେ ପଶିଲେ ଜଗତ ପାବିନୀ ।
ପୁତ୍ର ଗୋଟି ଘେନି ଋଷି ବିସ୍ମୟ ହୋଇଲେ
ବିଚାରିଣ ପୁତ୍ର ନାମ ଭୀଷ୍ମ ବୋଲି ଦେଲେ ।
ଜୀଉଁ ଅବା ମରୁ ବୋଲି ଗଙ୍ଗା ଯେ ବୋଇଲା
ତେଣୁ ଭୀଷ୍ମଙ୍କର ଇଚ୍ଛାମୃତ୍ୟୁ ଯେ ହୋଇଲା ।
ପରାଶର ଭୂରିଶ୍ରବା ଶାନ୍ତନୁର ଭ୍ରାତ
ପରାଶର ବୀର୍ଯ୍ୟେ ବ୍ୟାସ ହୋଇଲେ ସମ୍ଭୁତ ।
ବିଚିତ୍ରବୀର୍ଯ୍ୟ ଯେ ଚିତ୍ରାଙ୍ଗଦ ବେନି ଭାଇ
ଆବର ଭୀଷ୍ମ ଶାନ୍ତନୁଠାରୁ ଜାତ ହୋଇ ।
ଶାନ୍ତନୁ ମହାଋଷିଙ୍କ ଏ ତିନି ସନ୍ତତି
ଆଦି କୁରୁସୈନ୍ୟ ଏଥୁ ହୋଇଲେ ଉତ୍ପତ୍ତି ।
ଜୟ ତୁ ଝଙ୍କଡ଼ବାସୀ ଶ୍ରୀ ଚଣ୍ଡୀ ଶାରଳା
ଜୟ ମହେଶ୍ୱରୀ ମାଗୋ ଜୟ ତୁ ହିଙ୍ଗୁଳା ।
ପ୍ରସନ୍ନ ହୋଇଣ ମୋତେ ପଦ ଦିଅ କହି
ଶୂଦ୍ର ମୁନି ଶ୍ରୀ ଶାରଳା ଦାସ ଅଟେ ମୁହିଁ ।

—o—

## ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦର ବିବାହ

ଏଥିଉତ୍ତାରୁ ଯେ ପୁଣି ଅଗସ୍ତି କହନ୍ତି
ମନଦେଇ ଶୁଣ ତୁ ହୋ ମନୁ ନରପତି ।
ଭରଦ୍ୱାଜର ନନ୍ଦିନୀ ନାମ ପଦ୍ମାବତୀ
ବ୍ୟାସେ ବିଭାହେଲେ କନ୍ୟାନିଧି ରତ୍ନକାନ୍ତି ।
ପଦ୍ମଦଳ ଦେଶର ଯେ ରାଜା ପଦ୍ମନାଭ
ପଞ୍ଚଭୂତେ ଲୟ କରେ ସେହି ବାସୁଦେବ ।
ଦାନେ ଅତି ପୁଣ୍ୟବନ୍ତମାନେ ଚକ୍ରବର୍ତ୍ତୀ
ଜ୍ଞାନେ ପଣ୍ଡିତ ସକଳ ହିତେ ସେହି ବର୍ତ୍ତି ।
ତାହାର ନଗରେ କେହି ଅଧର୍ମ ନ ଭାଷି
ସତକ୍ରିୟା ରତ ଯୋଗଜ୍ଞାନେ ସିଦ୍ଧି ଋଷି ।
ସାଗରେକ ରଥି ବେନି ସାଗର ଯେ ହସ୍ତୀ
ଶତ ପାରିଦଣ୍ଡ ସାତ ସାଗର ପଦାତି ।
ସୁନାଭ ଯେ ସୁଉନାଭ ବ୍ରହ୍ମନାଭ ବୀର
ଯୋଗନାଭ ସୁବଳୟାନାଭ ହିଁ ଆବର ।
ଜୟନାଭ ସମନାଭ ଭଗନାଭ ହେଲା
ମଳୟନାଭ ହେ ନୀଳନାଭ ବୋଲାଇଲା ।
ଅରୁଣନାଭ ବରୁଣନାଭ ହେଲା ପୁଣି
ଗଗନାଭ ଓ ଅନଳାନାଭ ଏହି ବେନି ।

ଏମନ୍ତେ ପଦ୍ମନାଭର ଶତେକ ସନ୍ତତି
ପଦ୍ମନାଭ ସେହି ବଂଶେ ଅଟେ ମହାକ୍ଷତ୍ରୀ ।
ଶତେକ ପୁତ୍ର ତାହାର ଚାରୋଟି ଦୁହିତା
ମଳୟବତୀ ଅଟଇ ତାହାଙ୍କର ମାତା ।
ତାହା ତହୁଁ ଉପୁଜିଲେ ଯେ ଚାରି କୁମାରୀ
ଅମ୍ବା ଅମ୍ବାଳି ଅମ୍ବିକା ଅମ୍ବାଳିକା ଚାରି ।
ଗନ୍ଧର୍ବ ଅଂଶେ ସମ୍ଭୂତା ସର୍ବ ବିଦ୍ୟାଧାରୀ
ତାହାଙ୍କ ରୂପକୁ ନାହିଁ ତ୍ରୈଲୋକ୍ୟରେ ସରି ।
ବିଚିତ୍ରବୀର୍ଯ୍ୟ ଯେ ପୁଣି ଶାନ୍ତନରୁ ବଳା
ଅମ୍ବିକା ତାହାକୁ ମାଳା ଦେଇଣ ବରିଲା ।
ଶୁଭଯୋଗେ ଏ କନ୍ୟାକୁ କରିବି ପ୍ରଦାନ
ବୋଇଲାକ ନରପତି ସଂକଳ୍ପ କରିଣ ।
ମକର ଶୁକ୍ଳ ଚଉଠି ରୋହିଣୀ ନକ୍ଷତ୍ରେ
ସୋମବାର ଶୁଭଯୋଗ ଧଇଲେ ପଣ୍ଡିତେ ।
ସାତ ଘଡ଼ିମାନେ କଲେ ବିଭା ଅନୁକୂଳ
ଅନେକ ଆନନ୍ଦେ କଲେ ଉତ୍ସବ ମଙ୍ଗଳ ।
ଅନେକ ସମ୍ଭାରେ ସୋମବଂଶ ନରପତି
ବର ସଙ୍ଗରେ ଚଳନ୍ତି ଘେନି ବରଜାତି ।
ଅନେକ ବୀର ତୂର ଯେ ଦଣ୍ଡ ପାତ୍ରଛତ୍ର
ଚଳନ୍ତି ସଇନି ଘେନି ଗଜ ଅଶ୍ୱରଥ ।
ପରାଶର ସତ୍ୟବତୀ ଘେନି ଭୁରିଶ୍ରବା
ଶାନ୍ତନୁ ଅନେକଦେଶୁଁ ଘେନି ରାଜ ଦେବ ।
ପ୍ରବେଶ ହୋଇଲେ ଯାଇ ପଦ୍ମ ଦଳଦେଶେ
ବିଚିତ୍ରବୀର୍ଯ୍ୟ କୁମର ବିଜେ ବରବେଶେ ।
କଶ୍ୟପ ଗୋତ୍ର ଯେ ପଦ୍ମନାଭ ନରପତି
ସୋମବଂଶେ ଜାତ ପୁଣି ଶାନ୍ତନୁ ଭୂପତି ।
ବରଣ କଲେ କଶ୍ୟପ ମୁନି ପୁରୋହିତ
ବିଭା କରନ୍ତି ଉଚ୍ଚାରି ଦୁଇକୁଳ ଗୋତ୍ର ।
ଏସନ ପ୍ରଦାନ କଲେ ନୃପତି କୁମାରୀ
ଅନେକ ଯେ ଯଉତୁକ ଦେଲେ ବିଭା ସାରି ।
ମହାମନ୍ତ୍ରେ ବିପ୍ରେ କଲେ ପ୍ରତିଷ୍ଠା ସମ୍ମତ
ପାରଣ କରନ୍ତି ଗୃହେ ବର କନ୍ୟା କୃତ ।
ବିଭା ସାରି ବରକନ୍ୟା ଗଲେ ନିଜ ପୁରେ
ଭୋଜନ ଯେ ଆଚମନ ଶୟନ ମନ୍ଦିରେ ।
ଏସନକ ବରକନ୍ୟା ବିଭା ହୋଇସାରି
ରାଜାଏ ଭୋଜନ କଲେ ଷଡ଼ରସ ଭୂରି ।
ବର କନ୍ୟାଙ୍କର ବିଭା ବଢ଼ାଇ ନୃପତି
ଚଳନ୍ତି ଆନନ୍ଦେ ସୋମବଂଶ ନରପତି ।
ବିଚିତ୍ରବୀର୍ଯ୍ୟର ଭାଇ ନାମ ଚିତ୍ରାଙ୍ଗଦ
ପଦ୍ମନାଭ ତାର ରୂପ ଦେଖିଣ ଆନନ୍ଦ ।

ଅମ୍ବାଳିକା ଅମ୍ବିକାର କନିଷ୍ଠା ଭଉଣୀ
ଚିତ୍ରାଙ୍ଗଦକୁ ପ୍ରଦାନ କଲା ନୃପମଣି ।
କନ୍ୟାକୁ ଘେନିଣ ଆସି ନୃପତି ଶାନ୍ତନୁ
ପ୍ରବେଶ ମହାତ୍ମା ଗୃହେ ତା ନିଜ ଭୁବନୁ ।
ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ବିଚିତ୍ରବୀର୍ଯ୍ୟ ଯେ ଚିତ୍ରାଙ୍ଗଦା ବିଭାଉକ୍ତି ।
ବିଳସନ୍ତି ସେ କନ୍ୟାକୁ ଘେନିଣ କୁମାରେ
ସନ୍ତାନ ଜାତ ନୋହିଲା ତାହାଙ୍କ କୋଳରେ ।
ଦେଖିଣ ବିରସ ହେଲେ ଶାନ୍ତନୁ ମହର୍ଷି
ଗଙ୍ଗାଦେବୀ ସାକ୍ଷାତରେ ଅଟେ ପରମେଷ୍ଠୀ ।
ବିଶେଷ ମାହେଶ୍ୱରୀ କେ ଆରବ ହିଁ ମାତା
ତାର ଶାପ ଫଳିଲା ଯେ ନୋହିଲା ଅନ୍ୟଥା ।
ଏମନ୍ତ ମନେ ବିଚାରି ସେହି ତପୋନିଷ୍ଠ
କେମନ୍ତ ଏ ପୁତ୍ରଙ୍କର ଯିବ ପୁତ୍ର କଷ୍ଟ ।
ପୁଣି ପୁଣି ବିଚାରନ୍ତି ଶାପ ମେଣ୍ଟିବାକୁ
ବୃଦ୍ଧି କରନ୍ତି ଡକାଇ ଆଣି ବ୍ରାହ୍ମଣଙ୍କୁ ।
ଅନେକ ଯାଗ ଯଜ୍ଞ ଯେ ବ୍ରାହ୍ମଣ ବରଣ
କଲେ ତଥାପି ସେ ଶାପ ନ ଗଲା ମେଣ୍ଟିଣ ।
ଅପୁତ୍ରିକ ଚିତ୍ରାଙ୍ଗଦ ସେ ବିଚିତ୍ରବୀର୍ଯ୍ୟ
ସନ୍ତାନ ବିହୀନେ ବଂଶ ହୋଇଲା ଦହିର୍ଯ୍ୟ ।
ବିଚାରନ୍ତି ସେ ମହାତ୍ମା ସୋମ ବଂଶପତି
ଭୀଷ୍ମଙ୍କୁ ଚାହିଁଣ ମହାରକ୍ଷି ପଚାରନ୍ତି ।
ତୁ ବାବୁ ବିବାହ କରି ଗୋଟିଏ କୁମାରୀ
ବଂଶ ରକ୍ଷା କର ବାବୁ ପୁତ୍ର ଜାତ କରି ।
ଏତେକ ବିଚାର କରି ସେହି ମହାଯତି
ଭୀଷ୍ମଙ୍କ ପାଇଁ ଲୋଡ଼ନ୍ତି କନ୍ୟା ରୂପବତୀ ।
ଅମ୍ବାନାମେ ଯେଉଁ କନ୍ୟା ଯେ ପଦ୍ମନାଭର
ତାକୁ ସ୍ୱୟମ୍ବର କର ଡାକି ନୃପବର ।
ଲକ୍ଷେ ରାଜାଙ୍କୁ ବରଣ କରି ଗୃହେ ଆଣି
ସଭାରେ ବସିଲେ ଆସି ସକଳ ନୃପମଣି ।
ପଦ୍ମନାଭ ତାହାଙ୍କୁ ଯେ ଗଉରବ କଲେ
ଆରମ୍ଭେ ମିଳିଲେ ତହିଁ ସର୍ବ ମହୀତଳେ ।
ସମସ୍ତ ରାଜାଙ୍କୁ ସେହି ଦେଇଣ ମଣୋହି
ଅଶ୍ୱ ବଳଙ୍କ ଚରଚା କଲା ନରସାଇଁ ।
ଛାୟା ମଣ୍ଡପ ଏକ କଲା ଦ୍ୱାଦଶ ଯୋଜନ
ତା ଉପରେ ବିଜେ କଲେ ସମସ୍ତ ରାଜନ ।
ଆସିଛନ୍ତି ଚାରିଗୁଣା ଲକ୍ଷେକ ନୃପତି
ଅନେକ ସମ୍ପଦ ଘେନି ସେ ବସି ଅଛନ୍ତି ।
ବୋଲନ୍ତି ଅଗସ୍ତି ଶୁଣ ଆହେ ଯୁଗସାଇଁ
ଶାନ୍ତନୁଙ୍କୁ ଚାରଗଣ ନିମନ୍ତ୍ରିଲେ ଯାଇ ।

ଅନେକ ଉତ୍ସବେ ତାକୁ କଲେ ନିମନ୍ତ୍ରଣ
ଭୀଷ୍ମ ବୋଇଲେ ହୋ ଶୁଣ ଶୁଣ ଚାରଗଣ ।
ପଦ୍ମନାଭ ନରପତି ମନ୍ଦକୃତ୍ୟ କଲା
ଆମ୍ଭର ଦୁଇ ଭାଇଙ୍କୁ ଦୁଇକନ୍ୟା ଦେଲା ।
ଆଉ ଏକ କନ୍ୟା ଯେବେ ଥିଲାଟି ତାହାର
ଆମ୍ଭଙ୍କୁ ସେ କନ୍ୟା ଦାନ କର ଦଣ୍ଡଧର ।
ଏମନ୍ତ ବାରତା ଘେନି ଚାରଗଣ ଗଲେ
ପଦ୍ମଦଳ ଦେଶରୁ ସେ ପୁଣି ବାହୁଡ଼ିଲେ ।
ପଦ୍ମନାଭ ରାଜା ଆଗେ କହିଲେ ସେ ଚାର
ଭୋ ଦେବ ବିନାଶ କଲା ତୋର ଆଡ଼ମ୍ବର ।
ଅନେକ ଦେଶ ନିମନ୍ତ୍ରି ଆମ୍ଭେ ବେଗେ ଗଲୁ
କୁଞ୍ଜଗଳ ଦେଶେ ଯାଇ ପ୍ରବେଶ ହୋଇଲୁ ।
ଶାନ୍ତନୁଙ୍କୁ ନିମନ୍ତ୍ରନ୍ତେ ପୁଷ୍ପମାଳା ଦେଇ
ଭୀଷ୍ମେ ଏମନ୍ତ ବୋଇଲେ ଆମ୍ଭକୁ ବସାଇ ।
ଆମ୍ଭର ଦୁଇ ଭାଇଙ୍କୁ ଦୁଇକନ୍ୟା ଦେଲା
ଆଉ କନ୍ୟା ପାଇଁ ମୋତେ କିମ୍ପା ନ ବରିଲା ।
ଆହୋ ଚାରଗଣ ଏବେ କହ ତୁମ୍ଭେ ଯାଇ
ଅମ୍ବା କନ୍ୟାକୁ ବୋଇଲା ଭୀଷ୍ମେ ଦେବାପାଇଁ ।
ଶୁଣିଣ ବିରସ ଯେ ହୋଇଲେ ନରସାଇଁ
କାହାକୁ ନ କହି ଏହା ଗୋପ୍ୟକର ତୁହି ।
ଲକ୍ଷେକ ରାଜାଙ୍କୁ ଡାକି କଲେ ସ୍ୱୟମ୍ବର
ଆରମ୍ଭେ ବସିବେ ଆସି ସର୍ବ ନୃପବର ।
ଅଣାଇବି ସ୍ୱୟମ୍ବର ହେବାର ନିମନ୍ତେ
ନାସ୍ତି କଲେ ରାଜା ଏ କି ପ୍ରାଣଦେବ ମୋତେ ।
ଶୁଣିଣ ସେ ଚାରଗଣ ହେଲେ ମନେ ତୁଷ୍ଟି
ବହନ କରି ସଭାକୁ ଆଣେ କନ୍ୟାଗୋଟି ।
ମାଗୋ ରାଜାଙ୍କୁ ନିମନ୍ତ୍ରି ତୋହର ନିମନ୍ତେ
ବରବେଶ ହୋଇ ବସିଛନ୍ତି ନରନାଥେ ।
କନ୍ୟାକୁ ଦେଖନ୍ତୁ ସ୍ୱୟମ୍ବରର ବିଧାନେ
ମାଳଦେଇ ବର ମାଗୋ ଯାହାକୁ ତୋ ମନେ ।
ଏସନ ସମୟେ ତହିଁ ଭୀଷ୍ମଙ୍କର ଦୂତ
ମନମଥ ସେନାପତି ଚଢ଼ି ଏକ ରଥ ।
ସ୍ୱୟମ୍ବର ସ୍ଥାନେ ଯାଇ ପ୍ରବେଶ ମନ୍ମଥ
ବୋଲନ୍ତି ଆମ୍ଭେ ଯେ ଅଟୁ ଭୀଷ୍ମଙ୍କର ଦୂତ ।
ଯେଉଁ କନ୍ୟା ପାଇଁ କରୁଅଛୁ ସ୍ୱୟମ୍ବର
ଭୀଷ୍ମଙ୍କୁ ସେ ଅମ୍ବା କନ୍ୟାଗୋଟି ଦାନ କର ।
ପଦ୍ମନାଭ ରାଜା ବୋଲେ ଭୀଷ୍ମ ମହାକ୍ଷତ୍ରୀ
ଜାଣିଥିଲେ କିମ୍ପା ସ୍ୱୟମ୍ବର ମୁଁ କରନ୍ତି ।
ଦେଖ ସ୍ୱୟମ୍ବର କଲି ଲକ୍ଷେ ରାଜା ଆଣି
ଏହା କେ ଭାଙ୍ଗିପାରିବ କୁହ ଏହିକ୍ଷଣି ।

ମନ୍ମଥ ବୋଇଲେ ତୁମ୍ଭେ ଶୁଣ ରାଜାମାନେ
ତୁମ୍ଭେ ଯେ ଅଇଲ ସ୍ୱୟମ୍ବରର ବିଧାନେ ।
ଏହି ପଦ୍ମନାଭ ରାଜା ବେନି କୁମାରୀଙ୍କୁ
ବିଭା ଦେବେ ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟଙ୍କୁ ।
ଏ ଅମ୍ବା କନ୍ୟାକୁ ଏବେ ଭୀଷ୍ମଙ୍କୁ ଯେ ଦେବ
ଏ କନ୍ୟାକୁ ଏବେ ବିଭା ଗାଙ୍ଗେୟ ହୋଇବ ।
ତୁମ୍ଭେ ହୋ ଏବେ ବିଚାର କର ରାଜାଗଣ
ଭୀଷ୍ମ ବିଜୟ କରିବେ ଆସି ଏହିକ୍ଷଣ ।
ଯେବେ ଅବା ତୁମ୍ଭେ ଆଜ୍ଞା କରିବ ଅବଜ୍ଞା
ଭୀଷ୍ମଙ୍କ ଆଗେ ତୁମ୍ଭର କିସ ସେ ପ୍ରତିଜ୍ଞା ।
ଏହା ଶୁଣିଣ ସମସ୍ତ ରାଜା ଭୟ କଲେ
ଭୀଷ୍ମଙ୍କ ଆଗତ ଜାଣି ସଭାରୁ ଉଠିଲେ ।
ସମସ୍ତେ ବୋଇଲେ ପଦ୍ମନାଭ ମୁଖ ଚାହିଁ
ଆମ୍ଭେ ଯାଉଅଛୁ ଏବେ ଯେ ଯାହାର ଭୂଇଁ ।
ତୋ କନ୍ୟାକୁ ପ୍ରଦାନ ତୁ କର ହୋ ଭୀଷ୍ମଙ୍କୁ
ଗାଙ୍ଗେୟର ଭୟ ଏବେ ଲାଗିଲା ଆମ୍ଭଙ୍କୁ ।
ପଦ୍ମନାଭ ବୋଇଲା ମୁଁ ବରିଲି ତୁମ୍ଭନ୍ତ
ତୁମ୍ଭେମାନେ କାହିଁପାଇଁ କହୁଛ ଏମନ୍ତ ।
ରାଜାଏ ବୋଇଲେ ଆହେ କାହାର ସାହସ
କେମନ୍ତେ ଜଳନ୍ତାନଳେ ଦେବା ଆମ୍ଭେ ଝାସ ।
ଏମନ୍ତ ବୋଲୁ ରାଜାଙ୍କୁ ଲାଗିଲା ଯେ ଭୟ
ସ୍ୱୟମ୍ବର ଭଗ୍ନ କରି ପଳାଇଲେ ରାୟ ।
ସଭା ଭଗ୍ନ କରି ଗଲେ ସକଳ ନୃପତି
ପାଇଲେ ଅନେକ ଅପମାନ ଅପଖ୍ୟାତି ।
ପଦ୍ମନାଭ ରାଜା ତହୁଁ ବୋଇଲା ଆନନ୍ଦେ
ଭୀଷ୍ମଙ୍କୁ କନ୍ୟା ଦେବଇଁ ଏଥର ସ୍ୱଚ୍ଛନ୍ଦେ ।
ଗଙ୍ଗାର ନନ୍ଦନ ମୋର ହୋଇବ ଜ୍ୱାଆଁଇ
ଏହାହୁଁ ଭାଗ୍ୟ ଆବର ପାଇବଇଁ ନାହିଁ ।
ଦୁହିତାକୁ କୋଳେ ଧରି ବୋଇଲେ ରାଜନେ
ଅନେକ ପୁଣ୍ୟ ଗୋ ତୋର ସାଧୁ ଏ ଜୀବନେ ।
ଗଙ୍ଗାର ନନ୍ଦନ ତୋର ହୋଇବ ଯେ ବର
ପଞ୍ଚ କଟକେ ଅଟଇ ସେହି ଯେ ଠାକୁର ।
ଅମର ବର ପାଇଛି ଯାର ମୃତ୍ୟୁ ଇଚ୍ଛା
ଜଗତଜେତା ନାଥ ସେ ଶାନ୍ତନୁର ବଚ୍ଛା ।
ଅନେକ ଉତ୍ସବ ରାଜ୍ୟେ କରେ ରାଜାସାଇଁ
ପରମାନନ୍ଦେ ଲୋକଙ୍କୁ ଦିଅଇ ବଧାଇ ।
ଏସନକ ରସମୟ ଜଣାଇ ନୃପତି
ମନ୍ମଥ ସେନାପତି କି ବୋଲେ ଚକ୍ରବର୍ତ୍ତୀ ।
ବହନ ହୋଇ ତୁ ଯାଇଁ କହ ଶାନ୍ତନୁଙ୍କୁ
ସତ୍ୟ କଲି କନ୍ୟା ମୁହିଁ ଦେବଇଁ ଭୀଷ୍ମଙ୍କୁ ।

ପ୍ରତ୍ୟକ୍ଷେ ଦେଖିଲୁ ଭାଙ୍ଗିଗଲା ସ୍ୱୟମ୍ବର
ଭୀଷ୍ମଙ୍କୁ ବେଦଙ୍ଗ ସତ୍ୟ ସତ୍ୟ ଏ ମୋହର ।
ଆଜ୍ଞା ପ୍ରମାଣେ ସନ୍ତୋଷେ ଗଲା ଦୂତପତି
ଭୀଷ୍ମଙ୍କ ଛାମୁରେ ଯାଇ ପ୍ରବେଶ ତଡ଼ତି ।
କରପତ୍ର ଯୋଡ଼ି ସେନାପତି ଯେ କହିଲା
ତୋ ଆଜ୍ଞାରେ ଦେବ ସ୍ୱୟମ୍ବର ଭାଙ୍ଗିଗଲା ।
ଅନେକ ହରଷ ହେଲା ତୋର ନାମ ଶୁଣି
ଆପଣା ରାଜ୍ୟେ ଉତ୍ସବ କଲା ନୃପମଣି ।
ବହନ ଯିବା ଯେ ସଜ ହୁଅନ୍ତୁ ସଇନ୍ୟ
ପୁରୋହିତଙ୍କୁ ହକାରି ଅନୁକୂଳ ଘେନ ।
ଅମୃତ ଯୋଗ ମକର ଶୁକଳ ସପ୍ତମୀ
ଅନୁକୂଳ କରନ୍ତୁ ଭୋ କୁରୁରାଜ୍ୟ ସ୍ୱାମୀ ।
ବାହୁଡ଼ାଇ ପୁନରପି ପେଶିଲେକ ଦୂତ
ମକର ଶୁକ୍ଳସପ୍ତମୀ ଯୋଗ ଯେ ଅମୃତ ।
ଚାରଗଣ କହିଲେ ଯେ ପଦ୍ମନାଭ ଆଗେ
ମଣ୍ଡଳ ଘେନିଣ ରାଜା ଅନୁକୂଳ ଯୋଗେ ।
ବରବେଶ ହୁଅନ୍ତି ସେ ଭୀଷ୍ମ ମହାରଥି
ଗଙ୍ଗାର ଉଦକ ଶିରେ ଘେନିକରି ଭକ୍ତି ।
ନ ପଢ଼ି ଶିଖିଲେ ସେହୁ ଅକ୍ଷର ଲିଖନ
ଗୁରୁ ବିହୀନେ ଶିଖିଲେ ସର୍ବ ବିଦ୍ୟା ଜ୍ଞାନ ।
ମନ୍ତ୍ର ଶାସ୍ତ୍ର ବିଦ୍ୟାକୁ ସେ କରନ୍ତି ଉକତ
ଅଗୁରୁ ବିଦ୍ୟା ଶିଖିଲେ ଭୀଷ୍ମ ମହାରଥ ।
ବିଭାଯୋଗ ଘେନି ସଜ ହୁଅନ୍ତି କୁରୁବୀରେ
ଶୁଭଯୋଗ ଦିଅନ୍ତି ସେ ଋଷି ପରାଶରେ ।
ଭୀଷ୍ମ ଚଳିଲେ ପରଶୁରାମଙ୍କ ସହିତେ
ରାଜଋଷି ବ୍ରହ୍ମଋଷି ଅଛନ୍ତି ତ ଯେତେ ।
ବଳରାମ ବଳରାମ ନୀଳରାମ ଘେନି
ରଘୁରାମ ଅଇଲେ ଏ ଭାଇ ଚାରି ପୁଣି ।
ବିଶ୍ୱାମିତ୍ରଙ୍କ ସହିତେ ଯେତେ ବ୍ରହ୍ମଚାରୀ
ଅଇଲେ ସର୍ବେ ବରୁଣାବନ୍ତ ନାମେ ପୁରୀ ।
ପାରେଶ୍ୱର ରାଜାଙ୍କ ଯେ ନିର୍ଝର ଭୂପତି
ଋତୁପର୍ଣ୍ଣ ସଦାନନ୍ଦ ବୀର ଚକ୍ରବର୍ତ୍ତି ।
ଅରୁଣସେନ ମାଧବସେନ ନରରାୟ
ବିକର୍ଣ୍ଣସେନ ଆବର ଯେତେକ ଆତ୍ମୀୟ ।
ବନ୍ଧୁଯୋଗୁଁ ଯେ ଯାହାର ଦଣ୍ଡ ଘେନିଆସେ
ବାରୁଣାବନ୍ତେ ପ୍ରବେଶ ହୁଅନ୍ତି ହରଷେ ।
ଶାନ୍ତନୁ ରାଜାଙ୍କ ଦ୍ୱାରେ ବାଜେ ବୀରତୁର
ଅନେକ ଥାଟ ସଇନି ଘେନିଣ ସମ୍ଭାର ।
କରନ୍ତି ନାଦ ଅପସରା ତୁଲ୍ୟ ନୃତ୍ୟ ଗୀତ
ମଙ୍ଗଳ ଧ୍ୱନି କରନ୍ତି ମିଳି ଚଣ୍ଡ ପୁତ୍ର ।
ରଥ ଏକଗୋଟି ପୁଣି ଗଜ ପାଞ୍ଚ ଖର୍ବ
ଦ୍ୱାଦଶ ପଦାର୍ଥ ହୟ ପଦାତି ନିଖର୍ବ ।
ବିମଳ ଉଦଣ୍ଡ ପାଟଛତ୍ର ପାଞ୍ଚଲକ୍ଷ
ଇନ୍ଦ୍ର ପାରିଦଣ୍ଡ ତାଙ୍କୁ ନୋହିବ ଯେ ଲକ୍ଷ୍ୟ ।
ସୈନ୍ୟ ଉଭାରିଲେ ସୂର୍ଯ୍ୟ ନ ହୁଅଇ ଦୃଶ୍ୟ
କଳି ନ ପାରିବ କେତେ ରଥ ଗଜ ଅଶ୍ୱ ।
ଟମକ ନିଶାଣ ବୀର ତୂର ଢୋଲ ବାଦ୍ୟେ
ଆକାଶ ଉଚ୍ଛୁଳି ପଡ଼େ ଗର୍ଜ୍ଜନ ଶବଦେ ।
ଏକ ଲକ୍ଷ ଗୋଦୋହନ କଲେ ଶିବାଳୟେ
ତିନିଲକ୍ଷ ବରଣିଆ ବ୍ରାହ୍ମଣଙ୍କୁ ରାୟେ ।
ବିଷ୍ଣୁମନ୍ତ୍ର ଜପାଇଲେ ଶ୍ରୀବିଷ୍ଣୁ ମନ୍ଦିରେ
ଗଇଶ ଦୁନ୍ଦୁରା ଦେଲେ ନେଇ ଶିବ ଶିରେ ।
ଅନେକ ଶୀତଳ ଦ୍ରବ୍ୟେ କଲେ ଦେବୀପୂଜା
ପୋରୁହ ମେଷ ଛାଗଳ ଦ୍ୟନ୍ତି ବଳିଭୋଜା ।
ଗ୍ରହଶାନ୍ତି ମନ୍ତ୍ରେ ଗ୍ରହ ପୂଜିଲେ ଗଣକ
ଚାରିଦ୍ୱାରେ ଦାନଛତ୍ର ଦିଅନ୍ତି ଅନେକ ।
ମୃଦଙ୍ଗ ତାଳ କଂସାଳ ଶଙ୍ଖ ଚକ୍ରବୀଣା
ଧରି ମର୍ତ୍ତ୍ୟ ଅପସରା ବଜାନ୍ତି ବାଜଣା ।
ଭିତରେଦେବୀଙ୍କ ପୂଜା ସାରି ଭୀଷ୍ମ ଦେବେ
ବ୍ରହ୍ମା ବରଣ ଆବର ଶାନ୍ତି କରି ଦେବେ ।
ବରବେଶ ହୋଇ ହୃଦେ ଧବଳାଙ୍ଗୀ ବାଳା
ଅନେକ ସ୍ତୁତି କରନ୍ତି ମା ସର୍ବମଙ୍ଗଳା ।
ରତ୍ନଗିରି ବାସିନୀ ଗୋ ନମେ କାତ୍ୟାୟିନୀ
ଯେ ତେଜ ପ୍ରକାଶେ ଦେବଗଣ ଜ୍ୟୋତିଘେନି ।
ସହସ୍ରେକ ଭୁଜ ଦେବି ସହସ୍ରେ ଆୟୁଧ
ମାନିନୀ ହୋଇ ଅସୁର ବଂଶ କଲୁ ବଧ ।
ଅଭୟା ପିଙ୍ଗଳା ଜନ୍ତୁରାଜ ଦର୍ପ ଗଞ୍ଜି
ନବକୋଟି କାତ୍ୟାୟିନୀ ଶରୀରୁ ଉପୁଜି ।
ଅଗୋଚର ମୂରତି ଗୋ କହ କହ ମୁଖି
ଲହ ଲହ ରସନା ଗୋ ଟହ ଟହ ଆଖି ।
ଡିବି ଡିବି ବାଦ୍ୟ ନାଦ ଶ୍ରୀଭୁଜ ଡମ୍ବରୁ
ଶ୍ମଶାନ ବାସିନୀ ଗଳେ ଅସ୍ଥିମାଳା ଉରୁ ।
ହାଣ ହାଣ ମାର ମାର ଡାକି କୁତୂହଳି
ରଣରଙ୍ଗେ ନାଚ ମାଗୋ କର ପାଦ ତୋଳି ।
ବିବସନ ଶୟନୀ ଗୋ ତୁ ମାତା ମାତଙ୍ଗୀ
ଝଲକଇ ଶୋଣିତ ତୋ ଦାନ୍ତ ଦାଢ଼ ଲାଗି ।
ଆକାଶେ ଏକ ପାତାଳେ ଆରକେ ତୋ ଓଷ୍ଠ
ବାହନ ଇଚ୍ଛିଲୁ ମାଗୋ ଗଜରିପୁ ପୃଷ୍ଠ ।
କାଳ କାମନିଦ୍ରା ତୁ ଗୋ କମାକ୍ଷି ମୋହିନୀ
ବାହୁରେ ରତ୍ନ କିଙ୍କିଣୀ ବାଜେ କିଣି କିଣି ।

ଉରରେ ଉରଗ ହାରେ ଶୋହେ ରତ୍ନଝରା
ହୃଦରେ ମନ୍ଦାର ମାଳ ଦିଶେ ଅତି ଚୋରା ।
ଶିରରେ ରତନ ମଣି ମୁକୁଟ ଉଜ୍ଜ୍ୱଳ
ଭୁଜରେ ତାଡ଼ ତୋଡ଼ର କର୍ଣ୍ଣେ କର୍ଣ୍ଣାଞ୍ଚଳ ।
ଚଞ୍ଚପୁଟେ ଚାଞ୍ଚପୁଟ ନୃତ୍ୟରଙ୍ଗେ ଭୋଳ
ଡାକିନୀ ଶାକିନୀଗଣ ସଙ୍ଗେ କୁତୂହଳ ।
ଚଣ୍ଡ ଘଣ୍ଟା ମହାତମା ବିଜୟା ବିରୂପା
ଟହ ଟହ ହାସିନୀ ଗୋ ହିଙ୍ଗୁଳା ସ୍ୱରୂପା ।
ଯୋଗେ ଯୋଗେଶ୍ୱରୀ ମାଗୋ ଜୟ ଗୋସାମଣି
ଆପଦ ଦଣ୍ଡ ଖଣ୍ଡୁ ଗୋ ସୁର ସୁରକ୍ଷଣି ।
ଶ୍ରୀଚଣ୍ଡୀ ଶାରଳା ସର୍ବମଙ୍ଗଳା ପ୍ରସାଦେ
ଶ୍ରୀ ମହାଭାରତ ଆଦ୍ୟପର୍ବର ପ୍ରସ୍ତାବେ ।
ସର୍ବମଙ୍ଗଳାର ନାମ ଗୋଟି ମୋର ଲୟେ
ଶାରଳା ଦାସକୁ ହୁଅ ସୁପ୍ରସନ୍ନ ମାଏ ।

—୦—

## ଭୀଷ୍ମଙ୍କର ଦାର ତ୍ୟାଗ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଦେବୀଙ୍କି ଅନେକ ସ୍ତୁତି କଲେ ଭୀଷ୍ମରଥି ।
ବାଞ୍ଛନ୍ତି ଗଙ୍ଗାତନୟ ଭୀଷ୍ମ ମହାରଥ
ବିଭା ଅନୁକୂଳ ଦେବୁ ଜଗତର ମାତ ।
ଯେ ତୋତେ ଆରାଧଇ ତୁ ତାକୁ କରୁ ରକ୍ଷା
ଭକତ ବତ୍ସଳ ମାଗୋ ପୂରା ମନୋବାଞ୍ଛା ।
ଶିରେ ଶୋହେ ରତ୍ନମଣି ମୁକୁଟ ସୁଜ୍ୱଳ
ହୃଦରେ ଭୂଷଣ କଣ୍ଠତଟେ ରତ୍ନମାଳ ।
ବାହୁରେ ତାଡ଼ ତୋଡ଼ର କର୍ଣ୍ଣରେ କୁଣ୍ଡଳ
ଖେଳନ୍ତା ସିଂହକୁ ନିନ୍ଦେ ଜାହ୍ନବୀର ବାଳ ।
ନୟନ ଅଞ୍ଜନା ଲାଞ୍ଜ ପାଦରେ ଅଳତା
ନବ ବସନେ କୁଙ୍କୁମ ଭୁଜେ ସୁନାସୂତା ।
ଦଧି ମାଛ ଅନୁକୂଳ ଶୁଭଯୋଗେ ତୋଳି
ଗଣିକାଗଣ ଦିଅନ୍ତି ଆଗେ ହୁଳହୁଳି ।
ବେନି ଲକ୍ଷ ଚାମର ଯେ ଢାଳେ ସନ୍ନିଧାନେ
ବିଜୟ ଗଙ୍ଗା ନନ୍ଦନ ଶାନ୍ତନୁ ସଦନେ ।
ପାଦରେ ପାଦାର୍ଘ୍ୟ ଦେଇ ଭୂମିରେ ପ୍ରଣମି
ବିଭା କାର୍ଯ୍ୟକୁ ଯେ ଏବେ ଯିବା ଚାଲ ସ୍ୱାମୀ ।
ଦଧିବାମନ ସୁମରି କର ଅନୁକୂଳ
ପଦ୍ମନାଭ ରାଜା ରାଜ୍ୟେ ଯିବା ଏବେ ଚାଲ ।
ଭୀଷ୍ମଙ୍କର ମୁଖୁ ଶୁଣି ଏସନକ ବାକ୍ୟ
ସ୍ତମ୍ଭୀଭୂତ ହେଲେ ହଜିଗଲାକ ବିବେକ ।
ହେଠ ମାଥ ହୋଇ ବସି ତଳେ ଦେଲେ ଦୃଷ୍ଟି
ବେନି ଲୋଚନୁ ଅଇଲା ଅଶ୍ରୁଜଳ ବୃଷ୍ଟି ।

ପିତାର ବିମୁଖ ଦେଖି ଭୀଷ୍ମ ପଚାରନ୍ତି
ଆନନ୍ଦ ଅଶ୍ରୁଜଳ କି ବିଷାଦ ମୂରତି ।
ଶାନ୍ତନୁ ବୋଇଲେ ଭୀଷ୍ମ ବଦନକୁ ଚାହିଁ
ବାବୁ ଆନନ୍ଦ ହୋଇଲେ ତୋର ବୋଲ ପାଇ ।
ବାବୁ ବିଷାଦ ହୋଇଲି ପୂର୍ବକଥା ଗୁଣି
ଆନନ୍ଦ ବିଷାଦେ ଏଣୁ ବହେ ନେତ୍ରୁ ପାଣି ।
ଭୀଷ୍ମ ବୋଇଲେ ଆନନ୍ଦ ହେଲେ ମୋତେ ଦେଖି
ବିଷାଦ ପାଇଲ କିମ୍ପା ଧର୍ମକୁ ଉପେକ୍ଷି ।
ଶାନ୍ତନୁ ବୋଇଲେ ବାବୁ ତୋର ମାତା ଗାଙ୍ଗୀ
ତୋତେ ନାଶ କରନ୍ତେ ମୁଁ ହେଲି ବଇରାଗୀ ।
ରାଗେ ଆମ୍ଭେ ତାହାଙ୍କୁ ଯେ ବୋଇଲୁ ଭର୍ତ୍ସନା
ନ ସହି ଘରୁ ପଳାଇ ଗଲେ ସେ ଅପର୍ଣ୍ଣା ।
ଆମ୍ଭେ ଯାଇଣ ତାହାଙ୍କୁ ଧରି କୋଳ କଲୁ
ପ୍ରସବ କରି ପୁଅକୁ କିମ୍ପା ପକାଇଲୁ ।
ଗଙ୍ଗା ବୋଇଲେ ତୋହର ମୁଁ ପରମ ଗୁରୁ
ସତ୍ୟ ପୂରିଲା କିମ୍ପାଇଁ ମୋତେ ତୁହି ଧରୁ ।
କୋପେ ମୋତେ ଶାପ ଦେଲେ ସେବଳୀର ବାଳୀ
ଏ ପୁତ୍ରର ପୁତ୍ର ହାତେ ପାଅ ତୁହି ବଳି ।
ବାବୁ ତୁହି ଯେବେ ବିଭା ହୋଇବୁ ନନ୍ଦନ
ଅବଶ୍ୟ ହୋଇବ ତୋର ପୁତ୍ର ଉତପନ୍ନ ।
ତୋହରି ମାତା ଯେ ଶାପ ଦେଇଅଛି ମୋତେ
ଶିର ଛେଦନ ହୋଇବ ତୋର ପୁତ୍ରହସ୍ତେ ।
ପିତାର ବଚନ ଶୁଣି ଭୀଷ୍ମ କରି ଆଣ୍ଟ
ବେଗେ କାଢ଼ି ପକାଇଲେ ମଥାରୁ ମୁକୁଟ ।
ଛାଡ଼ିଲେକ ବରବେଶ ବସିଲେ ମଉନେ
ବାଦ୍ୟମାନ ରୁହାଇଲେ ବିଷର୍ଣ୍ଣ ବଦନେ ।
ପର୍ଶୁରାମ ବୋଇଲେ ହୋ ଭୀଷ୍ମ ତୁ କିମ୍ପାଇଁ
ବରବେଶ ଛାଡ଼ି ବସୁ ମୁକୁଟ ପକାଇ ।
ଭୀଷ୍ମ ବୋଇଲେ ହେ ଶୁଣ ସର୍ବ ରାଜଦେବେ
ମୋହର କି ବିଭା ଆଉ ପିତାର ଅଭାବେ ।
ଅନେକ ବାଗେ ଅର୍ଜ୍ଜଇ ପିତା ହାଦେ ପୁତ୍ର
ଆପଣାର ବଂଶରକ୍ଷା କରିବା ନିମିତ୍ତ ।
ପୁତ୍ର ହିଁ ରକ୍ଷା କରିବ ସିନା ନିଜ ବଂଶ
ମୋ ପୁତ୍ର ହାତେ ଶାନ୍ତନୁ ପିତା ଯିବେ ନାଶ ।
ଆବର ବିଭାରେ ମୋର କିସ ପ୍ରୟୋଜନ
ବୁଡ଼ିଲଇଁ ମାୟା ମୋହେ ନୋହୁ ସେ ସନ୍ତାନ ।
ଦକ୍ଷିଣା ବର୍ତ୍ତକ ଶୃଙ୍ଗେ ଜଳ ତିଳ ଭରି
ଦାର ସଂହାରିଲେ ଭୀଷ୍ମ ସଂକଳପ କରି ।
ଯେତେକାଳ ପରିଯନ୍ତେ ଥାଇ ମୋ ଶରୀର
ସତ୍ୟ ସତ୍ୟ ତିନିବାର ନିୟମ ମୋହର ।

ନୋହୁ ନୋହୁ ଭାରିଯା ହିଁ ସନ୍ତାନ ହି ନୋହୁ
ଯେମନ୍ତ ଶାନ୍ତନୁ ଚିର ଆୟୁ ହୋଇ ରହୁ ।
ଉପେକ୍ଷିଲେ ମାୟା ଭୀଷ୍ମେ ସଂହାରିଲେ ଦାର
ବର୍ତ୍ତଇ ଯାବତ କାଳ ଚନ୍ଦ୍ର ଦିବାକର ।
ଧନ୍ୟ ଧନ୍ୟ ଭଷ୍ମ ବୋଲି ହେଲା ଶୂନ୍ୟବାଣୀ
ପରମ ଯୋଗୀ ପୁରୁଷ କ୍ଷତ୍ରୀ ଚୂଡ଼ାମଣି ।
ଧନ୍ୟ ତୋହର ପ୍ରତିଜ୍ଞା ଧନ୍ୟ ତୋର ସତ
ଆଜିଠାରୁ ତୋର ନାମ ହେଲା ଦେବବ୍ରତ ।
ଆଗହୁଁ ବାରତା ଶୁଭେ ପଦ୍ମଦଳ ଦେଶେ
ଭୀଷ୍ମ ବିଜେ କରି ଆସୁଛନ୍ତି ବରବେଶେ ।
ବରଣ କାଳେ ଯେତେକ ନାରୀ ଥିଲେ ଆସି
ରମ୍ଭା କନ୍ୟାର ଆଗରେ କହନ୍ତି ପ୍ରଶଂସି ।
ଧନ୍ୟ ଧନ୍ୟ ପୁଣ୍ୟ ପୂର୍ବେ କରିଥିଲୁ ତୁହି
ଗଙ୍ଗାର ନନ୍ଦନ ଭୀଷ୍ମ ହେବେ ତୋର ସାଇଁ ।
ପିତାର ଦାନ ସାର୍ଥକ ଜୀବନ ତୋ ଧନ୍ୟ
ସୁଖେ ଉପୁଜିଲୁ ଘେନି ଶୁଭ ଯୋଗମାନ ।
ଆନନ୍ଦ ଉତ୍ସବ ରାୟେ ଅନେକ ଯେ କରି
ଭୋଜନ ଯୋଗାଡ଼ ଆଦି ସମ୍ଭାର ବିଚାରି ।
ରଥ ଗଜ ଅଶ୍ୱ ଘେନି ପଦାତି ଯେ କୋଟି
ସଂଭ୍ରମେ ଆସଇ ରାଜା ନେବାକୁ ପାଛୋଟି ।
ଦଣ୍ଡ ଘେନି ବିଜେ ରାଜା ନଗର ପୁରତେ
ତ୍ରିପୁରା ନଦୀ ଉତ୍ତର ଦିଗ ତୋଟା ପ୍ରାନ୍ତେ ।
ଭୀଷ୍ମଙ୍କ ତହିଁ କି ଯେଉଁ ଦୂତ ଆସିଥିଲା
ବିସ୍ମୟ ହୋଇ ରାଜାଙ୍କୁ ଯାଇଁ ଜଣାଇଲା ।
ସ୍ୱାମୀ ଭୀଷ୍ମ ମହାରଥି ଏଥେ ଆସୁଥିଲେ
ଆସନ୍ତେ ଶାନ୍ତନୁ ତାଙ୍କ ପିତା ନିରୋଧିଲେ ।
ଯୋଗାଡ଼ମାନଙ୍କୁ ଠାବେ ଠାବେ ରୁହାଇଲେ
ବରଜାତିମାନେ ସବୁ ବାହୁଡ଼ିଣ ଗଲେ ।
ପଦ୍ମନାଭ ବୋଇଲେ ମୁଁ ଅଟେ କେଉଁ ଦୋଷୀ
କିମ୍ପାଇଁ ନିରୋଧ କଲେ ଶାନ୍ତନୁ ମହର୍ଷି ।
ନ ବାହୁଡ଼େ ନରନାଥ ଆପଣାର ପୁରୀ
ଚାରଗଣ ବଚନକୁ ସମ୍ପ୍ରତେ ନ କରି ।
ସେଦିନକ ବାଟ ଚାହିଁ ରହିଲା ନୃପତି
ଯୋଗାଡ଼ମାନ ସକଳ ରଖି ଚଉକତି ।
ଦିନ ଚାରି ବାଟ ଚାହିଁ ବିମୁଖ ହୋଇଲା
ଜୟ ଲାଭ ବୋଲି ତାର ପୁତ୍ର ବରଗିଲା ।
ଏଥିର ତଦନ୍ତ ବାବୁ ବୁଝଇ ସେ ଯାଇ
ଭୀଷ୍ମ ବିଭା ଅର୍ଥେ ଏଥେ ନଇଲେ କିମ୍ପାଇଁ ।
ରାଜାର ବଚନେ ତହୁଁ ଗଲେ ଚାରିପୁତ୍ରେ
ସପତ ଦିନେ ପ୍ରବେଶ ଯେ ବରୁଣାବନ୍ତେ ।
ଶାନ୍ତନୁଙ୍କୁ ପ୍ରଣାମ ଯେ କରି ପଦ୍ମନାଭ
ସ୍ୱାମୀ ବିଭାର୍ଥେ କିମ୍ପା ନ ଗଲେ ଭୀଷ୍ମଦେବ ।
ଶାନ୍ତନୁ ବୋଇଲେ ସେହି ଦାର ସଂହରିଲା
ଆମ୍ଭର ନିମନ୍ତେ ପୁତ୍ର ବିବାହ ନୋହିଲା ।
ଆବର ତୁମ୍ଭେ ଭୀଷ୍ମଙ୍କୁ ନ କରିଣ ଆଶ
ଆନକୁ ପ୍ରଦାନ କର ବିଚାରୁଛ କିସ ।
ଭୀଷ୍ମଙ୍କୁ ରାଇଲେ ପୁଣ ତାହାଙ୍କର କତି
ପୁତ୍ରକୁ ପଠାଇ ଅଛି ପଦ୍ମ ଦଳପତି ।
ତା କନ୍ୟା ଗୋଟିକୁ ବାବୁ କରିତୁ ଆଦାନ
ପୁତ୍ର ସନ୍ତାନ ଥିଲେ ନ ତୁଟେ ଧର୍ମମାନ ।
ଭୀଷ୍ମ ବୋଇଲେ ଆଉ କି ହୁଏ ଏହି କଥା
ମୋହଯୋଗୁଁ ନାଶଯିବୁ ତୋହ ପ୍ରାୟ ପିତା ।
ଅନେକ ମଣାନ୍ତେ ସେ ହିଁ ନାସ୍ତି ପୁଣ କଲେ
ରାଜାଙ୍କର ଚାରିପୁତ୍ର ବାହୁଡ଼ିଣ ଗଲେ ।
ଆପଣାର ରାଜ୍ୟେ ଯାଇ ହୋଇଲେ ପ୍ରବେଶ
ପିତାଙ୍କୁ କହିଲେ ଛାଡ଼ ଭୀଷ୍ମଙ୍କର ଆଶ ।
ସଙ୍କଳ୍ପ କରି ଛାଡ଼ିଲେ ସେହି ମହାବୀର
ପିତାଙ୍କ ନିମନ୍ତେ ସେହି ସଂହାରିଲେ ଦାର ।
ପୁତ୍ରଙ୍କ ମୁଖରୁ ଶୁଣି ଏସନକ ବାଣୀ
ବିଚାରି ବୋଇଲେ ପଦ୍ମନାଭ ନୃପମଣି ।
ଅମ୍ବା କନ୍ୟାକୁ ସେ ଶାଲ୍ୱ ମାଗୁଥିଲା ପୂର୍ବେ
ମୁହିଁ ପୁଣି ତାହା ନାସ୍ତି କଲି ମତ୍ତଗର୍ବେ ।
ସ୍ୱୟମ୍ବର କଲି ତାର ଭୀଷ୍ମ ନାସ୍ତି କଲା
କାଳେ ଦୁହିତାକୁ ମୋର ବିଭା ନ ହୋଇଲା ।
ଅଞ୍ଜନେସେନ ନାମରେ ଅଟଇ ତା ମନ୍ତ୍ରୀ
ଦୂତପଣେ ପଠାଇଲା ତାହାକୁ ନୃପତି ।
ଶାଲ୍ୱକୁ ମାଳା ଦେଇଣ ଆସ ତୁମ୍ଭେ ବରି
ତାହାକୁ ପ୍ରଦାନ ମୁହିଁ କରିବି କୁମାରୀ ।
ରାଜାର ବଚନେ ଚଳିଗଲା ମନ୍ତ୍ରୀବର
ଶାକଲ୍ୟ ଦେଶେ ପ୍ରବେଶ ହୋଇ ତତପର ।
ଶାଲ୍ୱକୁ ଜଣାଇ ଯାଇ କଲା ଦରଶନ
କହିଲା ଯେ ମନ୍ତ୍ରୀବର ସକଳ ବିଧାନ ।
ତୁ ଯେ ଆଦ୍ୟହୁଁ ତାହାଙ୍କୁ ମାଗିଥିଲୁ ରାୟେ
ପଦ୍ମନାଭ ଦେବେ ତୋତେ ଦୁହିତା ଗୋଟିଏ ।
ଶାଲ୍ୱବୋଇଲା ଦେଉ ସେ ଅମ୍ବା ନାମେ ବାଳୀ
ସେହି ସିନା ଅଟେ ମୋର ମନର ହିଁ ଆଳୀ ।
ମନ୍ତ୍ରୀ ବୋଇଲା ସେ କଥା ହୋଇଲା ଯୁକତେ
ସେହି କନ୍ୟାକୁ ସେ ଦେବେ ନିଶ୍ଚେ ରାୟ ତୋତେ ।
ଶୁଣିଣ ଅତି ଆନନ୍ଦ ହୋଇଲେ ନୃପତି
ମାଳାଦେଇ ବରିଲା ସେ ପଦ୍ମନାଭ ମନ୍ତ୍ରୀ ।

ବୃଷର ଶୁକଳ ତ୍ରୟୋଦଶୀ ଶୁକ୍ରବାର
ଅନୁରାଧା ନକ୍ଷତ୍ରର ଭୋଗ ଯେ ଦିନର ।
ତୋହର ଦଣ୍ଡ ଘେନିଣ ଯିବୁ ରାଜସାଇଁ
ଶାଲ୍ୱ ଅନେକ ଗୌରବ କଲା ହର୍ଷ ହୋଇ ।
ପଦ୍ମନାଭ ରାଜା ମୋତେ ଦେବାକୁ ଦୁହିତା
ଏହା ହୁଁ ଆନ ଲୋଡ଼ିବା କିସ ପୁଣ୍ୟକଥା ।
ବରଣ କରି ଅଇଲେ ପଦ୍ମନାଭ ମନ୍ତ୍ରୀ
ଅନେକ ଉତ୍ସବ କଲା ଶୁଣିଣ ନୃପତି ।
ଅମ୍ବା କନ୍ୟାର ନିମନ୍ତେ ରାଜା ପଦ୍ମନାଭ
ବିଭାର ଯୋଗାଡ଼ କଲା ଥିଲା ଯା ଅଭାବ ।
ଇଷ୍ଟ କୁଟୁମ୍ବ ବାନ୍ଧବ ଜ୍ଞାତି ବନ୍ଧୁମାନ
ଅନେକ ଦେଶରୁ ରାଜା କଲା ନିମନ୍ତ୍ରଣ ।
କୋଟିଏ ରଥ ଘେନିଣ ଶାଲ୍ୱ ଦଣ୍ଡଧାରୀ
ବିଭାଅର୍ଥେ ଶୁଭଯୋଗେ ଥାଟ ଘେନି ଚଳି ।
ଚଉବିଂଶ ନଗରେ ସେ ହୋଇଲା ପ୍ରବେଶ
ଶାଲ୍ୱକୁ ପଚାରିଲା ସେ ନୃପ ମହୀଦାସ ।
ଶାଲ୍ୱ ବୋଇଲା ବରିଲା ମୋତେ ପଦ୍ମନାଭ
ଅମ୍ବାକନ୍ୟାକୁ ସେ ମୋତେ ପ୍ରଦାନ କରିବ ।
ମହୀଦାସ ବୋଇଲା ତୁ କିମ୍ପାଇଁ ଅଇଲୁ
ଉଗର ମୁଖେ ବାରତା କି ନ ପାଇଥିଲୁ ।
ଅମ୍ବା କନ୍ୟା ନିମନ୍ତେ ସେ ସ୍ୱୟମ୍ବର କଲା
ଗଙ୍ଗାନନ୍ଦନ ଭୀଷ୍ମଙ୍କୁ ସ୍ୱୟଂ ବରଗିଲା ।
ଆମ୍ଭ ଥାଉଁ କନ୍ୟାମାନେ ମାଳା ଦେଇ କରି
ଭୀଷ୍ମ ବିବାହ କରିବେ ହାଦେ ସେହି ନାରୀ ।
ଏସନ ବାରତା ଯହୁଁ ପାଇଲା ବାଟରେ
ଶାଲ୍ୱ ତହୁଁ ବାହୁଡ଼ିଲା ଭୀଷ୍ମଙ୍କର ଡରେ ।
ନିଶ୍ଚୟ ଯେବେ ସେ କନ୍ୟା ଭୀଷ୍ମଙ୍କୁ ବରିଲା
ସେ କନ୍ୟାଗୋଟି ମୋହର ଗୁରୁପତ୍ନୀ ହେଲା ।
ଶାଲ୍ୱ ବାହୁଡ଼ିଲା ଯହୁଁ ଏତେ କଥା ଶୁଣି
ବାଟ ଚାହିଁଇ ସେ ପଦ୍ମନାଭ ନୃପମଣି ।
ଦିବସ ରଜନୀ ବେନି ଅନୁକୂଳ ଗଲା
ରାତ୍ର ପାହିଲା ତ ଶାଲ୍ୱରାଜା ନ ଆସିଲା ।
ଉଗର ବାରତା ବେଗେ କହିଲାକ ଯାଇ
ଭୀଷ୍ମଙ୍କର ଡରେ ଶାଲ୍ୱ ନଇଲା ଗୋସାଇଁ ।
ପୁଣି ହିଁ ଯେ ବିଭା ଅନୁକୂଳ ନାଶ ଗଲା
ଯୁବା ବୟସ ଯେ ଅବା କନ୍ୟାର ହୋଇଲା ।
ଦୂତ ଯାଇ ବରଗିଲା ନୃପ ବୀରବାହୁ
ଭୀଷ୍ମଙ୍କ ବରଣ ଶୁଣି ନ ଆସିଲା ସେହୁ ।
ଚତୁର୍ଥେ ରାଜନ ବୀରଭଦ୍ରକୁ ବରିଲା
ବରପୂର୍ବା ବୋଲି ସେହି ବିବାହ ନୋହିଲା ।
ଏମନ୍ତ ଅନେକ ଦେଶୁ ବରିଲା ନୃପତି
ଭୀଷ୍ମଙ୍କର ଡରେ କେହି ନଇଲେ ତା କତି ।
ପଞ୍ଚଦଶ ବରଷର ହୋଇଲା କୁମାରୀ
ଯୁବା ବୟସ ହେଲା ସେ ରୂପ ମନୋହାରୀ ।
ଯହୁଁ ତାହାକୁ ବିବାହ କେହି ଯେ ନୋହିଲା
ଦୁହିତା ଘେନି ବାରୁଣାବନ୍ତ ରାଜା ଗଲା ।
ଭୀଷ୍ମ ସନ୍ନିଧ୍ୟେ ପ୍ରବେଶ ହେଲା ନୃପମଣି
ଛାମୁରେ ଉଭା କଲାକ ଆପଣା ଦୁଲଣୀ ।
ଭୋ ଗଙ୍ଗା ନନ୍ଦନ ହୁଏ ମୋହର କୁମାରୀ
ତୋର ନିମନ୍ତେ ଶାନ୍ତନୁ ଅଛି ଏହା ବରି ।
ଅପୂର୍ବ ଯୁବତୀ ଏହୁ ସୁସଙ୍ଗ କାମିନୀ
ଅମୂଲ୍ୟ ରୂପବତୀ ଏ ତ୍ରୈଲୋକ୍ୟ ମୋହିନୀ ।
ନ ନାଶିଣ ଏ ସ୍ତିରୀକୁ ଛାଡ଼ିଲୁ ତୁ ବରି
ତୋରନାମ ଶୁଣି ସବୁ ରାଜା ଗଲେ ଡରି ।
କେବଣ ଦ୍ରୋହ କଲାକ ତୋତେ ଏ ମାନିନୀ
ଏବେ ସମ୍ଭାଳ ଛାମୁକୁ ଅଇଲୁ ଯେ ଘେନି ।
ଭୀଷ୍ମ ବୋଇଲେ ଯେବେ ମୁଁ ତାହାକୁ ବରିଲି
ତାକୁ ଉପେକ୍ଷି ଅନ୍ୟକୁ ବିଭା କି ହୋଇଲି ।
ପିତା ମୋର ନାଶଯିବେ ପୁତ୍ର ମୋର ହେଲେ
ଦାର ସଂହରିଲି ମୁଁ ଯେ ଶାନ୍ତନୁଙ୍କ ବୋଲେ ।
ଯାହାକୁ ପାର ପ୍ରଦାନ କର ତାକୁ ବାଳୀ
ମୁହିଁ ଯେ ଉପେକ୍ଷା କଲି ସତ୍ୟ ପ୍ରତିପାଳି ।
ରାଜା ବୋଲେ ବରିଥିଲି ବହୁ ଦଣ୍ଡଧରେ
କେହି ବିବାହ ନୋହିଲେ ଏ ତୋହର ଡରେ ।
ପରାଶର ଭୂରିଶ୍ରବା ଶାନ୍ତନୁକୁ ଯାଇ
ଜଣେ ଜଣେ ତିଆରିଲେ କନ୍ୟାକୁ ଦେଖାଇ ।
ଅନେକ ବାଗେ ଭୀଷ୍ମଙ୍କୁ ତିଆରିଲେ ଲୋକେ
କାହାରି ବାକ୍ୟ ନ କଲେ ଭୀଷ୍ମ ଦୃଢ଼ବାକ୍ୟେ ।
ସତ୍ୟେ ସଂସାର ଅଛଇ ଚିରକାଳ ବର୍ତ୍ତି
ସତ୍ୟ ଛାଡ଼ିଲେ ପ୍ରାଣୀଏ ପାନ୍ତି ଅଧୋଗତି ।
ମୁହିଁ ସତ୍ୟ ବ୍ରତ କଲି ପିତାର ନିମନ୍ତେ
ତୁମ୍ଭେ କିମ୍ପା ଧର୍ମ ମୋର ଭାଙ୍ଗ ଅନିମିତ୍ତେ ।
ସବୁରି ବାକ୍ୟ ଭାଙ୍ଗିଲେ ଯହୁଁ ଭୀଷ୍ମଦେବ
ଦେଖିଣ ବିରସ ହେଲା ରାଜା ପଦ୍ମନାଭ ।
ବୋଇଲା ଯେ ଆପଣାର ଦୁହିତାକୁ ରାଇ
ତୁ ଆବର ମୋର ପୁରେ କି କରିବୁ ଯାଇ ।
ଭୀଷ୍ମଙ୍କୁ ତୁ ସେବା କରିଥିବୁ ଅବିରତେ
ସଞ୍ଚିଲେ ସଞ୍ଚୁ ନାଶିଲେ ନାଶୁ ସେହି ତୋତେ ।
ସେବା କରୁଥିଲା ଅବା କରଇ ସେ ଦୟା
ବିଚାରିଣ ଖଟିଥାଅ ଆଗୋ ମହାମାୟା ।

ଅମ୍ବା କନ୍ୟାକୁ ସେଠାରେ ଛାଡ଼ି ନରନାଥେ
ଚଳିଲେ ସେ ନିଜ ରାଜ୍ୟେ ବିମୋହିତ ଚିତ୍ତେ ।
ରାଜାର ନନ୍ଦିନୀ ନବଯୌବନ ମୂରତି
ଭୀଷ୍ମଙ୍କ କଟକେ ଖଟିଥାଇ ଦିବା ରାତି ।
ଭୀଷ୍ମ ମହାକୋପ କଲେ ଦେଖିଣ ଯେ ନାରୀ
ବୋଇଲେ ପାପିଷ୍ଠକୁରେ ନିଅ ବାଳ ଧରି ।
କୋପେ ତାହାକୁ ବାହାର କରିଦେଲେ ପାତ୍ରେ
ତାହା ଦେଖିଣ ସୁନ୍ଦରୀ ବିମୋହିତ ଚିତ୍ତେ ।
ବୋଲଇ ଯୁବତୀମଣି ଶୁଣ ଭୀଷ୍ମ ଦେବ
ମୋତେ ନାଶ କଲେ ତୋର କିସ ଧର୍ମ ହେବ ।
ବଚନେ ଦୂଷିତା ହେଲି ମୁଁ ତୋର ବାନ୍ଧବୀ
ତୋହଯୋଗୁଁ ଅବଶ୍ୟ ମୁଁ ଏ ଜୀବନ ଦେବି ।
ଅମ୍ବା ବୋଇଲା ମୁଁ ଏବେ ଯାଉଅଛି କି ନା
ଯେଉଁଠାରେ ମଲେ ମୁହିଁ ତୋତେ ହତ୍ୟା ସିନା ।
ଭୀଷ୍ମ ବୋଇଲେ ମୁଁ ମନେ ତ୍ରାସେ ତୋତେ ଦେଖି
ବାହାର ହୋଇ ତୁ ଯାଯା ମୋ ରାଜ୍ୟ ଉପେକ୍ଷି ।
ଅନେକ ଭର୍ତ୍ସନା ବାକ୍ୟେ ବୋଇଲେ ସେ ରାଗେ
ତୋତେ ନାଶିବି ବୋଲି ମୁଁ ଝାସିବି ପ୍ରୟାଗେ ।
ଏତେ ବୋଲି କାନ୍ଦି କାନ୍ଦି ଆସଇ ସୁନ୍ଦରୀ
ପରଶୁରାମଙ୍କ ଆଗେ କଲାକ ଗୁହାରି ।
ଗଙ୍ଗାନଦୀ କୂଳେ ରହି କାନ୍ଦଇ ଯୁବତୀ
ପର୍ଶୁରାମ ପଚାରନ୍ତି ତୁମ୍ଭର କେ ପତି ।
ଏ ତୋହର ରୂପ ଗୁଣ ଦେବେ ଅଗୋଚର
ତୋତେ ଉପେକ୍ଷା କଲା ଗୋ କେବଣ ପାମର ।
ଅମ୍ବା ବୋଇଲା ଗୋସାଇଁ ମୁହିଁ ବଡ଼ ଦୁଃଖୀ
ଶରଣ ମାଗେ ମହତଜନ ତୋତେ ଦେଖି ।
ପରଶୁରାମ ବୋଇଲେ ଯେ ତୋହର ଇଚ୍ଛା
ସତ୍ୟ କଲୁ ପୂରାଇବୁ ତୋର ମନୋବାଞ୍ଛା ।
ଆମ୍ଭର ଏ ସତ୍ୟ ସତ୍ୟ ତ୍ରିବାର ହିଁ ସତ୍ୟ
ଏକ୍ଷଣି ମାଗ ତୁ ଦେବୁରେ ଯୁବତୀ ରତ୍ନ ।
ଅମ୍ବା ବୋଇଲାକ ମୋତେ ପ୍ରସନ୍ନ ହୋଇବା
ଅନ୍ୟ କାର୍ଯ୍ୟ ନାହିଁ ମୋତେ ସ୍ୱାମୀଦାନ ଦେବା ।
ମାଗରେ ସୁନ୍ଦରୀ ତୁହି ଯେ ତୋହର ଇଚ୍ଛା
ଦେବୁ ତ୍ରୈଲୋକେ କରିବୁ ଯାହାକୁ ତୁ ବାଞ୍ଛା ।
ଅମ୍ବା ବୋଇଲା ତୁ ଦେବ ଅଟୁ ମହାକ୍ଷତ୍ରୀ
ବରିଣ ବିଭା ନୋହିଲା ଭୀଷ୍ମ ମହାରଥୀ ।
ମୁହିଁ ଅମ୍ବା କନ୍ୟା ପଦ୍ମନାଭର କୁମାରୀ
ତାହାଙ୍କୁ ମାଗଇ ମୋତେ ଦିଅ କୃପା କରି ।
ନୀଳରାମ ରଘୁରାମ ଏ ଦୁହିଙ୍କୁ ରାଇ
ବୋଇଲେ ଭୀଷ୍ମେ ସମର୍ପିଆସ ଏହାକୁ ହିଁ ।

ଅମ୍ବାକନ୍ୟା ଘେନିଯାନ୍ତି ସେ ବାରୁଣାବନ୍ତେ
ପରଶୁରାମଙ୍କ ଆଜ୍ଞା ଆହୋ ଭୀଷ୍ମ ତୋତେ ।
ସେ ମହାକ୍ଷତ୍ରୀର ଆଜ୍ଞାଶିରେ ଘେନି ବାବୁ
ଏ ଅମ୍ବା କନ୍ୟାକୁ ତୁହି ବିବାହ କରିବୁ ।
ଭୀଷ୍ମ ବୋଇଲେ ଯେ ରଘୁରାମଙ୍କୁ ହିଁ ଚାହିଁ
ତୁମ୍ଭର ଡରେ କି ବିଭା ହୋଇବଇଁ ମୁହିଁ ।
ମୋର ଭୟ କି ତୁମ୍ଭ ପରଶୁରାମଙ୍କୁ
କିମ୍ପାଇଁ ବିଭା ହୋଇବି ମୁଁ ଅମ୍ବାକନ୍ୟାକୁ ।
ନୀଳରାମ ବୋଇଲେ ତୁ ତାଙ୍କ ଆଜ୍ଞା ମେଣ୍ଟୁ
ଅବଶ୍ୟ ଶିର ଛିଡ଼ିବ ତୋର କନ୍ଧତଟୁ ।
ପରଶୁରାମଙ୍କ ଆଗେ କହୁ କି ନା ଯାଇ
ନିଶ୍ଚୟ ମରିବ ତୁମ୍ଭେ ଏ କନ୍ୟାର ପାଇଁ ।
ନୀଳରାମ ରଘୁରାମ ଗଲେକ ବାହୁଡ଼ି
ଅମ୍ବା କନ୍ୟା ଗୋଡ଼ାଇଲା ପଛେ କାନ୍ଦି କରି ।
ପର୍ଶୁରାମ ବିଜେ କରିଛନ୍ତି ତ୍ରିଦୁରାନ୍ତେ
ତାଙ୍କ ସନ୍ନିଧ୍ୟେ ପ୍ରବେଶଯାଇ ବେନି ଭ୍ରାତେ ।
ପ୍ରଣମିତ ହୋଇ ନୀଳରାମ ଯେ ବୋଇଲା
ପୁଣି ବହୁତ ଆମ୍ଭଙ୍କୁ ଭୀଷ୍ମ କୋପ କଲା ।
ବୋଇଲା ଆସଇ କି ନା ତୋର ପର୍ଶୁରାମ
ଯେତେକ ପାରୁ ଆସି ସେ କରୁ ନା ସଂଗ୍ରାମ ।
ଅମ୍ବା କନ୍ୟା କାନ୍ଦଇ ଯେ ଅତ୍ୟନ୍ତ ବ୍ୟାକୁଳେ
ଅଜ୍ଞାନ ମେଣ୍ଟିବାରୁ ପର୍ଶୁରାମ କୋପିଲେ ।
ଧାମଇଁ କୋପେ ସେ ପର୍ଶୁରାମ କ୍ଷତ୍ରିନାଥ
ପଛରେ ଗୋଡ଼ାଇ ତାର ତିନିଗୋଟି ଭ୍ରାତ ।
ମାନିନୀ ଅବସ୍ଥା ହୋଇ ସେ ଅମ୍ବା ଯୁବତୀ
ଗୋଡ଼ାଇ ଅଛନ୍ତି ସତୀ ତାଙ୍କ ପଛକତି ।
କାଳାନାଳ ରୂପ ହୋଇ କୋପେ ପର୍ଶୁରାମ
ଆଗେ ପ୍ରବେଶିଲେ ଯାଇ ଭୀଷ୍ମଙ୍କ ଆଶ୍ରମ ।
ପର୍ଶୁରାମ କୋପ ଦେଖି ଭୀଷ୍ମ ମହାରଥି
ରାଗେ ସେ ନ ଗଲେ ପୁଣି ପର୍ଶୁରାମ କତି ।
କୋପେଣ ପରଶୁରାମ ଦିଅନ୍ତି ଉତ୍ତର
ମୋର ଆଜ୍ଞା ଭ୍ରଷ୍ଟ କଲୁ କେଉଁ ଦର୍ପ ତୋର ।
ଆମ୍ଭର ଜାଣନ୍ତେ ତୁହି ବରିଲୁ ଏହାକୁ
ବରିଣ ବିଭା ନୋହିଲୁ ତୁ ଅମ୍ବା କନ୍ୟାକୁ ।
ପରାଶର ବୋଇଲା ତୁ ଶୁଣ ବାବୁ ଭୀଷ୍ମ
ତୋତେ କୋପ କରୁଛନ୍ତି ଏହି ପର୍ଶୁରାମ ।
ଯୁଗାନ୍ତକ ନାଥ ଏହି ପୂର୍ବେ କରି ରୋଷ
ଏକବିଂଶବାର କଲେ କ୍ଷତ୍ରୀବଂଶ ନାଶ ।
ବାବୁ ଯମଦଗ୍ନି ଯହୁଁ ବିଶାଦେ ବୋଇଲା
ତିନିଭାଇ ମାତାଙ୍କର ଏ ଶିର ଛେଦିଲା ।

ନିର୍ଭୟ ମହାତ୍ମା ଏହାଙ୍କ ନାହିଁ ଉପରୋଧ୍
ଅଜେୟ ଅଭୟ ତିନିଲୋକ ମହାଯୋଦ୍ଧା ।
ଏହୁ କୋପ କରେ ଦହୁ କେହି ଯେ ନବର୍ତ୍ତି
ଏକୋଇଶ ବାର ନାଶଗଲା ଏହୁ ପୃଥ୍ୱୀ ।
ସତ୍ୟଯୁଗେ ଭୋଗ କଲା ସତ୍ୟବ୍ରତ ପଣେ
ଅନେକ ଉପାୟ ବିଦ୍ୟା ରଚିଲା ଆପଣେ ।
ଏହାର ସଙ୍ଗତେ ତୁହି ନ କର ବିବାଦ
କଟାକ୍ଷ ନେତ୍ରେ ଚାହିଁଲେ ହେବ ଶିରଚ୍ଛେଦ ।
ଆମ୍ଭର ଶପଥ ତୁହି ନାହିଁ ଯେ ନ କର
ଅମ୍ବା କନ୍ୟା ବିଭାହୁଅ ଯାଉ ପର୍ଶୁଧର ।
ଭୀଷ୍ମ ବୋଇଲେ କେମନ୍ତେ ମୁଁ ବିଭା ହୋଇବି
ଭାର୍ଯ୍ୟା ନିମନ୍ତେ କେମନ୍ତେ ପିତାଙ୍କୁ ନାଶିବି ।
ପରାଶର ବୋଇଲେ ତୁ ତାକୁ ବିଭାହୋଇ
ଶୃଙ୍ଗାର ବଞ୍ଚାୟ ପଛେ ଅପବାଦ ଦେଇ ।
ଭୀଷ୍ମ ବୋଇଲେ କହିଲ ତୁମ୍ଭେ ଗୁରୁପଣେ
ମୁହିଁ ଶୁଣିଅଛି ଯାହା ଅଗସ୍ତି ପୁରାଣେ ।
ତିରିଶ ଦିନେ ହୁଅନ୍ତି ଅଶୁଦ୍ଧା ଯେ ନାରୀ
ତାକୁ ଛୁଇଁଲେ ଚଣ୍ଡାଳ ଛୁଆଁ ଦୋଷ ସରି ।
ଯେ ବସ୍ତ୍ରେ ସେହି ଛୁଇଁବ ବସ୍ତ୍ରେ କରି ସ୍ନାନ
ଉପବାସେ ରହି ବ୍ରତ କରିବ ସେଦିନ ।
ଦ୍ୱିତୀୟ ଦିନେ ହୁଅନ୍ତି ଯେବେ ସେହି ନାରୀ
ପ୍ରତ୍ୟକ୍ଷେ ହୁଅଇ ବ୍ରହ୍ମହତ୍ୟା ଦୋଷ ସରି ।
ଯେବଣ ନରେ ତୃତୀୟ ଦିବସେ ଛୁଅନ୍ତି
ଅପୂଜା ଲିଙ୍ଗ ଭାଙ୍ଗିବା ଅଗତିକି ପାନ୍ତି ।
ଚତୁର୍ଥ ଦିବସେ ଯାନ୍ତି ଯେ ସ୍ତିରୀଙ୍କ ପାଶ
ପଞ୍ଚ ମହାପାପ କଲା ସରି ପାଇ ଦୋଷ ।
ଶୁଦ୍ଧସ୍ନାନ କରିବ ଯେ ପଞ୍ଚମ ଦିବସେ
ସେଦିନ ପୁରୁଷ ଯିବ ଜାଣ ତାର ପାଶେ ।
ନାନା ଧର୍ମ କର୍ମ ପିତୃକାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରିଣ ହେବ ବ୍ରହ୍ମଚାରୀ ।
ପଞ୍ଚମ ଦିନୁ ସପ୍ତମ ଦିନ ପରିଯନ୍ତ
ଯେ ପୁରୁଷ ଉପେକ୍ଷନ୍ତି ଦୋଷେ ହୁଅନ୍ତି ଲିପ୍ତ ।
ରଜୋବତୀ ହୁଅଇଟି ଯେବଣ ସୁନ୍ଦରୀ
ସେ ଶୋଣିତ ପିତୃଲୋକ ତର୍ପଣର ସରି ।
ବିଭା ହୋଇଣ ଶୃଙ୍ଗାର କେହ୍ନେ ନ ଇଚ୍ଛିବି
ମୁଁ ପୁତ୍ରପଣେ ତୁମ୍ଭର ନାଶ କି କରିବି ।
ଏସନ ଯହୁଁ ବୋଇଲେ ଜାହ୍ନବୀ କୁମର
ଶୁଣି ସନ୍ତୁଷ୍ଟ ହୋଇଲେ ଋଷି ପରାଶର ।
ପର୍ଶୁରାମଙ୍କୁ ବୋଇଲେ କୋପେ ଭୀଷ୍ମରଥି
ଆହେ ପର୍ଶୁରାମ ତୋତେ ମୋହର କି ଭୀତି ।
ପଳା ଯା ମିଛେ ନ କହ ଏଥେ ବଡ଼ପଣ
ଆପଣା ମଧ୍ୟେ କଳହ ନ ଲାଗୁ ଏକ୍ଷଣ ।
ତୁହି ମୋହର ଆତ୍ମୀୟ ଅଟୁ ଯେ ଯଥାର୍ଥ
ଅନିମିତ କଥାରେ କି କରିବା ଅନର୍ଥ ।
କିଞ୍ଚିତ ଦୋଷରେ ବଡ଼ପଣ ଯିବ ନାଶ
ଶୃଗାଳ ଜିଣଇ ସିଂହ ହୁଏଟି କି ଧ୍ୱଂସ ।
ଭୀଷ୍ମ ମୁଖୁ ଏସନକ କଟୁବାକ୍ୟ ଶୁଣି
କୋପେଣ ଧାଇଁଲେ ପର୍ଶୁଧରି ପର୍ଶୁପାଣି ।
ଯହୁଁ କୋପେଣ ଧାଇଁଲେ ଯମଦଗ୍ନି ବାଳ
ଧାଇଁଗଲେ ଭୀଷ୍ମ କୋପେ ହୋଇ ଅନର୍ଗଳ ।
ଭୀଷ୍ମଙ୍କୁ ଯେ ପର୍ଶୁରାମ ଧଇଲେ ଆକର୍ଷି
ତଳେ ପକାଇ ଉପରେ କୋପେ ମାଡ଼ିବସି ।
ମୁଣ୍ଡକୁ ମୋଡ଼ି ଲୋଡ଼ନ୍ତେ ସେ ପରଶୁଧ୍ୱଜ
ଧାଡିକାରେ ଲେଉଟାଇ ଗଙ୍ଗାର ଆତ୍ମଜ ।
ତଳେ ପକାଇ ବସିଲେ ତାଙ୍କ ହୃଦଗତେ
କାର୍ମୁକରେ ଚାପି ମୁଖେ ପ୍ରହାରିଲେ ମୁଥେ ।
ଭୀଷ୍ମଙ୍କ ମୁଥ ପଡ଼ିଲା ବ୍ରଜଗିରି ଜାଣି
ନାସିକାବାଟେ ରୁଧିର ବହିଗଲା ପୁଣି ।
ଦେଖିଣ ଧାଇଁ ଅଇଲେ ନୃପତି ଶାନ୍ତନୁ
ଭୁଜ ଧରି ବୋଇଲେ ତୁ କୋପ ତେଜ ମନୁ ।
ରହ ରହ ବାବୁ ତୁରେ ଭୀଷ୍ମ ମହାରଥ
ସ୍ୱଜନେ ସ୍ୱଜନେ କିମ୍ପା ହୁଅ ନାଶପ୍ରାପ୍ତ ।
ରୁହାଇଲେ ପରାଶର ଶାନ୍ତନୁ ସଂଗ୍ରାମ
ଲଜ୍ଜା ପାଇ ତହୁଁ ବେଗେ ଗଲେ ପର୍ଶୁରାମ ।
ଅମ୍ବା କନ୍ୟା ଯେ ପ୍ରୟାଗ ତୀର୍ଥକୁ ହିଁ ଗଲା
ତ୍ରିବେଣୀରେ ସ୍ନାନ କରି ମାଧବ ପୂଜିଲା ।
ଭୋ ମାଧବ ହୋଇଥାଅ ମୋର ତୁହି ସାକ୍ଷୀ
ଭୀଷ୍ମଙ୍କ ଯୋଗୁଁ ହୋଇଲି ମୁଁ ସିନା ବିମୁଖୀ ।
ଭୀଷ୍ମଙ୍କ ଉପରେ ଯାଉ ହତ୍ୟାଦୋଷ ମୋର
ମାଧବଙ୍କୁ ସାକ୍ଷୀ କରି ଝାସିବି ଶରୀର
ମୁହିଁ ସ୍ତିରୀମାତ୍ର ଦେଇ ନୁହିଁଇ ନାଁ ଯୋଧୀ
ଜନ୍ମେ ଜନ୍ମେ ଭୀଷ୍ମଙ୍କୁ ମୁଁ ପାରିବି କି ସାଧି ।
ଏ ମୋହର ରୂପ ଗୁଣ ଲକ୍ଷଣ କେମନ୍ତେ
ସଂଗ୍ରାମେ ଶସ୍ତ୍ର ଛାଡ଼ିବ ଭୀଷ୍ମ ମ୍ଳାନଚିତ୍ତେ ।
ତ୍ରିବେଣୀରେ ପଶି ଜଳେ ଜାଳିଲା ଅନଳ
ଲଗାନ୍ତେ ଅନଳ ଜଳି ଉଠିଲା ତତ୍କାଳ ।
କହନ୍ତି ଅଗସ୍ତି ଶୁଣ ଆହେ ଯୋଗେଶ୍ୱର
ଏସନ ଚରିତ ହାଦେ ହେଲା ଭୀଷ୍ମଙ୍କର ।
ଭୀଷ୍ମ ଦାର ସଂହାରିଲେ ପିତାଙ୍କ ନିମନ୍ତେ
ଗଙ୍ଗାଶାପେ ଅପୁତ୍ରିକ ହେଲେ ବେନି ଭ୍ରାତେ ।

ଜୟ ତୁ ଜୟ ତୁ ମାଗୋ ଶ୍ରୀଚଣ୍ଡୀ ଶାରଳା
ଜୟ ତୁ ଜୟ ତୁ ମାଗୋ ଅଭୟା ମଙ୍ଗଳା ।
ଝଙ୍କଡ଼ପୁର ବାସିନୀ କର ତୁ ସୁଦୟା
ମୁଁ ମୂର୍ଖ ପାମର ମୋତେ ନ କର ତୁ ମାୟା ।
ମୁହିଁ ତବ ପୁତ୍ର ମାଗୋ ତୋ ପାଦେ ଶରଣ
ଶାରଳା ଦାସ ସେବଇ ନିତ୍ୟ ତୋ ଚରଣ ।

—o—

## ବ୍ୟାସ, ଧୃତରାଷ୍ଟ୍ର, ପଣ୍ଡୁ ଓ ବିଦୁର ଜନ୍ମ

କହନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ଏ ମହାଭାରତ ଶୁଣି ପାପ କର ଦୂର ।
ଏମନ୍ତେ ଆପଣା ରାଜ୍ୟେ ଗଲେ ତିନିଭାଇ
ଅନେକ ଯାଗ କଲେ ଶାନ୍ତନୁ ନୃପସାଇଁ ।
ଗଙ୍ଗାଙ୍କର ଶାପ ଆନ କେ କରିପାରିବ
ଅନେକ ମତେ ସନ୍ତାନ ନ ଦେଲେ ଦଇବ ।
ଅପୁତ୍ରିକ ହୋଇ ରାଜ୍ୟ କଲେ ତିନିଭ୍ରାତେ
ବଞ୍ଚିଲେ ନବ ସହସ୍ର ବର୍ଷ ପରିଯନ୍ତେ ।
ମହାକ୍ଷତ୍ରିପଣେ ଶତ୍ରୁଗଣ ହେଲେ ସାଧି
ଚିତ୍ରାଙ୍ଗଦା ଅଙ୍ଗେ ଜାତ ହେଲା କୁଷ୍ଠବ୍ୟାଧି ।
ଅନେକ ବୈଦ୍ୟ ଲାଗିଲେ ଆରୋଗ୍ୟ ନୋହିଲା
ନାନା ଅଉଷଧି ତାକୁ କିଛି ନ କାଟିଲା ।
ସେହିଯୋଗୁଁ ନ ବର୍ତ୍ତିଲା ଚିତ୍ରାଙ୍ଗଦ ବୀର
ଅଳ୍ପଦିନେ ହୋଇଗଲା ପ୍ରାଣତ୍ୟାଗ ତାର ।
ସମୟେ ବିଚିତ୍ର ବୀର୍ଯ୍ୟ ପ୍ରୟାଗକୁ ଗଲା
ଅପୁତ୍ରିକ ଯୋଗୁଁ ଝାସ ତ୍ରିବେଣୀରେ ଦେଲା ।
ଦୁଇଭାଇ ନାଶଗଲେ ଅପୁତ୍ରିକ ହୋଇ
ଭୀଷ୍ମ ଦାର ସଂହରିଲେ ପୁତ୍ର ଜାତ କାହିଁ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଜୟନ୍ତା ବାରୁଣା
ବାଟପାଟ ହେଲା ରାଜ୍ୟେ ନାହିଁ ତା ଧାରଣା ।
ଭୀଷ୍ମ ଦିଗବିଜେ କରି ପର ସୈନ୍ୟ ନାଶି
ପଞ୍ଚରାଜ୍ୟ ସମ୍ଭାଳିଲେ କରି ଦର୍ପ ଧ୍ୱଂସି ।
ପରାଶର ପଚାରିଲେ ଶାନ୍ତନୁଙ୍କୁ ରାଇ
ଏଡ଼େ ବଂଶ ବୁଡ଼ିଗଲା ଗଙ୍ଗାଶାପ ପାଇ ।
ପରାଶର ବୋଇଲେ ଯେ ସତ୍ୟବତୀ ଡାକି
ଅମ୍ବିକା ଯେ ଅମ୍ବାଳିକା ପଚାର ଦୁହିଁଙ୍କି ।
ପୁତ୍ର ଉପୁଯାନ୍ତୁ ଏହି ବଂଶରେ କେମନ୍ତେ
ପୁତ୍ର ଉପୁଯାନ୍ତୁ ବଂଶ ଉଦ୍ଧାର ନିମନ୍ତେ ।
ସତ୍ୟବତୀ ବୋଲେ ଏହା ହୋଇବ କେମନ୍ତ
ପୁତ୍ରର କାରଣେ ସେହୁ ଭାବିଲେ ବହୁତ ।
ଭାବି ଭାବି ଚଳିଗଲେ ତହୁଁ ସତ୍ୟବତୀ
ଅମ୍ବିକା ଭୁବନେ ଯାଇ ବିଜେ କଲେ ସତୀ ।
ଦେଖି ପୂଜାବିଧି କଲେ ତାଙ୍କୁ ଯୋଗେଶ୍ୱରୀ
ଆସନରେ ବସାଇଲେ ଗଉରବ କରି ।
ଗୁରୁପତ୍ନୀ ପାଦତଳେ ପ୍ରଣାମି ସତ୍ୱର
ଶରୀର ଆଉଁଷି ଦେଲେ ସତ୍ୟବତୀଙ୍କର ।
ବ୍ୟାକୁଳ ହୋଇ ଭାଳନ୍ତି ଦେବୀ ସତ୍ୟବତୀ
ଅମ୍ବିକାକୁ କୋଳ କରି ବସାଇ ବୋଲନ୍ତି ।
ମାଗୋ ଏଡ଼େ ବଂଶ ନାଶଯାଏ ଅନିମିତେ
ଭସ୍ମରୁ ଅଙ୍କୁର ପୁଣି ହୋଇବ କେମନ୍ତେ ।
ସନ୍ତାନ ଜାତକୁ ମାଗୋ ଅଛିଟି କି ବୁଦ୍ଧି
କେମନ୍ତେ ଉପାୟେ ମାଗୋ କାର୍ଯ୍ୟକର ସିଦ୍ଧି ।
କର ପତ୍ର ଯୋଡ଼ି କରି ଅମ୍ବିକା ବୋଇଲା
ସମସ୍ତେ ଦେଖିଲେ ସତୀପଣେ ଦିନଗଲା ।
ସତ୍ୟବତୀ ବୋଇଲେ ଗୋ ନ ବୋଲ ତୁ ଏହା
ବଂଶ ରକ୍ଷାକର ମାଗୋ ଛାଡ଼ ଧର୍ମରାହା ।
ଅମ୍ବିକା ବୋଲେ କରିବି ଯେ ତୁମ୍ଭର ବୋଲ
ଯେତେ ବ୍ରତ ଛାଡ଼ିବି ପୁଂସ କାହାକୁ କଲ ।
ଭୀଷ୍ମଙ୍କୁ ବୋଲ ଆସନ୍ତୁ ଆମ୍ଭର ତହିଁକି
ଆନ ପୁରୁଷେ ଆମ୍ଭର କାର୍ଯ୍ୟ ହିଁ ଅଛି କି ।
ବଧୂଙ୍କ ବଚନେ ଚଳିଗଲେ ସତ୍ୟବତୀ
ଏକାନ୍ତେ ବସାଇ ପାଶେ ଭୀଷ୍ମଙ୍କୁ କହନ୍ତି ।
ତୋର ସତ୍ୟବ୍ରତ ବାବୁ ନୋହିଲା ତ ଆନ
ବଂଶ ବୁଡ଼ାଇଲୁ ବାବୁ କେବଣ କାରଣ ।
ବାବୁ ତୁ ଅମ୍ବିକା ତୁଲେ କର ଯା ରମଣ
ପୁତ୍ର ଉପୁଜୁ ବାବୁରେ ବଂଶ ଉଦ୍ଧାରଣ ।
ବୋଲନ୍ତି ଗାଙ୍ଗେୟ ପୁଣ ଆଦି ମାହେଶ୍ୱରୀ
ତୁ ପରମ ଗୁରୁ ତୋର କୋପକୁ ମୁଁ ଡରି ।
ମୁଁ ଯେ ଦାର ସଂହାରିଲି ପିତାର ନିମନ୍ତେ
କଲି ସତ୍ୟବ୍ରତ ମୁଁ ଗୋ ଲଙ୍ଘିବି କେମନ୍ତେ ।
ମାତାର ବଚନ ଯହୁଁ ନ କଲେକ ଭୀଷ୍ମ
ବିସ୍ମୟେ ସେ ସତ୍ୟବତୀ ଗଲେ ନିଜ ଦେଶ ।
ଅନେକ ବିରସେ ସତ୍ୟବତୀ ଯାନ୍ତେ ଉଠି
ଯମୁନା ନଦୀର କୂଳେ ବ୍ୟାସଙ୍କୁ ସେ ଭେଟି ।
ବ୍ୟାସ ପ୍ରଣିପାତ କଲେ ସେ ସତ୍ୟବତୀଙ୍କି
କେଣେ ଯାଇଥିଲ ମାତା ତୁମ୍ଭେ ଗୋ କାହିଁକି ।
ବସିଲେ ମହାସତୀ ଭାଣ୍ଡିର ବୃକ୍ଷ ତଳେ
ବେନି ଲୋଚନୁ ବିଷାଦେ ଅଶ୍ରୁଜଳ ଗଳେ ।
ଦେଖି ବ୍ୟାସ ବୋଇଲେ ଗୋ ସ୍ଥିର କରି କହ
ଶୋକର କାରଣ କହି ଫେଡ଼ ମୋ ସନ୍ଦେହ ।

କ୍ରୋଧ ଶାନ୍ତ କରି ଦାସ ରାଜାର କୁମାରୀ
କହେ ବାବୁ ତୁ ପଣ୍ଡିତ ବିଜ୍ଞ ବ୍ରହ୍ମଚାରୀ ।
ଚିତ୍ରାଙ୍ଗଦ ବୀର ଅପୁତ୍ରିକ ହୋଇ ମଲା
ଶାନ୍ତନୁ ନିମନ୍ତେ ଭୀଷ୍ମ ଦାର ସଂହାରିଲା ।
ବିଚିତ୍ରବୀର୍ଯ୍ୟ ଅପୁତ୍ର ହେତୁ ଦେଲା ଝାସ
କେହି ବିଚାର ନ କଲା ବଂଶ ଗଲା ନାଶ ।
କେଉଁ ପ୍ରକାରେ ବାବୁରେ ବଂଶ ପାଇ ରକ୍ଷା
ସଂସାର ଜନର ତୁହି ପରା ମନବାଞ୍ଛା ।
ଦ୍ୱିତୀୟ ନାରାୟଣ ତୁ ବଦନ୍ତି ସକଳେ
ଅନାଦିର ଗର୍ଭେ ତୁହି ପଶୁ କାଳେ କାଳେ ।
ଯାବତ କାଳକୁ ବାବୁ କଥା ହିଁ ରହିଲା
ବ୍ୟାସ ପ୍ରାୟେ ଋଷି ଥାଉଁ ସୋମବଂଶ ଗଲା ।
ତୁ ଯେ ତପସ୍ୱୀ ଅଟୁ ସକଳ କାଳଜ୍ଞତା
ତୁ ନ କଲୁ ବାବୁ ବଂଶ ରହିବାର ଚିନ୍ତା ।
ବ୍ୟାସ ବୋଇଲେ ଗୋ ମାତ ତୁତ ଆଦିନାରୀ
କେବଣ ବୁଦ୍ଧିରେ ପାରୁ ଏ ବଂଶ ଉଦ୍ଧରି ।
ପାଟଉଣୀରୁ ଯଦ୍ୟପି ପୁତ୍ର ହୁଏ ପ୍ରାପ୍ତି
ତେବେ ସେହି ବଂଶଧର ହୁଏ ମହାକ୍ଷତ୍ରୀ ।
ଯଜ୍ଞ କରିବା କି ଆମ୍ଭେ ସନ୍ତତି ନିମନ୍ତେ
ସତ୍ୟବତୀ ବୋଲେ ବହିଯିବ କାଳ କେତେ ।
ଦ୍ୱାଦଶ ଦିବସେ ଯେହ୍ନେ ହୋଇବ କୁମର
ତେବେ ସିନା ରାଜ୍ୟ ରକ୍ଷା ହୋଇବ ବିଚାର ।
ବୋଲନ୍ତି ବ୍ୟାସ ଗୋ କହ ଅଛି କେଉଁ ବୁଦ୍ଧି
କେଉଁ ପ୍ରକାରେ ହୋଇବ ଶୀଘ୍ର କାର୍ଯ୍ୟସିଦ୍ଧି ।
ସତ୍ୟବତୀ ବୋଲେ ବାବୁ ଅଛି ଏକ କଥା
ତୁ ମୋହର ନନ୍ଦନ ମୁଁ ତୋହର ମାତା ।
ଉପେକ୍ଷା କର ଉଭୟ କୁଳର ସେ ଲାଜ
ସବୁ ଧର୍ମ ଛାଡ଼ି ଘେନ ପୁତ୍ର ହେବ କାର୍ଯ୍ୟ ।
ଏକଥା କହିବା ବାବୁ ନ କରିବୁ ନାସ୍ତି
ମୋହର ଶପଥ ତୋତେ ବୋଲେ ସତ୍ୟବତୀ ।
ବ୍ୟାସ ବୋଲନ୍ତି ପରମ ପଣ୍ଡିତ ମହାତ୍ମା
ଗୁରୁ ବାକ୍ୟେ ନ ବଞ୍ଚିଲା ସନକ ଯେ ବ୍ରହ୍ମା ।
ମାତା ପିତା ବଚନ ହିଁ ପୁତ୍ର ଶିରୋଧାର୍ଯ୍ୟ
ବୁଝିଲେ ତ ପିଣ୍ଡ ପ୍ରାଣ ଏକଇ ଆତ୍ମଜ ।
ଅବିଚାରେ ପାଳୁଥିବ ଗୁରୁଙ୍କ ବଚନ
ଏହା ଯେ ନ କରେ ନାଶ ଯାଏ ସେହି ଜନ ।
ବ୍ୟାସ ବୋଇଲେକ ଆଜ୍ଞା ଦେବା ମୋତେ ବେଗି
ସତ୍ୟବତୀ ବୋଲେ ପୁତ୍ର ତୁ ପରମଯୋଗୀ ।
ଆମ୍ଭ ବଧୂ ଅମ୍ବାଳିକା ଆବର ଅମ୍ବିକା
ଏହାଙ୍କର ମେଳେ ଯାଇ ପ୍ରୀତି କର ଏକା ।
ସାଧୁ ପୁତ୍ର ଜାତ କର ଏହାଙ୍କର ତୁଲେ
ଶୁଣିଣ ତା ବ୍ୟାସ ଦେବେ ସ୍ତମ୍ଭୀଭୂତ ହେଲେ ।
ଏତେ ବଡ଼ ଦୁର୍ଲ୍ଲଭ ଗୋ ବହୁତ ଅନ୍ତର
ଆମ୍ଭର ଲଙ୍ଘିଲେ ନାଶଗଲା ଗୋ ସଂସାର ।
ସତ୍ୟବତୀ ବୋଲେ ବାବୁ କିମ୍ପା ନ ଭରସୁ
ସଂସାର ଲୋକର ତୁହି ପାତକ ଯେ ଧ୍ୱଂସୁ ।
ବିଶେଷେ କଳିଷ୍ଟ ପର ନୁହେଁ ଭ୍ରାତୃବଧୂ
ପୁତ୍ର ଉତପତ୍ତି ହେଲେ ବଂଶ ହେବ ସାଧୁ ।
ବାବୁ ଉପୁଜିବ ତୋର ବୀର୍ଯ୍ୟେ ଯେଉଁ ପୁତ୍ର
ବଳବନ୍ତ ଜ୍ଞାନବନ୍ତ ହୋଇବ ପଣ୍ଡିତ ।
ବାବୁ ଆମ୍ଭ ବଂଶେ ଥିବ ଯେବଣ ହିଁ ପାପୀ
ସମସ୍ତ ମୋକ୍ଷ କରିବ ସେ ପୁତ୍ର ଅଦ୍ୟାପି ।
ଏ କଥାରେ କେବେ ହେଳା ନ କରିବୁ ବାବୁ
ବଧୂ ଅମ୍ବିକା ତହିଁ କି ଏହିକ୍ଷଣି ଯିବୁ ।
ବ୍ୟାସ ବୋଇଲେ ମାତ ଗୋ ମୋର ସନମତ
ତୁମ୍ଭେ ଯାଇ ତିଆର ଗୋ ବଧୂକୁ ଏମନ୍ତ ।
ବ୍ୟାସ ସମ୍ମତ କରାଇ ଗଲେ ସତ୍ୟବତୀ
ଅମ୍ବିକା ଦେବୀ ଭବନେ ମିଳିଲେ ତଡ଼ତି ।
ଏକାନ୍ତେ ବସାଇ ପଦ୍ମନାଭର କୁମାରୀ
ପରମାର୍ଥ କହି ସତ୍ୟବତୀକୁ ତିଆରି ।
ବୋଇଲେ ଆମ୍ଭର ବୋଲ କର ତୁମ୍ଭେ ବେନି
ଅମ୍ବିକା ଯେ ଅମ୍ବାଳିକା କରନ୍ତି ଦଇନି ।
ତୁମ୍ଭେ ଆମ୍ଭ ଠାକୁରାଣୀ ଆମ୍ଭେ ତୁମ୍ଭ ଦାସୀ
ସ୍ୱାମୀର ବଚନ କାହିଁ ସେବକ କି ନାଶି ।
ମାଗୋ ଲଜ୍ଜାମାନ ଭୟ ଛାଡ଼ିଣ ସମୂହ
ସତ୍ୟ ଭଗ୍ନ ହେବା ଲାଗି ଲାଗଇ ସନ୍ଦେହ ।
କେବଣ ପ୍ରକାରେ ବଂଶ ରହିବ ଅଙ୍କୁରି
ମୋହର ବୋଲ ତୁମ୍ଭେ ଗୋ କରିବ ବିଚାରି ।
ସତ୍ୟବତୀ ବୋଇଲେ ଗୋ ମୋର ଦେହ ଛୁଅଁ
ପାପ ବୋଲେ ପୁଣ୍ୟ ବୋଲେ ଏକମନ ହୁଅ ।
ଅମ୍ବିକା ବୋଇଲେ ତୁ ପରମ ମାହେଶ୍ୱରୀ
ଏତେ କାଳ ଯାଏ ଆଜ୍ଞାବର୍ତ୍ତୀ ଯେ ତୋହରି ।
ସରିଲା କଥାରେ କିମ୍ପା ମେଣ୍ଟିବି ତୋ ବାକ୍ୟ
ବିଚାରି କହିବା ହେଉ ଆମ୍ଭର ଯେ ଶକ୍ୟ ।
ମାଗୋ ଭୀଷ୍ମ ପାଶେ କଲି ତୁମ୍ଭଙ୍କୁ ତିଆରି
ଦାର ସଂହାରିଲା ସେହି ସତ୍ୟବ୍ରତ କରି ।
ବ୍ୟାସ ଋଷି ଅଟଇ ଯେ ମୋର ଜ୍ୟେଷ୍ଠପୁତ୍ର
ତାହାରି ସଙ୍ଗତେ ତୁମ୍ଭେ ପ୍ରୀତିକର ମାତ ।
ଅମୋଘ ରେତ ତାହାର ନୁହଇଁ ଯେ କ୍ଷୟ
ଉତ୍ପତ୍ତି ହେବ ଯେ ବେନି ସଇନ୍ଦୁ ତନୟ ।

ସତ୍ୟବତୀଙ୍କର ବାଣୀ ଏସନକ ଶୁଣି
ମୂର୍ଚ୍ଛାଗତ ହେଲେ ତହିଁ ସେ ବେନି ବହେଣି ।
ଦୁଇଭୁଜେ ତୋଳି ତାଙ୍କୁ କୋଳରେ ଧଇଲେ
ଚେତନା ପାଇଣ ଦୁହେଁ ବଚନ କହିଲେ ।
ଦୁସ୍ତର କଥା କହିଲ ମାଗୋ ନ ବିଚାରି
ଜ୍ୟେଷ୍ଠଗୁରୁର କେମନ୍ତେ ହେବୁ ମନୋହାରୀ ।
ନୀତିବତୀ ହୋଇ କିମ୍ପା ଅନୀତି କହିଲ
ଜନ ଅଗ୍ନିକି କିମ୍ପାଇଁ ଏକସଙ୍ଗ କଲ ।
ସାକ୍ଷାତେ ଅଗ୍ନି ଅଟନ୍ତି ମାଗୋ ବେଦବ୍ରହ୍ମା
ଗଙ୍ଗା ଯେ ଅଟନ୍ତି ବାମଦେବଙ୍କର ବାମା ।
ଏ ଘେନି ବ୍ରହ୍ମା ରୁଦ୍ର ହୁଁ ଅଟନ୍ତି ଯେ ଜ୍ୟେଷ୍ଠ
ଗଙ୍ଗାର ଅଗ୍ନିର ତେଣୁ ନ କରାଇ ଭେଟ ।
ନ ଜାଣି ଅଗ୍ନିରେ ପାଣି ପକାନ୍ତି ଯେ ହସ୍ତେ
ଦେଢ଼ଶୁର ଭ୍ରାତୃବଧୂ ଯୋଗେ ପାଦ ଯେତେ ।
ସେହି ପାତକେ ଦୂଷିତ ହୁଅଇ ସେ ଜନ
ମହାଦୋଷ ଚିତ୍ରଗୁପ୍ତ କରନ୍ତି ଲିଖନ ।
ଏ କଥା ବିଚାର କିମ୍ପା ନ କର ଗୋ ଶାଶୁ
ଏଡ଼େ ନର୍କ ଯୋଗ ଦେଖୁ ଦେଖୁ କେ ଭରସୁ ।
ସତ୍ୟବତୀ ବୋଲନ୍ତି ଗୋ ଉପୁଜେ ସନ୍ତତି
ପୁତ୍ରେ କରନ୍ତି ସିନା ସେ ଦୋଷ ବିନଶ୍ୟତି ।
ବ୍ୟାସ ଅଂଶେ ଉପୁଜିବେ ଯେବଣ ହିଁ ପୁତ୍ରେ
ପାପ କଳଙ୍କ କି ଥିବ ଆମ୍ଭର ଏ ଗୋତ୍ରେ ।
ଉଠ ମହାମ୍ଭାଣି ବୋଲି ଧରି ବେନି ହସ୍ତ
ନାସ୍ତି ନ କରିବ ମାଗୋ ଆମ୍ଭର ଶପଥ ।
ଅମ୍ବିକା ବୋଇଲେ ବସ ଗୋ ପରମଗୁରୁ
ଏକେ ଅପୁତ୍ରିକ କିମ୍ପା କଟାଳ ତୁ କରୁ ।
ସତ୍ୟବତୀ ବୋଇଲେ ଗୋ ଶୁଣ ତତ୍ତ୍ୱ କଥା
ସନ୍ତାନ ଧର୍ମର ଆମ୍ଭେ କହିବା ବାରତା ।
ଲୀଳା ଶ୍ୟାମଳା ବୋଲି ଗୋ ବେନି ଯେ ଭଉଣୀ
ଦାସରାଜାର ସେହୁ ଅଟଇ ପାଟରାଣୀ ।
ରାଜାହସ୍ତେ ଦଶସସ୍ର ବର୍ଷ ପରିଯନ୍ତେ
ସନ୍ତାନ ନ ଥିଲା ସେହୁ ଥିଲେ ସତ୍ୟବ୍ରତେ ।
ମାଗୋ ରାଜାବୀର୍ଯ୍ୟେ ଯହୁଁ ନୋହିଲା ସନ୍ତତି
ପରଦାରେଣୀ ହୋଇଲେ ଯେ ବେନି ଯୁବତୀ ।
ଯାହାର ବୀର୍ଯ୍ୟେ ଯେମନ୍ତେ ଉପୁଜଇ ପୁତ୍ରେ
ତାହାଙ୍କୁ ଘେନି ଶୃଙ୍ଗାର କରାଇଲେ ଗୁପ୍ତେ ।
ଏମନ୍ତ ଶୃଙ୍ଗାର ନ ପାଇଲେ ବେନି ଦେବୀ
କାଳେ ସେହି ନ ରଖିଲେ ମାନିତା ଗୌରବୀ ।
ମଳାଶୁର ଜ୍ୟେଷ୍ଠଶୁର ଭଗ୍ନିକି ଜାମାତା
ଏତେ ଯୋଗ କରାଇଲେ ସେ ବେନି ବନିତା ।

ଏମନ୍ତ ପ୍ରୀତି କରାଇ ହୋଇଲେ ଅସତୀ
ଏକ ଦୁହିତାଏ ହୋଇଲି ମୁଁ ଉତପତି ।
ମାତା ବୋଲେ ଉପୁଜାଇ ମୁଁ ଅସତ୍ୟ ବାଟେ
ତୁ ସତ୍ୟବତୀ ନୌକାରେ ଯାଅ ଜଳଘାଟେ ।
ଦାସରାଜା ଅପୁତ୍ରିକ ମୁଁ ଏକା ଦୁହିତା
ଧର୍ମ କରେ ବ୍ରତ ମୋତେ କରାଇଲେ ପିତା ।
ଦ୍ୱାଦଶ ବରଷ ମୋତେ ହେଲା ଯେତେବେଳେ
ପିତା ଆଣି ଥାପିଲେକ ଯମୁନାର ଜଳେ ।
ପିତା ବୋଇଲେ ଗୋ ମାତ ନାବ ବାହୁଥିବୁ
ଦୁଇକୂଳ ଲୋକଙ୍କୁ ତୁ ପାରି କରିଦେବୁ ।
ଧନ କଉଡ଼ି କିଛି ନ ଘେନିବୁ ଯାଚିଲେ
ସୁଖେ ପାରି କରିଦେବୁ ନାବରେ ବସିଲେ ।
ପିତା ଆଜ୍ଞାରେ ରହିଲି ମୁହିଁ ଜଳତଟେ
ସୁଖେ ମୁଁ ପାରି କରାଇ ଦେଲି ନଦୀଘାଟେ ।
ମାତାଙ୍କ ଅତି କୁଳଟାପଣ ଦେଖି କରି
କେହି ବିଭା ନୋହିଲେ ତ ପିତା ଯାକୁ ବରି ।
ଏମନ୍ତ ରାତ୍ର ଦିବସ ନଉକାରେ ଥାଏ
ଯେ ଆସେ ତାହାକୁ ମୁହିଁ ପାରି କରିଦିଏ ।
ଏମନ୍ତ ନାବ ବାହିଲି ମୁଁ ବେନି ବସ୍ବର
ଦିନେ ନାବରେ ବସିଲେ ଆସି ପରାଶର ।
ପରାଶର ବୋଇଲେ ଯେ ଆମ୍ଭେ ତପୋନିଷ୍ଠ
ଆନ କାହାକୁ ନ ବସା ଯାଉ ଆର ତଟ ।
ମୁଁ ବୋଇଲି ପଞ୍ଚାଶତ ଜଣ ନାବେ ବସି
ଏକା କେମନ୍ତେ ଦୁର୍ଭାର ହୋଇବ ମହର୍ଷି ।
ପରାଶର ବୋଇଲେ ଯେ ଆମ୍ଭେ ନୋହୁ ଗୁରୁ
ତପୋଧନ ଲୋକ ଆମ୍ଭେ ମହାଭୟ କରୁ ।
ଏକା ଆମ୍ଭଙ୍କୁ ନିଅସି ପାରି କରି ତୁହି
ନୋହିଲେ ନାବରୁ ଆମ୍ଭେ ଯାଉଛୁ ଓହ୍ଲାଇ ।
ଲୋକଙ୍କୁ ବାହାର କଲି ବସ ଋଷି ବୋଲି
ଋଷିଙ୍କି ବସାଇ ନାବେ ଆନନ୍ଦେ ବସିଲି ।
ପରାଶରକୁ ବସାଇ ନାବ ମୁଁ ବାହିଲି
ନଦୀର ମଧ୍ୟରେ ଯାଇ ପ୍ରବେଶ ହୋଇଲି ।
ପୃଥୁଳ ସ୍ତନ ଜଘନ ସୁନ୍ଦର ମୋ କାୟେ
ରୂପ ଦେଖି ମହାତମା କଲା ମୋତେ ଲୟେ ।
ନ ଚଳଇ ନାବ ମୁହିଁ ବାହି ବାହି ଫୁଟି
ନଦୀର ମଧ୍ୟେ ବୁଲାଇ ମୋର ନାବଗୋଟି ।
ଘର୍ମ ଜର୍ଜ୍ଜରିତ ହେଲା ମୋହର ଶରୀର
ଦେହରୁ ବସନ ଖସି ପଡ଼ିଣ ନାବର ।
ଋଷି ଆଗ ମଙ୍ଗେ ଅଛି ମୁହିଁ ପଛ ମଙ୍ଗେ
ନୟନ ପୂରାଇ ମୋର ଦେଖି ସ୍ତନଜଘେ ।

କାମେ ବିହ୍ୱଳ ହୋଇଲେ ସେହି ବ୍ରହ୍ମଚାରୀ
ଆରମ୍ଭେ ବୋଲନ୍ତି ଆଗୋ କରୁ କିନା ପାରି ।
ମୁଁ ବୋଇଲି ଦୁଇବର୍ଷ ହେଲା ବାହେ ନାବ
କୌଣସି ଦିନ ତ ନାହିଁ ଏସନକ ଭାବ ।
ତୁମ୍ଭର ମାୟା ନୋହିଲେ ଗଙ୍ଗା ଲୋଭ କଲା
ନଦୀରେ ପଡ଼ ବା ଡେଇଁ ମୋର କିସ ଗଲା ।
ଋଷିଏ ବୋଇଲେ ବାବୁ ତୁ ବାହି ନ ପାରୁ
ଅଖ୍ୟାତି ଦେଇ ପକାଇ ଲୋଡୁ ଏ ନାବରୁ ।
ଗଙ୍ଗା ଯେବେ ଏ କଷଣ ଦେଲା ହେ ମହର୍ଷି
ମୁହିଁ ଏ ନଦୀ ମଧ୍ୟରେ ପଡୁଅଛି ଝାସି ।
ଭୋ ଜାହ୍ନବୀ ଦେବୀ ମାଗୋ କର ମୋତେ ଭୋଗ
ରାଜାର କୁମାରୀ ଏଥେ ହୋଇଲି ସଞ୍ଜୋଗ ।
ଏତେ ବୋଲି ଜଳ ମଧ୍ୟେ ପଡ଼ନ୍ତେ ମୁଁ ଝାସି
କୋଳ କରିଣ ଧଇଲେ ପରାଶର ଋଷି ।
ଆପଣା ଜାନୁରେ ନେଇ ମୋତେ ବସାଇଲେ
ମଦନ ଆରତ୍ତେ ମୁନି ମୁଖେ ଚୁମ୍ବ ଦେଲେ ।
କାମ ଅସାଷ୍ଟମେ ମୁନି ମନେ କଲେ ଇଚ୍ଛା
ବୋଲନ୍ତି ମହର୍ଷି ତୋତେ ଆମ୍ଭ ମନବାଞ୍ଛା ।
ବଧୂଙ୍କ ଅଗ୍ରେ କହନ୍ତି ଦେବୀ ସତ୍ୟବତୀ
ଆମ୍ଭ ଚରିତ ଗୋ ମାଏ ଶୁଣ ପୂର୍ବରୀତି ।
ଋଷି ବୋଇଲେ ଏ ମାୟା ଆମ୍ଭରୁ ତୁମ୍ଭଙ୍କୁ
ତୁମ୍ଭେ ସତ୍ୟବାଦୀ ଦିଅ ରମଣୀ ଆମ୍ଭଙ୍କୁ ।
ବୋଇଲି ତା ଶୁଣି ଛାଡ଼ ଛାଡ଼ ହେ ଆମ୍ଭଙ୍କୁ
ଲଜ୍ଜା କିମ୍ପା ନ ପାଇଲ ଏହା କହିବାକୁ ।
ଅବଳା ଅବିବାହିତା ମୁଁ ଅରୋଜବତୀ
ଆମିଷେ ବଢ଼ିଲୁ ଆମ୍ଭେ ଜାତି କଇବର୍ତ୍ତୀ ।
ବ୍ରାହ୍ମଣ ସ୍ତିରୀ ଆପଣାଠାରୁ ନୀଚପତ୍ନୀ
ହରିଲେ ହେଁ ଯେତେ ଦୋଷ କହପରା ମୁନି ।
ଅଜ୍ଞାନ ଜନଙ୍କୁ ତୁମ୍ଭେ କର ପରାଜ୍ଞାତା
ତୁମ୍ଭର ଅନୀତି ଲୋଭ ଶକ୍ତି ଅପ୍ରମିତା ।
ଅଜ୍ଞାନ ପ୍ରାଣିଙ୍କ ଦୋଷ ତହିଁରେ ତ ନାହିଁ
ପଣ୍ଡିତ ହିଁ ପାପ କଲେ ମୁକ୍ତ ଅଛି କାହିଁ ।
ବୋଇଲେ ଏ ଗଣ୍ଡୁଷକ ଜଳକର ଚଳୁ
ଆଜିଠାରୁ ରଜୋବତୀ ତୁ ନାରୀ ହୋଇଲୁ ।
କମଣ୍ଡଳୁ ଜଳେ ମୁନି କରାଇଲେ ସ୍ନାନ
କସ୍ତୁରୀ ଗନ୍ଧ ଆମୋଦ କରଇ ଯେ ଜନ ।
ଗନ୍ଧ ସମୀର ବହିଲା ଯୋଜନ ପର୍ଯ୍ୟନ୍ତେ
ଯୋଜନାଗନ୍ଧା ମୋ ନାମ ଦେଲେ ମୁନି ମୋତେ ।
ଯେବଣ ସ୍ଥାନେ ସ୍ନାନ ତୁ କରିଥିବୁ ଆଉ
କର୍ପୂର ବାସ ଘେନିଣ ଯୋଜନେକ ବାହୁ ।
ଆଲୋ ଆମ୍ଭେ ବ୍ରହ୍ମଋଷି ତୋତେ କଲୁ ଶ୍ରଦ୍ଧା
ଆଜ ହୁଁ ଲୋକେ ବୋଲାଅ ତୁ ଯୋଜନଗନ୍ଧା ।
ମୁହିଁ ବୋଇଲି ହେ ଶୁଣ ମୁନି ପରାଶର
ଆକାଶେ ଉଦୟ ଦେଖ ଦେବ ଦିବାକର ।
ଦିବସେ ଶୃଙ୍ଗାର କଲେ ଏହୁ ବଡ଼ ଦୋଷ
ଶିର ଛେଦନ ଶାସ୍ତି କି କହେ ଜନ୍ତୁଈଶ ।
ଦିବସେ ଶୃଙ୍ଗାର କଲେ ଆୟୁ ହୁଏ କ୍ଷୟ
ଜନମ ହୋଇଲେ ଦୁଷ୍ଟ ହୁଅଇ ତନୟ ।
ଦୁହିତା ହୋଇଲେ ହୋଇ ମହାରୋଗେ ରୋଗୀ
ମୁଖରା ହୁଅଇ ଆୟୁ ନାଶଯାଇ ବେଗି ।
ଦିବସେ ଶୃଙ୍ଗାର ମୁନି ଏସନ ଅବସ୍ଥା
ତୁମ୍ଭେ ବ୍ରହ୍ମଋଷି ପୁଣି ଅଟ ସର୍ବଜ୍ଞାତା ।
ଲୋକ ପୂରି ଅଛନ୍ତି ଏ ଦୁଇକୂଳ ଘାଟେ
ରାଜକୁମାରୀ କେମନ୍ତେ ପଶିବି ଅବାଟେ ।
ତତକ୍ଷଣେ ମାୟା କଲେ ସେହି ବ୍ରହ୍ମଚାରୀ
ବଇଶାଖ ମାସରେ ଯେ ଘୋଟିଲା କୁହୁଡ଼ି ।
ପରାଶର ବୋଇଲେ ଯେ ନ ଦିଶୁ ବହନ
ଧାତିକାରେ ଅନ୍ତରୀକ୍ଷେ ରହିଲେ ତପନ ।
ମନ୍ତ୍ରବଳେ ନାବ ବହିଗଲା ମଧ୍ୟ ନଦୀ
ବେନିକୂଳ ନ ଦିଶିଲା ଋଷି ମନ୍ତ୍ର ଭେଦି ।
ମୁଁ ବୋଇଲି ଧର୍ମନାବ ଅଗାଧ ଜଳରେ
ପାପକୁ ଭ୍ରାନ୍ତି ନ କରି କିମ୍ପା ପରାଶରେ ।
ସେ ବୋଇଲେ କାମ ବୋଲି ଯେବଣ ମହାତ୍ମା
ମେଣ୍ଟି ନ ପାରିଣ କୋପେ ଶାପ ଦେଲା ବ୍ରହ୍ମା ।
ଧର୍ମକୁ ଛାଡ଼ିଣ କୋଳେ ଧଇଲେ ମହର୍ଷି
ମୋର ସାଙ୍ଗେ କୌତୁକରେ ଆଦିରସେ ପଶି ।
ବିଶେଷ ମହାତ୍ମା ରତିଶାସ୍ତ୍ରେ ସେ ନିର୍ଜିତ
ଅନେକ ରସେ ଶୃଙ୍ଗାର ମୁଖେ ଅକଥିତ ।
ମେଷ ମାସ ଶୁକ୍ଳପକ୍ଷ ତିଥି ଯେ ତୃତୀୟା
ସେଦିନ ବୀଜ ଅକ୍ଷୟ କହିଛନ୍ତି ପ୍ରିୟା ।
ତୈତିଳ କରଣ ବୁଧବାର ଶୁଭଯୋଗ
ମେଷ ସଙ୍କରାନ୍ତିର ଯେ ସାତଦିନ ଭୋଗ ।
ନବମରେ ଚନ୍ଦ୍ର ବୃହସ୍ପତି ଏକାଦଶେ
ଅଗ୍ନିକୋଣ ଯୋଗ୍ନୀ ଶୁଭବେଳା କାଳାବଶେ ।
ମାହେନ୍ଦ୍ର ଯୋଗେ ଉତ୍ପତ୍ତି ହୋଇଲା ସେ ବଳା
ଅତ୍ୟନ୍ତ ସୁନ୍ଦର କୃଷ୍ଣପ୍ରାୟ ବର୍ଣ୍ଣକଳା ।
ଆଗେ ସଇନ୍ଦୁ ପୁତ୍ରେକ ହେଲା ଉତପତ୍ତି
ଦେଖି ସାନନ୍ଦ ହୋଇଲି ମୁହିଁ ସତ୍ୟବତୀ ।
ପୁତ୍ରକୁ କୋଳେ ଧଇଲେ ପରାଶର ଋଷି
ମହେନ୍ଦ୍ର ଯୋଗ ରୋହିଣୀ ଋକ୍ଷ ବୃଷରାଶି ।

ପୁତ୍ରକୁ କୋଳେ ଧରିଣ ନିରୀକ୍ଷି ତାପସ
ବିରଳ ରୂପ ଦେଖିଣ ନାମ ଦେଲେ ବ୍ୟାସ ।
ପୁତ୍ରକୁ କୋଳରେ ଧରିଛନ୍ତି ମହାମୁନି
ରୋଦନ ସ୍ୱରୂପେ ପୁତ୍ର କରେ ବେଦଧ୍ୱନି ।
ଦେଖିଣ ସେ ମହାତ୍ମାର ନ ସ୍ଫୁରଇ କିଛି
ମହାବ୍ରହ୍ମ ଭେଦି ଅଜପାରେ ଲୟ ଅଛି ।
ମହାଜ୍ଞାନୀ ପୁତ୍ର ଦେଖି ଗଙ୍ଗା ଲୋଭ କଲା
ତରତର ତରଙ୍ଗରେ ନାବ ବୁଡ଼ାଇଲା ।
ବୁଡ଼ନ୍ତେ ନଉକା ବ୍ରହ୍ମପତି ଭାସିଗଲା
ନଦୀ ଭିତରେ ପୁତ୍ରକୁ ପକାଇଣ ଦେଲା ।
ଅଗାଧ ଗଭୀର ଜଳେ ପଡୁ ବାଳଶିଷି
ସେ ଅନାଦି ତୋୟା ସମ୍ଭାଳିଲେ ମୁନିବ୍ୟାସ ।
ଗଙ୍ଗାର ଲାଗିଲା ଯହୁଁ ମହାତେଜ ଜ୍ୱାଳା
ତ୍ରାସେ ଛାଡ଼ିଦେଲେ ସେହି ଅନାଦି ଚଞ୍ଚଳା ।
ଅଗାଧ ସମୁଦ୍ର ମଧ୍ୟେ ପଡ଼ି ବାଳଶିଷ
ଅନନ୍ତ ବ୍ରହ୍ମାଣ୍ଡେ ଭେଦି ବୈକୁଣ୍ଠରେ ବସି ।
ମହା ବ୍ରହ୍ମଜ୍ଞାନୀ ଅଟେ ସେ ବାଳ ତନୟ
ଅଣାକାର ଅନାଦିରେ ଥାଇ ଯୋଗଲୟ ।
କୋଳ କଲେ ସେ ପୁରୁଷ ସ୍ୱାମୀ ଅଣାକାର
ଆନନ୍ଦରେ ଗୋପ୍ୟ କଲେ ହୃଦୟ ଭିତର ।
ଶୂନ୍ୟ ପୁରୁଷେ ଦେଖିଣ ବିଚାରନ୍ତି ବର୍ଣ୍ଣ
କୋଟି କୋଟି ଭାବେ ତାକୁ ହୋଇଲେ ପ୍ରସନ୍ନ ।
ସମସ୍ତଙ୍କ କୁତୁହଳେ ଦେଖାଇ ଅନାଦି
ଶୂନ୍ୟ ପୁରୁଷର ହୃଦେ ପଶି ଯୋଗସାଧି ।
ଶୂନ୍ୟକୁ ଶୂନ୍ୟ ସେ ମୁନି କରିଣ ଲିଖନ
ଭିଆଇଲେ ଭୂତ ଭବିଷ୍ୟତ ବର୍ତ୍ତମାନ ।
ବାଛିଣ ସେ ବ୍ରହ୍ମଭାଗ କହିଲେ ନିରତେ
ଆଜ୍ଞା ହୋଇଲା ବିଖ୍ୟାତ କର ଯା ଜଗତେ ।
ଅଖଣ୍ଡ ଅଣାକାର ଏ ଅଲେଖ ଭୁବନ
ଏଥେ ଶୁଣିଲେ ସଂଶୟ ନ କର ତୋ ମନ ।
ଶୁଣ ବଧୂମାନେ ସତ୍ୟବତୀ ଯେ ବୋଲନ୍ତି
ଏହିରୂପେ ମାଗୋ ହେଲା ବ୍ୟାସର ଉତ୍ପତ୍ତି ।
ବାରତା ପାଇ ଅଇଲା ତହୁଁ ଦାସରାୟେ
ପରାଶରକୁ ଅଣାଇ ମୋତେ ଦାନ ଦିଏ ।
ଆମ୍ଭେ ପୁଣି ଆରଜନ୍ମେ ଅଟୁ କଇବର୍ତ୍ତୀ
ବ୍ୟାସ ଲୁଚାଇଲା ସେହି ଅଗତି ଅଜାତି ।
ମହାବ୍ରହ୍ମ ଘେନିଣ ସେ ସର୍ବ ଏକ କଲା
ଅନେକ ପୁରୁଷ ସେହି ବ୍ୟାସ ଉଦ୍ଧାରିଲା ।
ମାଗୋ ବ୍ୟାସବୀର୍ଯ୍ୟେ ଉପୁଜିବ ଯେଉଁ ପୁତ୍ର
ବଳବନ୍ତ ଧାର୍ମିକ ସେ ହେବ ବୀର୍ଯ୍ୟବନ୍ତ ।
ତୁମ୍ଭେମାନେ ଆନ କିଛି ନ ଧରିବ ମନେ
ପରମ ଗତି ଲଭ ଗୋ ବ୍ୟାସଙ୍କ ପ୍ରସନ୍ନେ ।
ଅମ୍ବିକା ବୋଇଲା ଶୁଣ ଆଗୋ ସତ୍ୟବତୀ
ସ୍ତିରୀଜନ୍ମ ହେତୁ ଆମ୍ଭେ ଅଟୁ ମନ୍ଦଜାତି ।
ସର୍ବଦା ଅଶୁଚି କରି ନାନାଦି ଅକ୍ରିୟା
ସମସ୍ତେ ଧାଇଁଲୁ ମାଗୋ ନାହିଁ ସତ୍ୟକ୍ରିୟା ।
ମଦିରା ଖାଇଲେ ଯେହ୍ନେ ହୁଏ ଅସମ୍ଭାଳ
ପର ପୁରୁଷ ଦେଖିଲେ ତେହ୍ନେ ଆମ୍ଭେ ଭୋଳ ।
ଯାହାର ହାତ ଧରୁ ସେ ନୁହଇ ଆମ୍ଭର
ଅବିରତେ ଇଚ୍ଛୁପର ପୁରୁଷ ସୁନ୍ଦର ।
ଆମ୍ଭେ ଅବା ଇଚ୍ଛା କଲୁ ଅଟୁ ମହାପାପୀ
ସେ କିମ୍ପା ପାପ ଲଭିବେ ବ୍ୟାସ ମହାତପୀ ।
ସତ୍ୟବତୀ ବୋଇଲେ ଯେ ତୁମ୍ଭେ ଇଚ୍ଛା କଲେ
ଏହିକ୍ଷଣି ଅଣାଇବି ମୁଁ ତୁମ୍ଭର ବୋଲେ ।
ବୋଲନ୍ତି ବଧୂମାନେ ଯେ ପାତକ ହୋଇବ
ସେହି ପାତକମାନଙ୍କୁ କେ ପୁଣି ଲଭିବ ।
ସତ୍ୟବତୀ ବୋଇଲେ ମୁଁ ତୁମ୍ଭଙ୍କୁ ଭେଟାଇ
ଏ ପାପ ଦୋଷ ସମସ୍ତ ମୋତେ ଯେ ଲାଗଇ ।
ଯଦ୍ୟପି ପଶନ୍ତି ବଧୂମାନେ ଅନ୍ୟ ବାଟେ
ଗୁରୁପତ୍ନୀମାନେ ତାଙ୍କୁ ରଖନ୍ତି ଆକଟେ ।
ଆମ୍ଭଠାରେ ଭିଆଇଲ ତୁମ୍ଭେ ଯେ ଏମନ୍ତ
ତୁମ୍ଭର ବଚନେ ଆମ୍ଭେ କଲୁ ସନମତ ।
ବଧୂଙ୍କୁ ତିଆରି ଚଳିଗଲେ ମହାସତୀ
ବ୍ୟାସଙ୍କୁ ଘେନି ଅଇଲେ ସେହି ନିଶାରାତି ।
ଅମ୍ବିକା ଭୁବନେ ଯାଇ ହେଲେ ପରବେଶ
ସତ୍ୟବତୀ ତିଆରିଣ ପେଶିଦେଲେ ବ୍ୟାସ ।
ଶୋଇଲେ ସୁନ୍ଦରୀ ଦିବ୍ୟ ରତନ ପଲ୍ୟଙ୍କେ
ରମ୍ୟ ମନ୍ଦିରେ ପ୍ରବେଶ ବ୍ୟାସ ଯେ ଉତ୍ସୁକେ ।
ବ୍ୟାସଙ୍କୁ ଦେଖିଣ ମନେ ଜାତ ହେଲା ଭୀତି
ଶଯ୍ୟାକୁ ବଦନ କରି ଶୋଇଲେ ଯେ ସତୀ ।
ବ୍ୟାସ ବିଜେ କଲେ ଯାଇ ପଲ୍ୟଙ୍କ ଉପରେ
ଭୟ ପୁରୁଷ ଆକର୍ଷି ଗ୍ରାସିଲା ଶରୀରେ ।
ପରମଗୁରୁ ଦେଖିଣ ସେହୁ କଲେ ଭୟ
ଶରୀର କମ୍ପଇ ତାର ରମ୍ଭାପତ୍ର ପ୍ରାୟ ।
ମହାଲଜ୍ଜିତ ହେଲେ ସେ ବ୍ୟାସ ତପୋନିଷ୍ଠ
କାମ ବିହ୍ୱଳିତ ହେତୁ ହେଲେ ଜ୍ଞାନଭ୍ରଷ୍ଟ ।
ଅମ୍ବିକା ଦେଖିଲେ ମେଳେ ବ୍ୟାସ ମହାମୁନି
ଦେଖିଲେ ବଦନ ପୋତି ଶୋଇଛି କାମିନୀ ।
ଲଜ୍ଜା ତେଜିଲେ ମହାତ୍ମା ମଦନର ଭୋଳେ
ଅମ୍ବିକା କନ୍ୟାକୁ ମୁନି ଘେନିଲେକ କୋଳେ ।

ଲଜ୍ଜା ସଙ୍କୋଚେ କାମିନୀ ହେଲା ମାନବତୀ
ନତ ବଦନେ ବସିଲା କରି ଗୁରୁଭୀତି ।
ଅନେକ ଚାଟୁପଟଳ କରନ୍ତି ଯେ ବ୍ୟାସ
ନ କହଇ ସମସ୍ୟା ଯେ ନ ହୁଏ ହରଷ ।
ଦ୍ୱାରେ ଜଗି ଅଛନ୍ତି ସେ ଦେବୀ ସତ୍ୟବତୀ
ଭୋ ଧର୍ମ ଦେବତା ବଢୁ ଏହାଙ୍କ ପୀରତି ।
କାମଦେବ ସୁମରଣା କଲେ ଦେବୀ ଧ୍ୟାନେ
ଜଗମୋହନ ପୁରୁଷ ସୁମରିଲେ ମନେ ।
କମଳା ନନ୍ଦନ ଜୟ ଜୟ ତୁ ଅନଙ୍ଗ
ଯୋଗେଣ ନିଜର ତୁହି ଲୟ ଦର୍ପଭଙ୍ଗ ।
କନ୍ଦର୍ପ ପୁରୁଷ ତୁହି ମୁନି ଦର୍ପଭାଙ୍ଗୁ
ସ୍ତିରୀ ପୁରୁଷ ସମସ୍ତ ଦର୍ପ ହେଲେ ଗଞ୍ଜୁ ।
ଜୟ ଜୟ ଅନଙ୍ଗ ତୋ କରେ ପୁଷ୍ପଧନୁ
ଜଗତ ଜନଙ୍କୁ ମୋହି ଜାତ ହୋଇ ମନୁ ।
ଶ୍ରୀହସ୍ତେ ଶୋଭିତ ତୋର ପୁଷ୍ପ ପଞ୍ଚବାଣ
ଯୁବାଜନ ମନ ମରଦନେ ତୋ ପ୍ରୟାଣ ।
ରତିକି ବଲ୍ଲଭ ତୋର ଚରଣେ ନମସ୍ତେ
ବିଜେ କର କାମଦେବ ତୁ ଅମ୍ବିକା ଗାତ୍ରେ ।
ତୁ ଦେବ ଏହି ସଂସାରେ ଅଟୁ ହିତକାରୀ
ତୋ ବିନା କେ ଷଡ଼ରତୁ ଭୋଗ କରିପାରି ।
ସ୍ତମ୍ଭନ ମୋହନ ବଶ୍ୟଉଚ୍ଚାଟ ତୋ ଶର
ତୁ ଦେବ ତପସ୍ୟା ଭଗ୍ନ କଲୁ ହରଙ୍କର ।
କୁମାର ସମ୍ଭବ ହେଲା ତୋହ ଯୋଗୁଁ ସିନା
ତାରକ ବଧ କଲା ସେ ଘେନି ହେବ ସେନା ।
ତାରଣ କାରଣ ତୁହି ଧାରଣ ଦୈବତ
ତରୁଣ ନାରାୟଣ ତୁ ସକଳ ବର୍ଦ୍ଧିତ ।
ତୋ ଚରଣ ତଳେ ଶତ ସହସ୍ର ନମସ୍ତେ
ବିଜେ ତୁ ଶାରଳାଦାସ ଶୂଦ୍ରମୁନି ଚିତ୍ତେ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଯାହା ପୁଚ୍ଛାକଲୁ ହୋ ସତ୍ୟମନୁ ସୁନୁ ।
ଯୋଜନଗନ୍ଧା ଅନେକ କଲେ ଯହୁଁ ସ୍ତୁତି
ପ୍ରସନ୍ନ ହୋଇଲେ ସେହି ସ୍ତବେ ରତିପତି ।
ଅମ୍ବିକା ଅଙ୍ଗେ ପୀଡ଼ିଲା ଅନଙ୍ଗ ସୁନ୍ଦର
ଭେଦିଲା ଲୋମେ ଲୋମେ ସେ କାମ ପଞ୍ଚଶର ।
କାମେ ଅସାଷ୍ଟମ ହୋଇ ପଡ଼ିଲା ଯୁବତୀ
ବ୍ୟାସ ସଙ୍ଗ କରିବାକୁ ବଳାଇଲା ମତି ।
ଆଦି ମହାରସେ ରସ ବ୍ୟାସ ମହାମୁନି
ନିଜ ମନ୍ଦିରେ ରହିଲେ ଯାଇ ସେହି ବେନି ।
ଅଜୟ ମହାତ୍ମା ସେହୁ ଅକ୍ଷୟ ଅବ୍ୟୟ
ନ ଚଳଇ ମହାରସ ପାଷାଣର ପ୍ରାୟ ।
ପ୍ରାଣ ପାନ ବ୍ୟାନୋଦାନ ସମାନ ଏ ଆତ୍ମା
ଏହାଙ୍କୁ ଦୃଢ଼ କରିଣ ଇଚ୍ଛିଲା ମହାତ୍ମା ।
ମିଥୁନ ଅର୍କବାସର କୃଷ୍ଣ ତ୍ରୟୋଦଶୀ
ଅମ୍ବିକା ତୁଳେ ଶୃଙ୍ଗାର କଲେ ବ୍ୟାସଋଷି ।
ଅସାଷ୍ଟମେ ସୁନ୍ଦରୀ ଯେ ନ ପାରିଲା ଚେତି
ସଇନ୍ଦୁ ପୁତ୍ରେକ ତହିଁ ହୋଇଲା ଉତ୍ପତ୍ତି ।
ପୃଥିବୀର ମଧ୍ୟଭାଗେ ପଡ଼ିଲା ସେ ବାଳ
ପାଦଘାତେ କମ୍ପମାନ ହେଲା ମହୀତଳ ।
ପୁତ୍ର ପ୍ରସବୀ ଅମ୍ବିକା ସତୀ ନାଶଗଲା
କୋଳ କରି ମହାତ୍ମା ସେ ପୁତ୍ରକୁ ଧଇଲା ।
ପୁତ୍ର ଘେନି ଲଗାଇଲେ ହୃଦେ ମୁନିବର
ତୋଷେଣ ବୋଇଲେ ବଜ୍ରହେଉ ତୋ ଶରୀର ।
ଧାତିକାରେ ସତ୍ୟବତୀ ଗଲେ ଭିତରକୁ
ପୁତ୍ର ଗୋଟି ସମର୍ପିଲେ ମୁନି ଯେ ମାତାଙ୍କୁ ।
ପୁତ୍ରକୁ କୋଳେ ଧରିଣ ମୁନିଙ୍କ ଉତ୍ତମ
ଶୂନ୍ୟେ ଅନ୍ତର୍ଦ୍ଧାନେ ଗଲେ ଦେଖାଇ ବିକ୍ରମ ।
ବିଚାରନ୍ତି ପୁତ୍ର କୋଳେ ଘେନି ସତ୍ୟବତୀ
ବତିଶ ଗୁଣେ ସୁନ୍ଦର ଆନନ୍ଦ ମୂରତି ।
ରୂପ ଗୁଣ ବିଚାରିଣ ଦେବୀ ବିଭାରିଲେ
ପୁତ୍ର ଘେନି ଲୋଚନକୁ ନିରେକ୍ଷି ଚାହିଁଲେ ।
ସୁନ୍ଦର ସାର୍ଥକ ଅଟେ ସେହି ମହାବଳା
ଦେଖିଲା ଚକ୍ଷୁରେ ନାହିଁ ଦୁଇଗୋଟି ଡୋଳା ।
ପୁଣ ପୁଣ ନିରଖନ୍ତେ ବହି ଅତିସଧ
ଦେଖି ବିଷାଦ ଲଭିଲେ ବେନିଚକ୍ଷୁ ଅନ୍ଧ ।
ହରଷ ତେଜି ଲଭିଲେ ଦେବୀ ମହାକଷ୍ଟ
ସେ ପୁତ୍ରର ନାମଗୋଟି ଦେଲେ ଧୃତରାଷ୍ଟ୍ର ।
ଅମ୍ବିକା ପଡ଼ିଅଛି ଯେ ମୃତଶବ ହୋଇ
ଶାନ୍ତନୁ ଭୂରିଶ୍ରବାଏ ପ୍ରବେଶିଲେ ଯାଇ ।
ପୁତ୍ର ଜାତ ଶୁଣି ହେଲେ ଅନେକ ଆନନ୍ଦ
ଜନମ ଅନ୍ଧ ଦେଖିଣ ଲଭିଲେ ବିଷାଦ ।
ଅନେକ ଦାନ ଦେଇଣ କାଷ୍ଟର ସଂଯୋଗେ
ଅମ୍ବିକା ପିଣ୍ଡକୁ ନେଇ ବସାଇଲେ ବେଗେ ।
ଚିତା ଆରୋପଣ କଲେ ନେଇ ଶମଶାନେ
ପ୍ରେତକାର୍ଯ୍ୟ କରାଇଲେ ଶାସ୍ତ୍ରର ବିଧାନେ ।
ଆହୁତି ଘୃତ ପାରଣା କଲେ ଏକାଦଶେ
ପୁତ୍ରକୁ ପାଳନ୍ତି ସର୍ବେ ହରଷେ ବିରସେ ।
ପୁତ୍ରକୁ କୋଳେ ଧରିଣ ଭାଳି ସତ୍ୟବତୀ
ଏତେ ଅବସ୍ଥା ପାଇଲି ଏତେ କଥା ପାତି ।
କାଳେ ନନ୍ଦନ ରାଜ୍ୟକୁ ନୋହିଲା ତ ଯୋଗ
କାହାଯୋଗୁ ସୋମବଂଶ ପୁତ୍ର କଲେ ତ୍ୟାଗ ।

ପଣ୍ଡିତ ମୁଖେ ଶୁଣିଲେ ଯାହା ତଥ୍ୟବାଣୀ
ଜାତ ଅନୁକୂଳ ବେଳୁ ପଡ଼ି ଜାଣି ଗଣି ।
ପୁତ୍ରର ହେଲା କୃତ୍ତିକାରକ୍ଷ ବୃଷ ରାଶି
ଶୁକ୍ର କ୍ଷେତ୍ରେ ଜନ୍ମ ବ୍ରହ୍ମରାକ୍ଷସ ଏ ରାଶି ।
ଶୁଣ ଆହେ ମନୁନାଥ ବଦନ୍ତି ଅଗସ୍ତି
ଅପୁତ୍ରିକ ଦେଖି ମନ ଦୁଃଖ ସତ୍ୟବତୀ ।
ରାଜ୍ୟକୁ ଯୋଗ୍ୟ ନୋହିଲେ ଏ ଜାତକୁମର
ଭୋ ଦଇବ ପୁରୁଷ ନ କଲୁ ପ୍ରତିକାର ।
ପୁଣି ବ୍ୟାସଙ୍କୁ ସେ ଦେବୀ ସୁମରିଲେ ଧ୍ୟାନେ
ପ୍ରବେଶ ହୋଇଲେ ମୁନି ମାତ ସନ୍ନିଧାନେ ।
ପୁତ୍ର କୋଳେ ଧରି ଦାସ ରାଜାର କୁମାରୀ
ବ୍ୟାସଙ୍କ କୋଳରେ ନେଇ ଦେଲେ ଟେକି କରି ।
ବାବୁ ଏତେ କଷ୍ଟେ ଉପୁଜାଇଲୁ ସନ୍ତତି
ନୟନ ଭ୍ରଷ୍ଟ ହୋଇବ ନୋହିବ ନୃପତି ।
ବାବୁ ଏ ଶରୀର ମଧ୍ୟେ ସାର ବେନି ଚକ୍ଷୁ
ନୟନ ଭ୍ରଷ୍ଟ ହୋଇଲା କି ବିଚାରୁଅଛୁ ।
କେବଣ ପାତକ ଆମ୍ଭେ କଲୁ ବ୍ରହ୍ମଋଷି
ଅନ୍ତେ ଯେ ବଂଶ ରଖନ୍ତା ସେ ହେଲା ଉଦାସି ।
କ୍ରୋଧ କରି ସତ୍ୟବତୀ କହନ୍ତି ବ୍ୟାସଙ୍କୁ
ପୁଣି ବିଜେ କର ପୁତ୍ରେ ଅମ୍ବାଳୀ ପୁରକୁ ।
ତାର ତୁଲେ ବ୍ୟାସ ତୁହୋ ବଢ଼ାଅ ପୀରତି
ପୁତ୍ର ଜାତ ହେଉ ବାବୁ ରାଜ୍ୟଭାର ମୂର୍ତ୍ତି ।
ଶୁଣି ବିରସ ହୋଇଲେ ମୁନି ଜ୍ଞାନବନ୍ତ
କେତେ କରାଉ ମାତ ତୁ ଆଲୋକ୍ୟ ପାପନ୍ତ ।
ସତ୍ୟବତୀ ବୋଇଲେ ତୁ ବାରେକ ସହିଲୁ
ଆବର ପାପକୁ ପୁତ୍ର କିମ୍ପା ଭୟ କଲୁ ।
ବାବୁ ମୋହର ଶପଥ କର ତୁହି ଆନ
ପାତକ ଦୂର କରିଣ ଉପୁଜା ସନ୍ତାନ ।
ବ୍ୟାସଙ୍କୁ ସମ୍ମତ କରାଇଣ ମାହେଶ୍ୱରୀ
ପ୍ରବେଶ ହୋଇଲେ ପାପ ଅମ୍ବାଳିକା ପୁରୀ ।
ତିଆରନ୍ତି ସତ୍ୟବତୀ ତାଙ୍କୁ ବହୁମତେ
ଅମ୍ବାଳିକା ବୋଲେ ଏହା ନ କହ ଯେ ମୋତେ ।
ସତ୍ୟବତୀ ବୋଇଲେ ଗୋ ଶୁଣ ଅମ୍ବାଳିକା
ତୁ ମୋର କୁଳମଣ୍ଡଣି ବଧୂ ପ୍ରାଣ ଏକା ।
ଅମ୍ବିକାର ହେଲା ପୁଣି ପୁତ୍ର ଯେ ଗୋଟିଏ
ତୁ କିମ୍ପାଇଁ ତୁଷ୍ଟ ହୋଇ ନ କରୁ ଉପାୟେ ।
ଯେମନ୍ତ ପୁତ୍ର ଗୋଟିଏ ହୁଅଇ ଯାଅ ଯା
ଏହା ତୁ କର ନ କରି ମାଗୋ ଆଉ ଲଜ୍ଜା ।
ଅମ୍ବାଳିକା ବୋଇଲାକ ଛାଡ଼ିବା କି ଧର୍ମ
ନୋହୁ କି ନା ପୁତ୍ର ଯେହ୍ନେ ଲିଖିତ ଯେ କର୍ମ ।

ସତ୍ୟବତୀ ବୋଇଲେ ଗୋ ଉପାୟ ହିଁ ଥିଲେ
ବଂଶରକ୍ଷା କରିବା ନା ନିଜ ବୁଦ୍ଧିବଳେ ।
ଦୁଇ ଭଉଣୀ ଯେବେ ଗୋ ଥାନ୍ତ ସେହି ମତେ
ତାର ସମ୍ପଦ ଦେଖି ଗୋ ମୂର୍ଚ୍ଛିବୁ କେମନ୍ତେ ।
ଏବେ ବ୍ୟାସ ଆସିବଟି ତୋର ଭୁବନକୁ
ଭାବେଣ ଭକତି ତୁ ଗୋ କରିବୁ ଏହାକୁ ।
ଏକମନେ ଏକ ଯୋଗେ ବଢ଼ାଅ ପୀରତି
ରାଜ୍ୟଧର କୁମର ଗୋ ହେଉ ଉତପତି ।
ଶୃଙ୍ଗାର କାଳେ ଅମ୍ବିକା ଅସାକ୍ଷମ ହେଲା
ନୟନ ବୁଜନ୍ତେ ଅନ୍ଧପୁତ୍ର ଉପୁଜିଲା ।
ବ୍ୟାସଙ୍କୁ ଆନନ୍ଦେ ମାଗୋ ଦିଅ ତୁ ଶୃଙ୍ଗାର
ତୋହର ପୁତ୍ର ଗୋଟି ଯେ ହେଉ ରାଜ୍ୟ ଧର ।
ଏହା ଶୁଣିଣ ବିରସ ହେଲା ମାନବତୀ
ଅମ୍ବାଳିକାକୁ ପ୍ରସନ୍ନ କରାଇଣ ସତୀ ।
ବ୍ୟାସଙ୍କୁ ଘେନି ପ୍ରବେଶ ହେଲା ଅନ୍ତଃପୁରେ
ବିଜେ କରାଇଲେ ନେଇ ସେ ରାମ ମନ୍ଦିରେ ।
ଅନେକ ବେଶ କରାଇ ଦେବୀ ଅମ୍ବାଳିକା
ବ୍ୟାସ ଭେଟ କରାଇଲା ନେଇ ଶଉନିକା ।
ପରାଶର ନନ୍ଦନ ଯେ ହୋଇ ଆନବେଶ
ପାଣ୍ଡୁରବର୍ଣ୍ଣ ମୁନିର ଶରୀର ପ୍ରକାଶ ।
ଚନ୍ଦନ ଯେ ଚତୁଃସମ ଅଗୁରୁ କସ୍ତୁରୀ
ନାନାଦି ଗନ୍ଧ ଦ୍ରବ୍ୟରେ ଅଙ୍ଗ ଲିପିକରି ।
ଅନେକ ଅଳଙ୍କାରରେ ଆଭରଣ କାୟ
ଋଷିରୂପ ଛାଡ଼ି ହେଲେ ରାଜ୍ୟଧର ପ୍ରାୟ ।
ଜଗତ୍‌ବନ୍ଦନ ପୁରୁଷ ଅଟେ ମହାବ୍ରହ୍ମ
ସୁନ୍ଦର ଅନଙ୍ଗ ଜାଣି ରୂପେଣ ଉତ୍ତମ ।
ଦୀକ୍ଷାଗୁରୁ ବାଞ୍ଛାଜ୍ଞାନୀ ଅଟେ ମହାବିଜ୍ଞ
ପରମ ସାଧୁ ପୁରୁଷ ଅନାଦି ସର୍ବଜ୍ଞ ।
ଶରଣ ସାଧୁଚରଣ ବଦନ ସୌଭାଗ୍ୟ
ଉଦ୍ଧାମ ପ୍ରଳୟବାଞ୍ଛା କୋଟି ବ୍ରହ୍ମଯଜ୍ଞ ।
ମଦନର ଭାବିନୀ ଯେ ଅଟେ ଅମ୍ବାଳିକା
ପରମ ଯୋଗେଶ୍ୱରୀ ସେ ରସିକା ନାୟିକା ।
ମଦନ ରାଜା ବସନ୍ତ ପବନ ନିରୋଧି
ଭେଟିଲା ପ୍ରୟାଣେ ସେହି ଘୋଟିଲା ପ୍ରୟୋଧି ।
ଅମ୍ବାଳିକା ପ୍ରିୟଭାବେ ବିଜୟ ପଲଙ୍କେ
ରତିଖେଦ ମନ ଘେନି ବିଜେ ମୁନି ଅଙ୍କେ ।
ବିରହ ତରଙ୍ଗ ରସେ କଲା ଯହୁଁ ଇଚ୍ଛା
ଛାଡ଼ିଲା ଭୟ ପୂରିଲା ମନର ଯେ ବାଞ୍ଛା ।
ଭାବେଣ ମନ ବୁଡ଼ିଲା ପଚିଶ ପ୍ରକୃତି
ହେଠମାଥେ ଶୃଙ୍ଗାରରେ ଅତୃପ୍ତି ଅଶାନ୍ତି ।

ମାର୍ଗଶିର ଶୁକ୍ଳ ଚଉଠି ଯେ ଅର୍କବାର
ରୋହିଣୀ ନକ୍ଷତ୍ର ବୃଷଚନ୍ଦ୍ର ସେଦିନର ।
ବିଛା ସଂକ୍ରାନ୍ତିର ଦିନ ପଚିଶ ଯେ ଭୋଗ
ବାଣିଜ୍ୟ ନାମେ କରଣ ସିଦ୍ଧି ନାମେ ଯୋଗ ।
ବୃଷରାଶି ପୁଣ ତୁଳା ଲଗ୍ନ ଶୁକ୍ରକ୍ଷେତ୍ରୀ
ଲଗ୍ନେ ଶୁକ୍ରଗ୍ରହ ଦଶମରେ ବୃହସ୍ପତି ।
ଏସନ ସମୟେ ହେଲା ଉତପତ୍ତି ବଳା
ରାତ୍ର ଏଗାର ଘଡ଼ିରେ ପୂର୍ଣ୍ଣ ଚନ୍ଦ୍ରକଳା ।
ମର୍କତ ରସାଣ ପ୍ରାୟ ଦିଶେ ଦେହବର୍ଣ୍ଣ
ଶିକ୍ଷା ସୁସିଦ୍ଧ କପୋଳ ଲକ୍ଷିତ ଗଠନ ।
ଆରକ୍ତ ଚକ୍ଷୁ ସୁନ୍ଦର ନାସିକା ସୁଷମ
ସୁନ୍ଦର ଶରୀର ଗଜରିପୁ ମଝା ସମ ।
ଆକର୍ଷଣୀ ବାହୁ ମୀନକେତନ ସ୍ୱରୂପ
ଚଉଷଠି ଲକ୍ଷଣରେ ଗୁଣ ପୂର୍ଣ୍ଣ ରୂପ ।
ଅତି ସୁଲକ୍ଷଣେ ହେଲା ଉତପତ୍ତି ପୁତ୍ର
ତିନି ଭୁବନ ପାତାଳେ ହୋଇଲା ବିଦିତ ।
ଅମୃତ କୁଣ୍ଡଳ ବେନି ଶୋଭା ବେନି କର୍ଣ୍ଣେ
ପଦକ ମଣି ଶୋଭିତ ହୃଦୟର ସ୍ଥାନେ ।
ପୁତ୍ର ଦେଖି ଆନନ୍ଦିତା ହେଲେ ସତ୍ୟବତୀ
ଦିଗପାଳମାନଙ୍କୁ ସେ କଲେ ବହୁ ସ୍ତୁତି ।
ପ୍ରଣିପାତ ଉମାପତି ପାଦେ ମୋର ଶିର
ପୂର୍ଣ୍ଣେନ୍ଦୁ ବଦନୀ ଉମା ବାମାଙ୍ଗେ ତୋହର ।
ପ୍ରଚଣ୍ଡ ପାବକ ଚକ୍ଷୁ ମଉଳି କଳାଂଶୁ
ପିନାକ ଡମ୍ବରୁ ହସ୍ତ ଅଙ୍ଗେ ଧୂଳିପାଂଶୁ ।
ସୁଧା ଧବଳ ଅଙ୍ଗ ପବିତ୍ର ଯାର ବପୁ
ତ୍ରିଲୋକ ସଂହାର କର୍ତ୍ତା ଅନଙ୍ଗ ଯା ରିପୁ ।
ହର ଚରଣେ ବନ୍ଦନ ସିଦ୍ଧ ମହାଯୋଗୀ
ସଂହାର ତନୁ ପରମଜ୍ଞାନୀ କଳ୍ପଯୋଗୀ ।
ଉରେ ଶୋଭିତ କଙ୍କାଳ ମୃତ ଶିରମାଳ
ଫଣିମଣି କୁଣ୍ଡଳ ଯା କର୍ଣ୍ଣେ ଢଳ ଢଳ ।
ଧବଳ ଦେହ ପିଙ୍ଗଳ ରଙ୍ଗବର୍ଣ୍ଣ ଜଟ
କକ୍ଷା କମଣ୍ଡଳଧାରୀ ତାଣ୍ଡବେ ଯେ ନଟ ।
ନୀଳବର୍ଣ୍ଣ କଣ୍ଠତଟ ଅଟ ଭୂତପତି
ତ୍ରିପୁର ଅନ୍ଧକ ଶିରଚ୍ଛେଦ ମହାମତି ।
ଦୟା ସମୁଦ୍ର ତ୍ରିକାଳ ଜ୍ଞାନରେ ବିବୁଧ
ତୁ ଦେବ ଯେ କାମଦେବ ଦର୍ପହା ବରଦ ।
ଶୁଭ ଅନୁକୂଳ ଦେଲୁ ତୁ ଗିରିଜାପତି
ସତ୍ତ୍ୱ ରଜ ତମ ତୋର ତହୁଁ ଉତପତି ।
ଅବ୍ୟୟ ଅମିତ ତୋର ତେଜ ବିଶ୍ୱନାଥ
ଶୂଦ୍ରମୁନି ଯେ ଶାରଳା ଦାସ ତୋର ଭୃତ୍ୟ ।

ବଦନ୍ତି ଅଗସ୍ତି ଶୁଣ ଆହେ ଯୁଗପତି
କୁରୁବଂଶେ ପୁତ୍ର ହାଦେ ପଣ୍ଡୁ ନରପତି ।
ପୁତ୍ରଙ୍କୁ କୋଳେ ଧରନ୍ତେ ସେ ଯୋଜନଗନ୍ଧା
ତ୍ରୈଲୋକ୍ୟ ମୋହନପୁତ୍ର ଦେଖି କଲେ ଶ୍ରଦ୍ଧା ।
ସମୟରେ ବିଜେ କଲେ ବ୍ୟାସ ମହାଯତି
ତାହାଙ୍କୁ ଦେଖିଣ ହର୍ଷ ହେଲେ ସତ୍ୟବତୀ ।
ବ୍ୟାସଙ୍କୁ ରାଇଣ ସେହୁ ବୋଇଲେ ଏକାନ୍ତେ
ଆଉ ଏକ କଥା ବାବୁ କହିବଇଁ ତୋତେ ।
ହରିକେଶର ଦେଶେ ହରିକେଶ ନୃପତି
ସେ ରାଜା ଅଟଇ ରୁଦ୍ରବଂଶେ ଉତପତ୍ତି ।
ତାହାର ଦୁହିତା ନାମ ଅଟେ ଅମ୍ବୁବତୀ
ତାକୁ ବିଭା ହୋଇଥିଲେ ବିଚିତ୍ର ନୃପତି ।
ଅମ୍ବା ଅମ୍ବାଳିକା ହୋଇଛନ୍ତି ପୁତ୍ରବତୀ
ମାତ୍ର ସେଥିରୁ ବଞ୍ଚିତ ହୁଏ ଅମ୍ବୁବତୀ ।
ତୁ ମୋହର ନନ୍ଦନ ଯେ ମହା ବିଜ୍ଞବନ୍ତ
ଅମ୍ବୁବତୀଠାରୁ ଏଇ ପୁତ୍ର କର ଜାତ ।
ମାତା ବଚନେ ମିଳିଲେ ବ୍ୟାସ ମୁନିବର
ପ୍ରବେଶ ହୋଇଲେ ଯାଇ ଅମ୍ବୁବତୀ ପୁର ।
ଅମ୍ବା ଅମ୍ବାଳିକା ବେଶ ହୁଅନ୍ତି ଯେମିତି
ସେହିପରି ବେଶ ହେଲେ ନାରୀ ଅମ୍ବୁବତୀ ।
ହରଷେ ମିଳିଲେ ମହାନନ୍ଦେ ଭାଗ୍ୟବତୀ
ବ୍ୟାସଙ୍କର ଶୃଙ୍ଗାରେ ସେ ହେଲେ ଭାଗ୍ୟବତୀ ।
ତୁଳ କୃଷ୍ଣ ସପ୍ତମୀ ବୃହସ୍ପତିବାର
ପୁଷ୍ୟା ନାମରେ ନକ୍ଷତ୍ର ଅଟେ ସେଦିନର ।
ସିଦ୍ଧ ନାମେ ଯୋଗ ଯେ କରଣ ତଇତିଳ
ସଇନ୍ଦୁ ପୁତ୍ରେକ ଜାତ ହେଲା ତତକାଳ ।
ଅମୃତ ଯୋଗରେ ପୁତ୍ର ହୋଇଲାକ ଜାତ
ଦେଖିଲେକ ବ୍ୟାସ ସେହି ଅତ୍ୟନ୍ତ ପଣ୍ଡିତ ।
ପାଦେକ ଜନମ ସେହୁ ହୋଇଲା ନନ୍ଦନ
ବେନି ପାଦେ ପଦ୍ମ ଚିହ୍ନ ପୁଣି ଶଙ୍ଖମାନ ।
ବିଦୁର ବାକ୍ୟେଣ ସେହି ଡାକେ ଦିବ୍ୟବାଣୀ
ବିଦୁର ନାମ ଦେଲେକ ବ୍ୟାସ ମହାମୁନି ।
କୋଳେ ଧରିବ୍ୟାସ ମୁଖେ ଦେଲେକ ଚୁମ୍ବନ
ବୋଇଲେ ବ୍ୟାସ ସୁଦକ୍ଷ ହେଉ ଜ୍ଞାନବାନ ।
ସମସ୍ତ ଗୁଣରେ ତୁହି ହୋଇଥିବୁ ଲକ୍ଷୀ
ଅନୁବ୍ରତେ ତୋ କନ୍ଧରୁ ନ ତୁଟିବେ ଲକ୍ଷ୍ମୀ ।
ବର୍ଦ୍ଧିତ ବୁଦ୍ଧି ତାର ଦିଶୁ ସର୍ବ ବିଧାନ
ପଣ୍ଡିତ ଧାର୍ମିକଗଣେ ସଦା ଯାଉ ଦିନ ।
ଏସନକ ବର ଦେଇ ବ୍ୟାସ ମୁନିବର
ପୁତ୍ର ସମର୍ପିଲେ ସତ୍ୟବତୀଙ୍କ କୋଳର ।

ବୋଲନ୍ତି ଯେ ବ୍ୟାସ ମୁଖ ଚାହି ସତ୍ୟବତୀ
ଧର୍ମ ରକ୍ଷାକଲୁ ଉପୁଜାଇଲୁ ସନ୍ତତି ।
ସୋମବଂଶ ଉଦ୍ଧାରିଲୁ ତୁ ପଣ୍ଡିତ ମୁନି
ସାଧୁ ସାଧୁ ବୋଲି ତୋତେ ବୋଲି ଯେ ସୁଜ୍ଞାନୀ ।
ଆକାଶେ ସାଧୁ କହନ୍ତି ତୋତେ ବୃନ୍ଦାରକେ
ଏସନ ପୁତ୍ର ଦିଅନ୍ତା ନାହିଁ ତ୍ରଇଲୋକ୍ୟେ ।
ଅମ୍ବିକାର ପୁତ୍ର ଗୋଟି ହେଲା କୁଳ ଜ୍ୟେଷ୍ଠ
ଚକ୍ଷୁ ବିହୀନେ ତା ନାମ ହେଲା ଧୃତରାଷ୍ଟ୍ର ।
ଅସମ୍ଭବ ମହିମା ତୋ କେ କରେ ବଖାଣ
ଏଡ଼େ ବଳବନ୍ତ ପୁତ୍ର ହୋଇଲାରେ ପୁଣ ।
ମାତାଙ୍କ ବଚନେ ଧୃତରାଷ୍ଟ୍ର ଦୟା କଲେ
ମହାତମା ବ୍ୟାସ ମୁନି ଦିବ୍ୟଚକ୍ଷୁ ଦେଲେ ।
ଗର୍ଭକୁ ଚାହିଁଲେ ତାକୁ ଦିଶଇ ସମସ୍ତ
ତା କୁଳେ ଛାଡ଼ିଲେ ମୁନି ଗାଲବଙ୍କ ସୁତ ।
ରହେ ଅନ୍ତଶୁଦ୍ଧି ରସ ଧାତୁବାଦ ବିଦ୍ୟା
ଆକର୍ଷଣ ବିକ୍ରମିଣ ଆଦି ଯୋଗସିଦ୍ଧ ।
ସ୍ତମ୍ଭନ ମୋହନ ଆଦି ମନ୍ତ୍ରେ ଦେଇ ଲୟ
ଯୋଗବ୍ରହ୍ମା ଦମ୍ଭ ମୁଦ୍ରା ସାର୍ଥ କଲା କାୟ ।
ଗୁଟିକା ଅଞ୍ଜନ ରସ ବଶ୍ୟ ଉଚ୍ଚାଟନ
ସଞ୍ଜୟ କୁମର କଲେ ଏସବୁ ପଠନ ।
ସାଧିଲେ ସବୁ ନାଗର ଶୂନ୍ୟକ ଅନିଳ
ଧ୍ୟାନ ଜ୍ଞାନ ବେଦ ବିଦ୍ୟା ଶାସ୍ତ୍ର ଏ ସକାଳେ ।
ଏତେକ ଶାସ୍ତ୍ରେ ସଞ୍ଜୟ ହୋଇଲେ ନିର୍ଜିତ
ଧାର୍ମିକ ବିବେକ ସେହି ଗାଲବଙ୍କ ସୁତ ।
ସଞ୍ଜୟ ମୁନି କହିଲେ ଶୁଣ ଧୃତରାଷ୍ଟ୍ର
ବ୍ୟାସ ପ୍ରସନ୍ନେ ହେଲୁ ତୁ ଧାର୍ମିକ ବଳିଷ୍ଠ ।
ପୁତ୍ରଙ୍କୁ ପାଳିଲେ ଦେବୀ ଅନଳେ ଯତନେ
ପୁତ୍ର ଦେଇ ବ୍ୟାସ ମୁନି ଗଲେ ଅନ୍ତର୍ଦ୍ଧାନେ ।
ଧୃତରାଷ୍ଟ୍ର ପଣ୍ଡୁନାମେ ଏହି ପୁତ୍ର ବେନି
ପାଳନ୍ତି ଯତନେ ଦାସରାଜାର ନନ୍ଦିନୀ ।
ଅମ୍ବାଳିକା ବୋଇଲା ଗୋ ଶୁଣ ସତ୍ୟବତୀ
ତୋ ବଚନ ନ ଲଙ୍ଘି ମୁଁ ହୋଇଲି ଅସତୀ ।
ଦୁରନ୍ତ ପାତକ ଆମ୍ଭେ ଅର୍ଜିଲୁ ଆତ୍ମଜ
କିନ୍ତୁ କର୍ମକୁ ଦୂଷିତ ହୁଏ କୁଳେ ଲାଜ ।
ଅତି ପାତକ ଦୋଷେ ଯେ ହେଲୁ ଅନାଚାରୀ
ପୁତ୍ର ଜାତ କରି ତୁ ଗୋ ସମ୍ଭାଳ ତୋହରି ।
ଯତନେ ପାଳ ବାରଣ ନ କର ଗୋ ଦେବୀ
ପ୍ରୟାଗ ତୀର୍ଥକୁ ମାଗୋ ମୁହିଁ ଏବେ ଯିବି ।
ଦୋଷ ନାଶ ଅର୍ଥେ ତୀର୍ଥେ ଝାସିବି ଅବଶ୍ୟ
କଲ୍ୟାଣକର ମୋତେ ଗୋ ହୋଇଣ ହରଷ ।
ବାରଣ ନ କରି ମାଗୋ ମାତ୍ର ଧର୍ମ ଅର୍ଥେ
ପୁତ୍ର ଜନ୍ମ ହୋଇଲ ଗୋ ଯିବଇଁ ମୁଁ ତୀର୍ଥେ ।
ତୁଲେ ଘେନିଲେକ ସେହି ଦ୍ୱାଦଶ କାମିନୀ
ଆଗେ ବାହାରିଲେ ତପୋଧନ ରୂପ ଘେନି ।
ହୁଡ଼ିଲାକ ରାଗ ମୋହ ମଦ ଅନୁରାଗ
ପାଞ୍ଚମାସେ ପ୍ରବେଶିଲେ ତ୍ରିବେଣୀ ପ୍ରୟାଗ ।
ତୁଳ ଶୁକ୍ଳପକ୍ଷ ଶନିବାର ଚତୁର୍ଦ୍ଦଶୀ
ଭରଣି ନକ୍ଷତ୍ରେ ଦେବୀ ପ୍ରୟାଗରେ ପଶି ।
ସ୍ନାନ ସାରିଣ ମାଧବ ତୀର୍ଥ ଦରଶନେ
ବଟର ତଳେ ତୋଷିଲେ ବିପ୍ରକୁ ସେ ଦାନେ ।
ଭୋ ମାଧବ ମୋର ଆନ ପାତକ ଯେ ନାହିଁ
ପରହିଂସାରେ ଅପବାଦ ନ ଦିଅଇ ।
ଏକା ପାପ କରି ବଂଶ ରକ୍ଷାର ନିମନ୍ତେ
ଗୁରୁ ବଚନରେ ଜ୍ୟେଷ୍ଠ ଶ୍ୱଶୁର ସଙ୍ଗତେ ।
ସେ ଦୋଷ ଖଣ୍ଡନ ମୋର କରିବା ମାଧବ
ସ୍ତିରୀ ଜନ୍ମରୁ ଉଦ୍ଧାର ତୁମ୍ଭେ ଦେବ ଦେବ ।
ଏତେକ କହି ସେ ପଦ୍ମନାଭର କୁମାରୀ
ତ୍ରିବେଣୀ ସଙ୍ଗମେ ଝାସି କରତା ସୁମରି ।
ଗୁରୁ ରମଣ ପାତକ ସବୁ ନାଶଗଲା
ନିରଞ୍ଜନ ସ୍ୱରୂପେ ସେ ଆକାଶେ ବସିଲା ।
ବଢ଼ନ୍ତି ସେ ଧୃତରାଷ୍ଟ୍ର ପଣ୍ଡୁ ବେନି ଭ୍ରାତେ
ସମସ୍ତ ବିଦ୍ୟା ସାଧିଲେ ସଞ୍ଜୟ ସହିତେ ।
ବୃଷର ମାସ ପୂର୍ଣ୍ଣମୀ ତିଥି ଚନ୍ଦ୍ରବାର
ଜ୍ୟେଷ୍ଠ ନକ୍ଷତ୍ର ଅଟଇ ଭୋଗ ସେ ଦିନର ।
ଇନ୍ଦ୍ର ନାମେ ଯୋଗ ବବ ନାମେ ଯେ କରଣ
ବ୍ୟାସ ବିଜେ କଲେ ଆସି ବାରୁଣା ବନ୍ଦେଣ ।
ମିଳିଲେକ ସତ୍ୟବତୀ ବେନି ସୁତ ଘେନି
ଶ୍ରଦ୍ଧାରେ ବ୍ୟାସଙ୍କ କୋଳେ ଦେଲେ ଦେଖି ମୁନି ।
ଅପାର ସାନନ୍ଦ ହେଲେ ପରାଶର ସୁନୁ
ବସାଇଲେ ଅନ୍ଧ ପଣ୍ଡୁ ଶୁକ୍ର ବେନି ଯାନୁ ।
ବିଦ୍ୟା ଯେତେକ ସଞ୍ଜୟ ମୁନି ଦେଇଥିଲେ
ବ୍ୟାସଙ୍କ ଆଗରେ ପୁତ୍ରେ ସବୁ ପାଠ କଲେ ।
ହରିହର ବଂଶେ ଜାତ ଚନ୍ଦ୍ରଗୁରୁ ବୋଲି
ତାହାର ନନ୍ଦନ ଭାବଗୁରୁ ଯେ କହିଲି ।
ଭାବଗୁରୁର ନନ୍ଦନ ଚନ୍ଦ୍ରଗୁରୁ ବୋଲି
ରୁଦ୍ରଗୁରୁ ନାମେ ପୁତ୍ର ହୋଇଲା ଏହାରି ।
ରୁଦ୍ରଗୁରୁ ନନ୍ଦନ ସେ ଗୁରୁ ବିରୂପାକ୍ଷ
ଏହାର ନନ୍ଦନ ହେଲା ଗୁରୁ ଭବରକ୍ଷ ।
ଭବରକ୍ଷର ନନ୍ଦନ ଗୁରୁ ଅଙ୍ଗସେନ
ରୁଦ୍ରଗୁରୁ ଗୁରୁ ବୋଲି ଏହାର ନନ୍ଦନ ।

ସୁରଚନ୍ଦ୍ରର ତନୟ ଗୁରୁ ବଜ୍ରମାଳି
ଏହାର ନନ୍ଦନ ଗୁରୁ ଯେ ପ୍ରଚଣ୍ଡବଳୀ ।
ପ୍ରଚଣ୍ଡବଳୀ ନନ୍ଦନ ଭାଗ୍ୟବର ଗୁରୁ
ଏହାଙ୍କ ନନ୍ଦନ ହେଲା ଯୋଗବର ଗୁରୁ ।
ବ୍ୟାସଙ୍କୁ ଏ ଗୁରୁବଂଶଯାକ ଥାନ୍ତି ଖଟି
ବ୍ୟାସେ ତାଙ୍କୁ ଶିଖାଇଲେ ଅଶ୍ରୁତି ଅଦୃଷ୍ଟି ।
ସନ୍ନିଧିକି ରାଇଲେ ଯେ ଲୋକେଶ ଗୁରୁଙ୍କୁ
ତୁମ୍ଭେ ବିଦ୍ୟା ଶିଖାଅ ଏ ଗୁରୁ କୁମାରଙ୍କୁ ।
ବ୍ୟାସଙ୍କ ଆଜ୍ଞାରେ ସେହି ଗୁରୁ ଲୋକେଶ୍ୱର
ଆଖଡ଼ା ରଚିଲେ ଯାଇ ବନସ୍ତ ଭିତର ।
ଶାସ୍ତ୍ରବିଦ୍ୟା ଶିଖାନ୍ତି ସେ ଲୋକେଶ୍ୱର ଗୁରୁ
ଧନୁତୁଣ ଫଳା ଖଣ୍ଡା ବିଦ୍ୟା ଯେ ଡମ୍ବରୁ ।
ପରିଘ କୁନ୍ତ ନାରାଚ ଅସିପତ୍ର ଯାଠି
ସକଳ ବିଦ୍ୟା ନିର୍ଜିତ ସେହି ତପୋନିଷ୍ଠୀ ।
ଅନେକ ବିଦ୍ୟାରେ ସେହି ହୋଇଲେ ନିର୍ଜିତ
ଦେବ ମନ୍ତ୍ର ଶାସ୍ତ୍ରରେ ସେ ହୋଇଲେ ପଣ୍ଡିତ ।
କକଡ଼ା ମାସରେ କୃଷ୍ଣପକ୍ଷ ସେ ଚଉଠି
ପଣ୍ଡିତ ବାସରେ ଶତଭିଷା ନକ୍ଷତ୍ରଟି ।
ବାଳବ ନାମେ କରଣ ସଉଭାଗ୍ୟ ଯୋଗ
କକଡ଼ା ସଙ୍କରାନ୍ତିର ଏକ ଦିନ ଭୋଗ ।
ଲୋକେଶ୍ୱର ଗୁରୁବିଦ୍ୟା ଶିଖାନ୍ତି କୁମାରେ
ମିଳିଲେକ ଆଖଡ଼ାରେ ଦିନ ଭାଗ୍ୟବରେ ।
ପଣ୍ଡୁ କୁମରକୁ ଦେଖି ହରଷ ହୋଇଲେ
ନାନା ବିଦ୍ୟାରେ ନିର୍ଜିତ ତାହାଙ୍କୁ ଦେଖିଲେ ।
ହର୍ଷେ ପ୍ରସନ୍ନ ପାଣ୍ଡୁକୁ ହେଲେ ଭାଗ୍ୟବଳେ
ସୁରବନ୍ତ ହୁଅ ଆମ୍ଭ ବିଦ୍ୟାର ରାଜ୍ୟରେ ।
ସବୁ ଶାସ୍ତ୍ର ଶିଖାଇଲେ ମନ୍ତ୍ର ଆଦିଗୁରୁ
ଶବଦକୁ ଭେଦି ବାଣ ମାରି ଲକ୍ଷ୍ୟ କରୁ ।
ଶବ୍ଦଭେଦୀ ବିଦ୍ୟା ଶିଖାଇଲେ ସେ ତାହାକୁ
ପ୍ରସନ୍ନେ ଦେଲେ ଅନେକ ବିଦ୍ୟା ସେ ପଣ୍ଡୁକୁ ।
ଶ୍ରୀ ଶାରଦା ଦେବୀ ପାଦେ ରହୁ ମୋର ମତି
ସେ ଚରଣେ ଶୂଦ୍ରମୁନି କରଇ ପ୍ରଣତି ।

—o—

## ଧୃତରାଷ୍ଟ୍ର ବିବାହ

ଶୁଣ ମନୁ ନରପତି କହନ୍ତି ଅଗସ୍ତି
ଧୃତରାଷ୍ଟ୍ରର ବିବାହ ଅପୂର୍ବ ଭାରତୀ ।
ସତ୍ୟବ୍ରତ ବୋଇଲେ ସେ ଭୀଷ୍ମଙ୍କୁ ବସାଇ
କନ୍ୟା ଏକ ଲୋଡ଼ିଆଣ ଧୃତରାଷ୍ଟ୍ର ପାଇଁ ।
ଶୁଣିଣ ସାନନ୍ଦ ହେଲେ ଭୀଷ୍ମ ମହାରଥି
ଶାଲ୍ୱ ରାଜାର ଦୁହିତା ନାମ ମରୁଦ୍‌ବତୀ ।
ଭୀଷ୍ମ ଶ୍ରୀହସ୍ତେ ସନ୍ତକ ଦେଲେ ସେ ଶାଲ୍ୱକୁ
ତୋହର ଦୁହିତା ଦେବୁ ଆମ୍ଭର ପୁତ୍ରକୁ ।
ଶୁଣିଣ ଶାଲ୍ୱ ପରମ ଆନନ୍ଦ ହୋଇଲା
ଧୃତରାଷ୍ଟ୍ରକୁ ବରଣ କରିଣ ଆସିଲା ।
ସମଦଣ୍ଡ ଘେନିଣ ସେ ଶାଲ୍ୱ ନରପତି
ଦୁହିତା ଘେନି ମିଳିଲା ରାଜାବର କତି ।
ସତ୍ୟବାକ୍ୟ କରି ଯହୁଁ ଦେବାକୁ ମାନିଲା
ସେହି ରାତ୍ରେ ସେ କନ୍ୟାର ପ୍ରାଣତ୍ୟାଗ ହେଲା ।
ଦେଖିଣ ଶାଲ୍ୱ ଅନେକ ବଇକୁଲ୍ୟ ହୋଇ
ଯମୁନା କୂଳେ ଦହନ କଲା କନ୍ୟା ନେଇ ।
ଅନଙ୍ଗସେନ ଅଞ୍ଜନ ଦେଶର ଯେ ରାୟ
ତାହାକୁ ଆଜ୍ଞା ଲେଖିଲେ ଶାନ୍ତନୁ ତନୟ ।
ଶୁଣି ପରମ ଆନନ୍ଦ ହୋଇଲେ ସେ ରାୟେ
ସତ୍ୟ କରି ପଠାଇଲେ ସେ ମାଳା ଗୋଟିଏ ।
ବରଣ କରିଣ ଏଣେ ଅଇଲେ ଶାନ୍ତନୁ
ସେ କନ୍ୟାଗୋଟି ବିନାଶ ଗଲା ସେହିଦିନୁ ।
ନିର୍ଝର ଦେଶର ରାଜା ନାମ ଗଣପତି
ବରନ୍ତେ ସେ କନ୍ୟା ନାଶ ଗଲା ସେହିରାତି ।
ଶୁଣି ବରିଲେ ଆରେକ କନ୍ୟା ଯାଇ ରାୟ
ସେ କନ୍ୟା କରୁ ସେ ରାତ୍ର ଦେଖିକରି ଭୟ ।
ମାଳବ ଦେଶରେ ଥିଲା ମାଧବ ନୃପତି
ତାହାର ଦୁହିତା ଗୋଟି ଅତି ରୂପବତୀ ।
ଧୃତରାଷ୍ଟ୍ର କନ୍ୟା ଦେବ ବୋଲି ସତ୍ୟକଲା
ସେହିଦିନ ସେ କନ୍ୟାର ଅବସାନ ହେଲା ।
ବୈବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତିଙ୍କି
କନ୍ୟା କିମ୍ପା ନାଶ ଯାନ୍ତି ଧୃତରାଷ୍ଟ୍ରେ ଦେଖି ।
ଅଗସ୍ତି ବୋଇଲେ ତାର କୃତ୍ତିକା ଯେ ବୃଷ
ଏଣୁ ଜାତିରେ ହୋଇଲେ ସେ ବ୍ରହ୍ମରାକ୍ଷସ ।
ବରନ୍ତେ କନ୍ୟାଏ ନାଶ ଯାନ୍ତି ଏ କାରଣୁ
ପୁନରପି ପଚାରିଲେ ବୈବସ୍ୱତ ମନୁ ।
ବ୍ୟାସ ପ୍ରାୟ ମହାରଷି ବୀର୍ଯ୍ୟଦାନ କଲା
ରାକ୍ଷସଗଣେ କିମ୍ପା ସେ ଜନମ ହୋଇଲା ।
କୃତ୍ତିକା ଯୋଗେ ପଶିଲେ ସେ ରଷିଶୃଙ୍ଗାରେ
ରୋହିଣୀ ବେଳେ ଛାଡ଼ିଲେ ବୀର୍ଯ୍ୟ ମୁନିବରେ ।
ଅମ୍ବିକା କନ୍ୟା ଶୃଙ୍ଗାର ସହି ନ ପାରିଲା
ଗତଆତ୍ମା ପ୍ରାୟେ ହୋଇ ମୋହେଣ ପଡ଼ିଲା ।
ଆରତେ ସେହି ମହାତ୍ମା ତ୍ୟାଗ କଲେ ରେତ
ତେଣୁ ସେ ବ୍ରହ୍ମଅସୁରଗଣେ ହେଲା ଜାତ ।
ବୈବସ୍ୱତ ମନୁଙ୍କୁ ସେ ବୋଲନ୍ତି ଅଗସ୍ତି
ଏସନକ ଯୋଗେ ଧୃତରାଷ୍ଟ୍ର ଉତପତ୍ତି ।

ବ୍ରହ୍ମଅସୁର କ୍ଷଣେ ସେ ହେବାରୁ ଉପୂନ
ବରଣ ମାତ୍ରେ କନ୍ୟାଏ ହୁଅନ୍ତି ନିଧନ ।
ମନୁ ବୋଇଲେ ଯେ ଶୁଣା ହୋଇଲା କେମନ୍ତ
ଏ କଥା ତଦନ୍ତ କରି କହ ତପୋବନ୍ତ ।
ଅଗସ୍ତି ବୋଇଲେ ଆହେ ଶୁଣ ଯୁଗପତି
ଅଷ୍ଟୋତ୍ତରଶତ କନ୍ୟା ହେଲେ ବିନଶ୍ୟତି ।
ବୀରକେତନ ଯେ ବଜ୍ରଦେଶର ରାଜନ
ସେ ଆସି କନ୍ୟାଏ କଲା ତାହାକୁ ପ୍ରଦାନ ।
ଆହୋ ସେ କନ୍ୟାର ନାମ ଅଟେ ଚନ୍ଦ୍ରାବତୀ
ଅନେକ ସମ୍ଭାର ଆଣିଦେଲା ନରପତି ।
ଧୃତରାଷ୍ଟ୍ରର ଅଟଇ ଅନ୍ଧ ବେନି ଆଖି
ହସିବେ ସେ ଅନ୍ୟଦେଶେ ଗଲେ ଜନେ ଦେଖି ।
ଏଣୁ ସେ ପରରାଷ୍ଟ୍ରରୁ କନ୍ୟାଙ୍କୁ ଅଣାନ୍ତି
ବିଶେଷ ଗରିଷ୍ଠ ଭୀଷ୍ମ ପୃଥ୍ୱୀରେ ଅଟନ୍ତି ।
କନ୍ୟା ଅଣାନ୍ତି ବାରୁଣାବନ୍ତେ ବିଭା ଅର୍ଥେ
ବିଭା ହୋଇ ନାଶ ଯାନ୍ତି କନ୍ୟାଏ ଏମନ୍ତେ ।
କନ୍ୟାଏ ପ୍ରଦାନ କଲା ସେ ବୀରକେତନ
କରାଇଲେ ତାକୁ ମଧୁ ଶଯ୍ୟାରେ ଶୟନ ।
ଶୋଇଲେ ସେ ବରକନ୍ୟା ପୁହାଇ ଶର୍ବରୀ
ପ୍ରାତେ ଦେଖିଲେ ସେ କନ୍ୟା ଯାଇଅଛି ମରି ।
ତହୁଁ ଜନେ ସୁନ୍ଦରୀକୁ ନେଲେ ଶମଶାନେ
ଦହନ ସାରିଣ ଶୁଦ୍ଧ ହେଲେ ରୁଦ୍ରଦିନେ ।
ବିଭା କରନ୍ତେ ଅନେକ କନ୍ୟା ଯହୁଁ ମଲେ
କନ୍ୟା ଆଉ କେହି ଧୃତରାଷ୍ଟ୍ରଙ୍କୁ ନ ଦେଲେ ।
ଏସନକ ଧୃତରାଷ୍ଟ୍ର ଅଛଇ ଯେ ରହି
ଅନେକ କାଳ ପର୍ଯ୍ୟନ୍ତ ବିବାହ ନ ହୋଇ ।
ସମୟେକ ବିଜେ କଲେ ବ୍ୟାସ ମହାଯତି
ଦେଖିଣ ସାନନ୍ଦ ହେଲେ ଦେବୀ ସତ୍ୟବତୀ ।
ମାତା ବୋଇଲେରେ ବାବୁ ପୁତ୍ର ଧୃତରାଷ୍ଟ୍ର
ଯେବଣ କନ୍ୟା ବରିଲା ହୋଇଲା ସେ ନଷ୍ଟ ।
ବ୍ୟାସ ବୋଇଲେ ଗୋ କିଛି ନ ଭାଳ ଗୋମାଏ
ମନ୍ଦକ୍ଷଣେ ଜନ୍ମ ତହିଁ କରୁ ନା ଉପାୟେ ।
ଏତେ ବୋଲି ବ୍ୟାସ ତହୁଁ ଗଲେ ଅନ୍ତର୍ଦ୍ଧାନେ
ପ୍ରବେଶ ହେଲେ ଗାନ୍ଧାର ନୃପସନ୍ନିଧାନେ ।
ଗାନ୍ଧାର ସେନ ନାମେ ଯେ ତହିଁ ନରପତି
ଏକୋତ୍ତର ଶତପୁତ୍ର ତାର ଉତପତ୍ତି ।
ତାହାର ଦୁହିତା ନାମ ଅଟଇ ଗାନ୍ଧାରୀ
ମନ୍ଦକ୍ଷଣେ ଜାତ ହେଲା ଜାତିରେ ଅସୁରୀ ।
ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଅମାବାସ୍ୟା ରାତି
କୃତ୍ତିକା ନକ୍ଷତ୍ରେ ସେହୁ ହେଲା ଉତପତ୍ତି ।
ଉର୍ଆସୀ କୃତ୍ତିକା ବୃକ୍ଷରାଶ ସେ ଅସୁରୀ
ଏସନକ ଲକ୍ଷଣରେ ଜନ୍ମିଲା ଗାନ୍ଧାରୀ ।
ଯାହାକୁ ବର ବରିଲା ସେ ଗାନ୍ଧାରରାୟେ
ମାଳା ଦେଇ ବରିଲେ ସେ ନୃପ କ୍ଷୟ ଯାଏ ।
ଉଡ଼ଙ୍ଗ ଦେଶେ ଉଡ଼ଙ୍ଗସେନ ନରପତି
ଗାନ୍ଧାରୀ ବରନ୍ତେ ସେହୁ ମଲା ତତ୍‌କ୍ଷଣାତି ।
ମହାରଥ ଦେଶର ଯେ ନୃପ ବିରୂପାକ୍ଷ
ଗାନ୍ଧାରୀର ବରଣେ ସେ ମରିଲା ପ୍ରତ୍ୟକ୍ଷ ।
ନିକଟ ରାଜାଏ ବିଭା ନୋହିଲେ କେ ଜଣେ
ଦୂର ରାଜାମାନେ ମଲେ ଗାନ୍ଧାରୀ ବରଣେ ।
କେହି ବିବାହ ନୋହିଲେ ଜାଣ ଗାନ୍ଧାରୀକି
ଗାନ୍ଧାରସେନ ଦୁହିତା ରୂପ ଦେଖି ଦୁଃଖୀ ।
କୁମ୍ଭମାସ କୃଷ୍ଣପକ୍ଷ ପ୍ରତିପଦା ଦିନ
ବ୍ୟାସ ପ୍ରବେଶ ହୋଇଲେ ଗାନ୍ଧାର ଭୁବନ ।
ଦେଖି ସାନନ୍ଦ ହୋଇଲେ ନୃପତି ଗାନ୍ଧାର
ଉଦକ ଢାଳିଲେ ନେଇ ବ୍ୟାସଙ୍କ ପ୍ରୟର ।
ଆପେ ଗାନ୍ଧାରସେନ ଯେ ଚରଣ ପଖାଳି
ବ୍ୟାସପାଦୋଦକ ଶିରେ ନିବେଶିଲେ ତୋଳି ।
ବସନ୍ତ କୁଣ୍ଡଳ ରତ୍ନ ଦେବ କଲେ ପୂଜା
ବହୁତ ଭକତି କରି ଅର୍ଘ୍ୟ ଦେଲେ ରାଜା ।
ବସାଇ ସୁବର୍ଣ୍ଣ ସିଂହାସନେ ସେ ବ୍ୟାସଙ୍କୁ
ପଚାରିଲେ ଅନୁଗ୍ରହ କର କି ଆମ୍ଭଙ୍କୁ ।
ଅନେକ ବଂଶରେ ମୋର ପାଇ ମୋକ୍ଷଗତି
ବେଦବ୍ୟାସ ତୁ ପ୍ରତ୍ୟକ୍ଷ ଅଟୁ ଦେବମୂର୍ତ୍ତି ।
ତୋହର ହେ ପଦରଜ ପଡ଼ିଲା ମୋ ପୁରେ
ଅକାରଣ ହିଁ କାରଣ ଗାଇଲେ ବଂଶରେ ।
ଅନେକ ବିନୟୀ ହୋଇ ସେ ଗାନ୍ଧାରନାହା
ସଂସାରରେ ଭାସୁଥିଲି ଗତି ଦେଲୁ ଯାହା ।
ମୁହିଁ ତୋହର ଦାସର ଦାସ ଜନ୍ମେ ଜନ୍ମେ
ସଂସାରୁ ତାରିଲୁ ତୁହି ଅମୃତ ବଚନେ ।
ଭୂତ ଭବିଷ୍ୟତ ଗ୍ରନ୍ଥମାନ ନ କରିଲୁ
ଅଜପା ମନ୍ତ୍ରରେ ତୁହି ପୁଣ୍ୟ ବିରୋଧିଲୁ ।
ଅନାଦି ଦିଅଇ ଠାବ ତୋତେ ବକ୍ଷସ୍ଥଳେ
ନାରାୟଣ ରୂପ ଦେଖୁ ତୁ ପ୍ରଳୟ କାଳେ ।
ଅନେକ ସ୍ତୁତି କରିଲେ ସେ ଗାନ୍ଧାର ସ୍ୱାମୀ
ବ୍ୟାସ ପାଦତଳେ ଶତ ସହସ୍ର ପ୍ରଣମି ।
ବୋଲନ୍ତି ବ୍ୟାସ ହେ ତୋର ସିଦ୍ଧ ହେଉ ବାଞ୍ଛା
ଅରିଷ୍ଟ ଶାନ୍ତି କୁଟୁମ୍ବ ହେଉ ତୋର ରକ୍ଷା ।
କୁଶଳେ ଥାଆନ୍ତୁ ତୋର ଯେତେକ ଦେଶରେ
ପାଟ ମହାଦେଇ କ୍ଷମେ ବର୍ତ୍ତନ୍ତି ନା ପୁରେ ।

ପୁତ୍ର ସନ୍ତତି ତୋହର ବର୍ତ୍ତନ୍ତି ନା ଭାଗ୍ୟେ
ନାତି ପଣନାତି ତୋର ଛନ୍ତି ନା ଆରୋଗ୍ୟେ ।
ଦେବତା ବ୍ରାହ୍ମଣେ କରୁଅଛୁ ନା ଭକତି
ଅନଳରେ ପ୍ରତିଦିନ ଦେଉ ନା ଆହୁତି ।
ଶୂନ୍ୟ ପୁରୁଷେ ଯେ କରୁଅଛନ୍ତି ନା ଦୃଷ୍ଟି
ସୁବିଧାନେ ଶସ୍ୟଫଳ ହେଉଛି ନା ସୃଷ୍ଟି ।
ନ୍ୟାୟ ଧର୍ମେ ପ୍ରଜା ପାଳୁଅଛୁ କି ନା ରାଜା
କୁଶଳେ ବର୍ତ୍ତନ୍ତି କି ନା ତୋର ଜନପ୍ରଜା ।
ପରଜା ପାଳନ ରାଜା କରୁ ନା ଅବଧି
ଦଇତ ଦାନବ ଅନ୍ତ କରୁଟିକି ସାଧି ।
ତୀର୍ଥେ ନାହିଁ କି ନା କଉଣସି ଉପଦ୍ରବ
ତପୋଧନ ରକ୍ଷା କରୁ କି ନା ବହି ଗର୍ବ ।
ସର୍ବ ସୁବିଧା ନ ହେଉଛି ନା ସର୍ବରାଜ୍ୟେ
ସଂସାର ଧର୍ମ ଅଛଇ ଅବା ସର୍ବ କାର୍ଯ୍ୟେ ।
ରାଜା ବୋଲେ ସୁବିଧାନ ସବୁ ମହାମୁନେ
କଥାଏ କହିବି ଏବେ ଶୁଣ ସାବଧାନେ ।
ଦୁହିତା ଗୋଟିଏ ତାର ନାମ ହେ ଗାନ୍ଧାରୀ
କୃତ୍ତିକା ବୃକ୍ଷରେ ଜାତ ସେ ବ୍ରହ୍ମଅସୁରୀ ।
ଯେତେ ନୃପତି ବରିଲି ତାର ବିଦ୍ୟମାନେ
ଦ୍ୱାଦଶ ରାଜା ମଲେଣି ବରଣ ବିଧାନେ ।
ଦୁହିତାକୁ କେହି ବିଭା ନୋହିଲେକ ଡରେ
ଯୁବତୀ ହୋଇ ରହିଛି ଏ ମୋହର ଘରେ ।
ଦୁହିତା ପିତାର ଘରେ ହେଲେ ରଜୋବତୀ
ତା ଶୋଣିତେ ପିତୃଲୋକେ ସ୍ନାନ ହିଁ କରନ୍ତି ।
ଏସନେକ ଦୋଷ ମୁନି ପୁରାଣରେ ଶୁଣି
ବ୍ୟର୍ଥ ଏହି ଶରୀରକୁ କଳଙ୍କିତ ଜାଣି ।
ପ୍ରତିକାର କର ପରାଶରଙ୍କ ତନୟ
ଗାନ୍ଧାରୀ ପାଇଁ କରିବା କେବଣ ଉପାୟ ।
ବ୍ୟାସ ବୋଇଲେ ରାଜନ ହୁଅଇ ଏମନ୍ତ
ସତାଇଶ ନକ୍ଷତ୍ରରେ ସର୍ବେ ହୁନ୍ତି ଜାତ ।
ଅଶ୍ୱିନୀ ମାଘ ମୂଳାରୁ ଆଦ୍ୟ ତିନିଦଣ୍ଡ
ଦୋଷେ ଲାଗିବାରୁ ତାର ନାମ ଜାଣ ଗଣ୍ଡ ।
ଜ୍ୟେଷ୍ଠା ଅଶ୍ଳେଷା ରେବତୀ ଶେଷ ପାଞ୍ଚଦଣ୍ଡେ
ଗଣ୍ଡଦୋଷ ଲାଗେ ଦେଖାଅଛି ଶାସ୍ତ୍ରଖଣ୍ଡେ ।
ଅଶ୍ୱିନୀ ତ୍ରିଦଣ୍ଡ ଯେବେ ପଡ଼ଇ ଦିବସ
ପୁତ୍ର କନ୍ୟା ଉପୁଜିଲେ ଏହି ଗଣ୍ଡଦୋଷ ।
ପିତାକୁ ଏ ଗଣ୍ଡଦୋଷ ବରଷେ ଲାଗଇ
ଏହି ଯୋଗେ ଯେବେ ଜାତ ରାତ୍ରରେ ହୁଅଇ ।
ମାତାକୁ ଷୋଳ ବରଷ ଲାଗେ ଗଣ୍ଡଦୋଷ
ଆବର କହନ୍ତି ଶୁଣ ଗାନ୍ଧାର ନରଶେ ।

ଉଭୟ ସନ୍ଧ୍ୟାରେ ଯେବେ ହୁଅଇ ସନ୍ତତି
ସେହି ପୁତ୍ର ନାଶଯାଇ ଜାଣ ତତ୍‌କ୍ଷଣାତି ।
ମାଘ ନକ୍ଷତ୍ରରେ ଗଣ୍ଡ ଆଦି ତିନିଦଣ୍ଡ
ଏଥି ଜନ୍ମ ହେଲେ ପାଞ୍ଚବର୍ଷ ପାଇ ଗଣ୍ଡ ।
ମୂଳା ନକ୍ଷତ୍ରର ଆଦ୍ୟ ତିନିଦଣ୍ଡେ ପାଇ
ଚାରିବର୍ଷ ଗଣ୍ଡ ଯେବେ ପୁତ୍ର ଉପୁଜଇ ।
ଜ୍ୟେଷ୍ଠା ନକ୍ଷତ୍ରରେ ଜାଣ ଅନ୍ତ ପାଞ୍ଚଦଣ୍ଡ
ଏଥି ଜନ୍ମ ହେଲେ ବେନିବର୍ଷ ପାଇ ଦଣ୍ଡ ।
ଅଶ୍ଳେଷା ରେବତୀର ସେ ଅନ୍ତ ପାଞ୍ଚଦଣ୍ଡ
ଏଥି ଜନ୍ମହେଲେ ପାଞ୍ଚବର୍ଷ ପାଇ ଗଣ୍ଡ ।
ଏତେ ଯୋଗେ ଦିବସରେ ଜନମ ଲଭିଲେ
ପିତାଙ୍କୁ ଗଣ୍ଡ ଲାଗଇ ପୁତ୍ର କନ୍ୟା ହେଲେ ।
ରାତ୍ରକାଳେ ଉପୁଜଇ ଯଦ୍ୟପି ସନ୍ତତି
ମାତାଙ୍କୁ ଗଣ୍ଡ ଲାଗିବ ବୋଲନ୍ତି ଅଗସ୍ତି ।
ଉଭୟ ସନ୍ଧ୍ୟାରେ ଯେବେ ଉପୁଜଇ ବାଳ
ତାହାର ଉପରେ ପରାଭବ କରେ କାଳ ।
ଗଣ୍ଡଦୋଷ ଲାଗଇ ହେ ଏତେକ ନକ୍ଷତ୍ରେ
ବ୍ୟାସ କହିଲେ ଗାନ୍ଧାରସେନର ଅଗ୍ରତେ ।
ଦେବ ଆମ୍ଭର ମାନବକୁଳେ ହେବେ ଜାତ
ଏହାଙ୍କର ପ୍ରକୃତିକୁ ବିଡ଼ିବା କେମନ୍ତ ।
ଅଶ୍ୱି ମୃଗଶିରା ପୁଷ୍ୟା ମଘା ଯେ ରେବତୀ
ଶ୍ରବଣା ଯେ ପୁନର୍ବସୁ ଅନୁରାଧା ସ୍ୱାତୀ ।
ଏତେକ ଲକ୍ଷଣେ ଦେବଗଣ ଯେ ହୁଅନ୍ତି
ଏତେ ଉପୁଜିଲେ ପୁତ୍ର କନ୍ୟା ଦେବଜାତି ।
ଦ୍ୱିଜା ଆରଦ୍ରା ରୋହିଣୀ ଉତ୍ତର ଭୋଦୁଅ
ପୂର୍ବାଫାଲଗୁନୀ ଉତ୍ତରାଷାଢ଼ା ଏହି ଦ୍ୱୟ ।
ପୂର୍ବଭାଦ୍ର ଉତ୍ତରା ଫାଲଗୁନୀ ଏ ଦୁଇ
ମନୁଷ୍ୟଗଣ ହୁଅନ୍ତି ଆହେ ନରସାଇଁ ।
ଏତେକ ନକ୍ଷତ୍ରେ ଯେବେ ହୁଅନ୍ତି ଉତ୍ପତ୍ତି
ସେ ସ୍ତିରୀ ପୁରୁଷ ହୁନ୍ତି ମନୁଷ୍ୟ ଯେ ଜାତି ।
କୃତ୍ତିକା ମଘା ବିଶାଖା ଶ୍ଳେଷା ଶତଭିଷ
ଧନିଷ୍ଠା ଜ୍ୟେଷ୍ଠା ମୂଳା ଏ ଅଟନ୍ତି ରାକ୍ଷସ ।
କୃତ୍ତିକା ନକ୍ଷତ୍ରେ ଜାତ ହେଲା ଯେ ଗାନ୍ଧାରୀ
ଆବର ଉଆଁସୀ ହେଲା ସେ ବ୍ରହ୍ମଅସୁରୀ ।
ଚନ୍ଦ୍ର ନଷ୍ଟ ହୁଅଇ ସେ ଅମାବାସ୍ୟା ଦିନ
ଦୋଷ ଲାଗେ ଯେବେ ସ୍ତିରୀ ହୁଅନ୍ତି ଉତ୍ପନ୍ନ ।
ସେ କନ୍ୟା ବିଭା ହୁଅନ୍ତି ଯେବଣ ପୁରୁଷ
ଲକ୍ଷ୍ମୀ ଛାଡ଼ଇ ତାହାର ତୁଟଇ ଆୟୁଷ ।
ଏସନ ବାକ୍ୟେ କହିଲେ ବ୍ୟାସ କରୁ ପୁଚ୍ଛା
ଶୁଣିଣ ଗାନ୍ଧାରସେନ ପଡ଼ିଗଲା ମୂର୍ଚ୍ଛା ।

କୋଳେ ଧଇଲା ବିଜୟସେନ ମହାମନ୍ତ୍ରୀ
ସାଷ୍ଟାମ କଲେ ପଣ୍ଡିତ ବିଜ୍ଞ ମହାଯତି ।
ବ୍ୟାସ ବୋଇଲେ ଶୁଣ ହେ ନୃପତି ଗାନ୍ଧାର
ଆମ୍ଭର ବୁଦ୍ଧିଏ ଅଛି ତାର ପ୍ରତିକାର ।
ସାହାଡ଼ା ବୃକ୍ଷ ଗୋଟିଏ ବିଭାକର ଆଣି
ମହା କଷ୍ଟବୃକ୍ଷ ସେହୁ ହରେ ଶାପଶ୍ରେଣୀ ।
ପୂର୍ବେ ତାକୁ ନିମନ୍ତ୍ରଣ କଲେ ପ୍ରଜାପତି
ଦୂଷିତ କନ୍ୟାକୁ ବିଭାକଲେ ଅଛି ଗତି ।
ଗାନ୍ଧାର ବୋଲେ ଅଛି ମୋ ପୁର ମଧ୍ୟସ୍ଥାନେ
ମୁଁ ତାହାକୁ ପ୍ରଦକ୍ଷିଣ କରେ ପ୍ରତିଦିନେ ।
ବ୍ୟାସ ବୋଇଲେ ତୁମ୍ଭେ ଯେ ଭାଗ୍ୟବନ୍ତ ରାଜା
କି ଭୁଲ ଅଛି ସାହାଡ଼ ବୃକ୍ଷ କରୁ ପୂଜା ।
ଗାନ୍ଧାରସେନ ବୋଲେରେ କର୍ତ୍ତା ଅଥଚକ
ଦରଶନ ହରଇ ସେ ସମସ୍ତ ପାତକ ।
ବ୍ୟାସ ବୋଇଲେ ହେ ରାଜା ନୁହଇ ଏମନ୍ତ
ଆମ୍ଭ ତହୁଁ ଶୁଣ ତୁହି ଶାସ୍ତ୍ର ସେ ସଙ୍ଗତ ।
ବୃଷର କୃଷ୍ଣଦଶମୀ ତିଥି ଗୁରୁବାର
ଶତଭିଷା ନକ୍ଷତ୍ରରେ ବିଜେ ସୁରେଶ୍ୱର ।
ନନ୍ଦିକେଶ୍ୱର କଲା ଯେ ବୃଷଭ ପଲାଣି
ପିଠିରେ ବିଜେ ପିନାକ ଦେବ ଶୂଳପାଣି ।
ହୃଦୟରେ ଆଭରଣ ନାଗସାପ ଫେରୁ
ଅନ୍ତରୀକ୍ଷେ ବାଜେ ନବଲକ୍ଷ ଯେ ଡମ୍ବରୁ ।
କଉତୁକେ ବିହରନ୍ତି ଦେବ ଦେବରାଜେ
ବୃଷଭ ଆରୋହୀ ମଧ୍ୟପୁରେ କଲେ ବିଜେ ।
ଅନେକ ତୀର୍ଥରେ ପଶି ଆସନ୍ତେ ସୁତଳେ
ଗମନ୍ତି ବଇତରଣୀ ନଦୀ କୂଳେ କୂଳେ ।
ସାହାଡ଼ା ବୃକ୍ଷ ଗୋଟିଏ ବାମପାଶେ ଥିଲା
ପତ୍ର ଗୋଟିଏ ବୃଷଭ ମଧ୍ୟରେ ଲାଗିଲା ।
ମାହେଶ୍ୱରୀ ପୁଚ୍ଛାକଲେ ଶୁଣ ହେ ବୃଷଭ
ଏ ପତ୍ରଗୋଟି ମଥାରେ ଲାଗିଲେ କି ହେବ ।
ବୃଷଭ ବୋଇଲା ସ୍ୱାମୀ ବାମେ ଯେବେ ଥାଇ
ଶିରେ ଘେନିଲେ ଅମୃତ ଭୋଜନ ମିଳଇ ।
ଡାହାଣରେ ବରକୋଳି ବୃକ୍ଷ ଯେବେ ପାଇ
ପତ୍ର ଗୋଟିଏ ଘେନିଲେ ଶତ୍ରୁକ୍ଷୟ ଯାଇ ।
ଅଗ୍ରେ ଶ୍ୱେତଦୁବ ଥିଲେ ମଥାରେ ଘେନିବ
ଆହେ କପାଳି ଅନେକ ଦୋଷ କ୍ଷୟଯିବ ।
ତୁଳସୀ ବୃକ୍ଷେକ ଯେବେ ପଛଆଡୁ ଭେଟି
ମଥାରେ ଘେନିବ ଝଡ଼ିଥିବା ପତ୍ରଗୋଟି ।
ଜ୍ଞାନେ ଅଜ୍ଞାନେ ଯେତେକ ପାପ ଜାଣ ଅଛି
ସକଳ ପାତକ ଯାଏ ତତକ୍ଷଣେ ଘୁଞ୍ଚି ।

ଭୋଜନ ମିଳେ ସାହାଡ଼ା ପତ୍ରକୁ ଘେନିଲେ
ଆଜ ପରକ୍ଷି ଜାଣିବା ଈଶ୍ୱର ବୋଇଲେ ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଯେ ଭ୍ରମି ମହାଦେବ
ପାଣି ଆହାର କତିକି ନ ନ୍ୟନ୍ତି ବୃଷଭ ।
ମନେ ମନେ ବୃଷଭକୁ ବୁଲାନ୍ତି ଉପାସେ
ଅନବରତ ଭ୍ରମନ୍ତି ନ ରହି କା ପାଶେ ।
ତେରଘଡ଼ି ବେଳ ଯହୁଁ ହେଲା କରତାର
ଆପେ ଠାକୁରାଣୀ ବିଜେ କଲେ ମଣୋହିର ।
ସୁବର୍ଣ୍ଣ ପଲଙ୍କେ ଘେନି ସମସ୍ତ ଯୋଗାଡ଼
ପିଠା ପଣା ଛେନା ସର ଗୁଟିକା ସର୍କର ।
ସୁବର୍ଣ୍ଣର କୁଡ଼ାକରେ ସମସ୍ତ ପୂରାଇ
ଅନ୍ନ ପାଣି ଦେଇ ପାଞ୍ଚଗୁଣ୍ଡା ମୁଖେ ନେଇ ।
ଉଦରଭରି ତୃତୀୟ ଗୁଣ୍ଡା ନେଇ ଭୁଞ୍ଜୁ
ଏମନ୍ତବେଳେ ଡମ୍ବରୁ ଶବ୍ଦ ଶୂନ୍ୟେ ବାଜୁ ।
ଶୁଣିଣ ସେ ଗୋସାମଣି ବିଷାଦ ପାଇଲେ
କି କରିବି ଈଶ୍ୱର ତ ଆସି ବିଜେ କଲେ ।
ସଙ୍କୋଚ ହୁଡ଼ି ଉଠିଲେ ଦେବୀ ବେଗ ହୋଇ
ବୃଷଭ କୁଣ୍ଡେ ଅଜାଡ଼ି ଦେଲେ ତାହା ନେଇ ।
ପଣା କ୍ଷୀରୀଷା ପୂରାଇ ବୃଷଭ ହାଣ୍ଡିର
ଆଚମନ ସାରି ବେଗେ ହୋଇଲେ ବାହାର ।
ରତନ ଝରିରେ ଦେବୀ ଉଦକ ପୂରାଇ
ଛାମୁରେ ପ୍ରବେଶ ହେଲେ ଆସି ମହାମାୟୀ ।
ନନ୍ଦିକେଶ୍ୱରଙ୍କୁ ଆଜ୍ଞା ଦେଲେ ସଦାନନ୍ଦ
ବୃଷଭ ଗୋଟିକୁ ନେଇ ଗୁହାଳରେ ବାନ୍ଧ ।
ଆଜ୍ଞା ପ୍ରମାଣେ ନନ୍ଦିକେଶ୍ୱର ତହୁଁ ଗଲା
ଯତନ କରିଣ ନେଇ ଗୁହାଳେ ବାନ୍ଧିଲା ।
ଆଜ୍ଞା ଦେଲେ ନନ୍ଦକେଶ୍ୱରଙ୍କୁ ପୁଣି ରାଇ
ଅନ୍ନ ପାଣି ବୃଷଭକୁ ନ ଦେବୁଟି ନେଇ ।
ସ୍ୱାମୀଙ୍କର ଆଗରେ ସେ ବାନ୍ଧିଣ ଅଇଲା
ଯନ୍ତ କିଳିଣ କରିଣ କବାଟ ପାରିଲା ।
ଈଶ୍ୱର କଷଣ ଦେଲେ ବୃଷଭ ବିଚାରେ
କରତା ଦେବତା କିମ୍ପା ମୋତେ ନ ପଚାରେ ।
ମୋହର ଏଡ଼େକ କଥା ନିଷ୍ଫଳ ହୁଅନ୍ତେ
ଆବର ରହିବେ କେହ୍ନେ କରତାର ଭକ୍ତେ ।
ବିକଳେ ବାସୀ କୁଣ୍ଡକୁ ଦରଣ୍ଡାଇ ତୁଣ୍ଡେ
ଦେଖେ ଅମୃତ ଯୋଗାଡ଼ ପୂରିଅଛି ଭାଣ୍ଡେ ।
ତୋଷେଣ ଭକ୍ଷଣ ତାହା କଲାକ ବୃଷଭ
ଲୟ କରି ସୁମରିଣ କର୍ତ୍ତା ଦେବ ଦେବ ।
ଭୁଞ୍ଜି ବାସୁଆ ବଳଦ ହୋଇଲା ଆନନ୍ଦ
ଈଶ୍ୱର ବିଚାର କରି କଲେ ସିନା ମନ୍ଦ ।

ଈଶ୍ୱର କଷଣୁ ଏବେ ହୋଇଲିଟି ପାର
କି କରି ପାରଇ ମୋର ଶମନ ଆବର ।
ତରିଲି ବିରଞ୍ଚି ନାରାୟଣଙ୍କ ପ୍ରସାଦେ
ଶରଣ ଶାରଳା ଦାସ କର୍ତ୍ତା ପଦ୍ମପାଦେ ।
ରାମ ନାମାକ୍ଷର ବିଷ୍ଣୁ ପୁରାଣ ହୁଁ ସାର
ଭାବିଲେ ଭବସାଗରୁ ନର ହେବେ ପାର ।
ବ୍ୟାସ ବୋଲନ୍ତି ଗାନ୍ଧାରସେନ ନରପତି
ଏହାରି ପତ୍ରେ ଏସନ ହୁଏ ଫଳଶ୍ରୁତି ।
ଭୁଞ୍ଜିଣ ବୃଷଭବର ତୃପତ ହୋଇଲା
ଶୋଷକୁ ପାଣି ଭୋକକୁ ଅମୃତ ମିଳିଲା ।
ଶୋଇଅଛି ବୃଷଭ ଯେ ହୋଇଣ ତୃପତି
ଶୁଭେଣ ପ୍ରସରିଗଲା ସେ ଦିନକ ରାତି ।
କବାଟ ଫେଡ଼ିଣ ଦେବ ଚାହିଁଲେ ସ୍ମୃତଳେ
ଶୋଇଅଛି ବୃଷଭ ଯେ ନିଦ୍ରାଳସ ଭୋଳେ ।
ଭିତରେ ପଶିଲେ ଦେବ ବୃଷଭକୁ ଚାହିଁ
କିସ ଖାଇଲୁ ସାହାଡ଼ା ବୃକ୍ଷ ପତ୍ର ବହି ।
ବୃଷଭ ବୋଇଲେ ସ୍ୱାମୀ ଶାସ୍ତ୍ର ନୁହେଁ ମିଥ୍ୟା
କରତାର ଭକ୍ତ କଥା ହୁଅଇ କି ବୃଥା ।
ଈଶ୍ୱର ବୋଇଲେ ତୁହି ପାଇଲୁ ଯେମନେ
ସଂସାରଜନଙ୍କୁ ପ୍ରାପ୍ତ ହୋଇବ ତେସନେ ।
ବୃଷଭ ବୋଇଲେ ଦେବ ପ୍ରତ୍ୟକ୍ଷେ ପାଇଲି
ଶାସ୍ତ୍ରର କଥାକୁ ତେଣେ ମିଥ୍ୟା ନ ମଣିଲି ।
ଯେ ଯାହାର ସ୍ୱାମୀ ବୋଲି କରଇ ଭକତି
ଅବଶ୍ୟ ସେହି ତାହାକୁ କଷଣୁ ତାରନ୍ତି ।
ସେବକକୁ ଯେବେ ସ୍ୱାମୀ କନ୍ଦନା କରିବ
କେଉଁ ପ୍ରକାରରେ ସେହି ସଂସାର ଚଳିବ ।
ଯେତେକ ଯୋଗାଡ଼ ଦେବ ତୁମ୍ଭ ମନଭଳି
ତୁମ୍ଭେ ମଣୋହି ନ କରୁ ସମସ୍ତ ପାଇଲି ।
ଅଗ୍ରତେ ଅଛି ଦେଖ ମୋ କୁଣ୍ଡ ଶୂଳପାଣି
ଗନ୍ଧ ଆମୋଦ କର୍ପୂର ରସ ବସାପାଣି ।
ସ୍ୱରୂପ ଦେଖି ଈଶ୍ୱର ବିଶାଦ ପାଇଲେ
ପାର୍ବତୀଙ୍କ ସନ୍ନିଧିକୁ ଯାଇ ପଚାରିଲେ ।
ବୃଷଭକୁ କେ ଦେଲା ଗୋ ମୋହର ଯୋଗାଡ଼
ତୁମ୍ଭେ କି ଜାଣ ଏଥିର ତଥ୍ୟ ଯେ ବିଚାର ।
ପାର୍ବତୀ ହସିଲେ ସଦାନନ୍ଦ ବାକ୍ୟ ଶୁଣି
ତୁମ୍ଭ ଆସିବା ବିଳମ୍ବ ଦେଖି ଶୂଳପାଣି ।
ସମସ୍ତ ବାଢ଼ିଣ ଦେବ ବସିଲି ମୁଁ ଭୁଞ୍ଜି
ଏସନବେଳେ ଦେବ ଡ଼ମ୍ବରୁ ଶବ୍ଦ ବାଜି ।
କ୍ଷୁଧାରେ ତୁମ୍ଭେ ଯେ ମୋତେ କୋପ କର ବୋଲି
ବୃଷଭ ହାଣ୍ଡିରେ ନେଇ ସବୁ ପୂରାଇଲି ।
ସଦାନନ୍ଦ ହସିଲେ ଯେ ଗିରିଜା ବଚନେ
ଦେବତାମାନେ ପ୍ରାପତ କରନ୍ତି ଏସନେ ।
ବଦନ୍ତି ବ୍ୟାସ ଯେ ପରାଶରଙ୍କ ନନ୍ଦନ
ତପଫଳ ଶ୍ରୁତି ହାଦେ ଅଟଇ ଏସନ ।
ଚାଲ ହେ ଏବେ ଶାହାଡ଼ା ବୃକ୍ଷକୁ ଦେଖିବା
ଗାନ୍ଧାରୀ କି ତାକୁ ନେଇ ବିଭା କରାଇବା ।
ଦେଖିଲେ ଯାଇଁ ଭିତରପୁର ମଧ୍ୟସ୍ଥାନେ
ସାହାଡ଼ାକୁ ବରବେଶ କଲେ ଯେ ବିଧାନେ ।
କନ୍ୟାବେଶ ହୋଇଲେ ଯେ ସେ ଦେବୀ ଗାନ୍ଧାରୀ
ମଙ୍ଗଳ ବାକ୍ୟେ ବରଣ ସୀଉକାର କରି ।
ଉଦପାବକ ଗୋତ୍ର ଯେ ସାହାଡ଼ ବୃକ୍ଷର
ବୃନ୍ଦାରକ ଗୋତ୍ରୀ ଶୁଭ ଯୋଗ ଶୁଭ ତାର ।
ଉଦ୍ଧାଳକ ଗୋତ୍ର ମୁନି ଉଚ୍ଚାରଣ କରି
ସାହାଡ଼ା ବୃକ୍ଷକୁ ବିଭା କଲେ ସେ ଗାନ୍ଧାରୀ ।
ଗାନ୍ଧାରୀ କରେ ଗୋଲକ ବୃକ୍ଷ ଡାଳେ ଆଣି
ମନ୍ତ୍ରରେ କୁଶ ବନ୍ଧନ କରନ୍ତି ସେ ମୁନି ।
ଗାନ୍ଧାରୀ ବୃକ୍ଷର ଯହୁଁ ଏକ ସଙ୍ଗ ହେଲା
ସେ ସାହାଡ଼ାବୃକ୍ଷ ଗୋଟି ତତକ୍ଷଣେ ମଲା ।
ଦେଖିଣ ଚକିତ ହେଲେ ମୁନିବର ବ୍ୟାସେ
ଗାନ୍ଧାରସେନ ନୃପତି ବସିଲା ବିରସେ ।
ବ୍ୟାସ ହୋଇଲେ ହେ କିଛି ନ ଭାଳ ନୃପତି
ଏହାର ସବୁ ଅରିଷ୍ଟ ହୋଇଗଲା ଶାନ୍ତି ।
ଆମ୍ଭର ବଚନ ଏବେ ବିଚାର କରିବା
ଗାନ୍ଧାରୀ କି ତୋର ଆମ୍ଭ ଧୃତରାଷ୍ଟ୍ରେ ଦେବା ।
ବ୍ୟାସଙ୍କ ବଚନେ ରାଜା ସମ୍ମଦଣ୍ଡ ସାଜେ
ଗାନ୍ଧାରୀ କି ଘେନିଯାଏ ଇନ୍ଦ୍ରପ୍ରସ୍ଥ ରାଜ୍ୟେ ।
କନ୍ୟାକୁ ଘେନିଣ ଗଲେ ବ୍ୟାସ ମହାଯତି
ଧୃତରାଷ୍ଟ୍ରଙ୍କୁ ସମର୍ପି ଦେଲେ ଯେ ଯୁବତୀ ।
ବର ଅସୁର କୃତିକା ଋକ୍ଷ ବୃଷରାଶି
ଗାନ୍ଧାରୀ ଜାତି ଅସୁର ଆବର ଉଆଁସୀ ।
ଧୃତରାଷ୍ଟ୍ରକୁ ଅନେକ କନ୍ୟା ବରି ମଲେ
ଦ୍ୱାଦଶ ରାଜା ଗାନ୍ଧାରୀଯୋଗେ ମୃତ ହେଲେ ।
ଧୃତରାଷ୍ଟ୍ର କନ୍ୟା ନାହିଁ ଗାନ୍ଧାରୀର ବର
ଉଆଁସୀ ଅସୁରୀ ଏହି ସ୍ୱେ ବ୍ରହ୍ମ ଅସୁର ।
ଦୁହିଁଙ୍କର ଏକଯୋଗେ ବଢ଼ିଲା ପୀରତି
ଧୃତରାଷ୍ଟ୍ର ଗାନ୍ଧାରୀର ହେଲା ଏକମତି ।
ଅସୁର ଅସୁରୀ ବେନି ହୋଇଲେ ସଞ୍ଜୋଗ
ବଢ଼ିଲା ଭାବ ବହୁତ ଉପୁଜିଲା ରଙ୍ଗ ।
ଜୟ ତୁ ଜୟ ତୁ ଦେବ ମୁନି ବେଦବ୍ୟାସ
ଅଷ୍ଟାଦଶ ପୁରାଣ ତୋ ମୁଖରୁ ପ୍ରକାଶ ।

ବେଦକୁ ବିଭାଗ କରି ରଖିଲୁ ଭାରତ
ଶାରଳା ଦାସର ରହୁ ତୋର ପାଦେ ଚିତ୍ତ ।

—o—

## କର୍ଣ୍ଣ ଜନ୍ମ

ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ପଣ୍ଡୁ ବିବାହ କେବଳ ରହିଲା ଯେ ବାକି ।
ଶୁଣ ହେ ମହାତ୍ମା ଯୁଗ ଯୁଗାନ୍ତ ପୁରୁଷ
ପଣ୍ଡୁ ଚରିତ ଅମୃତମୟ ଦିବ୍ୟ ରସ ।
ସିଦ୍ଧପୁର ନଗ୍ର କୁନ୍ତଭୋଜ ନରପତି
ତାହାର ଭାରିଯା ନାମ ଅଟେ ଜମ୍ବୁବତୀ ।
ମଦନ ମହାଦେବର ସେ ଅଟେ କୁମାରୀ
କରବୀର ପୁରର ସେ ଅଟେ ଅଧିକାରୀ ।
ଦୁହିତାଏ ଜାତ ତାର କୋଳେ ରୂପବତୀ
ହରଷେ ନୃପତି ନାମ ଦେଲେ ତାର କୁନ୍ତୀ ।
ବଡ଼ ସୁନ୍ଦରୀ ଅଟଇ ସେହି ଭାଗ୍ୟବତୀ
ସୁନ୍ଦର ବର ଯୋଗାଇ ନ ପାରେ ନୃପତି ।
ପୁତ୍ର ନାହିଁ କନ୍ୟା ମାତ୍ର ସେ କୁନ୍ତଭୋଜର
ଏଣୁ ସେ ଦୁହିତାଠାରେ ସୁଆଗ ଅପାର ।
ବୃଷର ମାସ ପଞ୍ଚମୀ ବୃହସ୍ପତି ବାର
ଗୁରୁପୁଷ୍ୟା ଯେ ଅମୃତଯୋଗ ସେଦିନର ।
ବବ ନାମେ କରଣ ଯେ ଘୃତ ନାମେ ଯୋଗ
ବୃଷର ସଙ୍କରାନ୍ତିର ତେରଦିନ ଭୋଗ ।
ଏଦିନ ଅବସାନରେ ଦୁର୍ବାସା ମହର୍ଷି
କୁନ୍ତଭୋଜ କଟକରେ ପ୍ରବେଶିଲେ ଆସି ।
ଦେଖି କୁନ୍ତଭୋଜ ପାଦ୍ୟ ଅର୍ଘ୍ୟେ ପୂଜା କଲେ
ତାରିଲ ମହାତ୍ମା ମୋତେ ଆଜଦିନ ଭଲେ ।
ଅନେକ କାର୍ଯ୍ୟ ସଫଳ ହୋଇଲା ମୋହର
କରିପାରିବି କି ଆରାଧନା ମୁଁ ତୁମ୍ଭର ।
ଦୁର୍ବାସା ବୋଇଲେ ତୁହି ଅଛୁ ନା କୁଶଳେ
ଖଟନ୍ତି ନା ତୋତେ ପାତ୍ର ଅମାତ୍ୟ ସକଳେ ।
ସର୍ବ କୁଶଳ ବୋଇଲେ ରାଜା କୁନ୍ତଭୋଜ
ଜୀବନ ସାର୍ଥକ ମୋର ଦେଖିଲି ମୁଁ ଆଜ ।
ମୁନି ବୋଇଲେ ଅଇଲୁ ଆମ୍ଭେ ତୋ ରାଜ୍ୟକୁ
ଦେଇ ପାରିବୁ କି ବାସ ଖଣ୍ଡିଏ ଆମ୍ଭଙ୍କୁ ।
ଉତ୍ତମ ସମ୍ପଦ ରାଜ୍ୟ ଦେଖିଲୁ ତୋହର
ଏଣୁ ରହିବାକୁ ତୃଷା ବଳିଲା ଆମ୍ଭର ।
ଚତୁର୍ମାସ୍ୟା ବ୍ରତ ଚାରିମାସେ ଆମ୍ଭେ ସାରି
ପୁଣି ଆନ ସ୍ଥାନେ ଯିବୁ ଆହେ ଦଣ୍ଡଧାରୀ ।
ବୋଇଲେକ କୁନ୍ତଭୋଜ ମୁଁ କିସ କରିବି
ରୁହାଇଲେ ତୋତେ ଭକ୍ତି କରି ନ ପାରିବି ।
ଯାଅ ବୋଇଲେ ଯେ କୋପ ବଢ଼ିବ ଯେ ତନୁ
ଜାଣି ଅନୁଗ୍ରହ ମୋତେ କର ମୁନି ଏଣୁ ।
ଦଶ ସହସ୍ର ଯୋଜନ ଅଟେ ଅଧିକାରୀ
ରକ୍ଷ ଦକ୍ଷ ଭ୍ରାତା ପୁତ୍ର ନାହିଁ ମା ମୋହରି ।
ରାଜ୍ୟ ଚିନ୍ତାରେଣ ପୁଣ ପାଶୋରଇ ତୋତେ
ଈଶ୍ୱର ସମାନ ପୁଣ କୋପ କରୁ ମୋତେ ।
ଦୁର୍ବାସା ବୋଇଲେ କିମ୍ପା ସେବା ତୁ କରିବୁ
ତୋହର କରି ଆମ୍ଭଙ୍କୁ ଜଣେ ଦେଇଥିବୁ ।
ଆଶ୍ରମ ଲିପି ଅଗଣା ଗୋଟି ଝାଡ଼ିଦେବ
ପାଣି ଘଟିଏ ସେ ପୁଣି ଆଉ ଦେଉଥିବ ।
ପାଳଟା ବସ୍ତ୍ର ଖଣ୍ଡିକ ପଖାଳିବ ନେଇ
ଏତେକ କଲେ ତୃପତ ସିନା ଆମ୍ଭେ ହୋଇ ।
ନୃପତି ବୋଇଲେ କିମ୍ପା ଆନ ମୁହିଁ ଦେବି
ଏ ଦୁହିତା କୁନ୍ତୀ ମୋର ଥିବ ନିତି ସେବି ।
ଦୁହିତା ହକାରି ସମର୍ପିଲେ କୁନ୍ତଭୋଜେ
ଆଶ୍ରମ ଖଣ୍ଡିଏ କଲେ ନଗରର ବାହ୍ୟେ ।
କୁନ୍ତୀ ବିନୟ ହୋଇଣ ଥାଇ ଅବିରତେ
ଦୁର୍ବାସା ଋଷିଙ୍କି ଭକ୍ତି କରୁଥାଇ ଚିତ୍ତେ ।
ରାତ୍ର ପ୍ରଭାତରୁ ଉଠି ଅଗଣା ପହାରି
ଛଡ଼ାଫୁଲକୁ ପକାଇ ଦିଏ ଯତ୍ନ କରି ।
ପଡ଼ିଥିବା ଆମ୍ବପତ୍ର ଆଣଇ ସାଉଁଟି
ଧୋଇ ପିଣ୍ଡାରେ ଶୁଖାଇଦିଏ କାଛା ଗୋଟି ।
ଗଡୁପାତ୍ର କପୋରାକୁ ମାଜଇ ଆମ୍ବିଳେ
ଆଶ୍ରମ ଖଣ୍ଡ ଲେପନ କରଇ ଗୋ ମଳେ ।
ବିଭୂତି ଗୁଡ଼ିଏ ଆଣି ରଖେ ସଞ୍ଚିକରି
ପତ୍ର ଗୁଡ଼ିଏ ଆଣଇ ବେଲ ଗଛୁ ପାରି ।
ବାଳୁତ ସୁକୁମାରୀ ସେ ରାଜାର କୁମାରୀ
ସୁଜ୍ଞାନୀ ପ୍ରାୟ ଋଷିଙ୍କି ଥାଇ ସେବା କରି ।
ଋଷି ରାତ୍ରେ ଥାଆନ୍ତି ଯେ କୁଡ଼ିଆ ଭିତରେ
କବାଟ କିଳିଣ କୁଜ ଲାଗିଥାଏ ଦ୍ୱାରେ ।
କୁନ୍ତୀ ଭକ୍ତିରେ ବହୁତ ସନ୍ତୋଷ ଦୁର୍ବାସା
ଆନ ତୀର୍ଥକୁ ଯେ ମୁନି ନ କଲେ ମନୀଷା ।
ରାଜାର ଛାମୁକୁ ମୁନି ଗଲେ ଏକଦିନେ
ଦେଖି ନୃପତି ପ୍ରଣତି କଲେକ ଚରଣେ ।
ଦୁର୍ବାସା ବୋଇଲେ ଆମ୍ଭେ ଶାନ୍ତ ଯେ ହୋଇଲୁ
ପାଞ୍ଚବରଷ ହେଲା ତୋ ରାଜ୍ୟରେ ରହିଲୁ ।
ବୋଇଲେ ନୃପତି ନିସ୍ତରିଲି ତପୋବନ୍ତ
ତୋହର ଚରଣେ କେହୁ ହୋଇଲା ଭକତ ।
ଦୁର୍ବାସା ବୋଇଲେ ବଡ଼ ସୁଖିରେ ରହିଲୁ
କୁନ୍ତୀର ନିମନ୍ତେ ନାନା ତୀର୍ଥ ପାଶୋରିଲୁ ।

ଆମ୍ଭେ ପାଇଲୁ ଯେ ତୋହଯୋଗୁ ସିନା ସୁଖ
ଆହେ କୁନ୍ତଭୋଜ ତୋର ହେଉ ତିନିଶତ ।
ସୋମବଂଶେ ସୁଲକ୍ଷଣୀ ହେଉ ତୋର କୁନ୍ତୀ
ଏସନେକ ବର ଦେଇ ଶାନ୍ତି ବ୍ରହ୍ମଯତି ।
ରାଜ୍ୟ ତେଜି ମହାତ୍ମା ଯେ ପଶିଲେ ବନସ୍ତେ
କୁନ୍ତୀ ଗୋଡ଼ାଇ ଅଛନ୍ତି ଯୋଜନ ପର୍ଯ୍ୟନ୍ତେ ।
ଛିଙ୍କିଲା ବନସ୍ତେ ପଶି ନ ପାରି ସେ ଫୁଟି
ଧାତିକାରେ ଦୁର୍ବାସା ଯେ ଚାହିଁଲେ ଲେଉଟି ।
ବୋଇଲେ ତୁହି ଗୋଡ଼ାଉ ଅଛୁଗୋ କିମ୍ପାଇଁ
ଆମ୍ଭଙ୍କୁ ଛାଡ଼ି କି ତୋର ଚିତ୍ତ ନ ବଳଇ ।
ବାହୁଡ଼ କୁନ୍ତୀ ନ ପଶ ବନସ୍ତ ଭିତର
ରାଜାର କୁମାରୀ ସୁକୁମାରୀ ତୋ ଶରୀର ।
କୁନ୍ତୀ ବୋଲେ ତୁମ୍ଭ ପରା ତପିଙ୍କି ସେବିଲି
ଏତେ କାଳ କଷ୍ଟ ସେବି କିଛି ନ ପାଇଲି ।
ବାଲି କଢ଼ାଇ ଉପରେ ପତ୍ର ଆଣି ଦେଇ
ଏତିକି ସେବିଲେ ଶିବ ପ୍ରସନ୍ନ ହୁଅଇ ।
ତୋ ପ୍ରାୟ ଋଷିକି ଏତେକାଳ ସେବା କଲି
ନିଷ୍ଫଳା ହୋଇଲି ମୁହିଁ କିଛି ନ ପାଇଲି ।
ଦୁର୍ବାସା ବୋଇଲେ ତୁ ଯେ ତୁନି ହୋଇଥିଲୁ
ପାଞ୍ଚବର୍ଷ ସେବାକରି କିଛି ନ ମାଗିଲୁ ।
ମହାମନ୍ତ୍ର ମୌଷଧି ଦେବୁ ଆମ୍ଭେ ଯାଚି
ବିଚାରିଲୁ ଏହାର ତ କାର୍ଯ୍ୟ ନାହିଁ କିଛି ।
ରାଜକନ୍ୟା ବୋଲେ ମୋତେ ଦୟା ସେ କରିବ
ସ୍ତିରୀ ଆମ୍ଭେ ମନଭାଗୀ ପଦାର୍ଥେକ ଦେବ ।
ଦୁର୍ବାସା ବୋଇଲେ ମାଗୋ ତୋହର ଯେ ଇଚ୍ଛା
ଅବଶ୍ୟ ପୂରାଇବା ଗୋ ତୋର ମନବାଞ୍ଛା ।
ମୁଁ ବାଳୁତ ସ୍ତିରୀ ମୁନି ନ ଜାଣେ ସନ୍ଦେହ
ଜାଣି ମହାତ୍ମା କରିବା ମୋତେ ଅନୁଗ୍ରହ ।
ଦୁର୍ବାସା ବୋଇଲେ ଯେଣେ ସ୍ତିରୀଙ୍କର ଚିତ୍ତ
ସୁନ୍ଦର ଭର୍ତ୍ତା ସୁନ୍ଦର ପୁତ୍ର ଭାଗ୍ୟବନ୍ତ ।
ଶତ୍ରୁକୁ ଜିଣିବ ହେବ ଅତି ବଳବନ୍ତା
ଏସନ ବାଞ୍ଛା ସ୍ତିରୀଙ୍କ ପ୍ରକୃତି ଏ କଥା ।
ଆମ୍ଭେ ଦେବୁ ତୋତେ ମହାମନ୍ତ୍ର ଜପାମାଳି
ଏହା ଯତ୍ନକରି ରଖିଥିବୁ ତୁ ସମ୍ଭାଳି ।
ଶଯ୍ୟାର ଯୋଗେ ତୁ ସୁମରିବୁ ଗୋ ଯାହାକୁ
ସେ ଆସି ପ୍ରସନ୍ନ ମାଗୋ ହୋଇବ ତୁମ୍ଭଙ୍କୁ ।
ଜପାମାଳି ତାହାକୁ ଯେ ଦେଇ ବ୍ରହ୍ମଯତି
ଅନ୍ତରୀକ୍ଷେ ସେ ମହାତ୍ମା ଗଲେ ତତ୍‌କ୍ଷଣାନ୍ତି ।
ଦୁର୍ବାସା ମହାଋଷିର ଏସନକ ଶୁଣି
ବିଚାର କରଇ କୁନ୍ତଭୋଜର ଦୁଲ୍ଲଣୀ ।

ଏ ମାଳି ଗୋଟି କି ଯତି ଦେଇଗଲେ ମୋତେ
ଏଥିର ତଦନ୍ତ ମୁହିଁ ଜାଣିବି କେମନ୍ତେ ।
ଯମୁନା କୂଳେ ସେ ଶାଳପତ୍ରେ ଶଯ୍ୟା କଲେ
ମେରୁର ଅସ୍ତ ହୁଅନ୍ତେ କର୍ତ୍ତା ସୁମରିଲେ ।
ଅସ୍ତ ହୁଅନ୍ତେଣ ସ୍ୱାମୀ ଆସନ କମ୍ପିଲା
ଦୁର୍ବାସାର ମହାମନ୍ତ୍ର କନ୍ୟା ସୁମରିଲା ।
ଏ ମହାମନ୍ତ୍ରକୁ ବଞ୍ଚାଇବି ମୁଁ କେମନ୍ତେ
ବିଜୟ ତପନ କୁନ୍ତୀ ଶଯ୍ୟାରେ ଏକାନ୍ତେ ।
କୁନ୍ତୀ କର ଧରି କର୍ତ୍ତା ବସାଇଲେ କୋଳେ
ମୁଖରେ ଚୁମ୍ବନ ଦେଲେ କାମରସେ ଭୋଳେ ।
କରପତ୍ର ଯୋଡ଼ି ବୋଲେ ଭୋଜର କୁମାରୀ
କେ ତୁ ହୋ ମହାତ୍ମା ମୋତେ ବଳାତ୍କାର କରି ।
ବିରଞ୍ଚି ବୋଇଲେ ମୋର ନାମ ବିକର୍ତ୍ତନ
ଋଷିଙ୍କର ମହାମନ୍ତ୍ରେ କଲୁ ଗୋ ସ୍ମରଣ ।
ଏବେ ତୁ ଶୃଙ୍ଗାର ମତେ ଦେବୁ ଆଗୋ ବାଳି
ଅଳିଅଳ ବାମା କିମ୍ପା ନେଲୁ ଜପାମାଳି ।
ତୁମ୍ଭଙ୍କୁ ସ୍ମରିଲି ବିଦ୍ୟା ପରୀକ୍ଷା ନିମନ୍ତେ
ସୁଜ୍ଞାନୀ ନାଥ ତୁ ମୋତେ ହରିବୁ କେମନ୍ତେ ।
ଦୁର୍ବାସାର ମହାମନ୍ତ୍ର କେବା ପାରେ ମେଣ୍ଟି
ଅବଶ୍ୟ ତା ପ୍ରାଣ ଯାଇ ମୂର୍ଦ୍ଧାଯାଏ ଫାଟି ।
ତୁହି ମୋତେ ସୁମରଣା କଲୁ ନ ବିଚାରି
ରମଣ ନ କଲେ ମୁହିଁ ଯାଏ କି ବାହୁଡ଼ି ।
ଯମୁନା ନଦୀର ତୀରେ ଗହନ ଅଟବୀ
ଶୃଙ୍ଗାର ଇଚ୍ଛିଲେ କିଛି ମନରେ ନ ଭାବି ।
ବିବସନ କରି ସେହି ଦେବ ଅଂଶୁମାଳୀ
ବାଳ ସ୍ତ୍ରୀ ହରିଲେ କାମ ନ ପାରି ସମ୍ଭାଳି ।
କିଞ୍ଚିତ ଶୃଙ୍ଗାର କରି ଦେବ ଦିବାକରେ
ବାହୁଡ଼ି ନ ଗଲେ ସ୍ୱାମୀ ଋଷି ଶାପ ଡରେ ।
ବୀର୍ଯ୍ୟ ପତନ କାଳେ ଯେ ଭୋଜର କୁମାରୀ
ବ୍ୟାକୁଳ ହୋଇ କହିଲେ ବିନୟ ଉଚ୍ଚାରି ।
ଭୋ ଦିନକର ନାଥ ନ ଛାଡ଼ କେଭେ ବୀର୍ଯ୍ୟ
ମୋହର ଗର୍ଭେ ରହିବ ଯଦ୍ୟପି ଆତ୍ମଜ ।
ଅବିବାହିତା ଅଟଇ ମୁଁ ଅରଜୋବତୀ
ଆବର ଗର୍ଭେ ରହିବ ମୋହର ସନ୍ତତି ।
ପିତାର ବଦନ ମୁହିଁ ଚାହିଁବି କେମନ୍ତେ
ବିଭା ହୋଇବ କେବଣ କହନ୍ତୁ ତ ମୋତେ ।
ଉଭୟ କୁଳକୁ ଜାଣ ଉପୁଜିବ ଲାଜ
ଅନୁଗ୍ରହ କରି ଗର୍ଭେ ନ ଛାଡ଼ ହେ ବୀର୍ଯ୍ୟ ।
ଦିନକର ବୋଇଲେ ଗୋ ରତିରଙ୍ଗ କଲେ
ଲିଙ୍ଗଭଗ୍ନ ଦୋଷ ହୋଇ ବୀର୍ଯ୍ୟ ନ ଛାଡ଼ିଲେ ।

ଯେବଣ ବୀର୍ଯ୍ୟ ଛାଡ଼ିବ ଆହେ ଦିନକର
ସଇନ୍ଦୁ ପୁତ୍ର ଉପୁତ୍ତି ହୋଇବ ମୋହର ।
ଭଗଦ୍ୱାରେ ଜନ୍ମ ନୋହୁଁ ଭୋଦେବ ସନ୍ତତି
ଭଗ ସ୍ଖଳିତ ହେଲେ ମୁଁ ହୋଇବି ଅସତୀ ।
କୁଳରେ ଦୂଷିତା ହେବି ମୁଁ ଦୁହିତା ହୋଇ
ତା ବ୍ୟାକୁଳ ଦେଖି ଦୟାକଲେ ଛାୟାସାଇଁ ।
କର୍ଣ୍ଣବାଟେ ବୀର୍ଯ୍ୟ ନେଇ ଟେକିଲେ ଉଜାଣି
ଯେସନ ସ୍ୱରୂପ ଯାହା ପୂର୍ବେ ସେ ନିର୍ମାଣି ।
ଅମୋଘ ଅକ୍ଷୟ ଅଟେ ସେହି ମହାବୀର୍ଯ୍ୟ
କର୍ଣ୍ଣବାଟେ ଉପୁଜିଲା ସଇନ୍ଦୁ ତନୁଜ ।
ଦେଖି ପରମ ଆନନ୍ଦେ କମଳ ନୟନ
କୋଳ କରି ତାର ନାମ ଦେଲେ ବୀରକର୍ଣ୍ଣ ।
ଅମୃତ କୁଣ୍ଡଳ ବେନି କର୍ଣ୍ଣେ ପିନ୍ଧାଇଲେ
ଅଭେଦ୍ୟ କବଚ ମଣି ତାଳୁରେ ରଖିଲେ ।
ବଜ୍ର ଛଉରୀ ଲେପନ କଲେ ତା ଶରୀରେ
ମହାମନ୍ତ୍ର ପଢ଼ି ଝାଡ଼ିଦେଲେ ନିଜ କରେ ।
ଅକୁଞ୍ଚିତ କେଶ ସୌମ୍ୟ ଘଟଣ କପୋଳ
ଖଗେଶ୍ୱର ନାସା ଚକ୍ଷୁ ଚାରୁ ଗଣ୍ଡସ୍ଥଳ ।
ଶାର୍ଦ୍ଦୁଳ ବିକ୍ରମ ମୁଖ ନିନ୍ଦଇ ସରୋଜ
ହସ୍ତୀର ହସ୍ତ ଜାଣିଣ ଦିଶେ ବେନିଭୁଜ ।
ଆରକ୍ତ ଲୋଚନ ବେନି ବିରାଜିତ ଗାତ୍ର
କାନ୍ତି କନକ ପରାୟେ ବଚନ ପବିତ୍ର ।
ଅସ୍ଫୁଟ ଚମ୍ପକ ଜାଣି ବିରାଜେ ଅଙ୍ଗୁଷ୍ଠି
ସୁଢ଼ଳ କମନୀୟ ତା ଜାନୁ ଦୁଇଗୋଟି ।
ସୁସଞ୍ଚ ଅତି ସୁନ୍ଦର ଅତୁଳ ସେ ବଳା
ରୂପ ତା ଅନଙ୍ଗ ଜାଣି ତେଜ ଅନର୍ଗଳା ।
ତପନ ବୋଇଲେ ଶସ୍ତ୍ରେ ଅଙ୍ଗ ତୋ ନ ତୁଟୁ
କୁନ୍ତ ପରଶୁ କୃପାଣ ଚକ୍ର ହିଁ ନ କାଟୁ ।
ଦାନେଣ ସଚା ତୁ ହୋଇ ହୁଅ ମହାବୀର
ରଣେ ଅପଜୟ ବାବୁ ନ ପାଅ କୁମର ।
ଯେତେବେଳ ପର୍ଯ୍ୟନ୍ତେ ତୁ ରଥେ ବସିଥିବୁ
ତ୍ରୈଲୋକ୍ୟ ଜିଣନ୍ତା ତୁହି ହୋଇବୁରେ ବାବୁ ।
ଅନେକ ବିଦ୍ୟା ଯେ ତାକୁ ଦେଇଣ ମାର୍ତ୍ତଣ୍ଡ
ଉଦୟଗିରିରେ ଭେଦି ବିକାଶିଲେ ଦଣ୍ଡ ।
କୁମର କୋଳେ ଧରି ସେ ଭୋଜର କୁମାରୀ
କି ବୁଦ୍ଧି କରିବି ବୋଲି ମନରେ ବିଚାରି ।
ଏ ସୁନ୍ଦର ପୁତ୍ର ଗୋଟି କେମନ୍ତେ ଧରିବି
ପିତାମାତାଙ୍କୁ କି କଥା କହି ପ୍ରବୋଧିବି ।
ଅବଶ୍ୟ ସେ ପଚାରିବେ ପୁତ୍ର ଦେଖି ମୋତେ
ବୋଲିବେ କାହୁଁ ପାଇଲୁ ଏ ପୁତ୍ର କେମନ୍ତେ ।
ମହାଗୁରୁ ଛାମୁରେ ତ ନ କହିବି ମିଥ୍ୟା
ସତ କହିଲେ ତ ଲଜ୍ଜା ହେବ ଅପ୍ରମିତା ।
ପର ଦାରା ବୋଲି କେହି ବିଭା ନ ହୋଇବେ
ସର୍ବେ ଦୁର୍ବାସା ଋଷିଙ୍କୁ ପଛେ ଦୋଷ ଦେବେ ।
ବୋଲିବେ ମୁନିଙ୍କ ଧର୍ମେ ସମୟେକ ଥିଲା
ଦୁର୍ବାସା ରମେଣ ଜାତ ଏ ତନୟ ହେଲା ।
ଜପାମାଳି ଥିଲେ ମୋର କାହାକୁ ବା ଭୀତି
ଅନେକବାର ହୋଇବି ମୁହିଁ ପୁତ୍ରବତୀ ।
ଆପେ ମୃତ୍ତିକା ମଞ୍ଜୁଷେ ପୁତ୍ରଗୋଟି ଭରି
ଯମୁନା ନଦୀରେ ପେଲିଦେଲା ଫିଙ୍ଗିକରି ।
ପ୍ରତ୍ୟକ୍ଷେ ବାଳ ଆଦିତ୍ୟ ଜାଣି ସେ ତନୟ
ବର୍ଣ୍ଣତେଜ ଲାଗି ହେଲା ସେ ସୁବର୍ଣ୍ଣମୟ ।
ଯମୁନା ନଦୀରେ ଗଲା ସେ ଉପୁଚିଆଇ
ଐଶାନ୍ୟ ମୁଖ ହୋଇ ସେ ଯାଏ ବୁଡ଼ଖାଇ ।
ବାରୁଣାବନ୍ତ ତହିଁ କି ପଞ୍ଚତ୍ରିଂଶ ଯୁଣ
ଉତ୍ତର କୂଳେ ଲାଗିଲା ସେ ମଞ୍ଜୁଷା ଜାଣ ।
ଭାଗ୍ୟବର ନନ୍ଦନ ଯେ ଅଟନ୍ତି ସଞ୍ଜୟେ
ରାଧା ବୋଲିକରି ତାର ଥିଲା ଦୁହିତାଏ ।
ପୂର୍ବଜନ୍ମେ ସେ ଅନଙ୍ଗମଞ୍ଜରୀ ଅପସରୀ
ବାସବଙ୍କୁ ସ୍ନେହ ସେ ନ କଲା ଗର୍ବକରି ।
ରାଗେ ତାକୁ ସୁରନାଥ ଦେଲେ ଅଭିଶାପ
ଯାଅ ଲୋ ପାମରୀ ଧର ତୁ ମନୁଷ୍ୟ ରୂପ ।
ସଞ୍ଜୟର ଭାରିଯା ତା ନାମ ଯେ ଶରଧା
ସେ ତୋତେ ପାଳୁଲୋ ତୋର ନାମ ହେବ ରାଧା ।
ବାସବର ଆଜ୍ଞାରେ ସେ ଗଗନୁ ଆଗତ
ସେହି ରୂପ ଦେହ ଘେନି ହୋଇଲେ ବାଳୁତ ।
ସିଂହ ବୃହସ୍ପତି ଯୋଗ ଗଉତମୀ ତୀର୍ଥେ
ପଡ଼ିଥିବାରୁ ଅନେକ ଗଲେ ସ୍ନାନ ଅର୍ଥେ ।
ଜନ୍ମ[illegible]ଳେ ବାଳୁତ ସେହି ହୋଇଥିଲା
ସଞ୍ଜୟ ମନ୍ତ୍ରୀ ତାହାକୁ ତୀର୍ଥରେ ଭେଟିଲା ।
ଅତ୍ୟନ୍ତ ବିକଳ ହୋଇ କାନ୍ଦଇ କୁମାରୀ
ଶରଧା କରି ଶରଧା ତାକୁ କୋଳେ ଧରି ।
କେହି ଯେ ମୋହର ବୋଲ ତହିଁ ନ ବୋଇଲା
ସଞ୍ଜୟ ମନ୍ତ୍ରୀ ତାହାକୁ ହସ୍ତିନା ଆଣିଲା ।
ରାଧା ବୋଲିଣ ନାମ ଯେ ଦେଲା ତାର ନାରୀ
ସୁନ୍ଦର ଦେଖି ତାହାକୁ ପାଳେ ଯତ୍ନ କରି ।
ଦିନେ ସହି ରାଧା ଗଲା ଯମୁନାକୁ ସ୍ନାନେ
ମଞ୍ଜୁଷା ବୁଡ଼ି ଜଳରେ ଲାଗିଛି ଉଦ୍ୟାନେ ।
ଦେଖିବା ପାଇଁ ତାହାର ବଳନ୍ତେ ଶରଧା
ମଞ୍ଜୁଷାକୁ ଧୀରେ ଧୀରେ ଧଇଲାକ ରାଧା ।

କୂଳେ ଆଣି ବଳେ ତାକୁ କଲା ବେନିଫାଳ
ଦେଖିଣ ବାଳ ଆଦିତ୍ୟ ଜିଣିଣ ଦୁଲ୍ଲାଳ ।
ସେ ପୁତ୍ରକୁ କୋଳେ ଧରି ଗଲା ନିଜପୁର
ସଞ୍ଜୀୟ ବୋଇଲା ମାତା ସମ୍ଭାଳ କୁମର ।
ଶରଧାରେ ଆଣିଲୁ ତୁ ଯେବେ ଏ ତନୟ
ଏ ବଳା ଗୋଟିକ ନାମ ହେଉ ଯେ ରାଧେୟ ।
କର୍ଣ୍ଣକୁ ପାଳିଲା ଯେହି ସଞ୍ଜୀୟ କୁମାରୀ
ରାଧା କନ୍ୟାକୁ ଯେ ଅନୁଦ୍‌ବେଗେ ବିଭାକରି ।
ଜୟ ତୁ ଆଦିତ୍ୟ ଦେବ ଧର୍ମ ନିରଞ୍ଜନ
ଜୟ ତୁ ଜୟ ତୁ ଦେବ ଦେବ ବିକର୍ତ୍ତନ ।
ଜୟ ତୁ ଜୟ ତୁ ଦେବ ଗଗନ ବିହାରୀ
ଜୟ ତୁ ଜୟ ତୁ ଦେବ ଅଂଶୁମାଳାଧାରୀ ।
ଲୋକ ପ୍ରକାଶକୁ ତୁହି କରତା ପୁରୁଷ
ଶାରଳା ଦାସକୁ ରଖ ପାଦେ କରି ଦାସ ।

—o—

## ପଣ୍ଡୁ ଓ ବିଦୁର ବିବାହ

ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ଯମୁନା ନଦୀର ତୀରେ ଉଦ୍ୟାନ ମଧ୍ୟର ।
କୁନ୍ତୀ ଯେ ଚଳିଲେ ତହୁଁ ଶରୀର ସମ୍ଭାଳି
ଅନ୍ତଃପୁରେ ପ୍ରବେଶିଲେ ଭୋଜର ଦୁଲ୍ଲାଳୀ ।
ଦୁର୍ବାସା ଋଷି କଲ୍ୟାଣ ପ୍ରତ୍ୟକ୍ଷେ ଫଳିଲା
କୁନ୍ତ ଭୋଜ ନୃପତିର ତିନିପୁତ୍ର ହେଲା ।
କର୍ଣ୍ଣଭୋଜ ବିପ୍ରଭୋଜ ପୁଣ କୁନ୍ତଭୋଜ
ଏମନ୍ତେ ରାଜାର ହେଲା ତିନୋଟି ଆତ୍ମଜ ।
ବଳବନ୍ତ ଭାଗ୍ୟବନ୍ତ ଜଗଜ୍ଜିଣା ହେଲେ
ଅସ୍ତ୍ର ଶସ୍ତ୍ର ବେଦ ବିଦ୍ୟା ସକଳ ସାଧିଲେ ।
କାର୍ତ୍ତିକ ଶୁକଳ ପକ୍ଷ ପୂର୍ଣ୍ଣିମାର ତିଥି
ଆକାମ୍ଭାଭେ ସ୍ନାନେ ଗଲେ ଭୋଜ ନରପତି ।
ସେହି ଗଙ୍ଗାସ୍ନାନଙ୍କୁ ଯେ ଭୀଷ୍ମ ଆସିଥିଲେ
କୁନ୍ତଭୋଜ ସଙ୍ଗତରେ ମଇତ୍ର ହୋଇଲେ ।
କୁନ୍ତୀ ବସିଛନ୍ତି କୁନ୍ତଭୋଜଙ୍କ ଜାନୁରେ
ଏ ସମୟେ ସତ୍ୟବତୀ ମିଳିଲେ ପାଶରେ ।
କୁନ୍ତୀଙ୍କ ରୂପ ଦେଖିଲେ ଦେବୀ ସତ୍ୟବତୀ
ତୁମ୍ଭ ଦୁହିତା କି ଏହା ବୋଲି ପଚାରନ୍ତି ।
ପରାଶର ସତ୍ୟବତୀ ଦେଖି ଭୋଜରାୟେ
ପ୍ରଣିପାତ କଲେ ସତ୍ୟବତୀଙ୍କର ପାୟେ ।
ପରାଶର ବୋଇଲେ ହେ ଶୁଣ ନରପତି
ଆମ୍ଭ ପଣ୍ଡୁଙ୍କୁ ପ୍ରଦାନ କର ତୋର କୁନ୍ତୀ ।
ଶୁଣିଣ ସେ କୁନ୍ତଭୋଜ ସାନନ୍ଦ ହୋଇଲା
ପଣ୍ଡୁକୁ ଦୁହିତା ଦେବି ବୋଲି ସତ୍ୟକଲା ।
ସେହି ତୀର୍ଥସ୍ଥାନେ ରାଜା ଉତ୍ସବ ଭିଆଇ
ବିଭାର ଯୋଗାଡ଼ମାନ ସକଳ ଅଣାଇ ।
କୁନ୍ତଭୋଜ ନଗପତି ପରଚେତ ଗୋତ୍ରୀ
ସୋମଗୋତ୍ରୀ ସେ ବିଚିତ୍ରବୀର୍ଯ୍ୟ ମହୀପତି ।
ଉଚ୍ଚାରିଣ ଦୁଇକୁଳ ଗୋତ୍ର ବେଦବାକ୍ୟେ
ବିଭା କରନ୍ତି ପ୍ରୋହିତ ମୁନି ଉଦ୍ଦାଳକେ ।
ଶୁଭେଣ ପ୍ରଦାନ କଲେ ସେ ରାଜକୁମାରୀ
ପଦ୍ମେକ ରଥ ଯୌତୁକ ଦେଲା ଦଣ୍ଡଧାରୀ ।
ବେନି ପଦ୍ମ ଗଜ ପୁଣି ଚାରିପଦ୍ମ ହୟ
ଦ୍ୱାଦଶ ଯୋଜନ ପୃଥ୍ୱୀ ଦେଲା ପୁଣି ରାୟ ।
ଆଲମ୍ଭ ପାଟଛତ୍ର ଯେ ଏକଲକ୍ଷ ବାଦ୍ୟ
ଯଉତୁକ ଦେଲା ରାଜା ହୋଇଣ ଆନନ୍ଦ ।
ଶତପଦ୍ମ ଗୋଧନ ଯେ ଦେଲା ନୃପମଣି
ଭଣ୍ଡାରୁ ଅନେକ ଧନ ରତ୍ନ ଦେଲା ଆଣି ।
ଦିନେ ଭୀଷ୍ମ ଶାନ୍ତନୁଙ୍କୁ ବୋଇଲେ ଏମନ୍ତ
ଅପୁତ୍ରିକ ଦୋଷୁ ରାଜ୍ୟେ ରାଜା ନୋହିବି ତ ।
ଭୂରିଶ୍ରବା ନ ପଶିଲେ ରାଜ୍ୟେ ରହି ଯୋଗେ
ଧୃତରାଷ୍ଟ୍ର ଅଯୋଗ୍ୟ ତ ଅନ୍ଧ ମନ୍ଦଭାଗ୍ୟେ ।
ବିଦୂର ତ ବିଚକ୍ଷଣ ଅଟେ ଅନ୍ୟ ଜାତି
ଏ ପଞ୍ଚ କଟକେ ହେଉ ପଣ୍ଡୁ ଚକ୍ରବର୍ତ୍ତୀ ।
ପରାଶର ବୋଇଲେ ଯା କହୁଛ ଏ ସତ
ଅମରକ୍ଷ ନ ବହିବୁ ଏ କଥାକୁ ତୁତ ।
ଭୀଷ୍ମ ବୋଇଲେ ଉତ୍ତର ମୋର ଆନ ନାହିଁ
ସତ୍ୟ ସତ୍ୟ ଦୃଢ଼ ବାକ୍ୟ ସତ୍ୟକଲି ମୁହିଁ ।
ପଣ୍ଡୁଙ୍କର ଶାନ୍ତନୁ ଯେ ସାନନ୍ଦ ହୋଇଲେ
ପଣ୍ଡୁଙ୍କୁ ରାଜ୍ୟରେ ଅଭିଷେକ କରାଇଲେ ।
ବ୍ୟାସ ବଶିଷ୍ଠ ମାର୍କଣ୍ଡ ଋଷି ଆଦି କରି
ବିପୁଳ ଅର୍ଘ୍ୟ ଦେଲେକ ମିଳି ବ୍ରହ୍ମଚାରୀ ।
ଅନେକ ଦାନ ଦେଇଣ ଦେଲେ ପୂର୍ଣ୍ଣାହୁତି
କୋଟିଏକ ତୀର୍ଥ ଘେନି ପୁଷ୍କର ଆସନ୍ତି ।
ଅଭିଷେକ କଲେ ନେଇ ପଣ୍ଡୁରାଜା ଶିରେ
ଜୟ ଜୟ ବାଣୀ ଜାତ ହେଲା ତିନିପୁରେ ।
ନରେନ୍ଦ୍ରପଣ ପଣ୍ଡୁଙ୍କୁ ଦେଲେ ଶୁଭବେଳେ
ସମସ୍ତ ଘେନି ପ୍ରବେଶ ହେଲେ ନିଜ ଆଳେ ।
ବାଣୀ ଦେଶ ରାଜା ନାମ ଅଟେ କାଶୀଶ୍ୱର
ଉଦାନବତୀ ନାମ ଯେ କନ୍ୟା ଥିଲା ତାର ।
ବିଦୁରେ ପ୍ରଦାନ କଲେ ସେ ଉଦାନବତୀ
କାଶୀଶ୍ୱର ନୃପତି ଯେ ଅଟେ ବୈଶ୍ୟଜାତି ।
ବିଭା ଦେଲେ ଅନ୍ଧ ପଣ୍ଡୁ ବିଦୁର ଏ ତିନି
ପଣ୍ଡୁରାଜା ପାଳିଲେ ଯେ ଧର୍ମେ ରାଜଧାନୀ ।

ଜୟ ସର୍ବ ମଙ୍ଗଳା ଗୋ ଜଗତର ମାତା
ତୋତେ ସୁମରି ଅଧମେ ହୋନ୍ତି ଜଗଜ୍ଜିତା ।
ତୁ ମାତା ଯାହାକୁ ବର ଦେଉ ସୁପ୍ରସନ୍ନେ
ତାହା ଆଦ୍ୟ କରିବାକୁ ନାହିଁ ତ୍ରିଭୁବନେ ।
ଜନ୍ମେ ଜନ୍ମେ ମୁଁ ତୁମ୍ଭର ପାଦତଳ ଦାସ
ଏ ମହାଗ୍ରନ୍ଥ ଲେଖିଲେ ମୁନି ବେଦବ୍ୟାସ ।
ତୋହର କୃପାରୁ ସିନା ଲେଖିଅଛି ମୁହିଁ
ଶାରଳା ଦାସକୁ ମାତ ପଦ ଦିଅ କହି ।

—o—

## ପଣ୍ଡୁଙ୍କର ବନବାସ, ମାଦ୍ରୀ ବିବାହ ଓ ଅଗ୍ନିକା ମହର୍ଷିଙ୍କର ପଣ୍ଡୁଙ୍କୁ ଶାପ ଦାନ

ଆହେ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ତ୍ରୈଲୋକ୍ୟ ବିଦିତ ହେଲେ ପଣ୍ଡୁ ନରପତି ।
ଧାର୍ମିକ ବିବେକବନ୍ତ ହେଲେ ସେହି ରାଜା
ନିରତେ କରନ୍ତି ଦେବ ବ୍ରାହ୍ମଣଙ୍କ ପୂଜା ।
ଦାନେ ସୁରବନ୍ତ ନିତ୍ୟେ ଦିଅନ୍ତି ଆହୁତି
ନିଯୋଗ ଭିଆଣ କଲେ ଯେହ୍ନେ ରାଜନୀତି ।
ଭୀଷ୍ମ ବିଦ୍ୟା ଦାନ କଲେ ନୃପତି ପଣ୍ଡୁଙ୍କୁ
ବିଦ୍ୟା ଗୁରୁ ହୋଇ ଅସ୍ତ୍ର ଶିଖାଇଲେ ତାଙ୍କୁ ।
ଉତ୍ତମ ଧନୁ ବିଦ୍ୟା ଯେ ସବୁ ଶାସ୍ତ୍ର ବିଦ୍ୟା
ମଲ୍ଲବିଦ୍ୟାରେ ନିପୁଣ ହେଲେ ମନ୍ତ୍ରସିଦ୍ଧୀ ।
ମହା ଭାଗ୍ୟବନ୍ତ କ୍ଷତ୍ରିବର ସେ ଅଟନ୍ତି
ଅଷ୍ଟାଦଶ ବଂଶ ତାଙ୍କ ପାଦରେ ଖଟନ୍ତି ।
ସୂର୍ଯ୍ୟବଂଶ ରାଜା ଯେ ଋତୁବର୍ଣ୍ଣ ନୃପତି
ପଣ୍ଡୁରାଜାଙ୍କୁ ସେହୁ ଖଟଇ ବୈଶ୍ୟବୃତ୍ତି ।
ଗଙ୍ଗାର ବଂଶରେ ଜାତ ଭୀଷ୍ମ ମହାରଥି
ଆଗୁ ଆଣି ଥାଟେ ଚଳେ ପ୍ରତିଜ୍ଞା ତା ଅତି ।
ହଇହୟ ବଂଶ କୃପ ରୁଦ୍ରବୀର୍ଯ୍ୟ ମୂଳେ
ଖଟିଲେ ତିରିଶ ଲକ୍ଷ ଯୋଦ୍ଧୀ ଘେନି ତୁଳେ ।
ଅନ୍ଧକ ବଂଶରେ ରାଜା ନାମ ବିରୁପାକ୍ଷ
ତାହେଣ ଖଟନ୍ତି ତୁଳେ କ୍ଷତ୍ରୀ ନବଲକ୍ଷ ।
ଭୋଜବଂଶ ନୃପତି ଯେ ବୀର ଭୋଜସେନ
ପାଞ୍ଚଲକ୍ଷ ରଥି ଘେନି ଖଟେ ସନ୍ନିଧାନ ।
ମଦନ ମହାବ୍ରହ୍ମ ଯେ ବ୍ରହ୍ମବଂଶୀ ରାଜା
ସମଦଣ୍ଡ ଘେନି କଲା ପଣ୍ଡୁ ପାଦପୂଜା ।
ରୁଦ୍ରବଂଶୀ ରାଜା ଅଟେ ଭୈରବ ନୃପତି
ପଣ୍ଡୁଙ୍କୁ ଖଟାଇ ତୁଳେ ଘେନିଣ ପଦାତି ।
କାକୁସ୍ଥ ବଂଶୀ ନୃପତିବର ଇନ୍ଦ୍ରପାଦ
ଖଟଇ ସେହି ଆସିଣ ସୋମବଂଶ ଚନ୍ଦ୍ର ।
ନବଦ୍ୱୀପ ସପତ ସାଗରେ ଯେତେ ରାଜା
ସମସ୍ତେ କରନ୍ତି ଆସି ପଣ୍ଡୁ ପାଦପୂଜା ।
ଏମନ୍ତେ ଖଟନ୍ତି ତାକୁ ଅଷ୍ଟାଦଶ ବଂଶ
ସର୍ଗତୁଲ୍ୟ ସେ ବାରୁଣାବନ୍ତ ପୁର ଦେଶ ।
ଖଟନ୍ତି ସମ୍ଭାରମାନ ଘେନି ମହାରାଜେ
ସୈନ୍ୟ ଘେନି ପଣ୍ଡୁ ମଧ୍ୟ ସ୍ୱର୍ଗେ କଲେ ବିଜେ ।
ପରାଶର ଶାନ୍ତନୁ ଯୋଗାଧି ଯମଦଗ୍ନି
ଏହାଙ୍କୁ ସେବନ୍ତି ଶୁଭ ଅନୁକୂଳ ଘେନି ।
ଏହାଙ୍କର ପୁତ୍ର ଜାଣ ବ୍ୟାସ ବିଶ୍ୱାମିତ୍ର
ପର୍ଶୁରାମ ଭୀଷ୍ମ ଘେନି ଏହି ଚାରିଭ୍ରାତ ।
ଏହାଙ୍କୁ ଯେ ଆରାଧନ କରେ ନୃପ ପଣ୍ଡୁ
ସର୍ବେ ବାଞ୍ଛନ୍ତି ଆପଦ ପଣ୍ଡୁଙ୍କର ଖଣ୍ଡୁ ।
ସପତ ଦ୍ୱୀପ ପୃଥ୍ୱୀରେ ସ୍ଥାପିଲେ ଉଦଣ୍ଡ
ଶବଦଭେଦୀ ବାଣରେ ସାଧିଲେ ଭୂଖଣ୍ଡ ।
ଜମ୍ବୁଦ୍ୱୀପ ବରରାଷ୍ଟ୍ର ଛତିଶ ମଣ୍ଡଳେ
ଖଟନ୍ତି ଶାସକ ପାରିଦଣ୍ଡ ସର୍ବକାଳେ ।
ଧୃତରାଷ୍ଟ୍ର ରହିଲେ ଯେ ହସ୍ତିନା ଭୁବନେ
ଭୂରିଶ୍ରବାକୁ ରଖିଲେ ଇନ୍ଦ୍ରପ୍ରସ୍ଥ ସ୍ଥାନେ ।
ଭୀଷ୍ମରଥୀ ବସିଲେ ଯେ ଯମପ୍ରସ୍ତ ମାଡ଼ି
ବାରୁଣାବନ୍ତ ନଗରେ ବିଦୁରଙ୍କୁ ଛାଡ଼ି ।
ଜୟନ୍ତା ନଗରେ ରହି ପଣ୍ଡୁ ନୃପରାଣ
ଆପେ ଦିଗବିଜେ କରେ ଏହାନ୍ତ ଛାଡ଼ିଣ ।
ଧ୍ୱଂସଇ ବଇରୀ ଦର୍ପ ରଖି ଭକ୍ତଜନେ
ଦାନବଙ୍କ ଉପଦ୍ରବ ନାହିଁ କେଉଁ ସ୍ଥାନେ ।
ଯଯାତି ଯେ ମାଢ଼ ଚିନା ପଳ ଭିଆଇଲେ
ତହିଁପରେ ମାଣ ବାଟି ପଣ୍ଡୁ ସୃଷ୍ଟି କଲେ ।
ବାଟିଏ ଯେ ଚଷେ ଦିଏ ପଉଟିଏ ସଞ୍ଜା
ଦ୍ୱାଦଶ ପଳ ଜନ୍ମାଇ ସୁଖେ ନିଏ ପ୍ରଜା ।
ଅନେକ ଧନଧାନ୍ୟ ଯେ ସମ୍ପଦ ଅଚଳ
ସାଧୁ ବାଛନ୍ତି ପଣ୍ଡାଙ୍କୁ ରାଜ୍ୟର ସକଳ ।
ତୁଳମାସ କୃଷ୍ଣପକ୍ଷ ପଞ୍ଚମୀର ଦିନେ
ପଣ୍ଡୁରାଜା ବିଜେ କଲେ ହସ୍ତିନା ଭୁବନେ ।
ଧୀରେ ଯାଉଛନ୍ତି ଧୃତରାଣି ସନ୍ନିଧିକୁ
ଧୃତରାଷ୍ଟ୍ର ପଚାରନ୍ତି ଆପଣା ଭାର୍ଯ୍ୟାକୁ ।
ଏକାନ୍ତରେ ବୋଲୁଛନ୍ତି ଗାନ୍ଧାରୀ ଅଗ୍ରତେ
କିମ୍ପାଇଁ ବ୍ୟାସମୁନି ଯେ ଜାତ କଲେ ମୋତେ ।
ପଣ୍ଡୁରାଜା ଶୁଣିଲେ ତା ଥାଇଣ ଅନ୍ତରେ
ଧୀରେ ଧୀରେ ତୁନିହୋଇ ଶୁଣନ୍ତି ସେଠାରେ ।

ଗାନ୍ଧାରୀ ପୁଚ୍ଛାକଲେ ଯେ ସେ ଧୃତରାଷ୍ଟ୍ରଙ୍କୁ
କିମ୍ପାଇଁ ଏତେ ବିରସ କରୁଛ ମନକୁ ।
ଧୃତରାଷ୍ଟ୍ର ବୋଇଲେକ ଶୁଣ ଗୋ ଗାନ୍ଧାରୀ
ପଣ୍ଡୁଙ୍କ ସମ୍ପଦ ମୁହିଁ ଦେଖି ତ ନ ପାରି ।
ମୁହିଁ ଅଟେ ଜ୍ୟେଷ୍ଠ ପଣ୍ଡୁ ସୋଦର ଅନୁଜ
ପୃଥିବୀରେ ବିକଶିଲା ତାର ବଳବୀର୍ଯ୍ୟ ।
ଅନେକ ସମ୍ପଦ ତାର ସଂଖ୍ୟା କେହୁ କରି
ମରଣ ହିଁ ଭଲ ଏହା ସହିତ ନ ପାରି ।
ଭଲ ଦିବସେକ ଖୋଜି ପ୍ରୟାଗକୁ ଯିବା
ତ୍ରିବେଣୀ ସଙ୍ଗମେ ପ୍ରିୟେ ଶରୀର ଝାସିବା ।
କ୍ଷତ୍ରୀହୋଇ ଯେବେ ପରଧନେ ପ୍ରାଣଭରି
ରାଜ୍ୟେ ରାଜା ହୋଇ ଯେବେ ସଂଗ୍ରାମକୁ ଡରି ।
ଦେବତା ହୋଇଣ ଯେବେ ନ କରଇ ଦୟା
ତୀର୍ଥବାସୀ ହୋଇ ଯେବେ ଲୋକଠାରେ ମାୟା ।
ସୁନ୍ଦରୀ ସ୍ତ୍ରୀ ହୋଇ ଯେବେ ହୁଅଇ ଦୁର୍ଭାଗୀ
ଇନ୍ଦ୍ରିୟ ସଞ୍ଚିତେ ଯେବେ ନ କରଇ ଯୋଗୀ ।
ପଣ୍ଡିତ ହୋଇଣ ଯେବେ ନୁହେଁ ଭାଗ୍ୟବନ୍ତ
ମହାତ୍ମା ବାକ୍ୟେ ଏତେକ ଜୀବନ ଅସ୍ୱାର୍ଥ ।
ଗାନ୍ଧାରୀ ବୋଇଲେ ନାଥ ଯୁକତ ଏ କଥା
କପାଳ ଲିଖନ କାହୁଁ ହୋଇବ ଅନ୍ୟଥା ।
ଯାହା ଅରଜିଛୁ ସ୍ୱାମୀ ତାହା ସିନା ଭୁଞ୍ଜି
କେହି ଜନ ବର୍ତ୍ତିନାହିଁ ଜନ୍ମି ପୁର ମଝି ।
ସ୍ୱାମୀ ସୁକୃତ ବୋଲିଣ ଯେବଣ ପୁରୁଷ
ନାନା ରୂପେ ନାନା ଦ୍ରବ୍ୟ କରାଇ ବିଳାସ ।
ଖଣ୍ଡିଆ କୁବୁଜା କରେ ଅପ୍ରାରଗ ଛୋଟା
ବଳବନ୍ତ କାହାକୁ ବା କରେ ଦୀର୍ଘ ମୋଟା ।
ସୁନ୍ଦର ଅବା ପଣ୍ଡିତ କେବଣ ପୁରୁଷ
କ୍ଷଣକେ କରଇ ସେହି ହରଷ ବିରସ ।
ଚେତନା ପୁରୁଷ ତାହା ନ ଚେତଇ କ୍ଷଣେ
ସକଳ ବ୍ରହ୍ମାଣ୍ଡରେ ସେ ଅଟେ ଏକା ଜଣେ ।
କୁତୁହଳେ ଖେଳୁଥାଇ ନାନାରୂପ ଧରି
କ୍ଷଣେ କଳା କ୍ଷଣେ ଗୋରା ହୋଇ ଅବତରି ।
ଜଣେ ପିଙ୍ଗଳ କ୍ଷଣକେ ହୁଅଇ ସେ ଅନ୍ଧ
ନାନାରୂପ ବର୍ଣ୍ଣକୁ ଯେ ଥାଇ ତାର ସଧ ।
ଯେ ମହାତ୍ମା ଧରଇ ସେ କାଳେ ଯେଉଁ ରୂପ
ପ୍ରାଣୀଗଣେ ହୁଅନ୍ତି ଯେ ସେ ରୂପେ ବିରୂପ ।
ଛାଡ଼ ମନୁ ଅଭିମାନ ନ ଭାଳ ହୋ ରାୟେ
ଦୁଃଖ ସୁଃଖ ହୃଦଗତେ ସଦା ରହିଥାଏ ।
ଅପର ସମ୍ପଦ ଦେଖି ନ ହୁଅ ବିକଳ
ସୁଦଶା କୁଦଶା ହୁନ୍ତି ଅଳପରେ ଭଲ ।

ଚଇତନ ପୁରୁଷକୁ ନାଥ ଏକ କରି
ପଣ୍ଡୁପୁର ବୋଲି ନିଜ ଶରୀର ନ ହାରି ।
ସଂସାରଯାକ ଯେବେ ତୁ କରିବୁ ଏକତ୍ୱ
ତରିଯାଇ ଭବଜଳୁ ହୋଇବୁ ମୁକତ ।
ଧୃତରାଷ୍ଟ୍ର ବୋଇଲେ ତୁ କହିଲୁ ଏମନ୍ତ
ପର ସମ୍ପଦ ଦେଖି ନ ପାରଇ ସଙ୍ଗାତ ।
ଗାନ୍ଧାରୀ ବୋଇଲେ ଏ ଯେ ଅଟଇ ଅକଥା
ପାପୀ ଲୋକ ବୋଲି ତାକୁ ପାଇ ଯେ ଅବସ୍ଥା ।
ବିଚାର ନାୟକ ସିନା ଅଟେ ଜନ୍ତୁପତି
ଆକାଶେ ଥାଇ ବିଚାର ମଞ୍ଚେ ଦିଏ ଶାସ୍ତି ।
ପଙ୍ଗୁ ବଧିର ଖଣ୍ଡିଆ କୁବୁଜା ଏ ଯେତେ
ଯମର ବିହିତ ସିନା ଅଟନ୍ତି ସମସ୍ତେ ।
ବେଳହୁଁ ଏମାନେ ଜାଣ ଅଟନ୍ତି ଯେ ବାଙ୍କ
ମନ୍ଦ ପ୍ରକୃତି କେବେ ହେଁ ନୁହଇ ସଳଖ ।
ଆପେ ନ ଦେଖି ଆପଣା ଶରୀର ବିକୃତି
ପରର ସମ୍ପଦ ଦେଖି କାତର ହୁଅନ୍ତି ।
ପରହିଂସା ପରନିନ୍ଦା ଛାଡ଼ି ଧୃତରାଷ୍ଟ୍ର
ଅନିତ୍ୟ ସଂସାର ଏହି ଅଟେ ମାୟା ଘଟ ।
ଲୋଭ ମୋହ କାମ କ୍ରୋଧ ଅହଙ୍କାରି ହିଂସା
ଏହା ଦୂର କର ସ୍ୱାମୀ ନ ବଢ଼ା ମନୀଷା ।
ଅନେକ ବାଗେ ତିଆରି କହଇ ଗାନ୍ଧାରୀ
ଶାନ୍ତ ଆତ୍ମା ନୋହିଲେ ଯେ ଅନ୍ଧଦଣ୍ଡଧାରୀ ।
ଧୃତରାଷ୍ଟ୍ର ଗାନ୍ଧାରୀର ସମ୍ବାଦ ସମୟେ
ସମସ୍ତ ଶୁଣନ୍ତି ଗୋପ୍ୟ ହୋଇପଣ୍ଡୁରାଏ ।
ଧାଡିକାରେ ବିଜେ କଲେ ପଣ୍ଡୁ ନରସ୍ୱାମୀ
ଧୃତରାଷ୍ଟ୍ର ସନ୍ନିଧିରେ ରହିଲେ ପ୍ରଣମି ।
ଗାନ୍ଧାରୀ ଅନ୍ତର ହେଲେ ଦେଖିଣ ରାଜାଙ୍କୁ
ସଞ୍ଜୟ କହିଲେ ଧୃତରାଷ୍ଟ୍ର ନୃପତିଙ୍କୁ ।
ପଣ୍ଡୁରାଜା ବିଜେ କଲେ ଆହେ ଧୃତରାଷ୍ଟ୍ରେ
ବାଞ୍ଛା ସିଦ୍ଧହେଉ ବୋଲି କହିଲେ ଯେ କଷ୍ଟେ ।
ପଣ୍ଡୁରାଜା ବୋଇଲେକ ଶୁଣିବା ନୃପତି
ତୁମ୍ଭଙ୍କୁ କେବଣ ବାଗେ ନ କଲି ଭକତି ।
ତୋହର ଭକତ ମୁହିଁ ଅଟଇ ନିରତେ
ପାପଧନ ଧଇଲୁ ତୁ ମୋଠାରୁ ହୃଦଗତେ ।
ମୋହର ସମ୍ପଦ ଦେଖି ଉଷତ ନୋହିଲୁ
ସାବତ ଭାଇ ସମ୍ପଦ ବୋଲିଣ ବୋଇଲୁ ।
ଅମାତ୍ୟ ପୁରୋହିତଙ୍କୁ ହକାରି ନୃପତି
ଭୁରିଶ୍ରବା ଶାନ୍ତନୁ ଯେ ଭୀଷ୍ମ ମହାରଥି ।
ଆଜ ସକଳ ଛାଡ଼ିଲି ମୋର ମନସ୍କାମ
ତୋତେ ସମର୍ପିଲି ଦଣ୍ଡଛତ୍ର ରାଜ୍ୟ ଧର୍ମ ।

ଏ ପଞ୍ଚ କଟକେ ସ୍ୱାମୀ ତୁହି ଅଧିକାରୀ
ସଂସାର ପାଳିଣ ଭୋଗ କର ବସୁନ୍ଧରୀ ।
ସଞ୍ଜୟ କହିଲା ଅନ୍ଧ କାହୁଁ ହେବ ନୃପ
ଏହାରେ ଧ୍ୱଂସୀ ନୁହଇ ରିପୁବଳ ଦର୍ପ ।
ପଣ୍ଡୁରାଜା ବୋଇଲେ ମୁଁ ବନସ୍ତରେ ଥିବି
ହସ୍ତେ ଧନୁଶର ଘେନି ସକଳ ସାଧିବି ।
ଦୁଷ୍ଟ ଦୁରାପଦକୁ ମୁଁ ମାରିବଇଁ ଖେଦି
ଧୃତରାଷ୍ଟ୍ରଙ୍କ ଆଜ୍ଞା ହିଁ ଏଥିରେ ପ୍ରସିଦ୍ଧି ।
ମୋ ତହୁଁ ଭକ୍ତି କରିବେ ପ୍ରଜାଏ ଏହାଙ୍କୁ
ଅନୀତି କଲେ କହିବ ଯାଇଣ ଆମ୍ଭଙ୍କୁ ।
ଧୃତରାଷ୍ଟ୍ରଙ୍କୁ ସେ ରାଜ୍ୟ ଦେଇଣ ନୃପତି
ରାଜ୍ୟୁ ବାହାର ହୋଇଲେ ତୁଳେ ଦେବୀକୁନ୍ତୀ ।
ଭ୍ରମଇ ସେ ନରନାଥ ଗହନ ବିପିନେ
ପରିମଳ ଦିଶଇ ତ ଉଚ୍ଚ ବୃକ୍ଷମାନେ ।
ଏମନ୍ତ ଭ୍ରମଇ ପଣ୍ଡୁ ଗହନ କାନନେ
ହସ୍ତିନା ଈଶାନ ଭାଗ ବୃନ୍ଦାରକ ବନେ ।
ଯମୁନା ନଦୀ ବହଇ ଉତ୍ତର ଗାମିନୀ
ଶତଶୃଙ୍ଗ ପର୍ବତରେ ରହିଲେ ଯେ ବେନି ।
ପ୍ରାଗ୍ ଜ୍ୟୋତିଷପୁର ରାଜା ନାମ ଭଗବାନ
ମଦନାବତୀ ବୋଲି ହେ ତା ଭାରିଯା ନାମ ।
ମୃଗୟାର୍ଥେ ଭ୍ରମଇ ସେ ମଦ୍ରଦେଶ ପତି
ମାଦ୍ରୀ ନାମେ ଦୁହିତ୍ରାଏ ତାହାର ଉତ୍ପତ୍ତି ।
ବନେ ଭ୍ରମୁ ଭ୍ରମୁ ସେହି ପଣ୍ଡୁଙ୍କୁ ଦେଖିଲା
ମାଦ୍ରୀ କନ୍ୟାକୁ ତାହାଙ୍କୁ ବିଭା କରାଇଲା ।
ଅନେକ ସମାରୋହେ ସେ ଦେଲାକ କୁମାରୀ
କୁନ୍ତୀ ମାଦ୍ରୀ ଘେନି ପଣ୍ଡୁ ରହିଲେ ସେ ଗିରି ।
ବେନି ଭାରିଯା ଘେନିଣ ବିହରନ୍ତି ବନେ
ଭ୍ରମଇ ସେ ରାଜା ପଞ୍ଚରାଜ୍ୟ ପ୍ରତିଦିନେ ।
ଦୁଷ୍ଟ ରାକ୍ଷସମାନଙ୍କୁ ମାରଇ ସେ ଖେଦି
ଆପେ ଦୁଃଖେ ପଡ଼ି ଧୃତରାଷ୍ଟ୍ର ରାଜ୍ୟସାଧି ।
ସିଂହ ଶୁକ୍ଳ ତ୍ରୟୋଦଶୀ ତିଥିସୌରୀବାର
ଶତଭିଷା ନକ୍ଷତ୍ର ଯେ ଭୋଗ ସେ ଦିନର ।
କୌଳବ ନାମେ କରଣ ଶୁକ୍ଳ ନାମେ ଯୋଗ
ସିଂହ ସଂକ୍ରାନ୍ତିର ଊନବିଂଶ ଦିନ ଭୋଗ ।
ସେଦିନ ପଣ୍ଡୁ ଯେ ଗଲେ ପଶ୍ଚିମ ପ୍ରଦେଶେ
ଗହନ ବନେ ପଶିଲେ ମୃଗୟାର ଆଶେ ।
ବାହାର ହୋଇଲେ ଭଗ୍ନ ପାଦତଳବନେ
ଲୋଡ଼ି ନପାଇଲେ ଗୋପ୍ୟ ହେଲେ ଜୀବମାନେ ।
ଅଯମିତ ବନେ ଅଛି ଭବାନୀ ଯେ ନଦୀ
ସରସ୍ୱତୀରୁ ଦକ୍ଷିଣ ମୂର୍ତ୍ତି ହୋଇ ଭେଦି ।

ସେ ନଦୀକୂଳେ ଅଛଇ ଗୋଧନ ପର୍ବତ
ଗଙ୍ଗାକୂଳକୁ ଅଟଇ ଯୋଜନ ଯେ ସାତ ।
ଜୀବ ନ ପାଇଣ ମହାଶ୍ରମେ ନୃପବରେ
ବିଜେ କଲେ ତରୁତଳେ ପର୍ବତ ଉପରେ ।
ଏମନ୍ତ ବେଳେ ହରି ତା ନାମ ଯେ ମୃଗୁଣୀ
ସେ ନଦୀକୁ ଅଇଲା ସେ ପିଇବାକୁ ପାଣି ।
ଅଗ୍ନିକା ମହର୍ଷି ତାହା ଅନ୍ତରୀକ୍ଷେ ଦେଖି
ଧଇଲେ ସେ ଧାତିକାରେ ଯାଇ ମୃଗୁଣୀକି ।
ମୃଗୀର ତୁଳେ ଶୃଙ୍ଗାର କରନ୍ତେଣ ଯତି
ଗାଢ଼ ଆଲିଙ୍ଗନ ପାନ ଧରେ ସେ ବମତି ।
ନ ସହି ଋଷି ଶୃଙ୍ଗାର ମହାଭାଗ ତେଜ
ଶବଦେକ କଲା ସେହି ଶ୍ରବଣ ଅଗ୍ରାହ୍ୟ ।
ଶୁଣିଲେ ପଣ୍ଡୁ ସପତ ଯୋଜନ ଅନ୍ତରେ
ଗଣ୍ଡା ରାବପ୍ରାୟ ତାହା ବୁଝି ଦଣ୍ଡଧରେ ।
ଯୁକତେ ପଣ୍ଡୁ ରାଜନ ଅଟେ ଶବ୍ଦଭେଦୀ
ଶବଦକୁ ଲକ୍ଷ୍ୟକରି ଶର ବେନି ବିନ୍ଧି ।
ସେ ନାରାଚ ଗୋଟି ଚଳିଗଲା ଅନ୍ତରୀକ୍ଷେ
ଧାତିକାରେ ପଡ଼ିଲା ସେ ବାଣ ଋଷି ବକ୍ଷେ ।
ମୃଗୀ ପିଠିଦେଇ ହୃଦବାଟେ ନିକିଳିଲା
ମୃଗୁଣୀ ହୃଦରେ ଗଳିଯାଇଣ ରହିଲା ।
ଏକା ନାରାଚେ ପତିତ ହୋଇଲେ ସେ ବେନି
ମୃଗୁଣୀକୁ ଘେନି ଢଳିପଡ଼ିଲେ ସେ ମୁନି ।
ମୃଗୁଣୀ ପଡ଼ିଲା ବୋଲି ଧାଇଁଗଲେ ନୃପ
ଦେଖିଲେ ନାରାଚ ଘାତେ ଋଷି ହତଦର୍ପ ।
ବାଳପୁଡ଼ା ଭିଡ଼ି କଷା ବସନ କାଛଟି
ଶିରେ ଜଟାଭାର କ୍ଷୀଣତନୁ ସେ ଭ୍ରୂକୁଟି ।
ଯାମଳା ବୃକ୍ଷ ଯେସନ ଦିଶଇ ଅଭିନ୍ନ
ହରିଣୀ କୋଳରେ ଘେନି ତେହ୍ନେ ତପୋଧନ ।
ଦେଖିଣ ଅତି ଆଶ୍ଚର୍ଯ୍ୟ ହେଲେ ମହାରାଜ
ନିର୍ଧୂମ ଅଗ୍ନି ଜିଣିଣ ବିରାଜଇ ତେଜ ।
ମୁଖେ ପାଣି ସିଞ୍ଚି କୁଞ୍ଜଗଳ ଅଧିପତି
ଚେତନା ପାଇ ସାଷ୍ଟାମ ହେଲେ ବ୍ରହ୍ମଯତି ।
ପଣ୍ଡୁ ପୁଚ୍ଛାକଲେ ତୁ ହୋ କେବଣ ମହାତ୍ମା
ବ୍ରହ୍ମମୁନି ହୋଇ କିମ୍ପା ହେଲୁ ପାପକର୍ମା ।
ଶୃଙ୍ଗାର ଆରତେ ହରି ନ ପାରିଲୁ ସ୍ତିରୀ
ନିର୍ଜ୍ଜନ ସ୍ଥାନେ ହରିଲୁ କିମ୍ପା ମୃଗନାରୀ ।
କୋପଣେ ତାହାକୁ ଶାପଦେଲେ ଭଗବନ୍ତ
ଶୃଙ୍ଗାର କାଳେ ମୋତେ ତୁ କଲୁ ଶରାଘାତ ।
ଯୁକତେ ପର ଶୃଙ୍ଗାର ଭାଙ୍ଗି ନ ଯୋଗାଇ
ଲିଙ୍ଗଭଗ୍ନ ଦୋଷ ସରି ବ୍ରହ୍ମହତ୍ୟା ପାଇ ।

ବିନା ଅପ୍ରାଧେ ଏ କାଳେ ଶରାଘାତ କଲୁ
ତୋହର ଶୃଙ୍ଗାରକାଳେ ବାଣ ପଡ଼ି ଜଳୁ ।
ସ୍ତିରୀ ସଂଯୋଗ କରନ୍ତେ ତୁହି ରଙ୍ଗରତି
ତୁମ୍ଭଙ୍କୁ ହେଉ ସେ କାଳେ ଏ ମୋହର ଶାସ୍ତି ।
ରାଗେଣ ଶାପ ବହିଲେ ସେହି ତପୋବନ୍ତ
ପଣ୍ଡୁ ପୁଚ୍ଛା କଲେ ସ୍ଥିରହୋଇ କହ ତଥ୍ୟ ।
ତୁମ୍ଭେ କିଏ ତ ଏମନ୍ତ ହେଲ ପରପଞ୍ଚ
ମୃଗ ମନୁଷ୍ୟ ଶୃଙ୍ଗାର ଅଛଇ କି ମଞ୍ଚ ।
ଋଷି ବୋଇଲେ ତୁ ଶୁଣ ଆହେ ସୋମବଂଶୀ
ବୃହସ୍ପତିଠାରୁ ଉତପତ୍ତି ପାଠଋଷି ।
ପାଠଋଷିର ନନ୍ଦନ ଋଷି ତାରତ୍ୟଜ
ମୁନି ମକରଧ୍ୱଜ ଯେ ତାହାଙ୍କ ଆତ୍ମଜ ।
ମକରଧ୍ୱଜ ନନ୍ଦନ ମୁନି ଯେ ସତ୍ୟପ
ତାହାଙ୍କର ନନ୍ଦନ ଯେ ବିଧୂତ ବିରୂପ ।
ବିରୂପର ନନ୍ଦନ ଯେ ଦରଦ ମହର୍ଷି
ଏହା ନନ୍ଦନ ଜୀବିତମଲ୍ଲ ନାମେ ଋଷି ।
ଜୀବିତମଲ୍ଲର ପୁତ୍ର ଯମନିକ ଯତି
ଯମନିକର ନନ୍ଦନ ମୁନି ପ୍ରଜାପତି ।
ପ୍ରଜାପତିର ନନ୍ଦନ ଅଗ୍ନିକା ମହର୍ଷି
ମୋ ନାମ ଅଗ୍ନିକା ମୁହିଁ ବାଳକାଳୁ ଋଷି ।
ଯେତେବେଳେ ଉପୁଜିଲି ମୁହିଁ ମାତାଗର୍ଭେ
କ୍ଷୀରପାନ ନ କରି ମୁଁ ବଞ୍ଚିଲି ସେ ଭାବେ ।
ଜନମହୁଁ ଆହାର ମୁଁ କଲଇଁ ଉପେକ୍ଷା
ଆହାର ମୈଥୁନ ନିଦ୍ରା ପ୍ରତି ନାହିଁ ବାଞ୍ଛା ।
ଏସନ ବଞ୍ଚିଲି ଜନ୍ମକାଳୁ ମୋର ଦର୍ପେ
ବସିଲି ସମସ୍ତ ଧର୍ମ ଘେନି ଘୋର ତପେ ।
ପାଣି ପବନହୁଁ ମୋର ଆନ ନାହିଁ ଭୋଜି
ନିରାହାରେ ଲୟ କରି ନିରାକାର ଭଜି ।
ଏକ ଆସନ ସଞ୍ଚୟ କଲି ଚାରିଯୁଗ
ଚାରିଯୁଗ ଗଲେ ମୋତେ ହୁଏ ରାତ୍ରଦିବ ।
ଏହିରୂପେ ବର୍ତ୍ତିଲି ମୁଁ ଯୁଗ ମନୁ ତିନି
ମୋତେ ପଚାରଇ ମନ୍ତ୍ର ଅର୍ଥ ପଦ୍ମଯୋନି ।
କାଳର ଅନୀତି ଯହୁଁ ହୋଇଲାକ କଳି
ମଧ୍ୟପୁର ଛାଡ଼ି ଆମ୍ଭେ ସ୍ୱର୍ଗପୁରେ ଚଳି ।
ଏସନକ ଗଲୁ ଆମ୍ଭେ ଆକାଶ ପର୍ଯ୍ୟନ୍ତେ
କାଳବିକାଳ ଦେଖିଣ ପଠାଇଲେ ମୋତେ ।
ଦୁହିଙ୍କର ତ୍ରାସ ଦେଖି କହେ ପ୍ରେତେଶ୍ୱର
ମୁହିଁ ତ ନିର୍ଭୟ ତୁମ୍ଭେ କାହାକୁ ନ ଡର ।
ବିନୟ ଭାବ ବହିଣ ବୋଲନ୍ତି ସେ ଦୂତେ
ପ୍ରଣିପାତ କରି ସେହି କୃତାନ୍ତ ଅଗ୍ରତେ ।
ଶୁଣ ଦେବ ଜନ୍ତୁନାଥ ତ୍ରୈଲୋକ୍ୟାଧିପତି
ଅଗ୍ନିକା ମହର୍ଷି ତୋର ପୁରେ ଆସିଛନ୍ତି ।
ବିକାଶଇ ଋଷି ତେଜ କାଳଅଗ୍ନି ପ୍ରାୟ
ତ୍ରାସେଣ କିଙ୍କରଗଣ କରୁଛନ୍ତି ଭୟ ।
ବ୍ରହ୍ମପୁରୁଷ ପ୍ରତ୍ୟକ୍ଷ ଅଟେ ବ୍ରହ୍ମଦ୍ୱିଜ
ତେଣୁ ଭୟେ ପଳାଇଲୁ ଆହେ ଦ୍ୱିଜରାଜ ।
ଆମ୍ଭଙ୍କୁ ତେଜିଣ ଉଭା ହେଲେ ଜନ୍ତୁପତି
ବିନୟେ ପଚାରେ ସଂଯମନୀ ଚକ୍ରବର୍ତ୍ତୀ ।
ଭୋ ଅଗ୍ନିକା ଋଷି ତୁ ଯେ ମଧ୍ୟପୁରେ ଥିଲୁ
ଚିରନ୍ତନ ତପ କରି କିସ କିସ କଲୁ ।
ବୋଇଲୁ ମହାତ୍ମା କଲୁ ଅନେକ ଯେ ଧର୍ମ
ମହାତପ ଆବୋରିଲୁ ମହାଯୋଗ ବ୍ରହ୍ମ ।
ଅନେକ ଯାଗ ସେ କଲୁ ରାଜାର ନିମନ୍ତେ
ଖଣ୍ଡିଲୁ ମହାପାତକ ଆପଦ ଶାନ୍ତ୍ୟାର୍ଥେ ।
ମେଘମାନେ ଅନାବୃଷ୍ଟି କରନ୍ତି ଯେ କାଳେ
କୋଟି ହୋମ କରାଇଲୁ ରହି ମହୀତଳେ ।
ଆମ୍ଭ ବଚନେ ବଦନ୍ତି ପୁଣି ଜନ୍ତୁପତି
ତୁମ୍ଭ ବଂଶକୁ କାରଣ କିସ ଅଛି ଯତି ।
ଆମ୍ଭେ ପୁଣି ବୋଇଲୁ ଯେ ଦାର ସଂହରିଲୁ
ଅନେକ କାଳ ପର୍ଯ୍ୟନ୍ତ କାମ ନ ଇଚ୍ଛିଲୁ ।
ଅଦୋଷୀ ମୋର ସେ ଦୋଷ ନ ପାରିଲା ବାଛି
ବିଚାରଇ ଜନ୍ତୁପତି ମୋର ଦୋଷ ଅଛି ।
ଭୋ ମହାତ୍ମା କଲୁ ତୁହି କିମ୍ପାଇଁ ଏ କୃତ୍ୟ
ସନ୍ତାନ ନ ଥିଲେ ସବୁ ଧର୍ମ ଅକୃତାର୍ଥ ।
ସନ୍ତାନ ନିମନ୍ତେ ନାନା ଧର୍ମ କର୍ମ କରି
ତୃତୀୟ ବୟସେ ସିନା ହୋଇ ତପଚାରୀ ।
ସନ୍ତାନ ବିହୁନେ ସର୍ବକର୍ମ ଦୂର କରି
ପରମ ପଣ୍ଡିତ ତୁହି କିମ୍ପା ନ ବିଚାରି ।
ଯମ ବଚନେ ବୋଇଲୁ ଆମ୍ଭେ ମହାମୁନି
ଚତୁର୍ଥ ବୟସେ ଆମ୍ଭେ କନ୍ୟା ଏକ ଘେନି ।
ତାହାର ତୁଲେ ଅନେକ କଲୁ ଯେ ରମଣ
ଯେତେ ଶୃଙ୍ଗାର କଲୁ ସେ ହେଲା ଅକାରଣ ।
ଯମରାଜା ବୋଇଲା ତୁ ଜ୍ଞାନରେ ଉତ୍ତମ
କୁସ୍ଥାନେ ରହିବ ଭଲ ନୁହେଁ କିଛି ଧର୍ମ ।
ଯେ ଭାରିଯା କଲ ଯେବେ ନ ହେଲା ସନ୍ତତି
ଆନ କନ୍ୟା ବିଭା କିମ୍ପା ନୋହିଲ ହେ ଯତି ।
ଆମ୍ଭେ ବୋଇଲୁ ହୋଇଲୁ ଆମ୍ଭେ ଯେତେ ବିଭା
କାହିଁରେ ଆମ୍ଭ ସନ୍ତାନ ନୋହିଲାରେ ବାବା ।
ଶମନ ବୋଇଲେ ଯେବେ ନୋହିଲା ତେମନ୍ତେ
ବୀର୍ଯ୍ୟ ତରଳ ହୋଇଲା ବୟସ ଚତୁର୍ଥେ ।

ପଞ୍ଚଦଶ ପରିଯନ୍ତେ ବାଳ ହୋଇଥାଇ
ତଦନ୍ତେ ଯେବଣ ଜନ ଶୃଙ୍ଗାର ଇଚ୍ଛଇ ।
ସୁନ୍ଦର ପଞ୍ଚତିରିଶ ବରଷ ପର୍ଯ୍ୟନ୍ତେ
ମତ୍ତବୁଦ୍ଧି ହୁଏ ମନ ନାହିଁ ଧର୍ମ ଅର୍ଥେ ।
ପଞ୍ଚତ୍ରିଂଶଠାରୁ ପୁଣି ଛାଡ଼ଇ ସେ ମାନ
ବୀଚକ୍ଷଣ ବୁଦ୍ଧି ଦିଶେ ଇଚ୍ଛଇ ସନ୍ତାନ ।
ଚାଳିଶ ବରଷ ଯହୁଁ ହୁଅଇ ବୟସ
ତରୁଣ ବୁଦ୍ଧି ଆସିଣ ହୁଅଇ ପ୍ରବେଶ ।
ଧନ ସନ୍ତାନ ଇଚ୍ଛଇ ଆପେ ଆପେ ପୁଣି
ଦେବତା ବ୍ରାହ୍ମଣେ ଭକ୍ତି କହେ ଧର୍ମବାଣୀ ।
ଚାଳିଶ ଯାଇଣ ଯହୁଁ ପଚାଶ ପ୍ରବେଶ
ବୀର୍ଯ୍ୟ ପତନେ ମନରେ ହୁଅଇ ଆଳସ୍ୟ ।
ଷାଠିଏକ ବରଷ ଯେ ହୁଅନ୍ତେଣ ପ୍ରାଣ
କାମଚନ୍ଦ୍ର ଛାଡ଼ଇ ନ ରହେ ଠାବ ଜାଣ ।
ସତୁରୀ ବରଷ ହେଲେ ହୁଅଇ ନିର୍ବଳ
ବୀର୍ଯ୍ୟ ନାଶ ଯାଏ ଆଉ ନାହିଁ କାମମେଳ ।
ଅଶୀ ବରଷ ହୋଇଲେ ମନେ ପଡ଼େ ସବୁ
ତହିଁ ସନ୍ତାନ ପଡ଼ିଲେ କାହିଁ ତୁ ପାଇବୁ ।
ଅଚେତନ ପରାପର ନାହିଁ ନଉବର୍ଷେ
ଭ୍ରାନ୍ତି ହୁଏ ସହୋଦରେ ନ ଚିହ୍ନଇ ପାଶେ ।
ଶତେକ ବରଷେ ସେହି ହୁଏ ବାଳ ଭୋଳା
ସେ ପ୍ରାଣୀ ତହିଁ ଆବର କାହିଁ କାମଭୋଳା ।
ଶୁଣ ହୋ ଅଗ୍ନିକା ଋଷି କହିଲି ତୁମ୍ଭଙ୍କୁ
ମାୟା ପଟଳ ହୋଇ ଏ କଳିଯୁଗକୁ ।
ମହାତ୍ମା ପୁରୁଷ ହୋଇ ନ ଜାଣିଲୁ ବାଣୀ
ଅଦଉଡ଼ି ଅବନ୍ଧନେ ବନ୍ଧାଗଲେ ପ୍ରାଣୀ ।
ମଧ୍ୟପୁରେ ଜାତ ହେଲେ ସନ୍ତାନ ହିଁ ମୂଳ
ସନ୍ତାନ ନ ଥିଲେ ସର୍ବଧର୍ମ ହିଁ ବିଫଳ ।
ତୁମ୍ଭେ ଏହା କଲ ଆଦିଅନ୍ତ କରି ସଞ୍ଚି
ମୋହର ହାତରେ ଦେଲେ ପୁଚ୍ଛିଣ ବିରଞ୍ଚି ।
ଯତ୍ନେ ଯେବେ ପୁତ୍ର ଜାତ ନୋହିଲା ମହର୍ଷି
ଷଟକର୍ମ ଶାସ୍ତ୍ରରେ କି ନ ପାରିଣ ପଶି ।
ଭିଆଇଲେ ଷଟକର୍ମ ଶାସ୍ତ୍ର ବିଶ୍ୱାମିତ୍ରେ
ଭାର୍ଯ୍ୟାରେ ପୁତ୍ର ନୋହିଲେ ଭିଆଇ ଷଡ଼ାର୍ଥେ ।
ଦିନେ ଆମ୍ଭଙ୍କୁ ବୋଇଲେ ଶୁଣସିରେ ଯମ
ଷଟକର୍ମେ ପୁତ୍ର ହେଲେ ଦେବୁ ମୋକ୍ଷଧର୍ମ ।
ବିଭା ଭାରିଯାରେ ଯେବେ ନୋହିଲା ସନ୍ତତି
ଫଳ ଫଳିଲା ସ୍ତିରୀଏ ହୁନ୍ତି ରଜୋବତୀ ।
ପୁତ୍ର କାମନାରେ ତାଙ୍କୁ ଧନରତ୍ନ ଦେଇ
ଶୁଦ୍ଧ ସ୍ନାହାନେ ଶୃଙ୍ଗାର କରି ତାରେ ତହିଁ ।

ତହିଁ ମହାତ୍ମା ଯେବେ ନ ଉପୁଜେ ସନ୍ତାନ
ଯାର ବୃତ୍ତି ନାହିଁ ଭୂମି କିଣି କଲେ ଧାନ ।
ସେ ଶସ୍ୟ ଭୋଗ କରନ୍ତି ପୁଣି ନାନା ପ୍ରାଣୀ
ଏସନକ ବିଶ୍ୱାମିତ୍ର ଶାସ୍ତ୍ରରେ ନିର୍ମାଣି ।
ତେଣେ କାରଣ ଅବଶ୍ୟ ହୁଅନ୍ତା ତୁମ୍ଭଙ୍କୁ
ବାଟ ଥାଆନ୍ତା ତୁମ୍ଭର ବଂଶ ତରିବାକୁ ।
ଅଗ୍ନିକା ଋଷି ବୋଇଲେ ତାହା ଆମ୍ଭେ କଲୁ
ତେମନ୍ତେ ପୁତ୍ର ଆମ୍ଭେ କରି ନ ପାରିଲୁ ।
ତାହା ଶୁଣିଣ ବିରସ ହେଲେ ଜନ୍ତୁଈଶ
ଏଡ଼େ ମହାତ୍ମା ହୋଇଣ ପାଉ ନର୍କବାସ ।
କୌଣସି ଉପାୟ କରି ନ ପାରିଲୁ ମନେ
ଜନେ ପୋଷି ନ ପାରିଲୁ ପରର ନନ୍ଦନେ ।
ତାହା ବିଭା କଲେ ଧର୍ମ ପାଞ୍ଚଭାଗ ହୁନ୍ତା
ଭାଗେ ତୁମ୍ଭେ ଚାରିଭାଗ ପାନ୍ତେ ଜନ୍ମକର୍ତ୍ତା ।
ତେଣେ ଯେ କାରଣ ମୁନି ହୁଅନ୍ତା ତୁମ୍ଭଙ୍କୁ
ବଂଶକୁ କାରଣ ହୁନ୍ତା ସଙ୍ଗ କରିବାକୁ ।
ଆମ୍ଭେ ବୋଇଲୁ ଯେ ଯମ ତହିଁ ଆମ୍ଭେ କଲୁ
ଧନ ଦେଇଣ ପୁତ୍ରେକ ଆମ୍ଭେ ଯେ କିଣିଲୁ ।
ଯେସନ ଆମ୍ଭର କର୍ମେ ଅଛଇ ଅର୍ଜିଲା
ବିଭା ଅନ୍ତେ ଆମ୍ଭର ଯେ ପୁତ୍ରଗୋଟି ଗଲା ।
ଆମ୍ଭ ବଚନେ ନିଷାଦ ପାଇଣ ଶମନ
ଚଣ୍ଡ ପ୍ରଚଣ୍ଡକୁ ଚାଇ ବୋଇଲେ ଏସନ ।
ପୁତ୍ର ଦୁହିତା ଏହାର ମଞ୍ଜେ ଯେବେ ନାହିଁ
କୁମ୍ଭୀପାକରେ ପକାଅ ଏହାକୁ ତୁ ନେଇ ।
ଯମର ବଚନ ଶୁଣି କାଳ ଯେ ବିକାଳ
କୋପମୁଖେ ଧଇଲେକ ଆସି ଆମ୍ଭ ବାଳ ।
ଆମ୍ଭର ଏହି ଅବସ୍ଥା ଦେଖି ଧର୍ମଲୋକ
ରହ ରହ ବୋଲି ଉଚ୍ଚସ୍ୱରେ ଦେଲେ ଡାକ ।
ଆମ୍ଭର ବାଳ ଛଡ଼ାଇ ବୋଇଲେକ ଥରେ
ଆହେ ଶମନ ଆମ୍ଭର କର ଉପକାରେ ।
ଏ ମହାମୁନି ଅଟନ୍ତି ଜାଣ କଳ୍ପ ଋଷି
ଭୋ ମହାତ୍ମା ଉପକାର ବେଳେକ କରସି ।
ଆବର ଜନ୍ମ ଗୋଟିଏ ଛାଡ଼ ହେ ଏହାଙ୍କୁ
ମର୍ତ୍ତ୍ୟେ ପୁତ୍ର ଜାତ କରି ଆସୁ ଏ ସ୍ୱର୍ଗକୁ ।
ଯମର ଆଜ୍ଞାରେ ଦୂତେ ଶାସ୍ତି ଦେଉଥିଲେ
ଧର୍ମାତ୍ମା ଲୋକେ ତାହାଙ୍କୁ ଶାନ୍ତି କରାଇଲେ ।
ଯମ ବୋଇଲେ ଯାଅ ଯା ପୁଣି ମଧ୍ୟସ୍ୱର୍ଗେ
ପୁତ୍ର ଜାତ କରି ଋଷି ଆସ ତୁହୋ ବେଗେ ।
ବନ୍ଧନ ଫେଡ଼ି ଦିଅନ୍ତେ ଆମ୍ଭେ ଆସୁ ଖସି
ଚିତ୍ରଗୁପତ ଆମ୍ଭଙ୍କୁ ଡିଆରିଲେ ଆସି ।

ଜପ ତପମାନ ଏବେ ଛାଡ଼ି ମୁନିବର
ସମସ୍ତ ତେଜ୍ୟା କରିଣ ପୁତ୍ର ଜାତ କର ।
ବଦନ୍ତି ଯେ ମହାଋଷି ଶୁଣ ପଣ୍ଡୁରାୟେ
ଏମନ ହେଲା ମୋହର ଧର୍ମର ସଭାଏ ।
ଧର୍ମେ ବର୍ତ୍ତି ଅଇଲି ମୁଁ ପୁତ୍ର ଜାତ ଅର୍ଥେ
ବିଶ୍ରାମି ଭାଳିଲି ବସି ବିନ୍ଧ୍ୟ ପରବତେ ।
ଶୃଙ୍ଗାର ତ କଲୁ ଆମ୍ଭେ ମାନୁଷୀ ବହୁତ
ଅନେକ ବାଗେ ନୋହିଲା ଯହୁଁ ପୁତ୍ର ଜାତ ।
ଏସନକ ସମୟେ ଏ ହରିତା ମୃଗୁଣୀ
ଶ୍ରମେ ଅଇଲା ଆହାର କରିବାକୁ ପାଣି ।
ଏ ମୃଗ ନାରୀ ଅଟଇ ପବିତ୍ରୟା ଜୀବ
ଏହା ଅଜିନ ବସନ କଲେ ସଦାଶିବ ।
ଏଣୁ ଏହା ସଙ୍ଗେ କଲି ଶୃଙ୍ଗାର ମୁଁ ଇଚ୍ଛା
ସନ୍ତାନ ଜାତ ଅର୍ଥରେ କଲି ଏହି ବାଞ୍ଛା ।
ପାଣି ଆହାର କରିଣ ଲେଉଟନ୍ତେ ମୃଗୀ
ଆକର୍ଷି ଧଇଲି ବେଣ୍ଟକାର ଭାରେ ଜଗି ।
ଶୃଙ୍ଗାର ରଚିଲୁ ଆମ୍ଭ ପୁତ୍ର ଜାତ ଅର୍ଥେ
ବେନି ପ୍ରାଣୀ ନାଶଗଲୁ ତୋର ଶରାଘାତେ ।
ତୁ ମହାରାଜା ଯେ ପଞ୍ଚ କଟକ ନୃପତି
ନାରାଚ କାଢ଼ି ମହାତ୍ମା ପାଇଲଣି ଶାସ୍ତି ।
ଋଷିର ବଚନ ଆଣ୍ଟେ ଧଇଲେ ନାରାଚ
ବାମପାଦ ପୃଷ୍ଟେ ଦେଇ ମାଡ଼ି ମହାରାଜ ।
ନାରାଚ ଗୋଟି କାଢ଼ିଲେ ଗାଢ଼େଣ ଉଛୁଳି
ପ୍ରାଣତ୍ୟାଗ ହୋଇ ଋଷି ଭୂମିଗତେ ପଡ଼ି ।
ହରିତା ମୃଗୀ ଗର୍ଭରେ ଅଗ୍ନିକା ମହର୍ଷି
ବୀର୍ଯ୍ୟ ପତନ ହୁଅନ୍ତେ ଗର୍ଭୁ ବାଳଶିଷି ।
ଦୁହିଁଙ୍କର ଅବସାନେ ଜୀବଆତ୍ମା କାଳେ
ନୃପତି ଦେଖନ୍ତେ ଖସିପଡ଼େ ଭୂମିତଳେ ।
ମୃଗଋଷି ବୋଲି ନାମ ଦେଲେ ସେ ପୁତ୍ରକୁ
ତାହା ସମର୍ପଣ କଲେ ପଣ୍ଡୁ ନୃପତିଙ୍କୁ ।
ମୃଗ ଶରୀର ମନୁଷ୍ୟ ମୁଣ୍ଡ ସେ ପୁତ୍ରର
ମୁଖ ଦେଖି ପ୍ରାଣତ୍ୟାଗ କଲା ମୁନିବର ।
କୃତାନ୍ତକ ସ୍ୱେ ଋଷିଙ୍କୁ ଦେଖି କଲେ ପୂଜା
ସ୍ୱର୍ଗସ୍ଥାନେ ବସାଇଲା ତାହାଙ୍କୁ ବିଡ଼ୋଜା ।
ଶୁଖିଲା କାଠ କୁଢ଼ାଇ ଚିତା ଆରୋପିଣ
ଋଷି ଶବ ମୃଗୀ ଶବ ବହି କୁରୁରାଣ ।
ପୁତ୍ର ଘେନିଗଲେ ଶତଶୃଙ୍ଗ ପରବତେ
ପ୍ରବେଶ ହୋଇଲେ ବେନି ଭାରିଯା ଅଗ୍ରତେ ।
ବଦନ ନ ଚାହିଁ ବ୍ରହ୍ମହତ୍ୟା ଦୋଷ ପାଇ
ବସିଲେକ ହେଠ ମାଥେ ତହିଁ ନରସାଇଁ ।

କୁନ୍ତୀ ପଚାରନ୍ତି ସ୍ୱାମୀ ତୁମ୍ଭେ ମହାଜ୍ଞାତା
ଧାର୍ମିକ ବିବେକ ପୁଣି ପଣ୍ଡିତ ଶକତା ।
ହେଠମାଥ ହୋଇ ଦେବ କଥାତ ନ କହୁ
କେଉଁ ଦ୍ରୋହ କଲୁ ଆମ୍ଭେ ବଦନ ନ ଚାହୁଁ ।
ପଣ୍ଡୁ ବୋଇଲେ ଯେ ତୁମ୍ଭେ ଅଟ ମହାସତୀ
ଆବର ଉଚ୍ଚ ବଂଶରେ ତୁମ୍ଭର ଉତ୍ପତ୍ତି ।
ମୁହିଁ ଯେ ପାପ କଲଇଁ ଶୁଣସି କୋଇନ୍ତା
ମୃଗୟା ବିନୋଦେ କଲୁ ଆମ୍ଭେ ବ୍ରହ୍ମହତ୍ୟା ।
ଅଗ୍ନିକା ମହାଋଷିଙ୍କୁ ମାଇଲୁ ଯେ କାଳେ
କୋପେ ସେହି ଶାପଦେଲେ ପ୍ରାଣତ୍ୟାଗ କାଳେ ।
ଶୃଙ୍ଗାର କାଳେ ନାରାଚ ମାଇଲୁ ତୁ ପଣ୍ଡୁ
ତୋର ଶୃଙ୍ଗାରେ ଅକାଳ କାଣ୍ଡ ଆସି ପଡୁ ।
ଏତିକି ଦୋଷ କଲିରେ ଭୋଜର କୁମାରୀ
ତେଣୁ ବସିଲି ବିରସେ ମୁଖ ପୋତିକରି ।
କୁନ୍ତୀଦେବୀ ବୋଇଲେ ହେ ଶୁଣ ପ୍ରାଣନାହା
ଦଇବ କର୍ମ ଲିଖନ କରିଅଛି ଯାହା ।
ଆପେ ଯାହା କରି ସ୍ୱାମୀ ତାକୁ କର୍ମ ବୋଲି
ତୁମ୍ଭର କି ଗଲା ମୁହିଁ ସିନା ନାଶଗଲି ।
ଏ ପୁତ୍ର ଗୋଟି ଭୋ ସ୍ୱାମୀ ଅଟଇ କାହାର
ପଣ୍ଡୁ ବୋଇଲେ ଅଗ୍ନିକା ମହାଋଷିଙ୍କର ।
ମୃଗଋଷି ଏହାନାମ ଦେଇ ଗୋ ଭାବିନୀ
ଅବସାନ କାଳେ ମୋତେ ସମର୍ପିଲେ ମୁନି ।
କୁନ୍ତୀ ବୋଇଲେ ଆବର ଶୁଣ ପ୍ରାଣନାଥ
ଅଗ୍ନିକା ମହର୍ଷି ବୋଲି ଯେଉଁ ତପୋବନ୍ତ ।
ତେଡ଼େ ମହାଋଷି ଏଡ଼େ କର୍ମ ଆଚରିଲା
କୋପ ନ ସଂହରି ପୁଣି ଅଭିଶାପ ଦେଲା ।
ଧୃତରାଷ୍ଟ୍ରଙ୍କୁ ଯେ ରାଜ୍ୟ ଦେଲେ ଧର୍ମଅର୍ଥେ
ସେହି ଧର୍ମ ଜିଜ୍ଞାସିଲା ତୁମ୍ଭଙ୍କୁ ଯଥାର୍ଥେ ।
କର୍ମକୁ ଆଦରି ତହିଁ ରହିଲେ ରାଜନେ
ଶୁଣ ତୁ ହୋ ବୈବସ୍ୱତ ମନୁ ଏକମନେ ।
ବ୍ୟାସଙ୍କୁ ସ୍ମରଣ କଲେ କଣ୍ଠୁ ନରପତି
ମହା ବ୍ରହ୍ମଋଷି ଯାଇ ମିଳିଲେ ତଡ଼ତି ।
ସଙ୍ଗେ ଅଛନ୍ତି ଷାଠିଏ ସହସ୍ର ଯେ ଶିଷି
ଶତଶୃଙ୍ଗ ପର୍ବତରେ ବିଜୟ ମହର୍ଷି ।
ବଧୂଙ୍କୁ ଘେନିଣ ନମସ୍କାର କଲେ ପଣ୍ଡୁ
ବ୍ୟାସେ ଯେ କଲ୍ୟାଣ କଲେ ପ୍ରମାଦ ତୋ ଖଣ୍ଡୁ ।
ଇନ୍ଦ୍ରପ୍ରସ୍ଥ ରାଜ୍ୟ ବାବୁ ଛାଡ଼ିଲୁ କେମନ୍ତେ
ପଣ୍ଡୁ ବୋଇଲେ ଯେ ଧୃତରାଷ୍ଟ୍ରଙ୍କ ନିମନ୍ତେ ।
ଅନ୍ଧ ହୋଇଣ ରାଜ୍ୟକୁ କଲେ ସେହି ଇଚ୍ଛା
ମୁଁ ବୋଇଲି ଭୋଗ କର ଯେତେ ମନୋବାଞ୍ଛା ।

ରାଜ୍ୟ ଦେଇ ପଶିଲଇଁ ମୁହିଁ ଘୋରବନେ
ଅନବରତ ଭ୍ରମଇ ଗହନ ବିପିନେ ।
ମାରଇ ମୁଁ କଉଣପ ରଖି ତପିଜନ
ପାଞ୍ଚ କଟକରେ ମୁହିଁ କରଇ ଭ୍ରମଣ ।
ବୋଲନ୍ତି ଯେ ବ୍ୟାସେ ବୁଦ୍ଧ ସାଧୁସାଧୁ ତୋର
ରାଜ୍ୟ ଦେଇ ଏ ଅବସ୍ଥା ପାଉ ବନସ୍ତର ।
ପଣ୍ଡୁ ବୋଇଲେ ଶୁଣିମା ହେଉ ମୋର କଷ୍ଟ
ଅଗ୍ନିକା ମହାଋଷିଙ୍କୁ କଲି ପ୍ରାଣେ ଭ୍ରଷ୍ଟ ।
ବ୍ରହ୍ମହତ୍ୟା ମହାପାପ ଲାଗିଲା ମୋ କାୟେ
କହିବା ହେଉ ଯେମନ୍ତେ ପାପ ଯାଉ କ୍ଷୟେ ।
ସୁବର୍ଣ୍ଣର ସିଂହାସନେ ବିଜେ କଲେ ବ୍ୟାସ
ବ୍ୟାସଙ୍କ ଛାମୁରେ ବିଜେ କଲେ ସର୍ବ ଶିଷ୍ୟ ।
ରତ୍ନଝରି ଘେନି ପାଦ ପଖାଳି ନୃପତି
ଅନେକ ପୂଜିଲେ କରି ବିନୟେ ଭକତି ।
ବ୍ୟାସଋଷି ବୋଲନ୍ତି ହେ ଶୁଣ କୁରୁମଣି
ଋଷିଙ୍କି ଯେ ଶରାଘାତ କଲୁ ତୁ ନ ଜାଣି ।
ଅଜ୍ଞାନୀ ଲୋକଙ୍କ ଦୋଷ ବଡ଼ ହୁଏ ନାହିଁ
ଏମନ୍ତେ ସେ ଆଶ୍ୱାସନ୍ତି ଧର୍ମ ଅର୍ଥ କହି ।
ଅଗ୍ନିକା ମହାଋଷି ଯେ ଅର୍ଜିଲା ଏ କୃତ୍ୟ
ପୂର୍ବେ ଯାହା ଅର୍ଜିଛି ତ କର୍ମ ଘଟସୂତ୍ର ।
ବ୍ରହ୍ମବେତ୍ତା ମହାମୁନି ଭବିଷ୍ୟତ ଜ୍ଞାନୀ
ଏଡ଼େ ପାପରେ ଦୂଷିତ ହେଲେ ତେଡ଼େମୁନି ।
ବ୍ୟାସ ବୋଇଲେ ତୋ ଧର୍ମଗୁଣ ପଣ୍ଡୁ ନୃପ
ଆଦ୍ୟ ସତ୍ୟଯୁଗ କଥା କହିବା ସ୍ୱରୂପ ।
ଅପାର କାଳର କଥା ଶୁଣ ସାବଧାନେ
ଏକ ସତ୍ୟଯୁଗ ଥିଲା କର୍ଣ୍ଣକଳ୍ପ ନାମେ ।
କୁଶଦ୍ୱୀପର ଅନଙ୍ଗସେନ ଯେ ନୃପତି
ତାହାରି ଭାରିଯା ନାମ ଅଟେ ରତ୍ନାବତୀ ।
ରାଜ୍ୟର ରାଜା ହୋଇ ସେ ଅଟେ ମହାଜ୍ଞାତା
ସତୀନ୍ଦ୍ର ପଣେ ସାଧଇ ଏକଇ ବନିତା ।
ଆଗରୁ ଥିଲା ବହୁତ ଶତ ଶତ କ୍ରିୟା
ଅନୁରାଧା ନକ୍ଷତ୍ରରେ ଜାତ ତାର ପ୍ରିୟା ।
ତାହାର ନକ୍ଷତ୍ର ଜାଣ ଅଟେ ଅନୁରାଧା
ସ୍ତିରୀ ହୋଇଲେ ତାହାର କାମରେ ଶରଧା ।
ପୁରୁଷ ଜାତ ହୋଇଲେ ତେଜେ ସର୍ବଧର୍ମ
ଅଷ୍ଟ ନକ୍ଷତ୍ରେ ତାର ଅଟଇ ଜାତ କର୍ମ ।
ଅଶ୍ୱିନୀ ଦ୍ୱିଜା ରୋହିଣୀ ପୁଷ୍ୟା ଅନୁରାଧା
ଶ୍ରବଣା ରେବତୀ ଶତଭିଷା କାମଶ୍ରଦ୍ଧା ।
ଅଷ୍ଟ ନକ୍ଷତ୍ରେ ଉପୁଜେ ଯେ ପୁରୁଷସ୍ତିରୀ
ପୁରୁଷକାମୀ ହୁଅଇ କାମିନୀ ଦୋଚାରୀ ।

ଯେ କୁଶଦ୍ୱୀପର ରାଜା ଅଟେ ସତ୍ୟବତୀ
ତୋ ଭାରିଯା ଦୋଚାରୁଣୀ ରାଜ୍ୟରେ ପ୍ରସିଦ୍ଧି ।
ଏ ରୂପେ ତାର ସଂକଳ୍ପ ନ ଛାଡ଼ଇ ରାୟେ
ଯତୀନ୍ଦ୍ରପଣେ ତାହାର ଏକ ଭାରିଯାଏ ।
ଆନ ଭାରିଯା ନ କରେ ସେହି ଦଣ୍ଡଧାରୀ
ଏକ ଭାରିଜା ତାହାର ସେ ପୁଣି ଦୋଚାରୀ ।
ତାକୁ ତିଆରଇ ଭଟ ମିଶ୍ରଙ୍କୁ ବସାଇ
ଅସତୀ ସ୍ତିରୀଙ୍କ ଗତି ମୁକତି ଯେ ନାହିଁ ।
ଶୁଣିବା ପର୍ଯ୍ୟନ୍ତେ ସେହି ରଖିଥାଇ ହୃଦେ
ରାଜା ଅନ୍ତର ହୋଇଲେ ମାନେ କାମଦେବେ ।
ଅନେକ ବାଦେ ନୃପତି ତିଆରଇ ନିତ୍ୟେ
ପୁରାଣ ବାକ୍ୟେ ଶୁଣାଉଥାଉ ଦିବାରାତ୍ରେ ।
ପାପ ଆଚରଣ ତାର ସେହି ମନ୍ଦମତି
କେବେ ହେଁ ସେ ନ ଛାଡ଼ିଲା ଅନୀତି ପ୍ରକୃତି ।
ଅନେକ ଭୋଗ ଦେଇଣ ଯତ୍ନେ ପ୍ରତିପାଳି
ଧର୍ମପୁରୁଷ ହିଁ ଆନେ ନ ରସେ ଜଞ୍ଜାଳି ।
ମକର ସଂକ୍ରାନ୍ତି ଦିନେ ଗଲୁ ସିନ୍ଧୁସ୍ନାନେ
ଅଗ୍ନିକା ମହାଋଷିଙ୍କି ଦେଖିଲା କାନନେ ।
ସଙ୍ଗରେ ଅଛନ୍ତି ତାର ଅନେକ ପୋଇଲୀ
ବାକୁଟିଆଣି ଚାଙ୍ଗୁଡ଼ାଇତି ମୃଦୁସୁଲୀ ।
ସେ ଋଷିଙ୍କୁ କୋଳ କରି ଧଇଲାକ ଧାତି
ଋଷି ଦଣ୍ଡ କମଣ୍ଡଳ ପକାଇ ବିକୋତି ।
ଆକର୍ଷି ଧଇଲେ କୋଳକରି ଭୁଜେ ଭିଡ଼ି
ହୃଦରେ ହୃଦ ଲଗାଇ ରାଜ ଭୟ ଛାଡ଼ି ।
ବୋଲଇ ଶିଂଶପାଲତା ତଳେ ଆସ ଯତି
ମୁହିଁ ରାଜକନ୍ୟା ମୋତେ ଦିଅସି ସୁରତି ।
ଅନେକ ସ୍ତିରୀ ପୁରୁଷ ଅଟନ୍ତି ସେ ଏକା
ଦେଖିଣ ସେ ବ୍ରହ୍ମଋଷି ହୋଇଲେ ତାଟକା ।
କୋପେ ମହାତ୍ମା ଛଡ଼ାଇ ଦେଲେ ତାକୁ ପେଲି
ନାରାୟଣ ନାରାୟଣ ମନରେ ସୁମରି ।
ବହୁ ମୁଖେ ଚୁମ୍ବଦେଇ ବୋଲେ ରାଜପ୍ରିୟା
ଅମୃତ ଯୋଗାଡ଼ ଖାଇ କୁଣ୍ଡାଉଛୁ ହିଆ ।
ଯଦ୍ୟପି ତୁ ବିପ୍ରବର ଅଟୁ ହୋ ଯୁବତେ
ସୁଭୋଜନ ଦ୍ରବ୍ୟ ଦେଖି ପକାଉ କେମନ୍ତେ ।
ମୁହିଁ ରାଜାର ଭାରିଯା ରାଜାର କୁମାରୀ
ମୋ ଅଙ୍ଗ ଲାଗି ପାତକ ଗଲାଣି ତୋହରି ।
କିଛି ବୋଲି ନ ପାରଇ ସେହି ଋଷିବର
ଡରେ ଡାକିଲା ଅନଙ୍ଗସେନ ରକ୍ଷାକର ।
ଶବଦଭେରୀ ଅନଙ୍ଗସେନ ମହାରାୟେ
ପାଦୁକାମନ୍ତ୍ର ମୌଷଧି ବଳେ ମିଳି ଚାହେଁ ।

ମହାରଷି କି ଧରିଛି ଆପଣାର ରାଣୀ
ଦେଖି ଅଧର କମ୍ପାଇ ରାଗେ ନୃପମଣି ।
ମହାରଷି ବୋଇଲେ ଏ କେବଣ ରାକ୍ଷସୀ
ତୋହର ଥାନ୍ତେ କଟାକ୍ଷ କରେ ମୋତେ ଆସି ।
କୋପେଣ ରାଣୀର ବାଳ ଧରି ନୃପମଣି
ନିଜେ କର୍ଣ୍ଣକଟାରୀରେ ପକାଇଲେ ହାଣି ।
ମହାରଷି ଗଲେ ତହୁଁ ମହୋଦଧି ସ୍ନାନେ
ବିଜୟ ଶ୍ରୀ ନରନାଥ ଆପଣା ଭୁବନେ ।
ସଞ୍ଜମନୀ ପୁରେ ତାର ବିଚାର ହୋଇଲା
ଯମ ବୋଇଲେ ଏ ରାଜା ସ୍ତିରୀହତ୍ୟା କଲା ।
ହତ୍ୟାଭାଗୀ ହୋଇଲେ ଏ ଅଗ୍ନିକା ମହର୍ଷି
ଦୁହେଁ ବିଚାର ବୋଇଲେ ସ୍ତିରୀହନ୍ତା ଦୋଷୀ ।
ଯମ ଧର୍ମ ପୁରାଣେ ଏ ବିଚାର ହୋଇଲା
ରାଜାକୁ ଯେ ସ୍ତିରୀହତ୍ୟା ଦୋଷ ହିଁ ଲାଗିଲା ।
ଆପଣ ଭାରିଯା ଯେବେ ହୁଏ ଦୋଚାରୁଣୀ
ସ୍ୱାମୀ ଦଣ୍ଡିବ ନାହିଁ କି ଦୋଷ ପରିମାଣି ।
ଯୁକତେ ରାଜା ଆବର ସେ ତାହାର ପ୍ରିୟା
ଦୋଷ ଦେଖି ଶାସ୍ତି ଦେଲା ଚିତ୍ତୁ ଛାଡ଼ି ଦୟା ।
ରଷି ତ୍ରାସିଲେ ରାକ୍ଷସୀ ପ୍ରାୟ ଯାକୁ ମଣି
ତାଙ୍କ ପରେ ଦୋଷ ଗଲା ହେଲେ ପାପୀ ପ୍ରାଣୀ ।
ରଷିଙ୍କ ଶୃଙ୍ଗାର ରାଣୀ ମାଗିଲା ଏ କର୍ମେ
ବନେ ଉପୁଜା ମୃଗୁଣୀ ରୂପେ ଇହଜନ୍ମେ ।
ଅଗ୍ନିକା ରଷିଙ୍କୁ ଯେଣୁ ଇଛିଲା ସେ ନାରୀ
ମୃଗରୂପେ ରଷିଙ୍କର ହେଉ ମନୋହାରୀ ।
ସେହି ରଷି ଯୋଗୁଁ ନାଶ ଗଲା ଏ ଯୁବତୀ
ଏହାଯୋଗୁଁ ନାଶଯାଉ ସେ ଅଗ୍ନିକାଯତି ।
ରଷି ମୃଗୁଣୀ ଶୃଙ୍ଗାର ରସ ଯେ ନ ସରୁ
ଏହାକୁ ନାରାଚଘାତ ଏ କାଳେ ତୁ କଲୁ ।
ଅଗ୍ନିକା ରଷିର ସ୍ତିରୀହତ୍ୟା ଦୋଷ ଥିଲା
ତୋହାର ନାରାଚ ଘାତେ ସବୁ ଦୋଷ ଗଲା ।
ବ୍ୟାସେ କହିଲେ ତୁ ଶୁଣ ଆହେ ରାୟେ ପଣ୍ଡୁ
ଦେବତାଙ୍କ ସଞ୍ଚିତ ତୁ ଯେଣୁ ଧର୍ମ ଛାଡୁ ।
ପଣ୍ଡୁ ବୋଲେ ସେ ମୋତେ କୋପେ ଶାପ ଦେଲା
ଶୃଙ୍ଗାରେ ନିର୍ଘାତ ଶର ପଡୁ ଯେ ବୋଇଲା ।
ଏସନକ ଶାପ ମୁନି ଦେଲା ଦେବ ମୋତେ
ବ୍ୟାସ ବୋଇଲେ ଦୁର୍ଭାର ଭାର ହେଲା ତୋତେ ।
ଆବର ବୋଇଲେ ହେଲା ଏ ବଡ଼ କଷ୍ଟ ହିଁ
ତପୀ ଲୋକଙ୍କର ଶାପ କେବେ ନ ଟଳଇ ।
ବ୍ୟାସେ ତିଆରନ୍ତି ପଣ୍ଡୁ ରାଜାଙ୍କୁ ବସାଇ
ଦୁର୍ବାସାଙ୍କ ମହାମନ୍ତ୍ର କୁନ୍ତୀ ଅଛି ପାଇ ।
ବଧୂଙ୍କ ପ୍ରତି ତୁ ମନେ ନ ଧରିବୁ ହିଂସା
ସନ୍ତାନ ଜାତ କରନ୍ତୁ ଯେ ଯାର ମନୀଷା ।
ବାବୁ ସ୍ତିରୀଏ ଅଟନ୍ତି ଅତି ବୁଦ୍ଧିମତୀ
ଉପାୟ କରି ସନ୍ତାନ କରନ୍ତି ଉତ୍ପତ୍ତି ।
ଅନେକ ବାଗେ ତିଆରି କରିଣ ପଣ୍ଡୁଙ୍କୁ
ଚଳିଲେ ସେ ମହାମୁନି ହସ୍ତିନା ପୁରକୁ ।
ଯହିଁ ବିଜେ କରିଛନ୍ତି ରାଜା ଧୃତରାଷ୍ଟ୍ରେ
ପରାଶରଙ୍କ ନନ୍ଦନ ମିଳିଲେ ନିକଟେ ।
ସଞ୍ଜୟ ବୋଇଲେ ବାବୁ ଶୁଣ କୁରୁନାଥ
ବ୍ୟାସ ବିଜେ କଲେ ଆସି ତୋହର ଅଗ୍ରତ ।
ଆସ୍ଥାନ ତେଜ୍ୟା କରିଣ ଉଠି ଅନ୍ଧରାଜା
ସତ୍ୟବତୀ ନନ୍ଦନର କଲା ପାଦ ପୂଜା ।
କୃଷ୍ଣାଜିନ ଛାଲ ଏକ ବାଛିକରି ଦେଇ
ଉଭା ହୋଇଣ ସେ ରାଜା ସମସ୍ତ ପୁଚ୍ଛଇ ।
ବ୍ୟାସ ବୋଇଲେ ବାବୁ ତୁ ଶୁଣ ଧୃତରାଷ୍ଟ୍ର
ପଣ୍ଡୁଙ୍କୁ ପଡ଼ିଲା ବନେ ବଡ଼ ହିଁ ସଙ୍କଟ ।
ଅଗ୍ନିକା ମହାରଷିଙ୍କି ନାରାଚେ ମାଇଲା
କୋପେଣ ମହାତ୍ମା ଦୁରାପଦ ଶାପ ଦେଲା ।
ପିତା ମୁଖୁ ଏସନକ ବାକ୍ୟ ରାୟେ ଶୁଣି
ରଥ ଗଜ ଅଶ୍ୱ ସଙ୍ଗେ ଘେନିଣ ପଲାଣି ।
ସୁବର୍ଣ୍ଣ ପଲ୍ୟଙ୍କ ତେଜିକରି ଧୃତରାଷ୍ଟ୍ର
ହାନ୍ଦୋଳା ଚଢ଼ି ବାହାର ପଣ୍ଡୁର ନିକଟ ।
ଦଶ ଲକ୍ଷ ରଥ ଆଉ ପାଞ୍ଚଲକ୍ଷ ହସ୍ତୀ
ସାତଲକ୍ଷ ଯୋଦ୍ଧା ପାଞ୍ଚ କ୍ଷଉଣୀ ପଦାତି ।
ପାଟଛତ୍ର ଲକ୍ଷେ ଆଉ ଆଲମ୍ବ ଯେ ଲକ୍ଷେ
ଚାମର ଉଦଣ୍ଡ ଲକ୍ଷ ଲକ୍ଷ ପଛେ ପଛେ ।
ଭେରୀ ମର୍ଦ୍ଦଳ କାହାଳୀ ଦୁଇ ଦୁଇ ଲକ୍ଷେ
ଶଙ୍ଖ ମର୍ଦ୍ଦଳ ଟମକ ନିଶାଣ ଏ ଲକ୍ଷେ ।
ଏସନକ ଥାଟ ଘେନି ଅମ୍ବିକାର ବଳା
ବିହରନ୍ତି ବନେ ବନେ ତେଜ ଅନର୍ଗଳା ।
ଚଳନ୍ତି ଯୋଦ୍ଧାମାନେ ପବନକୁ ଆଚ୍ଛାଦି
କାଳଅଗ୍ନି ନାମରେ ଭେଟିଲେ ଏକ ନଦୀ ।
ଏ ନଦୀର କୂଳରେ ବିଜୟ ବିଶ୍ୱନାଥ
କାଳଅଗ୍ନି ରୁଦ୍ର ଅଟେ ସେହି ମହାତୀର୍ଥ ।
ଧୃତରାଷ୍ଟ୍ରର ସଞ୍ଜୟ ବିଦୁର ଏ ମୂଳ
ସଙ୍ଗେ ଛନ୍ତି ଗଙ୍ଗାସୁତ ଭୀଷ୍ମ ମହାବଳ ।
ତୀର୍ଥ ସ୍ନାନ କରି ବିଶ୍ୱନାଥେ କଲେ ସ୍ତୁତି
କାଳାଗ୍ନି ମହାରୁଦ୍ର ତୁ ଜୟ ପଶୁପତି ।
ଉତ୍ପତ୍ତି ସ୍ଥିତି ତୋ ଲୟ ତହିଁ ନାହିଁ ଆନ
ଅନ୍ଧକ ବିଦାରକ ତୁ ଜୟ ତ୍ରିଲୋଚନ ।

ବୃଷଭ ବାହନ ସ୍ୱାମୀ ଅବିରତେ ଭୋଳ
ଜୟ ତୁ ପ୍ରସନ୍ନ ବରଦାୟକ ସୁଢ଼ଳ ।
ଡିମ୍ବରୁ ବାଜଇ ସ୍ୱାମୀ ମତୁଆଳେ ଖେଳି
ପ୍ରେତ ପିଶାଚ ବେତାଳ ସଙ୍ଗେ କରୁକେଳି ।
ସିନ୍ଦୂର ପ୍ରାୟେ ରକତ ନେତ୍ର ତୁ କପାଳି
ରକ୍ତ ବସ୍ତ୍ର ପିନ୍ଧୁ ଗଳେ ମନ୍ଦାରର ମାଳି ।
ସୁନ୍ଦର ତାଣ୍ଡବକାରୀ ମହାଦେବ ଯୋଗୀ
ଅବଧୂତ ଜଟାଜୁଟ ପିଙ୍ଗଳ ବୈରାଗୀ ।
ଶୈଳଜାଭ ବଲ୍ଲଭ ତୁ ଭୈରବ ମୂରତି
ଶୂଦ୍ରମୁନି ଯେ ଶାରଳା ଦାସ ଭାବେ ନିତି ।
ସବାମୀ ଯାବତ ଚନ୍ଦ୍ର ଏ ଦିବାକର ଥାଉ
ତୋହର ଲୟ ମୋହର ହୃଦରେ ସମ୍ଭାଉ ।
କହିବି ମହାଭାରତ ରସ ଆଦିପର୍ବ
ପ୍ରଥମ ଖଣ୍ଡ ଅମୃତ ରସମୟ ଭାବ ।

—o—

## ଯୁଧିଷ୍ଠିରଙ୍କ ଜନ୍ମ

ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
ଅନ୍ତର୍ଦ୍ଧାନ ହୋଇଗଲେ ବ୍ୟାସ ମହାଯତି ।
କାଳାଗ୍ନିରୁଦ୍ରେ ପ୍ରଣାମ କରି କୁରୁନାହା
ମଳୟ ବସନ୍ତ ବନେ ଦେଖି ଗିରିଗୁହା ।
ପ୍ରବେଶିଲେ ଶତଶୃଙ୍ଗ ନାମେ ଯେଉଁ ଗିରି
ଚାରିଶତ ଯୋଜନ ଯେ ସୁବର୍ଣ୍ଣରେ ପୂରି ।
ତାହାର ଉପରେ ଅଛି କୂପ ରସମୟ
ଅଷ୍ଟଲୌହ ପକାଇଲେ ହୁଏ ରତ୍ନମୟ ।
ବୃକ୍ଷେ ତହିଁ ଶ୍ୱେତବର୍ଣ୍ଣ ପତ୍ର ଶ୍ୱେତବର୍ଣ୍ଣ
କନକବର୍ଣ୍ଣ ହେ ପୁଷ୍ପ ଉଦେ ଯେହ୍ନେ ଜହ୍ନ ।
ଉତ୍ସର୍ଗ ବେନି ଯୋଜନ ଚାରିଗୁଣ ପୋତା
ତହିଁ ଉପରେ ଯେ ଯାଗ କଲା ଦକ୍ଷ ଧାତା ।
ସେ ପର୍ବତେ ବାଟ ଅଛି ପାତାଳ ପୁରକୁ
ଈଶାନ ଶୃଙ୍ଗରୁ ଉଠିଯିବେ ସେ ସ୍ୱର୍ଗକୁ ।
ଜମ୍ବୁଦ୍ୱୀପର ମଧ୍ୟଟି ସେ ସ୍ଥାନ ଅଟଇ
ପଞ୍ଚତିରିଶ ଧାରା ସେ ପର୍ବତୁ ପିଟଇ ।
ତହୁଁ ଉତପତ୍ତି ହୋଇଅଛି ସ୍ୱର୍ଣ୍ଣନଦୀ
ମେରୁ ଆବର୍ତ୍ତେ ସଙ୍ଗମ କରେ ମହୋଦଧି ।
ଶତଶୃଙ୍ଗ ଅଛଇ ସେ ପର୍ବତ ଉପରେ
ସୁବର୍ଣ୍ଣ ଶୃଙ୍ଗ ବସଇ ଈଶାନ ଦିଗରେ ।
ବୈଦୁର୍ଯ୍ୟ ଶୃଙ୍ଗ ବସଇ ଦକ୍ଷଦିଗ କତି
ହୀରାର ଶୃଙ୍ଗ ବସଇ ପଶ୍ଚିମ ମୂରତି ।
ମାଣିକ୍ୟ ଶୃଙ୍ଗ ବସଇ ଉତ୍ତର କୋଣ ହିଁ
ମଣିର ଶୃଙ୍ଗ ବାୟବ୍ୟ କୋଣରେ ବସଇ ।
ନୀଳର ଶୃଙ୍ଗ ବସଇ ନଇରତ କୋଣେ
ବିଶ୍ରାମ କରନ୍ତି ଅଗ୍ନିକୋଣେ ନାରାୟଣେ ।
ବାୟବ୍ୟ କୋଣେ ବସନ୍ତି ଆକାଶ ଦୈବତ
ଈଶାନ କୋଣେ ବସନ୍ତି ପ୍ରଭୁ ବିଶ୍ୱନାଥ ।
ସୁସଞ୍ଚ ପର୍ବତ ବୋଲି ରାମ ଦୟା କଲେ
ଅଙ୍ଗଦକୁ କହି ତାହା ଲୁଚାଇ ଥୋଇଲେ ।
ରାମକାର୍ଯ୍ୟେ ହନୁ ଆଣିଥିଲା ତା ଉପାଡ଼ି
ସ୍ୱାମୀ ଆଜ୍ଞାରେ ଅଙ୍ଗଦ ଦେଲାକ ଫୋପାଡ଼ି ।
ଜମ୍ବୁଦ୍ୱୀପର ସେ ମଧ୍ୟ ସ୍ଥାନରେ ପଡ଼ିଲା
ସ୍ୱାମୀ ଆଜ୍ଞାରେ ଅଙ୍ଗଦ ଫେଡ଼ିଣ ଅଇଲା ।
ମେରୁର ଅଗ୍ରେ ବସଇ ଶତଶୃଙ୍ଗ ଗିରି
ଅଳକାପୁରୁ ଅଧିକ ଚାରୁ ଗୁଣ ଚାରି ।
ସେହି ପର୍ବତ ଉପରେ ଅଛି ପଣ୍ଡୁରାୟ
ଉଠିଣ ସେ ପର୍ବତକୁ ନିତି କରେ ଲୟ ।
ସେବା କଲେ ସୁପ୍ରସନ୍ନେ ହୁଅଇ ପର୍ବତ
ଜନ୍ମିଲେ ପୁତ୍ର ସୁନ୍ଦର ହୁଏ ବଳବନ୍ତ ।
ଧୃତରାଷ୍ଟ୍ର ବିଜେ କଲେ ଯାଇ ସେ ପର୍ବତେ
ପଣ୍ଡ ଦେଖାଇଲେ କୁରୁରାଜାଙ୍କ ଅଗ୍ରତେ ।
କରେଣ ଧାମଣାକାଠ କଣ୍ଠାବାଂଶୀ ଗୁଣ
ମୟରୁ ପୁଚ୍ଛେ ଆବୃତ ବେନି କନ୍ଦେ ତୂଣ ।
କଣ୍ଠେ ଗୁଞ୍ଜାମାଳି ରକ୍ତବର୍ଣ୍ଣ ବେନି ଆଖି
କଣ୍ଠେ କୁଠାର ମେଖଳା ଖଞ୍ଜି ଝିଙ୍କପକ୍ଷୀ ।
ବେଣ୍ଟକାର ସ୍ୱରୂପରେ ବିଜେ ପଣ୍ଡୁରାୟ
ଧୃତରାଷ୍ଟ୍ର ଅଗ୍ରତରେ କହିଲେ ସଞ୍ଜୟ ।
ଧୃତରାଷ୍ଟ୍ର ଦେଖି ପଣ୍ଡୁ ପ୍ରମାଣ କରନ୍ତି
ଅନେକ ମଧୁର ବାରୀ ସେ ଜ୍ୟେଷ୍ଠ କହନ୍ତି ।
ବାବୁ ପରମ କଲ୍ୟାଣ ହେଉ ଚିରାୟୁଷ
ଧନ ସନ୍ତାନ ଆବର ପ୍ରାପ୍ତ ହେଉ ଯଶ ।
ଶୁଣିଲି ବନେ ବିପଦ ପଡ଼ିଲାକ ତୋତେ
ଅନେକ ବ୍ୟାକୁଳ ବାବୁ ହୋଇଲୁ ସମସ୍ତେ ।
କରପତ୍ର ଯୋଡ଼ି କହେ ପଣ୍ଡୁ ମହାରଥା
ସଂକ୍ଷେପି କହିଲେ ସର୍ବ ପୂର୍ବର ବାରତା ।
ଭୋଦେବ ଅଗ୍ନିକାରଷି ଶାପ ଦେଲେ ମୋତେ
ଶୃଙ୍ଗାର କାଳେ ଅକାଳ କାଣ୍ଡ ପଡୁ ତୋତେ ।
ଧର୍ମ ଆଶ୍ରୟ ଲୋକକୁ ପଡ଼ଇ ସଙ୍କଟ
ବନସ୍ତକୁ ଆସି ବାବୁ ପାଉ ଏତେ କଷ୍ଟ ।
ରାଜ୍ୟେ ଯିବା ଚାଲ ବାବୁ ନ ଥିବା ଏ ବନେ
ଅନେକ ଆପଦେ ବାବୁ ଥାଏଟି ଅରଣ୍ୟେ ।
ବୋଲଇ ପଣ୍ଡୁ ନୃପତି ଶୁଣ ମହାଜ୍ଞାତା
ସ୍ୱାମୀ ତୁମ୍ଭେ କିସ ଜାଣ ଏ ପର୍ବତ କଥା ।

ସ୍ୱାମୀ ତୁମ୍ଭେ ବିଜେ କରିଥାଅ ଯେ ହସ୍ତିନା
ପଞ୍ଚକଟକରେ ତୁମ୍ଭେ ଅଟ ବଜ୍ରସେହ୍ନା ।
ଏମନ୍ତ ସମୟେ କହି ପଣ୍ଡୁ ନରପତି
ଅପ୍ରମିତ ବନ ଫଳ ଆଣି ତାଙ୍କୁ ଦ୍ୟନ୍ତି ।
ସୈନ୍ୟ ଆଦି ଯେତେ ପ୍ରିୟ ରାଜାଙ୍କର ଥିଲେ
ଆମ୍ବ ପଣସ କଦଳୀ ଦାରାକ୍ଷ ଭୁଞ୍ଜିଲେ ।
ଅନେକ ଯୋଗାଡ଼ ଦେଲେ ପଣ୍ଡୁ ନରପତି
ଭୁଞ୍ଜି ସାତକ୍ଷୌଣୀ ବଳ ଲଭିଲେକ ଶାନ୍ତି ।
ମଣୋହି ସାରିଣ ସୁଖେ କରି ଆଚମନ
କର୍ପୂର ତାମ୍ବୁଳ ବସି ଭୁଞ୍ଜେ କୁରୁରାଣ ।
ଭୀଷ୍ମ ଭୁରିଶ୍ରବା ଆଉ ସଞ୍ଜୟ ବିଦୂର
ସମଦଣ୍ଡ ଘେନି ରାୟ ଆସେ ନିଜ ପୁର ।
ଥୋକାଏକ ଦୂର ପଣ୍ଡୁ ପାଛୋଟି ଅଇଲେ
ରତିକାମ ପର୍ବତର ପାଖୁ ବାହୁଡ଼ିଲେ ।
ଚଳନ୍ତି ସେ ଧୃତରାଷ୍ଟ୍ର ଥାଟ ସୈନ୍ୟ ଘେନି
ହସ୍ତିନାପୁରରେ ଯାଇଁ ମିଳିଲେ ସଇନି ।
ପଣ୍ଡୁ ହିଁ ରହିଲେ ଶତଶୃଙ୍ଗ ପରବତେ
ପାକସ୍ୱରଶ ହୋଇଲେ କୁନ୍ତୀଦେବୀ ରାତ୍ରେ ।
ଶୁଦ୍ଧସ୍ନାନ କଲେ ଦେବୀ ପଞ୍ଚମ ଦିବସେ
ରାତ୍ରେ ବିଜେ କଲେ ଆସି ପଣ୍ଡୁରାଜା ପାଶେ ।
ପଣ୍ଡୁରାଜା ବୋଇଲେରେ ଶୁଣ ପ୍ରାଣସଖୀ
ମୋର କର ଧରି ତୁମ୍ଭେ ହେଲ ବଡ଼ ଦୁଃଖୀ ।
କୁନ୍ତୀ ବୋଇଲେକ ସ୍ୱାମୀ ବିକଳ ନୋହିବା
ମୁହିଁ ରଜୋବତୀ ମୋତେ ସ୍ପର୍ଶ ନ କରିବା ।
ପରମ ସାଧବୀ ସେହି ସୁଜ୍ଞାନୀ ଭାରିଯା
ତାହାର ବଚନେ ସ୍ପର୍ଶକଲେ ପଣ୍ଡୁରାଜା ।
ଦୁହିଁଙ୍କର ଯେତେବେଳେ ଏକ ଯୋଗ ହେଲା
ପ୍ରତାପୀ କାମ ଅନେକ କଷ୍ଟ ତାଙ୍କୁ ଦେଲା ।
ପଣ୍ଡୁରାଜା ଇଚ୍ଛା ଯହୁଁ କଲେକ ଶୃଙ୍ଗାର
ଧାଡିକାରେ କୁନ୍ତୀ ତହୁଁ ହୋଇଲେ ବାହାର ।
କୁନ୍ତୀ ସ୍ତୁତି କରନ୍ତି ଯେ ପିତୃ ଦେବତାଙ୍କୁ
ସ୍ୱାମୀ ଶାପ ପାଇଛ ନ ଇଚ୍ଛ ଶୃଙ୍ଗାରକୁ ।
ତୁମ୍ଭର ଚରଣେ କରୁଅଛି ମୁହିଁ ସେବା
ଏଥକୁ ମହାତ୍ମା ମୋତେ କୋପ ନ କରିବା ।
ବଞ୍ଚି ଶୃଙ୍ଗାରରୁ ରାଜା ଛାଡ଼ି ରତି ଆଶା
ସଂକଳ୍ପ କରି ଛାଡ଼ିଲେ ନ କଲେ ମନୀଷା ।
ରତି ଇଚ୍ଛା ନ କଲେ ସେ ମହତୀ ସାଧବୀ
ସ୍ୱାମୀ ନିମନ୍ତେ ଶୃଙ୍ଗାର ମନରେ ନ ଭାବି ।
କୁନ୍ତୀ ତିଆରିଲେ ପୁଣି ମାଦ୍ରୀଙ୍କି ହକାରି
ଏ ଯୁବତୀ ରୂପେ କେତେକାଳ ଥିବା ଧରି ।

ମାଦ୍ରୀ ବୋଇଲେ ତୁମ୍ଭେ ନଭାଳି କର ଲଜ୍ଜା
ସ୍ୱାମୀର ଅର୍ଜିଲା ଫଳ ଭୁଞ୍ଜଇ ଭାରିଯା ।
କାହାର କି ଦୋଷ କଲୁ ପୂର୍ବରୁ ଏ ପାପ
ଅକାରଣେ ନାଶଗଲା ଆମ୍ଭର ଏ ରୂପ ।
ବୋଲନ୍ତି ଅଗସ୍ତି ଶୁଣ ଆହେ ଦଣ୍ଡଧାରୀ
କର୍ମ ଆଦରି ରହିଲେ ସେହି ବେନି ନାରୀ ।
ଏଥୁ ଅନନ୍ତରେ ଶୁଣ ଆହେ ନୃପରାୟ
ଶ୍ରୀ ମହାଭାରତ ଶୁଣି ପାପ କର କ୍ଷୟ ।
ମନ ସଂଯମୀ ରହିଲେ ପଣ୍ଡୁର ରମଣୀ
ସ୍ୱାମୀ ଶଯ୍ୟାଗତ ତହିଁ ନାହିଁ ବର୍ଷ ତିନି ।
ଶତଶୃଙ୍ଗ ପର୍ବତରେ ପଣ୍ଡୁ ରହିଥାନ୍ତି
କୁନ୍ତି ମାଦ୍ରୀ ଦୁହେଁ ଛନ୍ତି ତାହାଙ୍କର କତି ।
ବସନ୍ତ ଋତୁ ବୈଶାଖ ପ୍ରଥମ ଯେ ପକ୍ଷେ
ଆମ୍ଭେ ଆସିଣ ଭେଟିଲୁ ପଣ୍ଡୁଙ୍କୁ ପ୍ରତ୍ୟକ୍ଷେ ।
କୃଷ୍ଣପକ୍ଷ ତୃତୀୟା ଯେ ତିଥି ଅର୍କ ବାର
ଅନୁରାଧା ନକ୍ଷତ୍ର ଭୋଗ ସେ ଦିନର ।
ବାଣିଜ୍ୟ ନାମେ କରଣ ବରିୟାନ ଯୋଗ
ମେଷ ସଂକ୍ରାନ୍ତିର ବେନି ଦିବସ ସେ ଭୋଗ ।
ସେ ଦିନରେ ବିଜେ କଲୁ ରାଜା ସମୀପରେ
ଚାଳିଶ ସହସ୍ର ଶିଷ୍ୟ ଥିଲେ ଯେ ସଙ୍ଗରେ ।
ଆମ୍ଭଙ୍କୁ ଦେଖି ଆନନ୍ଦ ହେଲେ ପଣ୍ଡୁରାଜା
ପାଦ୍ୟ ଅର୍ଘ୍ୟ ଦେଇ କଲେ ବିନୟରେ ପୂଜା ।
ବସନ କୁଣ୍ଡଳ ଦୁଇଗୋଟି ରତ୍ନମାଳା
ଆନନ୍ଦରେ ଦେଲା ଆଣି ଅମ୍ବାଳିକା ବଳା ।
ଆମ୍ଭର ପାଦ ଉଦକ ନିଜ କରେ ଆଣି
ଆପଣା ଶିରେ ସିଞ୍ଚିଲେ ପଣ୍ଡୁ ନୃପମଣି ।
କୃଷ୍ଣାଜିନ ଛାଲରୁ ଯେ ଗୋଟିଏକ ପୁଣି
ଆସନ କରି ବସିଲୁଁ ସର୍ବଶିଷ୍ୟ ଘେନି ।
କୁଶଳ ବାରତା ପଚାରିଲୁ ଦଣ୍ଡଧାରୀ
କ୍ଷଣକେ ବର୍ତ୍ତୁଅଛୁ ନା ପୃଥ୍ୱୀ ଅଧିକାରୀ ।
ସୋଦରପଣ ତୋହର ଅଛୁ ଆମ୍ଭେ ଜାଣି
ଧୃତରାଷ୍ଟ୍ର ଅଯୋଗ୍ୟ ତୋ ଜ୍ୟେଷ୍ଠଭ୍ରାତ ପୁଣି ।
ତାହାକୁ ତୁ ବସାଇଲୁ ରାଜସିଂହାସନେ
ବନଗାମୀ ହୋଇଲୁ ତୁ ସୋଦର କାରଣେ ।
ସମସ୍ତ ଯିବଇଁ କଥା ମାତ୍ର ସିନା ଥିବ
ଦୟାଳୁ ଘଟକୁ ଧର୍ମ କେମନ୍ତେ ଛାଡ଼ିବ ।
ପରମ ପଣ୍ଡିତ ବାବୁ କ୍ଷମାଗୁଣ ବହୁ
ଆନକୁ ରାଜ୍ୟ ଦେଇଣ ବନେ ଦୁଃଖ ସହୁ ।
ଅରି ଦର୍ପମାନ ନିଶୋଧନ କରୁ ରାଜା
ସଂସାର ମଙ୍ଗଳ ପାଇଁ ପାଳୁ ଜନପ୍ରଜା ।

ସାଧୁ ଜୀବନ ଗୋଟି ଯେ ଅଟଇ ତୋହରି
ରାଗ ମୋହ ଅହଙ୍କାର ଅଛୁ ଦୂର କରି ।
ସାବତେ ସମ୍ପଦ ଦେଲୁ ନୁହଇ ଯେ କ୍ଷମ
ସତ୍ୟକୁ ରଖି ପାଳିଲୁ ତୁ ସମସ୍ତ ଧର୍ମ ।
ଏହା ଶୁଣି ଦଣ୍ଡବତ କରି ନରପତି
ବୋଲେ ସବୁ ଶୁଭ ତବ ପ୍ରସାଦେ ଅଗସ୍ତି ।
କେବଳ ମୁନି ହେ ଏହା କଲା ମନ୍ଦକୃତ୍ୟ
ଋଷି ମୃଗୀର ସଙ୍ଗମ ଅଛି କି ଏମନ୍ତ ।
ଆମ୍ଭେ ଯେ ବୋଇଲୁ ଆହେ ତପିଲୋକମାନେ
ବଳବପୁ ବହିଣ ସେ ଥାନ୍ତି ଘୋର ବନେ ।
କାମଦେବ ବୋଲି କରି ଯେବଣ ପୂରୁଷ
ବତିଶକଳା ଘେନି ସବୁରି ଅଙ୍ଗେ ବାସ ।
ତ୍ରିଲୋକ୍ୟ ଜିଣିବାକୁ କେ ନାହିଁ ସେ କାମକୁ
ସେ ସିନା ନାଶ କରଇ ସମସ୍ତ ତପୀଙ୍କୁ ।
ଯହିଁ ଧର୍ମ ତହିଁ ତୋତେ ଦୁଇଗୁଣେ ଶର
ଦୁର୍ଲଭ ମହିମା ଜାଣ ସେ କାମଦେବର ।
ସେହି କାମ ଯେତେବେଳେ କରେ ଉନମତ୍ତ
କେ କାହାର ଗଉରବ କେ କାହା ମାନିତ ।
ମୃଗୁଣୀ କି ତପ କଲା ପବିତ୍ର ହୋଇଲା
ତାହାକୁ ରମଣ କରି ତପୀ ନାଶଗଲା ।
ପଣ୍ଡୁ ବୋଇଲେ ଅଗ୍ନିକା ନାମେ ମହାଋଷି
ମୃଗୀ ଏକ ଘେନିଣ ସେ ରମେ ବନେ ପଶି ।
ଶବଦ ଶୁଣି ନାରାଚ କଲଇଁ ମୁଁ ଦୃଷ୍ଟି
ଋଷି ମୃଗୁଣୀ ଦୁହେଁ ସେ ନାରାଚରେ ଫୁଟି ।
ରାଗେଣ ସେ ମୁନି ମୋତେ ଦେଲେ ଶାପଗୁରୁ
ଶୃଙ୍ଗାର କାଳେ ଅକାଳ କାଣ୍ଡ ପଡୁ ଦୂରୁ ।
ଜନ୍ମ ମୋ ନିଷ୍ଫଳ ହେଲା ନାଶଗଲା ବଂଶ
କହିବା ଅଗସ୍ତି ଏଥେ ପ୍ରତିକାର କିସ ।
ଅଗସ୍ତି ବୋଇଲେ ତୁହି ହୋଇ ମତିଭୋଳ
ନାଶକଲୁ ସେ ଋଷିର ମୃଗୀସଙ୍ଗ ମେଳ ।
ଦୁର୍ଭାର ଶାପ ପାଇଲୁ ଏବେ ମହାରାଜା
ନାଶ ଯିବୁଟି ଶୃଙ୍ଗାର କର ବାବୁ ତେଜ୍ୟା ।
କୁନ୍ତୀ ମାଦ୍ରୀ ଏ ଦୁହିଁଙ୍କୁ ପାଶକୁ ହକାରି
ତୁହି ଆପେ ତାଙ୍କୁ ଆଜ୍ଞା ଦେବୁ ନା ତିଆରି ।
ଯେବଣ ମନ୍ତ୍ରରେ ବାବୁ ହୁଅଇ ସନ୍ତତି
ତହିଁ କି ଚିନ୍ତା କରନ୍ତୁ ସେ ବେନି ଯୁବତୀ ।
ଶାସ୍ତ୍ର ପୋଥି ଫିଟାଇଣ ଯା ଆମ୍ଭେ ବଖାଣି
ସନ୍ତାନକାରିଣୀ ତୁ ଗୋ ଭୋଜର ଦୁଲ୍ଲଣୀ ।
ଯତନେ ସେନେହ କରି ପର ରତେ ଇଚ୍ଛା
ସନ୍ତାନ ପାଇଁ ତୋହର ନାହିଁ କି ଗୋ ବାଞ୍ଛା ।

ସ୍ୱାମୀକୁ ସଙ୍କୋଚ ଗୋ ନ କର ମାହେଶ୍ୱରୀ
ପୁତ୍ର ଉପୁଜାଇ ମାଗୋ ଲଭ ସ୍ୱର୍ଗପୁରୀ ।
ଆମ୍ଭେ ଜାଣିଅଛୁ ତୁ ଗୋ ଶୁଣ ମହାସତୀ
ଦୁର୍ବାସାଙ୍କ ମହାମନ୍ତ୍ର ଅଛି ତୋର କତି ।
ମାନବ ଇଚ୍ଛିଲେ ସିନା ହୋଇବୁ ଦୋଚାରୀ
ଦେବତାଙ୍କୁ ଇଚ୍ଛିଲେ ଗୋ ହେବୁ ସତୀନାରୀ ।
ଦେବକଳା ଘେନି ପୁତ୍ର କର ତୁ ଗୋ ଜନ୍ମ
ପାପ ଛଡ଼ାଅ ଉଦିତ ହେଉ ତୋର ଧର୍ମ ।
କୁନ୍ତୀ ବୋଇଲେ ପରମଗୁରୁ ଅଟ ତୁମ୍ଭେ
ତୁମ୍ଭ ଆଜ୍ଞା ଅବଜ୍ଞା କି କରିପାରୁ ଆମ୍ଭେ ।
ଶୁଣି ଆମ୍ଭେ ବୋଇଲୁ ଗୋ ପୂର୍ବୁଅଛି ଏହା
ତୁମ୍ଭେ କିଛି ହିଁ ଭ୍ରାନ୍ତି ଗୋ ନ କର ସୁଦେହା ।
ସ୍ତିରୀ ଧର୍ମରେ ଏମନ୍ତ ଅଛଇ ଯୁକତି
ସ୍ୱାମୀର ବୀର୍ଯ୍ୟେ ଯେବେ ନ ଉପୁଜେ ସନ୍ତତି ।
ପର ପୁରୁଷ ବୀର୍ଯ୍ୟରେ ରଖନ୍ତି ଯେ ବଂଶ
ସ୍ୱାମୀ ଅଭିଶାପ ପ୍ରାପ୍ତ ତୁମ୍ଭର କି ଦୋଷ ।
ତୁମ୍ଭର ଉପର ବଂଶେ ସନ୍ତାନ ବିହୂନେ
ଦେଖିଲଟି କି କେମନ୍ତ କଲେ ଶାଶୁମାନେ ।
ବ୍ୟାସ ତ ଅଟନ୍ତି ଜ୍ୟେଷ୍ଠ ଶ୍ୱଶୁର ତାଙ୍କର
ତାହାଙ୍କୁ ଘେନି ଇଚ୍ଛିଲେ ସେ ପୁଣି ଶୃଙ୍ଗାର ।
ଉପୁଜିଲେ ଅନ୍ଧ ପଣ୍ଡୁ ବିଦୂର ଏ ତିନି
ରଜରେ ଶୁଦ୍ଧା ହୁଅନ୍ତି ସ୍ତିରୀକି ଏ ଘେନି ।
ଏବେ ଯାଉଅଛୁ ଆମ୍ଭେ ଆସିବୁ ସମୟେ
ଆମ୍ଭ ଗୋଚର ଦେବୁଟି ତନୟ ଗୋ ମାୟେ ।
ଏକାନ୍ତେ ବୋଇଲୁ ତୁ ଗୋ ଆମ୍ଭ ବୁଦ୍ଧି କର
ଅବିଭା କାଳେ ଇଚ୍ଛିଲୁଟି କି ଦିବାକର ।
କର୍ଣ୍ଣ ଜାତ ହୋଇଲାଟି ଆଦିତ୍ୟର ବୀର୍ଯ୍ୟେ
ରାଧା ପାଳିଲେ ତାହାକୁ କରିଣ ଆମୃଜେ ।
କୁନ୍ତୀ ବୋଇଲେ ମୁନି ହେ ତୁମ୍ଭେ କାହିଁଥିଲ
ମୋର ଅପ୍ରକାଶ୍ୟ କଥା କେମନ୍ତେ ଜାଣିଲ ।
ବୋଇଲେ ଆମ୍ଭେ ତ ଅଟୁ ଭବିଷ୍ୟତ ଜ୍ଞାତା
ପୁରାଣ ଦେଖି ଜାଣିଲୁ ଗତାଗତ କଥା ।
ଏବେ ତୋତେ କହୁଅଛୁ କଥା ଯେ ଆଗତ
ଧର୍ମଠାରୁ ଏକପୁତ୍ର ହୋଇବ ପ୍ରାପତ ।
ପବନହୁଁ ପୁତ୍ରେକ ଯେ ହୋଇବ ନିୟତ
ଇନ୍ଦ୍ର ଦେବତାହୁଁ ପୁତ୍ର ହେବ ଏକ ଜାତ ।
କର୍ଣ୍ଣକୁ ଘେନିଣ ତୋର ହେବ ପୁତ୍ର ଚାରି
ଯୁଧିଷ୍ଠିର ଅର୍ଜ୍ଜୁନ ଯେ ଭୀମ ନାମ ଧାରୀ ।
ଯୁଧିଷ୍ଠିର ହୋଇବଟି ପ୍ରତ୍ୟକ୍ଷରେ ବ୍ରହ୍ମା
ଭୀମସେନ ହୋଇବ ହେ ଈଶ୍ୱର ମହାତ୍ମା ।

ଅର୍ଜ୍ଜୁନ ଯେ ପ୍ରତ୍ୟକ୍ଷରେ ହେବ ବିଶ୍ୱନାଥ
ଏମନ୍ତେ ଏ ତିନି ଦେବଅଂଶୀ ତୋର ପୁତ୍ର ।
ମାଦ୍ରୀକୁ ଦୟା କରିବୁ ଭୋଜର କୁମାରୀ
ତାହାକୁ ହିଁ ଦେବୁ ତୁ ଗୋ ମନ୍ତ୍ର ଜପାମାଳି ।
ତାଠାରୁ ଜାତ ହୋଇବେ ପୁତ୍ର ଦୁଇଗୋଟି
ଧରା ଭାର ଉଦ୍ଧାରିବେ ଭ୍ରମି ନବ ସୃଷ୍ଟି ।
ମାଗୋ ଏ କଥା ଅନ୍ତରେ ନୋହିବଟି ଭିନ୍ନ
ଆମ୍ଭର ଶପଥ ଗୋ ନ ଧର ମନେ ଆନ ।
କୁନ୍ତି ମାଦ୍ରୀଙ୍କୁ ଆଶ୍ୱସ୍ତ କଲେକ ଅଗସ୍ତି
କୁଶଶଯ୍ୟା ଗୋଟିଏକ ଦେଲେ ମହାଯତି ।
ଏ ଶଯ୍ୟାରେ ଶୋଇଣ ଦୁର୍ବାସା ମହାମନ୍ତ୍ରେ
ଯାକୁ ସଙ୍କେତ କରିବ ଭେଟିବୁ ଯୁକତେ ।
ମୋହର ଅଞ୍ଜନ ବିଦ୍ୟା ଦେଲା ମଦନାକୁ
ଏହା ଘେନି ମୋହ ଗୋ ଅଶ୍ୱିନୀ କୁମାରଙ୍କୁ ।
ସୁନ୍ଦର ସୁକୁମାର ସଂଜ୍ଞାର ପୁତ୍ର ସେହି
କୁମାର ମୁଖେ ତାକୁ ସ୍ୱର୍ଗେ ପାଟ ଅଛଇ ।
ସେ ବେନି କୁମାର ତୋ ଅଙ୍ଗ ଭୋଗ କରିବେ
ପୁତ୍ର ବେନି ଜନ୍ମିବେ ନକୁଳ ସହଦେବେ ।
ସହଦେବ ବୋଲି ହେବେ ଯେଉଁ ପୁତ୍ର ଗୋଟି
ଭୂତ ଭବିଷ୍ୟତ ସେ ଦେଖିବ ନବ ସୃଷ୍ଟି ।
ଅନେକ ପୁଣ୍ୟ ଧର୍ମ ସେ କରିବେ ଦ୍ୱାପରେ
ରୁହାଇବେ ନିରନ୍ତର ସ୍ୱକୃତ ମଞ୍ଚରେ ।
ମାଦ୍ରୀକି ବୋଇଲୁ ଭକ୍ତିକର କୁନ୍ତୀଠାରେ
କୁନ୍ତୀ ଦୟା କଲେ ତୋର ପୁତ୍ର ହୋଇପାରେ ।
ଆମ୍ଭର ବଚନେ ସେହି ଲଭିଲେକ ଶାନ୍ତି
ଛାଡ଼ିଲେ ଦ୍ୱେଷ ମନରୁ ହୋଇଲେ ନିର୍ଭ୍ରାନ୍ତି ।
ପଣ୍ଡୁ କୁନ୍ତୀ ମାଦ୍ରୀ ଆମ୍ଭ ଚରଣେ ପ୍ରଣମି
ସେଠାରୁ ଅନ୍ତର ହୋଇଗଲୁ ତତକ୍ଷଣି ।
ପଣ୍ଡୁ କହିଲେ ଶୁଣିଲ ଅଛି ଯା ପୁରାଣେ
ଦ୍ୱିତୀୟ ବ୍ରହ୍ମ କହିଲେ ସନ୍ତାନ କାରଣେ ।
କୁନ୍ତୀଦେବୀ ବୋଇଲେ ଯା କହିଲେ ଅଗସ୍ତି
ତାହାଙ୍କ ବଚନେ ଯେବେ ହୁଏ ଫଳଶ୍ରୁତି ।
ପଣ୍ଡୁ ବୋଇଲେ ଆବର ବିଳମ୍ବ ନ କର
ଦେଖିବି ନନ୍ଦନ ପ୍ରତେ ହେଉ ନାହିଁ ମୋର ।
ଭଲ ମନ୍ଦ ବୁଝି ବା ନ ବୋଇଲେକ କୁନ୍ତୀ
ଇଚ୍ଛାଏ ସନ୍ତାନ ଯେବେ କରିବା ଉତ୍ପତ୍ତି ।
ବିଚାରି ରହିଲେ ଶତଶୃଙ୍ଗ ପରବତେ
ପଣ୍ଡୁ ଅନ୍ଧାରି ବିଜୟ କଲେ ସେ ବନସ୍ତେ ।
ପର୍ବତରେ ଭାରିଯାକୁ ଛାଡ଼ିଣ ସେ ରାୟ
ବିଚାରେ ଆଜି କରନ୍ତୁ ତାଙ୍କର ଉପାୟ ।

ଏମନ୍ତ ଭାଳି ଭ୍ରମଇ ପଣ୍ଡୁ ଘୋର ବନେ
କରଇ ସେ କ୍ରୀଡ଼ାରସ ଗହନ କାନନେ ।
ବୈଶାଖ ଶୁକଳ ପ୍ରତିପଦା ଶୁକ୍ରବାରେ
ଦ୍ୱିଜା ମେଷରାଶି ଭୋଗ କରେ ସେ ଦିନରେ ।
ବବ ନାମେ କରଣ ସୌଭାଗ୍ୟ ନାମଯୋଗ
ପନ୍ଦର ଦିନ ଯେ ମେଷ ସଂକ୍ରାନ୍ତିକି ଭୋଗ ।
ସମ୍ପୂର୍ଣ୍ଣ ହୋଇଅଛଇ ସାତଘଡ଼ି ରାତି
ମାଦ୍ରୀଙ୍କି ପାଖେ ବସାଇ ଭୋଜର ଦୁହିତୀ ।
ଅଗସ୍ତିଙ୍କ ମନ୍ତ୍ରଣାରେ କୁଶଶଯ୍ୟା କଲେ
ଝୀନବସ୍ତ୍ର ଗୋଟିଏ ତା ଉପରେ ପାରିଲେ ।
ପୁଷ୍ପ ପାଖୁଡ଼ା ଗୁଡ଼ାଏ ତାପରେ ବିଛାଇ
ଶଉଚ ହୋଇ ବସିଲେ ବେଶଭୂଷା ହୋଇ ।
ଦୁର୍ବାସାଙ୍କ ମନ୍ତ୍ର ମାଳି ଘେନିଲେକ ହସ୍ତେ
ଧର୍ମ ଦେବତାଙ୍କୁ ସୁମରିଲେ ହୃଦଗତେ ।
ନିଜ ପତିର ତୁଲେ ମୋ ନୋହିଲାକ ରତି
ଏହା ଯେ ଅର୍ଜିଲୁ ଆମ୍ଭେ ଦୁର୍ଜ୍ଜନ ଯୁବତୀ ।
ଏ କଷଣୁ ସ୍ୱାମୀ ଧର୍ମଦେବ କର ପାର
ଧର୍ମ ଧର୍ମ ସୁମରଇ କୁନ୍ତୀ ନିରନ୍ତର ।
ଧର୍ମ ପୁରୁଷ ଆସନ୍ତେ କମ୍ପିଲା ଆସନ
ଶୁକ୍ଳାମ୍ବର ପୁରୁଷ ଯେ ପ୍ରବେଶ ତତ୍କ୍ଷଣ ।
ଶଯ୍ୟା ସମୀପେ ବିଜୟ କଲେ ନିରଞ୍ଜନ
ଦେଖିଣ ବୋଇଲେ କୁନ୍ତୀ ବିନୟ ବଚନ ।
ସେହି ଧର୍ମ ମହାତ୍ମା ଯେ ଦୁର୍ବାସା ଉପାୟେ
କୁନ୍ତୀଙ୍କୁ ଦୃଶ୍ୟ ହୋଇଲେ ମାନବ ପରାୟ ।
ଅନେକ ପୁଚ୍ଛା କରନ୍ତି ତାଙ୍କୁ ଦେଖି କୁନ୍ତୀ
ଦେଖି ଧର୍ମ ଦେବତାର ଆନନ୍ଦ ଯେ ମତି ।
କୁନ୍ତୀଙ୍କି ଦେଖି ତାଙ୍କର ବଢ଼ିଲା ଆସକ୍ତି
ଶୂନ୍ୟ ପୁରୁଷର ତୁଲେ କଲେକ ପୀରତି ।
ଶୃଙ୍ଗାରରେ ପରିତୋଷ ପାଇ ନିରଞ୍ଜନ
କୁନ୍ତୀ ସଙ୍ଗେ ରଜନୀ ସେ କରିଲେ ଯାପନ ।
ଅମୃତ ଯୋଗେ ଅଢ଼ାଇ ପ୍ରହର ଯେ ରାତି
ସଇନ୍ଦୁ ପୁତ୍ରେକ ତହିଁ ହୋଇଲେ ଉତ୍ପତ୍ତି ।
ଶୁକ୍ଳ ଅମ୍ବର ସ୍ୱରୂପ ରବି ତେଜ ଜିଣି
ନିଷ୍କଳଙ୍କ ସୁନ୍ଦର କି ଜାଣି ନିଶାମଣି ।
ଆକାଶ ଭୁବନେ ତାର ବିରାଜିଲା ଜ୍ୟୋତି
ପୁତ୍ରଙ୍କୁ କୋଳେ ଧଇଲେ ବେଗେ ବେଦପତି ।
ଅପୂର୍ବ ସୁନ୍ଦର ଦିବ୍ୟ ଅକଳଙ୍କ କାୟ
ସୁକୁମାର ଅଙ୍ଗ ଶୁଦ୍ଧ ସ୍ଫଟିକ ପରାୟ ।
ଶିଖଣ୍ଡୀ ଭାଳେ ଅତୁଲ୍ୟ ରେଖା ଦିଶେ ଫୁଟି
ତିଳ କୁସୁମ ନାସିକା ଜନ୍ମ ପ୍ରାୟ ଦୃଷ୍ଟି ।

ଲମ୍ବିତ ଶ୍ରବଣ ବେନି ପକ୍ୱବିମ୍ବ ଓଷ୍ଠ
ସୁନ୍ଦର ଗଣ୍ଡ ମଣ୍ଡଳ ଶୁକ ପ୍ରାୟ କଣ୍ଠ ।
ସୁଲକ୍ଷଣ ବେନି ନେତ୍ର ଭ୍ରୂଲତା ଆବର
ସୁଘଟଣ ବକ୍ଷସ୍ଥଳ ଗୋଟି ଯେ ବିସ୍ତାର ।
ବୃଷ ତୁଲ୍ୟ କନ୍ଧ ଗଜରିପୁ ତୁଲ୍ୟ ଠାଣି
ବାହୁ ଦୁଇଗୋଟି ପଦ୍ମ ମୃଣାଳ କି ଜାଣି ।
ରକତ ପଦ୍ମକୁ ଜିଣି ବେନି କରତଳ
ଅସ୍ଫୁଟ ଚମ୍ପକ ଜିଣି ଶୋଭିତ ଅଙ୍ଗୁଳ ।
ବିକଶିତ ଦଶମୁଖ କୁନ୍ଦ ପାଖୁଡ଼ା କି
ଆଜାନୁ ବେନି ବାହୁ କି ଭୂଷଣ ପୃଥ୍ୱୀକି ।
ବିକ୍ରମ ଶୋଭା ଦିଶଇ ବେନି ଜାନୁ ଠାଣି
ବେନି ପାଦ କାନ୍ତି ରକ୍ତ କୁମୁଦକୁ ଜିଣି ।
ପୋହଳାର ରେଖା ଜାଣି ଆବର ଅଙ୍ଗୁଷ୍ଠି
ସେବତୀ ପାଖୁଡ଼ା ଜିଣି ଦଶ ନଖ ଫୁଟି ।
ବିରାଜଇ ପାଦ ତଳିପାରେ ପଦ୍ମଚିହ୍ନ
କରତଳେ ଶଙ୍ଖ ପଦ୍ମ ଚିହ୍ନ ଯେ ଗୋପନ ।
ଶରଦ ଚନ୍ଦ୍ରମା ପ୍ରାୟେ ଶୋଭିତ ବଦନ
ଯେଉଁ ମହାତ୍ମା ଭେଦିଲା ଶୂନ୍ୟରେ ଆସନ ।
ମୁକତିମନ୍ତ ପୁରୁଷ ଦ୍ୱାପର ଯୁଗକୁ
ପ୍ରତ୍ୟକ୍ଷେ ସେ ନିରଞ୍ଜନ ଜାତ ସଭାବକୁ ।
ନିଷ୍କଳଙ୍କ ଶୋଭାବନ ସୂର୍ଯ୍ୟକାନ୍ତ ମଣି
ଲଲାଟେ ଶୂନ୍ୟ ପୁରୁଷ ଖଞ୍ଜିଲେ ତା ଆଣି ।
ହୃଦରେ ଭୂଷଣ କଲେ କନକ କଦମ୍ବ
ଧର୍ମ ପୁରୁଷ ଥାପିଲେ ହୃଦେ ଜ୍ଞାନଭାବ ।
ଦୟା ଧର୍ମ ଶୋଭା ଧୈର୍ଯ୍ୟ ସତ୍ୟ ପଞ୍ଚମୁଦ୍ରା
ପାପ ଆତ୍ମା କଡ଼ାଇ ସେ ଆଦି ବ୍ରହ୍ମସିନ୍ଧା ।
ଭୂତ ଭବିଷ୍ୟତ ବର୍ତ୍ତମାନ ହୃଦଗତେ
ଦିବ୍ୟ ଚକ୍ଷୁ ଦେଲେ ନିରଞ୍ଜନେ ଦଇବତେ ।
ବଦନ୍ତି ପୁତ୍ରକୁ କୋଳେ ଧରି ଦେବୀ କୁନ୍ତୀ
ମଞ୍ଚ ସ୍ୱର୍ଗରେ ତୁହି ଗୋ ବୋଲାଇବୁ ସତୀ ।
ମଞ୍ଚ ସ୍ୱର୍ଗରେ ହୋଇବ ଦେଶ ଉତପତ୍ତି
ସମସ୍ତେ ତୋ ଦାସ ପୁତ୍ର ହେବ ଅଧିପତି ।
ନାରାୟଣ ଉତପତ୍ତି ହେବେ ମଞ୍ଚପୁରେ
ସେ ଆରାଧନା କରିବେ ତୋହର ପୟରେ ।
କୋଟିଏ ତୀର୍ଥ ସ୍ଥାନରେ ଯେତେ ଅଛି ଶ୍ରୁତି
ତବ ନାମ ଧରି ଲୋକେ ପାଇବେ ସଦ୍‌ଗତି ।
ଦର୍ଶନେ ଲଭିବେ କୋଟି ଅଶ୍ୱମେଧ ଫଳ
ପୁତ୍ରକୁ ବୋଇଲେ ବାବୁ ଧର୍ମେ ମହୀପାଳ ।
ଅନବରତ ତୋହର ଧର୍ମେ ଥାଉ ଇଚ୍ଛା
ଏବେ ସେହି ସୃଷ୍ଟି ବାବୁ ଧର୍ମେ କର ରକ୍ଷା ।

ଏ ସକଳ ବର ଦେଇ ଧର୍ମ ନିରଞ୍ଜନ
ଶୂନ୍ୟେଣ ମହାତ୍ମା ତହୁଁ ହେଲେ ଅନ୍ତର୍ଦ୍ଧାନ ।
ପୁତ୍ର କୋଳେ ଧରିଛନ୍ତି ଦେବୀ ପଣ୍ଡୁରାଣୀ
ମାଦ୍ରୀ ଆରୋପଣ କଲେ ଅଗ୍ନିଦେବ ଆଣି ।
ଧର୍ମକୁ ସୁମରି ପୁତ୍ର ଦେଲା ଉଚ୍ଚେ ରାବ
ବିପିନେ ଥାଇ ଶୁଣିଲେ ପଣ୍ଡୁ ରାଜଦେବ ।
ଚତୁର୍ଦ୍ଦଶ ଘଡ଼ି ହୋଇଅଛି ପୁଣି ରାତି
ହସ୍ତରେ ଧନୁ ଘେନିଣ ପଣ୍ଡୁ ନରପତି ।
ପର୍ବତ ତଳେ ବିଜୟେ ଅମ୍ବାଳିକା ପୁଅ
ଅନ୍ଧାର ରାତି ଦିଶୁଛି ଦିବସ ପରାୟ ।
ପର୍ବତ ଶିଖକୁ ଉଠିଗଲେ ନୃପମଣି
ପାଷାଣ ଝଡୁଅଛି ସେ ପୁତ୍ରରାବ ଶୁଣି ।
ଗଗନ ତେଜି କି ଚନ୍ଦ୍ର ପର୍ବତେ ଉଦୟେ
ରାତ୍ରେ ସେ ପର୍ବତ ଦିଶେ ଶୁକ୍ଳାମ୍ବର ପ୍ରାୟେ ।
ପଣ୍ଡୁରାଜା ବିଜେ କଲେ ହରଷେ ସନ୍ନିଧେ
ନେତ୍ରୁ ଅଶ୍ରୁଜଳ ବହେ ଅତ୍ୟନ୍ତ ଆନନ୍ଦେ ।
ପୁତ୍ର ଦେଖିଣ ରାଜାର ଅନେକ ହରଷ
ମାଦ୍ରୀ ବୋଇଲେ ସ୍ୱାମୀ ନ ଆସ ପୁତ୍ରପାଶ ।
ଜାଣିବା ନା ବେଳ ଗଣ୍ଡଦୋଷ ତଥ୍ୟ କରି
ଶୁଣିଣ ହସିଲେ ସେହୁ ପଣ୍ଡୁ ଦଣ୍ଡଧାରୀ ।
କୁନ୍ତଭୋଜର କୁମାରୀ କୁନ୍ତୀ ଯେ ଅପର୍ଣ୍ଣା
ଦୋଷ ଖଣ୍ଡନେ ପରମ ପଣ୍ଡିତା ସେ ସିନା ।
ଏ କାଳେ ବ୍ରାହ୍ମଣ ବେଶ ଧରି ବୃହସ୍ପତି
ଉପସ୍ଥିତ ହେଲେ ଘେନି ସପତାଙ୍ଗ ପୋଥି ।
ବଦନ୍ତି ଯେ ବୃହସ୍ପତି ଶୁଣ ଦଣ୍ଡଧର
ଧାର୍ମିକ ସୋମବଂଶରେ ଜନମ ତୁମ୍ଭର ।
ମେଷମାସ ଶୁକ୍ଳପକ୍ଷ ପ୍ରତିପଦା ତିଥି
ଶୁକ୍ରବାର ଅଢ଼ାଇ ପ୍ରହର ଅଛି ରାତି ।
ତୈତିଳ ନାମେ କରଣ ଧୃତି ନାମେ ଯୋଗ
ଦ୍ୱିଜା ନକ୍ଷତ୍ରର ସତାଇଶ ଦଣ୍ଡ ଭୋଗ ।
ମେଷରାଶି କି ଯେ ନାହିଁ ପାପଗ୍ରହ ଦୋଷ
ମେଷ ରାଶିରେ ସେ ସୂର୍ଯ୍ୟ କରଛନ୍ତି ବାସ ।
ମଙ୍ଗଳ ଲଗ୍ନ ହୋଇଣ ଉପୁଜିଲା ବଳା
ରୋହିଣୀ ଘରେ ଯେ ଶୁକ୍ରଗ୍ରହ କରେ ମେଳ ।
ଲଗ୍ନେ ମଙ୍ଗଳ ସପ୍ତମ ଘରେ ବୃହସ୍ପତି
ତୃତୀୟରେ ରାହୁ ଚତୁର୍ଥରେ ଶନିସ୍ଥିତି ।
ଧର୍ମେଣ ବାଳ ଅମୃତ ଯୋଗେ ଉତପତ୍ତି
ଐଶାନ୍ୟେ ଦେବୀ ଯୋଗିନୀ ବ୍ରହ୍ମାୟଣୀ ମୂର୍ତ୍ତି ।
ସିଦ୍ଧି ଯୋଗ ଘେନିଣ ଯେ ଉତ୍ପତ୍ତି ନନ୍ଦନ
ଜଉତିଷର ବଚନେ ସାନନ୍ଦ ରାଜନ ।

ସୁବର୍ଣ୍ଣର ପାତ୍ରେ ପଞ୍ଚ ମାଣିକ୍ୟ ପୁରାଇ
ଗୁଆଘୃତ ପୂର୍ଣ୍ଣ ରତ୍ନ ପ୍ରଦୀପ ଜଳାଇ ।
ପଞ୍ଚ ମାଣିକ୍ୟ ଘେନିଣ ଅର୍ଘ୍ୟ ଯେ ସଜାଡ଼ି
ଶୁଭଲଗ୍ନେ ଦେଖିବାକୁ ଗଲେ ଦଣ୍ଡଧାରୀ ।
ଜଉତିଷ କହିଲେ ଯେ ଗଣ୍ଡଦୋଷ ନାହିଁ
ଲଭନ୍ତୁ କୋଟିଏ ପୁଣ୍ୟ ପୁତ୍ରମୁଖ ନାହିଁ ।
ପଣ୍ଡିତ ବାକ୍ୟେ ଆନନ୍ଦ ହୋଇ ମହାରାଜ
ଜନମ ମନ୍ଦିରେ ଯାଇ ଦେଖଇ ଆତ୍ମଜ ।
ଅର୍ଘ୍ୟ ଦେଇଣ ରାଜନ ଜୟଧ୍ୱନି ତୋଳି
ଦେବନାରୀମାନେ ଦ୍ୟନ୍ତି ଶୂନ୍ୟେ ହୁଳହୁଳି ।
ଦେଖିଲା ପଣ୍ଡୁରାଜା ଯେ ପୁତ୍ରର ବଦନ
ଆକାଶୁଁ ଅମୃତ ବୃଷ୍ଟି କଲେ ମଘବାନ ।
ସାଧୁ ସାଧୁ ଶୁଭିଲା ଯେ ଶବଦ ଗୋଟାଏ
ଗଗନରୁ ପୁଷ୍ପ ବୃଷ୍ଟି କଲେ ଦେବତାଏ ।
ପୁତ୍ର ଦେଖି ରାଜା ହେଲା ଅନେକ ଉସତ
ବୁଡ଼ିଲା ବଂଶ ମୋହର ଧର୍ମେଣ ଉଦିତ ।
ସାଧୁ ସାଧୁ ସାଧୁ ପ୍ରିୟେ ଜୀବନ ମୋହର
ଦୁର୍ବାସା ମନ୍ତ୍ର ଯେ କଲା ମୋର ଉପକାର ।
କେବଣ ଭକତି କରି ତୋଷିଲୁ ତାହାନ୍ତ
ତୋହର ଯୋଗୁଁ ହୋଇଛି ମୁହିଁ ପୁତ୍ରବନ୍ତ ।
ଅନେକ ପୌରୁଷକରି କହିଲେକ ରାୟେ
କୁନ୍ତୀ ବୋଲନ୍ତି ତୁମ୍ଭର ପୁଣ୍ୟେ ସିନା ହୋଏ ।
ପଣ୍ଡୁ ବୋଇଲେ ଗୋ କୁନ୍ତଭୋଜର ଦୁହିତା
ନାମ ଦିଅ ଏ ସଂସାରେ ଜନର ଯେ ହିତ ।
କୁନ୍ତୀ ବୋଲନ୍ତି ଯେ ଅର୍ଘ୍ୟ ଘେନି ନୃପବର
ପୁତ୍ରର ନାମ ହୋଇଲା ଧର୍ମ ଯୁଧିଷ୍ଠିର ।
ମଙ୍ଗଳଧ୍ୱନି ଅନେକ ଆନନ୍ଦ ସେ କରି
ଯୁଧିଷ୍ଠିର ନାମ ଗୋଟି ଜନ ହିତକାରୀ ।
ପୁତ୍ରର ଉତ୍ସବ କରାଇଲେ ନୃପମଣି
ପୂଜନ୍ତି ମଙ୍ଗଳା ଷଷ୍ଠୀଦେବୀ ଗୋସାମଣି ।
ପୁତ୍ରକୁ ପ୍ରତିପାଳିଲେ ପଣ୍ଡୁ ନରପତି
ଶତଶୃଙ୍ଗ ପର୍ବତରେ ଥାଇ ରାଜା ନୀତି ।
ରାତ୍ରରେ ଭ୍ରମଇ ପଞ୍ଚକଟକ ନଗରୀ
ଦେଖିଣ ନାଶ କରଇ ଦୁର୍ଭାର ବଇରୀ ।
ଚାରେ ବାରତା କହିଲେ ହସ୍ତିନା ଭୁବନେ
ପୁତ୍ର ଉତପତ୍ତି ହେଲା ପଣ୍ଡୁ ବିଦ୍ୟମାନେ ।
ଶୁଣିଣ ଆନନ୍ଦ ହେଲା ଅମ୍ବିକାର ସୁତ
ଉତ୍ସବ କରିଲା ରାଜା ପଞ୍ଚ ଯେ ପ୍ରଶସ୍ତ ।
ସନ୍ତତି ଉତ୍ସବ ବୋଲି ନଗ୍ରରେ ଘୋଷଣ
ଅନେକ ଦାନ ଯେ ସେ ଦିଅଇ ନୃପରାଣ ।

ସୁବର୍ଣ୍ଣର ରଥ ବେଗେ ସାଜି ଧୃତରାଷ୍ଟ୍ର
ଗାନ୍ଧାରୀର ସହିତେ ବିଜୟେ କୁରୁଶ୍ରେଷ୍ଠ ।
ଶାନ୍ତନୁ ପରାଶର ସେ ଭୀଷ୍ମ ଭୂରିଶ୍ରବା
ବିଦୁର ସହିତେ ବିଜେ କୁରୁ ରାଜଦେବା ।
ପଣ୍ଡୁ ପୁତ୍ର ଜାତ ଶୁଣି ବ୍ୟାସ ମହାଋଷି
ତୁଲେ ଅଛନ୍ତି ଷାଠିଏ ସହସ୍ର ଯେ ଋଷି ।
ପ୍ରବେଶ ମହାତ୍ମା ଶତଶୃଙ୍ଗ ପରବତେ
ବଶିଷ୍ଠ ମାରକଣ୍ଡ ଯେ ଦୁର୍ବାସା ସହିତେ ।
ପୌଲସ୍ତ୍ୟ ବିଶ୍ରବାଋଷି ସୁଦେବ ଅଗସ୍ତି
ଶତଶୃଙ୍ଗ ପର୍ବତରେ ବିଜୟ ତଡ଼ତି ।
ବିଶ୍ୱାମିତ୍ର ଜନକ ଯେ ଋଷି ସୁମନ୍ତକ
ଦେବଋଷି ରାଜଋଷି ଅଇଲେ ଅନେକ ।
କୁନ୍ତଭୋଜ ରାଜା ସାରିକରି ସମଦଣ୍ଡ
ଆନନ୍ଦେ ପ୍ରବେଶ ଆସି ହୋଇଲେ ତା ଦଣ୍ଡ ।
ଋଷିଗଣଙ୍କୁ ପଣ୍ଡୁ ଯେ କରିଲେକ ପୂଜା
ସବୁକୁ ହିଁ କୃଷ୍ଣସାର ଛାଲ ଦେଲେ ରାଜା ।
ଗଣ୍ଡାଜୀବ ମାରି ପିତୃକାର୍ଯ୍ୟ ଅର୍ଥେ ଶ୍ରାଦ୍ଧେ
ପୁତ୍ର ଆୟୁଷ ନିମନ୍ତେ ରଖି ସଭାମଧ୍ୟେ ।
ବନଫଳ କନ୍ଦମୂଳ ଋଷିଙ୍କର ଭୋଜା
ଏମନ୍ତବେଳେ ପ୍ରବେଶ କରୁ ମହାରାଜା ।
ତପୋନିଷ୍ଠ ଆରାଧନା କର ବେଗେ ଉଠି
ଧୃତରାଷ୍ଟ୍ରଙ୍କୁ ଯେ ପଣ୍ଡୁ ଆଣନ୍ତି ପାଛୋଟି ।
ସାନୁମାନ ପରବତେ ଥିଲେ ଧୃତରାଷ୍ଟ୍ରେ
ପଣ୍ଡୁ ପ୍ରଣିପାତ କୁରୁବୀରର ନିକଟେ ।
ବିଦୁର କହିଲେ ଧୃତରାଷ୍ଟ୍ରଙ୍କ ଅଗ୍ରତେ
ପଣ୍ଡୁରାଜା ଦରଶନ କଲେ ଦେବ ତୋତେ ।
ଶୁଣିଣ କଲ୍ୟାଣ ବାଞ୍ଛା କଲା ଅନ୍ଧରାୟ
ଯାହା ବାଞ୍ଛା କରୁ ପ୍ରାପ୍ତ ହେଉ ତା ନିଶ୍ଚୟ ।
ସମଦଣ୍ଡ ଘେନି ବିଜେ କଲେ କୁରୁପତି
ପୁତ୍ର ଉତ୍ସବ କରାନ୍ତି ପଣ୍ଡୁ ମହାମତି ।
ପୁତ୍ରକୁ କୋଳେ ଧରିଣ ଦେଖାନ୍ତି ଗାନ୍ଧାରୀ
ଧୃତରାଷ୍ଟ୍ରଙ୍କର କୋଳେ ଦେଲେ ପୁତ୍ର ଧରି ।
ପୁତ୍ରକୁ କୋଳେ ଧରିଣ ହର୍ଷେ କୁରୁସାଇଁ
ଶରୀର ଶୀତଳ କଲା ହୃଦରେ ଲଗାଇ ।
ଧନ୍ୟ ସେ ମାଧବୀ ଅଟେ ଭୋଜର କୁମାରୀ
ବଂଶ ଉଦ୍ଧାରିବା ବୁଦ୍ଧି ଉପାୟ ସେ କରି ।
କୁନ୍ତଭୋଜ ନରପତି ଘେନିଣ ସଇନ୍ୟ
ଶତଶୃଙ୍ଗ ପରବତେ ବିଜୟେ ତକ୍ଷଣ ।
ଦୁହିତା ଜାମାତା ଘେନି ମୁନିଙ୍କୁ ସେ ରାଜା
ଅନେକ ଯେ ଅଲଙ୍କାର ଦେଇ କଲା ପୂଜା ।

କୁନ୍ତୀଙ୍କର କୋଳରେ ପୁତ୍ରକୁ ଯେ ବସାଇ
ସର୍ବ ଅଳଙ୍କାର ଦେଇ ବସନ ପିନ୍ଧାଇ ।
ବନ୍ଧାପନା କରନ୍ତି ସେ ସ୍ତିରୀଗଣ ଶୁଭେ
ହରଷରେ ଉଚ୍ଛୁଳଇ ପୁର ମହୋତ୍ସବେ ।
ପଞ୍ଚ ଦିବସ ରହିଲେ ସେହି ପରବତେ
ଋଷି କଲ୍ୟାଣ କରନ୍ତି ପଢ଼ି ମହାମନ୍ତ୍ରେ ।
ଧର୍ମେ ବର୍ଦ୍ଧିତ ହେଉ ଏ ତୋହର ଯୁଧିଷ୍ଠି
ସ୍ୱର୍ଗେ ବାସବରୁ ଘେନିଏ ଦେହ ଗୋଟିକି ।
ଏସନ କଲ୍ୟାଣ ଯହୁଁ କଲେ ସର୍ବ ଋଷି
ଶୁଣିଣ ପଣ୍ଡୁ ରାଜନ ମନେ ମହାଖୁସି ।
ବଦନ୍ତି ପଣ୍ଡୁଙ୍କୁ ଧରି କୋଳେ ଧୃତରାଷ୍ଟ୍ର
ରାଜ୍ୟକୁ ଚାଲ ହେ ଯିବା ବନେ ପାଉ କଷ୍ଟ ।
ପଣ୍ଡୁ ବୋଇଲା ଭୋ ରାଜା ଶୁଣ ମୋର ବାଣୀ
ଏ ଶତଶୃଙ୍ଗ ପର୍ବତ ଦେଖ ସ୍ୱର୍ଗ ଜିଣି ।
ଏହା ହୁଁ ରାଜ୍ୟେ ତୋହର ପାଇବି କି ସୁଖ
ଏଥକୁ ନିକଟ ପୁଣ୍ୟ ଅଟେ ସର୍ବ ତୀର୍ଥ ।
ରାଜ୍ୟକୁ ରକ୍ଷା କରିବି ତପିଙ୍କି ରଖିବି
କଷ୍ଟ ପଛେ ହେଉ ସ୍ୱାମୀ ଏ ପର୍ବତେ ଥିବି ।
ତୁ ଦେବ ରାଜା ହୋଇଣ ରହିଥାଅ କ୍ଷମେ
ମୁହିଁ ରିପୁଙ୍କୁ ଧ୍ୱଂସିବି ତୋହର ହୁକୁମେ ।
ସନ୍ତାନକୁ ହିଁ ତୁ ବସା ବର ନୃପମଣି
ଗାନ୍ଧାରୀର ପୁତ୍ର ହେବ ମୁହିଁ ଅଛି ଶୁଣି ।
ଏସନ ପ୍ରବୋଧ କହି ପଣ୍ଡୁ ମହାରାଜା
ଧୃତରାଷ୍ଟ୍ର ନୃପତିଙ୍କ କଲା ପାଦପୂଜା ।
ଅନେକ ସମ୍ପଦ ସଙ୍ଗେ ଘେନି କୁରୁପତି
ବିଜେ ମହାରାଜା କୁଞ୍ଜଗଳ ଅଧିପତି ।
ଥୋକାଏକ ଦୂର ରାଜା ଆସଇ ପାଛୋଟି
ବ୍ୟାସଙ୍କ ଚରଣେ ପ୍ରଣିପାତ କରି ଉଠି ।
ବୋଲେ ବୁଡ଼ନ୍ତାବଂଶ ତୁ ସ୍ୱାମୀ କରୁ ରକ୍ଷା
କେମନ୍ତ ଧୃତରାଷ୍ଟ୍ରର ପୁତ୍ର କର ବାଞ୍ଛା ।
ତହୁଁ ଅନ୍ତର୍ଦ୍ଧାନ ହୋଇଗଲେ ସର୍ବ ଋଷି
ବାହୁଡ଼ଇ ତାଙ୍କ ପାଦେ ମସ୍ତକ ନିବେଶି ।
ଶତଶୃଙ୍ଗେ ଯାଇ ରାଜା ହୋଇଲେ ପ୍ରବେଶ
କୁନ୍ତଭୋଜ ନୃପତି ଯେ ଯାଏ ନିଜ ଦେଶ ।
ରହିଲେକ ପଣ୍ଡୁ ପୁତ୍ର ଭାରିଯାକୁ ଘେନି
ହସ୍ତିନାକୁ ଗଲେ ବ୍ୟାସ ଧୃତରାଷ୍ଟ୍ର ବେନି ।
ଜୟ ତୁ ଜୟ ତୁ ନୀଳମାଧବ ମୂରତି
ଜୟ ତୁ ଜୟ ତୁ ଦେବ କମଳାର ପତି ।
ଜୟ ତୁ ଜୟ ତୁ ଦେବ ଅନ୍ତର ତୋ ରୂପ
ଆଦିଅନ୍ତ ନାହିଁ ତୋର ମହିମା ଅମାପ ।
ମାଳତୀ କନ୍ୟା ରୂପରେ ମୋହିଲୁ ଜଗତ
ମୋହିନୀ ରୂପେ ହରଣ କଲୁ ତୁ ଅମୃତ ।
ତୋହର ମାୟାରେ ସିନା ମରନ୍ତି ଅସୁରେ
ବଇଲୋଚନକୁ ବଧ କଲୁ କିଞ୍ଚିତରେ ।
ତୋହର ଅଭୟ ପାଦ ଦେବେ ଅଗୋଚର
ଶାରଳା ଦାସ ମୁଁ ଜନ୍ମେ ଜନ୍ମେ ତୋ କିଙ୍କର ।

—୦—

## ଦୁର୍ଯ୍ୟୋଧନ ପ୍ରଭୃତିଙ୍କର ଜନ୍ମ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ହସ୍ତିନାପୁରେ ପ୍ରବେଶ ହେଲେ ବ୍ୟାସଯତି ।
ଅନେକ ବିନୟ ଭାବେ ଅମ୍ବିକାର ସୁତ
ଭକତି କଲା ଭାରିଯା ଗାନ୍ଧାରୀ ସହିତ ।
ପୁତ୍ର ଜାତ ନିମନ୍ତେ ଯେ କହଇ ନୃପତି
ଶୁଣିଣ ପଣ୍ଡିତ ବିଜ୍ଞଯତି ବିଚାରନ୍ତି ।
ଧ୍ୟାନରେ ଜାଣିଲେ ସେହି ମହାବ୍ରହ୍ମବେତ୍ତା
ଧୃତରାଷ୍ଟ୍ର ବୀର୍ଯ୍ୟେ ପୁତ୍ର ନାହିଁ ମହାଜ୍ଞାତା ।
ବଦନ୍ତି ଶୁଣ ହେ ମହାରାଜା ନରପତି
ଗାନ୍ଧାରୀ ଗର୍ଭେ ନୋହିବ ତୋହର ସନ୍ତତି ।
ଲାଗିଲାକ ମହାଭୟ ବ୍ୟାସଙ୍କ ବଚନେ
ବଂଶରକ୍ଷା କରାଇବା ମୋର ମହାମୁନେ ।
ବ୍ୟାସ ବଦନ୍ତି ମୋ କଥା ଶୁଣସିରେ ବାବା
ସନ୍ତାନ ନିମନ୍ତେ ଆମ୍ଭେ ଯାଗ କରାଇବା ।
ଧୃତରାଷ୍ଟ୍ର ବୋଇଲେ ମୁଁ ନ ଜାଣଇ ତଥ୍ୟ
ତୋହରି ଆଜ୍ଞା ପ୍ରମାଣେ ଦେବଇଁ ସମସ୍ତ ।
ବିଛା ଶୁକ୍ଳପଞ୍ଚମୀ ଯେ ତିଥି ଗୁରୁବାର
ଶ୍ରବଣା ନକ୍ଷତ୍ର ପୁଣ ଅଟେ ସେ ଦିନର ।
ବାଳବ ନାମେ କରଣ ବୃଦ୍ଧିନାମେ ଯୋଗ
ବିଛା ସଂକ୍ରାନ୍ତିର ଚତୁର୍ଦ୍ଦଶ ଦିନ ଭୋଗ ।
ଯମୁନା କୂଳରେ ଯାଗ ଶାଳ ନିରୂପନ୍ତି
ଆପେ ବ୍ୟାସ ଯାଇ ଯାଗ ଶାଳକୁ ଦେଖନ୍ତି ।
ମୂଷଳ ଘେନି ଚିରନ୍ତି ଭୂମି ଶୁଭଯୋଗେ
ମକରାଦିକ ବୁଣାନ୍ତି ଜଳ ଦେଇ ଯୋଗେ ।
ମହାରସ ପାଇବାରୁ ଭୂମିତଳେ ଉଠି
ମକର ମାସ ମଧ୍ୟରେ ପଡ଼େ ତଳେ ଫୁଟି ।
ଯାଗଶାଳା କରିଲେ ସେ ଶୁଭ ଅନୁକୂଳେ
ଦିଗପାଳମାନଙ୍କୁ ଯେ ବରିଲେ ମଙ୍ଗଳେ ।
ବଶିଷ୍ଠ ଯେ ବିଶ୍ୱାମିତ୍ର ମାର୍କଣ୍ଡ ଅଗସ୍ତି
ଯଜ୍ଞେ ଯାଗନିକ ପରାଶରଙ୍କ ସନ୍ତତି ।
ଉଦ୍ଧାଳକ ବାମଦେବ ଧର୍ମ ପୁରୋହିତେ
ବାହାର ବରଣ ହେଲେ ଯଜ୍ଞେ ମହାମନ୍ତ୍ରେ ।

ବ୍ରହ୍ମା ବରଣ ହୋଇଲେ ଦୁର୍ବାସା ତଦନ୍ତେ
ଯାଗ କୁଣ୍ଡକୁ ଖୋଳାନ୍ତି ଶାସ୍ତ୍ର ବିଧିମତେ ।
ଅନେକ ମିଳିଲେ ବାଳ ଖିଲ୍ୟା ବ୍ରହ୍ମଋଷି
ଶୁଭଯୋଗ ଘେନି ବ୍ୟାସ ମହାଯୋଗେ ବସି ।
ବଦନ୍ତି ଅଗସ୍ତି ଆହେ ବୈବସ୍ୱତ ମନୁ
ଅନୁକୂଳ କଲେ ମାଘ ପଞ୍ଚମୀର ବିନୁ ।
ଚନ୍ଦ୍ରବାର ନକ୍ଷତ୍ର ଉତ୍ତରାଫାଲଗୁନୀ
ତୈତିଳ କରଣ ଯେ ସୁକର୍ମ ଯୋଗ ଘେନି ।
ବରଣ କଲେ ଦେବଙ୍କୁ ବୈଶ୍ୱାନର ତୁଲେ
ଗୁଆଘୃତ ଲକ୍ଷେ ଭାର ଘେନି ଆରମ୍ଭିଲେ ।
ବହୁବିଧ ପୂଜା ଦ୍ରବ୍ୟ ଶୀତଳ ସହିତ
ରଖିଲେ ଯେ କୃଷ୍ଣସାର ଛାଲ ଅପ୍ରମିତ ।
ଏସନକ ଆରମ୍ଭେ ଯେ ଯଜ୍ଞର ଭିଆଣ
ଏକଲକ୍ଷ ଚତୁର୍ବେଦୀ ବ୍ରାହ୍ମଣ ବରଣ ।
ବିଜୟ କରିଲେ ଧୃତରାଷ୍ଟ୍ର ମହାରଥା
ତୁଲେ ବସିଛି ଗାନ୍ଧାରସେନର ଦୁହିତା ।
ଶ୍ରୀହସ୍ତେ ଘେନିଲା ରାୟେ କନକ ଅଞ୍ଜଳି
ଯଜ୍ଞକୁଣ୍ଡେ ଅଷ୍ଟୋତ୍ତର ଶତ ଦିଏ ତୋଳି ।
ସମିଧ ଯେତିକି ଘୃତାହୁତି ଦେଲେ ତେତେ
ଯବ ତିଳ ବୃଷ୍ଟି କଲେ ଋଷି ସେହିମତେ ।
କୁସୁମ ପାଖୁଡ଼ା ଶତେବାର ଏକ ବୃଷ୍ଟି
ମହାମନ୍ତ୍ର ଉଚ୍ଚାରଣ କରନ୍ତି ସମଷ୍ଟି ।
ସହସ୍ରେକ ବ୍ରାହ୍ମଣ ଯେ ଦ୍ୟନ୍ତି ହବିର୍ଭାଗ
ଶୀତଳ ଦ୍ରବ୍ୟ ଅନେକ ପକ୍ୱଫଳ ଭୋଗ ।
ନିତ୍ୟକର୍ମ ବିଧିମାନ ସାରି ତପୋବନ୍ତ
ଧୃତରାଷ୍ଟ୍ର ରାଜା ତହୁଁ ଯାନ୍ତି ପଞ୍ଚତୀର୍ଥ ।
ସ୍ନାନସାରି ଆସଇ ସେ ଅମ୍ବିକାର ସୁତ
ବରଷନ୍ତି ହୋମକୁଣ୍ଡେ ଅନେକ ଯେ ଘୃତ ।
ଅଜପା ମନ୍ତ୍ରେ ବରିଛି ମାରକଣ୍ଡ ଯତି
ପଞ୍ଚ ଦିବସ ଯାଏ ସେ ଦିଅନ୍ତିଆହୁତି ।
ଅନବରତ ବୁଲନ୍ତି ଅଗ୍ନି ବାମାବର୍ତ୍ତେ
ବ୍ୟାସ ବୋଇଲେ ଦୁହିତା ଦେବ ଦେଲେ ଏଥେ ।
ଧୃତରାଷ୍ଟ୍ର ବୋଲନ୍ତି ହେ ପରାଶର ଶିଷ୍ୟ
ପୁତ୍ର ଉତପତ୍ତି ହେଲେ ରକ୍ଷା ହେବ ବଂଶ ।
ପୁଣି ଅଗ୍ନିକି କରନ୍ତି ବହୁତ ଯେ ସ୍ତୁତି
ସମିଧ ସହିତ ଘୃତ ଦିଅନ୍ତି ଆହୁତି ।
ଯହୁଁ ସେ କଠୋର କର୍ମ କଲେ ମହାମୁନି
ଦକ୍ଷିଣାବର୍ତ୍ତକ ହୋଇ ବୁଲିଲାକ ବହ୍ନି ।
ରସାଣ କଲାକ ଭାଣ୍ଡ ବସାଇ କୁଣ୍ଡରେ
ଘୃତ ତଣ୍ଡୁଳ ମେଲିରେ ବ୍ୟାସ ମୁନିବରେ ।
ଘୋଡ଼ାଇ ତଣ୍ଡୁଳକାଢ଼ି ଦେଖନ୍ତି ସେ ଉଠି
ପରିସିଦ୍ଧ ଅନ୍ନ ଫୁଟି ଦିଶେ ଗୋଟି ଗୋଟି ।
ମାରକଣ୍ଡ ବୋଇଲେ ହୋ ଶୁଣ କୁରୁବୀର
ସ୍ନାନ ସାରି ଆସୁ ଭାର୍ଯ୍ୟା ଗାନ୍ଧାରୀ ତୋହର ।
ନିତ୍ୟକର୍ମ ମାନ ସାରି ଅଇଲେ ସେ ରାଣୀ
ମହାବାକ୍ୟ କରନ୍ତି ଯେ ଶୁଭଯୋଗ ଜାଣି ।
ଦେଖିଲେ ଅନ୍ନ ଫୁଟିଲା ତହିଁ ଶତଗୋଟି
ବାଛିଣ ଅନ୍ନ କାଢ଼ିଲେ ମାରକଣ୍ଡ ଉଠି ।
ବୋଲନ୍ତି ମହାତ୍ମା ଏବେ ମାଗ ତୁହି ବର
ବାଞ୍ଛା ସିଦ୍ଧ ହେଉ ମାଗ ଇଚ୍ଛା ଯେ ତୋହର ।
ଯେହ୍ନେ କଲ୍ୟାଣ ମିଳଇ ଯାହା ତୋର ଇଚ୍ଛା
ହରଷ ଭାବରେ ମାଗ ପୂରୁ ମନୋବାଞ୍ଛା ।
ଶତ ସହସ୍ର ଯେ ରାଣୀ ହୋଇ ଦଣ୍ଡବତ
ପୁଣ ପୁଣ ବିନୟ ଯେ ଭକତି ବହୁତ ।
ତୁ ଯେ ବ୍ରହ୍ମଋଷି ମୋତେ ସୁଦୟା କରିବା
ଅନୁଗ୍ରହ କରି ପୁତ୍ର ଶତେ ମୋତେ ଦେବା ।
ଗାନ୍ଧାରୀ ବଚନ ଶୁଣି ତୋଷ ତପୋଧନ
ରତ୍ନଭଣ୍ଡାରୁ ପାଇଲେ ଶତ ଗୋଟି ଅନ୍ନ ।
ଗାନ୍ଧାରୀକି ବୋଇଲେ ଗୋ ଗ୍ରାସ ଏହାକର
ମନବାଞ୍ଛା ପ୍ରାପତ ଯେ ହେଲାଣି ତୋହର ।
ଏସନକ ବାଞ୍ଛା ସିଦ୍ଧ ତୋହର ହୋଇଲା
ତିନିପୋଷ ତଣ୍ଡୁଳରୁ ଶଏଟି ଫୁଟିଲା ।
ଏହାକୁ ନେଇଣ ଗ୍ରାସକର ମହାସତୀ
ଅର୍ଜିଲୁ ଅନେକନ ପୁଣ୍ୟ ହେଲୁ ଭାଗ୍ୟବତୀ ।
ଏସନକ ବର ଦେଲେ ସର୍ବ ତପୋଧନ
ଧୃତରାଷ୍ଟ୍ରକୁ ଅନେକ କଲେ ଯେ କଲ୍ୟାଣ ।
ଋଷିଙ୍କୁ ତୃପତି ରାଜା କଲା ଭକ୍ତିଭାବେ
ଚଳନ୍ତି ଯେ ମୁନିମାନେ ଯେ ଯାହାର ଠାବେ ।
ରାଜାଗଣମାନେ ଗଲେ ଯେ ଯାହାର ସ୍ଥାନେ
ଅନେକ ପୁଣ୍ୟ ଲଭିଣ ଧୃତରାଷ୍ଟ୍ର ଦାନେ ।
ତେଣୁ ଅତି ପୁଣ୍ୟବନ୍ତ ହେଲା ନୃପବର
ଦୟା ଧର୍ମ ବହିଥାଇ ନିରତେ ଶରୀର ।
ଶୁଣଇ ଧର୍ମ ପୁରାଣ ଭାରିଯା ସହିତେ
ବେଦମନ୍ତ୍ର ବରଣ ଯେ କଲେ ଅବିରତେ ।
ଅନେକ ଉତ୍ସବ ରାଜା କରାଇ ହରଷେ
ଆନନ୍ଦ ଚିତ୍ତେ ରାଜନ ପିତୃଲୋକ ତୋଷେ ।
ଋଷିଙ୍କର ମହାମନ୍ତ୍ର କେହୁ ଆନ କରି
ଋଷି ମନ୍ତ୍ରେ ହେଲା ଗର୍ଭବତୀ ତାର ନାରୀ ।
ପ୍ରକୃତି ଅନ୍ତର ହେଲା ଅନ୍ୟାଅନ୍ୟେ ଇଚ୍ଛା
ଯାହା ମାଗଇ ଆଣି ତା ଦିଏ ବ୍ୟାସବଛା ।

ନିଦାଘ କାଳ ବୈଶାଖ ଖରା ତାପ ପାଇ
ଗାନ୍ଧାରୀ ବିମାନେ ଚଢ଼ି ଗଙ୍ଗାସ୍ନାନେ ଯାଇ ।
ବିମାନୁ ଓହ୍ଲାଇ ବସି ଗଙ୍ଗାନଦୀ କୂଳେ
ଚଳି ନ ପାରଇ ଆଉ ଗର୍ଭର ବ୍ୟାକୁଳେ ।
ଶତ ପୁତ୍ର ଗର୍ଭେ ଥାଇ ହେଲା ମହାଭାରି
ସହି ନ ପାରିଣ ସେହି ପକାଏ ଉଦ୍‌ଗାରି ।
ଋଷିଙ୍କ ଅନ୍ନ ଅତୁଟ ହୋଇ ଗର୍ଭେ ଥିଲା
ଗାନ୍ଧାରୀ ପକାଇ ତାହା ମୂର୍ଚ୍ଛାଗତ ହେଲା ।
ଋଷି ସଞ୍ଚିତ ଅମ୍ଳାନ ଶତ ଚରୁଅନ୍ନ
ଜଳରେ ପଡ଼ି ଦିଶଇ ସେ କନକ ବର୍ଣ୍ଣ ।
ଗାନ୍ଧାରୀ ପଡ଼ିଅଛି ଯେ ଗତ ଆତ୍ମା ହୋଇ
ଗଙ୍ଗାସ୍ନାନେ ଯାନ୍ତେ ବ୍ୟାସ ଭେଟିଲେ ଯେ ତହିଁ ।
ଦେଖିଲେକ ମୂର୍ଚ୍ଛାଗତେ ପଡ଼ିଛି ଗାନ୍ଧାରୀ
କମଣ୍ଡଳୁ ପାଣି ସିଞ୍ଚି ବ୍ୟାସ ବ୍ରହ୍ମଚାରୀ ।
ମନ୍ତ୍ରଜଳ ପାଇ ଦେବୀ ପାଇଲେ ଚେତନା
ଦେଖି ବିରସ ହୋଇଲେ ବ୍ୟାସ ମହାମନା ।
ଦୁଃଖେ ଆମ୍ଭେ ଅରଜିଲୁ ଯେବଣ ଆହୁତି
ଏସନକ କର୍ମଦୋଷେ ନୋହିଲା ସନ୍ତତି ।
ବେଦ ଶାସ୍ତ୍ରକୁ ନିନ୍ଦା ତ ହେଉଛି ଯୁକତେ
ସମସ୍ତ ରୁଣ୍ଡ କରିଣ ଘେନି ତପୋବନ୍ତେ ।
କମଣ୍ଡଳୁ ପାଣି ସିଞ୍ଚି ଜୀବନ୍ୟାସ ଦେଲେ
ଅମୃତ ଦୃଷ୍ଟିରେ ଚାହିଁ ଉଠରେ ବୋଇଲେ ।
ପ୍ରତ୍ୟକ୍ଷରେ ମହାତମା ଯେଉଁ ମହାମୁନି
ଶତ ପୁତ୍ର ହୋଇଲେ ସେ ମହାବୀର୍ଯ୍ୟ ଘେନି ।
ଅତି ସୁନ୍ଦର ମକରଧ୍ୱଜ କାନ୍ତି ପ୍ରାୟେ
ତ୍ରିଭୁବନ ମୋହନ୍ତି ସେ ବାଳୁତ ତନୟେ ।
ପୁତ୍ରଙ୍କୁ ଦେଖି ଗାନ୍ଧାରୀ ବସିଣ ଆନନ୍ଦେ
ବ୍ୟାସ ବୋଇଲେ ପୁତ୍ରଙ୍କୁ ସମ୍ଭାଳ ଗୋ ହାଦେ ।
ଶତ ପୁତ୍ରଙ୍କୁ ବିମାନେ ଶୁଆନ୍ତେ ଗାନ୍ଧାରୀ
ତହୁଁ ଅନ୍ତର୍ଦ୍ଧାନ ହେଲେ ବ୍ୟାସ ବ୍ରହ୍ମଚାରୀ ।
ପୁତ୍ରଙ୍କୁ ଘେନି ଗାନ୍ଧାରୀ ବିଜେ ଅନ୍ତଃପୁରେ
ବିଦୂର କହିଲେ ଧୃତରାଷ୍ଟ୍ରଙ୍କ ଆଗରେ ।
ସାବଧାନେ ଶୁଣିମା ଭୋ ଦେବ ଦଣ୍ଡଧାରୀ
ଗାନ୍ଧାରୀର ଶତ ପୁତ୍ର ବିଜେ ଅନ୍ତଃପୁରୀ ।
ଅନେକ ଆନନ୍ଦ ହୋଇ ବୋଇଲାକ ରାୟ
ଆଣ ମୋ କୋଳକୁ ଦିଅ ବାଳୁତ ତନୟ ।
ପ୍ରଥମ ପୁତ୍ରକୁ କୋଳେ ଘେନିଣ ବିଦୂର
ଦେଲେ ନେଇ ଧୃତରାଷ୍ଟ୍ର ରାଜାଙ୍କ କୋଳର ।
ପ୍ରଥମ ପୁତ୍ରକୁ କୋଳେ ଧରି କୁରୁପତି
ହୃଦୟ ଚକ୍ଷୁ ଲକ୍ଷଣ ଜାଣି ତୋଷମତି ।

ଅନ୍ଧ ବୋଇଲେ ବିଦୂର କି ଲକ୍ଷଣବନ୍ତ
ବିଦୂର ବୋଲେ ପନ୍ନଗ ନାରାୟଣ ଜାତ ।
ଶଙ୍ଖ ପଦ୍ମନିଧି ବେନି କରକୁ ଶୋଭନ
ମହା ଲକ୍ଷଣବନ୍ତ ଏ ତୋହର ନନ୍ଦନ ।
ଦକ୍ଷିଣ କରତାଳିରେ ଯବ ମତ୍ସ୍ୟ ଶୋହେ
ଅଙ୍ଗୁଳି ଅସ୍ଫୁଟ ପଦ୍ମପ୍ରାୟେ ଶୋଭା ପାଏ ।
ଚଉଷଠି ଲକ୍ଷଣରେ ଅତି ଗୁଣବନ୍ତ
କନ୍ଦର୍ପ ମୂରତି ମହାବଳବନ୍ତ ଶକ୍ତ ।
ଏସନ ଲକ୍ଷଣବନ୍ତ ପ୍ରଥମ ନନ୍ଦନ
ଜଗତଜନ ବନ୍ଦନ ଜାଣ ହେ ରାଜନ ।
ପୃଥିବୀକି ଧାରଣ ଏ ହେବ ଏକା ଜଣେ
ଲକ୍ଷେକ ରାୟେ ଖଟିବେ ଏହାର ଚରଣେ ।
ଜମ୍ବୁଦ୍ୱୀପ ମଧ୍ୟେ ହେବ ଏକଛାତ୍ରୀ ରାଜା
ଏହା ପ୍ରସାଦେ ପାଇବୁ ତୁ ବହୁତ ପୂଜା ।
ରାଜ୍ୟର କାରଣ ହେବ ତୋହର ତନୟେ
ସମ୍ପଦ ହିଁ ଅରଜିବେ ଅଳପ ସମୟେ ।
ତ୍ରୈଲୋକ୍ୟ ସାଧ୍ୟ କରିବେ ସର୍ବେ ମହାଦର୍ପେ
ମାନଗୋବିନ୍ଦ ବିରଧୁ ଦହିବେ ପ୍ରତାପେ ।
ଗୁଣବନ୍ତ ଧାର୍ମିକ ଏ ବିବେକ ବିଧ୍ୱଂସ
ଏ ପୁତ୍ର ପ୍ରସାଦେ ସ୍ୱାମୀ ନାଶ ଯିବ ବଂଶ ।
ଦୁଷ୍ଟ ପ୍ରକୃତି କଳହପ୍ରିୟ ନାହିଁ ଦୟା
କୋଟିଏ ପାଦେ କନ୍ଦରୁ ନ ଛାଡ଼ିବେ ଶ୍ରୀୟା ।
କୁଳକ୍ଷୟ ତନୟ ଏ ତୋର ଜ୍ୟେଷ୍ଠ ସୁତ
ଅଶାନ୍ତି ପ୍ରଶାନ୍ତ ଏ ନ ସହିବ ଜଗତ ।
ଏତେ କାଳଯାଏ ପୁତ୍ର ତୋହର ନ ଥିଲା
ଦୁର୍ବାସାଙ୍କ ମହାମନ୍ତ୍ରେ ଶତ ପୁତ୍ର ହେଲା ।
ଏକ ପୁତ୍ରକୁ ମୁରୁଛ ଏବେ ଦଣ୍ଡଧାରୀ
ଆଜ୍ଞାଦେବୁ କି ଏହାକୁ ପକାଇବି ମାରି ।
ଏ ମଲେ ତୋ ଅନେଶ୍ୱତ ପୁତ୍ର ଭଲେ ଥିବେ
ଚିରନ୍ତନ ରାଜ୍ୟ କରି ଧର୍ମ ନ ଛାଡ଼ିବେ ।
ଧୃତରାଷ୍ଟ୍ର ବୋଇଲେକ ଶୁଣ ହୋ ବିଦୂର
ଅନେଶ୍ୱତ ପୁତ୍ରଙ୍କର କହନ୍ତି ବିଚାର ।
ଦ୍ୱିତୀୟ ପୁତ୍ରକୁ ଧୃତରାଷ୍ଟ୍ର କୋଳେ ଦେଇ
କରପତ୍ର ଯୋଡ଼ି ଆଗେ ବିଦୂର କହଇ ।
ମହାକଷ୍ଟ ଭୋଗ ସ୍ୱାମୀ ଅତ୍ୟନ୍ତ ଦୁର୍ଭାର
ପର୍ବତ ପ୍ରାୟେ ଗରିଷ୍ଠ ବଳିଷ୍ଠ ଆବର ।
ବିଦୂର ମନ୍ତ୍ରୀ ଲକ୍ଷଣେ ବିଚାର କରଇ
ଗୋଟି ଗୋଟି କରି ରାଜା କୋଳେ ଦିଏ ନେଇ ।
ବୋଇଲା ଭୋ କୁଞ୍ଜଗଳ ଦେଶ ଅଧିପତି
ଏକେ ଏକେ ମହାରାଷ୍ଟ୍ର ଅନୀତି ପ୍ରକୃତି ।

ଅପ୍ରିୟ ଲକ୍ଷଣବନ୍ତ ସବେ ମହାଦୁଷ୍ଟ
ଆନନ୍ଦ ହେଉଛୁ ପଛେ ପାଇବୁ ତ କଷ୍ଟ ।
ଆଗେ ଉପୁଜିଣ ଯେବେ ନାଶଯାଏ ବଳା
ଶେଷେ ମହାକଷ୍ଟ ହୁଏ ବିଦୂର କହିଲା ।
ଧୃତରାଷ୍ଟ୍ର ବୋଲେ ବାବୁ କହିଲୁ ଏସନ
ପୁତ୍ରକେ ପୁଛିବା ପାଇଁ ନୁହେଁ ମୁଁ ଭାଜନ ।
ସବୁ ପୁତ୍ରଙ୍କର ବାଛି ବୋଇଲୁ ତୁ ଦୋଷ
କର୍ମେ ଯାହା ଥିବ ତାହା ଫଳିବ ଅବଶ୍ୟ ।
କର୍ମେ ଯାହା ମିଳିବ ତା ତେଜିବା କେମନ୍ତେ
ବ୍ୟାସକୁ ଚିନ୍ତିଲେ ଧୃତରାଷ୍ଟ୍ର ହୃଦଗତେ ।
ପରାଶର ନନ୍ଦନ ଯେ ସତ୍ୟବତୀ ସୁତ
ବ୍ୟାସ ବିଜେ କଲେ କୁରୁନାଥଙ୍କ ଅଗ୍ରତ ।
ସଞ୍ଜୟ ବୋଇଲେ ଉଠ କୁରୁ ନରପତି
ପରାଶରଙ୍କ ନନ୍ଦନ ବିଜେ କଲେ ଧାତି ।
ଆସ୍ଥାନୁ ଉଠିଲେ ବେଗେ ଗୁରୁକୁଳ ସ୍ୱାମୀ
ବ୍ୟାସଙ୍କ ଅଗ୍ରତେ ଶତ ସହସ୍ର ପ୍ରଣମି ।
ସବୁ ପୁତ୍ରଙ୍କୁ ବ୍ୟାସଙ୍କ ସନ୍ନିଧିରେ ଦେଇ
ଏକା ପଲ୍ୟଙ୍କ ଉପରେ ସବୁଙ୍କୁ ଶୁଆଇ ।
ତୋହର ପ୍ରସାଦେ ସିନା ଏ ମୋ ଶତସୁନୁ
ବ୍ୟାସ ବୋଇଲେ ହେ ଆସ ଚିହ୍ନମାନ ଚିହ୍ନୁ ।
ପ୍ରଥମ ପୁତ୍ର ବ୍ୟାସଙ୍କ କୋଳେ ରାଜା ଦେଲେ
ଏ ତୋର ପ୍ରଥମ ପୁତ୍ର ବ୍ୟାସ ପଚାରିଲେ ।
ଆମ୍ଭର ସୃଜନ ଚିହ୍ନ ଏହା ତହିଁ ଥାଉ
ଦେହ ଆଉଁଷି ବୋଇଲେ ବଜ୍ରଅଙ୍ଗ ହେଉ ।
ପ୍ରାପ୍ତ ହେଉ ଦଶଶତ ସିଂହ ପରାକ୍ରମ
ଜଗଜ୍ଜିତା ହୁଅ ଜିଣି ରାଜ୍ୟ ଦେଶ ଗ୍ରାମ ।
ଏସନକ ବର ତାକୁ ଦେଲେ ତପୋବନ୍ତେ
କାନ୍ଦନ୍ତେ ଦକ୍ଷିଣ ପାଦ ଲାଗିଲା ହୃଦଗତେ ।
ଅସାଷ୍ଟମେ ପଡ଼ିଲେ ଯେ ତହିଁ ବ୍ରହ୍ମମୁନି
ନାସିକା ବାଟେ ଶୋଣିତ ବହିପଡ଼େ ପୁଣି ।
ସାଷ୍ଟାମ ହୋଇଣ ଉଠି ବସି ବ୍ରହ୍ମବେତ୍ତା
ଅବତାର ମାତ୍ରେ ତୁ ରେ ଏଡ଼େ ବଳବନ୍ତା ।
କଳ୍ପନା ତୁଟିଲା କଲୁ ଚରଣ ପ୍ରହାର
ସଂଗ୍ରାମ କାଳରେ ଭଗ୍ନ ହେଉ ତୋ ପୟର ।
ଅୟୁତ ସିଂହର ଥିଲା ପ୍ରାକର୍ମ ତୋହର
ଏକ ସିଂହ ପରାକ୍ରମ ପାଆ ଅପହାର ।
ପ୍ରଥମେ ଦୁର୍ବୁଦ୍ଧି ଦୁଃଖ ଯୁଦ୍ଧେ ହେଲା ମନ
ତୋହର ଏ ପୁତ୍ର ନାମ ହେଉ ଦୁର୍ଯ୍ୟୋଧନ ।
ଧୃତରାଷ୍ଟ୍ରଙ୍କ ଅଗ୍ରତେ ସଞ୍ଜୟ କହିଲା
ନିଷ୍କଳଙ୍କ ପୁତ୍ରଠାରେ କଳଙ୍କ ରହିଲା ।

ଶୁଣିଣ ବିରସ ହେଲେ କୁରୁପତି ବୀର
ରଖି ରଖି ଚିନ୍ତାକଲେ ଦୁର୍ବାସା ପୟର ।
ଦଣ୍ଡ କମଣ୍ଡଳୁ କକ୍ଷା କଉପୁନି ଘେନି
ପ୍ରବେଶ ହୋଇଲେ ରାଜା ସନ୍ନିଧାନେ ମୁନି ।
ସଞ୍ଜୟ କହିଲେ ଶୁଣ ଆହେ ନରପତି
ବିଜୟ କଲେ ମହାତ୍ମା ଦୁର୍ବାସା ଯେ ଯତି ।
ଆସ୍ଥାନ ତେଜି ଅଇଲେ ପାଶେ ଅନ୍ଧ ରାଜା
ମୁନିଙ୍କର ପାଦେ ଅର୍ଘ୍ୟ ଦେଇ କଲେ ପୂଜା ।
ଭୋ ଦୁର୍ବାସା ମୁନି ମୋର ପୁତ୍ରକୁ ଯେ ଚାହାଁ
ତୋର ପ୍ରସନ୍ନେ ପାଇଲି ସିନା ମୁନି ଏହା ।
ଦୁର୍ବାସା ବୋଇଲେ ଶୁଣ ଆହେ ମୁନି ବ୍ୟାସେ
ପୁତ୍ରକୁ ନାମ ଦେଲେ କି ଧରିଣ ସନ୍ତୋଷେ ।
ବୋଲନ୍ତି ବ୍ୟାସ ଏହି ଯେ ଦୁଷ୍ଟପୁତ୍ର ଗୋଟି
ଦୁର୍ଯ୍ୟୋଧନ ନାମ ଆମ୍ଭେ ଏହାର ଦେଲୁଟି ।
ଆରେକ ପୁତ୍ର ଧଇଲେ ମହାମୁନି କୋଳେ
ମୁଖେ ଚୁମ୍ବଦେଇ ଲଗାଇଲେ ବକ୍ଷସ୍ଥଳେ ।
କୋଳେ ଧରି ବୋଇଲେ ଦୁର୍ବାସା ତପୋବନ୍ତ
ଶତସିଂହର ବଳ ଯେ ହେଉ ତୋତେ ପ୍ରାପ୍ତ ।
ହସ୍ତ ମୁଷ୍ଟି କରିଣ ଯେ କାନ୍ଦନ୍ତେଣ ବାଳ
ସେ ମୁଷ୍ଟି ବାଜିଲା ମୁନିଙ୍କର ବକ୍ଷସ୍ଥଳ ।
ଦୁଃସହ ହେବାରୁ ନାମ ଦୁଃଶାସନ ଦେଲେ
ମୁଷ୍ଟି ବାଜନ୍ତେ ଦୁର୍ବାସା ଅସାଷ୍ଟମ ହେଲେ ।
ଆତ୍ମ ସମର୍ପଣ ବୋଲି ଅନୁ ଗ୍ରହ କଲେ
ରାଗ ସହି ନ ପାରିଣ ଅଭିଶାପ ଦେଲେ ।
ଆରେ ତୁ ଦକ୍ଷିଣ ଭୁଜେ ପ୍ରହାରିଲୁ ମୁଥେ
ଆତ୍ମା ବିସର୍ଜନ ମୋର ତୋର ମୁଥଘାତେ ।
ମୋର ଶାପ ତୋ ଉପରେ ଯାଉ ବାରେ ପଡ଼ି
ସୋଦର ମାରୁ ତୋ ଦକ୍ଷ ଭୁଜକୁ ଉପାଡ଼ି ।
ଏସନକ ଶାପ ଦେଲେ ଦୁର୍ବାସା ମହର୍ଷି
ଶାପ କଥା ଶୁଣି ବ୍ୟାସ ମନେ ମନେ ହସି ।
ସଞ୍ଜୟ ବୋଇଲେ ଶୁଣ ଆହେ ଧୃତରାଷ୍ଟ୍ର
ଋଷିର ଯୋଗୁ ହେଉଛି ତୋର ପୁତ୍ର କଷ୍ଟ ।
ଜାତ ହିଁ କଲେ ଆବର ବର ହାଦେ ଦେଲେ
ରାଗ ସହି ନ ପାରିଣ ଶାପେ ପ୍ରଭାବିଲେ ।
ଯେହ୍ନେ କର୍ମ ତେହ୍ନେ ଦୋଷ ତୋର ପ୍ରାପ୍ତ ହେଉ
ଋଷିଙ୍କ କୋଳେ ନ ଦିଅ ପୁତ୍ରଙ୍କୁ ତୁ ଆଉ ।
ବ୍ୟାସ ବୋଇଲେ ଦୁର୍ବାସା ଋଷି ମହାମନ୍ତ୍ରେ
ଶତପୁତ୍ର ମହାରାଜା ପ୍ରାପ୍ତ ହେଲା ତୋତେ ।
ଆଦ୍ୟେ ତୁ ଅକ୍ଷର ଥାଇ ସବୁଙ୍କର ନାମ
ପ୍ରଥମ ପୁତ୍ରର ନାମ ଦେଲୁ ଦୁର୍ଯ୍ୟୋଧନ ।

ଦ୍ୱିତୀୟ ପୁତ୍ରର ନାମ ଅଟେ ଦୁଃଶାସନ
ଯମରେ ପ୍ରତାପୀ ସେହୁ ଅତି ବଳବାନ ।
ତୃତୀୟ ପୁତ୍ରର ନାମ ହୋଇଲା ଦୁର୍ଜ୍ଜୟ
ଦୁର୍ବାଳକ ନାମ ଦେଲେ ଚତୁର୍ଥ ତନୟ ।
ଦୁର୍ଜ୍ଜନ ନାମ ହୋଇଲା ପଞ୍ଚମ ପୁତ୍ରର
ଦୁର୍ବେଦ ନାମ ହୋଇଲା ଷଷ୍ଠ ତନୟର ।
ଦୁଃଭେଦ ନାମ ହୋଇଲା ସପ୍ତମର ଜାଣ
ଦୁର୍ଦ୍ଧମ ହୋଇଲା ଜାଣ ଅଷ୍ଟମର ନାମ ।
ନବମ ପୁତ୍ରର ନାମ ହୋଇଲା ଦୁରନ୍ତ
ଦଶମ ପୁତ୍ର ଦୁଃସହ ନାମ ହେଲା ଖ୍ୟାତ ।
ଏକାଦଶ ପୁତ୍ର ନାମ ହୋଇଲା ଦୂରମ
ଦ୍ୱାଦଶ କୁମର ନାମ ହୋଇଲା ଦୁଃସମ ।
ତ୍ରୟୋଦଶ ପୁତ୍ର ନାମ ହୋଇଲା ଦୁର୍ଗମ
ଚତୁର୍ଦ୍ଦଶ ପୁତ୍ର ନାମ ହୋଇଲା ଦୁଷ୍କାମ ।
ପଞ୍ଚଦଶ ପୁତ୍ରର ନାମ ହୋଇଲା ଦୁଶର
ଷୋଡ଼ଶ ପୁତ୍ରର ନାମ ହେଲା ଦୂରାଚାର ।
ସପ୍ତଦଶ ପୁତ୍ରର ନାମ ଦୁର୍ଦ୍ଧର୍ଷ ଅଟଇ
ଅଷ୍ଟାଦଶ ପୁତ୍ର ନାମ ଦୁର୍ମଦ ଯେ ଦେଇ ।
ଊନବିଂଶ ପୁତ୍ର ନାମ ହେଲା ଦୂରଦୃଷ୍ଟ
ବିଂଶ ନାମ ଦୁଷ୍ଟନକ ଅଟଇ କନିଷ୍ଠ ।
ଦୁର୍ଭାଗ୍ୟ ନାମ ବହିଲା ଏକବିଂଶ ବାଳ
ଦ୍ୱାବିଂଶ ନନ୍ଦନ ନାମ ହୋଇଲା ଦୁର୍ବଳ ।
ଦୁର୍ଭାନୁ ନାମ ବହିଲା ତେଇଶ ନନ୍ଦନ
ଚତୁର୍ବିଂଶ କୁମାରର ନାମ ଦୁରନ୍ତନ ।
ପଞ୍ଚବିଂଶ ପୁତ୍ର ନାମ ଅଟଇ ଦୁର୍ଘଟ
ଛବିଶ ପୁତ୍ରର ନାମ ଅଟଇ ଦୁର୍ଜ୍ଜଟ ।
ଦୁର୍ମନ ନାମ ବହିଲା ସପ୍ତବିଂଶ ସୁତ
ଦୁର୍ଦ୍ଧର୍ଷ ନାମରେ ଅଷ୍ଟବିଂଶ ପୁତ୍ର ଖ୍ୟାତ ।
ଦୁର୍ଷଣ ବୋଲାଇ ଊନବିଂଶ ଯେ ତନୁଜ
ଦୁରକ୍ଷ ହୋଇଲା ଯେ ତ୍ରିଂଶତ ଆତ୍ମଜ ।
ତାର ଅନୁଜ ଦୁର୍ଦ୍ଦକ୍ଷ ଦୁର୍ଦ୍ଧର୍ଷ ଏ ବେନି
ଦୁଭାକ୍ଷ ଦୁରୁବ ଦୁଷ୍ଟୀଡକ ମହାଜ୍ଞାନୀ ।
ଦୁଷ୍ପର ଦୁର୍ଦ୍ଧର ସୁତ ଆବର ଦୁଃଖଦ
ଦୁର୍ମେଧ୍ୟ ଦୁଷ୍କ୍ରିୟ ଦୁରାସଦା ଦୁରାପଦ ।
ଦୁରାଶୟ ଦୁରାନନ୍ଦ ଦୁର୍ବୀର ଦୁର୍ମର
ଏକୁ ଏକ ମହାବଳୀ ଅଟନ୍ତି କୁମାର ।
ଦୁଷ୍ପଦ ଦୁର୍ଘତ ଦୁରାଧାର ଯେ ଦୁଶ୍ୱର
ଦୁସ୍ତବ ଦୁଃଶଙ୍କ ପୁଣି ଦୁର୍ମଦ ଆବର ।
ଦୁରକ୍ଷକ ଦୁରାସଣ୍ଡ ଦୁଃଶୀଳ ଦୁକୁହ
ଦୁଃସହ ଦୁସ୍ତେକ ଆଉ ଦୁଃସଙ୍ଗ ଦୁବହ ।
ଦୁର୍ବାସକ ଦୁରାତ୍ମା ଯେ ଦୁର୍ବିହ ଦୁଶ୍ୱର
ଦୁଷ୍କାଳ ଦୁଷ୍କମ ଆଉ ଦୁଃସାଧ୍ୟ ଦୁର୍ବାର ।
ଦୁର୍ଗୁଣ ଦୁର୍ଭିକ୍ଷ ଦୁରାଧକ୍ଷ ଦୁଷ୍ପ୍ରଧକ୍ଷ
ଦୁଃସ୍ୱଭାବ ଦୁଷ୍କର୍ମ ସେ ଦୁର୍ନିଷ୍ଠ ଦୁସ୍ପର୍ଶ ।
ଦୁର୍ଭୁଜ ଦୁର୍ମେହ ଦୂରନ୍ତକ ଯେ ଦୁଷ୍ପାପ
ଦୁରାର୍ପ ଦୁଷ୍ପାର ଆଉ ଦୁଃଶୟ ଦୁଃଷ୍ପାପ ।
ଦୁରାକ୍ଷେପ ଦୁଷ୍ପପଞ୍ଚ ଦୁର୍ଲ୍ଲଭ ଦୁସ୍ତପ
କାଳାଗ୍ନି ସଦୃଶ ଦେଖାଯାଏ ତାଙ୍କ ରୂପ ।
ଦୁରଦ ଦୁଷ୍ପଠ ଦୁଷ୍ଟଦମନ ଦୁଜ୍ଜର
ଦୁର୍ଦ୍ଦଦ ଦୁସ୍ପପ ଦୁର୍ଗ ରୋଗର ଦୁର୍ଦ୍ଦର ।
ଦୁରତ୍ୟୟ ଦୂରାମୟ ଦୁଃସାଧ୍ୟ ଏ ଶର
ଦୁର୍ବାସା ମନ୍ତ୍ରେ ଉତ୍ପତ୍ତି ଦୁର୍ନାମ ସଭିଏଁ ।
ଦୁର୍ବାସା ବଦନ୍ତି ଆହେ ଶୁଣ ଧୃତରାଷ୍ଟ୍ର
ଏକୁ ଏକ ପୁତ୍ରେ ତୋର ହୋଇବେ ବଳିଷ୍ଠ ।
ସୁରବନ୍ତ ପୁତ୍ରନ୍ତ ତୁ ଘେନି କୁରୁସାଇଁ
ସୁଖେ ରାଜ୍ୟ ଭୋଗ କର ପାଞ୍ଚଦଣ୍ଡ ଭୂଇଁ ।
ପଣ୍ଡୁର ପ୍ରସାଦେ ତୋର ନାହିଁ ନା ବିପତ୍ତି
ଆପେ କଷ୍ଟ ପାଇତୋର ସୁଖ ଚିନ୍ତେ ନିତି ।
ଏ ରୂପରେ ତିଆରିଣ ମୁନି ଗଲେ ତୀର୍ଥେ
ବ୍ୟାସେ ବିଜେ କଲେ ଶତଶୃଙ୍ଗ ପରବତେ ।
ପଣ୍ଡୁ ପ୍ରଣତି କଲେ ସେ ବ୍ୟାସଙ୍କର ପାଦେ
ଅନେକ ସମ୍ପତ୍ତି ମୁନି ତୁମ୍ଭର ପ୍ରସାଦେ ।
କାହିଁ ଥିଲ ଆହେ ତାତ ସତ୍ୟବତୀ ପୁଅ
ହସ୍ତିନା କୁଶଳବାର୍ତ୍ତା ଜାଣିଥିଲେ କହ ।
ବ୍ୟାସ ବୋଇଲେ ଦୁର୍ବାସା ଋଷି ମନ୍ତ୍ରବଳେ
ଶତ ପୁତ୍ର ଉପୁଜିଲା ଗାନ୍ଧାରୀର କୋଳେ ।
ମନ୍ଦ ଭାବ କରିବେ ସେ ବଡ଼ ବଳବନ୍ତା
ଦୁଷ୍ଟ ପ୍ରକୃତି ଆବର ହେବେ ଜଗଜିତା ।
ତିଆରି ପଣ୍ଡୁ ନୃପତି ତୋର ଭାରିଯାକୁ
ଗାନ୍ଧାରୀର ପୁତ୍ରେ ରାଜ୍ୟ ନ ଦେବେ ତୁମ୍ଭଙ୍କୁ ।
ଦେବତାଙ୍କ ମଧ୍ୟେ ବଳବନ୍ତ ଯେ ମରୁତ
ଉପୁଜିଲା ସେ ପବନ ବୀର୍ଯ୍ୟେ ହନୁମନ୍ତ ।
ତ୍ରେତାଯୁଗେ ହୋଇଲା ଯେ ସେହି ମହାବୀର
ଏବେ ବାନ୍ଧିଲା ପର୍ବତେ ସପତ ସାଗର ।
ଶ୍ରୀରାମ ପ୍ରସାଦେ ସେହୁ ହୋଇଲା ତ୍ରିଜୀବୀ
ତା ତହୁଁ ପୁତ୍ରେକ ଜାତ କରୁ କୁନ୍ତୀଦେବୀ ।
ବଧୂଙ୍କ ପୁଣି ବୋଇଲେ ସେ ଇନ୍ଦ୍ରଦେବତା
ତା ଯୋଗେ ପୁତ୍ର ଗୋଟିଏ ଜାତ କର ମାତା ।
ଏତେ କାର୍ଯ୍ୟ ଜାଣ ଗୋ ଦଇବ ତୋହର
ତୁ ବୁଦ୍ଧିମତୀ ବିଚାରି କାର୍ଯ୍ୟ ବେଗେ କର ।

ଏମନ୍ତ ତିଆରି ତହୁଁ ବ୍ୟାସଗଲେ ଶୂନ୍ୟେ
ଅନ୍ତରୀକ୍ଷ ମାର୍ଗେ ଚଳିଗଲେ ସେ ଗଗନେ ।
ଜୟ ତୁ ଜୟ ତୁ ଦେବୀ ଶ୍ରୀ ଚଣ୍ଡୀ ଶାରଳା
ତହିଁ ଯେ ମାତା ଅଭୟା ବଗଳା ମଙ୍ଗଳା ।
ତୁ ଯାହା କହୁ ରାତ୍ରେ ମୁଁ ତାହା ଯେ ଲେଖଇ
ମୂର୍ଖ ଅଜ୍ଞାନ ମୋହର ବୁଦ୍ଧି ଅବା କାହିଁ ।
ଜନ୍ମେ ଜନ୍ମେ ହେବାରୁ ମୁଁ ତୋ ଚରଣେ ଦାସ
ତେଣୁ ମୋ ନାମ ଶ୍ରୀ ଚଣ୍ଡୀ ଶାରଳା ଯେ ଦାସ ।

—o—

## ଭୀମ ଜନ୍ମ

ବଦନ୍ତି ଅଗସ୍ତି ଆହେ ମନୁ ଦଣ୍ଡଧର
ସାକ୍ଷାତ ଧର୍ମ ସ୍ୱରୂପ ଧର୍ମ ଯୁଧିଷ୍ଠିର ।
ଅନେକ ଆନନ୍ଦ କୁନ୍ତୀ ହେଲେ ପୁତ୍ର ଦେଖି
ଅନେକ ସ୍ନେହେ ପାଳନ୍ତି ପୁତ୍ର ଯୁଧିଷ୍ଠିଙ୍କି ।
ସାତ ବରଷ ହୁଅନ୍ତେ ଧର୍ମଙ୍କର ସୁତ
ଚାଲନ୍ତେଣ ଚରଣ ନ ବାଜେ ଭୂମିଗତ ।
ଦିନେ ଏକ ମାଛି ବସି ଦଂଶିଲାକ କାୟ
ଧୀରେ ଉଡ଼ାଇ ଦେଲେ ସେ ବାଳୁତ ତନୟ ।
ଦିନେ ବୃକ୍ଷୁ ଝିଟିପିଟି ଗୋଟିଏ ପଡ଼ିଲା
ପର୍ବତରେ ପଡ଼ି ସେହି ଅସାକ୍ଷମ ହେଲା ।
ଖେଳୁ ଖେଳୁ ତାହାକୁ ଯେ ଯୁଧିଷ୍ଠିର ଦେଖି
ଲକ୍ଷଣବନ୍ତ କୁମର ତାହାକୁ ଯେ ଫୁଙ୍କି ।
କୁନ୍ତୀଦେବୀ ଦେଖି ତାହା ହୋଇଲେ ଆଶ୍ଚର୍ଯ୍ୟ
ବିଚାରନ୍ତି ନୋହିବ ଏ ପୁତ୍ରେ କିଛି କାର୍ଯ୍ୟ ।
ଆଦ୍ୟହୁଁ ହିଂସା କରଇ ମୋଠାରେ ଗାନ୍ଧାରୀ
ଏ ପୁତ୍ର ଘେନିକି ମୁହିଁ କାର୍ଯ୍ୟ କରିପାରି ।
ଅତି ଧାର୍ମିକ ପଣେ କି ରହେ କ୍ଷତ୍ରିପଣ
ଦୁଃଖେ ପାଇ ଉପୁଜାଇ ନୋହିଲା କାରଣେ ।
ଭୋ ଧର୍ମ ପୁରୁଷ ମୋର ଏସନକ କର୍ମ
କେବଣ ପାପକ୍ଷଣେ ମୁଁ ହୋଇଲଇଁ ଜନ୍ମ ।
ସ୍ତିରୀ ଜନ୍ମ ବୃଥା ମୋର ହୋଇଲି ଅସତୀ
କେତେ ଭର୍ତ୍ତାରେ ଏ ଦିନ ଯିବ ନାହିଁ ଗତି ।
ପ୍ରଥମ ଆଦିତ୍ୟ ଦେବ ବିଜେ ପଣ୍ଡୁରାୟେ
ତୃତୀୟେ ଧର୍ମ ଦେବତା ବୀର୍ଯ୍ୟେ ପୁତ୍ର ପାଏ ।
ତେତେକେ ଭୋ ଧର୍ମ ମୋର ନ ଗଲା ଦୁଷ୍କର୍ମ
ଏ ସଂସାରେ ଉପୁଜି ନ କଲି କିଛି କର୍ମ ।
କେମନ୍ତେ ମୁକତି ମୋତେ କରିବଟି ଯମ
ରାଜକୂଳେ ଉପୁଜି ମୁଁ ଉପେକ୍ଷିଲି ଧର୍ମ ।
ରାଗ ମୋହ ଦେହେ ଥିଲେ ଉପୁଜଇ ପାପ
ରାଜପଦେ ବସିଲେ ଯେ ବଢ଼ଇ ପ୍ରତାପ ।

ଏତେକ ହୃଦେ ବିଚାର କରି ଦେବୀ ବସି
ଆଦିତ୍ୟ ଅସ୍ତ ହୋଇଣ ପ୍ରବେଶିଲେ ନିଶି ।
ଅନ୍ଧାର ବିଜେ କଲେ ଯେ ପଣ୍ଡୁ ସେ ବିପିନେ
ବେନି ଭାର୍ଯ୍ୟା ପୁତ୍ର ଘେନି ଅଛନ୍ତି ସେ ସ୍ଥାନେ ।
ମାଦ୍ରୀ କୋଳେ ସମର୍ପିଲେ କୁନ୍ତୀ ପୁତ୍ରଗୋଟି
ପ୍ରିୟ ରସ କହୁଁ ମାଦ୍ରୀ ଶୋଇଲେ ଯୁଧିଷ୍ଠି ।
ଶ୍ରାବଣ କୃଷ୍ଣପକ୍ଷ ଯେ ନବମୀର ତିଥି
ତେର ଦଣ୍ଡାନ୍ତେ ଦଶମୀ ବାର ବୃହସ୍ପତି ।
ରୋହିଣୀ ନକ୍ଷତ୍ର ଚନ୍ଦ୍ର ସେ ଦିନର ଭୋଗ
ବାଣିଜ୍ୟ ନାମେ କରଣ ଧ୍ରୁବ ନାମେ ଯୋଗ ।
କୁନ୍ତୀଙ୍କର ଅଙ୍ଗକୁ ଯେ ବାଧିଲା ଅନଙ୍ଗ
ସେ ଲାଗି ଦେବୀ ଶଯ୍ୟାକୁ ଗଲେ ବେଗ ବେଗ ।
ଶଯ୍ୟା ଗୋଟିଏ ନିର୍ମାଣ ତହିଁ ଦେବୀ କଲେ
ତହିଁରେ ବସି ଦୁର୍ବାସା ମାଳିକି ଘେନିଲେ ।
ପଞ୍ଚଭୂତ ଆତ୍ମା ଲୟ କରିଣ କୋଇନ୍ତା
ଧ୍ୟାନେ ଚିନ୍ତିଲେ ଦୁର୍ଦ୍ଧାନ୍ତ ପବନ ଦେବତା ।
ଅପୂର୍ବ ପୁରୁଷ ସେହି ଋଷି ମହାମନ୍ତ୍ରେ
ବିଜେ ପବନ ଦେବତା କୁନ୍ତୀ ଶଯ୍ୟାଗତେ ।
ବାମେ କୃପାଣ ଦକ୍ଷିଣ ମୁଦ୍ଗର ପାଣି
ଦେଖିଣ ଡରିଲେ କୁନ୍ତଭୋଜର ଦୁଲ୍ଲଣୀ ।
ପ୍ରଚଣ୍ଡ ତେଜ ଲୋହିତବର୍ଣ୍ଣ ଦିବ୍ୟରୂପ
ଅଦ୍ଭୁତ ମହାତ୍ମା ବିଜେ କାହୁଁ ମୋ ସମୀପ ।
ବୋଲନ୍ତି ଶୂନ୍ୟପୁରୁଷ ସୁମରିଲୁ ମୋତେ
ଦୁର୍ବାସାଙ୍କ ମନ୍ତ୍ରେ ଜପାମାଳା ଧରି ହସ୍ତେ ।
ଚେତନା ପୁରୁଷ ମୁହିଁ ପବନ ଦେବତା
ଯାହା ତୁ ମାଗିବୁ ପ୍ରାପ୍ତ ହୋଇବ ଏକଥା ।
ତୁ ମୋତେ ରମଣ ଦେବୁ ଭୋଜର କୁମାରୀ
ମୂର୍ତ୍ତିମନ୍ତ ହେଲେ ରକ୍ଷ ମନ୍ତ୍ରକୁ ଯେ ଡରି ।
ସ୍ୱରୂପ ଦେଖିଣ ଦେବୀ ସଲ୍ଲଜିତ ମତି
ପବନ ଦେବତା କୋଳେ ଧଇଲେ ତଡ଼ତି ।
ଯେସନେ ପ୍ରଭୁ ଭାରିଜା ବିବସନ ଶାୟୀ
ସ୍ୱାମୀକି ଛାଡ଼ିଲା କେହି ସନ୍ନିଧିରେ ନାହିଁ ।
ମରୁତ ଦେବତା ତୁଲେ ଶୃଙ୍ଗାରକୁ ଇଚ୍ଛା
ବଢ଼ିଲା ଉଭୟଙ୍କର ମନୋହର ବାଞ୍ଛା ।
ପଞ୍ଚ ପବନ ଘେନିଣ ପଚିଶ ପ୍ରକୃତି
ବଳବନ୍ତ ଦେବ ସଙ୍ଗେ ଅନାଦି ଶକତି ।
ଚନ୍ଦ୍ର ଷୋଳକଳା ଘେନି ହୋଇଣ ପ୍ରସନ୍ନ
ଛାଡ଼ିଗଲା ମହାବୀର୍ଯ୍ୟ ଦୁର୍ଦ୍ଦଣ୍ଡ ପବନ ।
ପବନ ଦେବ ଅମୋଘ ରେତ ଗର୍ଭେ ପଡ଼ି
ମୂର୍ଚ୍ଛାଗତ ହେଲେ ଦେବୀ ତା ସହି ନ ପାରି ।

କୋଳ କରି ପବନ ଯେ କଲେ ଜୀବନ୍ୟାସ
ନିଜ ଆତ୍ମା ଯାଇ ତାର ଗର୍ଭରେ ପ୍ରବେଶ ।
ସହି ନ ପାରିଲେ ମହାଭାରା କୁନ୍ତୀ ଦେବୀ
ସଇନ୍ଦୁ ପୁତ୍ରେକ ଚାହିଁ ଲକ୍ଷଣେ ପ୍ରସବି ।
କୁନ୍ତୀ ଦେବୀଙ୍କ ଗର୍ଭରୁ ପୁତ୍ର ଅବତରି
ଥରହର କମ୍ପୁଅଛି ଶତଶୃଙ୍ଗ ଗିରି ।
ଭାବେ କମ୍ପିଲା ଆକାଶ ମଣ୍ଡଳ ବ୍ରହ୍ମାଣ୍ଡ
ପର୍ବତ ଘେନି କମ୍ପିଲା ମହୀ ନବଖଣ୍ଡ ।
ପୁତ୍ରକୁ ଦେଖି ପବନ ଆନନ୍ଦିତ ଚିତ୍ତେ
ଭାଳଇ ଭୁବନ କମ୍ପେ ଅନୁଦ୍‌ଗତ୍ ବାତେ ।
ମହାବଳବନ୍ତ ସେହୁ ଦେଖିଣ ଆତ୍ମଜ
ଭୀମସେନ ନାମ ଦେଲେ ବାୟୁ ଦେବରାଜ ।
ପୁତ୍ରନାମ ଦେଇ ଚଳିଗଲେ ବୀରମଣି
ନନ୍ଦନ ଦେଖି ଆନନ୍ଦ ଭୋଜର ଦୁଲ୍ଲଣୀ ।
ମହାଘୋର ଅନ୍ଧକାର ଜଳଦ ସମୂହେ
ପେଷନ୍ତି ସେ ବଳାହକେ କନକ ଭୁରୁହେ ।
ପର୍ବତେ ପୁତ୍ରକୁ ଘେନି ରାତ୍ରେଛନ୍ତି ବସି
ମହାମତ୍ତ ବ୍ୟାଘ୍ର ଏକ ଗର୍ଜିଲାକ ଆସି ।
ବ୍ୟାଘ୍ରର ଗର୍ଜ୍ଜନ ଶୁଣି ଭୟ ପାଇ ଚିତ୍ତେ
ପୁତ୍ରକୁ ତଳେ ପକାଇ ଲୁଚିଲେ ପର୍ବତେ ।
ଚାରିଶତ ଯୋଜନ ଯେ ଶତଶୃଙ୍ଗ ଗିରି
ରସାଗତ ହେଲା ପୁତ୍ର ଯହୁଁ ତହିଁ ପଡ଼ି ।
ମହାଭାରା ପାଇ ଗିରି ଗଲା ରସାତଳେ
ଦେଖିଣ ଛାପିଲେ ସ୍ୱର୍ଗପୁରେ ଦିଗପାଳେ ।
ପୁତ୍ରକୁ ପକାଇ କୁନ୍ତୀ ପଳାଇଲେ ଡରେ
ଧାତିକାରେ ଉଠିଲେ ସେ ପର୍ବତ ଉପରେ ।
ପର୍ବତେ ପଡ଼ି କାନ୍ଦଇ ଉଚ୍ଚେ ବାଳଶିଷି
ଶ୍ରାବଣ ମାସ ଅନ୍ଧାର ସଲିଳ ବରଷି ।
ପଡ଼ିଛି ଉତ୍ତାନଶାୟୀ ହୋଇ ପାଣିଖାଇ
ବାଳୁତ ନନ୍ଦନ ଶୀତେ ଥରହର ହୋଇ ।
ଗର୍ଜ୍ଜନ ନାଦ କରିଣ ଧାଏଁ ବ୍ୟାଘ୍ରବର
ପୁତ୍ରକୁ ଘୋଟିଲା ଘୋର ଅନ୍ଧାର ପ୍ରକାର ।
କାନ୍ଦଇ ଯେ ଭୀମସେନ ଚରଣ ହଲାଇ
ଲାଗିଲା ବ୍ୟାଘ୍ର ମୂର୍ଦ୍ଧାରେ ତାର ପାଦଯାଇ ।
ଭୀମର ଦକ୍ଷିଣ ପାଦେ ବ୍ୟାଘ୍ରର ମୂର୍ଦ୍ଧନା
ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା ଶତଚୁନା ।
ରୁଧିର ବୃଷ୍ଟି ହୋଇଲା ମଲା ବ୍ୟାଘ୍ରବର
ପଡ଼ିଛି ପ୍ରଭାତଯାଏ ପର୍ବତ ଉପର ।
କୁନ୍ତୀ ଉଠିଅଛନ୍ତି ଯେ ବୃକ୍ଷର ଉପରେ
ପଣ୍ଡୁ ଆସି ହେଲେ ଶତଶୃଙ୍ଗ ପର୍ବତରେ ।

ପଣ୍ଡୁ ଆସିଣ ପ୍ରବେଶି ଦେଖିଲେ ପର୍ବତ
ରୋଦନ କରୁଛି ପଡ଼ି ସୁନ୍ଦର ବାଳୁତ ।
ପୁତ୍ରକୁ ଘେନିଣ ରାଜା ହୋଇଲେ ଚକିତ
ଭାଳିଲେ ମାୟା କରିଛି କେବଣ ଦୈବତ ।
ଅନଙ୍ଗ ସ୍ୱରୂପ ତେଜ ବ୍ରହ୍ମାଣ୍ଡରେ ଘୋଟି
ବିଚାରନ୍ତି ପଣ୍ଡୁରାୟେ କାହା ପୁତ୍ର ଏଟି ।
ସ୍ୱାମୀଙ୍କି ଦେଖିଣ କୁନ୍ତଭୋଜର କୁମାରୀ
ଭୟ ଛାଡ଼ି ବୃକ୍ଷରୁ ସେ ଦେବୀ ଅବତରି ।
ପଣ୍ଡୁରାଜା ଦେଖନ୍ତେ ସେ କାନ୍ଦଇ କୁମର
ବାମପାଦ ବାଜିଲା ସେ ପର୍ବତ ଶିଖର ।
ଅନାଦି ସିଦ୍ଧ ଅଟଇ ସେହି ଗିରିବର
ଶୃଙ୍ଗ ତୁଟନ୍ତେ ନିରତେ ବହିପଡ଼େ କ୍ଷୀର ।
ଦଶ ଯୋଜନ ଛଳ ସେ ଯୋଜନେ ଉତ୍ସର୍ଗ
କାଣି ଆଙ୍ଗୁଠି ବାଜିଣ ଭଗ୍ନ ହେଲା ଶୃଙ୍ଗ ।
କୋପେ ପ୍ରଜ୍ୱଳିତ ହୋଇ ବୋଲେ ଗିରିବର
ପ୍ରଥମେ ମୋତେ କି କଲୁ ପାଦେ ଯେ ପ୍ରହାର ।
ଏଣୁ ମୋର ଶାପ ତୋତେ ଫଳୁରେ କୁମର
ପ୍ରଥମ ଯୁଦ୍ଧରେ ତୋର ନିଶ୍ଚେ ହେବ ହାର ।
ଏସନକ ଶାପ ଯହୁଁ ଗିରିବର ଦେଲା
ଧାଇଁ ଆସି କୁନ୍ତୀ ଦେବୀ ପୁତ୍ର ସମ୍ଭାଳିଲା ।
ପଣ୍ଡୁ ପୁଚ୍ଛାକଲେ ଏହୁ କାହାର ନନ୍ଦନ
ଏ ପୁତ୍ର ଦେଖି ସାନନ୍ଦ ହୁଏ ମୋର ମନ ।
ସ୍ୱାମୀ ତୁମ୍ଭେ ଯହୁଁ ଛାଡ଼ିଗଲ ଆଜ ରାତି
ମେଘ ବରଷେ ଅନ୍ଧାର ଧରି ଘୋର ମୂର୍ତ୍ତି ।
ତୋଷେଣ ମୁଁ ସୁମରିଲି ପବନ ଦେବଙ୍କୁ
ସେ ପୁରୁଷ ଆବୋରିଲେ ଆସିଣ ଆମ୍ଭଙ୍କୁ ।
ତା ତହୁଁ ପୁତ୍ର ପ୍ରାପତ ହୋଇଲା ତ ମୋତେ
ଭୀମସେନ ନାମ ତାକୁ ଦେଲେତ ମରୁତେ ।
ଶୁଣିଣ ପଣ୍ଡୁ ରାଜନ ଅନେକ ଉସତ
ବୋଇଲେ ପୁତ୍ର ମୋ କୋଳେ ଦେବୁ କି ସଙ୍ଗାତ ।
ପର୍ବତ ଶାପ ଦେଇ ଯେ ବାଳୁତ ପୁଅକୁ
ଅନେକ ବିନୟେ ଦେବୀ ବୋଇଲେ ତାହାକୁ ।
ହେ ମହତ ପର୍ବତ ତୁ ଆମ୍ଭଙ୍କୁ ସମ୍ଭାଳି
ପବନ ଦେବତାର ତୁ ସହିଲୁ ଆର୍ଦ୍ଦୋଳି ।
ତୋହର ଆଶ୍ରାରେ ଆମ୍ଭେ କରିଅଛୁ ବାସ
ସହିବୁ ନାହିଁ କି ଆମ୍ଭ ଅଳି ଦଶଦୋଷ ।
ଅକଳଙ୍କ କରି ମୁହିଁ ପୁତ୍ର କଲି ଜାତ
ବାଳୁତକୁ କୋପ କିମ୍ପା କଲୁ ତୁ ପର୍ବତ ।
ବାଳ ପୁଅକୁ ଯେ ଶାପ ଦେଲୁ ନ ବିଚାରି
ତୁମ୍ଭଙ୍କୁ କାଟନ୍ତୁ ଜନେ ଖଣ୍ଡ ଖଣ୍ଡ କରି ।

ଆହୁରି ଶାପ ଦେବାକୁ ଲୋଡ଼ନ୍ତେ ସେ କୁନ୍ତୀ
ବିନୟ ଭାବ ବହିଣ ପର୍ବତ ବୋଲନ୍ତି ।
ଯେବଣ ଶାପ ତୁ କୋପେ ଦେଲୁଣି ଗୋ ମାୟେ
ଖଣ୍ଡନ କରାଇଲୁ ତୁ ଅତୁଟ ମୋ କାୟେ ।
ଆହୁରି ଶାପ ଦେବାକୁ ଲୋଡୁଅଛୁ ମୋତେ
ରହ ମାତା ଗୋ ପ୍ରସନ୍ନ ହେଲି ମୁହିଁ ତୋତେ ।
ପ୍ରଥମ ଯୁଦ୍ଧେ ଅବଶ୍ୟ ଏ ପୁତ୍ର ହାରିବ
ଦ୍ୱିତୀୟେ ଯୁଦ୍ଧେ ବସିବି ମୁଁ ଏହାର ଠାବ ।
ପବନର ବୀର୍ଯ୍ୟେ ଜାତ ଅଟଇ ତୋ ଭୀମ
ଏହାର ହୋଇବ ଶତସିଂହ ପରାକ୍ରମ ।
ମୁଁ ଯେତେବେଳେ ବସିବି ଏହାର ଦକ୍ଷିଣେ
ବୃକୋଦର ରୂପ ଏହୁ ଧରିବ ତକ୍ଷଣେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯଦ୍ୟପି ହୋଇବ
ବୃକୋଦର ରୂପ ଦେଖି ଭୟ ଉପୁଜିବ ।
ବସିଲୁ ତୁ ନିରଞ୍ଜନ ଦେବତାଙ୍କୁ ଘେନି
ଏଣୁ ପ୍ରତ୍ୟକ୍ଷେ ମାତ ଅଟୁ ତୁ ନିରଞ୍ଜନୀ ।
ପବନ ଘେନି ରମଣ କଲୁ ଆଜ ନିତି
ପ୍ରଭଞ୍ଜନ ନାମ ଆଙ୍କୁ ବହିଲୁ ଗୋ କୁନ୍ତୀ ।
ସତ୍ୟ ଅନ୍ତେ ତ୍ରେତା ଯୁଗେ ଗଉତମ ମୁନି
ଅହଲ୍ୟା ମହାସତୀ ଯେ ତାହାର କାମିନୀ ।
ସେ ଋଷି ଘୋର ଉତ୍ପତ୍ତି ହୋଇ ପ୍ରଭଞ୍ଜନା
ପିତାମାତା ନାମ ତୋର ଦେଲେକ ଅଞ୍ଜନା ।
ସେ ଜନମେ ବୀର୍ଯ୍ୟଦାତା ହୋଇଲେ ମରୁତ
ମହା ବଳବନ୍ତ ପୁତ୍ର ହନୁମନ୍ତ ଜାତ ।
ତେତ୍ରାଯୁଗେ ତୋତେ ବିଭା ହୋଇଲେ ଉତ୍ତଙ୍ଗ
ପୁଣି ହିଁ ପବନ ସଙ୍ଗେ ତୋହର ସଂଯୋଗ ।
ସେ ମହାବୀର୍ଯ୍ୟର ଭାଗ ତୁହି ଦେବୀ ସହୁ
ପୃଥ୍ୱୀର ନିମନ୍ତେ ତୁହି ମହାଭାର ବହୁ ।
ଏବେ କୁନ୍ତଭୋଜ ଘରେ ହୋଇଣ ଉତ୍ପତ୍ତି
ପ୍ରଥମେ ତୋଷିଲୁ ଦୁର୍ବାସା ଯେ ମହାଯତି ।
ସେ ଯୋଗେ ପ୍ରସନ୍ନ ହୋଇ ଦୟାକଲେ ବଳ
ଅଜପାମନ୍ତ୍ର ସହିତେ ଦେଲେ ଜପାମାଳ ।
ତୁ ଯେ ପରମ ବୈଷ୍ଣବୀ ଅଟୁ ଅନ୍ନପୂର୍ଣ୍ଣା
ମୋତେ ଦୟାକର ମାଗୋ ପଣ୍ଡୁ ରାଜବାମା ।
ପର୍ବତ ବାଣୀ ଶୁଣି ସନ୍ତୋଷ କୁନ୍ତୀ ହେଲେ
ତୁ ମହତ ଗିରିବର ବୋଲିଣ ବୋଇଲେ ।
ମୋହର ଶାପ ଯେ ତୋତେ ନୋହିବାକ ଆନ
ଥୋକାଏ ଖଣ୍ଡ ହୋଇ ଦେବ ଦେବତାମାନ ।
ଜଗତଯାକ ତୋତେ ଆରାଧନା କରିବେ
ତୋହର ଥିଲା ସ୍ଥାନେ ଦେବତାଏ ବସିବେ ।

ବଦନ୍ତି ଅଗସ୍ତି ଶୁଣ ମନୁମହାରଥା
ସାବଧାନେ ଭୀମସେନ ବାଳକାଳ କଥା ।
ଭୀମକୁ ଶୁଆଇ ଦେବୀ ଭୋଜର କୁମାରୀ
ରାନ୍ଧଣାବିଧି ଯୋଗାଡ଼ମାନ ବେଗେ ସାରି ।
ମାଦ୍ରୀ କୁନ୍ତୀ ବେନି ଯାଆ ଗଲେ ନଦୀସ୍ନାନେ
ପଣ୍ଡୁ ହିଁ ରହିଅଛନ୍ତି ଉଦ୍ଦାଳକ ବନେ ।
ରାନ୍ଧଣାଶାଳ ଭିତରେ ପଶିଲା ମାରୁତି
ଯେତେକ ପାକ ସମ୍ପାଦିଥିଲେ ଦେବୀ କୁନ୍ତୀ ।
ଭାତ ତିଅଣ ଯେତେକ ରାନ୍ଧିଥିଲେ ପୁଣି
ଅଧେଖ ଖାଇ ଅଧେକ ଥୋଇ ବୀରମଣି ।
ବାହୁଡ଼ି ସେଠାକୁ ଗଲା ହୋଇଣ ତଡ଼ତି
ସ୍ନାନସାରି ଅଇଲେ ସେ ମାଦ୍ରୀ ଦେବୀ କୁନ୍ତୀ ।
ପଣ୍ଡୁ ରାଜା ବିଜେ କଲେ ଶତଶୃଙ୍ଗ ଗିରି
ମଣୋହି ଠାବରେ ବିଜେ କଲେ ଦଣ୍ଡଧାରୀ ।
କୁନ୍ତୀଦେବୀ ବିଜେ କଲେ ରାନ୍ଧଣା ଶାଳରେ
ଦେଖିଲେ ଅନେକ ଅନ୍ନ ନାହିଁ ସେ ହାଣ୍ଡିରେ ।
ବାହୁଡ଼ି କହିଲେ ଯାଇ ପଣ୍ଡୁରାଜା ଆଗେ
ଭୋ ଦେବ ପାକ ଯୋଗାଡ଼ ନାହିଁ ଅର୍ଦ୍ଧଭାଗେ ।
ପଣ୍ଡୁ ବୋଇଲେ ସିଝିଲା ପକ୍ୱଶାଳି ଅନ୍ନ
ବିସୋଇଲେ ଅଳ୍ପ ହେବ ଅଛି ଏ ବିଧାନ ।
ଆହୁରି ଅର୍ଦ୍ଧେକ ଦେଲେ ଅନ୍ନ ଯେ ବ୍ୟଞ୍ଜନ
ଦେବ ପିତୃ ଦେଇ ଆପେ କଲେକ ଭୋଜନ ।
ଏମନ୍ତ ବାଳୁତ ଭୀଷ୍ମ ଭୁଞ୍ଜେ ଅନ୍ନ ନିତି
ଦିନୁ ଦିନ ବଢ଼ଇ ସେ ଶରଧା ପ୍ରକୃତି ।
ରଖି ଭୁଞ୍ଜନ୍ତେ ଅଳପ ଅଳପ ରହିଲା
ଏହିମତେ ବରଷେକ ପରିଯନ୍ତେ ଗଲା ।
ଜ୍ୟେଷ୍ଠ ଶୁକ୍ଳ ଚଉଠି ଯେ ସଉରି ବାସର
ଉତ୍ତରାଷାଢ଼ା ନକ୍ଷତ୍ର ଭୋଗ ସେ ଦିନର ।
ବବନାମେ କରଣ ଯେ ଶୁକ୍ଳ ନାମେ ଯୋଗ
ଦ୍ୱାଦଶ ଦିନ ବୃଷର ସଂକ୍ରାନ୍ତିର ଭୋଗ ।
ସେଦିନ ପାକଶାଳାରେ ପଶି ବାଳଶିଷି
ଶ୍ରଦ୍ଧା ପାଇଣ ଲୋଭରେ ଦେଲା ସର୍ବଗ୍ରାସି ।
ଭୋଜନ କଲା ତାହାର ଯେତେ ମନଇଚ୍ଛା
ଯୋଗାଡ଼ ସାରିଲା ହାଣ୍ଡିମାନ ହେଲା ତୁଚ୍ଛା ।
ତହୁଁ ବାହୁଡ଼ି ଶୋଇଲା ଶଯ୍ୟାରେ ସେ ଯାଇ
ସ୍ନାନ ସାରି ଦେବୀ କୁନ୍ତୀ ପ୍ରବେଶିଲେ ତହିଁ ।
ପ୍ରଥମ ହାଣ୍ଡି ଦେଖିଲେ ତହିଁ କିଛି ନାହିଁ
ଆଶ୍ଚର୍ଯ୍ୟ ହୋଇଲେ ଦେବୀ ସବୁଯାକ ଚାହିଁ ।
ବିସ୍ମୟ ହୋଇ ପ୍ରବେଶ ହେଲେ ସ୍ୱାମୀ କତି
କେବଣ ଚରିତ ବୋଲି ପୁଚ୍ଛିଲେ ନୃପତି ।

କୁନ୍ତୀ ବୋଇଲେ ଭୋ ଦେବ ରାନ୍ଧଣା ଯୋଗାଡ଼
କିଛି ହିଁ ନାହିଁ ହାଣ୍ଡିରେ ତୁଚ୍ଛା ହାଣ୍ଡିଶାଳ ।
ପଣ୍ଡୁ ବୋଇଲେ ତୁ ସ୍ଥିର ହୋଇଥାଅ ପ୍ରହା
ତଦନ୍ତ କରିଣ ଦେଖି ବୁଝିବାକ ଏହା ।
ଶୀତଳ ଦ୍ରବ୍ୟ ଭୁଞ୍ଜିଲେ ଆଣି ନୃପମଣି
ଦିନ ଅନ୍ତ ଗଲା ପୁଣି ପାହିଲା ରଜନୀ ।
ପଣ୍ଡୁ ବୋଇଲେ ଆମ୍ଭଙ୍କୁ କ୍ଷୁଧା ବଡ଼ ଲାଗେ
ଦ୍ୱିଗୁଣ କରି ରାନ୍ଧଣା କର ଯାଇ ବେଗେ ।
କୁନ୍ତୀ ମାଦ୍ରୀ ଦୁହେଁ ମିଶି ପାକସଞ୍ଚା କଲେ
କବାଟ କିଳି ନଦୀକୁ ସ୍ନାନଅର୍ଥେ ଗଲେ ।
ବଦନ୍ତି ଅଗସ୍ତି ଶୁଣ ହେ ମନୁ ମହତ
ଭୀମ ବାଳକାଳ କୁତୁହଳ ଏ ଚରିତ ।
ଶୋଇଲା ଠାବରୁ ଗୁଳୁଘୁଞ୍ଚା ଦେଇ ଉଠି
ରାନ୍ଧଣାଶାଳରେ ପଶି ପାକଦ୍ରବ୍ୟ ଝୁଣ୍ଟି ।
ପଣ୍ଡୁ ବସିଥିଲେ ସେହି ପର୍ବତେ ଗୁପତେ
କବାଟ ଫେଡ଼ି ପଶିଲେ ଗୃହରେ ତୁରିତେ ।
ଗୃହ କୋଣରେ ବସିଲେ ସେ ଗୁପତ ହୋଇ
ଦେଖିଲେ ଯେ ଭୀମସେନ ପଶି ପାକ ଖାଇ ।
ପାକଭାଣ୍ଡ କରେ ଘେନି ବିସ୍ତାରଇ ତୁଣ୍ଡ
ଏକା ଗ୍ରାସରେ ତୃପତ କରେ ଆତ୍ମାପିଣ୍ଡ ।
ରାଗେଣ ପଣ୍ଡୁ ଉଠିଲେ କୋପ ନ ସଂହରି
ହାଣିବେ ବୋଲି ଖଡ଼ଗ ପୁଣ ପୁଣ ଲୋଡ଼ି ।
ଆଣନ୍ତେ ସେ ଶସ୍ତ୍ର ଶାଳୁ ଯାଇ ଅସ୍ତ୍ରବର
ବାହାରି ପଳାଇଯାଏ ବାଳୁତ କୁମର ।
ଅସିପତ୍ର ଘେନି ରାଜା ଅଛନ୍ତି ଗୋଡ଼ାଇ
ପବନ ବେଗେ ବାଳୁତ କୁମର ପଳାଇ ।
ବନ କନ୍ଦର ସର୍ବତ୍ର ଘୋର ଯେ ଅଟବୀ
ମହାରାଗେ ଗୋଡ଼ାଇଲେ ପଣ୍ଡୁ ତା ନ ଭାବି ।
ଭୀମ ପଳାଇ ତା ପଛେ ପଣ୍ଡୁ ଯେ ଗୋଡ଼ାଇ
ପଣ୍ଡୁ ପଛେ ପଛେ ଅଗ୍ନି ବିପ୍ରରୂପେ ଧାଇଁ ।
ପଣ୍ଡୁ ବୋଇଲେ ମୋହର ଅବଶ୍ୟ ନିୟମ
ନିଶ୍ଚୟ ଶିର ଛେଦିବି ତୋର ଆଜି ଭୀମ ।
କୁନ୍ତୀ ମାଦ୍ରୀ ଦୁହେଁ ସ୍ନାନ କରି ଆସୁଥିଲେ
ଧାଇଁଯାଇ କୋଳ କରି ପଣ୍ଡୁକୁ ଧଇଲେ ।
ରାଗେ ମହାତ୍ମା ଅନେକ ମନ୍ଦକଥା ବୋଲି
ଘରେ ଘେନି ଭାରିଯାକୁ ପଳାଇଲେ ପେଲି ।
ବିକଳ ହୋଇ ବୋଇଲେ କୁନ୍ତୀ ଆହେ ରାୟ
ଅଜ୍ଞାନେ ଦୋଷ କଲା ଯେ ବାଳୁତ ତନୟ ।
କାହିଁ ହେ ପଣ୍ଡୁ ତୁମ୍ଭର ଧର୍ମ ଯେ ମହତ
ପୁତ୍ର ଗୋଟିଏ ମୋହର ରଖ ଧରି ହସ୍ତ ।

ରୋଦନ କରି ପଳାଏ ପୁତ୍ର ଆଗେ ଆଗେ
ଧାମନ୍ତି ଅସି ଉଞ୍ଚାଇ ପଣ୍ଡୁ ଅତି ବେଗେ ।
ପଣ୍ଡୁଙ୍କ ପଛେ ପଛେ ସେ ବ୍ରାହ୍ମଣ ଗୋଡ଼ାଇ
ଅଗ୍ନିଦେବ ପଛେ କୁନ୍ତୀ ଅଛନ୍ତି ଗୋଡ଼ାଇ ।
କୁନ୍ତୀଙ୍କ ପଛେ ଧାମଇଁ ମଦ୍ରରାଜ ସୁତା
ଉଚ୍ଛେ ରୋଦନ କରନ୍ତି ସେ ବେନି ବନିତା ।
ଏମନ୍ତେ ପଳାଇ ଯାଏ ବାଳୁତ ନନ୍ଦନ
ସତଷଠି ଯୋଜନ ସେ କଲାକ ଗମନ ।
ଊର୍ଦ୍ଧ୍ୱଗତି ନାମେ ଅଛି ଏକଇ ପର୍ବତ
ତହିଁର ପାଶେ ହୋଇଲା ପବନର ସୁତ ।
ତିନି ଯୋଜନ ଆୟତ୍ତ ସେ ଗିରି ପ୍ରଚଣ୍ଡା
ଭୀମସେନ ଝୁଟନ୍ତେ ତାପାଦେ ହେଲା ଗୁଣ୍ଡା ।
ସେ ପର୍ବତ ତଳେ ନଦୀ ଗୋଟାଏ ଅଛଇ
ତହିଁ ବାଳୁତ ତନୟ ପଡ଼ିଲାକ ଡେଇଁ ।
ରାଗେ ଡେଇଁ ପଡ଼ିଲେ ସେ ପଣ୍ଡୁ ମହୀପାଳ
ଆକର୍ଷି ଧଇଲେ ବାମକରେ ଭୀମ ବାଳ ।
ଖଡ଼ଗ ଘେନିଣ ହାଣି ଲୋଡ଼ୁ କୋପଭରେ
ଖଣ୍ଡାକୁ ଧଇଲେ ଧାଇଁଯାଇ ବୈଶ୍ୱାନରେ ।
ଖଣ୍ଡାକୁ ଧରି ଛଡ଼ାନ୍ତେ ବୋଲେ ନୃପରାୟେ
ମାରେ ଏ ଦୁଷ୍ଟ ପୁତ୍ରକୁ ଛାଡ଼ ହେ ପଣ୍ଡାଏ ।
ଅଗ୍ନି ବୋଇଲେ ରାଜନ କୋପ କିମ୍ପା ଏତେ
ଅଜ୍ଞାନେ ବାଳକ ତୋର ଦୋଷ ନାହିଁ ଏଥେ ।
କୋପ ତୁ ସଂହାରି ସ୍ଥିର କରି ତୋ ନିଃଶ୍ୱାସ
ବାଳ ଛାଡ଼ି ରାଜା ଏବେ ସ୍ଥିର ହୋଇ ବସ ।
କୁନ୍ତୀ ମାଦ୍ରୀ ଦୁହେଁ ରାଜା ହସ୍ତକୁ ଧଇଲେ
ଅନେକ ମତେ ଛଡ଼ାଇ ନ ପାରି ରହିଲେ ।
ଅଗ୍ନି ବୋଇଲେ ଏହାର କିସ ଦୋଷ ବାବୁ
ସଂକ୍ଷେପି କରି କହିବା ହେଉ ମୋତେ ସବୁ ।
ପଣ୍ଡୁ ବୋଇଲେ ତୁ ଶୁଣ ଆହେ ଜନଶ୍ରେଷ୍ଠ
ପାକମାନ ସବୁ ମୋର କରଇ ଉଚ୍ଛିଷ୍ଟ ।
ଭାରିଯା କହଇ ମୁଁ ନ ଜାଣଇ ଏମନ୍ତେ
ପାକ ନାଶ କଲାଣି ଏ ବର୍ଷେ ପରିଯନ୍ତେ ।
ଦେବ ପିତୃ ଅତିଥି ଯେ ଅଗ୍ନି ଆଦି କରି
ଏହା ଅଇଁଠା ସବୁଙ୍କୁ ଦିଏ ନ ବିଚାରି ।
ପାଞ୍ଚ ମାସରୁ ଏହାର ଏ ନୀଚ ପ୍ରକୃତି
ଏ ଦୁଷ୍ଟ ମନ୍ଦକୁ ଘରେ ଥୋଇବି କେମନ୍ତି ।
ଦଇନ୍ୟ ଭୋ ପଣ୍ଡା ଏହାପାଇଁ ତୁ ନ ବୋଲ
ଏହି ବର୍ତ୍ତିଥିଲେ ମୋତେ କାଳେ ନାହିଁ ଭଲ ।
ସମସ୍ତ ଧର୍ମ ମୋହର ଭାଙ୍ଗିଲା ଏ ଦୁଷ୍ଟ
ବାଳୁତ କାଳୁ ଏହାର ହେଲା ଏଡ଼େ ପେଟ ।

ଅଗ୍ନି ବୋଇଲେ ଯେ ପଣ୍ଡୁ ଏ ସାମାନ୍ୟ କଥା
କଣାଏ ଦୋଷକୁ ଦେବୁ ଏଡ଼େକ ଅବସ୍ଥା ।
ବାଳପୁଅ ଆବର ଏ ଅଟେ ମାଛି ସୁରୀ
ଅଜ୍ଞାନେ ମୂଢ଼ଲୋକ ଯେ ଏଥକୁ ବିଚାରି ।
ତୁ ଯେ ବୋଇଲୁ ଦିଅଇ ମୁଁ ପିତୃଲୋକଙ୍କୁ
ପିତୃଲୋକଙ୍କର ଆଶା ପୁତ୍ର ଉଚିଷ୍ଟକୁ ।
ଯେବେ ପିତା ବ୍ରହ୍ମହତ୍ୟା ଗୋହତ୍ୟା କରିବ
ପୁତ୍ର ଥିଲେ ଯମ ତାକୁ ଶାସ୍ତି ଯେ ନ ଦେବ ।
ଏ ଅବା ପାତକ କଲା ମୂର୍ଖ ହତଜ୍ଞାନେ
ମୁକତି କରନ୍ତି ସିନା ମୂର୍ଖ ପୁତ୍ରମାନେ ।
ନିଶାଚର ହିଁ ସନ୍ତାନ ଆଶାକୁ କରଇ
ପୁଣ୍ୟ କରି ମରେ ଯେବେ ଅପୁତ୍ରିକ ହୋଇ ।
ଅନେକ ଶାସ୍ତି ସେ ପର ଲୋକେ ଜାଣ ପାଇ
ଇହଲୋକେ ଅପୁତ୍ରିକ ବଦନ ନ ଚାହିଁ ।
ଶଉଚ ବା ଅଶଉଚ ହେଉ କି ନା ବାଳ
ଏହା ତୁ ବିଚାର କର ପଣ୍ଡୁ ମହୀପାଳ ।
ବାଳୁତ ଅଇଁଠା ଯେବେ ପାନ୍ତି ପିତୃଗଣେ
ଅନେକ ଆନନ୍ଦ ଉପୁଜଇ ତାଙ୍କ ମନେ ।
ପଣ୍ଡୁ ବୋଲେ ପିତୃଦେବ ହୁଅନ୍ତି ତୃପତି
ଇଷ୍ଟଦେବତାଙ୍କୁ ଅନ୍ନ ଦିଅଇ ମୁଁ ନିତି ।
ସେ ଧର୍ମ ମୋହର ନାଶଗଲା ଦ୍ୱିଜବର
ଛାଡ଼ ପଣ୍ଡାଏ ଛେଦିବି ମୁଁ ଏହାର ଶିର ।
ଦେବତାଏ କାହିଁ ଥାନ୍ତି ଆହେ ମହୀପାଳ
ନିଜ ଶରୀରେ ଦେବତା ବଦନ୍ତି ଅନଳ ।
ତାଳୁରେ ଶିରରେ ବିଜେ କରିଛନ୍ତି ବ୍ରହ୍ମା
କପାଳ ପଟରେ ନାରାୟଣ ଯେ ମହାତ୍ମା ।
ଚନ୍ଦ୍ର ସୂର୍ଯ୍ୟ ଦେବତା ଯେ ଚକ୍ଷୁ ପୁଣି ବେନି
ନାସିକାରେ ବିହରଇ ପଦମାନ ଜ୍ଞାନୀ ।
ଦୁଇଆଡ଼କୁ ଯେ କର୍ଣ୍ଣମୂଳ ସ୍ଥଳ ବେନି
ରୁଦ୍ର ଦେବତା ବସଇ ଭୃଙ୍ଗିଗଣ ଘେନି ।
ବେନି ଶ୍ରବଣେ ବସଇ ଜାଣ ଚଇତନ
ପଦ୍ମ କୁ ଭେଦି ବସଇ ଶୂନ୍ୟ ନିରଞ୍ଜନ ।
ବତିଶ ଗୋଟି ଦନ୍ତ ଯେ ବସେ ବେନି ପାଟି
ଅତୁଟ ବଜ୍ର ଘେନିଣ ଇନ୍ଦ୍ର ବସଇଟି ।
ଶରୀର ଶିରା ଶବଦ ଆଦି ରତୁ ଜାଣ
ଶୁକ୍ର ବୃହସ୍ପତି ବେନି କପୋଳେ ବସିଣ ।
ନାସାର ତଳେ ଅଛଇ ଯେଉଁ ବେନି ଓଷ୍ଠ
ତହିଁ ଆସନ କରନ୍ତି ଇନ୍ଦ୍ର ସୁରଶ୍ରେଷ୍ଠ ।
ଗଣ୍ଡସ୍ଥଳବାସୀ ପଞ୍ଚତିରିଶ ଦେବତା
କୁହୁକ ତନୁ ଅନ୍ତକ କଉଣପ ଜିତା ।
ସଲ୍ଲୀଳ ନଳ କୁବେର ଶୋଭନ ଅମର
ମନ ଲୟ ଜ୍ଞାନ ବୁଦ୍ଧି ବିବେକ ଆବର ।
ଏ ଘେନି କଣ୍ଠେ ବସନ୍ତି ଏତେକ ଦେବତା
ଲୋମେ ବସନ୍ତି ନକ୍ଷତ୍ର ତାରା ଅପ୍ରମିତା ।
ଦ୍ୱାଦଶ ଯେ ବିଶ୍ୱଦେବା ବସନ୍ତି ହୃଦଗତେ
ସନକାଦି ସାତ ମୁନି ବସନ୍ତି ଯେ ହସ୍ତେ ।
ଅଭେଦ୍ୟ ବିଦ୍ୟା ବସନ୍ତି ବକ୍ଷସ୍ଥଳେ ମିଳି
ସାଧନା ଆକର୍ଷଣ ଯେ ଲୟ ମହାବଳୀ ।
ପରାକ୍ରମୀ ଜନ ସେହୁ ବଳାବନ୍ତା ଶକ୍ତା
ତା ବେନିଭୁଜେ ବସନ୍ତି ସତେଶ ଦେବତା ।
ଗର୍ଭଠାରୁ ଉପରକୁ ତାଳୁ ବ୍ରହ୍ମଯାକେ
ଭୋଗ କରନ୍ତି ତେତିଶ କୋଟି ଦେବଲୋକେ ।
ପିତୃଲୋକ ବସନ୍ତି ଯେ ନାଭିସ୍ଥଳ ମାଡ଼ି
ସଂକଳ୍ପ ଉଦକ ଅନ୍ତେ ସେହି ଯାନ୍ତି ଛାଡ଼ି ।
ତିନି ଦିହୁଡ଼ି ଆକାଶେ ଉଠଇ ଉଜାଣି
ଧାତୁ ତଳକୁ ବହଇ ନବଧାରା ଜାଣି ।
ଉପରକୁ ବହେ ଧାରେ ତଳେ ବହେ ଧାରେ
ଆଗକୁ ପଡ଼ଇ ଖସି ଧାରାଏ ଆକାରେ ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ପଞ୍ଚଧାତୁ ଘେନି ଆତ୍ମା ପୁରୁଷ ଦ୍ୱାଦଶ ।
କାଳ କାମ ଧରି ଅର୍ଥେ ଅନୁସ୍ୱରେ ପଞ୍ଚା
ସିଦ୍ଧ ପୁରୁଷମାନଙ୍କ ଏ ଯେ ମୂଳ ସଞ୍ଚା ।
ବେନି ଜାନୁ ପାଡ଼ି ନାଭୀ ମଣ୍ଡଳ ପର୍ଯ୍ୟନ୍ତ
ଯୋଗୀ ପୁରୁଷେ ବସନ୍ତି ବର୍ଷ ପଞ୍ଚଶତ ।
ତୁ ଯେ ବୋଇଲୁ ଦେବଙ୍କୁ ଦିଅଇ ମୁଁ ଅନ୍ନ
ଶରୀରେ ଥାନ୍ତି ସକଳ ଦେବଗଣ ଜାଣ ।
ପଣ୍ଡୁ ବୋଇଲେ ଭୂମିରେ ପତ୍ର ଖଣ୍ଡେ ପାରି
ନାମ ଉଚ୍ଚାରଣ କରତଳ ପାଣି ଛାଡ଼ି ।
ପଣ୍ଡାଏ ବୋଇଲେ ତାହା କହୁ ତୋର ଆଗେ
ତୋର ସେ ଅନ୍ନକୁ ପାନ୍ତି ଅଷ୍ଟକୁଳା ନାଗେ ।
ଚାଣ୍ଡେଳିଆ ଖାଙ୍କେରିଆ ହଣ୍ଡିଆ ଅମୁଆ
କ୍ଷେତ୍ରପାଳିଆ ଭାଲୁଆ ଚଣ୍ଡିଆ ରାଇଆ ।
ଏମାନଙ୍କୁ ଯେ ଅଇଁଠା ଚଣ୍ଡବୀର ବୋଲି
ପତ୍ର ଉଚ୍ଛିଷ୍ଟ ଏମାନେ ଖାନ୍ତି ବାଣ୍ଟି କରି ।
ପତ୍ରଯାକ ଯେତେବେଳେ ପକାନ୍ତି ଭୂମିରେ
ତାହା ଆହାର କରନ୍ତି ଚଣ୍ଡୀ ଅଷ୍ଟବୀରେ ।
ପଞ୍ଚ ଅସୁରେ ଅଛନ୍ତି ଏ ପଞ୍ଚ ଆତ୍ମାକୁ
ବାହାରେ ଦେଲେ ଯେ ଭୋଗ ହୁଅଇ ତାହାଙ୍କୁ ।
ଚଣ୍ଡ ପ୍ରଚଣ୍ଡ ଦୁର୍ଦ୍ଦଣ୍ଡ ମହାକାଳାନଳ
ଏ ଯେ ଜୀବର ଅଟନ୍ତି ଭକ୍ଷ ପାଦମୂଳ ।

ବାହାରେ ମେଞ୍ଚେ ନ ଦେଇ ଭୁଞ୍ଜନ୍ତି ଯେ ଅନ୍ନ
ସେଦିନ ହୁଅଇ ଜାଣ ଅସୁର ଭୋଜନ ।
ହିରଣ୍ୟଗର୍ଭ ବୋଲି ଯେ ଅଛି ବିଦ୍ୟମାନେ
ଭକ୍ଷଦ୍ରବ୍ୟ ତହିଁ ପଡ଼ି ରହନ୍ତି ଗୋପନେ ।
ପାଦରସ ରଙ୍ଗରେ ଯେ ହୁଅଇ ତୃପତି
ସମସ୍ତ ଦେବତା ଏହି ଶରୀରେ ଅଛନ୍ତି ।
ଜନଜନ୍ତୁ ଥିଲେ ସିନା ଦେବେ ପାନ୍ତି ପୂଜା
ଆପଣା ତୃପ୍ତିରେ ତୃପ୍ତି ହୁଅନ୍ତି ଏ ରାଜା ।
ପଣ୍ଡୁ ବୋଇଲେ ହୋଇଲେ ଦେବତା ତୃପତି
ଦୋହରା ଅଗ୍ନିରେ ଦିଏ ଆହୁତି ମୁଁ ନିତି ।
ଅନ୍ନ ଆହୁତି ନ ଦେଲେ ନାଶଯାଏ ପିଣ୍ଡ
ଏ ପୁତ୍ରଗୋଟିରେ କିମ୍ପା ନ କାଟିବା ମୁଣ୍ଡ ।
ପଣ୍ଡା ବୋଇଲେ ନ ଜାଣି ହୁଡ଼ିଲୁ ତୁ ଏବେ
ଅଗ୍ନି ଦେବତାଏ ଥାନ୍ତି ସବୁ ଜୀବ ଗର୍ଭେ ।
ଭଲ ମନ୍ଦ ତାହାଙ୍କର ସମସ୍ତ ହିଁ ଭକ୍ଷ
ସମସ୍ତ ଦହନ୍ତି ରାଜା ଦେଖୁଛ ପ୍ରତ୍ୟକ୍ଷ ।
ଅନଳ ଦେବତା ଯେ ନ ଜାଣନ୍ତି ଉଚ୍ଛିଷ୍ଟ
ସମସ୍ତ ଭକ୍ଷଣ କ୍ରୋଧ ନର୍କେ ହୋଇ ରୁଷ୍ଟ ।
ଉଚ୍ଛିଷ୍ଟ ଅନୁଚ୍ଛିଷ୍ଟ ସେ ନ ଜାଣନ୍ତି କିଛି
ଦହନ ପାବକ ସେହି ପାଇଲେ ସେ ଭକ୍ଷି ।
କହୁଁ କହୁଁ ରୋଷେ ପୁଣି ବୋଇଲେ ମହାତ୍ମା
ଆମ୍ଭେ ଯେ ଦୋହରା ଅଗ୍ନି ବୈଶ୍ୱାନର ବ୍ରହ୍ମା ।
ତୁହି ସିନା ଦେଖିଲୁ ଯେ ଆଜି ରାଜା ପଣ୍ଡୁ
ଦେଢ଼ ବରଷ ହୋଇଲା ଉଚ୍ଛିଷ୍ଟ ଯା ଛାଡୁ ।
ସମସ୍ତ ଆମ୍ଭେ ଯେ ତାହା ଖାଉ ଜିହ୍ୱାପାତି
ବାଳୁତ ଦୋଷ ଘେନିବା ନୁହଇ ଯୁକତି ।
ଅଗ୍ନିର ବଚନେ ଶାନ୍ତି ଭଜି ପଣ୍ଡୁରାଜ
କେଶ ଛାଡ଼ିଦେଲେ ସ୍ଥିର ହୋଇଲା ଆତ୍ମଜ ।
ବୈଶ୍ୱାନର ବୋଇଲେ ଯେ ତୋର ଏଡ଼େ ଶ୍ରଦ୍ଧା
କ୍ରୋଟ ଅନଳରେ ତୋର ହେଉ ବଡ଼କ୍ଷୁଧା ।
ଆହାରେ ତୁ ଅତୃପତି ହୁଅସିରେ ଭୀମା
ପଣ୍ଡୁ ଏ ଯେ ଉଦ୍ଧରିବ ତୋର କୁଳସୀମା ।
ପଣ୍ଡୁ ବୋଇଲେ ଏ ଆଜ୍ଞୁ ଏଡ଼େ ଅତୃପତି
ଅସଂଖ୍ୟ ଆହାର ଏହୁ ଖାଇବାକୁ ନିତି ।
ଦୋହରା ବୋଇଲେ ଆମ୍ଭେ ହୋଇବୁ ପ୍ରସନ୍ନ
ଏହାକୁ ପ୍ରାପତ ହେଉ ରାନ୍ଧଣା ବିଧାନ ।
ଗଉରି ଶଉରି ନଳ ବିଧି ଏ ତ୍ରିବିଧି
ପାକ ଯୋଗାଡ଼ ଏହାର ହେଉ ସେ ପ୍ରସିଦ୍ଧି ।
ଅକଟା ଅବଟା କଞ୍ଚା ଯୋଗାନ୍ତ ସମସ୍ତ
ଏହାର ହାତ ଲାଗିଲେ ହେଉ ଯେ ଅମୃତ ।
ଭୋଜନେ ଯେ ଅତୃପତି ହେଉ ତୋର ବାଳ
ସଂଗ୍ରାମରେ ଅତୃପତି ହେଉ ଅନର୍ଗଳ ।
ସଂଗ୍ରାମେ ବିଜୟୀ ତୁହି ହୁଅ ଭୀମସେନ
ତୋ ବୃକୋଦର ମୂର୍ତ୍ତିକୁ ନୋହୁ କେ ସମାନ ।
ଦୋହରା ଅଗ୍ନିକୁ ଦେଖି ସେ ପଣ୍ଡୁ ନୃପତି
କର ଦୁଇକୁ ଯୋଡ଼ିଣ କରନ୍ତି ଯେ ସ୍ତୁତି ।
ଜୟ ଜୟ ବୈଶ୍ୱାନର ରୂପ ତୋ ଅନନ୍ତ
ଜୟ ଜୟ ବୈଶ୍ୱାନର ମହା ତେଜୋବନ୍ତ ।
ଜୟ ଜୟ ବୈଶ୍ୱାନର ତୁ ଅଭୟଦାତା
ଜୟ ଜୟ ବୈଶ୍ୱାନର ଆଦିତ୍ୟ ତୋ ଭ୍ରାତା ।
ଜୟ ବୈଶ୍ୱାନର ତୋର କାଳାନଳ ନାମ
ପିଙ୍ଗଳ ଜ୍ୱାଳା ସ୍ୱରୂପ ତୁ ଅନଳ ବ୍ରହ୍ମ ।
ଜୟ ତୁ ଜୟ ତୁ ଦେବକାଳ ଯେ ଅନଳ
ପ୍ରଳୟ ଲହରୀବେଳେ ତୁହି ମହାବଳ ।
ଜୟ ତୁ ଜୟ ତୁଦେବ କ୍ରୋଟାନଳ ନାଥ
କର୍ଣ୍ଣନାଳ ନାଥ ତୁହି ଆକାଶେ ବିଦିତ ।
ଜୟ ତୁ ଜୟ ତୁ ଦେବ ମୂର୍ତ୍ତି ଦାବାନଳ
ଜୟ ତୁ ଜୟ ତୁ ଦେବ ବଡ଼ବା ଅନଳ ।
ଜୟ ତୁ ଜୟ ତୁ ଦେବ ମହାବଜ୍ର ସୂଚି
ଜୟ ତୁ ଜୟ ତୁ ଦେବ ଦେବ ମୁଖରୁଚି ।
ଜୟ ତୁ ଜୟ ତୁ ଦେବ ମହାବ୍ରହ୍ମ ଅଗ୍ନି
ଜୟ ତୁ ଜୟ ତୁ ଦେବ ପରଂବ୍ରହ୍ମ ବହ୍ନି ।
ଜୟ ତୁ ଦେବ ଦୋହରା ଅଗ୍ନି ବୈଶ୍ୱାନର
ଜୟ ତୁ ଜୟ ତୁ ଦେବ ସର୍ବ ଭୟହର ।
ସ୍ୱାହା ସ୍ୱାଧାର ବଲ୍ଲଭ ଚରଣେ ପ୍ରଣାମ
ମୁହିଁ କହିବାକୁ କାହିଁ ଯୋଗ୍ୟ ତୋର ନାମ ।
ଗୋପନ ପୁରୁଷ ଦେବ ସର୍ବ ପ୍ରତିପାଳ
ନିରାକାର ପୁରୁଷ ତୁ ସକଳ ନିଶ୍ଚଳ ।
ଶିଶିର ହେମ ବସନ୍ତ ଶରତ ବର୍ଷା ଗ୍ରୀଷ୍ମ
ଏ ଷଡ଼ଋତୁ ହୋଇଲା ମାସ ଯେ ଦ୍ୱାଦଶ ।
ଋତୁ କେ ଅନ୍ୟ ଅନ୍ୟ ଯେ ତୋହର ମୂରତି
ତୋହର ଉଚ୍ଛିଷ୍ଟ ଖାଇ ଚରାଚର ବର୍ତ୍ତୀ ।
କାହିଁ ଅଛୁ ଦେବା ଅବା କାହିଁ ତୁହି ନାହୁଁ
ମହା ମହାରୋହାରମ୍ଭେ ଦର୍ପ ତୁ ଦେଖାଉ ।
ଶ୍ୱେତରାଜା ଯଜ୍ଞେ ଦେବଘୃତ ଲୋଭେ ଭକ୍ଷି
ଲୁଦୁବୁଦୁ ବ୍ୟାଧିକୁ ତୁ ଦେହେ ଆଣି ରଖି ।
ସଂକ୍ଷେପେ କିଏ ବର୍ଣ୍ଣିବ ତୋର ବର୍ଣ୍ଣଗୋଟି
ଏକ ଲୟରେ ସରଇ ମହୀ ନବକୋଟି ।
ସ୍ୱେଦଜ ଅଣ୍ଡଜ ଉଦଭିଜ ଚାରିଖାନି
ବିନା ଅନଳରେ କେହି ନ ବର୍ତ୍ତନ୍ତି ପ୍ରାଣୀ ।

ଭିତରେ ବାହାରେ ଦେବ ରହିଥାଉ ତୁହି
ଚଉର୍ଯ୍ୟ ରୂପେଣ ଦେବ ଶୁକ୍ଳତନୁ ବହି ।
ନାନାଦି ପାତକ ଯେବେ କରିଥିବ ପ୍ରାଣୀ
ହୋମ କରି ତୋର ତହିଁ ପକାନ୍ତି ଯେ ଆଣି ।
ଅଭୟ ଦେବ ସମସ୍ତ ଦେହେ ତୁହି ବହୁ
ଶରୀର ଲୁଚାଇ ଆପେ ଆପେ ସବୁ ସହୁ ।
ସାଧୁ ମାହେଶ୍ୱରୀ ସେହି ଦକ୍ଷର କୁମାରୀ
ତବ ତେଜକୁ ଶୀତଳ କଲେ ପ୍ରାଣହାରୀ ।
ପ୍ରଥମେ ଯେ ଶ୍ରୀ ଦୋହରା ଅଗ୍ନିଙ୍କର ପାଦେ
ଧର୍ମ ବର୍ଦ୍ଧିତ ହୋଇବ ତବ ପରସାଦେ ।
ବୈଶ୍ୱାନରଙ୍କ ଚରଣେ ଜନ୍ମେ ଜନ୍ମେ ଦାସ
ଶୂଦ୍ରମୁନି ଶ୍ରୀ ଶାରଳା ଦାସର ଅଭ୍ୟାସ ।

—o—

## ଅର୍ଜ୍ଜୁନ ଜନ୍ମ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ବୈଶ୍ୱାନର ପାଦେ କଲେ ପଣ୍ଡୁ ଯେ ପ୍ରଣତି ।
ପ୍ରଣାମ କରାଇଲେ ଯେ ବାଳୁତ ଭୀମକୁ
ବୈଶ୍ୱାନର ସୁପ୍ରସନ୍ନ ହୋଇଲେ ତାହାକୁ ।
ବର ଦେଇ ଅଗ୍ନିଦେବ ଗଲେ ଅନ୍ତର୍ଦ୍ଧାନେ
ପଣ୍ଡୁ ବାହୁଡ଼ିଣ ବିଜେ ମନୋହର ବନେ ।
ଭୀମକୁ କାଖରେ ଘେନିଗଲେ ପଣ୍ଡୁରାଜା
ପଛେ ଗୋଡ଼ାନ୍ତି ତାଙ୍କର ସେ ବେନି ଭାରିଜା ।
ପ୍ରବେଶ ହୋଇଲେ ଶତଶୃଙ୍ଗ ପରବତେ
ପୁତ୍ର ଭାରିଯାକୁ ଘେନି ରହିଲେ ନିଶ୍ଚିନ୍ତେ ।
ପଚାରିଲେ ବୈବସ୍ୱତ ମନୁ ହେ ଅଗସ୍ତି
କୁନ୍ତୀଙ୍କ କଥା ଆଶ୍ଚର୍ଯ୍ୟ ଲାଗଇ ହେ ଯତି ।
ଧର୍ମ ଦେବତାର ସେହି ସହିଲେ ଆର୍ଦ୍ଧୋଳି
ମହାବଳୀ ପବନର ଭାର ସହେ ବାଳୀ ।
ମାନବୀ ହୋଇ ଦେବଙ୍କୁ ଦିଅଇ ସୁରତି
ଏ ବଡ଼ ଆଶ୍ଚର୍ଯ୍ୟ କଥା କହିଲ ଅଗସ୍ତି ।
ଶୁଣ ହୋ ମନୁ ପୁରୁଷ ବଦନ୍ତି ଯେ ମୁନି
ପୂର୍ବଜନ୍ମେ ଅଟନ୍ତି ଏ ଅଞ୍ଜନା କାମିନୀ ।
ପବନ ଦେବତା ତୁଲେ କରେ ଏ ପୀରତି
ଈଶ୍ୱରଙ୍କ ବୀର୍ଯ୍ୟେ ଆନେ ଦେଲେ ସେ ତଡ଼ତି ।
ସମ୍ଭାଳିଲା ହୁଅନ୍ତେ ସେ ବୀର୍ଯ୍ୟ ଗର୍ଭଗତ
ତହୁଁ ଜନମ ହୋଇଲେ ବୀର ହନୁମନ୍ତ ।
ସେହି ହନୁମାନ ତ୍ରେତାଯୁଗେ ମହାମଲ୍ଲ
ଶ୍ରୀ ରାମଚନ୍ଦ୍ର ଯୁଝିବେ ଘେନି କପିମଲ୍ଲ ।
ସେ ଯୁଗର ଅଞ୍ଜନା ଏ ରୂପ ଅଛି ଧରି
ଏବେ କୁନ୍ତଭୋଜ ରାଜା ଘରେ ଅବତରି ।
ଦ୍ୱାପର ଯୁଗର ଭାରା ନିବାରଣ ଅର୍ଥେ
ପବନ ଦେବତା ଆସି ଭେଟିଲା ସାକ୍ଷାତେ ।
ଜାତ କଲେ ଭୀମସେନ ନାମେ ଏହି ପୁତ୍ର
ନିବାରିବ ଏ ଯୁଗର ଭାରା ଯେ ସମସ୍ତ ।
ପଣ୍ଡୁ ଯେ କୁନ୍ତୀଙ୍କୁ ତୋଷେ କହିଲେ ବିନୟେ
ପୁତ୍ରମୁଖ ଦେଖିଲି ମୁଁ ଭୋଜର ତନୟେ ।
ଅଜ୍ଞାନେ ଜ୍ଞାନେ ବା କିଛି କହିଥିବି ମୁହିଁ
ତାହା ମନେ ନ ଧରିବୁ ଅନାଦି ଯେ ତୁହି ।
ଶତଶୃଙ୍ଗ କହଇ ତୁ ଅଟୁ ମହାଦେବୀ
ଜାଣିଲି ଆଜହୁଁ କୁନ୍ତୀ ତୋତେ ସେବୁଥିବି ।
କହିଣ ପର୍ବତ ତହୁଁ ହୋଇଲା ଗୋପନ
କୁନ୍ତୀ ଯେ ବିନୟ ଭାବେ ଖଟନ୍ତି ପବନ ।
କୁନ୍ତୀଙ୍କର ଯୁଧିଷ୍ଠିର ଭୀମ ବେନି ପୁତ୍ର
ମଦ୍ରରାଜ ସୁତା ସ୍ନେହେ ପାଳଇ ତାଙ୍କୁ ତ ।
ଭୀମସେନର ସପତ ବରଷ ଉତ୍ତାରେ
ଦୁଷ୍ଟ ପ୍ରକୃତି ଦେଖିଣ କୁନ୍ତୀ ଯେ ବିଚାରେ ।
ବଳବନ୍ତ ମୂର୍ଖ ଏ ଯେ ହେବ ଅପଣ୍ଡିତ
ଧନୁ ବିଦ୍ୟାରେ ଏ ପୁତ୍ର ନୋହିବ ନିର୍ଜିତ ।
ଫାଲ୍‌ଗୁନ ମାସ ପୂର୍ଣ୍ଣିମା ଅନ୍ତରେ ଯେ ତିଥି
କୃଷ୍ଣପକ୍ଷ ଦ୍ୱିତୀୟା ଯେ ବୁଧବାର ଗତି ।
ନକ୍ଷତ୍ର ଭୋଗ ସେଦିନ ଉତ୍ତର ଫାଲଗୁନୀ
ପଣ୍ଡୁ ମୃଗୟାର୍ଥେ ଗଲେ ବେନିପୁତ୍ର ଘେନି ।
ମହାନିଶା କାଳେ ସେ ଯେ ଭୋଜର କୁମାରୀ
ଶ୍ରୀହସ୍ତେ ଘେନିଲେ ମହାମୁନି ଜପାମାଳି ।
ଧ୍ୟାନେ ସୁମରିଲେ ସ୍ୱର୍ଗପୁରୁ ଦେବରାଜ
ବିଜୟ ତହିଁ ବାସବ ଘେନି ଅଇଶ୍ୱର୍ଯ୍ୟ ।
ହୃଦରେ ଲମ୍ବାଇ ପାରିଜାତ ପୁଷ୍ପହାର
କୋଟି କୋଟି ଅଳଙ୍କାର ଶୋଭା କଳେବର ।
ଶ୍ରୀ ଅଙ୍ଗେ ଲେପନ ମୃଗନାଭି ଯେ କସ୍ତୁରୀ
କୁନ୍ତୀ ଦେବୀଙ୍କ ଶଯ୍ୟାରେ ବିଜେ ବଜ୍ରଧାରୀ ।
ଦେଖିଣ ସାନନ୍ଦ ଭୋଜ ରାଜାର ଦୁଲ୍ଲଣୀ
ପାଦ ପ୍ରକ୍ଷାଳନ କଲେ ତୀର୍ଥଜଳ ଘେନି ।
ପାଦାର୍ଘ୍ୟ ଦେଇଣ କୁନ୍ତୀ କରନ୍ତି ଯେ ସ୍ତୁତି
ଜୟ ଜୟ ସୁରନାଥ ଅମରାଧିପତି ।
ଧ୍ୱଂସିଲେ ହେ ଦେବ ଜମ୍ଭଦୈତ୍ୟ ତର୍ପହେଲେ
ବହିଲ ଯେ ଜମ୍ଭଭେଦୀ ନାମ ରବିତଳେ ।
ଅଭୟ ମୁଦ୍‌ଗର କରେ ମହା ବଜ୍ରଶକ୍ତି
ହେଲେ ନାଶିଲୁ ଅସୁର କୁଳର ସମ୍ପତ୍ତି ।
ଅଜଗବ ଅସିବର ପରଶୁ ଖଡ଼୍‌ଗ
ବାହନ ଇଚ୍ଛିଲୁ ନାଥ ଐରାବତ ନାଗ ।

ଶରୀର ବଲ୍ଲଭ କୋଟି କାମରୂପଧାରୀ
ଚଉଷଠି କୋଟି ବିଦ୍ୟାଧରୀ ଯେ କିନ୍ନରୀ ।
ଘେନିଣ ବିଳାସ କର ଅମରାଧିନାଥ
ବ୍ରହ୍ମାନନ୍ଦନ କଶ୍ୟପ ତୁମ୍ଭ କୁଳଗୋତ୍ର ।
ଅଣାକାର ପୁରୁଷର ଦେଖି ଚିହ୍ନବର୍ଣ୍ଣ
ଲଲାଟପଟ ତୁମ୍ଭର ହୋଇଲା ସୁବର୍ଣ୍ଣ ।
ଜ୍ଞାନର ଠାକୁର ତୁମ୍ଭେ ବୃନ୍ଦାରକ ବକ୍ଷ
କୋଟି ଭୁବନର ଦୃଶ୍ୟ ଅଟ ସହସ୍ରାକ୍ଷ ।
କୋଟି କୋଟି ବିଳାସିନୀ ଖଟନ୍ତି ନିରତେ
ରଖ ସ୍ୱାମୀ ତୁମ୍ଭ ଜନ୍ମ କଶ୍ୟପଙ୍କ ଗୋତ୍ରେ ।
କୋଟି ଭୁବନରେ ତୁମ୍ଭେ ଖଣ୍ଡ ଯେ ଅରିଷ୍ଟି
ତବ ଆଜ୍ଞାରେ ମହୀରେ ମେଘ କରେ ବୃଷ୍ଟି ।
ସଦା ଆନନ୍ଦ ତୁମ୍ଭର ବାହନ ଯେ ନାଗ
ପାତାଳ ଶମ୍ଭୁ ତୁମ୍ଭର ଅନନ୍ତ ଉରଗ ।
ରାହୁର ମୁଣ୍ଡ ମୋଡ଼ିଲୁ ଚନ୍ଦ୍ରମାର ବୋଲେ
ସ୍ୱର୍ଗ ପୁରୁଷ ପଳାନ୍ତି ଶସ୍ତ୍ରକୁ ଧଇଲେ ।
ଲୋଭେଣ ହରିଣ ସ୍ୱାମୀ ଗଉତମ ପତ୍ନୀ
ଋଷିଙ୍କ ଶାପେ ବହିଲ ସହସ୍ର ଯେ ଯୋନି ।
ସେ ଆପଦ ଶାନ୍ତି ହେଲା ମାନସରୋବରେ
ଦୁଷ୍ଟ ନିବାରିଣ କଲେ ବଜ୍ରସୂଚୀ ଶରେ ।
ତୁ ଦେବ ଜଳ ଅନଳ ନିରାକୁଳ ଆଦି
କୃତାନ୍ତକ ନାଥ ସ୍ୱାମୀ ଜୟ ଜୟ ଭେଦୀ ।
ସପତ ସାଗର ଏ ଯେ ସପ୍ତଦ୍ୱୀପା ପୃଥ୍ୱୀ
ତୁମ୍ଭଯୋଗୁ ଚରାଚର ଜୀବ ଛନ୍ତି ବର୍ତ୍ତି ।
ଯମଦଣ୍ଡ କାଳଦଣ୍ଡ ବ୍ରହ୍ମଶୂନ୍ୟ ଦଣ୍ଡ
ଅମରାଧିପତି ଦେବ କର ଖଣ୍ଡ ଖଣ୍ଡ ।
ଦେବ ଶାସ୍ତ୍ରରେ ପରମ ପଣ୍ଡିତ ହେ ନାଥ
ସତ୍ୟବନ୍ତ ପୁରୁଷ ହେ ପରମ ପଦାର୍ଥ ।
ଦର୍ଶନେ ପ୍ରସନ୍ନେ ଧ୍ୱଂସ ଦୁଃଖ ଯେ ଦୂରିତ
ଯମର ଉପରେ ତୁମ୍ଭେ ଯମ ଦଇବତ ।
ବ୍ରହ୍ମାର ଉପରେ ବ୍ରହ୍ମପଦ ଯେ ତୁମ୍ଭର
ମହେଶ୍ୱର ଉପରେ ଯେ ଅଟ ମହେଶ୍ୱର ।
ଚନ୍ଦ୍ରକିରଣ ମଣି ଯେ ବିରାଜେ ଲଲାଟେ
ବିରାଜଇ ସୂର୍ଯ୍ୟକାନ୍ତ ମଣି ହୃଦତଟେ ।
ଜାତ ଅନ୍ତକର ସ୍ୱାମୀ ତୁମ୍ଭେ ପାଳୟିତା
ନିର୍ଭୟ ପୁରୁଷ ସ୍ୱାମୀ ଶୁଭଗତି ଦାତା ।
ସକଳ ସଂସାର ନାଥ ଭକ୍ତଜନ ହିତ
ମୁହିଁ ମଧ୍ୟପୁରେ ଜାତ କ୍ଷୁଦ୍ର ମମ ଚିତ୍ତ ।
ନାଶ କର ନିଶାକର ଯାର ଆଜ୍ଞାବର୍ତ୍ତୀ
ପଦାର୍ଥ ନ ମାଗଇ ମୁଁ ମନେ କରି ଭ୍ରାନ୍ତି ।
ଅପରାଧୀ ନାଥ ପଦ ସଦା ମମହୃଦେ
ଶାରଳା ଦାସଙ୍କୁ ରଖ ପରମ ଆନନ୍ଦେ ।
ବଦନ୍ତି ଅଗସ୍ତି ଶୁଣ ଆହେ ଯୁଗପତି
ଏହି ମନ୍ତ୍ର ତବ ଅର୍ଥେ ଜଗତେ ବିଖ୍ୟାତି ।
ଇନ୍ଦ୍ର ଦେବତାଙ୍କୁ କୁନ୍ତୀ କଲେ ଅର୍ଘ୍ୟେ ପୂଜା
ଶୃଙ୍ଗାର ରସ ସମ୍ପଦ ମାଗେ ଦେବରାଜା ।
କୁନ୍ତଭୋଜ ନନ୍ଦିନୀ ଯେ କାର୍ଯ୍ୟ ହୋଇ ବ୍ରତୀ
ଭାରାଭର ସହିବ ଯେ ଅନାଦି ଶକତି ।
କୁନ୍ତୀଙ୍କର ସ୍ତବ ଶୁଣି ସେହି ବଜ୍ରଧାରି
ସନ୍ତୋଷେ ଚୁମ୍ବନ ଦେଲେ ଆଲିଙ୍ଗନ କରି ।
ନିଷ୍କଳଙ୍କ ବଂଶୀ ମହା ମନ୍ତ୍ରେଣ ନିର୍ଦ୍ଦୋଷୀ
ଶୃଙ୍ଗାର ରସ ବଢ଼ିଲା ସୁଖେ ମହାନିଶି ।
ସେହି ପର୍ବତରୁ ଗଙ୍ଗା ହୋଇଛି ଉପ୍ତତ୍ତି
ପାତାଳ ଭେଦୁଛି ପଞ୍ଚତିରିଶ ମୂରତି ।
ପାବିନୀ ଭାବିନୀ ପାପ ନାଶିନୀ କାମିନୀ
ଗଙ୍ଗା ଗୋମତୀ ନର୍ମଦା ନଦୀ ବୈତରଣୀ ।
ମେଖଳା ତ୍ରିପୁର ଫଲ୍‌ଗୁ ଭଜୁକୀ ଭୈରବ
ସରସ୍ୱତୀ ଯମୁନା ଏ ପାତାଳୁ ସମ୍ଭବ ।
କାଶୀ କଉଶିକା ନଦୀ ଅନ୍ଧକା ମେଖଳା
କେଶୀ ଗଉତମୀ ନାରାୟଣୀ ଯେ ଚଞ୍ଚଳା ।
ବିଜୟା ଚିତ୍ରଉତ୍ପଳା ଗଗନ ଗୁପତା
ଚନ୍ଦ୍ରଭାଗା ବୃହସ୍ପତି ସୁତା ବୁଧମାତା ।
ତପସ୍ୱୀ ସୁଭଦ୍ରା ଶତଭଦ୍ରା ଧବଳାଙ୍ଗୀ
ହରପ୍ରିୟା ହରିପ୍ରିୟା ବୃଦ୍ଧ ସହଭାଗୀ ।
ଏମନ୍ତେ ପଞ୍ଚତିରିଶ ଧାରା ଯେ ଫୁଟଇ
ମହାତୀର୍ଥେ ନଦୀ ବିଷ୍ଣୁପଦ ଯେ ଅଟଇ ।
ତହିଁରେ ମିଶ୍ରିତ ସରସ୍ୱତୀ ଯେ ତ୍ରିବେଣୀ
ତହିଁର କୂଳରେ କୁନ୍ତୀ ଇନ୍ଦ୍ରଙ୍କ ରମଣୀ ।
ସେ ନଦୀକୂଳେ ଅର୍ଜ୍ଜୁନ ନାମେ ଅଛି ବନ
ବହଇ ମୃଦୁ ଶୀତଳ ମଳୟ ପବନ ।
ବିଶେଷେ ବସନ୍ତ ଋତୁ ମୀନମାସ ଆଦ୍ୟ
କୃଷ୍ଣପକ୍ଷ ଦ୍ୱିତୀୟା ଯେ ତିଥି ହିଁ ଆରାଧ୍ୟ ।
ହୋଇଛି ସେ ଦିନ ଶୁଭଦିନ ଗୁରୁବାର
ଉତ୍ତରାଫାଲ୍‌ଗୁନୀ ଯେ ନକ୍ଷତ୍ର ଆବର ।
ତୈତିଳ ନାମେ କରଣବୃଦ୍ଧି ନାମେ ଯୋଗ
ବୃହସ୍ପତିଙ୍କ ନବାଂଶେ ଚନ୍ଦ୍ରକରେ ଭୋଗ ।
ଦଶମରେ ଶନି ସପ୍ତମରେ ବୃହସ୍ପତି
ମକର ଲଗ୍ନେ ମଙ୍ଗଳ ଭୋଗ ଶେଷ ରାତି ।
ରାହୁ ଷଷ୍ଠ ପୁଣି ବୁଧ ଗ୍ରହ ଯେ ପାତାଳ
ପଞ୍ଚମରେ ଶୁକ୍ର କୁନ୍ତୀ ଇନ୍ଦ୍ରଙ୍କର ମେଳ ।

କୁନ୍ତୀ ବୋଇଲେ ଭୋ ସ୍ୱାମୀ ଶୁଣ ସୁରପତି
ସଇନ୍ଦୁ ପୁତ୍ରେକ ତୁମ୍ଭେ କରିବ ଉତ୍ପତ୍ତି ।
ପୁତ୍ର ଦର୍ପ ସହି ମୁହିଁ ନ ପାରଇ ଭାରୀ
ଆକାଶ ମଣ୍ଡଳ ଅଧିପତି ବଜ୍ରଧାରୀ ।
ମହାବଳବନ୍ତ ପୁତ୍ର ଦେବ ଦେବରାଜ
ମୁଁ ମାନବୀ ସହି ନ ପାରଇ ତୋର ବୀର୍ଯ୍ୟ ।
ଅବିବାହିତା କାଳେ ସେ ଆଦିତ୍ୟ ରମିଲା
ସଇନ୍ଦୁ ପୁତ୍ରେକ କର୍ଣ୍ଣ ବାଟେ ଉପୁଜିଲା ।
ସେହି ପ୍ରକୃତି ରହିଲା ଭାବି ମୋର ଅଙ୍ଗେ
ଗର୍ଭଭାରା ସହିବି ମୁଁ ଏବେ କେଉଁ ବାଗେ ।
ଶୁଣିଣ ସାନନ୍ଦ ପୁରନ୍ଦର ଯେ ଦେବତା
କୁନ୍ତୀ ବଚନେ ଇଚ୍ଛାରେ ହେଲେ ବରଦାତା ।
ବିଶେଷ କାମିନୀ ପୁଣି ସମ୍ପୂର୍ଣ୍ଣ ବୟସୀ
ଦେବରାଜା ସଙ୍ଗେ କ୍ରୀଡ଼ାରଙ୍ଗ ରସେ ରସି ।
ବିଶେଷ ବନ ଗହନ ନିର୍ଜ୍ଜନ ସେ ଭୂମି
ଆକାଶ ପଥେ ବିଜୟ ରୋହିଣୀର ସ୍ୱାମୀ ।
ବସନ୍ତ ଚନ୍ଦ୍ରମା ସେ ଯେ ଅତ୍ୟନ୍ତ ନିର୍ମଳ
ସମସ୍ତ ଦିଗ ଦିଶଇ ଅତି ପରିମଳ ।
ଉଭୟଙ୍କ ମନ ଶାନ୍ତି ପରମ ଆନନ୍ଦୁ
ସୁସଞ୍ଚ କୁମାର ଜାତ ହୋଇଲା ସଇନ୍ଦୁ ।
ମାତଳି ଚଞ୍ଚଳା ମେଳେ ଥିଲା ଅନ୍ତରୀକ୍ଷେ
ପୁସ୍ତକ ଘେନି ମିଳିଲା ସହସ୍ରାକ୍ଷ ପାଖେ ।
ଦେବେ ଦୁନ୍ଦୁଭି ବାଜଇ ରଙ୍ଗେ କଲେ କେଳି
ଚଉଷଠି ଅପସରା ଦେଲେ ହୁଳହୁଳି ।
ଅମଳାନ ସରୁବସ୍ତ୍ର ପିନ୍ଧି ସର୍ବ ବାଳୀ
ପୁତ୍ରକୁ କୋଳେ ଧଇଲେ କୁନ୍ତୀକୁ ସମ୍ଭାଳି ।
ତପତଜଳ ଆବର ସୁବାସିତ ପାଣି
ପୁତ୍ର ଅଙ୍ଗ ପଖାଳନ୍ତି ସୁକୋମଳ ଜାଣି ।
ସାଧୁ ପୁତ୍ର ବୋଲିଣ ସେ କପିଳା ପ୍ରକୃତି
କୁମାର ଅଙ୍ଗରେ ନେଇ ଲେପନ କରନ୍ତି ।
ଆପେ ସେ ସ୍ଥାନରେ ଥାଇ ଦେବ ଆଖଣ୍ଡଳି
ବନ୍ଧାପନା କଲେ ନେଇ ଘେନି ଅର୍ଘ୍ୟଥାଳି ।
ରମ୍ଭା ଉର୍ବଶୀ ମଦନ ମେନା କାମସେନା
ଦିବ୍ୟ ଶଯ୍ୟାରେ ପୁତ୍ରକୁ ଶୁଆନ୍ତେ ଅଙ୍ଗନା ।
ନୀଳେନ୍ଦ୍ରୀ ଦଳ ପରାୟେ ବିରାଜଇ ତନୁ
ପୀତବସନ କଟିରେ ସୁନ୍ଦର ସ୍ୱର୍ଭାନୁ ।
ଅତି ସୁନ୍ଦର ଅର୍ଜ୍ଜୁନ ନାମେ ସେହି ବନ
ସେ ବନେ ହେଲା ସୁବୀର ପୁତ୍ର ଉତପନ୍ନ ।
ଅତ୍ୟନ୍ତ ହରଷ ଲଭି ଦେବ ମଘବାନ
ପୁତ୍ର କୋଳେ ଧରି ନାମ ଦେଲେ ଅରଜୁନ ।
ବୃହସ୍ପତି ଗଣିଲେ ଯେ ହସ୍ତେ ପାଞ୍ଜି ଘେନି
ଜନ୍ମ ନକ୍ଷତ୍ର ହୋଇଲା ଉତ୍ତରାଫାଲଗୁନୀ ।
ପୁତ୍ର ନାମ ଫାଲଗୁନୀ ହେଲା କନ୍ୟା ରାଶି
ଗଣ୍ଡଶୂଳ ନାସ୍ତି ଶୁଭଯୋଗାଦି ସେ ଭାଷି ।
ସର୍ବଗୁଣେ ସୁନ୍ଦର ଏ ସୁର ଅରିକାଳ
ଶୁଣି ଆନନ୍ଦିତ ହେଲେ ଦେବ ଆଖଣ୍ଡଳ ।
ଦେବରାଜାର ଯେତେକ ଅଳଙ୍କାର ଥିଲା
ପୁତ୍ର ଅଙ୍ଗେ ମଣ୍ଡି ତହୁଁ ସୁରନାଥ ଗଲା ।
ପଣ୍ଡୁ ପ୍ରବେଶ ହୋଇଲେ ସୁରନଦୀ କୂଳେ
ଭୁବନ ମୋହନ ପୁତ୍ର କୁନ୍ତୀ ଦେବୀକୋଳେ ।
ଦେଖି ତାହା ମହାରାଜା ଅନେକ ସାନନ୍ଦେ
ବୋଇଲେ ପାଇଲି ପୁତ୍ର ତୋର ପରସାଦେ ।
ଯୁଧିଷ୍ଠିର ଭୀମସେନ ଅର୍ଜ୍ଜୁନ ଏ ତିନି
ପୁତ୍ରକୁ ପାଳନ୍ତି କୁନ୍ତୀ ଦେବୀ ମାଦ୍ରୀ ଘେନି ।
ମନୁ ବୋଇଲେ ଶୁଣିମା ମୁନି ଅଗସ୍ତି ହେ
ମୋତେ ଫେଡ଼ି କହିଦେବା କଥାର ସନ୍ଦେହ ।
ଧର୍ମଠାରୁ ଉପୁଜିଲା ଯେଉଁ ପୁତ୍ର ଗୋଟି
ତାହା ନାମ କୁନ୍ତୀ ଦେଲେ କିମ୍ପାଇ ଯୁଧିଷ୍ଠି ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ମହାରାଜ
ପ୍ରଥମେ ଉପୁଜି ହେଲା ଦ୍ୱିତୀୟ ଆତ୍ମଜ ।
କୁନ୍ତୀ ଦେବୀ ବିଚାରିଲେ କର୍ଣ୍ଣ ମୋର ଜ୍ୟେଷ୍ଠ
ଗଙ୍ଗାରେ ପକାଇ ଦେଲେ ହୋଇ ଜ୍ଞାନଭ୍ରଷ୍ଟ ।
ସେ ପୁତ୍ର ଲୋଡ଼ିଲେ ଆଉ ପାଇବି ବା କାହିଁ
ଦ୍ୱିତୀୟେ ଏ ଉପୁଜିଲା ମୋର ଜ୍ୟେଷ୍ଠ ଏହି ।
ଜ୍ଞାନବନ୍ତ ଅହର୍ନିଶି କରୁଥାଇ ଧର୍ମ
ତେଣୁ ସ୍ନେହକରି ଦେଲେ ଯୁଧିଷ୍ଠିର ନାମ ।
ଜୟ ତୁ ଜୟ ତୁ ଦେବ ଧର୍ମ ନିରଞ୍ଜନ
ଦୟାକରି ବାରେ ହୁଅ ମୋଠାରେ ପ୍ରସନ୍ନ ।
ଜନ୍ମେ ଜନ୍ମେ ମୁହିଁ ତବ ଚରଣେ ଶରଣ
ଶାରଳା ଦାସ ମୁଁ ଭଜେ ଶାରଳା ଚରଣ ।

—o—

## ନକୁଳ ଜନ୍ମ

ଅଗସ୍ତିଙ୍କି ପୁଚ୍ଛାକଲେ ବୈବସ୍ୱତ ମନୁ
ଏବେ ସେ ଭ୍ରାନ୍ତି ଫିଟିଲା ସର୍ବ ମୋର ମନୁ ।
କୁନ୍ତୀ ଦେବୀଙ୍କର ତିନି ପୁତ୍ର ଉପୁଜିଲା
କୁନ୍ତୀ କି ଭକତି କରି ମାଦ୍ରୀ କିସ କଲା ।
ତିନି ପୁତ୍ର ମୁଖ ଦେଖି କୁନ୍ତୀ ଦେବୀ ଭାଳି
ସହି ନ ପାରଇ ପର ପୁରୁଷ ଅର୍ଦ୍ଧୋଳୀ ।
ଆପଣା ସ୍ୱାମୀ କି ଲାଗେ ସିନା ଭାର୍ଯ୍ୟା ଚିନ୍ତା
ପର ପୁରୁଷ ଶୃଙ୍ଗାରେ ଅନେକ ଅବସ୍ଥା ।

ନ ପାରଇ ସହି ପର ପୁରୁଷ ଆଦ୍ଧୋଳି
ମାଦ୍ରୀ କି ଘେନିଣ ଦେବୀ ଏକାନ୍ତରେ ଭାଳି ।
ତୁ ଗୋ ମାଦ୍ରୀ ମୋର ସପତଣୀ ହୁଅ ଅବା
ଭକତି କରି ବହୁତ କଲୁ ମୋତେ ସେବା ।
ତୁ ମୋର ଅଭିନ୍ନ ଅଟୁ ପ୍ରାଣ ସଙ୍ଗାତୁଣୀ
ମୋତେ ସେବି ଅପୁତ୍ରିକ ମଧ୍ୟେ ହେବୁ ଗଣି ।
ଏମନ୍ତ କହି ମାଦ୍ରୀକୁ ଦେଲେ ଜପାମାଳି
ସୁମର ଗୋ ଦିଗପାଳ ମଧ୍ୟୁ ମନେ ଭାଳି ।
ଆପେ ଥାଇ କୁନ୍ତଭୋଜ ଦୁହିତା ଏକାନ୍ତେ
ମାଦ୍ରୀଙ୍କୁ ଶୁଆଇଦେଲେ ନେଇ ଶଯ୍ୟାଗତେ ।
ମଦନ ମହାଦେବୀର ଅଟଇ କୁମାରୀ
ଏହା ମାତା ନାମ ଥିଲା ବସନ୍ତ ଅପ୍‌ସରୀ ।
ବାସବଠାରୁ ସେ ପାଇ ଅଭିଶାପ କୋପେ
ମଧ୍ୟପୁରେ ଉପୁଜିଲା ମାନୁଷୀ ସ୍ୱରୂପେ ।
ତାହାର ନାତୁଣୀ ଏହି ମାଦ୍ରୀ ଏହା ନାମ
ବାଛିଣ ପଣ୍ଡୁ ରାଜାକୁ କରିଲେ ପ୍ରଦାନ ।
ତାହାର ଯେ ରୂପ ଗୁଣ କହି ତ କେ ପାରି
ପୃଥିବୀରେ ଅଳଙ୍କାର ଅଟଇ ସୁନ୍ଦରୀ ।
କୁନ୍ତୀ ବୋଇଲେ ତୁ କରେ ଘେନି ଜପାମାଳି
ଯାହାକୁ ଇଚ୍ଛା ସୁମର ମନେ ମନେ ଭାଳି ।
ଏତକ ତିଆରି କୁନ୍ତୀ ଗଲେ ବନପ୍ରାନ୍ତେ
ବେଶଭୂଷା ହୋଇ ବସି ମାଦ୍ରୀ ଶଯ୍ୟାଗତେ ।
ବୋଇଲେ ଧର୍ମ ପବନ ଇନ୍ଦ୍ର ହେଲେ ପୁତ୍ର
ଦେବତାଙ୍କ ମଧ୍ୟେ ଆଉ ନାହିଁ ବଳବନ୍ତ ।
ନାରାୟଣ ଦେବତାଙ୍କୁ ସୁମରିବି ଆଜ
ବିଷ୍ଣୁର ବୀର୍ଯ୍ୟେ ମୁଁ ଉପୁଜାଇବି ଆତ୍ମଜ ।
ମୋର ପୁତ୍ର ଗୋଟି ହେଉ ବଳବନ୍ତ ଅତି
ସକଳ ବ୍ରହ୍ମାଣ୍ଡେ ସେହୁ ହେଉ ଏକ କ୍ଷତ୍ରି ।
ଗାନ୍ଧାରୀ ପୁତ୍ରକୁ କୁନ୍ତୀ ତିନିପୁତ୍ର ଜିଣି
ମୋ କୁମର ହେଉ ଏକା ନୃପ ଶିରୋମଣି ।
ଏତେକ ବିଚାରି ଦେବୀ ବସି ନିଶାକାଳେ
ନାରାୟଣଙ୍କୁ ସ୍ମରିଲେ ଋଷିମନ୍ତ୍ର ବଳେ ।
ବୈନତେୟ ବାହନରେ ଦେବ ନାରାୟଣ
ଶତଶୃଙ୍ଗ ପର୍ବତରେ ବିଜୟ ତତ୍‌କ୍ଷଣ ।
ବେଶ ହୋଇ ମଦ୍ରଦେଶ ରାଜାର କୁମାରୀ
ଅର୍ଘ୍ୟ ଥୋଇ ହୃଦେ ନାରାୟଣଙ୍କୁ ସୁମରି ।
ଏମନ୍ତ ସମୟେ ଆସି କୃଷ୍ଣ ବିଜେ କଲେ
ଦେଖିଣ ମାଦ୍ରୀ ଆସନ ତେଜିଣ ଉଠିଲେ ।
ନାରାୟଣ ବୋଇଲେ ତୁ ପଣ୍ଡୁ ପାଟରାଣୀ
ନିରାକାର ବୋଧିଲା ତୋ ଜ୍ୟେଷ୍ଠ ସପତଣୀ ।

ତାର ବୀର୍ଯ୍ୟେ ଉପୁଜିଲା ଯେଉଁ ପୁତ୍ର ଗୋଟି
ସେ ନିରଞ୍ଜନ ଦେବଟି ଠାକୁର ଯୁଧିଷ୍ଠି ।
ତୁ ମୋର ମାତା ପ୍ରତ୍ୟକ୍ଷେ ଅଟୁ ନିରଞ୍ଜନୀ
ପୁତ୍ରକୁ ସ୍ମରିଲୁ କିମ୍ପା ମହାମନ୍ତ୍ର ଘେନି ।
ଋଷି ମହାମନ୍ତ୍ର ଯିବ କେମନ୍ତେ ଗୋ ମେଣ୍ଟି
ନିଜ ପ୍ରାଣ ବିସର୍ଜନ ମୂର୍ଦ୍ଧାଯିବ ଫାଟି ।
ମାତାର ସଙ୍ଗେ କାହିଁ ଗୋ କୁମରର ଭେଟ
ମୋତେ ତ ହୋଇଲା ଏଥେ ଦୁଃସହ ସଙ୍କଟ ।
ତୁ କିମ୍ପା ବିଚାର ଏହା ନ କଲୁ ତୋ ମନେ
ଜ୍ଞାନ ଥାଉ ଗୁରୁ ପତ୍ନୀ ହରିବି କେସନେ ।
ମାଦ୍ରୀ ଆଶ୍ଚର୍ଯ୍ୟ ହୋଇଲେ ଏ ବଚନ ଶୁଣି
ମୋ କର୍ମକୁ ପଡ଼ିଲା ଏ ଯୋଗ ଚକ୍ରପାଣି ।
ଅନ୍ତର ହୋଇଣ ଚାହିଁଥିଲେ ଦେବୀ କୁନ୍ତୀ
ଧାତିକାରେ ବିଜେ କଲେ ଧର୍ମଙ୍କର ପତ୍ନୀ ।
ଦେଖିଲେ ସେ ନାରାୟଣ ଶଙ୍ଖ ଚକ୍ରଧାରୀ
ସାରଙ୍ଗ ଗଦା ଧରିଣ ଶତଶୃଙ୍ଗ ଗିରି ।
କୁନ୍ତଭୋଜର କୁମାରୀ ହୋଇଲେ ଆଶ୍ଚର୍ଯ୍ୟ
ସୁଜ୍ଞାନେ ମାଦ୍ରୀ ପାଇଲା ଦେବ ଦେବରାଜ ।
ଯାଙ୍କ ବୀର୍ଯ୍ୟେ ଉତପତ୍ତି ହୋଇଲେ ସନ୍ତତି
ଅର୍ଜ୍ଜୁନକୁ ଜିଣିଣ ସେ ଏକା ହେବ କ୍ଷତ୍ରୀ ।
କୁନ୍ତୀଦେବୀଙ୍କୁ ଦେଖିଣ ଦେବ ଚକ୍ରଧାରୀ
ଧାତିକାରେ ଗରୁଡ଼ର ପୃଷ୍ଠୁ ଅବତରି ।
ଦୁର୍ବାସା ଋଷି ତୋଷିଲୁ ମାଗୋ ବାଲ୍ୟକାଳେ
ନିରଞ୍ଜନ ପୁତ୍ର ରୂପେ ଜାତ ତୋର କୋଳେ ।
ବିବୁଧାଦି ନ ଦେଖନ୍ତି ଯାର ବର୍ଣ୍ଣ ଚିହ୍ନ
ସେ ସିଦ୍ଧ ମହାତ୍ମା ତୋତେ ହୋଇଲେ ପ୍ରସନ୍ନ ।
ଆମ୍ଭେ ଯେ ତୁମ୍ଭର ପୁତ୍ର ତୁମ୍ଭେ ଆମ୍ଭ ମାଏ
ତୁମ୍ଭେ ଚିନ୍ତିଲ କିମ୍ପାଇଁ ଏସନ ଉପାୟେ ।
ମହାମନ୍ତ୍ରକୁ କେମନ୍ତେ କରିବି ମୁଁ ତ୍ୟାଗ
ମୋତେ ତ ମାତ ଏଥେ ଗୋ ପଡ଼ିଲା ବିଯୋଗ ।
ତୁ ଏହାକୁ ବିଚାର କର ଗୋ ଯୋଗେଶ୍ୱରୀ
କୁନ୍ତୀ ବୋଇଲେ ବିଚାରି ନ ପାରେ ମୁଁ ହରି ।
କୁନ୍ତୀ ଦେବୀଙ୍କୁ ଲାଗିଲା ମନେ ମହାଭୀତି
ତହିଁରେ କରନ୍ତି ନାରାୟଣ ବହୁ ଶାନ୍ତି ।
କୁନ୍ତୀ ବୋଇଲେ ତୁ ଫେରିଯାଅ ଦାମୋଦର
ତୁ ମାଦ୍ରୀଦେବୀ ଗୋ ଆନ ଦେବତା ସୁମର ।
ଗୋବିନ୍ଦ ବୋଇଲେ ହେଲା ଦୁଃସହ ଏ ମୋତେ
ଦୁର୍ବାସାଙ୍କ ମହାମନ୍ତ୍ରେ ବଞ୍ଚିବି କେମନ୍ତେ ।
ଏଥି ପ୍ରତିକାର ସିନା ସେ ଋଷି ଜାଣନ୍ତି
ତାଙ୍କୁ ତୁମ୍ଭେ ସୁମରଣା କର ମାଗୋ କୁନ୍ତୀ ।

ଶୁଣିଣ ସାନନ୍ଦ ଭୋଜରାଜାର କୁମାରୀ
ଏକ ଲୟେ ଦୁର୍ବାସାଙ୍କୁ ମନରେ ସୁମରି ।
ଦଣ୍ଡ କମଣ୍ଡଳୁ କକ୍ଷା କୌପୁନି ଶତାଂଶୁ
ତାମ୍ରବର୍ଣ୍ଣ ବସ୍ତ୍ର ପିନ୍ଧି ଅଙ୍ଗେ ଲିପା ପାଂଶୁ ।
ନାରାୟଣଙ୍କୁ ଦେଖିଲେ ଦୁର୍ବାସା ମହର୍ଷି
ଅର୍ଘ୍ୟଦେଇ ପଣ୍ଡୁରାଜା ପତ୍ନୀ ତାଙ୍କୁ ତୋଷି ।
ଦୁର୍ବାସା ବୋଇଲେ ମାଦ୍ରୀ ମନ୍ଦକୃତ୍ୟ କଲୁ
ନାରାୟଣ ଦେବତାଙ୍କୁ କିମ୍ପା ସୁମରିଲୁ ।
ଦୁର୍ବାସାଙ୍କୁ ବୋଲନ୍ତି ଯେ ପ୍ରଭୁ ଦାମୋଦର
ଭୋ ମୁନି ଏଥକୁ ବେଗେ ପ୍ରତିକାର କର ।
ନାରାୟଣ ବାକ୍ୟଦୋଷ ଖଣ୍ଡିଲେ ଦୁର୍ବାସା
ଆନ ପୁରୁଷଙ୍କୁ ମାଦ୍ରୀ ଦେବୀ କରୁ ଆଶା ।
ଦୁର୍ବାସା ବୋଇଲେ ଆଗୋ ଭୋଜର କୁମାରୀ
ଦେଖିବା ଆଣ କେମନ୍ତେ ପୁତ୍ର ଗୋ ତୋହରି ।
ଶୁଣିଣ ହରଷ ହେଲେ ପଣ୍ଡୁ ରାଜରାଣୀ
ଯୁଧିଷ୍ଠି ଭୀମ ଅର୍ଜୁନ ଏ ତିନିଙ୍କି ଆଣି ।
ପୁତ୍ରଙ୍କୁ ଘେନିଣ କୁନ୍ତଭୋଜର ନନ୍ଦିନୀ
ଶତ ସହସ୍ର ପ୍ରଣାମ କରି ମହାମୁନି ।
ବୋଇଲା ପୂରିଲା ଏବେ ତୋର ମନୋବାଞ୍ଛା
ସୁଖେ ରାଜ୍ୟ ପାଳନ୍ତୁ ଯେ ଏ ତୋହରବତ୍ସା ।
ନାରାୟଣ ନିରେଖନ୍ତେ ଯୁଧିଷ୍ଠି ବହନ
ଶୁକ୍ଳାମ୍ବର ପୁରୁଷ ଏ ଧର୍ମ ନିରଞ୍ଜନ ।
ଧବଳ ଶରୀର ଶୁଦ୍ଧ ସ୍ଫଟିକଇ ପ୍ରାୟେ
ନାରାୟଣ ପ୍ରଣମିଲେ ଯୁଧିଷ୍ଠିର ପାୟେ ।
ଧାର୍ମିକ ସେ ଗୁଣବନ୍ତ ପ୍ରାପ୍ତ ସର୍ବଦୀକ୍ଷା
ଅନ୍ତରେ କଲ୍ୟାଣ କଲେ ନ କହିଲେ କଥା ।
ନାରାୟଣ ପଚାରନ୍ତି ଏ ପୁରୁଷ ବ୍ରହ୍ମ
ଜନ୍ମକୁ ସଫଳ କଲି ହରିଲା ମୋ ଶ୍ରମ ।
ଅନେକ ସାନନ୍ଦ ହେଲେ ଦେଖି ଅର୍ଜୁନକୁ
ହୃଦେ ଲଗାଇ ବୋଇଲେ ତୁ ଯେ ମୋର ବୁକୁ ।
ଗଳାରେ ଲମ୍ବାଇ ଦେଲେ କୃଷ୍ଣ ଅର୍କମଣି
ଅନେକ ସେ ଆଭରଣ ଦେଲେ ଚକ୍ରପାଣି ।
ମନେ ମନେ ନାରାୟଣ ସନ୍ତୋଷ ହୋଇଲେ
ଅର୍ଜୁନଙ୍କୁ କୃଷ୍ଣ ବୋଲି ଏକ ନାମ ଦେଲେ ।
ତହୁଁ ଅର୍ଜୁନକୁ କୋଳେ ଧଇଲେ ଶ୍ରୀପତି
ବାରଣ ନ ଗଲା ଏକା ଦୁହିଁଙ୍କର ମୂର୍ତ୍ତି ।
ଅର୍ଜୁନଙ୍କୁ ଘେନିଣ ଯେ ଦେବ ବନମାଳୀ
ମଥୁରାକୁ ଶତଶୃଙ୍ଗ ପର୍ବତରେ ଖେଳି ।
ମହାଅରଣ୍ୟେ ପଶନ୍ତି କ୍ରୀଡ଼ା ରଙ୍ଗରସେ
ଅର୍ଜୁନର ମେଳେ ଥାନ୍ତି ରଜନୀ ଦିବସେ ।

କୃଷ୍ଣ ଅର୍ଜୁନ ଯମୁନା କୂଳେ ଥାନ୍ତି ବସି
ବରଷ ବାରି ନୁହଇ ଦୁହେଁ ଏକା ଦିଶି ।
ହସନ୍ତି ଖେଳନ୍ତି ଦୁହେଁ ରହି ବନବାସେ
ଏମନ୍ତବେଳେ ଭେଟିଲେ ଆସି ମୁନିବ୍ୟାସେ ।
ବ୍ୟାସଙ୍କୁ ଦେଖି ଉଠିଲେ କୃଷ୍ଣ ଅରଜୁନ
ଶତ ସହସ୍ର ପ୍ରଣାମ କଲେ ଯେ ନନ୍ଦନ ।
ବ୍ୟାସ ବୋଇଲେ ତୁମ୍ଭର ଘର ଗୋପପୁର
ଏଠାକୁ ଚାଳିଶ ସସ୍ର ଯୋଜନ ଅନ୍ତର ।
ଏତେ ଦୂରେ ଥାଇ ହେଲା କେମନ୍ତେ ପୀରତି
ମନୁଷ୍ୟ ସଙ୍ଗେ କେସନ ନାରାୟଣ ରତି ।
ନାରାୟଣ ବଦନ୍ତି ହୋ ଶୁଣ ମୁନି ବ୍ୟାସେ
କୁମୁଦ ଅଗାଧ ଜଳେ ଚନ୍ଦ୍ର ଯେ ଆକାଶେ ।
ଦୁଇଲକ୍ଷ ଯୋଜନ ଯେ ମଧ୍ୟରେ ଅନ୍ତର
କୁମୁଦ ବନ୍ଧୁ କିମ୍ପାଇଁ ହେଲା ଶଶଧର ।
ଯାହାର ଯାହାର ହୃଦେ ଥାଇ ପ୍ରିୟଭାବ
କି ଆକାଶ କି ପାତାଳ କିବା ରାତ୍ରଦିବ ।
ବିପାତ ସତ୍ୟଯୁଗରେ ମୋର ଅବତାର
ମୋ ନାମ ନାରାୟଣ ହେ ଅର୍ଜୁନ ସୋଦର ।
ଶୁକ ସତ୍ୟଯୁଗେ ଅଣାକାର ବିଷ୍ଣୁ ଦ୍ୱାରେ
ଜୟ ବିଜୟ ରୂପରେ ବଇକୁଣ୍ଠ ପୁରେ ।
ଭବାନୀ ସତ୍ୟଯୁଗେ ମୁଁ ଅଟେ ନୀଳାମ୍ବର
ଏ ମୋହର ସଖା ହୋଇ ରୁଦ୍ର ଅବତାର ।
ବିଧୃତ ସତ୍ୟଯୁଗେ ମୁଁ ଅଟେ ବିଷ୍ଣୁନାଥ
ସନକ ନାମେ ବ୍ରହ୍ମା ଏ ମୋର ପଞ୍ଚଭୂତ ।
ଅଭିନ୍ନ ସତ୍ୟଯୁଗେ ମୁଁ ଅଟଇ ଅନନ୍ତ
ଏ ଇନ୍ଦ୍ର ଦେବତା ହେଲା ମୋର ପଞ୍ଚଭୂତ ।
ମେଖଳା ସତ୍ୟଯୁଗେ ମୁଁ ଲକ୍ଷ୍ମୀ ନାରାୟଣ
ଏହି ମୋହର ମଇତ୍ର ଶ୍ରୀବତ୍ସ ବ୍ରାହ୍ମଣ ।
ଏ ଭୃତ୍ୟ ହୋଇଣ ପୁଣି ମନେ ଗର୍ବ କଲା
ତୋ ତହୁଁ ବଡ଼ ହୋଇବି ବୋଲିଣ ବୋଇଲା ।
ସେ କଥାରେ ଏହିଠାରେ ମୁହିଁ ରାଗ କରି
ଅନ୍ଧ ଅନ୍ଧୁଣୀର ଘରେ ଜନ୍ମ କରାଇଲି ।
ଦରିଦ୍ର ଅବସ୍ଥା ପାଇ ଭିକ ମାଗୁଥାଇ
ଏତେ ଶାସ୍ତ୍ରରେ ମୋତେ ନ ଛାଡ଼ିଣ ଚିନ୍ତଇ ।
ଦିନେ ଭିକମାଗି ଯାଉଅଛି ଏ ନଗ୍ରକୁ
ମାୟା କରି ଲୁଚାଇଲି ମୁଁ ଲୋକନାଥଙ୍କୁ ।
ଅପାର ନଗ୍ର ବୁଲିଣ ଅଇଲାକ ଫେରି
ଆରତେ ଭ୍ରମିଲା ସେହି ଦିବା ଦୁଇ ଚାରି ।
ଜନ ମନୁଷ୍ୟ କାହିଁ ସେ କିଛି ହିଁ ନ ଦେଖି
ବାହୁଡ଼ଇ ଆଶ୍ରମକୁ ହୋଇ ମହାଦୁଃଖୀ ।

ପାଷାଣ ଜଗନ୍ନାଥ ଏ ଦେଖି କୋପ କଲା
ବାମପାଦ ନେଇ ମୋର ହୃଦରେ ମାଇଲା ।
ମୂର୍ତ୍ତିମନ୍ତ ହୋଇ ତହିଁ ମୁଁ ଉଭା ହୋଇଲି
ବ୍ୟଥା ପାଇଲା ବୋଲି ଯେ ପାଦ ମଞ୍ଜାଳିଲି ।
ବ୍ୟାସେ ଏହାର ମୋହର ଏଡ଼େ ଭାବହାଦେ
ଏହି ପାଦଚିହ୍ନ ଅଛି ଦେଖ ମୋର ହୃଦେ ।
ହିରଣ୍ୟ ସତ୍ୟଯୁଗେ ମୁଁ ନୃସିଂହ ମୂରତି
ଏହି ପ୍ରହ୍ଲାଦ ଅସୁର ରୂପେ ଉତପତ୍ତି ।
ହିରଣ୍ୟ ବିଦାରି ନେଇ ବସାଇଲି କୋଳେ
ଚିରନ୍ତନ ପାଦ ଦେଲି ଆକାଶ ମଣ୍ଡଳେ ।
କୁତୁହଳ ଇଚ୍ଛାଏ ମୁଁ ଶ୍ରମ ପୁଣ କରି
ବିତପନ ସତ୍ୟଯୁଗେ ଗ୍ରହ ଅବତରି ।
ଗ୍ରହଯୋଗ ହୋଇଲୁ ଯେ ଆମ୍ଭେ କୁତୁହଳେ
କେତୁ ମଙ୍ଗଳ ନାମ ଯେ ବହିଲୁ ଯେ କାଳେ ।
ମୁହିଁ ଆଦ୍ୟ କେତୁଗ୍ରହ ମଙ୍ଗଳଟି ଏହି
କାଳ ଅନୁରୂପେ ଆମ୍ଭେ ଛଡ଼ାଛଡ଼ି ନୋହିଁ ।
ତ୍ରିତାପ ସତ୍ୟଯୁଗେ ଯେ ହେଲୁ ଅବତାର
ଦୁର୍ଦ୍ଦେ ଜନମ ହୋଇଲୁଁ ଯମଦଗ୍ନି ଘର ।
ମୁହିଁ ପରଶୁରାମ ଏ ଅଟେ ନୀଳରାମ
ଦୁଷ୍ଟଙ୍କୁ ଅନ୍ତ କରିଣ ପାଇଲୁ ଯେ ଧର୍ମ ।
ଚିରଞ୍ଜିବୀ ହୋଇଲି ମୁଁ ସେହି ଅବତାରେ
ତ୍ରେତାଯୁଗେ ଉପୁଜିଲୁ ଦଶରଥ ଘରେ ।
ମୁହିଁ ଯେ ବାଦେ ଶ୍ରୀରାମ ଅଟେ ଏ ଭରତ
ଏ ଦ୍ୱାପର ଯୁଗ ଏବେ ଅଟୁ କୃଷ୍ଣ ପାର୍ଥ ।
ଅନେକ ଅବତାର ଯେ ହୋଇଛୁ ଏମନ୍ତେ
ତୁମ୍ଭେ ହେ ବ୍ୟାସେ ଅନ୍ତର କରୁଛ କେମନ୍ତେ ।
ବ୍ୟାସ ବୋଇଲେ କହିଲୁ ତାହା ଦେବରାଜା
ମୋତେ ତୋ ରୂପ ଦେଖାଇ ପ୍ରତୀତି ଉପୁଜା ।
କୃଷ୍ଣ ଅର୍ଜ୍ଜୁନ ଯେ ତୁମ୍ଭେ ଏକା କଳା ବେନି
ଭାରା ନିବାରିବା ପାଇଁ ଉପୃତ୍ତି ମେଦିନୀ ।
ଏହାକୁ ସ୍ୱାମୀ ତୋହର ବିଶ୍ୱରୂପ ଦେଖା
ଏ ଯେବେ ଦେଖିପାରଇ ଅଟଇ ତୋ ସଖା ।
ଗୋବିନ୍ଦ ବୋଇଲେ ଏହା କେମନ୍ତେ ଫାଲଗୁନି
ଅର୍ଜ୍ଜୁନ ବୋଇଲେ ପ୍ରତେ ଯାନ୍ତୁ ମହାମୁନି ।
ତେମନ୍ତେଟି ବିଶ୍ୱରୂପ ଅଟଇ ତୋହରି
ଦେଖିବାକୁ ଇଚ୍ଛା ଦେବ ହୋଇଛି ମୋହରି ।
କୃଷ୍ଣ ପ୍ରସନ୍ନ ହୋଇଲେ ଅର୍ଜ୍ଜୁନ ବଚନେ
ଧଇଲେ ବିଶ୍ୱରୂପ ଯେ ପ୍ରଭୁ କୁଳବନେ ।
ବ୍ୟାସ ବଚନେ ଅର୍ଜ୍ଜୁନ ଚାହିଁ କୁତୂହଳେ
କ୍ଷଣକେ ମୁଦ୍ରା ଲାଗିଲା ଗଗନ ମଣ୍ଡଳେ ।

ଆକାଶକୁ ଘୋଟିଲା ସେ ନାରାୟଣ କାୟା
ସ୍ୱର୍ଗରେ ଶିର ଲାଗିଲା ଅଦ୍‌ଭୂତ ମାୟା ।
ଆକାଶେ ଶିର ଆବର ପାଦ ରସାତଳେ
ମଧ୍ୟଭୁବନେ ଅର୍ଜ୍ଜୁନ ଦେଖେ କୁତୂହଳେ ।
ଶୂନ୍ୟ ଭୁବନଟି ବକ୍ଷସ୍ଥଳ ଯେ ହୋଇଲା
ଆଶା ମଣ୍ଡଳ ସୀମାନ୍ତ ସ୍ଥଳେ ବିକଶିଲା ।
ବେନି ଲୋଚନ ହୋଇଲା ଜାତ ଚନ୍ଦ୍ରସୂର୍ଯ୍ୟ
ଦେବତାଏ ଲୋମାବଳୀ ହୋଇ କଲେ କାର୍ଯ୍ୟ ।
ଚତୁର୍ଯୁଗ ସ୍ୱାମୀଙ୍କର ହେଲେ ଚତୁର୍ଭୁଜ
ପଞ୍ଚଅଗ୍ନି ଶିଖା ପ୍ରାୟ ବିକଶିଲା ତେଜ ।
କରତଳ ମଧ୍ୟେ ଯେତେ ଅଛଇ ଅଙ୍ଗୁଷ୍ଠି
ପର୍ବତମାନେ ତହିଁରେ ଆସି କଲେ ଗୋଷ୍ଠୀ ।
ସପତ ସାଗର ଜଳ ସିନ୍ଧୁ ମହାଘୋଷ
ଦକ୍ଷିଣ କରେ ରହିଣ ହୋଇଲା ଗଣ୍ଡୁଷ ।
ନାରାୟଣ ବକ୍ଷସ୍ଥଳେ ବହେ ଯେବେ ପାଣି
ତେବେ ସେ ଭୁଜକୁ ଜାଣ ପାଣି ମଧ୍ୟେ ଗଣି ।
ଚାରିଖାନି ଚଉରାଶି ଜୀବ ପୃଥ୍ୱୀମେଳେ
ରହିଲେକ ନାରାୟଣ ବାମକର ତଳେ ।
ଏସନକ ବିଶ୍ୱରୂପ ଧଇଲେ ଅଭୁତେ
ଏକା ଶରୀରକେ ବିକଶିଲେ ତ୍ରିଜଗତେ ।
ଅର୍ଜ୍ଜୁନର ବଦନକୁ ଚାହିଁ ମୁନି ବ୍ୟାସେ
ନ ପୁଣ ଦଗଧ ଏହୁ ହୁଏ କୃଷ୍ଣ ତ୍ରାସେ ।
ବ୍ରହ୍ମା ଦେବତା ଏ ରୂପ ଦେଖି ନ ପାରିଲା
ଗଙ୍ଗାଜଳେ ବକ୍ଷସ୍ଥଳ ମାଡ଼ିଣ ପଡ଼ିଲା ।
ଶ୍ୱେତରାଜା ଯଜ୍ଞକାଳେ ଥିଲା ଯେଉଁ ପାଂଶୁ
ରୁଦ୍ରଦେବ ପଡ଼ି ତହିଁ ହୋଇଲେ ଶୀତାଂଶୁ ।
ସେ ପାଉଁଶ କୂଳେ ପଡ଼ି ରୁଦ୍ରେ ମୂର୍ଚ୍ଛାପାନ୍ତି
ତେଣୁ ସେ ରୁଦ୍ର ବହିଲା ନାମ ପଶୁପତି ।
ପର୍ବତ ମ୍ଭେ ଆତଯାତ ବିଷ୍ଣୁ ନାସାଗ୍ରତେ
ତହୁଁ ଯେ ବାତ ନାମକୁ ବହିଲେ ମରୁତେ ।
ସମସ୍ତ ଯେ ବୁଡ଼ିଗଲା ଗୋବିନ୍ଦ କାୟାକେ
କୃଷ୍ଣ ଆଶ୍ରୟେ ରହିଲେ ସ୍ୱର୍ଗେ ବୃନ୍ଦାରକେ ।
ଅର୍ଜ୍ଜୁନ ହସି ବୋଇଲା ବାଳକଙ୍କ ପ୍ରାୟ
ଆହୁରି ବଢ଼ିବ କିବା ଏଡ଼ିକି ତୋ କାୟ ।
ଶୁଣିଣ ହସିଲେ ପରାଶରଙ୍କ ସନ୍ତତି
ଭୋ ଦେବ ନାରାୟଣ ତୁ ଭଜ ଶାନ୍ତମୂର୍ତ୍ତି ।
ଏକ କାୟ ଘୋଟିଗଲା ଏ ବ୍ରହ୍ମାଣ୍ଡ ପୁରୀ
ଅର୍ଜ୍ଜୁନ ବୋଇଲେ ତୋର ଅଛି କି ଆହୁରି ।
ମୁହିଁ ତୋହର ହୃଦରେ ପଶେ ସର୍ବକାଳେ
ବିଶ୍ୱରୂପ ତେଜ ମୋତେ ଲାଗିଲାକ ହେଳେ ।

ମୁହିଁ ଭୟ କଲି ଦେଖି ତୋର ବିଶ୍ୱମୂର୍ତ୍ତି
ଏ ବୋଇଲା ଆହୁରି ହେ ବଡ଼ ନା ଶ୍ରୀପତି ।
ମୋ ତହୁଁ ତୋହର ବନ୍ଧୁ ନାହିଁ ଜାଣିଥିଲି
ଆଉ ଜଣେ ଅଛି ବୋଲି ଏବେ ଯେ ଜାଣିଲି ।
ବ୍ୟାସ ବୋଇଲେ ଅର୍ଜ୍ଜୁନ ତୁହୋ ସାଧୁ ସାଧୁ
ନାରାୟଣର ବାନ୍ଧବ ତୁ ତ ପ୍ରାଣବନ୍ଧୁ ।
ଅର୍ଜ୍ଜୁନ ରୀତି ଦେଖିଣ ପ୍ରଭୁ ଜନାର୍ଦ୍ଦନ
ଛାଡ଼ିଲେ ବିଶ୍ୱରୂପକୁ ହୋଇଲେ ସାମାନ୍ୟ ।
ଅର୍ଜ୍ଜୁନକୁ କୋଳ କରି ଧରି ମୁନି ବ୍ୟାସେ
ବୋଲେ ଭାରା ହରଣେ ଜାତ ବିଷ୍ଣୁ ଅଂଶେ ।
ଅର୍ଜ୍ଜୁନକୁ ଛାଡ଼ି ଶତଶୃଙ୍ଗ ପରବତେ
ବ୍ୟାସ ତତକ୍ଷଣେ ତହୁଁ ଗଲେ ଅନ୍ତର୍ହିତେ ।
ଶ୍ରୀବିଷ୍ଣୁ ହିଁ ତହୁଁ ଗଲେ ମଥୁରା ଭୁବନେ
ଗୋପପୁରେ ପ୍ରବେଶ ସେ ବାଳୁତ ବିଧାନେ ।
ଅଶ୍ୱିନ ଶୁକ୍ଳଦଶମୀ ତିଥି ଗୁରୁବାର
ଶରତ ଋତୁ ଶ୍ରବଣା ନକ୍ଷତ୍ର ଆବର ।
ବାଳବ ନାମେ କରଣ ବିଷ୍କୁମ୍ଭ ଯେ ଯୋଗ
ପଚିଶଦିନ ଯେ କନ୍ୟା ସଂକ୍ରାନ୍ତିର ଭୋଗ ।
ସେଦିନ ଅନ୍ଧାରୀ ବିଜେ ପଣ୍ଡୁ ରାଜା କଲେ
ମାଦ୍ରୀ ଦେବୀ ବସିଛନ୍ତି ଉଦ୍ୟାନେ ଶଯ୍ୟାରେ ।
ଭାବେ ଦୁର୍ବାସା ବରେ ବିଷ୍ଣୁଙ୍କୁ ସୁମରିଲେ
ଅପ୍ରାପତ ହେଲେ ସେ ତ ବୁଝି ନ ପାରିଲେ ।
ମୁହିଁ ଅତି ବାଳୁତ ଯେ ଅଟଇ କୁମାରୀ
ଗତ ଶୃଙ୍ଗର ବୀର୍ଯ୍ୟ ନ ପାରିବି ସଂହରି ।
ଅଶ୍ୱିନୀ କୁମାର ଯେହୁ ଆଦିତ୍ୟଙ୍କ ସୁତ
ସୁକୁମାର ବଳବନ୍ତ ବିଜ୍ଞ ଭାଗ୍ୟବନ୍ତ ।
ଶ୍ରୀହସ୍ତେ ଘେନିଲେ ମାଦ୍ରୀ ଋଷି ଜପାମାଳୀ
ଭୟ କରି ସୁମରିଲେ ଦ୍ୱିତୀ ଅଂଶୁମାଳୀ ।
ସୁରବର ସୁନ୍ଦର ଯେ ଲୋହିତାକ୍ଷ ରୂପ
ଅମୃତାକ୍ଷ ରୂପ କି ସେ ପ୍ରତ୍ୟକ୍ଷ କନ୍ଦର୍ପ ।
ରାତ୍ରିର ତେଜ ଭାଙ୍ଗିଲା ତା ରୂପ ଆଲୋକ
ବିକ୍ରମ ସିଂହ ବିକାଶି କୁମାର ଉଦ୍ରେକ ।
ଅନେକ ଅଳଙ୍କାର ଯେ ଭୂଷଣ ତା କାୟେ
ଦେଖି ପୂଜା କଲେ ମାଦ୍ରୀ ତାହାକୁ ନିର୍ଭୟେ ।
କୁମାର ମେଳେ ମାଦ୍ରୀର ବଢ଼ିଲା ପୀରତି
ସୁମିଷ୍ଟ ସମ୍ଭାଷଣରେ ପୁହାଇଲେ ରାତି ।
ମାଦ୍ରୀର ରଜେ ଅଶ୍ୱିନୀ କୁମାରର ବୀର୍ଯ୍ୟେ
ଉପୁତ୍ତି ହେଲା ଏକଇ ସଇନ୍ଦୁ ଆତ୍ମଜେ ।
ଅଲେଖ ଘଟଣ ଜିଣି ଦିଶଇ ଦୁଲ୍ଲାଳ
କୁମାର ସମ୍ଭବ ଜାଣି ଉପୁଜେ ନକୁଳ ।
ନବଧାରା ବାହିନୀ ଯେ ଗଙ୍ଗାକୂଳେ ଘେନି
ନବୀନ କୂଳେ ସଙ୍ଗମ ନବୀନା କାମିନୀ ।
ନବ ନୀର କୂଳେ ଯେଣୁ କୁମାର ଜନ୍ମିଲା
ତେଣୁ ମହାତ୍ମା ନକୁଳ ନାମ ତାର ହେଲା ।
ଅତି ସୁକୁମାର ତନୁ ସେ ଯେ ବାଳଶିଷି
ନିର୍ଦ୍ଧୂମ ଅନଳ ଜିଣି ତା ତେଜ ବିକଶି ।
ଶ୍ରବଣା ନକ୍ଷତ୍ରେ ଉତପତ୍ତି ହେଲା ବାଳ
ଅତି ସୁକୁମାର ସେହି କୁମାର ନକୁଳ ।
କୁନ୍ତୀଙ୍କର ତିନି ପୁତ୍ର ଗାନ୍ଧାରୀର ଶତ
ମାଦ୍ରୀ ଦେବୀର ପୁତ୍ରେକ ହୋଇଲା ସମ୍ଭୂତ ।
ଦେଖିଣ ପଣ୍ଡୁ ରାଜନ ଆନନ୍ଦିତ ହେଲେ
ଚାରି କୁମାରଙ୍କୁ କୁନ୍ତୀଦେବୀ ଯେ ପାଳିଲେ ।
ଭାଦ୍ରବ ଶୁକଳ ପକ୍ଷ ସପତମୀ ଦିନ
ଦୁର୍ବାସା ମହର୍ଷି କଲେ ହସ୍ତିନା ଗମନ ।
ଗାନ୍ଧାରୀ ସ୍ନାନ କରନ୍ତେ ଯମୁନାର ତୀରେ
ଏମନ୍ତବେଳେ ପ୍ରବେଶ ହେଲେ ମୁନିବରେ ।
ଦୁର୍ବାସା ଦେଖି ପ୍ରଣତି କଲେସେ ଗାନ୍ଧାରୀ
ଦୁର୍ବାସା ବୋଇଲେ ହୁଅ ସୁଲକ୍ଷଣୀ ନାରୀ ।
ଗାନ୍ଧାରୀ ବୋଇଲେ ତୁମ୍ଭେ ବ୍ରହ୍ମଜ୍ଞାନୀ ବେତ୍ତା
କେବଣ ମନେ ତୋଷିଲା ତୁମ୍ଭଙ୍କୁ କୋଇନ୍ତା ।
ଦୁର୍ବାସା ଋଷି ବୋଇଲେ ଯେ ଇଚ୍ଛା ତୋହର
ହୋଇବ ପ୍ରାପତ ତୋତେ ମାଗ କିନା ବର ।
ମହାମନ୍ତ୍ର ତୋତେ ଦେଇ ନ ପାରିବି ଯାଚି
ମାଗ ଇଚ୍ଛାଏ ତୋହର ଯେଣେ ମନ ଅଛି ।
ଗାନ୍ଧାରୀ ବୋଇଲେ ମୁନି ତୁମ୍ଭ ମନ୍ତ୍ରବଳେ
ଶତ ପୁତ୍ର ପାଇଲି ମୁଁ କର୍ମର ସଫଳେ ।
ପୁତ୍ରଙ୍କୁ କୋଳେ ଧରିଣ ବୋଇଲେ ବଶିଷ୍ଠ
ଅସଜ୍ଜନ ପୁତ୍ରେ ତୋର ହେବ ମହାଦୁଷ୍ଟ ।
ଅବିଚାରି ବାମା କଲୁ ଧୃତରାଷ୍ଟ୍ର ରାଣୀ
ରାଜ୍ୟକୁ କେହି ତୋହର ନୋହିଲେ କାରେଣି ।
ଏଣୁ ମୋତେ ଅନୁଗ୍ରହ ଭୋ ମୁନି କରିବା
ବଂଶକୁ କାରଣ କରି ପୁତ୍ର ଗୋଟି ଦେବା ।
ଆବର ଦେବାକୁ ମୋତେ ଦୁହିତା ଗୋଟିଏ
ଭକତି ମୋର ଘେନିଣ କରିବା ଉପାୟେ ।
ଗାନ୍ଧାରୀ କଟାଳ କଲେ ଯମୁନାର କୂଳେ
ଦେଖି ମହାତ୍ମା ଦୁର୍ବାସା ଋଷି ମନ୍ତ୍ରବଳେ ।
ସନ୍ତତି ଜାତକ ବୃକ୍ଷରାଜ ଯେ ତୁଳସୀ
ଫୁଲ ଏକ ପତ୍ର ଏକ ତୋଳିଲେ ମହର୍ଷି ।
ବୋଇଲେ ଏହାକୁ ପାନକର ଗୋ ଗାନ୍ଧାରୀ
ପଣ୍ଡିତ ପୁତ୍ର ପାଇବୁ ଶୁଣରେ ସୁନ୍ଦରୀ ।

କମଣ୍ଡଳୁ ପାଣିଆଣି ଦେଲେ ତପୋନିଷ୍ଠ
ଗାନ୍ଧାରୀ ତା ଗର୍ଭଗତ କଲା ହୋଇ ତୁଷ୍ଟ ।
ଋଷିଙ୍କର ମହାମନ୍ତ୍ର ଅନ୍ୟଥା ନୋହିଲା
ପୁତ୍ର ଏକ ଦୁହିତାଏ ତା ଗର୍ଭେ ରହିଲା ।
ମହାମନ୍ତ୍ର ଦେଇ ତହୁଁ ଦୁର୍ବାସା ଚଳିଲେ
ଗାନ୍ଧାରୀ ତନୁ ଅବଶ ହେଲା କର୍ଣ୍ଣବେଳେ ।
ଧୃତରାଷ୍ଟ୍ର ପୁଚ୍ଛାକଲେ ଶୁଣ ଗୋ ଗାନ୍ଧାରୀ
ଶରୀର ଅଳସ ତୋର ହେଲା ଗର୍ଭଭାରୀ ।
ଗାନ୍ଧାରୀ ବୋଲେ ଦୁର୍ବାସା ଦୟା କଲେ ମୋତେ
ଗର୍ଭେ ପୁତ୍ରେକ ରହିଲା ଋଷିଙ୍କର ମନ୍ତ୍ରେ ।
ଶୁଣି ବିରସ ହୋଇଲେ ରାଜା ଧୃତରାଷ୍ଟ୍ର
ବହୁ କୁଟୁମ୍ବରେ ଅଛି ବହୁତ ଯେ କଷ୍ଟ ।
ଗାନ୍ଧାରୀ ବୋଇଲେ ହେଲେ ସେ ଦୁଷ୍ଟ ପ୍ରକୃତି
ପରମ ପଣ୍ଡିତ ପୁତ୍ର ହୋଇବ ଏ ଘାନ୍ତି ।
ଧନୁ ଶୁକଳ ଯେ ତିଥି ତ୍ରୟୋଦଶୀ ଦିନ
ସୌରିବାର ମୃଗଶିରା ନକ୍ଷତ୍ର ମିଥୁନ ।
ବେଳ ଜାଣି ମଧ୍ୟସ୍ଥାନେ ବିଜେ ଦିନକର
ଶୁଭଲଗ୍ନ ଯୋଗେ ଉତପତ୍ତି ସେ କୁମର ।
ଗାନ୍ଧାରୀ ଦେଖି ବତିଶ ଗୁଣରେ ସୁସଞ୍ଚ
ସେ ପୁତ୍ରର ନାମ ଗୋଟି ଦେଲେକ ଦୁର୍ଦ୍ଧଷ ।
ତାର ଜନ୍ମ ଅନ୍ତେ ଏକ ଦୁହିତା ହୋଇଲା
ଦୁଃଶୀଳା ନାମ ତାହାର ଗାନ୍ଧାରୀ ଯେ ହେଲା ।
ଦୁର୍ଦ୍ଧଷ ଦୁଃଶୀଳା ହେଲେ ଉତ୍ପତ୍ତି ଏ ବେନି
ହରଷ ହେଲେ ଗାନ୍ଧାରସେନର ନନ୍ଦିନୀ ।
ଏମନ୍ତେ ହେଲା ଯେ ଏକୋତ୍ତର ଶତପୁତ୍ର
ଦୁଶୀଳା ନାମେ ଦୁହିତା ଏକ ହେଲା ଜାତ ।
ଦୁର୍ବାସା ମନ୍ତ୍ରେ ଏତେକ ସନ୍ତାନ ହୋଇଲା
ଦୁଆଦ୍ୟ ଅକ୍ଷର ଧରି ନାମ ବାଛିଦେଲା ।
ସ୍ୱାମୀ ବେନି ଚକ୍ଷୁହୀନ ଦେଖିଣ ଗାନ୍ଧାରୀ
ଆପେ ଆପେ ମନେ ମନେ ଅନେକ ବିଚାରି ।
କର୍ମର ବିପାକେ ସ୍ୱାମୀ ହୋଇଲେ ପାତକୀ
ତେଣୁ କରି ପୁତ୍ରଙ୍କର ସମ୍ପଦ ନ ଦେଖି ।
ସ୍ୱାମୀର ନଷ୍ଟ ହୋଇଲା ଯେବେ ବେନି ଆଖି
ମୁହିଁ ପାମରୀ କରିବି କିସ ତାହା ଦେଖି ।
କପାଳୀ ତୀର୍ଥେ ଗାନ୍ଧାରୀ ଦେବୀ ବ୍ରତ କଲା
ସ୍ୱାମୀର ଅନ୍ଧ ନେତ୍ର ନ ଦେଖିବି ବୋଇଲା ।
ଅନ୍ଧପଟଳ ବାନ୍ଧିଲା ଆପଣା ନେତ୍ରରେ
ବାଟ ନ ଦିଶୁ ରହିଲା ସରସ୍ୱତୀ ତୀରେ ।
ବାଟ କଢ଼ାଇ ଆଣିଲା ରାଧାର କୁମାରୀ
ସଞ୍ଜୟ ସୁତା ମାଧବସେନ ମନୋହାରୀ ।

ଧୃତରାଷ୍ଟ୍ରଙ୍କୁ କଢ଼ାଇ ନିଅଇ ସଞ୍ଜୟ
ଏସନ ବିଳାସେ ହସ୍ତିନାର କୁରୁରାୟ ।
ବ୍ୟାସ ବୋଇଲେକ ଶତଶୃଙ୍ଗ ପରବତେ
କୁନ୍ତୀ ଦେବୀ ମାଦ୍ରୀ ଦେବୀ ପଣ୍ଡୁଙ୍କ ଅଗ୍ରତେ ।
ଧୃତରାଷ୍ଟ୍ର ଅନ୍ଧ ପଟଳ ବାନ୍ଧିଲା ଗାନ୍ଧାରୀ
ଚକ୍ଷୁରେ ଅନ୍ଧ କଷ୍ଟ ଦେଖି ଯେ ନ ପାରି ।
ବ୍ୟାସଙ୍କ ବଚନେ ପଣ୍ଡୁ ହୋଇଣ ବ୍ୟାକୁଳ
ବୋଇଲେ ଗାନ୍ଧାରୀ କିମ୍ପା ବାନ୍ଧିଲା ପଟଳ ।
ଭୋଜନେ ଶୟନେ ବାଟ କଢ଼ାଉଣ ଥିଲା
ଏବେ ସେ ସ୍ୱାମୀଙ୍କୁ ବଡ଼କଟାଳ ପଡ଼ିଲା ।
କୁନ୍ତୀ ବୋଲେ ସ୍ୱାମୀ ଚାଲ ହସ୍ତିନାକୁ ଯିବା
ଗାନ୍ଧାରୀ ଅନ୍ଧପଟଳ କହି କଢ଼ାଇବା ।
ପଣ୍ଡୁ ବୋଇଲେ ତେମନ୍ତେ କଷ୍ଟ ଯେ ଅବସ୍ଥା
ମୁହିଁ ଦେଖି ନ ପାରଇ କୁନ୍ତଭୋଜ ସୁତା ।
କୋଇନ୍ତା ବୋଇଲେ ମୁହିଁ ଯିବି ହସ୍ତିନାକୁ
ତିଆରିବଇଁ ଅନେକ ମତେ ଗାନ୍ଧାରୀକୁ ।
ପଣ୍ଡୁ ବୋଇଲେ ଏହାଗୋ ତୁମ୍ଭର ସଙ୍ଗାତ
ଯାଅ ଯା ଏଥୁ ବହନ ଆସ ଗୋ ସଙ୍ଗାତ ।
ପୁଅମାନଙ୍କୁ ଘେନିଣ ଯାଅ ତୋର ତୁଲେ
ଅନ୍ଧପଟଳ କାଢ଼ିବେ ଏହାଙ୍କୁ ଦେଖିଲେ ।
କୁନ୍ତୀ ଯେ ସଜ ହୋଇଲେ ଯିବେ ହସ୍ତିନାକୁ
ଧୃତରାଷ୍ଟ୍ର ଗାନ୍ଧାରୀର ପୁତ୍ର ଦେଖିବାକୁ ।
କୁନ୍ତୀ ମାଦ୍ରୀକୁ ବୋଇଲେ ଡାକିଣ ଏକାନ୍ତେ
ସ୍ୱାମୀ ସେବା କରୁଥାଅ ଆସିବା ପର୍ଯ୍ୟନ୍ତେ ।
ଏ ତୋହର ରୂପ ଗୁଣ ସୁନ୍ଦରକୁ ଦେଖି
ନ ପୁଣି ସ୍ୱାମୀ ଆସନ୍ତି ତୋହର ତହିଁକି ।
ହସିଣ ବୋଇଲେ ମାଦ୍ରୀଦେବୀ ତାହା ଶୁଣି
ଏ କଥାଗୋଟାକୁ ଚାହିଁ ବଜ୍ର ସେହ୍ନା ଜାଣି ।
ପୁଣି ବୋଇଲେ ରାଜାକୁ ସମ୍ଭାଳ ଗୋ ଏବେ
ଏତେକ ତିଆରି ତହୁଁ ଚଳିଲେ ସେ ଯବେ ।
ଶିବପାଦ ବୋଲି କରି ଏକଇ ଶବର
ସଙ୍ଗତେ ଘେନି ଦାରାକ୍ଷ ଫଳ ଏକ ଭାର ।
ଯୁଧିଷ୍ଠି ଭୀମ ଅର୍ଜୁନ ନକୁଳକୁ ନେଲେ
ସର୍ବ ଅଳଙ୍କାର ଚାରି ପୁତ୍ରକୁ ମଣ୍ଡିଲେ ।
ବାନର ଆଣି ଗୋବିନ୍ଦ ଚନ୍ଦ୍ର ନାମେ ମେଷ
ବାହନ କଲେ ଅର୍ଜୁନ ନକୁଳର ଶିଷ୍ୟ ।
ଧବଳ ଚୋଖାଇ ତୁରଙ୍ଗମ ବେନି ଗୋଟି
ଆରୋହଣ କଲେ ଭୀମସେନ ଯେ ଯୁଧିଷ୍ଠି ।
ପୁତ୍ରଙ୍କୁ ଘେନିଣ କୁନ୍ତଭୋଜର କୁମାରୀ
ହସ୍ତିନାପୁରକୁ ଗଲେ ଚିନ୍ତି ମାହେଶ୍ୱରୀ ।

ମକରରେ କୃଷ୍ଣପକ୍ଷ ଦ୍ୱିତୀୟା ଯେ ତିଥି
ସଉରିବାର ଯେ ମଘା ନକ୍ଷତ୍ର ପ୍ରଶସ୍ତି ।
ବିଷ୍କିନାମେ କରଣ ଯେ ବ୍ରହ୍ମ ନାମେଯୋଗ
ହସ୍ତିନା ରାଜ୍ୟେ ପ୍ରବେଶ ହେଲେ ଯାଇ ବେଗ ।
ରାଧା କନ୍ୟାକୁ ଦେଖିଲେ ଯମୁନାର ସ୍ନାନେ
କୁନ୍ତୀକୁ ଯେ ପ୍ରଣିପାତ କଲା ଭକ୍ତିମନେ ।
ଦେଖି କୋଳ କଲେ କୁନ୍ତଭୋଜର କୁମାରୀ
କୁଶଳ ବାରତା ପଚାରନ୍ତି ଧୀରକରି ।
ରାଧା ବୋଇଲେ ତୋର ଏ ପୁତ୍ର ଚାରିଗୋଟି
ତୁ ଦେବୀ ସାଧବୀ ଏଣେ ଉଦ୍ଧରିବୁ ସୃଷ୍ଟି ।
କୁନ୍ତୀ ଦେବୀ ପୁଚ୍ଛା କଲେ ହୋଇଣ ହରଷ
ଆଗୋ ରାଧା ତୋର ପୁତ୍ର ଦୁହିତା ଯେ କିସ ।
ରାଧା ବୋଇଲେ ମୋହର ତୁଗୋ ପ୍ରାଣସରି
ପ୍ରିୟଲୋକ ଆଗରେ କି ମିଥ୍ୟା କରିପାରି ।
ବରଷ ଦ୍ୱାଦଶ ହେବା ପୂର୍ବରୁ ଏ କଥା
ଏହି ଯମୁନାରେ ସ୍ନାନ କରୁଥିଲେ ମାତା ।
ଜଳରେ ଉପୁଚିଆଇ ମଞ୍ଜୁଷା ଗୋଟିଏ
ବିକାଶୁଛି ସେ ନିର୍ଧୂମ ଅଗ୍ନିତେଜ ପ୍ରାୟେ ।
ତାହାଙ୍କୁ ଯାଇ ଧରିଲି ମୁହିଁ ସ୍ନାନକାଳେ
ମହାଭାରା ପାଇ ଆଣି ପକାଇଲି କୂଳେ ।
ତଳେ ପଡ଼ି ସେ ମଞ୍ଜୁଷା ହେଲା ବେନିଫାଳ
ତହୁଁ ବାହାର ହୋଇଲା ଦେବୀ ଏକ ବାଳ ।
ଲୋହିତବର୍ଣ୍ଣ ତା ତେଜ ଆଦିତ୍ୟଙ୍କ ପ୍ରାୟ
ଶ୍ରବଣେ ବେନି କୁଣ୍ଡଳ ବଜ୍ର ଜାଣି କାୟ ।
ଅଭେଦ କବଚ ମଣି ତାଳୁରେ ବିରାଜେ
ଏମନ୍ତ ପୁତ୍ର ପାଇଲି ମୋର ଶୁଭକାର୍ଯ୍ୟେ ।
ରାଧା ବଚନେ ହସିଲେ କୁନ୍ତୀ ମାହେଶ୍ୱରୀ
ତୋତେ ପ୍ରାପ୍ତ ହେଲା ତୁ ଗୋ ପାଳ ଯତ୍ନକରି ।
ଦୁର୍ବାସା ଯେ ଜପାମାଳୀ ଦେଲେ ବାଳକାଳେ
ପରୀକ୍ଷା ନିମନ୍ତେ ମନ୍ତ୍ର ସୁମରିଲି ବଳେ ।
ଶୃଙ୍ଗାର କଲାକ ମୋତେ ଦିନକର ନାଥ
ସଇନ୍ଦ୍ର ପୁତ୍ରେକ ତହୁଁ ହୋଇଲାକ ଜାତ ।
କର୍ଣ୍ଣର ବାଟେ ସେ ପୁତ୍ର ହୋଇଲା ଉତ୍ପତ୍ତି
କର୍ଣ୍ଣ ନାମ ଦେଲି ତାର ବୋଲନ୍ତି ଯେ କୁନ୍ତୀ ।
ଲାଜେ ମୁଁ ତାକୁ ନ ନେଲି ପିତାର ରାଜ୍ୟକୁ
ମଞ୍ଜୁଷେ ଭରି ମେଲିଲି ନଦୀ ଭିତରକୁ ।
ମୋ ଫଳ ସଫଳ ହେଲା ତୋ ପରମଭାଗ୍ୟ
ମୋର ନନ୍ଦନ ସେ ହେଲା ତୋ ନନ୍ଦନଯୋଗ୍ୟ ।
ମୋ ଜ୍ୟୋଷ୍ଠ ପୁତ୍ର ତୋ ଜ୍ୟେଷ୍ଠ ଏଣୁ ହେଲୁ ସୁଖି
ଆଲୋ ରାଧା ପୁତ୍ର ମୋତେ ଦେଖାଇ ଦେବୁକି ।

ଶୁଣିଣ ସାନନ୍ଦ ହେଲା ସଞ୍ଜୟ କୁମାରୀ
କୁନ୍ତୀ କି ଘେନି ବିଜୟ ଆପଣାର ପୁରୀ ।
ବେଗେ ରାଇଣ ରାଧା ଯେ ଆଣିଲେ କର୍ଣ୍ଣଙ୍କୁ
କୁନ୍ତୀଦେବୀ ବୋଇଲେରେ ଜାଣୁ କି ଆମ୍ଭଙ୍କୁ ।
କରପତ୍ର ଯୋଡ଼ି ବୋଲେ ପୁତ୍ର ବୀରକର୍ଣ୍ଣ
ମୁହିଁ ଜାଣଇ ଗୋ ମାଏ ସବୁ କଥାମାନ ।
ଅବିବାହୀ କାଳେ ମନ୍ତ୍ର ପରୀକ୍ଷା ନିମନ୍ତେ
ଆଦିତ୍ୟଙ୍କୁ ସୁମରିଲୁ ଅଗମ୍ୟ ବନସ୍ତେ ।
କର୍ଣ୍ଣର ବାଟେ ତୋହର ହୋଇଲି ବାହାର
ନ ଭାବିଣ ମନେ ମନେ କଲୁ ଏ ପ୍ରକାର ।
ମାଟିର ମଞ୍ଜୁଷେ ମୋତେ ଯତ୍ନ କରି ଭରି
ଜଳରେ ମେଲିଲୁ ତୁ ଗୋ ନିହତ ନ କରି ।
ଉପଚିଆଇ ଲାଗିଲି ଯମୁନା ଉଦ୍ୟାନେ
ହସ୍ତିନା ରାଜ୍ୟରେ ପଞ୍ଚସହସ୍ର ଯୋଜନେ ।
ରାଧା କନ୍ୟା ମୋତେ ଆଣି ପାଳିଲେ ଯତ୍ନେଣ
ଏଣୁ ମୋର ନାମ ଦେଲେ ରାଧେୟ ଯେ ପୁଣ ।
ଧୃତରାଷ୍ଟ୍ରର ନନ୍ଦନ ଅଟେ ଦୁର୍ଯ୍ୟୋଧନ
ତାରମୋହର ପୀରତି ଅଟଇ ଅଭିନ୍ନ ।
ଜ୍ୟେଷ୍ଠା ନକ୍ଷତ୍ର ମୋହର ଅଟେ ବିଛା ରାଶି
ଜ୍ୟେଷ୍ଠା ନକ୍ଷତ୍ରେ ଗୋ ଜାତ ଗାନ୍ଧାରୀର ଶିଷି ।
ଏମନ୍ତେ ରାଶି ମଇତ୍ର ହେଲୁ ଆମ୍ଭେ ବେନି
ଦଣ୍ଡେ ମରୁଛି ନ ପାରୁ ଦିବସ ରଜନୀ ।
ବୋଇଲେ ଚାରିପୁତ୍ରଙ୍କୁ ରାଇ ଦେବୀ କୁନ୍ତୀ
କର୍ଣ୍ଣ ପାଦେ ପ୍ରଣିପାତ କର ଯା ତଡ଼ତି ।
ତୁମ୍ଭର ଏ ଜ୍ୟେଷ୍ଠଭ୍ରାତା ଅଟେ ସମକ୍ଷିତା
ମୁହିଁ ତୁମ୍ଭର ଅଟଇ ଗର୍ଭଧାରୀ ମାତା ।
ଆଜ୍ଞାରେ ଭୀମ ଅର୍ଜ୍ଜୁନ ନକୁଳ ଯୁଧିଷ୍ଠି
ଉଠିଣ କର୍ଣ୍ଣର ପାଦତଳେ ଯାଇ ଲୋଟି ।
ଅନେକ କଲ୍ୟାଣ କଲେ କର୍ଣ୍ଣ ଜ୍ୟେଷ୍ଠଭ୍ରାତା
ସାନନ୍ଦ ହେଲା ତା ଦେଖି ସଞ୍ଜୟ ଦୁହିତା ।
କର୍ଣ୍ଣ ଉଠିଣ ମାତାଙ୍କୁ କଲାକ ପ୍ରଣାମ
ଏହି ଚାରି ପୁତ୍ରଙ୍କର ଅଟେ କିସ ନାମ ।
ମାତା ବୋଇଲେ ବାବୁ ଏ ଜ୍ୟେଷ୍ଠପୁତ୍ର ଗୋଟି
ଏହାର ନାମ ବାବୁରେ ଅଟଇ ଯୁଧିଷ୍ଠି ।
କର୍ଣ୍ଣ ବୋଇଲା ଏସନ କର୍ମ ଆଗେ କଲୁ
ଦ୍ୱିତୀୟ ପୁତ୍ରର ନାମ ଯୁଧିଷ୍ଠିର ଦେଲୁ ।
ଜ୍ୟେଷ୍ଠପଣେ ଥୋଇଲୁ ତୁ ମୋତେ କି ନିମନ୍ତେ
ଏ ପୁତ୍ରଙ୍କୁ ସମ୍ଭାଳିବି ମୁଁ ଆଉ କେମନ୍ତେ ।
ତୁ ମାତା ହୋଇଣ ମୋତେ କଲୁ ଯେ ନିରାଶ
ବାଳୁତ ହୋଇ କେମନ୍ତେ ବଢ଼ାଇବି ଆଶ ।

ଏ ଦ୍ୱିତୀୟ ପୁତ୍ର ହୋଇ ବହିଲା ମୋ ନାମ
ଏହାକୁ ମାଇଲେ ସିନା ଦିଶିବ ମୋ ନାମ ।
ଏହିଁ ଥିଲେ ଏ ସମ୍ପଦ ନାହିଁ ମୋର କିଛି
ଏ ଯେବେ ମାରଇ ମୋତେ ହେବ ଜ୍ୟେଷ୍ଠବସି ।
ଏହି ମୋହର ମାତା ଗୋ ଅଟଇ ନିୟମ
ଏମାନଙ୍କ ତୁଲେ ମୋର ହୋଇବ ସଂଗ୍ରାମ ।
ଏତେ ବୋଲି କର୍ଣ୍ଣ ତହୁଁ ଗଲା ଅତିରାଗେ
ଆଉ କେବେ ନ ଆସିଲା କୁନ୍ତୀଙ୍କର ଆଗେ ।
ପୁଅକୁ ଘେନିଣ କୁନ୍ତଭୋଜର କୁମାରୀ
ନାରାୟଣ ନାରାୟଣ ମନେ ମନେ ସ୍ମରି ।
ଶୁଣ ଗୋ ଯୁଗାଧିପତି ଏଥୁଅନ୍ତେ କଥା
ଧୃତରାଷ୍ଟ୍ର ପୁରେ ବିଜେ ଭୋଜର ଦୁହିତା ।
ସଞ୍ଜୟ କହିଲେ ଶୁଣ ଆହେ କୁରୁପତି
ପଣ୍ଡିତ ତନୟ ତୋର ପୟରେ ନମନ୍ତି ।
କୋଳ କରି ଧଇଲେକ ଅନ୍ଧ ନରପତି
ଗାନ୍ଧାରୀ ପାଦେ ପ୍ରଣାମ କଲେ ଦେବୀ କୁନ୍ତୀ ।
ସ୍ନେହ କୋଳେ ସମ୍ଭାଷଣ କଲେ ବେନିଜନ
ଗାନ୍ଧାରୀଙ୍କୁ ପ୍ରଣମିଲେ ଭୀମ ଅରଜୁନ ।
କୁନ୍ତୀ ବୋଇଲେ ଏକଥା ମୋତେ କି ଯୋଗାଇ
ଚକ୍ଷୁରେ ଅନ୍ଧପଟଳ ବାନ୍ଧିଲୁ କିମ୍ପାଇଁ ।
ଗାନ୍ଧାରୀ ବୋଇଲେ ମୋର ସ୍ୱାମୀର ଯେ ଯୋଗ
ମୁଁ ତାର ଭାରିଯା ସିନା କରିବ ତା ଭୋଗ ।
ସ୍ୱାମୀ ଦୃଷ୍ଟି କଷ୍ଟୀ ମୁହିଁ ତାଙ୍କ ସଙ୍ଗେ କଷ୍ଟୀ
ତାଙ୍କ ଦୃଷ୍ଟି ନାହିଁ କିମ୍ପା ଥିବ ମୋର ଦୃଷ୍ଟି ।
କୁନ୍ତୀ ବୋଇଲେ ଏପରି ନୁହଇ ଉଚିତ
ପୁଅମାନଙ୍କ ସମ୍ପଦ ଦେଖିବୁ କେମନ୍ତ ।
ଅନେକ ଦୁଃଖେ ଅର୍ଜିଲୁ ଏ ଶତ ପୁଅଙ୍କୁ
ଦୁଃଖେ ପ୍ରତିପାଳନ ଗୋ କରିଲୁ ଏହାଙ୍କୁ ।
ଗାନ୍ଧାରୀ ବୋଇଲେ ସବୁ ପୁତ୍ର ମୋର ଦୁଷ୍ଟ
ଯାହା ଅର୍ଜିଛନ୍ତି ସ୍ୱାମୀ ଆପଣା ଅଦୃଷ୍ଟ ।
ତୁ କୁନ୍ତୀ ଦେବୀ ନ ବୋଲ ଆଉ ମୋତେ ଆନ
ମୋହର ପୁତ୍ରକୁ ତୁହି ନ କର ଅଭିନ୍ନ ।
ଯେତେ କହିଲେ କା ବୋଲ ନ କଲା ଗାନ୍ଧାରୀ
ଅନ୍ଧପଟଳ ବାନ୍ଧିଲା ଧୃତରାଷ୍ଟ୍ର ନାରୀ ।
ଦୁର୍ଯ୍ୟୋଧନ ଯୁଧିଷ୍ଠିର ଭାଇ ଏକମେଳେ
ଭାଇଙ୍କୁ ଘେନି ଖେଳନ୍ତି ଖେଳ କୁତୁହଳେ ।
ଜୟ ତୁ ଜୟ ତୁ ମାଗୋ ଅମ୍ବିକା ଭବାନୀ
ଜୟ ତୁ ଜୟ ତୁ ମାଗୋ ଖପର ଧାରିଣୀ ।
ଜୟ ତୁ ଜୟ ତୁ ମାଗୋ ସଦାଶିବ ପ୍ରିୟା
ମୂର୍ଖ ଶାରଳା ଦାସକୁ ସଦା ହୁଅ ସାହା ।

—o—

## ସହଦେବ ଜନ୍ମ

ଶୁଣ ଯୁଗପତି ମହାମୁନି ଯେ ବଦନ୍ତି
ମାଦ୍ରୀ କି ଛାଡ଼ି ଅଇଲେ ଏଣେ ଦେବୀ କୁନ୍ତୀ ।
ନିଶାକାଳେ ସେ ମଦନା ଦେବୀର କୁମାରୀ
ଉତ୍ତାନଶାୟୀ ହୋଇଣ ପଲ୍ୟଙ୍କେ ପହୁଡ଼ି ।
କରେଣ ଦୁର୍ବାସାଙ୍କର ଅଛି ଜପାମାଳୀ
ଭୋ ଧର୍ମ ପୁରୁଷ ବୋଲି ଏମନ୍ତ ସେ ଭାଳି ।
ଏ ଯେ ଅଲେଖ ତିଳକ ଶୃଙ୍ଗାର ସୁରତି
ଭାରିଯାରେ ବିଳସଇ ସିନା ନିଜ ପତି ।
କରେ ଧରିଅଛି ସେ ଯେ ମୁନି ଜପାମାଳୀ
ସ୍ୱାମୀ କି ସୁମରି ନିଜ କର୍ମଦୋଷ ଭାଳି ।
ପଣ୍ଡୁର ନାମ ଧରନ୍ତେ ଜପାମାଳୀ ଧରି
ଅନ୍ତରୀକ୍ଷେ ଭେଟିଲେକ ଯାଇ ଦଣ୍ଡଧାରୀ ।
ଦେଖିଣ ତାଙ୍କୁ ତ୍ରାସିଲେ ସିନ୍ଧୁର ରଦନା
ତୁମ୍ଭେ ତ ଆମ୍ଭର ସ୍ୱାମୀ ଆମ୍ଭେ ଦାସୀ ସିନା ।
ତୁମ୍ଭେ କିମ୍ପାଇଁ ନିଶାରେ ଅଇଲ ମୋ ପାଶେ
ତୁମ୍ଭର ରୂପ ଦେଖି ମୋ ଦେହ ଥରେ ତ୍ରାସେ ।
ପଣ୍ଡୁ ବୋଇଲେ ଗୋ ମାଳା ଧରିଅଛ ହସ୍ତେ
ଏହାକୁ ବଞ୍ଚାଇ ମୁହିଁ ଯିବଇଁ କେମନ୍ତେ ।
ଦେବ ଦାନବାଦି ଯାହା ନ ପାରନ୍ତି ମେଣ୍ଟି
ପ୍ରାଣ ବିସର୍ଜିବି ସିନା ମୂର୍ଦ୍ଧନା ମୋ ଫାଟି ।
ନିଶ୍ଚୟ ମୃତ୍ୟୁ ମୋହର ହୋଇଲା ନିକଟ
ମୃତ୍ୟୁକାଳେ ପୁତ୍ରଙ୍କର ନ ପାଇଲି ଭେଟ ।
ମନ୍ତ୍ର ମେଣ୍ଟି ନ ବର୍ତ୍ତଇ ଜାଣ ସଙ୍ଗାତୁଣୀ
ଶୃଙ୍ଗାର କଲେକ ଜୀବ ଯିବ ଏହିକ୍ଷଣି ।
ଆଉ କିମ୍ପାଇ ଶୃଙ୍ଗାର ଛାଡ଼ିବ ସୁନ୍ଦରୀ
ପାରୁ ବାଞ୍ଛା ଯାଉ ପଛେ ଜୀବନ ମୋହରି ।
ମାଦ୍ରୀ ବୋଇଲେ ତ ମୁହିଁ ଚିନ୍ତା ନାହିଁ ତୋତେ
ଅଦଭୁତେ ନୃପ କିମ୍ପା ଭେଟିଲ ହେ ମୋତେ ।
ବିଶେଷ ଅଟଇ ସ୍ଥାନ ନିର୍ଜନ ଏ ଭୂମି
କୁନ୍ତୀ ନ ଥିବାରୁ କଟାଇଲି ସିନା ସ୍ୱାମୀ ।
ପଲ୍ୟଙ୍କ ଉପରେ ପଣ୍ଡୁ ବସିଲେକ ମାଡ଼ି
ମାଦ୍ରୀକୁ ସେ କୋଳ କଲେ ଶାପଭୟ ଛାଡ଼ି ।
ମାଦ୍ରୀ ସୁମରଇ ନାରାୟଣ ତ୍ରାହି ତ୍ରାହି
ମୁହିଁ ଅବଳା ପୁରୁଷ ବଳବନ୍ତ ଏହି ।
ପୁଂସ ବଳାତ୍କାର କଲେ ସ୍ତିରୀ ନାହିଁ ରହି
ଏହି ଘଟସୂତ୍ର ପୂର୍ବୁ ଲିହିଅଛି ବିହି ।
ଧର୍ମ ଧର୍ମ ସୁମରଇ ସେ ରାଜନନ୍ଦିନୀ
ପଣ୍ଡୁ ବିବସନ କଲେ ମାଦ୍ରୀ କୋଳେ ଘେନି ।

ତହିଁରେ ପାତକ ତହିଁ କାମର ଅନୀତି
ସମସ୍ତ ବୁଡ଼ାଇ ଦିଏ ଅନଙ୍ଗ ନୃପତି ।
ବିବେକ ବୁଦ୍ଧି ହରଇ ପ୍ରାଣନାଶ କାଳେ
ମାଦ୍ରୀ କି ପଣ୍ଡୁ ନୃପତି ଧଇଲେକ ବଳେ ।
ମାଦ୍ରୀର ତୁଳେ ବଢ଼ିଲା ତାଙ୍କର ଶୃଙ୍ଗାର
ହାସ୍ୟ ରସକ୍ରୀଡ଼ା ଯାହା କାମର ବିହାର ।
ପାଞ୍ଚ ଦଶବର୍ଷ ହେଲା ପଣ୍ଡୁଙ୍କର ନାହିଁ
କାମକୁ ସଂହରି ଥିଲେ ଯୋଗୀ ପ୍ରାୟ ସେହି ।
ଅନେକ ମତେ ବଢ଼ିଲା ରମଣେ ପୀରତି
ବହୁତ ଶୃଙ୍ଗାରେ ନେଲେ ଅଶାନ୍ତି ତୃପତି ।
ଦଇବର ଘଟସୂତ୍ର କେହୁ ଆନ କରି
ଯାହା କି ସେ ଶାପ ଦେଇଥିଲେ ତପଚାରୀ ।
ହେଠ ମୁଖେ ଉଗ୍ରଭାବେ ମାତୁ ପ୍ରେମରତେ
ନିର୍ଘାତ ନାରାଚ ଆସି ପଡ଼ିଲା ଅଦ୍ଭୁତେ ।
ଋଷିଙ୍କର ଅଭିଶାପ କେହି ଆନ କରି
ଶୃଙ୍ଗାର କାଳେ ଅକାଳ କାଣ୍ଡ ପଡୁ ବୋଲି ।
ସେ ଋଷିର ଶାପ କଥା ଅନ୍ୟଥା ନୋହିଲା
ଶୃଙ୍ଗାର କାଳେ ଅକାଳ କାଣ୍ଡ ଯେ ପଡ଼ିଲା ।
ଆକାଶୁ ପଡ଼ିଲା ଶର ପଣ୍ଡୁ ରାଜା ପିଠି
ବାହାର ହୋଇଲା ମୁଖ ମାଦ୍ରୀ ହୃଦ ଫାଟି ।
ମହାବଳବନ୍ତ ସେହି ଅଭିଶାପ ବାଣ
ଅଦ୍ଭୁତେ ହରିଲା ଆସି ପଣ୍ଡୁ ମାଦ୍ରୀ ପ୍ରାଣ ।
ହୋଇଥିଲା ଆସି ତାଙ୍କ ଶୃଙ୍ଗାର ନିକଟ
ବୀର୍ଯ୍ୟ ପ୍ରଦାନ ସମୟେ ଦୁଃସହ ସଙ୍କଟ ।
ଯେବଣ ବୀର୍ଯ୍ୟ ପଡ଼ିଲା ମାଦ୍ରୀ ଗର୍ଭଗତେ
ଅମୋଘ ରେତ ସେ ନାଶ ହୋଇଲା କିଞ୍ଚିତେ ।
ମାଦ୍ରୀ ପଣ୍ଡୁ ପ୍ରାଣତ୍ୟାଗ ହେଲେ ଶରାଘାତେ
ସଇନ୍ଦୁ ପୁତ୍ରେକ ଜାତ ହୋଇଲେ ଅଦ୍ଭୁତେ ।
ଶୁଣ ଆହୋ ମନୁରାଜା ବଦନ୍ତି ଅଗସ୍ତି
ସୋମବଂଶ ଠାକୁର ସେ ପଞ୍ଚଗ୍ରାମ ପତି ।
ଯେହୁ ଯାହା ଅରଜିଛି କର୍ମ ବିପାକରେ
ତାହାକୁ କେ ମେଣ୍ଟିପାରି ସ୍ୱବାହୁ ବଳରେ ।
ଅଲଙ୍ଘିତ କର୍ମେ ପଣ୍ଡୁ ରାଜା ନାଶଗଲା
ଆବୋରନ୍ତା ଜଣେ କେହି ତହିଁରେ ନୋହିଲା ।
ଜାତ ପୁତ୍ର ଗୋଟି ପଡ଼ିଅଛି ଭୂମିତଳେ
ବାଳୁତ କୁମର ସେହୁ କାନ୍ଦେ ମହାରୋଳେ ।
ଏମନ୍ତ ସମୟେ ହେଲା ରଜନୀ ପ୍ରଭାତ
ଉଦୟ ପର୍ବତେ ବିଜେ ଦେବ ଦୀନନାଥ ।
ଚଉଦ ବ୍ରହ୍ମାଣ୍ଡର ସେ ଅଟେ ଦିବ୍ୟ ଆଖି
ସମ୍ପଦ ବିପଦ ଶାପ ପୁଣ୍ୟ ସବୁ ଦେଖି ।

ଲକ୍ଷେ ଯୋଜନରେ ଥାଇ ଦେଖିଲେ ଭାସ୍କର
ମାତା ପିତା ପ୍ରାଣତ୍ୟାଗ ପୁତ୍ର ଅବତାର ।
ନିବିଡ଼ ଘନ ଗହନ ନିର୍ଜ୍ଜନ ଅଟବୀ
ପ୍ରାଣତ୍ୟାଗ କଲେ ପଣ୍ଡୁ ସହମାଦ୍ରୀ ଦେବୀ ।
ଅନେକ ଜୀବ ଅଛନ୍ତି ତହିଁ ତାଙ୍କୁ ବେଢ଼ି
ବ୍ୟାଘ୍ର ଭଲ୍ଲୁକ ଶୃଗାଳ ମାଂସଲୋଭେ ପଡ଼ି ।
ବାଳୁତ ପୁତ୍ର ଚିଆଇଁ ଚାହେଁ ଚକ୍ଷୁ ଟୋଳି
ବନଜୀବମାନେ ସର୍ବେ ଗଲେ ତହିଁ ଜଳି ।
କୁମାର ନୟନ ତେଜ କାଳାନଳ ଜିଣି
ଶୂନ୍ୟେ ଦେବଗଣ ଦେଖି ଭୟ କଲେ ପୁଣି ।
ଆକାଶେ ଦେଖିଲେ ଦେବ ଗଗନ ବିହାରୀ
ଚିନ୍ତାମଣି ପୁରୁଷ ସେ ସର୍ବ ଚିନ୍ତାକାରୀ ।
ଆଜ୍ଞାଦେଲେ ସେ ଅଶ୍ୱିନୀ କୁମାରଙ୍କୁ ରାଇ
ପୁତ୍ରକୁ ତୋର ସମ୍ଭାଳ ଏବେ ବେଗେ ଯାଇ ।
ବିରଞ୍ଚି ନାରାୟଣଙ୍କ ଆଜ୍ଞା ପରମାଣେ
ଅଶ୍ୱିନୀ କୁମାରେ ଯାଇ ଭେଟିଲେ ତକ୍ଷଣେ ।
ଦେଖିଲେ ନନ୍ଦନ ଅଛି ହୋଇ ଭୂମିଶାୟୀ
କୋଳ କରି ଧଇଲେ ସେ ଦେବ ଗୁଣଗ୍ରାହୀ ।
ଜାତକ ପୁତ୍ରର ପ୍ରାଣ ସମ୍ଭାଳି ନୋହିଲା
କ୍ଷୀର ନ ପାଇ କୁମର ଗୋଟି ନାଶଗଲା ।
ଅଶ୍ୱିନୀ କୁମାର କୋଳେ ଧରିଣ ସେ ବସି
ଦେଖିଲେ ପୁତ୍ର ଶରୀରେ ପ୍ରାଣ ନାହିଁ କିଛି ।
କାନ ଫୁଙ୍କନ୍ତେ ମହାତ୍ମା ଆଦିତ୍ୟର ଶିଷ୍ୟ
କରି ନ ପାରିଲେ ମୃତ ପୁତ୍ର ଜୀବନ୍ୟାସ ।
ଭାଳନ୍ତି ପୁଣି ସେ ଆମ୍ଭେ ମନ୍ଦକୃତ କଲୁ
ଅକାରଣେ ଆସି ମୃତପିଣ୍ଡକୁ ଛୁଇଁଲୁ ।
ଗଗନରେ ଥାଇ ଦେବ ଦେବ ଦିବାକର
ବୋଇଲେ ପୁତ୍ରକୁ ଏବେ ସମ୍ଭାଳ ତୋହର ।
ଆସୁ ଆସୁ ପୁତ୍ରଟିର ପ୍ରାଣ ନାଶଗଲା
ଧରିଲା ବେଳକୁ ପ୍ରାଣ ତା ପିଣ୍ଡେ ନ ଥିଲା ।
ମୃତ ପିଣ୍ଡକୁ ପକାଇ ବାହୁଡ଼ି ମୁଁ ଗଲେ
ସଭାରେ ସେ ଉପହାସ କରିବେ ଦେଖିଲେ ।
ଏତେ ବିଚାରିଣ ସେହି କୁମାର ମହାତ୍ମା
ଆପଣାର ଶରୀରରୁ କାଢ଼ି ଅର୍ଦ୍ଧଆତ୍ମା ।
ମୃତ ପିଣ୍ଡେ ସେହି ଆତ୍ମା ନ୍ୟାସ କରାଇଲା
ସଙ୍ଗେ ସଙ୍ଗେ ମୃତ୍ୟୁ ଭାବି ତାର ହରିଗଲା ।
ଅମୃତ ଭାବେ ଚାହିଁ ଫୁଙ୍କିଲେ କର୍ଣ୍ଣ ଗୋଟି
ଗତ ଆତ୍ମା କୁମାର ଚାହିଁଲା ଏକାଦୃଷ୍ଟି ।
ଆପଣା ତହୁଁ ନେଇ ଭରିଲା ଯହୁଁ ଜୀବ
ତେଣୁକରି ନାମ ତାର ହେଲା ସହଦେବ ।

ତୋଷେଣ ପ୍ରସନ୍ନ ତାକୁ ହୋଇଲେ ଅଶ୍ୱିନୀ
କରକୁ ଚାହାନ୍ତେ ତୋତେ ଦିଶୁ ପୂରୁ ତିନି ।
ଭୂତ ଭବିଷ୍ୟତ ଜ୍ଞାତା ହୁଅ ସହଦେବ
ମନ୍ତ୍ରୀପଣେ ଗତାଗତ କଥା ଦୃଶ୍ୟ ହେବ ।
ଯେହୁ ତୋତେ ପଚାରିବ ଗତାଗତ କଥା
ଅବଶ୍ୟ କହିବୁ ଭୂତ ଭବିଷ୍ୟ ବାରତା ।
ଏସନକ ବରଦ୍ୟନ୍ତେ କୁମାର ଅଶ୍ୱିନୀ
ମହାତ୍ମାର ପ୍ରସନ୍ନେ ସେ ହେଲା ମହାଜ୍ଞାନୀ ।
କୁମାର ଆଜ୍ଞା ଦେଲେକ ସେ ବିଶ୍ୱଦେବଙ୍କୁ
କୋଇନ୍ତା ଆସିବାଯାଏ ସମ୍ଭାଳ ପୁତ୍ରକୁ ।
ସହଦେବଙ୍କୁ ଦେଇ ସେ ବିଶ୍ୱଦେବା କୋଳେ
ଗଲେ ଅଶ୍ୱିନୀକୁମାର ଆକାଶ ମଣ୍ଡଳେ ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
କୁନ୍ତୀଦେବୀ ଅଇଲେ ଯେ ହସ୍ତିନାପୁରୀକି ।
କେମନ୍ତେ ଜାଣିଲେ ସେହି ଏସନ ବାରତା
ବଦନ୍ତି ଅଗସ୍ତି ମୁନି ବ୍ରହ୍ମଜ୍ଞାନୀବେତ୍ତା ।
କୁନ୍ତୀ ଅଇଲେ ଯମୁନା ଜଳେ ସ୍ନାନ କରି
ଅଷ୍ଟ ଅଳଙ୍କାର ପିନ୍ଧି ଭୋଜର କୁମାରୀ ।
ଆପଣା କରେ ଦର୍ପଣ ଘେନି ମୁଖ ଦେଖି
ନିର୍ମଳ ଚନ୍ଦ୍ରବଦନ ଯିବାରୁ ଯେ ସୁଖି ।
ଅଲକ୍ଷଣ ଦେଖି ଦେବୀ ମନେ ମନେ ଭାଳି
କିମ୍ପାଇ କନକ ଚୁଡ଼ି ବାହି ଦିଶେ କାଳି ।
ବିଚାରନ୍ତି ଦେବୀ ପୁଣି ଏ ମୋହର କାୟ
ଦିଶଇ ତ ବିଧବାର ଲକ୍ଷଣ ପରାୟ ।
କି ଅବା ପ୍ରମାଦ ବନେ ପଡ଼ିଲା ପଣ୍ଡୁଙ୍କୁ
କିବା ପ୍ରମାଦ ପଡ଼ିଲା ଭୋଜ ନୃପତିଙ୍କୁ ।
ଜାତ କର୍ତ୍ତା ପିତା କିମ୍ବା ସ୍ୱାମୀ ଯେ ଦେବତା
ଦୁଇ ବିଯୋଗେ କେବଳ ଦିଶନ୍ତି ବନିତା ।
ମୁହିଁ ଯେ ଛାଡ଼ି ଅଇଲି ପଣ୍ଡୁଙ୍କୁ କାନନେ
ମାଦ୍ରୀର ତୁଲେ କି କ୍ରୀଡ଼ା କଲେ ତୋଷମନେ ।
ନିଶ୍ଚୟ ସ୍ୱାମୀ ମୋହର ମରଣ ଇଚ୍ଛିଲେ
ଋଷିର ଶାପେ ଅକାଳ କାଣ୍ଡେନା ଶଗଲେ ।
ଛାଡ଼ିଣ ଅଇଲି ଆଉ ନ ପାରିବି ଦେଖି
ଶୋକଜଳେ ଢଳ ଢଳ ହୋଇ ବେନି ଆଖି ।
କୁନ୍ତୀ ଦେବୀ ବୋଇଲେକ ଗାନ୍ଧାରୀ ଅଗ୍ରତେ
ସ୍ୱାମୀଙ୍କୁ ପ୍ରମାଦ ମୋର ପଡ଼ିଲା ବନସ୍ତେ ।
ମୁହିଁ ବହନ ଯାଉଛି ଶତଶୃଙ୍ଗ ଯାଏ
ସ୍ୱାମୀର ବଦନ ସତେ ଚାହିଁବି କି ସ୍ନେହେ ।
ଗାନ୍ଧାରୀ ବୋଇଲେ କେଭେ ନୁହଇ ଏମନ୍ତ
ତ୍ରୈଲୋକ୍ୟ ବିଜୟୀ ସେହୁ ପଣ୍ଡୁ ନରନାଥ ।
ଶବଦ ଭେଦି ମହାତ୍ମା ତ୍ରୈଲୋକ୍ୟାଧିକାରୀ
ତିନି ଭୁବନ ମଧ୍ୟେ ଗୋ କେ ତୁମ୍ଭଙ୍କୁ ସରି ।
କୁନ୍ତୀ ବୋଇଲେ ହେଲାଣି ନିଶ୍ଚେ ଅପଚୟ
ମାତ୍ରକ କେ ନାଶଗଲେ ସ୍ୱାମୀ ପଣ୍ଡୁରାୟ ।
ଏହି ବିଚାର ସିଦ୍ଧି ଗୋ ଅଟଇ ଗାନ୍ଧାରୀ
ଆବର କାହୁଁ ପାଇବି ପଣ୍ଡୁ ଦଣ୍ଡଧାରୀ ।
ବହନ ସଜ ହୋଇଲେ ଯିବାପାଇଁ କୁନ୍ତୀ
ପୁତ୍ରକୁ ବୋଇଲେ ସଜ ହୁଅରେ ଝଟତି ।
ଧୃତରାଷ୍ଟ୍ର ଆଜ୍ଞାଦେଲେ ବିଦୂର ସମେତେ
ଯାଆନ୍ତୁ ଏମାନେ ଶତଶୃଙ୍ଗ ପରବତେ ।
ଭୋ ସଞ୍ଜୟ ତୁମ୍ଭେ ଥାଅ ବିଦୁରେ ହକାରି
ବଧୂଙ୍କର ସଙ୍ଗତରେ ଶତଶୃଙ୍ଗଗିରି ।
କୁନ୍ତୀଠାରୁ ଶୁଣିଲି ମୁଁ ଆଶଙ୍କା ବଚନ
ପଣ୍ଡୁଙ୍କୁ ତୁମ୍ଭେ ଯେ ଘେନି ଆସ ମୋ ଭୁବନ ।
ବିଦୂର ବୋଇଲେ ପୋଏ ଏଥେ ରହିଯାନ୍ତୁ
ଭୁରିଶ୍ରବା ପଛେ ତାଙ୍କୁ ଏଥୁ ଘେନିଯାନ୍ତୁ ।
ଧୃତରାଷ୍ଟ୍ର ଗାନ୍ଧାରୀର ପାଶେ ପୁତ୍ର ନେଇ
ବାବୁ ତୁମ୍ଭେ ଏଥି ଥାଅ ମୁଁ ଯମୁନା ଯାଇ ।
ପଦ୍ମବନେ ଯେଉଁ ଖଣ୍ଡରସ ଦ୍ରବ୍ୟମାନ
ପୁତ୍ରଙ୍କ ହସ୍ତରେ ଦେଇ ତୋଷ କରି ମନ ।
ଦୁର୍ଯ୍ୟୋଧନ ଦୁଶାସନ ସଙ୍ଗତେ ଖେଳନ୍ତି
ପୁଅକୁ ଛାଡ଼ିଣ ତହୁଁ ଗଲେ ଦେବୀ କୁନ୍ତୀ ।
ଭୀଷ୍ମ ଭୁରିଶ୍ରବା ଘେନି ସଞ୍ଜୟ ବିଦୂର
ଏମାନେ ଚଳିଲେ ବସି ରଥର ଉପର ।
ବିମାନ ଆରୋହି କୁନ୍ତଭୋଜର ଦୁହିତା
ଶତଶୃଙ୍ଗ ପର୍ବତକୁ ଯାନ୍ତି କରି ଚିନ୍ତା ।
ବୃନ୍ଦାରକ ବନେ ଯାଇ ହୋଇଲେ ପ୍ରବେଶ
ଦେଖିଲେ ଅମଙ୍ଗଳ ଯେ ଦିଶେ ଚଉପାଶ ।
ଆହା ଦଇବ ବୋଲନ୍ତି ରାଜାର ନନ୍ଦିନୀ
ଜୀବନ୍ତା ପଣ୍ଡୁ ଦେଖିବ ସତେ ଚକ୍ଷୁ ବେନି ।
ଶିବପାଦ ନାମରେ ଯେ ଏକଇ ଶବର
ସେହି ଯାଇଥିଲେ କୁନ୍ତୀ ଦେବୀଙ୍କ ସଙ୍ଗର ।
ବିନାଶ ହୋଇଲେ ଯହୁଁ ଏଣେ ପଣ୍ଡୁରାଜା
ହସ୍ତିନାକୁ ଯାଉଅଛି ତାହାର ଭାରିଯା ।
କୁନ୍ତୀ ଦେବୀ ପଚାରିଲେ କି ଲୋ କିରାତୁଣୀ
କହନି ତୁ ପଣ୍ଡୁ ମାଦ୍ରୀଙ୍କର ଶୁଭବାଣୀ ।
ପୋହଳା ନାମ ତାହାର କୁନ୍ତୀଙ୍କେ ସେ କହି
ପଣ୍ଡୁ ମାଦ୍ରୀ ଶତଶୃଙ୍ଗେ ଅଛନ୍ତି ତ ରହି ।
ଉଷତ ହୋଇଲେ ଶୁଣି କୁନ୍ତଭୋଜ ବାଳୀ
ହୃଦୟ ବ୍ୟଥା କିଞ୍ଚିତ ଦୂର ହେଲା ଭାଳି ।

ଧାତିକାରେ ବିଜେ କଲେ ପର୍ବତ ଶିଖରେ
ପଣ୍ଡୁ ମାଦ୍ରୀ ପଡ଼ିଛନ୍ତି ଦେହେ ଅଜ୍ଞାନରେ ।
ଉଲଗ୍ନେ ଶୋଇଅଛନ୍ତି ପଲ୍ୟଙ୍କ ଉପର
ଦୁହିଁଙ୍କ ଉପରେ ପଡ଼ିଅଛି କାଳଶର ।
ବିଦୁର ପଡ଼ିଲେ ଦେଖି ହୋଇ ମୂର୍ଚ୍ଛାଗତ
ଆକର୍ଷି କୁନ୍ତୀ ପଡ଼ିଲେ ଯେସନ ନିର୍ଘାତ ।
ହାହା ନାଥ ବୋଲି ଉଚ୍ଚେ ରୋଦନ ସେ ପାଡ଼ି
ଗୁଣସାଗର ନାଥ ତୁ ନାଶଗଲୁ ହୁଡ଼ି ।
ସ୍ୱାମୀଙ୍କୁ କୋଳ କରିଣ ହୃଦରେ ଲଗାଇ
ସୁନ୍ଦର ବଦନ ଗୋଟି କେଣେ ଲୁଚିଯାଇ ।
ପ୍ରାଣର ବଲ୍ଲଭ ମୋର ଦୁଃଖୀର ଜୀବନ
ମୃତପିଣ୍ଡ ଘେନି ଦେବୀ କରନ୍ତି ରୋଦନ ।
ହା ଜଗତବନ୍ଦନ ନାଥ କେଉଁଆଡ଼େ ଗଲୁ
ଗଭୀର ସମୁଦ୍ରେ ମୋର ଭେଳା ବୁଡ଼ାଇଲୁ ।
ଧର୍ମେ ଥାଇ ରାଜ୍ୟ କଲୁ ଆହା ପ୍ରାଣପୁରୁ
ପାପ ଲାଗିଲା ଧର୍ମରେ ଅଧର୍ମ ଆଗରୁ ।
ମୁହିଁ ରାଢ଼େଣୀ କିମ୍ପାଇଁ ଛାଡ଼ିଗଲି ତୋତେ
ମାଦ୍ରୀ ଏମନ୍ତ କରମ କଲା ଅଦଭୂତେ ।
ଆହା ପ୍ରାଣନାଥ ପଞ୍ଚକଟକାଧିକାରୀ
ଶୋକ ସମୁଦ୍ରରେ ମୋତେ ଗଲୁ ଛାଡ଼ିକରି ।
କୁନ୍ତୀଙ୍କ କୋଳୁ ଛାଡ଼ଇ ନେଇ ମୃତଶବ
କୋଳ କରିଣ ଧଇଲେ ଆପେ ଭୀଷ୍ମଦେବ ।
ଭୂରିଶ୍ରବାଏ ପଣ୍ଡୁଙ୍କୁ ଧରି କୋଳ କଲେ
ଆମ୍ଭେ ଅଛୁ ବାବୁ ତୁହି ପଶିଲୁ ଅନଳେ ।
ଏ ଜମ୍ବୁଦ୍ୱୀପରେ ତୁ ଯେ ଅଟୁ ଅଳଙ୍କାର
ଅଗ୍ନିକା ଯତିରଯୋଗୁଁ ଏ କର୍ମ ତୋହର ।
ଏହାଙ୍କ ଶୋକ ଦେଖିଣ ବିଶ୍ୱଦେବ ପୁଂସେ
ସହଦେବ କୁମରକୁ ଆଣିଲେ ହରଷେ ।
କୁନ୍ତୀଙ୍କରକୋଳେ ନେଇ ଦେଲେ ବିଶ୍ୱଦେବ
ପଣ୍ଡୁର ଏ ପୁତ୍ର ଗୋଟି ନାମ ସହଦେବ ।
ମାଦ୍ରୀର ତୁଲେ ଦେବୀ ଗୋ ରମଣର କାଳେ
ପୁତ୍ର ଉପୁତ୍ତି ହୋଇଲା ପ୍ରାଣନାଥ ବେଳେ ।
ଅଶ୍ୱିନୀ କୁମାରେ ଗଲେ ମହାମନ୍ତ୍ର ଦେଇ
ଆପଣା ଜୀବନ ଏହା ଶରୀରରେ ଥୋଇ ।
ଆପଣା ତହୁଁ ନେଇ ଭରିଲେ ଯହୁଁ ଜୀବେ
ତେଣୁ ଏ ପୁତ୍ରର ନାମ ଦେଲେ ସହଦେବ ।
ଶୁଣିଣ କୁନ୍ତୀ ଦେବୀ ସେ ପୁତ୍ର ପ୍ରତିପାଳି
ଶୋକ ସମ୍ଭାଳିଲେ କୁନ୍ତ ଭୋଜର ଦୁଲ୍ଲାଳୀ ।
ଭୁରିଶ୍ରବାଏ ପଣ୍ଡୁଙ୍କୁ ଧରିଥିଲେ କୋଳେ
ଶୋକଭର ହୋଇ ଲଗାଇଲେ ବକ୍ଷସ୍ଥଳେ ।
ପୁଣି ଭୀଷ୍ମ ସହ କଲେ ଶୋକ ସମ୍ବରଣ
କୋଇନ୍ତାଙ୍କୁ ବୋଇଲେ ଗୋ ଛାଡ଼ ତୁ କାରୁଣ୍ୟ ।
ଯେ ଗଲା ତାହା ଲୋଡ଼ିଲେ ପାଇବ ତ ନାହିଁ
ଚିତା ଆରୋପଣ କଲେ ଗଙ୍ଗାକୂଳେ ନେଇ ।
ଚନ୍ଦନ ଅଗରୁ ଧୂପ କାଷ୍ଠ ଦେବଦାରୁ
ଅଗ୍ନି ଆରୋପନ୍ତେ ଉଚ୍ଚଶିଖା ସେ ବିସ୍ତାରୁ ।
ଅନେକ ଦାନ ଦେଲେକ କୁନ୍ତୀ ଦେବୀକାଳେ
ହିରଣ୍ୟ କାଂସ୍ୟ ବାସନ ଗୋଧନ ଅନଳେ ।
ସୁବର୍ଣ୍ଣର ପଲ୍ୟଙ୍କରେ ରଖି ମୃତଶବ
ଧରି ଘେନିଗଲେ ଭୂରିଶ୍ରବା ଭୀଷ୍ମଦେବ ।
ଅନେକ ଶୋକ କଲେ ସେ ପଣ୍ଡୁମୁଖ ଦେଖି
ବ୍ରହ୍ମାଣ୍ଡ ଧାରଣା ହୋଇ ହେଲୁ ନିରିମାକ୍ଷୀ ।
ତିନିଥର ପ୍ରଦକ୍ଷିଣ କରି ବୀତିହୋତ୍ର
ମଧ୍ୟେ ଥୋଇ ମୁଖେ ଅଗ୍ନି ଦେଲେ ପଢ଼ି ମନ୍ତ୍ର ।
କୁନ୍ତୀ ଯେ ମାଦ୍ରୀଦେବୀଙ୍କୁ କୋଳ କରି ନେଲେ
ବଦନରେ ଅଗ୍ନିଦେଇ ମଧ୍ୟେ ଶୁଆଇଲେ ।
ଦହନ କଲେ ସେ ପଣ୍ଡୁ ମାଦ୍ରୀ ଏ ଦୁହିଁଙ୍କୁ
ପାଶୋରିଲେ ପୁତ୍ର ମୁଖ ଦେଖି ସେ ପଣ୍ଡୁଙ୍କୁ ।
ପଣ୍ଡୁ ମାଦ୍ରୀଙ୍କର ଅଗ୍ନି ସଂସ୍କାରକୁ କରି
ଅଗ୍ନି ଶାନ୍ତି କଲେ ଜଳତିଳ ଅବଧାରୀ ।
ଶୀତଳ ଦ୍ରବ୍ୟ ସେ ଦେଲେ ନଗ୍ର ଅବଧାନେ
ଶ୍ମଶାନ ଭୂମିରୁ ଆସି ପଣ୍ଡୁଆ ସ୍ୱଜନେ ।
ଭୁରିଶ୍ରବାଏ ବୋଇଲେ ବହନ ଯେ ଯିବା
ଧୃତରାଷ୍ଟ୍ର ଅଗ୍ରତରେ ଯାଇ ଜଣାଇବା ।
କୁନ୍ତୀ ବୋଇଲେ ଆପଣମାନେ ତ ଯାଆନ୍ତୁ
ମୁହିଁ କିମ୍ପା ଯିବି ଶତଶୃଙ୍ଗ ପରବତୁଁ ।
ପୁଅଙ୍କୁ ଅଣାଇଦେବା ହେଉ ମୋର ପଥେ
ମୁହିଁ ରହି ପାରିବିକି ଗାନ୍ଧାରୀ ସମେତେ ।
ଜାଣିଛି ଦୁଷ୍ଟ ପ୍ରକୃତି ଅଟଇ ଗାନ୍ଧାରୀ
ତାଙ୍କ ପୁତ୍ରମାନେ ସେହିପରି ଦୁଷ୍ଟାଚାରୀ ।
କେତେବେଳେ ନ ପାରିବେ ସେ ମୋତେ ସମ୍ଭାଳି
ସହି ନ ପାରିବେ ସେ ମୋ ଭୀମର ଅର୍ଦ୍ଧୋଳି ।
ସୋଦର ବିବାଦୀ ହୋଇ ରହିବା କେମନ୍ତେ
ପୁଅଙ୍କୁ ଘେନି ମୁଁ ଏଥେ ରହିବି ନିଶ୍ଚିନ୍ତେ ।
ଭୀଷ୍ମଙ୍କୁ ପ୍ରଣାମ କରି ବୋଲନ୍ତି ସେ କୁନ୍ତୀ
ମୋ ପୁଅଙ୍କୁ ବେଗ କରି ଅଣାଇବା ଏଥି ।
ଭୀଷ୍ମ ବୋଇଲେ ମାଏ ଗୋ ନୁହଇ ଏମନ୍ତ
ପଣ୍ଡୁର ତେଜେ ତୁ ଏଥେ ଥିଲୁ ଯେ ନିଶ୍ଚିନ୍ତ ।
ଦୁଷ୍ଟ ଅସୁର ରାକ୍ଷସ ଶିର ଶରେ ଚେଦି
ତ୍ରୈଲୋକର ହୋଇଥିଲେ ସେହି ଶବ୍ଦଭେଦୀ ।

ଏଡ଼େ ବଡ଼ କ୍ଷତ୍ରୀ କି ଗୋ ଦେଖ କାଳବଳେ
ଅଭିଶାପ ହୋଇଲାଟି କର୍ମର ଅବଳେ ।
ଅଦୋଷେ ନାଶଗଲାଟି ଜାଣ ରାଜା ପଣ୍ଡୁ
ରାଜ୍ୟକୁ ଯିବା ଗୋ ଚାଲ ଏ ବନସ୍ତ ଖଣ୍ଡୁ ।
କୋଇନ୍ତା ବୋଇଲେ ଆମ୍ଭେ ରହିଥିବୁ ଏଥେ
ନିର୍ଦ୍ଦ୍ୱନ୍ଦ୍ୱ ହୋଇଣ ବହୁ ବରଷ ପର୍ଯ୍ୟନ୍ତେ ।
ଏ ସ୍ଥାନ ଛୁଡ଼ିଯିବାକୁ ନାହିଁ ମୋର ଇଚ୍ଛା
ମୋତେ ନେଇ ତହିଁ କରି ନ ପାରିବ ରକ୍ଷା ।
ଏତେବେଳକୁ ତ ପାଖେ ସ୍ୱାମୀ ମୋର ନାହିଁ
ତଥାପି ପର୍ବତ ମୋର ଅଛି ଠାବ ଦେଇ ।
ସ୍ୱାମୀର ଶବ ମୋହର ପଡ଼ିଥିଲା ଏଥେ
ପ୍ରେତକାର୍ଯ୍ୟ ନ ସାରି ମୁଁ ଯିବଇଁ କେମନ୍ତେ ।
ଏବେ ତୁମ୍ଭେମାନେ ଦେବ ବିଜେ କରି ଯାଅ
ପୁଅକୁ ଆଣି ବହନ ମୋତେ ତୁମ୍ଭେ ଦିଅ ।
ପରମ ସାଧବୀ ସେହି କୁନ୍ତୀ ମାହେଶ୍ୱରୀ
ଚଳିଲେ ଗାଙ୍ଗେୟ ହୋଇ ଦେବୀ ଆଜ୍ଞାକାରୀ ।
ହସ୍ତିନା ରାଜ୍ୟକୁ ଯାଇ ପ୍ରବେଶ ହୋଇଲେ
ଧୃତରାଷ୍ଟ୍ରଙ୍କ ସମୀପେ ଯାଇଣ ବସିଲେ ।
ସଞ୍ଜୟ କହିଲେ ଶୁଣ ଆହେ କୁରୁପତି
ସନ୍ନିଧିରେ ବିଜେ କଲେ ଭୀଷ୍ମ ମହାରଥୀ ।
ଆସ୍ଥାନ ତେଜି ବସିଲେ ରାଜା ସୋମବଂଶୀ
ଭୀଷ୍ମଙ୍କର ଚରଣରେ ଶିରକୁ ନିବେଶି ।
ତୁମ୍ଭେ ଗଲ ତାତ ଶତଶୃଙ୍ଗ ପର୍ବତକୁ
ତୁଲେ ଘେନି ନ ଆସିଲ କିମ୍ପାଇଁ କୁନ୍ତୀଙ୍କୁ ।
ଭୀଷ୍ମ ବୋଇଲେ ନ ଆସି ସେ ତହିଁ ରହିଲେ
ଦେବ ନିର୍ମିତ ପର୍ବତ ବୋଲି ନ ତେଜିଲେ ।
ଆମ୍ଭେ ଏହିକ୍ଷଣି ଏଥୁ ବାହୁଡ଼ିଣ ଯିବୁ
ପୁତ୍ରଙ୍କୁ ତାହାର ନେଇ ଶତଶୃଙ୍ଗେ ଦେବୁ ।
ଭୀଷ୍ମଙ୍କ ମୁଖୁ ଏମନ୍ତ ଶୁଣି ପଣ୍ଡୁ ସୁତେ
ନାଟ ଖେଳୁଥିଲେ ଦୁର୍ଯ୍ୟୋଧନର ସଙ୍ଗତେ ।
ବାରତା ପାଇଣ ଧାଇଁଅଇଲେ ସେ କାଳେ
ଦେଖିଣ ଭୀଷ୍ମ ପୁତ୍ରକୁ ଧଇଲେକ କୋଳେ ।
ଯୁଧିଷ୍ଠିର ଭୀମସେନ ଅର୍ଜ୍ଜୁନ ନକୁଳ
ଦେଖିଣ ବେନି ଚକ୍ଷୁରୁ ବହେ ଅଶ୍ରୁଜଳ ।
ଯୁଧିଷ୍ଠିର ପଚାରିଲେ ତାଙ୍କ କୋଳେ ବସି
କେତେବେଳେ ଆମ୍ଭ ମାତା ପ୍ରବେଶିବେ ଆସି ।
ଭୀଷ୍ମ ବୋଇଲେ ସମସ୍ତେ ଆସିଛନ୍ତି ଏଥେ
ପୁତ୍ରକୁ ନେଲେ ଭିତରେ ଭୋଜନ ନିମନ୍ତେ ।
ଭୀଷ୍ମ ଏକାନ୍ତେ କହିଲେ ସେ ଧୃତରାଷ୍ଟ୍ରଙ୍କୁ
ଆହେ ବିପତ୍ତି ପଡ଼ିଲା ଏ କାଳେ ଆମ୍ଭଙ୍କୁ ।

ଗାନ୍ଧାରୀ ଅନ୍ଧପଟଳ ବାନ୍ଧବାର ଶୁଣି
ଏଥକୁ ଅଇଲା କୁନ୍ତିଭୋଜର ଦୁଲ୍ଲଣୀ ।
ପଣ୍ଡୁ ତେଣେ ଜାଣୁ ଜାଣୁ କଲା ଅବିଚାର
ଅନ୍ୟଥା କେ କରିପାରେ ବିଧାତାର ଗୀର ।
ଯାହାଙ୍କୁ ଆଜ୍ଞାଦେଲେ ସେ ଅଗ୍ନିକା ମହର୍ଷି
ଅନ୍ତରୀକ୍ଷୁ ବାଣ ପଡ଼ିଗଲା ତାକୁ ନାଶି ।
ପଣ୍ଡୁ ମାଦ୍ରୀ ଏକାବେଳେ ଦୁହେଁ ନାଶଗଲେ
ସେ କାଳେ ସଇନ୍ଦ୍ରୁ ପୁତ୍ର ଏକ ଉପୁଜିଲେ ।
ଅଶ୍ୱିନୀ କୁମାର ତାକୁ ପ୍ରାଣଦାନ କଲା
ସହଦେବ ବୋଲି ପୁତ୍ର ନାମଗୋଟି ଦେଲା ।
ଆମ୍ଭେ ପ୍ରବେଶ ହୋଇଲୁ ଯାଇ ଶତଶୃଙ୍ଗେ
ଦେଖିଲୁ ପଣ୍ଡୁଙ୍କୁ ତହିଁ ଏସନ ବିୟୋଗେ ।
ବିଶ୍ୱଦେବ ଏ କୁମାର ଗୋଟି ରଖିଥିଲେ
ତକ୍ଷଣ କୁନ୍ତୀ ଦେବୀଙ୍କ କୋଳେ ଆଣିଦେଲେ ।
ଅନେକ ଶୋକ ତହିଁ ଯେ କୁନ୍ତୀଦେବୀ କଲା
ପଣ୍ଡୁକୁ ଦେଖି କାହାରି ଦେହ ନ ସହିଲା ।
ଚିତା ବହ୍ନି ତହିଁ ଆମ୍ଭେ କଲୁ ଆରୋପଣ
ପଣ୍ଡୁ ମାଦ୍ରୀକି ଦହନ କଲୁ ତତକ୍ଷଣ ।
କୁନ୍ତୀ ନ ଆସିଲେ ଶତଶୃଙ୍ଗ ପରବତୁ
ତାର ପୁତ୍ରକୁ ଘେନିଣ ଯିବୁ ଆମ୍ଭେ ଏଥୁଁ ।
ଭୀଷ୍ମଙ୍କର ମୁଖୁବାଣୀ ଏସନକ ଶୁଣି
ଅନ୍ଧରାଜା ଶୋକ କଲେ ମନେ ମନେ ଗୁଣି ।
କହିଲେ ସେ ଧୃତରାଷ୍ଟ୍ର ରାୟେ ଗାନ୍ଧାରୀକି
ଶତଶୃଙ୍ଗ ପର୍ବତକୁ ଯିବା ଚାଲ ସଖୀ ।
ସ୍ୱାମୀର ଆଗରେ ତହିଁ ଗାନ୍ଧାରୀ କହିଲା
ମୋତେ ଲୁଚାଇବାର କି କାରଣ ହୋଇଲା ।
ପଣ୍ଡୁ ଯେ ନାଶ ଯିବାର ହେଲା ପାଞ୍ଚଦିନ
ତହିଁ କି ଯାଇ ଆମ୍ଭେ କି କରିବା ରାଜନ ।
ଛାଡ଼ିଲେ ତାହାଙ୍କ ଆଶା ହୋଇଲେ ନିରାଶ
ଶୋକ କରିଣ ସେ ଦୁହେଁ କଲେ ଉପବାସ ।
ପ୍ରେତ କାର୍ଯ୍ୟ କରାଇଲେ ରାଇ ପୁରୋହିତେ
ଏମନ୍ତେଣ ତହିଁ ବହିଗଲା ଦିନାକେତେ ।
ଗାନ୍ଧାରୀ ଯେ ବିଜେ କଲେ ହସ୍ତିନା ଭବନୁ
ଆଗେ ସହସ୍ରେକ ରଥ ଘେନି ଗଙ୍ଗାସୁନୁ ।
ସହସ୍ରେକ ପରିବାରୀ ଘେନି ଅନ୍ଧରାଣୀ
ଚଳନ୍ତି ସେ ମହାସତୀ କୁଇନ୍ତାକୁ ଆଣି ।
ତେଣେ ବ୍ୟାସ ବିଜେ ଶତଶୃଙ୍ଗ ପରବତେ
ଦେଖିଣ କୁନ୍ତୀ ପଡ଼ିଲେ ତାଙ୍କ ପାଦାଗ୍ରତେ ।
ପୁତ୍ରଗୋଟି କୋଳେ ନେଇ ଦେଲେ ବ୍ୟାସଙ୍କର
ପୁତ୍ର ଦେଖିଣ ସାନନ୍ଦ ହେଲେ ମୁନିବର ।

ହରଷେ ପୁତ୍ରକୁ ବର ଦେଲେ ତପୋନିଷ୍ଠ
ଗତାଗତ କଥାବାବୁ ତୋତେ ହେଉ ଦୃଷ୍ଟ ।
କୁନ୍ତୀଙ୍କି ଭୋ ଡିଆରନ୍ତି ପରାଶର ସୁତ
ପଣ୍ଡୁର ଅଭାବେ ଶୋକ ନ କର ଗୋ ମାତ ।
ଛାଡ଼ ଛାଡ଼ ଶୋକ ଦେବୀ ଭୋଜର କୁମାରୀ
ପୁତ୍ରକୁ ଘେନିଣ ସୁଖେ ଥାଅ ରାଜ୍ୟ କରି ।
କୁନ୍ତୀ ବୋଇଲେ ପ୍ରୟାଗ ତୀର୍ଥେ ମୁହିଁ ଯିବି
ବାଞ୍ଛାବଟ ତଳେ ଏହି ପ୍ରାଣ ବିସର୍ଜିବି ।
ବ୍ୟାସ ବୋଇଲେ ମାତା ଗୋ ନୁହଇ ଏମନ୍ତ
ଅନେକ ଦୋଷ ହେବଟି କଲେ ଆତ୍ମଘାତ ।
ପୁତ୍ର ପାଞ୍ଚଗୋଟି ପାଇଅଛୁ ତୋର କର୍ମେ
ଏ ପଞ୍ଚରାଜ୍ୟ ପାଳିବେ ଯେ ତୋହର ଧର୍ମେ ।
ବିରସ କିମ୍ପାଇଁ ତୁମ୍ଭେ ହୁଅ ମହାଦେବୀ
କୁନ୍ତଭୋଜ ନନ୍ଦିନୀ ତୁ ପରମା ସାଧବୀ ।
ଏ ସଂସାରଯାକ ମାୟା ପଟଳ ହିଁ ସିନା
ବିପରୀତ ମୋହପାଶେ ଦଇବ ରଚନା ।
ସୁଖେଣ ଦିନ ମୋହର ଯିବ ଆଗୋ ମାତ
ଭାରାଭର ନିବାରଣ କରିବେ ତୋ ପୁତ୍ର ।
ଜାତ ହୋଇଲେ ଅବଶ୍ୟ ହୁଅଇ ଗୋ ମୃତ
ଏମନ୍ତ ଏ ଚାରିଯୁଗ ହୁଏ ଆତଯାତ ।
ଯେମନ୍ତେ ପଥୁକୀ ବୃକ୍ଷ ମୂଳରେ ବସନ୍ତି
ଶ୍ରମ ସାରିଣ ଯେ ଯାହାମତେ ଚଳିଯାନ୍ତି ।
ତୁ ଦେବୀ ଗୋ ଭ୍ରାନ୍ତି ମନେ ନ କର ଏଥିକି
ଯେତେ ପୁଣ୍ୟ ଥାଇ କର ଧର୍ମ ଶାସ୍ତ୍ର ଦେଖି ।
ବିଷ୍ଣୁ ପଞ୍ଜରାରେ ପଶୁ ଆମ୍ଭେ ଯେ ପ୍ରଳୟେ
କାଳୋଚିତ୍ତ ମରଣକୁ କରୁ ଡର ଭୟେ ।
ସୁଖ ଭୋଗକୁ ଇଚ୍ଛନ୍ତି ଯେବଣ ହିଁ ପ୍ରାଣୀ
ମୃତ୍ୟୁ ପ୍ରାପତ କରାନ୍ତି ନିକଟେ ତୋ ଆଣି ।
ଯେ ଗଲା ତାହାକୁ ଆଉ ଲୋଡ଼ିଲେ ନ ପାଇ
ପୁଅକୁ ଏବେ ଯତନେ ସମ୍ଭାଳ ଗୋ ଥାଇ ।
ଯୁଧିଷ୍ଠିର ବୋଲି ତୋର ଯେଉଁ ପୁତ୍ର ଗୋଟି
ପ୍ରତ୍ୟକ୍ଷ ଦେଖୁ ନା ନିରଞ୍ଜନ କଳା ସେଟି ।
ଭୀମ ଚରିତ ଅସଂଖ୍ୟ ଅଟଇ ଗୋ ମାତ
ଅର୍ଜୁନଟି ନାରାୟଣ ଦେବ ପଞ୍ଚଭୂତ ।
ନକୁଳ ବୋଲି ତୋହର ଯେ ପୁତ୍ର ଅଟଇ
କୁମାରପଣେ ଆକାଶେ ପାଟ ଅଛି ପାଇ ।
ଏ ବାଳପୁତ୍ର ଗୋଟିର ଯେବଣ ଲକ୍ଷଣ
ସ୍ତିରୀ ଜାତି ସିନା ତୁମ୍ଭେ ତାହା ହିଁ ନ ଜାଣ ।
ତୀର୍ଥକୁ ଇଚ୍ଛା ଯଦ୍ୟପି କଲୁ ତୁ ଗୋ ମାଏ
ବଡ଼ ବଡ଼ ହୁଅନ୍ତୁ ଗୋ ତୋହର ତନୟେ ।

ସ୍ତିରୀଙ୍କର ଧର୍ମ ଯେତେ ତୋତେ ହେଉ ପ୍ରାପ୍ତ
ତଦନ୍ତେ ଯେବଣ ପୁଣ୍ୟ କଥାମାନ ଚିନ୍ତ ।
ପଣ୍ଡିତ ପ୍ରାୟେ ଗୋ ସଂହରିବ ସର୍ବ କଥା
ଆମ୍ଭଙ୍କୁ ଦେଖି ଗୋ ଏବେ ଛାଡ଼ ସ୍ୱାମୀ ଚିନ୍ତା ।
ଏସନକ ମୋତେ ଡିଆରନ୍ତି ବ୍ୟାସ ଋଷି
ଦଣ୍ଡ ଘେନି ଭୀଷ୍ମ ତହିଁ ପ୍ରବେଶିଲେ ଆସି ।
ବ୍ୟାସଙ୍କର ପାଦତଳେ ସମସ୍ତେ ପ୍ରମଣି
କ୍ଷମା ଆଶିଷ କଲେ ସେ ତପୋଧନ ସ୍ୱାମୀ ।
ଅଇଲେ ଯେ ପୁରୋହିତ ମୁନି ଉଦ୍ଧାଳକେ
ପ୍ରେତକାର୍ଯ୍ୟ ସମାପନ କରି ବିଧିବାକ୍ୟେ ।
ଶ୍ରାଦ୍ଧକର୍ମ କରାଇଲେ ମିଳି ଶମଶାନେ
ଘୃତ ପାରଣ କରାଇ ଏକାଦଶ ଦିନେ ।
ଘିଅ ମହୁ ଘେନି ପୁଣି ଗଲେ ହସ୍ତିନାକୁ
ଧୃତରାଷ୍ଟ୍ର ବୁଝାଇଲେ ଭଣ୍ଡାନ୍ତି ପୁଅକୁ ।
ଯୁଧିଷ୍ଠି ଦୁର୍ଯ୍ୟୋଧନର ଅନେକ ପୀରତି
ଭାବେ ପାଶୋରିଲେ ମାତାପିତା ସେ ସବୁନ୍ତି ।
ବନସ୍ତରେ ଥିଲେ ସଙ୍ଗ ମେଳ ଅବା କାହିଁ
କୁତୁହଳେ କହିଲେ ସେ ଧୃତରାଷ୍ଟ୍ରେ ଚାହିଁ ।
ଯୁଧିଷ୍ଠି ବୋଇଲେ ଧୃତରାଷ୍ଟ୍ର କୋଳେ ବସି
ପିତାଙ୍କ ପାଖକୁ ଯିବୁ ଆଜ୍ଞା ଦିଅ ହସି ।
ଧୃତରାଷ୍ଟ୍ର ବୋଇଲେ ଯେ ଶୁଣ ଆରେ ତାତ
ଏଥକୁ ଆସୁଅଛନ୍ତି ତୁମ୍ଭ ତାତ ମାତ ।
ଗାନ୍ଧାରୀ ଗଲେଣି ବାବୁ ତାଙ୍କୁ ଆଣିବାକୁ
ଆଉ କାହିଁକି ଯିବ ସେ ଗହନ ବନକୁ ।
ଭଲ ପଦାର୍ଥ ଦେଲେକ ପୁଣି ସେ ଅପୂର୍ବ
ମଣ୍ଡାନ୍ତି ଅଙ୍ଗକୁ ଅଳଙ୍କାରେ ରାଜଦେବ ।
ପରିଧାନ କରାଇଲେ ଆଣି ଦେବବସ୍ତ୍ର
ଏସନ ବାଗେ ଭଣ୍ଡିଲେ ସେ ବାଳ ପୁଅନ୍ତ ।
ଧୃତରାଷ୍ଟ୍ର ବିଚାରନ୍ତି ଭୋ ଧର୍ମ ଦେବତା
ବାଳ ପୁଅକୁ ଏସନ ହେଲା କଷ୍ଟ ଚିନ୍ତା ।
ଏଥକୁ ଏ ଯୋଗ୍ୟ ଏହା କଲୁ ପ୍ରଜାପତି
ପିତାର ଅଭାବେ ପୁତ୍ରେ କେଉଁବାଗେ ବର୍ତ୍ତି ।
ଭୋ ଦଇବ ସର୍ଜନା ତୁ କଲୁ ଚରାଚର
ବିନା ଅପରାଧେ କିମ୍ପା ନାଶିଲୁ ସଂସାର ।
ନୋହୁ ନୋହୁ ଏସନକ କଷ୍ଟ ସଂସାରକୁ
କି ଅଭାବେ ପୁଣ ଜାତ କଲୁ ସମସ୍ତଙ୍କୁ ।
ଜାତ ଯେବେ କଲୁ ନିଶ୍ଚେ ମରିବଟି ପ୍ରାଣୀ
ତୋ ତହୁଁ ବିଜ୍ଞ ଆବର କେହୁ ପରିମାଣି ।
ଯେବେ ସର୍ଜିଲୁ ହୁଅନ୍ତେ ସିନା ଚିରନ୍ତନ
ମହତ ଲୋକଙ୍କ ବୋଲ ହୋଇ କିନା ଆନ ।

କିମ୍ପୁତ ମାଏ ଏ ତୋର ନ ପାରିଲୁ ବୁଝି
କରମ ଲିଖନ ଏହା ନ ପାରୁଛୁ ହେଜି ।
ଏ ଯେ ଦେବତାଏ କଲେ ଏଡ଼େ ଏଡ଼େ କୃତ
ତାହା ନାଶ କରିବାକୁ ଭିଆଇ ଏମନ୍ତ ।
କେହି ତ ନ ପାରିବେ ନା ଯମଠାରୁ ବଞ୍ଚି
ନ ଜାଣି କିମ୍ପା ମରନ୍ତି ଆପେ ପାପ ସଞ୍ଚି ।
ଅବ୍ୟୟ ପୁରୁଷ ଯାହା ସଞ୍ଚେ ଦୃଢ଼ କରି
କାଳାନ୍ତକ ପୁରୁଷ ତା ଧ୍ୱଂସେ ଦଣ୍ଡ ଧରି ।
କରାଳୀର ବଲ୍ଲଭର ପାଦପଦ୍ମେ ସେବା
ଶାରଳା ଦାସକୁ ଚିର ଆୟୁଷ ଯେ ଦେବା ।
ସୁମରିଲେ ଯହୁଁ କୋଳେ ଯୁଧିଷ୍ଠିର ଧରି
ବହିଲା ଅନ୍ଧ ନେତ୍ରରୁ ଶୋକେ ଅଶ୍ରୁ ବାରି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ଜ୍ୟେଷ୍ଠ ତାତ
ପୃଥ୍ୱୀପତି ହୋଇ କିମ୍ପା ଶୋକ ଅପ୍ରମିତ ।
ରାଜା ହୋଇଣ ଯଦ୍ୟପି ଶୋକେ ହୁଅ କ୍ରୋଧୀ
ମନ୍ଦ ବୁଦ୍ଧି ହୁଏ ରାଜ୍ୟେ କରନ୍ତି ଅବିଧି ।
ଅଭିଷେକୀ ରାଜା ଅଶ୍ରୁ ଗଡ଼ିଲେକ ସୃଷ୍ଟି
ପୃଥ୍ୱୀ ଫଳ ଦାନ ହୁଏନ କରଇ ବୃଷ୍ଟି ।
ନୃପତି ହୋଇଣ ଯେବେ ସଦା କ୍ରୋଧକାରୀ
ସନ୍ତାନ ହାନି ହୁଅଇ କନ୍ଧୁ ଛାଡ଼େ ଶିରୀ ।
ରାଜା ହୋଇ କ୍ରୋଧେ ଯେବେ ନ ମାନଇ ପିତା
ହବିର୍ଭାଗ ନ ଘେନଇ ଅନଳ ଦେବତା ।
ରାଜାର ଧର୍ମେ ବଞ୍ଚନ୍ତି ସିନା ପ୍ରଜାଜନ
ରାଜାର କ୍ରୋଧେ ସମସ୍ତେ ହୁଅନ୍ତି ନିଧନ ।
ରାଜା ହୋଇ ଯେବେ ହୋଏ ଅବିରତ କ୍ରୋଧି
କାର୍ଯ୍ୟହାନୀ ହୋଏ ଶତ୍ରୁ ନ ପାରଇ ସାଧି ।
ପରରାଜ୍ୟ ଚାରଯାଇ ଗୁପତରେ ଥାନ୍ତି
ବଳକ୍ଷୀଣ ହେବା ବାର୍ତ୍ତା ନେଇଣ ଦିଅନ୍ତି ।
ଚକ୍ଷୁ ତୋ ନିର୍ମଳ ତେଣୁ ହୋଇଲୁ ଅଦୃଶ୍ୟ
ବଳବନ୍ତ ପଣ୍ଡିତ ତୁ ବିଜ୍ଞତା ଭବିଷ୍ୟ ।
ବିଜିତ ଆହାରୀ ଯେବେ ହୋଇବଟି ରାଜା
ବିଜିତ ଇନ୍ଦ୍ରିୟ ହୋଇ ବିଳସିବ ଭାର୍ଯ୍ୟା ।
ଶସ୍ତ୍ର ଶାସ୍ତ୍ର ବିଦ୍ୟାରେ ଯେ ହୋଇବ ନିର୍ଜିତ
ପରରାଷ୍ଟ୍ରକୁ ଜିଣିବ ସିନା ଆହେ ତାତ ।
ପ୍ରତାପାଦି ଗୁଣ ଥିବ ହୋଇବ ଅକ୍ରୋଧୀ
ପର ଭୂମିକୁ ଘେନିବ ସଂଗ୍ରାମ ନିରୋଧି ।
ଦଣ୍ଡେ ଦଣ୍ଡିଲେ ରାଜାର ନୁହଇ ଅଧର୍ମ
କ୍ଷତ୍ରିୟ କୁଳକୁ ତାର ଅଟଇ ଏ କର୍ମ ।
ଏସନ ଅର୍ଥ କହିଲେ ରାଜାଙ୍କୁ ଯୁଧିଷ୍ଠି
ଧୃତରାଷ୍ଟ୍ର ବୋଇଲେକ ସାଧୁପୁତ୍ର ଗୋଟି ।

ଏଡ଼େ ଜ୍ଞାନ ତୋର ବାବୁ ବାଳୁତ ବୟସୁ
ତୃପତି ପଣ୍ଡିତ ବାବୁ ହେଲୁ ବିଧିବଶୁ ।
ହୃଦେ କଳଙ୍କ ଘେନିଲା ପୁତ୍ରଗୁଣ ବାଛି
ଆବର ମୋର ପୁଅଙ୍କୁ ଜୀବ କାହିଁ ଅଛି ।
ବାଳୁତ ପୁଅ ବୋଲି ମୁଁ ଖେଳାଏ ଏହାକୁ
ଅନ୍ତେ ଶିଖାଉଛି ବ୍ରହ୍ମଜ୍ଞାନ ଏ ଆମ୍ଭଙ୍କୁ ।
ରାଗଖଣ୍ଡ ଘେନି ଧୃତରାଷ୍ଟ୍ର ଯେ ବୋଇଲା
ତୋର ପିତାପଣ୍ଡୁ ଶତଶୃଙ୍ଗେ ନାଶଗଲା ।
ଶୁଦ୍ଧ ଘୃତ ଘେନି ଏଥେ ଅଇଲେ ସଞ୍ଜୟେ
ଏଥିରୁ ଗଣ୍ଡୁଷ କର ଲିତାଏ ଲିତାଏ ।
ଯୁଧିଷ୍ଠି ବୋଇଲେ ତାତ ପଣ୍ଡୁର ନିମନ୍ତେ
ସନ୍ତାପ କି କରୁଅଛ ଗୁଣ ଗୁଣି ଚିତ୍ତେ ।
ପାପ କଲେ ପଣ୍ଡୁ ତେଣୁ ଅଳ୍ପେ ନାଶ ଗଲେ .
ଆମ୍ଭର ସୁଖ ସମ୍ପଦ ଦେଖି ନ ପାରିଲେ ।
ଗଲେ ଗଲେ ନାଶ ପଣ୍ଡୁ ନାହିଁ ଆମ୍ଭ ଚିନ୍ତା
ତୁ ମାତ୍ର କୁଶଳ କ୍ଷେମେ ଥାଅ ଜ୍ୟେଷ୍ଠପିତା ।
ଶେଷେ ସିନା ଅପଣ୍ଡିତ ଅଜ୍ଞାନ ଯେ ଲୋକେ
ମଳାଲୋକ ଯାଇ ଆପେ ମରୁଥାନ୍ତି ଶୋକେ ।
ତାହାର ପୁଣ୍ୟ ଥିଲା ସେ ଭୋଗ କରୁଥିଲା
ତାହା ପୁଣ୍ୟ ସାରିଲା ସେ ଅଳ୍ପେ ନାଶଗଲା ।
ତୋର ମୋର କିସ ହେବ ଶୋକ କଲେ ତାଙ୍କୁ
ଆମ୍ଭେ କଷ୍ଟୀ ହୋଇଲେ କି ପାଇବା ପିତାଙ୍କୁ ।
ଯୁଧିଷ୍ଠିର ତିଆରିଲେ ସେ ଧୃତରାଷ୍ଟ୍ରଙ୍କୁ
ଅନ୍ଧ ବୋଇଲେ ପାଳିବୁ ତୁ ପଞ୍ଚରାଜ୍ୟକୁ ।
କୁଳର ଚନ୍ଦ୍ରମା ତୁ ତ ମହା ବ୍ରହ୍ମଜ୍ଞାନୀ
କ୍ରୋଧ ଶୋକ ତେଜିଲେ ଯେ କହି କୁରୁସ୍ୱାମୀ ।
ପଞ୍ଚଉର ଶତ ପୁତ୍ର ଘେନି କଲେ ସ୍ନାନ
ଉଦ୍ଧାଳକ କରାଇଲେ ଘୃତର ପାରଣ ।
ବଦନ୍ତି ଅଗସ୍ତି ପୁଣ ଆହେ ମନୁରାୟ
ପୁତ୍ର ନ ଦେଖି ବ୍ୟାକୁଳ କୁନ୍ତୀଙ୍କ ହୃଦୟ ।
ବଦନ୍ତି ଯେ କୁନ୍ତୀଙ୍କର ଆଗେ ଭୁରିଶ୍ରବା
ଭୋ ମାତ ଚାଲ ଗୋ ଏବେ ହସ୍ତିନାକୁ ଯିବା ।
ବାଟ ଚାହିଁ ବସିଥିବେ ଧୃତରାଷ୍ଟ୍ର ରାୟେ
ଅନ୍ନ ଭୋଜନ ଯେ ନାହିଁ ତୁମ୍ଭ ଯିବାଯାଏ ।
ଆମ୍ଭର ବଚନ ତୁମ୍ଭେ ନ ଘେନିଲ ମାଏ
ଗାନ୍ଧାରୀ କି ପଠାଇଲେ ଧୃତରାଷ୍ଟ୍ର ରାୟେ ।
ଗାନ୍ଧାରୀ କୋଳ କରିଣ ଧଇଲେ କୁନ୍ତୀଙ୍କୁ
ମାଗୋ ଚାଲ ଆମ୍ଭେ ଯିବା ହସ୍ତିନା ପୁରକୁ ।
କୁନ୍ତୀ ବୋଇଲେ ଗୋ ତୁମ୍ଭେ ନୁହ ଦୟାବତୀ
ସମ୍ଭାଳି ନ ପରିବ ମୋ ପୁତ୍ର ଦୁଷ୍ଟମତୀ ।

ଏବେ କିମ୍ପାଇଁ ମୋଠାରେ ଲଗାଉଛ ମାୟା
କାଳେ ସମ୍ଭାଳି ନ ପାରି ଛାଡ଼ିବ ସୁଦୟା ।
ସେ ଚାରିପୁତ୍ରେ ଗୋ ପଛେ ଆନ୍ତୁ ତୋର ତହିଁ
ଏ ସାନ ପୁତ୍ର ଘେନି ମୁଁ ଏଥି ଥିବି ରହି ।
କୁନ୍ତୀଙ୍କ ଅଗ୍ରତରେ ବୋଲନ୍ତି ଗାନ୍ଧାରୀ
ରାଜ୍ୟ ଛାଡ଼ି କିମ୍ପା ବନେ ଥିବ ଦୁଃଖ କରି ।
ଏହି ସଂସାରରେ ଦୁଃଖ ନ ଦେଖିବି ବୋଲି
ଆପଣା ଚକ୍ଷୁରେ ଅନ୍ଧପଟଳ ବାନ୍ଧିଲି ।
ଅନ୍ଧ ଅନ୍ଧୁଣୀ ଆମ୍ଭେ ଯେ ହୋଇଲୁ ନିଶ୍ଚଳ
ସବୁ ପୁଅଙ୍କ ମାତା ତୁ ଯତ୍ନେ ପ୍ରତିପାଳ ।
ଯେତେ କାଳ ବର୍ତ୍ତିଥିବୁ ଆମ୍ଭେ ବେନି ପ୍ରାଣୀ
ତୁ ସେ ପଞ୍ଚରାଜ୍ୟରେ ଗୋ ହୋଇବୁ କାରେଣୀ ।
ଏକମାତ୍ର ପଣ୍ଡୁକୁ ଯେ ଦେଇ ନ ପାରିବି
ତୋହର ଆଜ୍ଞା ପାଳି ମୁଁ ଥିବି ତୋତେ ସେବି ।
ଉଠି ଗାନ୍ଧାରୀ କୁନ୍ତୀକୁ ଧରି କୋଳ କଲେ
ତୋ ଆପଦ ଘେନେ ବୋଲି ଶିର ଆଉଁସିଲେ ।
କୋଳ କରିଣ କୁନ୍ତୀକୁ ବସାଇଲେ ଏଥେ
ସହଦେବକୁ କୋଳରେ ଧଇଲେ ତଦନ୍ତେ ।
ଡକାଇଲେ କୁନ୍ତୀ ଶିବପାଦ କିରାତକୁ
ତୁ ଅନେକ ଭକ୍ତି କରିଥିଲୁ ଯେ ପଣ୍ଡୁଙ୍କୁ ।
ଏ ଶତଶୃଙ୍ଗେ ତୁ ବାବୁ ରାଜ୍ୟ କର ସୁଖେ
ଶତ୍ରୁମାନଙ୍କୁ ଧ୍ୱଂସନ କର ତୁ ତୁରିତେ ।
ଏ ଧନମାନ ଧ୍ୱଂସ ନ କରି ଏହା ପାଳ
ଯେଣୁ ରାଜାପାଦେ ଖଟୁଥିଲୁ ସଦାକାଳ ।
ଶବର ରାଜା ହୋଇ ତୁ ପାଳ ବନସ୍ତକୁ
ଅଇଲେ ସମ୍ଭାଳିବୁଟି ମୋହର ପୁତ୍ରଙ୍କୁ ।
ଭୋ ମହତ ଗିରିବର ଦୟା କରିଥିବା
ମୋ ପାପକର୍ମେ ନ କଲି ମୁଁ ତୋହର ସେବା ।
ହିମବନ୍ତ ନନ୍ଦନ ତୁ ଗିରିଜାର ଭ୍ରାତ
ଶରଣ ରକ୍ଷଣ ସ୍ୱାମୀ ମହନ୍ତ ପର୍ବତ ।
ପର୍ବତକୁ ସ୍ତୁତି କରି ଭୋଜଙ୍କ କୁମାରୀ
ଲେଉଟି ଅଇଲେ ତହୁଁ ପୁଣ ଯୁଣ ଚାରି ।
ଭୀଷ୍ମ ଭୂରିଶ୍ରବା କୁନ୍ତୀ ଗାନ୍ଧାରୀ ଯେ ଦେବୀ
ହସ୍ତିନାକୁ ଚଳିଗଲେ ବ୍ୟାସ ପାଦ ସେବି ।
ବ୍ୟାସଦେବ ବୋଇଲେ ଗୋ ଶୁଣସି ଗାନ୍ଧାରୀ
ଯେମନ୍ତ କୁନ୍ତୀର ପୁତ୍ରେ ପଣ୍ଡୁକୁ ନ ସ୍ମରି ।
ଯତନ କରି ଏହାଙ୍କୁ ଥାଅ ପ୍ରତିପାଳି
ତୁ ମହତୀ କୁଳନୀ ଗୋ ଅଟୁ ରାଜବାଳୀ ।
ଶତଶୃଙ୍ଗ ଛାଡ଼ିଲା ସେ ତୋର ପ୍ରୀତି ଆଶୁ
ଆମ୍ଭେ ସମସ୍ତେ ହସ୍ତିନାପୁରେ ଯାଇ ଆସୁ ।
ଟିଆରିଣ ବାହୁଡ଼ିଲେ ପରାଶର ସୁତ
ପ୍ରୟାଗେ ପ୍ରବେଶ ହେଲେ ଯାଇ ତପୋବନ୍ତ ।
ହସ୍ତିନାରେ ପ୍ରବେଶିଲେ ଯାଇଣ ସମସ୍ତେ
ସଞ୍ଜୟ କହିଲେ ଧୃତରାଷ୍ଟ୍ରଙ୍କ ଅଗ୍ରତେ ।
ଭୋ ଧୃତରାଷ୍ଟ୍ର ଆଣିଲୁ ଆମ୍ଭେ ଯେ କୁନ୍ତୀଙ୍କୁ
କୋଳେ ନେଇ ଦେଲେ ସହଦେବ ନନ୍ଦନଙ୍କୁ ।
ଯୁଧିଷ୍ଠି ନକୁଳ ଭୀମାର୍ଜୁନ ସହଦେବ
ଏ ପଞ୍ଚପୁତ୍ର ପାଳନ୍ତି ଧୃତରାଷ୍ଟ୍ର ଦେବ ।
ପଞ୍ଚନନ୍ଦନ ହୋଇଲେ ଆସି ଏକ ଠାବ
ଜୟ କମଳା ନାୟକ ପ୍ରଭୁ ବାସୁଦେବ ।
ତୋହର ଅଭୟ ପାଦେ ରହୁ ମୋର ମନ
ଶ୍ରୀ ଶାରଳା ଦାସ ଏହା ଭାବେ ଅନୁକ୍ଷଣ ।

—o—

## ରାଜପୁତ୍ରଙ୍କର ବିଦ୍ୟାରମ୍ଭ, ଦ୍ରୋଣ ଓ କୃପ ଜନ୍ମ

ବଦନ୍ତି ଅଗସ୍ତି ଆହୋ ଶୁଣ ଯୁଗପତି
ପଞ୍ଚପୁତ୍ରଙ୍କୁ ପାଆନ୍ତି ତହିଁ ଦେବୀ କୁନ୍ତୀ ।
କାଶିପତି ବୋଲି ଥିଲା ଏକ ଦ୍ୱିଜବର
ପାଠଗୁରୁ ହୋଇଲା ସେ ସବୁ ଭାଇଙ୍କର ।
ଧୃତରାଷ୍ଟ୍ର ବୋଇଲେ ଯେ ଭୀଷ୍ମଙ୍କର ଆଗେ
ପୁତ୍ରଙ୍କୁ ଶିଖାଅ ଅସ୍ତ୍ରବିଦ୍ୟା ଅନୁରାଗେ ।
ଭାଗ୍ୟବର ଗୁରୁ ଦେଲେ ଯେ ବିଦ୍ୟା ତୁମ୍ଭଙ୍କୁ
ସେ ବିଦ୍ୟା ପ୍ରସନ୍ନେ ତୁମ୍ଭେ ପଢ଼ାଅ ପୁଅଙ୍କୁ ।
ଇନ୍ଦ୍ରପ୍ରସ୍ଥ ବନଭାଗେ ହିରଣ୍ୟକୁ ବନେ
ତହିଁ ସେ ଆଖଡ଼ା ଘର କରେ ଗୁପ୍ତସ୍ଥାନେ ।
ଭୀଷ୍ମ ଶସ୍ତ୍ର ବିଦ୍ୟା ଗୁରୁ ହେଲେ ଆଖଡ଼ାରେ
ବିଦ୍ୟା ଆରମ୍ଭ କଲେକ ସକଳ କୁମରେ ।
ଅଗସ୍ତିଙ୍କି ପୁଛାକଲେ ମନୁଦଣ୍ଡଧାରୀ
ଭୀଷ୍ମ ବିଦ୍ୟା ଶିକ୍ଷାଦାନେ ହେଲେ ଅଧିକାରୀ ।
ଦ୍ରୋଣ ବିଦ୍ୟାଗୁରୁ ପୁଣି ହୋଇଲେ କେମନ୍ତେ
ସେ କଥା ବିସ୍ତାର କରି କହ ମୁନି ମୋତେ ।
ଭରଦ୍ୱାଜଙ୍କ ନନ୍ଦନ ଅଟନ୍ତି ଯେ ଦ୍ରୋଣ
କ୍ଷତ୍ରିୟ ବିଦ୍ୟା ପାଇଲେ କାହୁଁ ଯେହି ପୁଣ ।
ଏଥିର ଚରିତ ମୋତେ କହ ମୁନିବର
ଶୁଣିଣ ଭ୍ରାନ୍ତି ମନରୁ ଫିଟିଯାଉ ମୋର ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
କଶ୍ୟପ ଗୋତ୍ରରେ ଜାତ ହେବେ ସତ୍ୟ ମନୁ ।
ସତ୍ୟମନୁଙ୍କର ପୁତ୍ର ତାରଣ ମହର୍ଷି
ଅଜମିତ ନାମେ ହେଲେ ଏହାଙ୍କର ଶିଷି ।

ଅଜମିତର ନନ୍ଦନ ଅଟେ କୃତକେଶୀ
ବ୍ରହ୍ମରାକ୍ଷସ ହୋଇଲା ପଥିକ ବିନାଶି ।
କୃଷ୍ଣ ଅବତାରେ ତାକୁ ମାଇଲେ ଶ୍ରୀହରି
ଏହାର ନନ୍ଦନ ହେଲେ ମୁନି ଶଉଭରି ।
ଶୌଭରି ନନ୍ଦନ ନାରାୟଣ ମହାଋଷି
ପୁଣ୍ୟବନ୍ତ ପୁରୁଷ ସେ ପରମ ତପସ୍ୱୀ ।
ନାରାୟଣର ଯେବଣ ହୋଇଲା ନନ୍ଦନ
ବ୍ରହ୍ମବେତ୍ତା ନାମ ହେଲା ତାହାଙ୍କର ପୁଣ ।
ବ୍ରହ୍ମବେତ୍ତାଙ୍କ ନନ୍ଦନ ଶରଦ ମହର୍ଷି
ଭାନୁମାନ ନାମେ ହେଲା ଏହାଙ୍କର ଶିଷି ।
ଭାନୁମତୀର ନନ୍ଦନ ସୁଦେବ ବ୍ରାହ୍ମଣ
ଏହାର ନନ୍ଦନ ହାଦେ ମାରକଣ୍ଡ ଜାଣ ।
ମାରକଣ୍ଡର ନନ୍ଦନ ସାନ୍ଦୀପନ ଋଷି
ଯାଦବ ବିପ୍ର ଅଟଇ ତାହାଙ୍କର ଶିଷି ।
ଯାଦବର ନନ୍ଦିନୀ ଦ୍ୱାଦଶ ବିଶ୍ୱଦେବ
ସତମାର୍ଗେ ଚାଲିଲେ ସେ ରଖି ଧର୍ମଭାବ ।
ଦ୍ୱାଦଶ ବିଶ୍ୱଦେବତା ସଂହରିଲେ ରତି
ବିଭା ନ ହୋଇଲେ ଉପେକ୍ଷିଲେ ସେ ଯୁବତୀ ।
ପୁରୁଷ ସରସ ହୋଇ ହେଲେ ମହାଯତି
ବିଭାଗେ ଭାଙ୍ଗିଲେ ଅନଙ୍ଗର ଦର୍ପ ମୂର୍ତ୍ତି ।
ବ୍ୟାସେ ତାଙ୍କୁ କହିଲେ ଯେ ଅପୁତ୍ରିକ ହୁଏ
ସଞ୍ଜିମନୀ ପୁରେ ଯମ ଶାସ୍ତି ତାକୁ ଦିଏ ।
ଅନେକ ପାତକ ନାନା ମତେ କରିଥିବ
ସନ୍ତାନ ଥିଲେ ତାକୁ ନ ଦଣ୍ଡେ ଯମ ଦେବ ।
ଧର୍ମଲୋକେ ବିଚାରନ୍ତି ନ ଦେବାକୁ ଶାସ୍ତି
ମଞ୍ଚେ ଏହି ପୁତ୍ର ଅଛି ଦେବ ସଦ୍‌ଗତି ।
ପୁତ୍ର ନ କରଇ ଯେବେ ଏହା ଧର୍ମବାଟ
ତେତେବେଳେ ନେଇ ପଛେ ଏହା ମାଂସ କାଟ ।
ଅପୁତ୍ରିକ ହୋଇ ପୁଣି ମରନ୍ତି ଯେ ପ୍ରାଣୀ
ଧାତିକାରେ ଯମ ତାକୁ ଶାସ୍ତି ଦିଏ ଆଣି ।
ସନ୍ତାନ ଗୋଟିଏ ତାର ଥାଇ ଯେବେ ମର୍ତ୍ତ୍ୟେ
ଦଣ୍ଡି ନ ପାରଇ ପୁତ୍ର କରିବା ପର୍ଯ୍ୟନ୍ତେ ।
ବିଶ୍ୱ ଦେବାଏ ଶୁଣିଲେ ବ୍ୟାସଙ୍କ ପୁରାଣ
ପୁତ୍ର ଜାତ କରିବାକୁ ହେଲା ତାଙ୍କ ମନ ।
କାମସେନା ନାମେ ଏକ ଅପ୍‌ସରା ସ୍ୱର୍ଗରେ
ବାସବ ଦେବତା ସଙ୍ଗେ କ୍ରୀଡ଼ାରସ କରେ ।
କାଳେ ବଶୀଭୂତ ଯେଣୁ ନୋହିଲା ଯୁବତୀ
କ୍ରୋଧେ ଅଭିଶାପ ତାକୁ ଦେଲେ ଶଚୀପତି ।
ମୋହର ତୃପତି ତୁହି ନୋହିଲେ ଶୃଙ୍ଗାରେ
ବାତୁଳୀ ହୋଇ ତୁ ବୁଲ ଯାଇଁ ମର୍ତ୍ତ୍ୟପୁରେ ।
ସଂସାରେ ବୁଲି ଲଜ୍ଜାକୁ କର ତୁ ଉପେକ୍ଷା
ଏ ତୋର ଜାନୁ ଯୌବନ ସମସ୍ତଙ୍କୁ ଦେଖା ।
ଲଜ୍ଜା ତେଜି ବୁଲୁଥିବୁ ଉଲଗ୍ନା ତୁ ହୋଇ
ସମସ୍ତେ ବସିବେ ତୋର ସ୍ତନ ଜାନୁ ଚାହିଁ ।
ନ ହେଲୁ ତୃପତି ତୁହି ମୋର ରତିକାଳେ
ଲକ୍ଷ ସ୍ୱାମୀ କର ଯାଇ ତୁ ମର୍ତ୍ତ୍ୟ ମଣ୍ଡଳେ ।
କିଙ୍କରୀ ପରାୟେ ବାଳୀ କରଇ ଉତ୍ତର
ଭୋ ବାସବ ଦେବ ମୋତେ ପ୍ରତିକାର କର ।
ସ୍ତିରୀ ହୋଇଣ ମୁହିଁ ଯେ ହେଲି ମହାଗର୍ବୀ
ପ୍ରକୃତି ଜାଣି ତୋହର ନ ପାରିଲି ସେବି ।
ମୁହିଁ ଅଷ୍ଟନାୟକରେ ଅଟଇ ନାୟକ
କେତେକାଳରେ ଖଣ୍ଡିକ ମୋହର ପାତକ ।
ଭାବିନୀର ଭାବେ ପୁଣି ଦୟା କଲେ ଇନ୍ଦ୍ର
ତ୍ରେତାଯୁଗରେ ହୋଇବ ତୋ ପ୍ରକୃତି ମନ୍ଦ ।
ତେର ଲକ୍ଷ ଚାଳିଶ ସହସ୍ର ବର୍ଷ ଅନ୍ତେ
ବିଶ୍ୱଦେବାଏ ରମନ୍ତୁ ଦ୍ୱାପରରେ ଯେତେ ।
ଉପୁଜାଇ ତାହାଙ୍କର ବୀର୍ଯ୍ୟେ ଏକ ପୁତ୍ର
ସେ ପୁତ୍ର ପ୍ରସବି ହେଉ ତୋତେ ସ୍ୱର୍ଗ ପ୍ରାପ୍ତ ।
ଏସନକ ବର ତାକୁ ଦେଲେ ପୁରନ୍ଦର
ବାତୁଳୀ ହୋଇ ବୁଲଇ ବନସ୍ତ ଭିତର ।
ଭୁବନ ମୋହିନୀ ସେହୁ ଅଟଇ ଚଞ୍ଚଳା
ସ୍ତନ ଜାନୁ ଦେଖାଇ ସେ ହୋଇଣ ଲଙ୍ଗଳା ।
ବିଶ୍ୱଦେବାଏ ତାହାକୁ ଦେଖୁଥାନ୍ତି ନିତି
ଯେ ଦେଖଇ ସେ ଇଚ୍ଛାରେ କଲେ ଯାଇ ରତି ।
କାମସେନାକୁ ଶାପ ଯେ ଦେଲେ ସୁରସାଇଁ
ଶାପର ଚେଷ୍ଟା ଲାଗିଲା ହେଲା କାମେ ବାଇ ।
ତୁଳାମାସ କୃଷ୍ଣପକ୍ଷ ଦ୍ୱିତୀୟା ଯେ ତିଥି
ପୁଷ୍ୟା ନକ୍ଷତ୍ର ଆବର ବାର ବୃହସ୍ପତି ।
ବାଳବ ନାମେ କରଣ ଧୃତି ନାମ ଯୋଗ
ତୁଳ ସଂକ୍ରାନ୍ତିର ଚାରିଦିନ ଯାଇ ଭୋଗ ।
ସେଦିନ ଭ୍ରମତୀ ଯାଉ ଅଛଇ ବାତୁଳୀ
ଉତ୍ତରାଙ୍କୁର ତୀର୍ଥରେ ଶରୀର ପଖାଳି ।
କନକ ପର୍ବତେ ବୃକ୍ଷମୂଳେ ଯାଇ ଶୋଇ
ଦ୍ୱାଦଶ ପୁରୁଷେ ମୋହ ଗଲେ ତାକୁ ଚାହିଁ ।
ବୋଇଲେ ଅଟେ ଆକାଶ ପୁର ଅପସରୀ
ଗର୍ବ କରିବାରୁ ଶାପ ଦେଲେ ବଜ୍ରଧାରୀ ।
ସକଳେ ଏହାର ସଙ୍ଗେ କ୍ରୀଡ଼ା ରଙ୍ଗ କର
ଅନୁକ୍ଷଣେ ଧ୍ୟାନେ କରୁଥାଇ ଏ ଶୃଙ୍ଗାର ।
ସମସ୍ତେ ଛାଡ଼ିବା ଏକ କରିଣ ଯେ ବୀର୍ଯ୍ୟ
ଅତି ବିଚକ୍ଷଣ ହେଉ ଏକଇ ଆତ୍ମଜ ।

ବନ ପର୍ବତରେ ଏକା ଅଛଇ ଯୁବତୀ
ବିଶ୍ୱ ଦେବାଏ ଶୃଙ୍ଗାର କଲେ ସେହି ରାତି ।
ରତି ଭୋଗ କଲେ ଯେ ଦ୍ୱାଦଶ ବିଶ୍ୱଦେବେ
ସବୁଠି ବୀର୍ଯ୍ୟ ପ୍ରଦାନ କଲେ ଏକ ଗର୍ଭେ ।
ଏକା ରାତ୍ରକରେ ମହାଭାଗ ସେ ପାଇଲା
ବିଶ୍ୱଦେବଙ୍କର ବୀର୍ଯ୍ୟେ ପୁତ୍ରେକ ରହିଲା ।
କକଡ଼ା ମାସ ଆବର ପୂର୍ଣ୍ଣିମାର ରାତ୍ର
ରବିବାର କନ୍ୟାରାଶି ହସ୍ତା ଯେ ନକ୍ଷତ୍ର ।
ଗର ନାମରେ କରଣ ବ୍ରହ୍ମ ନାମେ ଯୋଗ
କକଡ଼ା ସଙ୍କରାନ୍ତିର ନବ ଦିନ ଭୋଗ ।
ତିଥି ବାର ନକ୍ଷତ୍ର ଯେ ଚନ୍ଦ୍ର ଯୋଗବଳେ
ପୁତ୍ରେକ ଯେ ଉପୁଜିଲା ମହାନିଶାକାଳେ ।
ମହାପ୍ରତାପୀ କୁମର ଅଭିଜ୍ଞ ଯେ ଋଷି
ପେଟ ବିଦାରି ବାହାରି ହୋଇପଡ଼େ ଖସି ।
ଦ୍ୱାଦଶ ବଦନ ତାର ଦ୍ୱାଦଶ ଯେ ଭୁଜ
ଆଦିତ୍ୟ ଲାଗିଲା ଯାଇ କୁମାରର ତେଜ ।
ପୁତ୍ର ଜନ୍ମିଲା ତକ୍ଷଣେ ମାତା ନାଶ ଗଲେ
ବିଶ୍ୱଦେବା ପୁରୁଷ ଯେ କୋଳରେ ଧଇଲେ ।
ସ୍ୱରୂପ ଦେଖିଣ ତୋଷ ହେଲେ ମହାଯତି
ଦ୍ୱାଦଶ ବଦନ ଦିଶେ ସବୁଙ୍କର ମୂର୍ତ୍ତି ।
ମହାଭାଗ ପାଇଣ ତା ମାତା ନାଶଗଲା
ଦ୍ୱାଦଶ ବିଶ୍ୱଦେବାଙ୍କ ବୀର୍ଯ୍ୟୁ ଜାତ ହେଲା ।
ପୁତ୍ରଙ୍କୁ କୋଳେ ଧରିଣ ଦ୍ୱାଦଶ ପୁରୁଷେ
ଭରଦ୍ୱାଜ ବୋଲି ନାମ ଦେଲେ ଅତି ତୋଷେ ।
ପୁତ୍ର ଉପୁଜାଇ ମାତା ଉଦ୍ଧାର ପାଇଲା
ସ୍ୱର୍ଗରେ ସୁରନାଥଙ୍କୁ ଦରଶନ କଲା ।
ଦେଖିଣ ତାଙ୍କୁ ସାନନ୍ଦ ହୋଇଲେ ମଘବା
ଶାପ ଅନ୍ତେ ଅନୁଗ୍ରହ କଲେ ସର୍ବଦେବା ।
ବିଶ୍ୱଦେବା ସମର୍ପିଲେ ଯହୁଁ ମହର୍ଷିଙ୍କୁ
ସେ ନେଇ ପାଳିଲେ ସେହି ଅଜ୍ଞାନ ଶିଶୁକୁ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଭରଦ୍ୱାଜ ବଢ଼ିଲେ ଯେ ପୂର୍ବବ୍ରହ୍ମଜ୍ଞାନୁ ।
ମନ୍ଦପାଳ ଋଷି ଭାର୍ଯ୍ୟା ନାମ ଭାନୁମତୀ
ତାହାର ନନ୍ଦିନୀ ନାମ ଅଟେ ସରସ୍ୱତୀ ।
ଭରଦ୍ୱାଜଙ୍କୁ ପ୍ରଦାନ କଲେ ସେ କନ୍ୟାକୁ
ବନ୍ଧାପନା ବେଳୁ ରତି ନ କଲେ ତାହାକୁ ।
ତପେ ଇନ୍ଦ୍ରିୟ ଦମନ କଲେ ବ୍ରହ୍ମଋଷି
ସୁରତିରେ ତାହାଙ୍କର ଚିତ୍ତ ଯେ ନ ରସେ ।
ପ୍ରିୟା ସରସ୍ୱତୀ ସେବୁଥାଇ ଅନୁବ୍ରତେ
ଶୃଙ୍ଗାର ନ ଇଛି ଶତ ବରଷ ପର୍ଯ୍ୟନ୍ତେ ।

ପ୍ରୟାଗ ତୀର୍ଥେ ପୁରାଣ ପଢୁଥିଲୁ ଆମ୍ଭେ
ଅପୁତ୍ରିକର ସଦ୍‌ଗତି ନାହିଁ କେବେ ଭବେ ।
ଏମନ୍ତ ଚରିତ ଶୁଣି ସେ ପୁରାଣ ବାକ୍ୟେ
ସନ୍ତାନ ନାହିଁ ମୋହର ଭାଳି ହୃଦଚକ୍ରେ ।
ପୁରାଣ ଅନ୍ତେ ପୁଛିଲେ ଆମ୍ଭଙ୍କୁ ସେ ଯାଇ
ସ୍ୱାମୀ ଦାରା ସଂହରିଲେ କି ଦୋଷ ଲାଗଇ ।
ଆମ୍ଭେ ବୋଇଲୁ ନୋହିଲେ କରିବ ଉପାୟ
ଏ ଅଷ୍ଟ ପ୍ରକାରେ ଉପୁଜାଇବ ତନୟ ।
ନିଜ ସ୍ୱାମୀ ବୀର୍ଯ୍ୟେ ଯଦି ନୋହିବ ସନ୍ତତି
ପୁତ୍ର ଇଷ୍ଟ କରାଇବ ଯାଇ ମହାଯତି ।
ତହିଁରେ ଯେବେ ନୋହିବ ଜାଣ ପୁତ୍ର ଜାତ
ତୀର୍ଥେ ଦାନ ଦେବ ଫଳ ଭଲ ଯେ ପଦାର୍ଥ ।
ସେ ରୂପେ ଯଦ୍ୟପି ଜାଣ ନୋହିବ ସନ୍ତାନ
ଶୁଣିବ ସେ ଆଦ୍ୟପ୍ରାନ୍ତ କରି ରାମାୟଣ ।
ଏତେ ରୂପେ ଜାଣ ଯେବେ ନୋହିବ ନନ୍ଦନ
ଧନ ଦେଇଣ ପାଳିବ ପରର ସନ୍ତାନ ।
ତାହାକୁ ଯେବେଟି ପୁଣ ନ ପାଇବ ଲୋଡ଼ି
ସ୍ୱାମୀ ଅନୁମତି ଘେନି ହୋଇବ ଦୋଚାରି ।
ଏତେ ବାଗେ ଯେବେ ପୁଣି ନୋହିବ ଆତ୍ମଜ
ଧର୍ମ ଅର୍ଥେ ବିଭା କରାଇବ ଭଗିନୀଜ ।
କନ୍ୟା ଦାନ କରି ତାର ନୋହିଲେ ସନ୍ତତି
ବାଟେ ବୃକ୍ଷ ଲଗାଇବ ଜାଣିଥାଅ ସତୀ ।
ଏ ଅଷ୍ଟପ୍ରକାର ଜାଣ ପୁତ୍ର ଜାତ କଥା
ସ୍ତିରୀ ଜନ୍ମ ହିଁ ଦୁର୍ଲ୍ଲଭ ଅଟଇ ଗୋ ମାତା ।
ଏ ସମସ୍ତ କଥା ଯେବେ ନ ପାରିବ କରି
ପ୍ରୟାଗ ତୀର୍ଥରେ ଝାସି ଦୋଷ ହେଉ ପାରି ।
ଯମ ଦେବତା ଆସି ନ ପାରେ ତାର ପାଶ
ପ୍ରୟାଗେ ଝାସିଲେ ଫିଟି ଅପୁତ୍ରିକ ଦୋଷ ।
ପୁରାଣ ବାକ୍ୟରେ ଯହୁଁ କହିଲୁ ବୁଝାଇ
ଶୁଣି ବିସ୍ମୟ ବଦନା ସରସ୍ୱତୀ ହୋଇ ।
ତୀର୍ଥବରେ ସେହି ବାଞ୍ଛା ବଟତଳେ ବସି
ଦ୍ରୋଣ ପକ୍ଷୀକି ଯେ ତପେ ଭାବିଲା ସୁକେଶୀ ।
ଶତେକ ବରଷ ବସି ଲୟ କଲା ସତୀ
ପ୍ରସନ୍ନ ହୋଇଣ ଦ୍ରୋଣ ପକ୍ଷୀ ମହାଯତି ।
ବୋଇଲା ତୁ ବର ମାଗ କଲି ତୋତେ ଦୟା
ବିନୟ ଭାବେ ବୋଇଲେ ଭରଦ୍ୱାଜ ପ୍ରିୟା ।
ଭୋ ଧର୍ମପକ୍ଷୀ ତୁ ମୋତେ ଅନୁଗ୍ରହ କରି
ପୁତ୍ର ଗୋଟିଏ ଦିଅ ଯେ ବିଜ୍ଞ ବ୍ରହ୍ମଚାରୀ ।
ନୀରକ୍ଷ ଦେଖିଣ ଦୟା କଲା ଧର୍ମପକ୍ଷୀ
ହୃଦୟ ତରଳିଗଲା ତାର କଷ୍ଟ ଦେଖି ।

ଅଙ୍ଗରୁ କାଢ଼ି ଦେଲାକ ସେ ଡିମ୍ବ ଗୋଟିଏ
ଏହାକୁ ନେଇ ଯତନେ ରଖ ଆଗୋ ମାଏ ।
ଏଥିରୁ ଗୋ ଏକ ପୁତ୍ର ହେବ ଉତପତ୍ତି
ଅତି ବିଜ୍ଞ ବଳବନ୍ତ ହେବ ମହାକ୍ଷତ୍ରୀ ।
ଦ୍ରୋଣ ପକ୍ଷୀର ସେ ଡିମ୍ବ ଘେନି ସରସ୍ୱତୀ
ସେହି ପ୍ରୟାଗ ତୀର୍ଥରେ ରହିଥାଏ ସତୀ ।
ଫୁଟିଲାକ ପଞ୍ଚଦଶ ବର୍ଷ ଡିମ୍ବ ଫାଟି
ଅପୂର୍ବ ବ୍ରହ୍ମ ପୁତ୍ରେକ ହେଲା ଡିମ୍ବ ଫାଟି ।
ମନୁଷ୍ୟ ଶରୀର ପୁଣି ପକ୍ଷୀର ବଦନ
ସୂଚିମୁଖ ରକ୍ତଓଷ୍ଠ ତାର ତାମ୍ରବର୍ଣ୍ଣ ।
ବେନି ଭୁଜେ ଅଛି ତାର ପକ୍ଷ ଚିହ୍ନଟାଏ
ପ୍ରତ୍ୟକ୍ଷ ମନୁଷ୍ୟ ଦିଶେ ଗରୁଡ଼ ପରାୟେ ।
ଦେଖିଣ ସନ୍ତୋଷ ହେଲେ ଋଷି ଭରଦ୍ୱାଜ
ଦ୍ରୋଣପକ୍ଷୀ ଅନୁଗ୍ରହେ ପାଇଲେ ଆତ୍ମଜ ।
କୁମରକୁ କୋଳ କରି ଧରି ତପୋନିଷ୍ଠ
ବୋଇଲେ ଏହାର ଦ୍ରୋଣ ନାମ ହେଉ ରାଷ୍ଟ୍ର ।
ଅଗସ୍ତି ବୋଇଲେ ପୁଣି ବୈବସ୍ୱତ ମନୁ
ସେ ଦ୍ରୋଣ ହୋଇଲେ ଭରଦ୍ୱାଜଙ୍କର ସୁନୁ ।
ଅତି ଯତ୍ନ କରିଣ ସେ କୁମର ପାଳିଲେ
ସାତବର୍ଷ ଦୁଇମାସେ ତାଙ୍କୁ ବ୍ରତ କଲେ ।
କୃପବ୍ରହ୍ମା ବୋଲି ବିପ୍ର ଶୁକବ୍ରହ୍ମା ବାଳ
ପ୍ରଜାପତି ଗୋତ୍ର ତାଙ୍କ ତେଜ ଅନର୍ଗଳ ।
ତାହାଙ୍କର ପୁତ୍ର ନାମ ଅଟେ ଶରଦ୍ୱାନ
କୃପାଚାର୍ଯ୍ୟ ଅଟନ୍ତି ଯେ ତାହାଙ୍କ ନନ୍ଦନ ।
ତାହାଙ୍କ ଭଗିନୀ ନାମ ଅଟଇ ଯେ କୃପୀ
ସେ କୃପୀଙ୍କୁ ବିଭାକଲେ ଦ୍ରୋଣ ମହାତପୀ ।
କୃପୀ କନ୍ୟାକୁ ଘେନିଣ ଦ୍ରୋଣ ଯେ ଅଇଲେ
ବାଳୁତ କାଳରୁ ସେହି ତୀର୍ଥବାସୀ ହେଲେ ।
ପ୍ରୟାଗ ତୀର୍ଥେ ଭେଟିଲେ ପରଶୁରାମଙ୍କୁ
ଯମଦଗ୍ନି ନନ୍ଦନ ଯେ ପଚାରିଲେ ତାଙ୍କୁ ।
ବେଦ ଅଧ୍ୟୟନ ରୀତି ଜାଣୁଟିକି ବାବୁ
ମନ୍ତ୍ର ଉଚ୍ଚାରଣ କର ପରୀକ୍ଷା କରିବୁ ।
ପ୍ରଣବ ଉଚ୍ଚାରି ବେଦ ଗାଇଲେ ଅଭ୍ୟାସେ
ବ୍ରହ୍ମାଣ୍ଡ କମ୍ପିଲା ସେହି ମହାମନ୍ତ୍ର ତ୍ରାସେ ।
ଆସନ କମ୍ପିଲା ଯମଦଗ୍ନି ସୁତଙ୍କର
ବୋଇଲେ ବିଶ୍ରାମ କର ବ୍ରାହ୍ମଣ କୁମର ।
ସମସ୍ତ ବିଦ୍ୟା ଛାଡ଼ି ସେ ବସି ଧର୍ମମାର୍ଗେ
ଦାନ ଦେଉଛନ୍ତି ରହି ମକର ପ୍ରୟାଗେ ।
ଦ୍ରୋଣ ରହିଲେ ଆକାଶ ଗଙ୍ଗାନଦୀକୂଳେ
ଭିକ୍ଷା ମାତ୍ର ହିଁ କେବଳ ହେଲା ଧର୍ମବଳେ ।
ବର୍ତ୍ତନ୍ତି ସେ ଭିକ୍ଷାପାତ୍ର ଘେନି ବେନି ପ୍ରାଣୀ
ନଗର ମଧ୍ୟରୁ ଭିକ୍ଷା ଅନ୍ନ ମାଗିଆଣ ।
ଜୟ ଜୟ ଜାହ୍ନବୀ ଗୋ ଜଗତ ଜନନୀ
ଗଜବର ବିଧ୍ୱଂସିନୀ ପତିତପାବନୀ ।
ତେଣୁ ସଦାଶିବ ଶିରେ ବହିଲେ ଗୋ ତୋତେ
ଭାଗୀରଥି ନାମ ତୋର ବିଦିତ ଜଗତେ ।
ହିମାଳୟ ନନ୍ଦିନୀ ତୁ ଜଗତ ପରାଣ
ଶାରଳା ଦାସ ମୁଁ ତୋର ଚରଣେ ଶରଣ ।

—୦—

## ଦ୍ରୋଣଙ୍କର ଦ୍ରୁପଦ ସହିତ ମିତ୍ରତା

ବଦନ୍ତି ଅଗସ୍ତି ତୁ ହୋ ଶୁଣ ଯୁଗପତି
ଏ ମହାଭାରତ ଗ୍ରନ୍ଥ ବେଦରୁ ଉତ୍ପତ୍ତି ।
ପଞ୍ଚାଳ ଦେଶର ରାଜା ଅଟଇ ଦ୍ରୁପଦ
କିରାତ ସଙ୍ଗେ ତାହାର ଲାଗିଲା ବିବାଦ ।
ପଳାଇଲେ ଦଣ୍ଡ ଭଗ୍ନ ହୋଇ ରାଜ୍ୟ ଛାଡ଼ି
କିରାତ ନୃପ ବସିଲା ତାର ରାଜ୍ୟ ମାଡ଼ି ।
ଦ୍ରୁପଦ ଯେ ହତରାଜ୍ୟ ହୋଇ ପଳାଇଲା
ଗଙ୍ଗାକୂଳେ ଭଗ୍ନବଳ ଘେନିଣ ରହିଲା ।
ମହା ଭଇରବୀ ତୀର୍ଥେ ଗଙ୍ଗାନଦୀ କୂଳେ
ଦ୍ରୋଣ କୃପୀ ରହିଛନ୍ତି ତହିଁ ସର୍ବକାଳେ ।
ନିତ୍ୟ କର୍ମସାରି ଦ୍ରୋଣ ବସିଛନ୍ତି ତପେ
ପଞ୍ଚାଳ ଈଶ୍ୱର ଯାଇ ମିଳିଲା ସମୀପେ ।
ଦ୍ରୋଣକୁ ଯେ ନମସ୍କାର କଲେକ ଦ୍ରୁପଦ
କରପତ୍ର ତୋଳି ଦ୍ରୋଣ କଲେ ଆଶୀର୍ବାଦ ।
ବତିଶଗୁଣେ ସୁନ୍ଦର ସୁକୁମାର କାୟ
ମୂର୍ଦ୍ଧାଭିଶେକୀ ହିଁ ଦିଶୁ ହତରାଜ୍ୟ ପ୍ରାୟ ।
ବୋଲେ କେବଣ ଦେଶର ନୃପ ତୁମ୍ଭେ ଅଟ
ଚାନ୍ଦଭୋଗ ଛାଡ଼ି କିମ୍ପା ବନବାସ ଖଟ ।
ଦ୍ରୁପଦ ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମଚାରୀ
ପଞ୍ଚାଳ ଦେଶର ମୁହିଁ ଅଟେ ଅଧିକାରୀ ।
ମୋର ରାଜ୍ୟକୁ ବାହିଲା କିରାତ ଭୂପାଳ
ରାଜ୍ୟଭାର ସିଂହାସନ ଘେନିଲା ସକଳ ।
ପଞ୍ଚାଳ ଦେଶେ ମୁଁ ପଞ୍ଚ ରାଜ୍ୟେ ଅଧିପତି
ମୋହର ନାମ ଗୋସାଇଁ ଦ୍ରୁପଦ ଭୂପତି ।
ଦ୍ରୋଣ ବୋଇଲେକ ମନେ ମନେ ଯେ ବିଚାରି
ତୋର ମୋର ନାମ ଆଦ୍ୟ ଏକାକ୍ଷରେ ପଡ଼ି ।
ଆମ୍ଭ ନାମ ଦ୍ରୋଣ ତୁମ୍ଭ ନାମ ଦ୍ରୁପଦ ତ
ତୁ ମହାରାଜା ହୋଇଲୁ ଆମ୍ଭର ଯେ ମିତ ।
ଦ୍ରୁପଦ ବୋଇଲେ ମୁହିଁ ନ ହୁଅଇ କ୍ଷମ
ତୁ ମହା ଅଭିଜ୍ଞ ଦେବ ମହାଜ୍ଞାନୀ ବ୍ରହ୍ମ ।

ଠାକୁଆ ଦାସର ନାମ ଏକତ୍ର ହୋଇଲେ
ସେ କି ମଇତ୍ର ହୁଅନ୍ତି ଦ୍ରୁପଦ ବୋଇଲେ ।
ଦ୍ରୋଣ ବୋଇଲେ ମଇତ୍ର ହୋଇଲୁ କି ବାଇ
ନାମ ମଇତ୍ର ସଂସାରେ ଅତି ଭାଗ୍ୟେ ପାଇ ।
ତୋହର ମୋହର ଆଜୁ ହୋଇଲା ପୀରତି
ଶୁଣି ପରମ ଆନନ୍ଦ ଦ୍ରୁପଦ ନୃପତି ।
ଦ୍ରୋଣ ଅନେକ ପ୍ରକାରେ ପାଇଛନ୍ତି ଦାନ
ପ୍ରତି ଗ୍ରହରେ ଅର୍ଜିଲେ ବହୁତ ସେ ଧନ ।
ବେଦଜ୍ଞ ବିପ୍ର ଦେଖିଣ ତୀର୍ଥେ ନରପତି
ଦ୍ରୋଣଙ୍କୁ ଅନେକ ଧନ ଦେଲେ ବହି ପ୍ରୀତି ।
ଦ୍ରୁପଦ ରାଜାର ଯହୁଁ ବିପଦ ଦେଖିଲେ
ଯେତେ ଧନ ଥିଲା ଦ୍ରୋଣ ଦ୍ରୁପଦଙ୍କୁ ଦେଲେ ।
ଅନେକ ଦାନ ଘେନିଣ ଦ୍ରୁପଦ ନିମନ୍ତେ
ଯେତେ ଲାଗଇ ଦିଅନ୍ତି ଦ୍ରୋଣ ତାହା ନିତ୍ୟେ ।
ରାଜ୍ୟରୁ ନୃପତି ଧନ ଆଣିଥିଲେ ଯେତେ
ଥାଟକୁ ଆଣିଲା ନବବରଷ ପର୍ଯ୍ୟନ୍ତେ ।
ପୂର୍ବ ବାସନାରୁ ଅଟେ ଧାର୍ମିକ ନୃପତି
ଆନ ଭୂମି ନ ଯାଇ ନ ଯାଏ ଆନ କତି ।
କିରାତ ଯେ ତାର ରାଜ୍ୟ ମାଡ଼ି ବସିଥିଲା
ଏକବିଂଶ ବର୍ଷଯାଏ ରାଜ୍ୟ ନ ଛାଡ଼ିଲା ।
ରାଜାର ଥାଟକୁ ଯହୁଁ ହେଲା ଅନ୍ନ ଶାସ୍ତି
ପଳାଇଲେ ପ୍ରଜାମାନେ ଛାଡ଼ିଣ ନୃପତି ।
ଦ୍ରୋଣ ବୋଇଲେ ତୋହର ସୈନ୍ୟ ମଧ୍ୟୁ ନିତ୍ୟ
ପଳାଇ ଯାଉଅଛନ୍ତି କିମ୍ପାଇ ଭୋ ମିତ ।
ଦ୍ରୁପଦ ବୋଇଲେ ରାଜ୍ୟ ଭୋଗ କରୁଥିଲେ
ଦ୍ୱାଦଶ ବରଷଯାଏ ମୋତେ ଏ ଖଟିଲେ ।
କଷଣ ପାଇଲେ ଯହୁଁ ନ ପାଇଲେ ଅନ୍ନ
ତେଣୁ ଦିନୁଦିନ ଥାଟ ହେଉଅଛି କ୍ଷୀଣ ।
ଦ୍ରୋଣ ବୋଇଲେ ଆଣ ତୋ ସୈନ୍ୟଙ୍କୁ ହକାରି
ଯାହାକୁ ଯେତେ ଲାଗଇ ଆମ୍ଭେ ଦେବା ଭରି ।
ହସ୍ତୀ ଘୋଡ଼ାଙ୍କୁ ଦେଲେ ସେ ଚରାଆଦି କରି
ଏମନ୍ତେ ଦ୍ରୁପଦ ଥାଟ ଦ୍ରୋଣ ଯେ ସମ୍ଭାଳି ।
ଦ୍ରୋଣଙ୍କର ଭାରିଯା ଯେ କୃପୀ ମାହେଶ୍ୱରୀ
ଅତୁଟ୍ ବିଦ୍ୟା ଅଟଇ ଶରୀର ତାହାରି ।
ଦକ୍ଷିଣ ହସ୍ତେ ଅଛଇ ଶୃଙ୍ଗ ପଦ୍ମନିଧି
ଦେଲେ ଧନ ନ ସରଇ ମହିମା ପ୍ରସିଦ୍ଧି ।
ଏକ ହାଣ୍ଡି କରେ ଭାତ ହାଣ୍ଡିଏ ରାନ୍ଧିଲେ
ଥାଟକୁ ଅଣ୍ଟଇ ନ ସରଇ ପରଷିଲେ ।
ସେହି ମାହେଶ୍ୱରୀ ଅନ୍ନ ଦେଉଥାନ୍ତି ନିତି
ଆନନ୍ଦରେ ସର୍ବେ ଖାଇ ଲଭନ୍ତି ତୃପତି ।
ସ୍ତିରୀ ପୁରୁଷ ବାଳକ ସବୁ ଧରି କରି
ରହିଲେ ନିଶ୍ଚିନ୍ତେ ତହିଁ ପଞ୍ଚାଳଧିକାରୀ ।
ଦ୍ରୋଣ ଯେ ଦିଅନ୍ତି ପାଣି ଦ୍ରବ୍ୟ ରତ୍ନମାନ
ଯାହାକୁ ଯେତେ ଲାଗଇ ଅଳଙ୍କାର ଧନ ।
ଦ୍ରୋଣଙ୍କର ପ୍ରସାଦେ ସେ ରହନ୍ତେ ନିଶ୍ଚିନ୍ତେ
ଗଙ୍ଗାକୂଳେ ଚଉବିଂଶ ବରଷ ପର୍ଯ୍ୟନ୍ତେ ।
ଜୟ ଅନାଦି ନିଧାନ ଦେବ ପୀତବାସ
ଜନ୍ମେ ଜନ୍ମେ ତୋ ସେବକ ଶ୍ରୀ ଶାରଳା ଦାସ ।



## ଦ୍ରୁପଦର ରାଜ୍ୟ ପ୍ରାପ୍ତି, ଅଶ୍ୱଥାମା ଜନ୍ମ ଓ ଦ୍ରୋଣଙ୍କର ଅବମାନନା

ଅଗସ୍ତି ବୋଇଲେ ଶୁଣ ଆହେ ନରପତି
ମଇତ୍ର ଯୋଗୁ ହୋଇଲା ଏସନକ ପ୍ରୀତି ।
ବିରାଟ ରାଜା ପଞ୍ଚାଳ ଦେଶେ ଅଛି ରହି
ପ୍ରଜାଙ୍କୁ ସୁଛରେ ରଖି ପାଳୁଅଛି ମହୀ ।
ଆପଣ ରାଜ୍ୟ ପାତ୍ରକୁ ଜଗାଇ ସେ ଥିଲା
ତାହାର ରାଜ୍ୟକୁ ରାମ ଦରଦ ବାହିଲା ।
ବାରତା କହିଲା ଦୂତ ବୈତରଣୀ କୂଳେ
କିରାତ ରହିଛି ରଣସ୍ତମ୍ଭ ଗିରିତଳେ ।
ସ୍ୱାମୀ ଆଉ କିମ୍ପା ତୁମ୍ଭେ ପଞ୍ଚାଳେ ରହିବ
ଶତ୍ରୁ ଲାଗିଲାଣି ତୁମ୍ଭ ରାଜ୍ୟରେ ଭୋ ଦେବ ।
ତୋହର ରାଜ୍ୟକୁ ଦେବ ବାହିଲା ଦରଦ
ସ୍ୱଦେଶକୁ ଛାଡ଼ି ପରଦେଶକୁ ସମ୍ବାଦ ।
ଏହି ବଳ ଦର୍ପ ଦେବ ସର୍ବଦା ନ ଥିବ
ଯେ ଯାହାର ରାଜ୍ୟ ପୁଣି ସେ ତାହାକୁ ନେବ ।
ତୁଳ ମାସ ଶୁକ୍ଳପକ୍ଷ ଦଶମୀର ଦିନ
ପଞ୍ଚାଳ ଦେଶ ଛାଡ଼ିଲା କିରାତ ରାଜନ ।
ମହାରାଷ୍ଟ୍ର ଦେଶକୁ ସେ ଚଳିଲା କିରାତ
ଦରଦ ତୁଳେ ସଂଗ୍ରାମ ହେଲା ଅପ୍ରମିତ ।
ପଞ୍ଚାଳ ଦେଶେ ଦ୍ରୁପଦ ଲୋକ ଯେତେଥିଲେ
ରାଜାର ଛାମୁରେ ଯାଇ ବାରତା କହିଲେ ।
ଭୋ ସ୍ୱାମୀ କିରାତ ତୋର ରାଜ୍ୟ ଘେନି ଥିଲା
ତାହାର ରାଜ୍ୟକୁ ସେହି ବେଗେ ଚଳିଗଲା ।
ଆମ୍ଭର ରାଜ୍ୟକୁ ଦେବ ବେଗେ ଯିବା ଆସ
ଶୁଣି ଦ୍ରୁପଦ ନୃପତି ହୋଇଲା ହରଷ ।
ଦ୍ରୋଣଙ୍କର ପାଦତଳେ ଦ୍ରୁପଦ ପ୍ରଣମି
ତୋ ଯୋଗୁଁ ଆପଦ ମୋର ଖଣ୍ଡିଲା ଭୋ ସ୍ୱାମୀ ।
କିରାତ ସ୍ୱରାଜ୍ୟେ ଗଲା ଛାଡ଼ି ମୋର ଦେଶ
ଭୋ ମଇତ୍ର ଏବେ ଆମ୍ଭ ରାଜ୍ୟେ ଯିବା ଆସ ।

ଦ୍ରୋଣ ଆନନ୍ଦ ହୋଇଲେ ମିତ୍ର କଥା ଶୁଣି
ବୋଇଲେ ତୋ ଧର୍ମ ଉଦେ ହେଲା ନୃପମଣି ।
ଏହି ସମ୍ପଦ ବିପଦ ସମୟେ ସମୟେ
ସର୍ବଦା ବିପଦ ନାହିଁ ପ୍ରାଣୀଙ୍କର କାୟେ ।
ଭୋ ମଇତ୍ର ପଦେ ଯାଅ ତୋହର ମଣ୍ଡଳେ
ସୁବିଧାନେ ରାଜ୍ୟ କର ଯାଇ ଶୁଭବେଳେ ।
ତୋହର ରାଜ୍ୟ ତୁ ଏବେ ଯାଇ କର ସୁଖେ
ପରଜା ଜନେ ଖଟନ୍ତୁ ଭଜନ୍ତୁ ଅମାତ୍ୟେ ।
ଆଜ୍ଞା ପ୍ରମାଣେ ଖଟନ୍ତୁ ପ୍ରକୃତ ନିଯୋଗୀ
ସୁଖେଣ ମଣ୍ଡଳେ ରହି ହୁଅ ସୁଖ ଭୋଗୀ ।
ଜନ ଜନ୍ତୁ ତୋ ରାଜ୍ୟରେ ବସନ୍ତୁ ମଙ୍ଗଳେ
ଆମ୍ଭେ ପ୍ରବେଶ ହୋଇବୁ ସୁବିଧାନ ବେଳେ ।
ଦ୍ରୁପଦ ପ୍ରଣତି କରି ଦ୍ରୋଣ ପଦ୍ମପାଦେ
ସମସ୍ତ ଭିଆଇ ପଞ୍ଚ ଦିବସର ମଧ୍ୟେ ।
ଭୋ ମିତ୍ର ମୋ ରାଜ୍ୟେ ଯିବ ଥିବ ଯେବେ ଦୟା
ରାଜ୍ୟେ ମୋର କାର୍ଯ୍ୟ ନାହିଁ ନ କରତୁ ମାୟା ।
ଦ୍ରୋଣ ବୋଇଲେ ତୁ ରାଜା କଟାଳ ନ କର
କହୁଅଛି ଶୁଣ ଏବେ ବାକ୍ୟ ନିରାଧାର ।
ସଧର୍ମିଣୀ କୃପୀ ହୋଇଅଛି ଗର୍ଭବତୀ
ଚାରିମାସ ହୋଇଲାଣି ଅବଶ ପ୍ରକୃତି ।
ଏହାକୁ ମୁଁ ଆନଠାବ କରି ତ ନ ପାରି
ପ୍ରସବ ମାତ୍ରେ ଯିବୁ ନା ଆମ୍ଭେ ତୋର ପୁରୀ ।
ଦର ହସିତେ ବୋଇଲେ ଭରଦ୍ୱାଜ ସୁନୁ
ରାଜ୍ୟ ଭୋଗେ ପଶି କାଳେ ଆମ୍ଭଙ୍କୁ ନ ଚିହ୍ନୁ ।
ଦ୍ରୁପଦ ବୋଇଲେ ଯେବେ ହେବ ମନ୍ଦକର୍ମ
ନିଶ୍ଚୟ ଯେବେଟି ମୋତେ ଛାଡ଼ିଯିବ ଧର୍ମ ।
ତେତେବେଳେ ତୁମ୍ଭଙ୍କୁ ମୁଁ ସିନା ନ ଚିହ୍ନିବି
ସମ୍ପଦ ବିହୀନ ହୋଇ ନିଶ୍ଚେ ନାଶ ଯିବି ।
ଦ୍ରୋଣ ବୋଇଲେ ନ କର ମନେ କିଛି ଭ୍ରାନ୍ତି
ତୋହର ମୋହର ଜାଣ ଜନ୍ମେ ଜନ୍ମେ ପ୍ରୀତି ।
ଅନେକ କଲ୍ୟାଣ ବାଞ୍ଛା କଲେ ତପୋବନ୍ତ
ଅନେକ ଯେ ଧନ ଦେଲେ ଭରଦ୍ୱାଜ ସୁତ ।
ସମଦଣ୍ଡ ଘେନି ଗଲେ ଦ୍ରୁପଦ ତୁରିତେ
ପଞ୍ଚାଳ ଦେଶରେ ବିଜେ ହେଲେ ନରନାଥ ।
ଗଡ଼ ଖାଇ ମାନ କରି ଭିଆଇଲେ ପୁର
ଖଞ୍ଜିଲେ ସାମନ୍ତ ପାତ୍ର ନିଜ ପରିବାର ।
ନିଜ ରାଜ୍ୟରେ ଦ୍ରୁପଦ ବସିଲେ ନିଶ୍ଚିନ୍ତେ
ସୁଖେଣ ରାଜ୍ୟ ପାଳନ କରନ୍ତି ନିରତେ ।
ଦ୍ରୋଣ ରହିଛନ୍ତି ମହା ଭଇରବୀ କୂଳେ
କୃପୀ ପ୍ରସବ ଉନ୍ମୁଖୀ ହେଲେ ପ୍ରାତଃକାଳେ ।
ସିଂହମାସ କୃଷ୍ଣପକ୍ଷ ଷଷ୍ଠୀ ପୁଣ୍ୟ ତିଥି
ସଉରି ବାର ସେଦିନ ନକ୍ଷତ୍ର ରେବତୀ ।
ବିଷ୍ଟିନାମେ କରଣ ଯେ ଶୁକ୍ଳନାମେ ଯୋଗ
ସପତମେ ଚନ୍ଦ୍ରମୀନ ଦିନମାନ ଭୋଗ ।
ରେବତୀର ଭୋଗ ରାତ୍ର ପାଞ୍ଚଘଡ଼ି ଗଲା
ଆଦ୍ୟ ନକ୍ଷତ୍ର ଅଶ୍ୱିନୀ ପ୍ରବେଶ ହୋଇଲା ।
ତିନି ଦଣ୍ଡ ମଧ୍ୟରେ ଯେ ପୁତ୍ର ହେଲା ଜାତ
ମାତୃଗଣ୍ଡକୁ ପାଇଲା କୃପୀ ହେଲା ହତ ।
ପୁତ୍ର ଜାତ ହୋଇଲାକ ମାତା ନାଶ ଗଲା
ଦ୍ରୋଣ ସେ ପୁତ୍ରର ନାମ ଅଶ୍ୱତ୍ଥାମା ଦେଲା ।
ଅନେକ ଯେ ବଇକୁଲ୍ୟ ହେଲା ମହାତମା
ଅତି ଯତନେ ପାଳିଲା ପୁତ୍ର ଅଶ୍ୱତ୍ଥାମା ।
କୃପୀ ନାଶଗଲା ଯହୁଁ ପୁତ୍ର ପ୍ରସବିଣ
ଚିତାଗ୍ନିରେ ମୃତ ପିଣ୍ଡ କରିଣ ଦହନ ।
ଅଗ୍ନିକି ସଂସ୍କାର ପୁଣି କଲେ ଦ୍ୱିଜବରେ
ପାଣି ଫେଣ ଦିଅନ୍ତି ସେ ପୁତ୍ରର ତୁଣ୍ଡରେ ।
ଅମୃତା ନାମେ ଯେ ଲଇ ବନସ୍ତରେ ଥାଇ
ତାର ରସ ନେଇ ବାଳ ପୁତ୍ର ତୁଣ୍ଡେ ଦେଇ ।
ନ ମିଳିଲା ସେଠାବରେ ଭିକ୍ଷା ପୂର୍ବପରି
ମହାକଷ୍ଟରେ ରହିଲେ ବିଧାତା ସୁମରି ।
ବିଚାରିଲେ ଆମ୍ଭଙ୍କୁ ତ ପଡ଼ିଲା ବିପଦ
ଆମ୍ଭର ମଇତ୍ର ପୁଣି ଅଟଇ ଦ୍ରୁପଦ ।
ମଇତ୍ର ପାଖକୁ ପୁତ୍ର ଗୋଟି ଘେନିଯିବି
ଦୁଗ୍ଧବତୀ ଧେନୁଟିଏ ତାହାଙ୍କୁ ମାଗିବି ।
ମଇତ୍ରକୁ ମାଗିବଇଁ ଆଶ୍ରମ ଖଣ୍ଡିଏ
ରହିବଇଁ ପୁତ୍ର ଗୋଟି ବଡ଼ ହେବାଯାଏ ।
ବିପତ୍ତି କାଳରେ ସିନା ମିତ୍ର ସମ୍ଭାଳଇ
ସହୋଦର ବନ୍ଧୁ ମୋର ଆଶ୍ରା କେହି ନାହିଁ ।
ପତ୍ନୀ ଭ୍ରଷ୍ଟ ହୋଇ ଦ୍ରୋଣାଚାର୍ଯ୍ୟ ବିକଳରେ
ପୁତ୍ରକୁ ଘେନିଣ ବେଗେ ଚଳିଲେ ପଞ୍ଚାଳେ ।
କୋଳରେ ଘେନି ଅଛନ୍ତି ପୁତ୍ର ଅଶ୍ୱତ୍ଥାମା
ଦ୍ରୁପଦ ରାଜ୍ୟରେ ଯାଇ ପ୍ରବେଶ ମହାତ୍ମା ।
ହସ୍ତେ ଦଣ୍ଡ ଭିକ୍ଷାପାତ୍ର ବାଳ ପୁତ୍ର ଘେନି
ସିଂହଦ୍ୱାର ଲୋକେ ତାଙ୍କୁ ନ ପାରିଲେ ଚିହ୍ନି ।
ରଥ ଗଜ ଅଶ୍ୱ ପୁଣି ଅନେକ ସଇନି
ଲୋକ ଗହଳ ଧନ୍ଦୋଳେ ଆଉଜିଲେ ମୁନି ।
ଦ୍ରୋଣ ବୋଇଲେ ଯେ ଦ୍ୱାର ନାୟକଙ୍କୁ ରାଇ
ରାଜାଙ୍କୁ କି ଜଣାଇବ ଏ ଦରିଦ୍ର ପାଇଁ ।
ଆମ୍ଭେ ପୁଣି ରାଜାଙ୍କର ମିତ୍ର ଅଟୁ ବାବୁ
ଦ୍ୱାର ଛାଡ଼ିବ କି ଆମ୍ଭେ ଭିତରକୁ ଯିବୁ ।

ତାହା ଶୁଣିଣ ହସିଲେ ଦ୍ୱାରପାଳମାନେ
ପଳା ଯା ବାତୁଳ ବିପ୍ର ହୋଇଲୁ ଅଜ୍ଞାନେ ।
ତୁ ଅଟୁ ଭିକ୍ଷୁ ଦରିଦ୍ର ପୁଣି ଦେଶାନ୍ତରୀ
ରାଜାର ମଇତ୍ର ବୋଲୁ ଭୟ ଯେ ନ କରି ।
ଥୋକାଏ ତହିଁ ବୋଇଲେ ଆମ୍ଭ ଅଧିକାରୀ
ହତରାଜ୍ୟ କାଳେ ଥିଲେ ଦେଶାନ୍ତର କରି ।
ସେ କାଳର ଅବା ଏହି ଅଟଇ ମଇତ୍ର
ଜଣାଇବା ପଣ୍ଡା ତୁମ୍ଭେ ରହିଥାଅ ଏଥ ।
ଦେଖି ରଥ ଗଜ ଅଶ୍ୱ ସଇନ୍ୟ ଗହନ
ବସିଥାଅ କରାଇବା ନେଇ ଦରଶନ ।
ଦେବାର୍ଚ୍ଚନ ସାରି ରାଜା ରସଲାଗି ହୋଇ
ଆସ୍ଥାନ ନବରେ ତହୁଁ ବିଜେ କଲେ ଯାଇଁ ।
ଏମନ୍ତ ସମୟେ ଦ୍ୱାର ନାୟକ ଯେ ଗଲା
ପ୍ରଣିପାତ କରି ଉଠି ମାଥେ ହାତ ଦେଲା ।
ଭୋ ଦେବ ଶୁଣ ପଞ୍ଚାଳଦେଶ ଅଧିପତି
ତୁମ୍ଭର ମଇତ୍ର ଦ୍ୱାରେ ଆସି ରହିଛନ୍ତି ।
ଦ୍ରୁପଦ ବୋଇଲେ ଯେବେ ଅଇଲେ ମଇତ୍ରେ
ରଥ ଗଜ ଅଶ୍ୱ ଥାଟ ସୈନ୍ୟବଳ କେତେ ।
ଚାରେ ବୋଇଲେ ଶୁଣିମା ଦେବ ମହାରାୟେ
ଦରିଦ୍ର ବ୍ରାହ୍ମଣ କୋଳେ ବାଳକ ଗୋଟିଏ ।
ଦଇବେ ତ ହତମତି ନୃପ ରସଖାଇ
ମହାଉନମତ୍ତ ବେଳେ ଲାଗିଛି ଗଞ୍ଜାଇ ।
ଏମନ୍ତ ସମୟେ ବାର୍ତ୍ତା ଜଣାଇଲେ ଦୂତ
ଶୁଣିଣ କହିଲେ କୋପ କରି ନରନାଥ ।
ରାଜ୍ୟରେ ମୋହର ପାତ୍ର ମନ୍ତ୍ରୀ ପଣ ପଣ
ରାଜା ମଇତ୍ର ହୋଇ କି ଭିକ୍ଷୁକ ବ୍ରାହ୍ମଣ ।
ଏତିକି ମାତ୍ର ବିଚାର କରି ନ ପାରିଲ
ଏହି ବାରତା କାହିଁକି ଆମ୍ଭଙ୍କୁ କହିଲ ।
ବୋଇଲେ ହୋ ମହାକ୍ରୋଧଭରେ ଦଣ୍ଡଧାରୀ
ଏହାକୁ ମୋର ଆଗରୁ ନିଅ ବାଳଧରି ।
ଜଣାଇଲା ଚାରଙ୍କୁ ଯେ ଧରି ଦୂତମାନେ
ଅନେକ ମାଡ଼ ମାଇଲେ ରାଜା ସନ୍ନିଧାନେ ।
ଅପରାଧୀ ହୋଇ ସେହି ପଳାଇଲେ ବେଗେ
କୋପେଣ ବୋଇଲେ ଯାଇଁ ଦ୍ରୋଣଙ୍କର ଆଗେ ।
ଅପରାଧୀ ହେବାରୁ ସେ ଅତି କୋପାନଳ
ଧାଇଁଯାଇଁ ଧଇଲେ ସେ ଦ୍ରୋଣଙ୍କର ବାଳ ।
କାହିଁର ଅଟୁ ତୁହିରେ ଦାନୁଆଁ ବ୍ରାହ୍ମଣ
ରାଜାଙ୍କର ମିତ୍ର ତୁ ରେ ହେଲୁ ଅକାରଣ ।
ତୋ ଯୋଗୁଁ ଗଞ୍ଜି ହୋଇଲୁ ଆମ୍ଭେ ଅପବାଦେ
କର୍ମେ ଯେ ବଞ୍ଚିଲୁ ଆମ୍ଭେ କିଞ୍ଚିତ ଅପ୍ରାଧେ ।
ତେହି ତାହାଙ୍କର କେଶ ଧରି କୋପ କରି
ଲେଡ଼ା ଗୋଇଠା ଯେ ବିଧାମାନ ବେଢ଼ି ମାରି ।
କେହି ତୁଣ୍ଡେ ବିଣ୍ଠା ମାଡ଼ି ପକାନ୍ତି ଯେ ଧୂଳି
ବାଳୁତ ପୁଅ ଗୋଟି ଯେ ଦେଉଛି ବୋବାଳି ।
ନଗରୁ ବାହାର କରିଦେଲେ ମାରି ଧକ୍କା
ପୁତ୍ରକୁ ହୃଦେ ଲଗାଇ ଦ୍ରୋଣ ପାରି ଡକା ।
ବରଷା ପ୍ରାୟ ଯେ ଟେଳା ପଡ଼ଇ ଉପରେ
ଅନେକ ପ୍ରାଭବ ପାଇ ପଳାଇଲେ ଡରେ ।
ନବରୁ ବାହାର କରିଦେଇ ବାହୁଡ଼ିଲେ
ଧର୍ମ ଧର୍ମ ସୁମରିଣ ଦ୍ରୋଣ ଚଳିଗଲେ ।
କୌଶିକୀ ନଦୀର ତୀରେ ବିଚାରନ୍ତି ଦ୍ରୋଣେ
ଚଣ୍ଡାଳ ମୂଢ଼ ପାଖକୁ ଗଲୁ ଅକାରଣେ ।
ଭୋ ପ୍ରଜାପତି ଏମନ୍ତ କରି କର୍ମେ ଲେଖି
ରାଜାପଣ ପାଇ ଗର୍ବ ଏମନ କରି କି ।
ଯେତେକ କଷ୍ଟ ପାଇ ମୁଁ ସମ୍ଭାଳିଲି ବନେ
ସେ କଥା ଯେ ଅହର୍ନିଶି ଥାଇ ମୋର ମନେ ।
ସମ୍ଭାଳିଲି ଚଉବିଂଶ ବରଷ ପର୍ଯ୍ୟନ୍ତେ
ପ୍ରତି ଉପକାର ସିନା ମାଡ଼ ହେଲା ଏତେ ।
ଶାସ୍ତ୍ରର କଥା କି ମିଥ୍ୟା ହୁଏ ଅବିଚାରେ
ଧର୍ମ ନାଶଗଲା ମୋର ପର ଉପକାରେ ।
ଦ୍ରୋଣ ଯାଉଛନ୍ତି ବାଟେ ସନ୍ତାପ କର୍ମକୁ
ମଣିକର୍ଣ୍ଣିକା ତୀର୍ଥରେ ଦୋଷ ଖଣ୍ଡିବାକୁ ।
କୋଟିଏ ତୀର୍ଥରେ ବୁଡ଼ିଗଲା ଯେଉଁ ବାଳ
ସେ କେଶ ଧଇଲେ ଦୁଷ୍ଟ ପାପିଷ୍ଠ ଚଣ୍ଡାଳ ।
ପ୍ରୟାଗ ତ୍ରିବେଣୀ ଯାଇ କରିବାକୁ ସ୍ନାନ
ତହିଁ ହରିବା ଯେ ଏହି କଷ୍ଟ ପାପମାନ ।
ଏତେକ ବିଚାରି ସେହି ଭରଦ୍ୱାଜ ସୁତ
ଅଶ୍ୱତ୍ଥାମାକୁ ଘେନିଣ ଯାଇ କଲେ ତୀର୍ଥ ।
ଜୟ ଶ୍ରୀ ସିଦ୍ଧ ଶାରଳା ଦେବୀ ମହାମାଈ
ଶାରଳା ଦାସକୁ ମାତ ପଦ ଦିଅ କହି ।

—୦—

## ପର୍ଶୁରାମଙ୍କଠାରୁ ଦ୍ରୋଣଙ୍କର ଅସ୍ତ୍ର ପ୍ରାପ୍ତ

ପରଶୁରାମ ଯେ ମହାତୀର୍ଥେ ଛନ୍ତି ରହି
ଦ୍ରୋଣ ବ୍ୟାକୁଳରେ ବେଦାଧ୍ୟୟନ କରଇ ।
ଯଜୁଃବେଦ ଅଧ୍ୟୟନ କଲେ ବାଛି ବାଛି
ସ୍ତମ୍ଭୀଭୂତ ପର୍ଶୁରାମ ନ ସ୍ଫୁରଇ କିଛି ।
ରହ ରହ ବ୍ରାହ୍ମଣ ତୁ ଅଟୁ ବେଦବାଦୀ
ଏଡ଼େ ବଡ଼ ବିପ୍ରହୋଇ କିମ୍ପା ଏଡ଼େ କ୍ରୋଧି ।

ଦ୍ରୋଣ ବୋଇଲେ ତୁ ଯମଦଗ୍ନିଙ୍କର ଶିଷି
ମୁହିଁ ଭରଦ୍ୱାଜ ସୁତ ପାଠ ଗୋସାଈ ରଷି ।
ଅନେକ ଅପମାନ ମୁଁ ପାଇଲି ଭୋ ରାମ
ମୋର ମାନ ଉଦ୍ଧାରଣ କର ଦେବ ଧର୍ମ ।
ଶୁଣିଣ ପରଶୁରାମ ବୋଇଲେ ଭୋ ଦ୍ୱିଜ
ଯାହା ମାଗିବୁ ତୁ ଦେବି ନିଶ୍ଚେ ମୁହିଁ ଆଜ ।
ଦ୍ରୋଣ ବୋଇଲେ ଯଦ୍ୟପି ଦେବୁ ମୋତେ ଦାନ
ସତ୍ୟକର ଯେମନ୍ତ ନ ହୁଏ ତାହା ଆନ ।
ଶୁଣିଣ ପରଶୁରାମ ହୋଇ ହୃଷ୍ଟମନା
ବୋଇଲେ ଭୋ ବିପ୍ର ତୁହି ଦାନ ଦେଉ କିନା ।
ଦକ୍ଷିଣାବର୍ତ୍ତକ ଶଙ୍ଖେ ଜଳ ତିଳ ଭରି
ସଂକଳ୍ପ କରିଣ ସତ୍ୟବଚନ ଉଚ୍ଚାରି ।
ତଳହସ୍ତ ପାତି ଦାନ ଘେନୁଛନ୍ତି ଦ୍ରୋଣେ
ମାଗ ହୋ ବ୍ରାହ୍ମଣ ତୋର କାର୍ଯ୍ୟ ହେବ ଯେଣେ ।
ଉପର ହସ୍ତରେ ଦାନ ଦେଉଅଛି ମୁହିଁ
ଦ୍ରୋଣ ଯେ ବୋଇଲେ ଆହେ ଭୃଗୁକୁଳସାଇଁ ।
ତୁ ଯେ ନାରାୟଣ ମୋତେ ପ୍ରସନ୍ନ ହୋଇବୁ
ତୋହର ସମସ୍ତ ଶସ୍ତ୍ର ମନ୍ତ୍ରସହ ଦେବୁ ।
ରାମ ବୋଇଲେ ମାଗିଲୁ ଯାହା ଦ୍ୱିଜବର
ତୋତେ ଯେ ପ୍ରାପତ ହେଉ ସବୁ ଶସ୍ତ୍ର ମୋର ।
ଉପର ହସ୍ତରେ ରାମ ଦେଲେ ଧନୁତୂଣ
ଗରୁଡ଼ ପର୍ବତ ବଜ୍ର ଅମୋଘ ଏ ଜାଣ ।
ପରଶୁ ମୁଦୁଗର ଆଉ କୁଠାର ଶକତି
କୁନ୍ତ ଅସିବର ଗଦା ବ୍ରହ୍ମଶର କାତି ।
ଯମଦଗ୍ନିଙ୍କର ପୁତ୍ର ପ୍ରସନ୍ନ ହୋଇଲେ
ସକଳ ଶାସ୍ତ୍ର ଦ୍ରୋଣଙ୍କ ହସ୍ତେ ନେଇ ଦେଲେ ।
ପରଶୁରାମ ବୋଇଲେ ମୋର ସତ୍ୟ ସତ୍ୟ
ନାନାଦି ସମସ୍ତ ବିଦ୍ୟା ତୋତେ ହେଉ ପ୍ରାପ୍ତ ।
ଶସ୍ତ୍ର ବିଦ୍ୟା ଦାନ ଦେଲେ ରାମ ଧର୍ମ ଅର୍ଥେ
ଦ୍ରୋଣ ନେଲେ ଦ୍ରୁପଦକୁ ସାଧିବା ନିମନ୍ତେ ।
ଯେହ୍ନେ ଆଜ୍ଞା ଦେଲେ ଯଦଦଗ୍ନିଙ୍କର ଶିଷି
ନ ସାଧି କ୍ଷତ୍ରିୟ ହେଲେ ଦ୍ରୋଣ ମହାରଷି ।
ଆକର୍ଷଣ ଗଣ୍ଠି ମୁଠି ପ୍ରଜ୍ଞା ଗୁଣମାନ
ସମସ୍ତ ସାଧିଥିଲେ ସେ ରେଣୁକା ନନ୍ଦନ ।
ଯେତେକ ଦେବ ଗନ୍ଧର୍ବ ଅସ୍ତ୍ର ସାଧିଥିଲେ
ତୋକ୍ଷେଣ ପରଶୁରାମ ଦ୍ରୋଣଙ୍କୁ ତା ଦେଲେ ।
ଯେତେକ ସାଧିଥିଲୁ ହୋ ଆମ୍ଭେ ଶସ୍ତ୍ରବିଦ୍ୟା
ଏବେ ସାଧ ବ୍ରାହ୍ମଣ ହେ ନାହିଁ ତୋତେ ବାଧା ।
ପାଠରଷି ବଂଶୀ ତୁହି ବିଶେଷେ ବ୍ରାହ୍ମଣ
ସମସ୍ତ ବିଦ୍ୟା ପ୍ରାପତ ହେଉ ତୋତେ ଦ୍ରୋଣ ।

ପର୍ଶୁରାମ ବୋଇଲେ ଏ ଶସ୍ତ୍ର ବିଦ୍ୟା ଯେହ୍ନେ
ତ୍ରଇଲୋକ୍ୟ ଖେଦୁଥିଲା ଆମ୍ଭର ବଚନେ ।
ଦ୍ରୋଣ ତୋତେ ସେହିମତେ ହେଉ ଯେ ପ୍ରାପତ
ଶସ୍ତ୍ର ସଂହାର ଚାଳନ ମନ୍ତ୍ର ଯେ ସହିତ ।
ଏ ସକଳ ପ୍ରାପ୍ତ ହେଉ ବ୍ରାହ୍ମଣ ହୋ ତୋତେ
ପର୍ଶୁରାମ ବିଦ୍ୟା ବୋଲି ବୋଲନ୍ତୁ ଜଗତେ ।
ଆମ୍ଭର ବିଦ୍ୟା ଘେନି ତୁ ହୁଅ ଦ୍ରୋଣ ଗୁରୁ
ଯୁଦ୍ଧରେ ତୋତେ ହେ ବିପ୍ର କେହି ଯେ ନ ପାରୁ ।
ଧନୁଶର ଥିଲେ ତୋତେ ନ ଜିଣିବେ କେହି
ମୋ ବଚନେ ଯଶ ଖ୍ୟାତି ହେଉ ତୋର ମହୀ ।
ଦ୍ରୋଣ ଭକତି କରିଲେ ପରଶୁରାମଙ୍କୁ
ବିନୟଭାବେ ବନ୍ଦନା କରନ୍ତି ତାହାଙ୍କୁ ।
ଜୟ ଜୟ ଯୁଗାନ୍ତକ ତୁ ପରମଯୋଗୀ
ଜୟ ଜୟ ଯୁଗାନ୍ତକ ଯୁଗସମ ଭୋଗୀ ।
ଜୟ ଜୟ କାଳାନ୍ତକ କ୍ଷତ୍ରୀ ଦର୍ପ ଧ୍ୱଂସା
ମହାତ୍ମା ପୁରୁଷ ତୁହି ନିର୍ଦ୍ଦୟ ନିରାଶା ।
ଶୁଦ୍ଧ ସ୍ଫଟିକ ରଞ୍ଜିତ ଯାର ତେଜ ବର୍ଣ୍ଣ
ସୁର ଶୋଭନ ନାଥ ତୁ ଜଗତମୋହନ ।
ପରମବ୍ରହ୍ମ ପୁରୁଷ ହେଲୁ ବିଦ୍ୟା ସାଧି
ପ୍ରସନ୍ନେ ତୋର ଦର୍ଶନେ କାର୍ଯ୍ୟ ହୁଏ ସିଦ୍ଧି ।
ଧ୍ୟାନ ଧାରଣା ପୁରୁଷ ନାହିଁ ତୋର ଛନ୍ଦ
ବିଦ୍ୟୁତ୍ପ୍ରୟଳ ରୁଚିର ତୁ ଅଜପାରେ ବନ୍ଦ ।
ଆକର୍ଷଣ କୃପାଜଳ ସୁବିକଟ ସୃଷ୍ଟି
ଦେହେ ପାବକ ଅନ୍ତକ ବିଦ୍ୟାନ୍ତ ପ୍ରକଟି ।
ଶସ୍ତ୍ର ବିଦ୍ୟାରେ ତୁ ସୁରନାଥ ଦର୍ପ ଧ୍ୱଂସୁ
ଶିବ ଦର୍ପ ଧ୍ୱଂସୁ କରେ ଧରି ତୀକ୍ଷ୍ଣ ପର୍ଶୁ ।
ପ୍ରଜ୍ଞାସୁର ଠାକୁର ତୁ ଆପେ ଆପେ ବଞ୍ଚୁ
ଏକଶରେ ଦର୍ପ ଭାଙ୍ଗି ଧ୍ୱଂସୁ ସର୍ବ ସଞ୍ଚୁ ।
କୃପାସାଗର ନାଥ ତୁ ଅରିପଦ ଧ୍ୱଂସ
ମହିମା ସାଗର ନାଥ ପୁରାଅ ମାନସ ।
ଅତ୍ୟନ୍ତ ବିକଟ ପିତା ବଚନକୁ ପାଳି
ମାତା ଭ୍ରାତାଙ୍କର ମୁଣ୍ଡ କାଟିଲୁ ନ ଭାଳି ।
ତୁ ଦେବ ସଂସାର ଦୁଷ୍ଟ ବଳ ଦର୍ପ ଭଞ୍ଜି
ମାନ ଉଦ୍ଧାରଣ ନାଥ ସ୍କନ୍ଧ ଗର୍ବ ଗଞ୍ଜି ।
ସଚରାଚର ପୃଥ୍ୱୀରେ ତୁହି ଏକା ଦେବ
ସଦାନନ୍ଦ ପୁରୁଷ ତୁ ତୋଷି ସଦାଶିବ ।
ସମସ୍ତେ ନିରେଖ ତୁହି ଦେବ ଏକା ଟାଣ
ସପତ ବ୍ରହ୍ମାଣ୍ଡେ ନୁହେ ତୋ କଥା ମେଣ୍ଟିଣ ।
ଅଂଶାବତାର ତୁ ନାଥ ଅନନ୍ତ ତୋ ମୂର୍ତ୍ତି
ପର୍ଶୁରାମ ଅବତାରେ ନାହିଁ ଆନ କ୍ଷତ୍ରୀ ।

ରାଗ ନ ସହିଲୁ ନାଥ ପିତାର ନିମନ୍ତେ
କ୍ଷତ୍ରୀ ନାଶି ଏକୋଇଶ ବାର ପରିଯନ୍ତେ ।
ଯେଉଁ ଯୋଗବଳେ ସ୍ୱାମୀ ବହିଲୁ ଏ ନାମ
ମହାଭୟ ଉପୁଜଇ ନାମେ ପର୍ଶୁରାମ ।
ଅନେକ ପାତକ ନାଶ ଯାଇ ଦରଶନେ
ଦୂରିତ ନ ରହେ ଯମ ନ ପଶେ ସଦନେ ।
ଯାବଚ୍ଚନ୍ଦ୍ର ଦିବାକରେ ଯେତେ ଜନ୍ମ ପାଉ
ପର୍ଶୁରାମ ନାମ ମୋର ହୃଦୟରେ ଥାଉ ।
ଜନ୍ମେ ଜନ୍ମେ ଭାବଇ ମୁଁ ତବ ପଦ୍ମପାଦେ
ଶୂଦ୍ରମୁନି ଏ ଶାରଳା ଦାସ ଲୟ ହୃଦେ ।

—0—

## ଦ୍ରୋଣଙ୍କର ହସ୍ତିନାରେ ପ୍ରବେଶ ଓ ରାଜପୁତ୍ରଙ୍କର ଅସ୍ତ୍ର ଶିକ୍ଷା

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ପର୍ଶୁରାମଙ୍କୁ ବନ୍ଦିଲେ ଭରଦ୍ୱାଜ ସୁନୁ ।
ସମସ୍ତି ବିଦ୍ୟା ଦେଲେ ଯେ ଯମଦଗ୍ନି ଶିଷି
ବିଦ୍ୟାରେ ସାର୍ଥକ ହେଲେ ଦ୍ରୋଣ ମହାରଷି ।
ଶଲ୍ୟ ଅଶ୍ୱଥାମା ଘେନି ବିଚାରନ୍ତି ଦ୍ରୋଣେ
ଏ ଯେ ପ୍ରାପତ ହୋଇଲା ଜାଣିମା କାରଣେ ।
ଦ୍ରୁପଦ ଆମ୍ଭଙ୍କୁ ଦେଲା ଅନେକ ଯେ ଶାସ୍ତି
ଦେହେ ପାଇଲୁ ଅନେକ ଅବସ୍ଥା ଦୁର୍ଗତି ।
ସଂଗ୍ରାମ କରିବା ଆମ୍ଭେ ଦ୍ରୁପଦର ତୁଲେ
ଯୁଦ୍ଧ କରି ନ ପାରିବୁ ବାଳପୁଅ ଥିଲେ ।
ହସ୍ତିନା ରାଜ୍ୟେ ଅଛନ୍ତି ବନ୍ଧୁ କୃପାଚାର୍ଯ୍ୟ
ତାହାଙ୍କ ଘରେ ଛାଡ଼ିବା ନେଇ ଏ ଆତ୍ମଜ ।
ପୁତ୍ର ରୁହାଇ ଆସିବା ଏ ପଞ୍ଚାଳ ଦେଶେ
ଦ୍ରୁପଦ ସଙ୍ଗରେ ଯୁଦ୍ଧ କରିବା ନିରାଶେ ।
ଏତେକ ବିଚାରି ଗଲେ ହସ୍ତିନା ପୁରକୁ
କରପତ୍ରେ ଧନୁ ତୁଣ କାଖେ ତନୟକୁ ।
ପ୍ରବେଶ ହୋଇଲେ ଯାଇ କୃପାଚାର୍ଯ୍ୟ ଘରେ
ଦେଖିଣ ଆଚାର୍ଯ୍ୟ ବସାଇଲେ ସନ୍ନିଧିରେ ।
କୃପାଚାର୍ଯ୍ୟ ପୁଚ୍ଛାକଲେ ଭଗ୍ନିକି ନ ଦେଖି
ସଙ୍ଗେ ତୁମ୍ଭେ ନ ଆଣିଲ କିମ୍ପାଇଁ କୃପୀକି ।
ଏ ପୁତ୍ର ଗୋଟି କାହାର କହ ଆହେ ଦ୍ରୋଣ
ତପ ଛାଡ଼ିଣ ବହିଛ କିମ୍ପା ଧନୁ ତୂଣ ।
ଅନେକ ମତେ ତାହାଙ୍କୁ ପଚାରିଲେ କୃପେ
ଗଉରବ କଲେ ତାଙ୍କୁ ବସାଇ ସମୀପେ ।
ସ୍ନାନ କରାଇ ଭୋଜନ କରାଇଲେ ତୃପ୍ତି
ବସିଲେକ ଆଚମନ ସାରି ମହାକ୍ଷତ୍ରୀ ।

ପୁନରପି କୃପାଚାର୍ଯ୍ୟ ପୁଚ୍ଛିଲେ ଦ୍ରୋଣଙ୍କୁ
ଏ ଧନୁ ଶସ୍ତ୍ରମାନ ହେ କେ ଦେଲା ତୁମ୍ଭଙ୍କୁ ।
ସୁସ୍ଥହୋଇ କହନ୍ତି ସେ ନମ୍ରଭାବ ବହି
ମୁକ୍ତି କାରଣ ପାଇଲୁ ଏହି ପୁତ୍ରକୁ ହିଁ ।
କୃପାଚାର୍ଯ୍ୟ ଆମ୍ଭଙ୍କୁ ହୋ ବିପତ୍ତି ପଡ଼ିଲା
ଏ ପୁତ୍ର ପ୍ରସବ କରି କୃପୀ ନାଶ ଗଲା ।
କୃପ ବିଷାଦ ପାଇଲେ ଏ ବଚନ ଶୁଣି
ଦେଶାନ୍ତର ହୋଇବାରୁ ମଲା ସେ ଘରଣୀ ।
ଏଥେ ଯେବେ କରିଥାନ୍ତ ତୁମ୍ଭେ ଗୃହବାସ
ଆମ୍ଭର ଭଗିନୀ କିମ୍ପା ଯାନ୍ତା ପ୍ରାଣେ ନାଶ ।
କୃପାଚାର୍ଯ୍ୟଙ୍କ ଭାରିଯା ନାମ ସୁଲକ୍ଷଣୀ
ତାହାଙ୍କ ଗୋଚରେ ପୁତ୍ର ସମର୍ପିଲେ ଆଣି ।
ଏ ପୁତ୍ର ଗୋଟିକି ତୁମ୍ଭେ ପାଳଗୋ ଯତନେ
ଆମ୍ଭର ପୁତ୍ର ଏହାକୁ ଦେଖ ଗୋ ଅଭିନ୍ନେ ।
ସବୁ ଶସ୍ତ୍ରମାନ ଧରି ଦ୍ରୋଣ ମହାଯତି
ବନସ୍ତରେ ପଶି ବିଦ୍ୟା ସାଧନ୍ତି ଯେ ନିତି ।
ପର୍ଶୁରାମଙ୍କ ଦୀକ୍ଷାରେ ଯାନ୍ତି ବାଣମାନେ
ଲକ୍ଷ୍ୟଭେଦି ପୁଣି ଫେରି ଆସନ୍ତି ବହନେ ।
ହରିଣ ଯେ ବାହୁଟିଆ ଗଣ୍ଡାଜୀବ ମାରି
ଆଣନ୍ତି କୃପାଚାର୍ଯ୍ୟଙ୍କ ଗୃହେ ଭାର କରି ।
ଶିବପୁର ନଗରର କୌଣସି ବ୍ରାହ୍ମଣ
ତା ଠହୁଁ କନ୍ୟା ଗୋଟିଏ କଲେକ ଗ୍ରହଣ ।
ସେହି କନ୍ୟାର ନାମ ଯେ ଅଟଇ ହରିତା
ସେହି କୁମାରୀ ହୋଇଲା ଦ୍ରୋଣଙ୍କ ବନିତା ।
ଫାଲ୍‌ଗୁନ ସଉରି ବାର ଶୁକ୍ଳ ଷଷ୍ଠୀଦିନ
କୃପାଚାର୍ଯ୍ୟ ବୋଇଲେ ହେ ଦ୍ରୋଣ ତପୋଧନ ।
ଚାଲ ହେ ବାରୁଣାବନ୍ତ ଆଖଡ଼ା ହିଁ ଯିବା
ରାଜକୁମାରମାନଙ୍କ ସାଧନା ଦେଖିବା ।
ଦ୍ରୋଣ କୃପାଚାର୍ଯ୍ୟ ଦୁହେଁ ଗଲେ ଆଖଡ଼ାକୁ
ଭୀଷ୍ମ ପୁଅକୁ ଶିଖାନ୍ତି ଅସ୍ତ୍ର ଜାଣିବାକୁ ।
ଦ୍ରୋଣ କୃପାଚାର୍ଯ୍ୟ ଦୁହେଁ ଉଭା ହୋଇଛନ୍ତି
ଦେଖିଲେ ସମସ୍ତେ ଶର ସାଧନା କରନ୍ତି ।
ଖେଳେ ଦୁର୍ଯ୍ୟୋଧନ ନାଟ ଗୋଟିଏ ମାରିଲା
ସୀତାଙ୍କ କୂପ ଭିତରେ ଯାଇଣ ପଡ଼ିଲା ।
ଭୀଷ୍ମଙ୍କର ଅଗ୍ରତେ କହିଲେ ଚାଟମାନେ
ବାମ୍ଫୀରେ ନାଟ ପଡ଼ିଲା ଆଣିବା କେସନେ ।
ସଭିଏଁ ରହିଲେ ରୁଣ୍ଡହୋଇ ବାମ୍ଫୀ ବେଢ଼ି
ସାତତାଳ ଗଭୀରର ନାଟ ଅଛି ପଡ଼ି ।
ଦୁର୍ଯ୍ୟୋଧନ ବୋଇଲେ ଯେ କେମନ୍ତେ କାଢ଼ିବା
ଅପ୍ରମିତ ଗଭୀର ଏ ପଶି ନ ପାରିବା ।

ଦ୍ରୋଣ ବୋଇଲେ ଏହି ସାମାନ୍ୟ କୂପଗୋଟି
ଏ ଛାର କିସ ଯେବେଟି ଥିବ ବିଦ୍ୟା ଦୃଷ୍ଟି ।
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ କାହିଁର ବ୍ରାହ୍ମଣ
ଦୃଷ୍ଟିବିଦ୍ୟା ବୋଇଲେ ଯେ କେମନ୍ତ ତା ଆଣ ।
କୃପଙ୍କୁ ବୋଇଲେ ଭରଦ୍ୱାଜଙ୍କ ନନ୍ଦନ
ଗୁରୁଚିଆରୁ ଲୋଚାନୁ ଉପାଡ଼ିଣ ଆଣ ।
କୃପାଚାର୍ଯ୍ୟ ତାହା ଘେନି ଅଇଲେ ବହନ
ଦ୍ରୋଣ ଘେନିଲେ ତାହାକୁ ତୋଷ କରି ମନ ।
ମନ୍ତ୍ର ପଢ଼ି ମାଇଲେ ସେ କୂପର ଭିତରେ
ଗୁଗୁଚିଆ ଲାଗିଲା ସେ ନାଟର ଉପରେ ।
ଦ୍ରୋଣ ମହିମା ଦେଖନ୍ତି ରହି ସର୍ବନୃପ
ଗୁଗୁଚିଆରେ ଛନ୍ଦିଲେ ସାତତାଳ କୂପ ।
ଦ୍ରୋଣ ତୋଳନ୍ତେ ସେ ଗୁଗୁଚିଆ ଫଳ ଗୋଟି
କୂପରୁ ବାହାରିଣ ଯେ ନାଟ ଆସେ ଉଠି ।
ଭୀଷ୍ମଙ୍କ ଛାମୁରେ ତାହା ପକାଇଲେ ନେଇ
ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଲେକ ଚାହିଁ ।
କାହାକୁ ଗୋଚର ନାହିଁ ନ ଦିଶେ ଏ ନାଟ
ଗୁଗୁଚିଆ ନାରାଚରେ ବାହାରିଲା ନାଟ ।
ଧୃତରାଷ୍ଟ୍ର ଭାଳେ ଗୁରୁଶ୍ରେଷ୍ଠ ଦ୍ୱିଜବର
ଏଥର ଦେଖିବା ସିନା ବିଦ୍ୟା ଯେ ୟାଙ୍କର ।
ହସ୍ତମୁଦି ପକାଇଲା କୂପେ ଦୁର୍ଯ୍ୟୋଧନ
ଏବାର ଆଣନ୍ତୁ ଦେଖି ଆହେ ତପୋଧନ ।
ଦ୍ରୋଣ ବୋଇଲେ ନୁହେଁ ତ ଏଡ଼େ ଚମତ୍କୃତ
ସମୁଦ୍ର ନଦୀ ନୁହେଁ ଏ ଛାର କୂପ ମାତ୍ର ।
ପ୍ରତିଭା ଗାଢ଼ ଦେଖିଣ ଦୁର୍ଯ୍ୟୋଧନ ହଟୁ
ଦ୍ରୋଣ କାଢ଼ି ପକାଇଲେ ହସ୍ତୁ କୁଶବଟୁ ।
ସେ କୁଶବଟୁ ପଡ଼ିଲା କୂପର ଭିତରେ
ମୁଦି ଆବୋରି ବସିଲା ଯାଇଁ ଫରଫରେ ।
ଆସରେ ଆସରେ ବୋଲି ଡାକ ଦେଲା ଗୁରୁ
କୁଶବଟୁ ଲାଗି ମୁଦି ବାହାର କୂପରୁ ।
ଭୀଷ୍ମଙ୍କ ଛାମୁରେ ତାହା ପକାଇଲା ନେଇ
ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରହିଲେ ତା ଚାହିଁ ।
ଭୀଷ୍ମ ପଚାରିଲେ ଶୁଣ ଶୁଣ ହୋ ବ୍ରାହ୍ମଣ
ଭରଦ୍ୱାଜଙ୍କ ନନ୍ଦନ ଅଟୁ କି ତୁ ଦ୍ରୋଣ ।
କୃପ ଆଚାର୍ଯ୍ୟ ବୋଇଲେ ଦ୍ରୋଣ ଏ ଅଟନ୍ତି
ପରଶୁରାମଙ୍କ ବିଦ୍ୟା ସମସ୍ତ ଜାଣନ୍ତି ।
ଭୀଷ୍ମ ବୋଇଲେ ଯେ ଦୟା କରିଣ ଆମ୍ଭଙ୍କୁ
ବିଦ୍ୟା ଗୁରୁହୋଇ ବିଦ୍ୟା ଶିଖାଅ ଏହାଙ୍କୁ ।
ଅନେକ ମତେ କହିଲେ ତାଙ୍କୁ କୃପାଚାର୍ଯ୍ୟ
ବିଦ୍ୟା ଗୁରୁ ଦେଲେ ଭରଦ୍ୱାଜଙ୍କ ଆତ୍ମଜ ।

ତୁଳ କୃଷ୍ଣ ଚତୁର୍ଥୀ ତିଥି ସେ ଗୁରୁବାର
ରୋହିଣୀ ନକ୍ଷତ୍ର ବୃଷରାଶି ସେ ଦିନର ।
ତୈତିଳ ନାମେ କରଣ ଇନ୍ଦ୍ରନାମେ ଯୋଗ
ପଚିଶ ଦିନ ଯେ ତୁଳ ସଂକ୍ରାନ୍ତିର ଭୋଗ ।
ସେହିଦିନ ଅନୁକୂଳ କଲେ ଗୁରୁ ଦ୍ରୋଣ
ପୂଜିଲେ ଆଖଡ଼ା ଚଣ୍ଡୀ ଗଣେଶ ବ୍ରାହ୍ମଣ ।
ସକାଳେ ସଞ୍ଜବେଳରେ ଆଖଡ଼ା କରନ୍ତି
ମଧ୍ୟାହ୍ନବେଳେ ସମସ୍ତେ ପାଠ ପଢୁଥାନ୍ତି ।
ଆକର୍ଷଣ ସନ୍ଧାନ ଯେ ବିନ୍ଧାଣ ଧାରଣ
ଗଦା କୁନ୍ତ ଗୁରୁଜ ଯେ ଅସି ସଞ୍ଚାରଣ ।
ଏସନ ସମସ୍ତ ଶସ୍ତ୍ର ଚିନ୍ତା କରୁଥାନ୍ତି
ଯେ ବିଧି ବିଧାନେ ଗୁରୁ ତାହାକୁ ଶିଖାନ୍ତି ।
ଯୁଧିଷ୍ଠିର ଆଦି ପାଞ୍ଚ ଭାଇର ସମେତେ
ଦୁର୍ଯ୍ୟୋଧନ ଆଦି ଏକ ଉତ୍ତର ଯେ ଶତେ ।
ଅଶ୍ୱତ୍ଥାମା ଦ୍ରୋଣ ସୁତ ରାଧେୟ ଆବର
ଏମନ୍ତେ ହୋଇଲେ ଶିଷ୍ୟ ଶତ ଅକ୍ଷୋତ୍ତର ।
ପରଶୁରାମଙ୍କ ବିଦ୍ୟା ଦ୍ରୋଣ ଯେ ଶିଖାନ୍ତି
ଧନୁ ମଲ୍ଲ ଗଦା ଆଦି ଯେ ଯାହା ବାଞ୍ଛନ୍ତି ।
ଜୟ ଜୟ ଜଗନ୍ନାଥ ଅନାଥର ପତି
ତୋ ପାଦେ ରହୁ ଶାରଳା ଦାସର ଯେ ମତି ।

—o—

## ଜରା ଶବରର ଅସ୍ତ୍ର ଶିକ୍ଷା

ଅଗସ୍ତି ବୋଇଲେ ଶୁଣ ବୈବସ୍ୱତ ମନୁ
ଜରା ନାମେ କିରାତ ଯେ ଅଜପତି ସୁନୁ ।
ଗଣ୍ଡା ଦୁଇଗୋଟି ମାରି ଘେନି ଅତି ଯତ୍ନେ
ବାରୁଣୀ ଆଖଡ଼ାଶାଳେ ମିଳେ ତୋଷମନେ ।
ମଥାର ମୟୂର ଝାଲି କଣ୍ଠେ କଞ୍ଚମାଳ
ସଙ୍ଗେ ରଙ୍ଗାଧୂଳି ପିନ୍ଧା ଲୋହିତ ଦୁକୂଳ ।
ଧାମଣା କାଠର ଧନୁ କଣ୍ଟାବାଂଶୀ ଗୁଣ
ତଳେ ଫିରିକ ନାରାଚ ଡାଳ ଆଭରଣ ।
ଏସନକ ସ୍ୱରୂପେ ସେ ଅଜପତି ନାତି
ଦ୍ରୋଣଙ୍କୁ ଦର୍ଶନ କଲା ଆଖଡ଼ାର ଧାଡି ।
ଗଣ୍ଡା ଦେଖିଣ ହରଷ ହେଲେ ଗୁରୁ ଦ୍ରୋଣ
କିରାତ ବୋଇଲେ ଶିଷ୍ୟ କରନ୍ତୁ ଆପଣ ।
ଯୁଧିଷ୍ଠିର ବୋଇଲେ ଯେ ଥାଉ ଏ କିରାତ
ବନରେ ଏହାର କାର୍ଯ୍ୟ ଅଛଇ ବହୁତ ।
ଗଣ୍ଡା ଖୁରାଣ୍ଟ ହରିଣ ମୃଗ ବାହୁଟିଆ
ଧରି ଆଣିବ ଶମ୍ବର ବରାହର ଛୁଆ ।
ଥାଉ ଥାଉ ବୋଲି ଆଜ୍ଞା ଦେଲେ ଗୁରୁ ଦ୍ରୋଣ
ଦୁର୍ଯ୍ୟୋଧନ ବୋଲେ କିମ୍ପା ଭଣ୍ଡ ଅକାରଣ ।

ଅର୍ଜୁନ ବୋଇଲେ ଥାଉ ଥାଉ ଏ କିରାତ
ବନଚର ଲୋକ କାର୍ଯ୍ୟ ଏହାର ବହୁତ ।
ଶୁଣିଣ କୋପକଲା ସେ ଧୃତରାଷ୍ଟ୍ର ବଳା
ରାଗେ ବୋଇଲା କିରାତ ଏଥୁ ବେଗେ ପଳା ।
ଦୁଃଶାସନକୁ ବୋଇଲା ନିଅ ବାଳ ଧରି
ଦୂରେ ଛାଡ଼ି ଆସ ଗଲେ ଗଳଥା ତୁ ମାରି ।
ଶୁଣିଣ ଦୁଃଶାସନ ଯେ କେଶ ଧରି ବେଗେ
ଯୋଜନ ଅନ୍ତରେ ନେଇ ଛାଡ଼ିଆସେ ରାଗେ ।
ସେ ଜରା କିରାତ ତହୁଁ ମହାକ୍ରୋଧ କଲା
ଆଖଡ଼ା ଶାଳୁ ପଲ୍ଲୀକି ଛାଡ଼ି କାଟିଗଲା ।
ଆଖଡ଼ାକୁ ଅନାଇ ଯେ ଆଖଡ଼ାରେ ଥାଇ
ଯୋଜନ ଅନ୍ତରେ ଥାଇ ସାଧନ କରଇ ।
ଦେଖ ହୋ ମହିମା ତାର ପ୍ରତାପୀ ଶବର
ଯୋଜନ ଅନ୍ତରେ ରହି ସାଧେ ସବୁ ଶର ।
ଯେମନ୍ତ ପାଦଗତି ସେ କରନ୍ତି କୌରବେ
ସେହି ପ୍ରକାରେ ସାଧଇ ଧାମଇଁ ସେ ଭାବେ ।
ସେହିପରି ଚାହିଁ ଚାହିଁ ସାଧଇ ସେ ବିଦ୍ୟା
ସମସ୍ତ ଶିଖିଣ ସେହି ହେଲା ମହାଯୋଦ୍ଧା ।
ଶ୍ରୀୟା ନାମରେ ଭାରିଯା ଅଟଇ ତା ଘରେ
କିରାତକୁ ବୋଇଲା ସେ ବିମୁଖ ମନରେ ।
ଆମ୍ଭେ ବନଚର ବନଜୀବ ଯେ ଆହାର
ମୃଗୟା ନ ଯାଇ ବାଇ ପ୍ରାୟେ ଧାଇଁ ମର ।
ଜରାଶବର ବୋଇଲା ଶୁଣରେ ସଙ୍ଗାତ
କାଳେ ଜାଣିବୁ ନା ତୁହି ଏଥିର ତଦନ୍ତ ।
ଭାରିଯା ବୋଇଲେ କିମ୍ପା ବୋଲ ବାଇପରି
କେମନ୍ତ ପ୍ରକୃତି ଏହା ବୁଝି ତ ନ ପାରି ।
ଅକାରଣେ ପାମର ତୁ ଧାଇଁ କିମ୍ପା ମରୁ
ଏହା ସାଧୁ ଅଛୁ କହ କେ ତୋହର ଗୁରୁ ।
ଗୁରୁ ନ ଥିଲେ ତ ବିଦ୍ୟା ନୁହଇ ପ୍ରାପତ
ମୂର୍ଖ ପାମରରେ ବନଚର ବନେ ଜାତ ।
ଭାରିଯା ବାକ୍ୟ ପରମ ହିତ ଯେ ମଣିଲା
ମାଟିର ଦ୍ରୋଣେକ ଗଢ଼ି କିରାତ ଥାପିଲା ।
ଶିରରେ ଖଞ୍ଜିଣ କୃଷ୍ଣ ମୃଗର ଚାମର
ଖଞ୍ଜିଲାକ ଗୁଞ୍ଜମାଳା ଲଲାଟେ ତାହାର ।
ସ୍ଫଟିକ ବେନି ଚକ୍ଷୁରେ ନେଇଣ ଖଞ୍ଜିଲା
ଗୁଞ୍ଜା ଗରଗଡ଼ମାଳା ହୃଦେ ଲମ୍ବାଇଲା ।
କୋକିଳ ସୂତାରେ ଅଙ୍ଗ ଆଭରଣ କଲା
କୁମୁଦମାଳା ଉତ୍ତରୀ କନ୍ଧେ ଲମ୍ବାଇଲା ।
ଚନ୍ଦନ ଚିତା ତିଳକ ରଚି ଭାଲେ ଉରେ
ଧାମଣା କାଠର ଧନୁ ଦେଲା ବାମକରେ ।
ଡାହାଣ ଭୁଜର ଯେଉଁ ତର୍ଜନୀ ଅଙ୍ଗୁଷ୍ଠି
ଆଖଡ଼ାଶାଳକୁ ତାହା କରାଇଛି ଦୃଷ୍ଟି ।
ମୃତ୍ତିକା ଦ୍ରୋଣ ଚରଣ ଅମ୍ବୁଜକୁ ସେବି
ସାଧିଲା ସମସ୍ତ ବିଦ୍ୟା କିରାତ ଯେ ଭାବି ।
ନମସ୍ତେ ହେ ଦୀନବନ୍ଧୁ ଦେବ ଦଇତାରି
ମୂର୍ଖ ଶାରଳା ଦାସକୁ ଭବୁ କର ପାରି ।

—o—

## ଯୁଧିଷ୍ଠିରାଦିଙ୍କର ଅସ୍ତ୍ର ପରୀକ୍ଷା

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ଚବିଶ ବରଷ ଯାଏ ବିଦ୍ୟା ସାଧେ ନିତି ।
ସମସ୍ତ ବିଦ୍ୟାରେ ସେହି ହୋଇଲା ନିର୍ଜୀତ
ଧାର୍ମିକ ଆବର ଗୁଣବନ୍ତ ବଳବନ୍ତ ।
ବସନ୍ତ ଋତୁ ଆଗମେ ଫାଲଗୁନ ଆସେ
ଶୁକଳପକ୍ଷ ତୃତୀୟା ଶୁକ୍ରଙ୍କ ଦିବସେ ।
ଅଶ୍ୱିନୀ ନକ୍ଷତ୍ର ତ୍ରିଂଶ ଦଣ୍ଡକରେ ଭୋଗ
ଗର ନାମେ କରଣ ଶୋଭନ ନାମେ ଯୋଗ ।
ଅଗ୍ନି କୋଣରେ ଯୋଗିନୀ କୌମାରୀ ମୂରତି
ସପ୍ତମରେ ଚନ୍ଦ୍ର ପଞ୍ଚମରେ ବୃହସ୍ପତି ।
ଏସନକ ଯୋଗେ ଶୁଭ ଅନୁକୂଳ କରି
ବିଦ୍ୟା ପରୀକ୍ଷା ନିମନ୍ତେ ଅନୁକୂଳ କରି ।
ଏକା ହୋଇ ଦ୍ରୋଣଗୁରୁ ଗଲେ ଘୋର ବନେ
ରାତ୍ରେ ରହି କୁଣ୍ଡଳିନୀ ନଦୀ ସନ୍ନିଧାନେ ।
କୋଶ ପରିଯନ୍ତେ ତହୁଁ ନେଲେ ବୃକ୍ଷକାଟି
କୁଣ୍ଡଳି ନାମରେ ଏକ ପରବତେ ଭେଟି ।
ସେ ଗିରି ଉପରେ ଥିଲା କୃଷ୍ଣାଗୁରୁ ବୃକ୍ଷ
ନାରାଚେ ଅଧେକ ତାର ଛେଦିଲେ ପ୍ରତ୍ୟକ୍ଷ ।
ସେ ସ୍ତମ୍ଭ ଉପରେ ବସାଇଲେ ଖଡ଼ିକାଏ
ତାହା ଉପରେ ରଖିଲେ ଧାନ ଶୃଙ୍ଗଟାଏ ।
ତା ଉପରେ ଗରଗଡ଼ ସୋରିଷେକ ଥୋଇ
ଏସନ ଉପାୟେ ଦ୍ରୋଣ କଲେ ତହିଁ ଯାଇ ।
ବାହୁଡ଼ି ଅଇଲେ ଭରଦ୍ୱାଜଙ୍କର ସୁତ
ଶିଷ୍ୟ ଘେନିଗଲେ ବିଦ୍ୟା ପରୀକ୍ଷା ନିମିତ୍ତ ।
ସେ ନଦୀକୂଳେ ରହିଲେ ଭରଦ୍ୱାଜ ସୁନୁ
କର୍ଣ୍ଣର ହସ୍ତରେ ଦେଲେ ପ୍ରଥମେ ସେ ଧନୁ ।
ବୋଇଲେ ନାରାଚ ରଖି ନୀରୁପିବ କର୍ଣ୍ଣ
କିସ କିସ ଦିଶଇ ସେ ଗିରି ସନ୍ନିଧାନ ।
କର୍ଣ୍ଣ ଚାହିଁଲା ନୀରକ୍ଷି ନାରାଚ ପୂରାଇ
ତା ବେନି ଜାନୁ କମ୍ପିଲା ଥରହର ହୋଇ ।
ଆକର୍ଷଣ ଗତି କରି ରହି ବୀର କର୍ଣ୍ଣ
ଗୁରୁଙ୍କ ମୁଖକୁ ଚାହିଁ ବୋଲଇ ବଚନ ।

ପର୍ବତ ଗୋଟିଏ ଦିଶୁଅଛି ଗୁରୁ ଦୂରେ
ସ୍ତମ୍ଭ ଗୋଟାଏ ଦିଶଇ ତାହାର ଉପରେ ।
ତାହା ଉପରେ ଦିଶଇ ଖଡ଼ିକା ଗୋଟିଏ
ଆନ କିଛି ନ ଦିଶଇ ମୋତେ ତ ଗୁରୁ ହେ ।
କର୍ଣ୍ଣର ହସ୍ତରୁ ଗୁରୁ ଘେନିଗଲେ ଧନୁ
ଅଶ୍ୱତ୍ଥାମା ହସ୍ତେ ଦେଲେ ଭରଦ୍ୱାଜ ସୁନୁ ।
ତୁ ମୋହର ନନ୍ଦନ ଯେ କ୍ଷତ୍ରିୟ ନୋହୁଟି
ଧନୁରେ ନାରାଚ ଯୋଚିକର ବାବୁ ଦୃଷ୍ଟି ।
କି କି ପଦାର୍ଥମାନ ତ ଦିଶଇରେ ତୋତେ
ନିରୂପୀ କରି କହନି ଆମ୍ଭର ଅଗ୍ରତେ ।
ପିତାର ବଚନେ ଧନୁ ଘେନୁ ହାତ ଥରେ
ଆକର୍ଷଣ କରି ବୋଲେ ଦିଶେ ଗିରିବରେ ।
ତାହାର ଉପରେ ସ୍ତମ୍ଭ ଗୋଟିଏ ଦିଶଇ
ତାହା ଉପରେ ଖଡ଼ିକା ଗୋଟିଏ ଅଛଇ ।
ଅନ୍ତରେ ଗରଗଡ଼େକ ଦିଶଇ ହେ ତାତ
ଆନ କିଛି ନ ଦିଶଇ କହେ ବଳବନ୍ତ ।
ଛାଡ଼ ଧନୁ ବୋଲି ଦେଲେ ଯୁଧିଷ୍ଠିଙ୍କ ହାତେ
ବୋଇଲେ କହନ୍ତି ବାବୁ କି ଦିଶଇ ତୋତେ ।
ଧନୁରେ ନାରାଚ ଯୋଚି ନିରେକ୍ଷି ଯୁଧିଷ୍ଠି
ବୋଇଲେ ପର୍ବତେ ଦିଶେ ଗିରିଶୃଙ୍ଗ ଫୁଟି ।
ସ୍ତମ୍ଭ ଗୋଟି ଦିଶଇ ସେ ଗିରିର ଉପରେ
ଖଡ଼ିକା ଗୋଟିଏ ଅଛି ସ୍ତମ୍ଭର ଉପରେ ।
ଆନ କିଛି ନ ଦିଶଇ କହିଲା ଗୁରୁହେ
ଛାଡ଼ ଧନୁ ହେଲା ବୋଲି ଗୁରୁ ଦ୍ରୋଣ କହେ ।
ଦୁର୍ଯ୍ୟୋଧନ ହସ୍ତେ ଦେଲେ ଦ୍ରୋଣ ନେଇ ଧନୁ
ନାରାଚ ଯୋଚି ନିରେକ୍ଷି ଗାନ୍ଧାରୀର ସୁନୁ ।
ଧନୁ ଆକର୍ଷି ବୋଇଲେ ଧୃତରାଷ୍ଟ୍ର ସୁତ
ଅପାର ଦୂରେ ଦିଶଇ ଧବଳ ପର୍ବତ ।
ସ୍ତମ୍ଭ ଗୋଟିଏ ଦିଶଇ ତାହାର ଉପରେ
ଖଡ଼ିକା ଗୋଟିଏ ଦିଶେ କିଞ୍ଚିତ ମାତ୍ରରେ ।
ଆନ କିଛି ନ ଦିଶଇ କହିଲି ଗୁରୁ ହେ
ଦ୍ରୋଣ ବୋଇଲେ କିଛି ନ ପାଇଲୁ ସନ୍ଦେହେ ।
ଦୁର୍ଯ୍ୟୋଧନ କରୁ ଧନୁ ନେଲେକ ଛଡ଼ାଇ
ଦୁଃଶାସନ କରେ ଦେଲେ ପୁଣି ତାକୁ ନେଇ ।
ଦେଖ ଆରେ ଦୁଃଶାସନ କିସ କିସ ଦିଶେ
ଗୁରୁଙ୍କ ବାକେ ନାରାଚ ପୂରାଇ ଆକାଶେ ।
ବନ ଭିତରେ ପର୍ବତ ଦିଶଇ ହେ ତାତ
ମେଘମାଳା ଦିଶୁଅଛି ତହିଁ ଅପ୍ରମିତ ।
ଛାଡ଼ ଦୁଃଶାସନ ବୋଲି କରୁ ଧନୁ ଘେନି
ଭୀମର ହସ୍ତରେ ଦେଲେ ଦେଖ ତୁ ପାବନି ।
ଭୀମ ବୋଇଲେ ଗୁରୁ ହେ ପର୍ବତ ଦିଶଇ
ତାହାର ଉପରେ ସ୍ତମ୍ଭ ଗୋଟିଏ ଅଛଇ ।
ଏହା ବିନୁ ଆନ କିଛି ନ ଦିଶଇ ମୋତେ
ଛାଡ଼ ଧନୁ ବୋଲି ଦେଲେ ନକୁଳର ହସ୍ତେ ।
ସେ ବୋଇଲା ମୋତେ ଗୁରୁ ନ ଦିଶଇ କିଛି
ପର୍ବତ ଉପରେ ସ୍ତମ୍ଭମାତ୍ର ବିରାଜୁଛି ।
ଛାଡ଼ ଛାଡ଼ କହି ଗୁରୁ ଧରି ଶରାସନ
ସନ୍ନିଧିକି ରାଇଲେ ଯେ କୁମାର ଅର୍ଜ୍ଜୁନ ।
ସେ ଧନୁକୁ ଦେଲେ ନେଇ ତାର କରପତ୍ରେ
ନାରାଚ ପୂରାଇ ସ୍ଥିର କର ଦୃଷ୍ଟି ମାତ୍ରେ ।
ନାରାଚ ପୂରାଇ ଧୀରେ ଚାହିଁଲେ ଅର୍ଜ୍ଜୁନ
ଗୁରୁଙ୍କର ସନ୍ନିଧାନେ କହଇ ଏସନ ।
ଆଠ ସହସ୍ର ଆଠଶ ଅଠାଶୀ ପହଣ୍ଡେ
ପର୍ବତ ଉପରେ ଗୁରୁ ଦିଶେ ସ୍ତମ୍ଭ ଖଣ୍ଡେ ।
ତାହା ଉପରେ ଦିଶଇ ଖଡ଼ିକା ଗୋଟିଏ
ତାହାର ଉପରେ ଦିଶେ ଧାନ ଶୃଙ୍ଗଟାଏ ।
ଟା ଉପରେ ଗରଗଡ଼ ଗୋଟିଏ ଦିଶଇ
ତାହା ଉପରେ ସୋରିଷ ଗୋଟିଏ ଦିଶଇ ।
ଖଡ଼ିକାକୁ ବିନ୍ଧିବି କି ସ୍ତମ୍ଭକୁ ବିନ୍ଧିବି
ଧାନ ବିନ୍ଧିବି କି ଧାନ ଶୃଙ୍ଗକୁ ବିନ୍ଧିବି ।
କିଅବା ଗରଗଡ଼କୁ ବିନ୍ଧିବି ଗୁରୁ ହେ
ସୋରିଷ ବିନ୍ଧିବି କିକହ ନିଃସନ୍ଦେହେ ।
ଦ୍ରୋଣ ବୋଇଲେ ବାବୁ ତୁ ଛାଡ଼ ଛାଡ଼ ଧନୁ
ଜାଣିଲି ତ ଭାରାଭର ନାଶିବୁ ଭୁବନୁ ।
ଅର୍ଜ୍ଜୁନ ବୋଇଲା ଗୁରୁ ପୂରାଇଣ ଶର
ନ ବିନ୍ଧିଲେ ଦୋଷ ଶାସ୍ତ୍ରେ ଅଛଇ ଅପାର ।
ଦ୍ରୋଣ ବୋଇଲେରେ ବାବୁ ଦୃଢ଼ କର ମୁଷ୍ଟି
ବେନିଫାଳ ନ ହୋଇବ ସ୍ତମ୍ଭଧାନ ଫୁଟି ।
ନ ହେବ ଖଡ଼ିକା ଗରଗଡ଼ ବେନିଫାଳ
ସୋରିଷ ଫାଟି ରହିବ କରିଣ ନିଶ୍ଚଳ ।
ଏ ରୂପେ ନାରାଚ ଯେବେ ବିନ୍ଧିପାର ବାବୁ
ତିନି ଭୁବନେ ଜଗତଜିତା ତୁ ହୋଇବୁ ।
ଦ୍ରୋଣଙ୍କର ଏ ବଚନେ ସାନନ୍ଦ ଅର୍ଜ୍ଜୁନ
ହୃଦେ ଚିନ୍ତି ଶର ଘେନି କରଇ ଲୋକନ ।
ବିନ୍ଧନ୍ତେ ନାରାଚ ପଡ଼େ ସୋରିଷ ଉପରେ
ଶର ପଡ଼ି ଛାଡ଼ିଣ ସେ ରହେ ଲାଖବରେ ।
ବିଦ୍ୟାର ମହିମା ହାଦେ ଦେଖ ମହୀପାଳ
ନାରାଚ ବାଜି ସୋରିଷ ହେଲା ବେନିଫାଳ ।
ସ୍ତମ୍ଭ ଧାନଶୃଙ୍ଗ ଗରଗଡ଼ ନ ଟଳିଲା
ଗରଗଡ଼ ପରେ ଫଳ ସୋରିଷ ରହିଲା ।

ପ୍ରତ୍ୟକ୍ଷ ବିଦ୍ୟା ଦେଖାଇ ଦେଲେ ବିଦ୍ୟାଗୁରୁ
ଶୁଭିଲାକ ସାଧୁ ସାଧୁ ଧ୍ୱନି ଆକାଶରୁ ।
ଦେଖିଣ ଆନନ୍ଦ ଭରଦ୍ୱାଜଙ୍କର ବସ୍ତ
ବିଦ୍ୟାରେ ତୁ ହେଲୁ ପର୍ଶୁରାମ ସମକକ୍ଷ ।
ଏତେ ବିଚାରି କହିଲେ ଋଷି ମହାଜ୍ଞାନୀ
ଭାରା ନିବାରଣେ ଜାତ ହୋଇଲୁ ଅବନୀ ।
ଏହି ଶିଷ୍ୟମାନଙ୍କରେ କିସ ପ୍ରୟୋଜନ
ଦୁର୍ନାମ ଛଡ଼ା ସୁନାମ ନୋହିବଟି ପୁଣ ।
ପୁଣି ହିଁ ବିଦ୍ୟା ସାଧନ୍ତି ସର୍ବେ ଦୃଢ଼େ ଧରି
ନାରାଚ ବିନ୍ଧି ନାରାଚମାନ ପାଡିକରି ।
ଶର ବିନ୍ଧନ୍ତେ କମ୍ପଇ ଅଶ୍ୱଥାମା ଭୁଜ
କର୍ଣ୍ଣର ଜାନୁ କମ୍ପଇ ହୁଅନ୍ତି ନିସ୍ତେଜ ।
ଦୁର୍ଯ୍ୟୋଧନ ଶର କମ୍ପେ ନାରାଚ ଧଇଲେ
ଦୁଃଶାସନ ବକ୍ଷସ୍ଥଳ କମ୍ପେ ଆକର୍ଷିଲେ ।
ନାରାଚ ଯୋଚିଲା ମାତ୍ରେ କୁମାର ଯୁଧିଷ୍ଠି
ପବନ ପ୍ରାୟ କମ୍ପଇ ତାଙ୍କ କର ମୁଷ୍ଟି ।
ଭୀଷ୍ମଙ୍କର ଶିର କମ୍ପେ ଦ୍ରୋଣଙ୍କର ଭୁଜ
ନିଷ୍କମ୍ପ ଅଟଇ ଏକା ବାସବ ଆତ୍ମଜ ।
ତଦନ୍ତ କରି କହିଲୁ ସବୁ ଗୁଢ଼ତତ୍ତ୍ୱ
ଏହାର ହସ୍ତରେ ହେବ ସମସ୍ତେ ନିପାତ ।
ଜୟ ମା ଚଣ୍ଡୀ ଶାରଳା ଖର୍ପର ଧାରିଣୀ
ଶାରଳା ଦାସ ତୋ ପାଦେ କରଇ ଦଇନୀ ।

—o—

## କୃପ ଅଶ୍ୱଥାମାର ତୀର୍ଥଯାତ୍ରା, ଜରାଶରେ କୌରବଙ୍କର ମୋହ ପ୍ରାପ୍ତି, ଜରାର ଗୁରୁ ଦକ୍ଷିଣା ଦାନ, ଏକଲବ୍ୟ ନାମ ଧାରଣ

ଦ୍ରୋଣ ଏକାନ୍ତେ ରାଇଲେ ଆପଣାର ବଳା
ବୋଲେ ମରିବୁ ନନ୍ଦନ ବେଗେ ଏଥୁ ପଳା ।
ଯେବଣ ନାରାଚ ଗୋଟି ବିନ୍ଧଇ ଫାଲଗୁନି
ସେ ନାରାଚ ମୁନେ ଦିଶେ ଏ ବ୍ରହ୍ମାଣ୍ଡ ତିନି ।
ଏସନ କରି ଏହାକୁ ଜନ୍ମ ଦେଲା ଧାତା
ତ୍ରଇଲୋକ୍ୟ ଏହାରେ କେ ନୋହିବ ଜିଣନ୍ତା ।
ଅବଶ୍ୟ ଏ ଦୁର୍ଯ୍ୟୋଧନ ନ ଛାଡ଼ିବ ତୋତେ
ନ ପୁଣି ବଧ ହୋଇବୁ ଏ ଅର୍ଜ୍ଜୁନ ହସ୍ତେ ।
ପୁଣ୍ୟତୋୟା ସରସ୍ୱତୀ ନଦୀର ସେ କୂଳେ
ନିରଞ୍ଜନ ଚିନ୍ତ ଉଦ୍ଦାଳକ ବଟ ମୂଳେ ।
ଯେବେ ହସ୍ତିନାରେ ତୋର ଜୀଇବାକୁ ଇଚ୍ଛା
ଅମର ବର ଗୋଟିକୁ ମନେ କର ବାଞ୍ଛା ।
ଦ୍ରୋଣଙ୍କ ବଚନେ ଚଳିଗଲା ଅଶ୍ୱଥାମା
କୁମାର ତୁଲେ ଚଳନ୍ତି କୃପ ମହାତମା ।
ପୁଣ୍ୟତୋୟା ନଦୀକୂଳେ ରହିଲେ ଆଶ୍ରମେ
ଅଜପା ଲୟେ ଚିନ୍ତିଲେ ରହି ତହିଁ ଧର୍ମେ ।
ସରସ୍ୱତୀ ସ୍ନାନ କରି ଜପନ୍ତି ସେ ନିତ୍ୟେ
ତେଜି ଆହାର ପନ୍ଦର ବରଷ ପର୍ଯ୍ୟନ୍ତେ ।
ଏଥି ଉତ୍ତାରେ ସେ ଦ୍ରୋଣ ଶିଷ୍ୟଙ୍କୁ ହକାରି
ମୃଗୟା କର ରେ ବାବୁ ବନରେ ବିହରି ।
ଅଶ୍ୱଥାମାକୁ ପ୍ରସବି କୃପୀ ନାଶଗଲା
ତାହାରି ଶ୍ରାଦ୍ଧ ଦିବସ ନିକଟ ହୋଇଲା ।
ଗଣ୍ଡା ଗୋଟିଏ ଖୋଜିଣ ଆଣ ଯାଇ ବାବୁ
ଗୁରୁଙ୍କର ବଚନେ ଯେ ଯାଇ ଶିଷ୍ୟ ସବୁ ।
ପଶ୍ଚିମେ ଭୀମ ଅର୍ଜ୍ଜୁନ ଦକ୍ଷିଣରେ କର୍ଣ୍ଣ
ଉତ୍ତର ଶତ ସୋଦର ଘେନି ଦୁର୍ଯ୍ୟୋଧନ ।
ଭ୍ରମନ୍ତି କୁମାରେ ବନ ଖେଦନ୍ତି ମୃଗାଦି
ଛିଦ୍ରେକ ନ ଛାଡ଼ନ୍ତି ସେ ଗଣ୍ଡାଜୀବ ଲୋଡ଼ି ।
କର୍ଣ୍ଣବୀର ଲୋଡ଼ି ନ ପାଇଲା ଗଣ୍ଡାଜୀବ
ମୃଗଭାର ଘେନିଗଲା ଗୁରୁ ପାଶେ ଯବ ।
ପଶ୍ଚିମ ଭାଗରେ ଗଲେ ଭୀମ ଅରଜୁନେ
ଗୁରୁଙ୍କୁ ଭେଟିଲେ ଗଣ୍ଡା ଘେନି ଚାରିଦିନେ ।
ଉତ୍ତରକୁ ଗଲେ ଦୁର୍ଯ୍ୟୋଧନ ଶତଭ୍ରାତ
ଦେଖନ୍ତି ବନ ଗହନ ଅନେକ ପର୍ବତ ।
ଲୋଡ଼ନ୍ତି ପଶି ଗହନ ଅଟବୀରେ ଗଣ୍ଡା
ଖେଦନ୍ତି ସେ ବିହରନ୍ତି ଗର୍ବରେ ଦୁର୍ଦ୍ଦଣ୍ଡା ।
ମାଣିକ୍ୟ ନାମେ ଅଛଇ ପର୍ବତେକ ଲଟୀ
ସେ ପର୍ବତ ତଳେ ଅଛି ପାଣିଘାଟ ଗୋଟି ।
ସେ ପାଣି ଘାଟରେ ଖୋଜୁଛନ୍ତି ଅନୁସରି
ତାହାର ନିକଟେ ଜରା ବେଣ୍ଟକାର ପୁରୀ ।
ସେ ଜରାଶବର ଭାର୍ଯ୍ୟା ଶ୍ରୀୟା ନାମ ବାଳୀ
ସ୍ୱାମୀକୁ ବୋଇଲେ ତୁହି ଜଗିଥାଅ ପଲ୍ଲୀ ।
ସ୍ନାନ କରିଣ ଆଣଇ ମୁଁ ଜଳ ଘଟିଏ
ଦ୍ୱାରେ ଲୟ କରିଥାଅ ମୋ ଆସିବାଯାଏ ।
ସ୍ୱାମୀକି ପ୍ରବୋଧି ତହିଁ ଚଳଇ ତରୁଣୀ
ସରୋବରେ ପଶି ଘଟେ ପୂରାଇଲା ପାଣି ।
ଘଟକୁ କୂଳେ ଥୋଇଣ ସାରିଲା ସେ ସ୍ନାନ
କୂଳକୁ ଆସି ହୋଇଲା ପତ୍ର ପହରଣ ।
ମଥାରେ ସେ ବସାଇଲା ପାଣି ଘଟ ଗୋଟି
ତର ତର ହୋଇ ବାଟେ ଆସଇ ବିମ୍ବୋଷ୍ଠୀ ।
ଶବରୁଣୀ କି ଦେଖନ୍ତେ ଧାଇଁଲେ ସେ ଦୁଷ୍ଟେ
ବାଟରେ ଶବରୁଣୀ କି ବେଢ଼ିଲେ ପାପିଷ୍ଟେ ।

ଭୋ ନାଥ ରଖ ବୋଲି ସେ ଉଚ୍ଚସ୍ୱରେ ଡାକେ
ବଳାତ୍କାରେ କରୁଛନ୍ତି ମୋତେ ଦୁଷ୍ଟଲୋକେ ।
ଉଚ୍ଚରେ ଭାଷିଲା ଯହୁଁ ଭାରିଯା ଏ ବାଣୀ
ଆଖଡ଼ାଶାଳରେ ଜରାଶବର ତା ଶୁଣି ।
ହସ୍ତେ ଧନୁଶର ଘେନି ବାହାରେ କିରାତ
ପ୍ରବେଶ ହୋଇଲା କୁରୁବୀରଙ୍କ ଅଗ୍ରତ ।
ମହା ବିକଟାଳ ଜାଣି ଭଇରବେ ମୂର୍ତ୍ତି
ଡାକଇ କିରାତ ତୁମ୍ଭେ କାହାର ସନ୍ତତି ।
ଶୁଣିଣ କୋପେ ପ୍ରଚଣ୍ଡ ଦୁଃଶାସନ ବୀର
ପ୍ରତିଜ୍ଞା କରି ବୋଇଲା ମରିବୁ ଶବର ।
ବନଚର ହୋଇ ତୋର ଏମନ୍ତ ଘରଣୀ
ରାଜାର ଅଭିଷେକକୁ ଯୋଗ୍ୟ ପାଟରାଣୀ ।
ଆମ୍ଭେ ସୋମବଂଶୀ ଅଟୁ ପୃଥ୍ୱୀ ଅଧିପତି
ଏହାର ନିମନ୍ତେ ତୁହି ହେବୁ ପ୍ରାଣଘାତୀ ।
ଦୁର୍ଭାର ବଚନ ଶୁଣି ଜରା ବେଣ୍ଟକାର
ଧନୁରେ ବସାଇଲା ସେ ଆକର୍ଷିଣ ଶର ।
ନାରାଚ ଗୋଟି ଛାଡ଼ିଲା ଗୁରୁନାମ ଧରି
ମଥାରେ ଘେନି ମୃତ୍ତିକା ଦ୍ରୋଣକୁ ସୁମରି ।
ଅଛନ୍ତି ଏକଉତ୍ତର-ଶତ କୁରୁବୀରେ
ଜଣେକ ପୂରାଇଲା ସେ ଶତେ ଶତେ ଶରେ ।
ଅନୁକ୍ଷଣେ ଯହୁଁ ବାଣ ବିନ୍ଧେ ମହାମନ୍ତ୍ରେ
ନାରାଚମାନ ଗମନ୍ତି ଗରଜନ ଘାତେ ।
ତ୍ରିପଣ୍ଡ ଗଳିତ ରକ୍ତ ଅଙ୍ଗେ ଶରଭେଦି
ପଡ଼ିଲେ କୌରବ ବହେ ରୁଧିରର ନଦୀ ।
ଭାରିଯାକୁ ଘେନି ଚଳିଗଲା ବୀର ଜରା
ଆପଣା ପଲ୍ଲୀରେ ଯାଇଁ ପ୍ରବେଶ ଶବରା ।
ଦ୍ରୋଣ ବୋଲନ୍ତି ଯେ ଦୁର୍ଯ୍ୟୋଧନ ନ ଆସିଲା
ଦ୍ୱାଦଶ ଦିବସ ପଛ ନିରୂପନ୍ତେ ଗଲା ।
ସଙ୍ଗେ ଘେନି କର୍ଣ୍ଣ ଭୀମ ଆବର କିରୀଟି
ବାଟ ଅନୁସରିଣ ଯେ ଯାଆନ୍ତି ପାଛୋଟି ।
ପ୍ରବେଶ ହୋଇଲେ ଯାଇଁ ସରୋବର କୂଳେ
ଯେସନ ବୃକ୍ଷ ଲୋଟନ୍ତି ମହାବାତ ବଳେ ।
ହୃଦରେ ନାରାଚ ପଡ଼ି ପିଠିକତି ଫୁଟି
ମହାଗାଢ଼ ପୃଥିବୀ କି ମୁନ ଅଛି କଣ୍ଟି ।
ଭୀମସେନ ଧାଇଁ ଯାଇଁ ଦେଖିଲାକ ଦୂରୁ
ସମସ୍ତେ ତ ଶାସ୍ତ୍ରାଘାତେ ପଡ଼ିଛନ୍ତି ଗରୁ ।
ଭରଦ୍ୱାଜଙ୍କ ନନ୍ଦନ ଦେଖି ବିଚାରିଲେ
ଏ ଆମ୍ଭ ବିଦ୍ୟା ଅର୍ଜୁନେ ରାଇ ପଚାରିଲେ ।
ଦେଖ ଏହି ବନେ କେହୁ ଅଛି ଫାଲଗୁନୀ
ଆନକେ ଅଛଇ ପର୍ଶୁରାମ ବିଦ୍ୟା ଘେନି ।
ଆନକୁ କେବେ ଗୋଚର ନୁହଇ ଏ ବିଦ୍ୟା
ମାନବେ ଗୋଚର ନାହିଁ ଏ ସିନା ପ୍ରସିଦ୍ଧା ।
ଗୁରୁଙ୍କର ବଚନେ ଯେ ଚଳେ ସବ୍ୟା ସାଚୀ
ଦେଖେ କାନନେ ଶବର ପଲ୍ଲୀ ଏକ ଅଛି ।
ପଟାକୁ ବିନ୍ଧେ କିରାତ ଆଖଡ଼ାରେ ବାଣ
ଅର୍ଜୁନକୁ ଦେଖିଣ ସେ ବାହାର ତକ୍ଷଣ ।
ଧାମଣ କାଠର ଧନୁ କଣ୍ଟାବାଂଶୀ ଗୁଣ
କଟିମେଖଳେ କୁଠାର ଫିରିକିର ତୃଣ ।
ଗଦ ଗଦ ସ୍ୱର ବାକ୍ୟ କିସ ବିପ୍ର ବୋଲି
ଅର୍ଜୁନର ଉପରକୁ ଆସୁଅଛି ପେଲି ।
ଡାକଇ କିରାତ ତୁରେ କାହା ସୁତ ଅଟୁ
ମୁଁ ବନଚର କିମ୍ପାଇଁ ମୋ ଆଶ୍ରମେ ଭେଟୁ ।
ଆୟୁଷ ଥାଉଁ ଭରସୁ କିମ୍ପା ମରଣକୁ
ମାରି ପକାଇ କି ଦଳି ଦେବଇଁ ଦେବୀକୁ ।
ଅର୍ଜୁନ ବୋଇଲେ ଆରେ ଶୁଣ ତୁ କିରାତ
ଏ ମୋର ଭ୍ରାତଙ୍କୁ କେରେ କଲା ଶରାଘାତ ।
ଅର୍ଜୁନ ବଚନ ଶୁଣି ବୋଇଲେ ସେ କୋପେ
ଧନୁରେ ନାରାଚ ଯୋଚି ଆକର୍ଷି ପ୍ରତାପେ ।
ଶବର ଛାଡ଼ନ୍ତେ ତାହା ଦେଖି ଫାଲଗୁନି
ଶବରକୁ ମାଇଲା ସେ ଦିବ୍ୟ ଶସ୍ତ୍ର ଘେନି ।
ଶରେ ଶର ବାଜି ପରିତାଳ ହେଉଛନ୍ତି
ଭାଙ୍ଗିଣ ସମସ୍ତ ଶସ୍ତ୍ରେ ଚୂର୍ଣ୍ଣ ହୋଇଯାନ୍ତି ।
ଶତେକ ନାରାଚ ଚାପେ ପୂରାଇଲା ଜରା
ଅର୍ଜୁନକୁ ପେଷିଲା ସେ କୋପେ ମହାବୀରା ।
ଶତେକ ନାରାଚ ଘେନି ପେଷିଲା ଅର୍ଜୁନ
ଛେଦି ପକାଇଲା ଯାଇ ତାର ଶରମାନ ।
କିରାତ ଅର୍ଜୁନ ରଣ କରୁ ଅନ୍ୟୋ ଅନ୍ୟେ
ମେଦିନୀ କମ୍ପିଲା ତାଙ୍କ ନାରାଚ ଚାଳନେ ।
ଗୁଣର ଟଙ୍କାର ଶୁଭେ ଜିଣି ସିନ୍ଧୁ ଘୋଷ
ଲାଗିଲାକ ତିନି ଭୁବନକୁ ବଡ଼ ତ୍ରାସ ।
ଦ୍ରୋଣ ଶୁଣିଲେ ଶସ୍ତ୍ରଙ୍କ ଶବ୍ଦ ଉଚ୍ଚବାଣୀ
ଧାଇଁଲେ ଯେ ଘେନି କର୍ଣ୍ଣ ଭୀମ ବୀରମଣି ।
ଦେଖିଲେ ଅର୍ଜୁନ ସଙ୍ଗେ କିରାତ ସମର
ଜରାଶବର ଧନୁରେ ପୂରାଉଛି ଶର ।
ଦ୍ରୋଣ ଭେଟିଲେ ସମର କରନ୍ତେ ସେ ବେନି
କେହି ପାଉନାହିଁ ତହିଁ ଉପଚୟ ହାନି ।
ଦ୍ରୋଣ ପଚାରିଲେ ତୁ ହୋ ରହ ରହ ବାବୁ
କାହାର ତହୁଁ ସାଧିଲୁ ତୁ ଏ ବିଦ୍ୟା ସବୁ ।
କାହାର ଶିଷ୍ୟ ତୁ କହ କେ ତୋହର ଗୁରୁ
କାହାର ବିଦ୍ୟା ଶିଖି ତୁ ଏତେ ଯୁଦ୍ଧ କରୁ ।

କିରାତ ବୋଇଲା ତାହା ଶୁଣ ହେ ବ୍ରାହ୍ମଣ
ମୋହର ଅଟନ୍ତି ବିଦ୍ୟା ଗୁରୁ ଦ୍ରୋଣ ଜାଣ ।
ଗୁରୁ ସ୍ତମ୍ଭୀଭୂତ ହେଲେ କିରାତ ବଚନେ
ଆମ୍ଭେ ସେ ଦ୍ରୋଣ ଗୁରୁ ହେ ଅଛୁ ବିଦ୍ୟମାନ ।
ବଦନ୍ତି ଦ୍ରୋଣେ ଅଛନ୍ତି କାହିଁ ତୋର ଗୁରୁ
ଆମ୍ଭଙ୍କୁ ଦେଖିଲି ସେବା କାହାର ତ କରୁ ।
ତାର ଆଖଡ଼ାଶାଳକୁ ତାଙ୍କୁ ଘେନିଗଲା
ମୃତ୍ତିକାର ଦ୍ରୋଣଙ୍କୁ ସେ ନେଇ ଦେଖାଇଲା ।
ଏହି ଯେ ଗୁରୁ ମୋହର ସର୍ବ ସିଦ୍ଧିପ୍ରଦ
ଏହାଙ୍କୁ ସେବି ସକଳ ବିଦ୍ୟା କରି ସାଧ୍ୟ ।
ଗୁରୁ ପୁଚ୍ଛାକଲେ ତୁହି କେମନ୍ତ ସାଧିଲୁ
ନ ପଢ଼ି ନ ଦେଖି ଏହା କାହୁଁ ତୁ ଶିଖିଲୁ ।
ବୋଇଲେ କିରାତ ମୁଁ ଯେ ଗଲଇଁ ବାରୁଣା
ବୋଇଲି ବିଦ୍ୟା ଶିଖିବି କଲେ ଯେ କରୁଣା ।
ଶୁଣିଣ ବହୁତ ଗାଳି ଦେଲେ ଦୁର୍ଯ୍ୟୋଧନ
ଦୁଃଶାସନ ହାତେ ପୁଣି ଦେଲା ଅପମାନ ।
ଅପମାନ ପାଇ ତହୁଁ କ୍ରୋଧେ ମୁଁ ଅଇଲି
ଏଠାରୁ ବାରୁଣାଯାଏ ବନ କାଟିଗଲି ।
ଆଖଡ଼ାଶାଳ ମୁଁ କଲି ମୋ ପଲ୍ଲୀ ଦୁଆରେ
ମୃତ୍ତିକା ଦ୍ରୋଣ ନିର୍ମାଣି ସାଧିଲି ବୁଦ୍ଧିରେ ।
ଏଥୁ ଚାହିଁଲି ବାରୁଣାବନ୍ତ ଆଖଡ଼ାକୁ
ଦୃଷ୍ଟିପାତ କଲି ମୁହିଁ ବାର ଯୋଜନକୁ ।
ଯେମନ୍ତ କରନ୍ତି ପାଦଗତି ଦ୍ରୋଣ ଗୁରୁ
ମୁହିଁ ସାଧଇ ସବୁରି ଗତି ଦେଖି ଦୂରୁଁ ।
ଶୁଣିଣ ଦ୍ରୋଣ ହୋଇଲେ ପରମ ଆନନ୍ଦ
ସନ୍ନିଧେ ବସାଇ ତାଙ୍କୁ ଦେଲେ ଧନ୍ୟବାଦ ।
ଆମ୍ଭେ ଦ୍ରୋଣ ଏ ଅର୍ଜ୍ଜୁନ ଭୀମସେନ କର୍ଣ୍ଣ
ଯେ ମଲେ ସେ ଶତଭାଇସହ ଦୁର୍ଯ୍ୟୋଧନ ।
ଏସନ ବଚନ ଶୁଣି ଉଠି ମହାବୀର
ଗୁରୁଙ୍କ ପାଦେ ପ୍ରଣାମ କରିଣ ଶବର ।
ଉଠି କରଯୋଡ଼ି ଶିରେ ଉଭାହେଲେ ଦୂରେ
ଏମନ୍ତ ପଡ଼ିଲା ପାଦେ ଶଏ ଆଠବାରେ ।
ଦ୍ରୋଣ ବୋଲେ ଆମ୍ଭର ତୁ ତ ପୁତ୍ରବାବୁ
ଯାହାଙ୍କୁ ମାଇଲୁ ଆମ୍ଭ ପୁତ୍ର ସେହି ସବୁ ।
ତା ବିଦ୍ୟା ପରୀକ୍ଷା ବାବୁ ଜାଣିବା ଯୁକତେ
ପୁଣି ସେହି ପୁତ୍ରମାନେ ବର୍ତ୍ତନ୍ତି କେମନ୍ତେ ।
ଜରାକୁ ହିଁ ଘେନିଗଲେ ସେ ସଂଗ୍ରାମ ଭୂମି
ଜରା ବୋଇଲା ଏକ୍ଷଣି ଜୀଆଇବି ସ୍ୱାମୀ ।
ଧନୁରେ ସେ ବସାଇଲା ଜୀବନ୍ୟାସ ଶର
ଦୃଷ୍ଟି କରନ୍ତେ ଉଠିଲେ ସକଳ କୁମର ।
ମୋହ ଛାଡ଼ି ଦ୍ରୋଣଙ୍କର ଚରଣେ ପ୍ରଣମି
ବୋଇଲେ ଶବର ଶରାଘାତେ ମଲୁ ସ୍ୱାମୀ ।
ଦ୍ରୋଣ ପ୍ରାୟ ଗୁରୁତୋଷୀ ବିଦ୍ୟାରେ ସାଧିଲୁ
କିରାତ ମାତ୍ରକ ହାତେ ରଣେ କ୍ଷୟ ଗଲୁ ।
ପର୍ଶୁରାମ ସମ ବିଦ୍ୟା ଗୁରୁ ପୁଣି ଦ୍ରୋଣ
ସାଧିଲୁ ଶିଖିଲୁ କିଛି ନୋହିଲା କାରଣ ।
ଧିକ ଏ ଜୀବନ କ୍ଷତ୍ରୀ ବୃତ୍ତେ କିସ କାର୍ଯ୍ୟ
ବ୍ରହ୍ମାଣ୍ଡେ ପାଇବୁ କ୍ଷତ୍ରୀମୁଖେ ଆମ୍ଭେ ଲାଜ ।
ଦ୍ରୋଣ ବୋଇଲେ ବାବୁରେ ସ୍ଥିର କର ଚିତ୍ତ
ଆମ୍ଭର ଶିଷ୍ୟ ଅଟଇ ଏହି ଯେ କିରାତ ।
ଏକ ବିଦ୍ୟା ସାଧି ରଣ କଲେ ଭ୍ରାତ ବେନି
ଏଥିରୁ କି ପରାଜୟ ଅଭିମାନ ପୁଣି ।
ଗୁରୁ ଏକ ବିଦ୍ୟା ଏକ ନାହିଁ ତହିଁ ଭିନ୍ନ
ସେ କିରାତ ତୁମ୍ଭେ ଅଟ ନୃପତି ନନ୍ଦନ ।
ହେୟଜ୍ଞାନ କରି ତୁମ୍ଭେ ଯୁଝିଲଟି ଯେଣୁ
କିରାତ ତୁମ୍ଭଙ୍କୁ ଜୟ କଲା ସେ କାରଣୁ ।
ଆମ୍ଭ ବିଦ୍ୟା ନ ଜାଣିଲେ ଜିଣନ୍ତା କାହିଁ ବା
ଏଥିପାଇଁ ଅଭିମାନ କିମ୍ପା ଧର ବାବା ।
ପ୍ରଥମେ ଏ ଗଣ୍ଡା ଘେନି ଗଲା ଆଖଡ଼ାକୁ
ଅପମାନ ଦେଲ ବାବୁ ତୁମ୍ଭେ ଯେ ଏହାଙ୍କୁ ।
ଦ୍ରୋଣଙ୍କ ବଚନେ ହେଲା ଦୁର୍ଯ୍ୟୋଧନ ଶାନ୍ତ
ଜରାକୁ ଚାହିଁଣ ଗୁରୁ ବୋଇଲେ ଏମନ୍ତ ।
ଆମ୍ଭେ ଯାଉଅଛୁ ଏବେ ହସ୍ତିନା ପୁରକୁ
ବାରୁଣାବନ୍ତରୁ ଭାଙ୍ଗି ଦେଇ ଆଖଡ଼ାକୁ ।
ଆମ୍ଭର ବୋଲେ ସକଳ ବିଦ୍ୟା ପ୍ରାପ୍ତି ହେଉ
ତୋତେ କେ ସମରେ ଜିଣି ନ ପାରନ୍ତି କେହୁ ।
ଉସତ ହୋଇ କିରାତ ପଡ଼ିଲା ଚରଣେ
ଦକ୍ଷିଣା ମାଗ ହେ ଗୁରୁ ଦେବଇଁ ଏକ୍ଷଣେ ।
ଶୁଣିଣ ଗୁରୁ ବୋଇଲେ ଆନନ୍ଦିତ ଚିତ୍ତେ
ଗୁରୁ ଦକ୍ଷିଣା ଶିଷ୍ୟକୁ ଲାଗଇ ଯୁକତେ ।
ସତ୍ୟ କଲେ ତୋତେ ସିନା ମାଗିବୁ ଦକ୍ଷିଣା
ମାଗୁଥିବୁ ଯେବେ ପୁଣି ତୁହି କରୁ ମନା ।
ଶବର ବୋଇଲା ସତ୍ୟ ସତ୍ୟ ଏ ମୋହର
ମାଗିଲେ ଗୁରୁ ଦେବଇଁ କାଟି ମୋର ଶିର ।
ଗୁରୁ ବୋଇଲେ ତୁ ଯେବେ ସତ୍ୟ କଲୁ ବାବୁ
ବାମହସ୍ତ ବୃଦ୍ଧାଙ୍ଗୁଳି କାଟି ମୋତେ ଦେବୁ ।
ଜ୍ୟେଷ୍ଠ ଅଙ୍ଗୁଷ୍ଠି ଧଇଲେ ଗୁରୁ ଦ୍ରୋଣ ଜାଣି
ନାରାଚ ବିନ୍ଧନ୍ତେ ହାତେ ନ ଥିବ କଷଣି ।
ଚାରି ଆଙ୍ଗୁଷ୍ଠିରେ ବାବୁ ବିନ୍ଧୁବୁ ତୁ ଶର
ଏତେକେ ଗୁରୁ ଦକ୍ଷିଣା ହୋଇବ ଆମ୍ଭର ।

ଏମନ୍ତ ଶୁଣି ହରଷ ଚିତ୍ତ ହୋଇ ଜରା
ଅଙ୍ଗୁଷ୍ଠିକି କାଟି ଗୁରୁ ହସ୍ତେ ଦେଲା ତ୍ୱରା ।
ବୋଇଲା ଗୁରୁ ହେ ଭୟକଲ ପରା ମୋତେ
ତେଣୁ ମୋଠାରେ କପଟ ରଖିଲ ତ ଚିତ୍ତେ ।
ମୋ ଅଙ୍ଗେ କଳଙ୍କ କଲ ରଖିବ ଏହାଙ୍କୁ
ଅପମାନ ଦେଇଥିଲେ ଯାନ୍ତେ ଆଖଡ଼ାକୁ ।
ସେ ଅଭିମାନ ମୁଁ ଘେନି ସାଧିଲି ସକଳ
ଅବଶ୍ୟ ନାଶ କରନ୍ତି ଦୁର୍ଯ୍ୟୋଧନ କୁଳ ।
କୁରବଳକୁ ସମରେ କରିଥାନ୍ତି ଧ୍ୱଂସ
ଜାଣି ଗୁରୁ ରକ୍ଷାକଲ ଏବେ ତାଙ୍କ ବଂଶ ।
ଜାଣିଲି ମୋଠାରେ ଗୁରୁ ଦୟା ନାହିଁ ତୋର
ଏମନ୍ତ କହି ଚରଣେ ପଡ଼ିଲା ଶବର ।
ଲାଜ ପାଇ ମଉନରେ ରହି କିଛିକ୍ଷଣ
ଶ୍ରୀହସ୍ତରେ ଶବରକୁ ଘେନି ଗୁରୁ ଦ୍ରୋଣ ।
ବୋଇଲେ ପ୍ରସନ୍ନଚିତ୍ତେ ତୋତେରେ ସଂଗ୍ରାମେ
ଜିଣି ନ ପାରିବେ ମୋର ଗୁରୁ ପର୍ଶୁରାମେ ।
କେବଳ ତୁ ଅର୍ଜ୍ଜୁନକୁ ନୋହିବୁରେ ସରି
ଆବର ସକଳେ ତୋତେ ଯୁଦ୍ଧେ ଯିବେ ହାରି ।
ଏକ ଲବକରେ ମୋହ ଗଲେ ଶତ ଭାଇ
ତୋ ସମାନ ବୀର କେହି ଏ ମହୀରେ ନାହିଁ ।
ଆଜିଠାରୁ ଏକଲବ୍ୟ ନାମ ହେଲା ତୋର
ସୁଖେ ରହିଥାଅ ବାବୁ କରି ଘର ଦ୍ୱାର ।
ଏମନ୍ତେ କଲ୍ୟାଣ କରି ରୁହାଇ ଆଶ୍ରମେ
ଶିଷ୍ୟଙ୍କୁ ଘେନିଣ ଗଲେ ସେ ବାରୁଣାଗ୍ରାମେ ।
ବିଜେ କଲେ ସେ ମହାତ୍ମା ହସ୍ତିନା ନଗରୀ
ଜୟ ତୁ ଶାରଳା ମାଗୋ ଜୟ ଶାକମ୍ବରୀ ।
ତୋହର କୃପାରେ ସିନା ଲେଖୁଛି ଏ ଗ୍ରନ୍ଥ
ନୋହିଲେ କି ଲେଖିବାକୁ ମୁହିଁ ସାମରଥ ।
କର ଅନୁଗ୍ରହ ମାଗୋ ମୁଁ ତୋହର ଦାସ
ତୁ କୃପା ନ କଲେ ମୁହିଁ ହୋଇବି ନିରାଶ ।
ଜନ୍ମେ ଜନ୍ମେ ମୁଁ ତୋହର ଚରଣେ ଶରଣ
ଶାରଳା ଦାସ ମୋ ନାମ ଅଟେ ମୂଢ଼ଜନ ।

—o—

## ଦ୍ରୁପଦ ରାଜାର ଅପମାନ ଓ ତପସ୍ୟା

ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ମାଘ ଶୁକ୍ଳ ତ୍ରୟୋଦଶୀ ତିଥି ଅର୍କବାର ।
ତୈତିଳ ନାମେ କରଣ ନାମ ନାମଯୋଗ
ମେଷ ସଂକ୍ରାନ୍ତି ପଚିଶ ଦିନ ଯାଇ ଭୋଗ ।
ହସ୍ତା ନକ୍ଷତ୍ର ସେଦିନ ପୁଣି ତୁଳା ରାଶି
ଆଖଡ଼ାଶାଳେ ଅଛନ୍ତି ଗୁରୁ ଦ୍ରୋଣ ବସି ।
ଭ୍ରାତ୍ରାମାନଙ୍କୁ ଘେନିଣ ଉଭା କୁରୁରାଣ
ଯୁଧିଷ୍ଠିର ପାଞ୍ଚ ଭାଇ ଆବର ସେ କର୍ଣ୍ଣ ।
ଦ୍ରୋଣେ ବୋଇଲେ ଆମ୍ଭେ ତ ଅଟୁ ତୀର୍ଥବାସୀ
ତୁମ୍ଭଙ୍କୁ ତ ବିଦ୍ୟା ଦାନ କଲୁ ଏଥେ ଆସି ।
ଋଷି ବିପ୍ର ଅଭ୍ୟାଗତ ତପୀ ବ୍ରହ୍ମଚାରୀ
ଏମାନେ ଯେ ପାଦଶ୍ରମେ ଧର୍ମ ହିଁ ଆଚରି ।
ପରମ କଲ୍ୟାଣ ହେଉ ରହିଥାଅ କ୍ଷେମେ
ଆମ୍ଭେ ତୀର୍ଥ କରିଯିବୁ ତୀର୍ଥ ବ୍ରତ ଧର୍ମେ ।
ଦୁର୍ଯ୍ୟୋଧନ ଦୁଃଶାସନ ବୀରବର କର୍ଣ୍ଣ
ଏକାନ୍ତେ ଯେ ତିଆରନ୍ତି ବିଦ୍ୟା ଗୁରୁ ଦ୍ରୋଣ ।
ଯଦ୍ୟପି ତୁମ୍ଭଙ୍କୁ ବିଦ୍ୟା ଶିଖାଇଲୁ ଆମ୍ଭେ
ଭୀମ ଅର୍ଜ୍ଜୁନ ବିବାଦୀ ନ ହୋଇବ କେଭେ ।
ତୁମ୍ଭେ ଯେ ଏକ ସୋଦର ନ ହୁଅ ତ ଭିନ୍ନ
ଯୁଧିଷ୍ଠିକୁ ପୂଜୁଥିବ ପଣ୍ଡୁର ସମାନ ।
ଯୁଧିଷ୍ଠି ସଙ୍ଗେ ଅପ୍ରୀତି ନ କରିବ କାଳେ
ଏହି ଶ୍ରୀସମ୍ପଦ ବାବୁ ନ ରହେ ନିଶ୍ଚଳେ ।
ଯୁଧିଷ୍ଠିର ବୋଇଲେ ଯେ ଯୋଡ଼ି କରପତ୍ର
ବହୁକାଳୁ ବିଦ୍ୟା ଶିଖାଇଲେ ଯେ ଆମ୍ଭନ୍ତ ।
ଗୁରୁ ଦକ୍ଷିଣା ମାଗ ହେ ଆମ୍ଭେ ଦେବୁ ଗୁରୁ
ଯାହା ଇଚ୍ଛା ତାହା ନାସ୍ତି କରି ଯେ ନ ପାରୁ ।
ଗୁରୁ ଦକ୍ଷିଣା ନ ଦେଇ ସାଧନ୍ତି ଯେ ବିଦ୍ୟା
ସେ କି ପ୍ରାପତ ହୋଇବ ହେବ କି ସେ ଯୋଦ୍ଧା ।
ଗୁରୁ ହୋଇଲେକ ବାବୁ ଶୁଣରେ ଯୁଧିଷ୍ଠି
ତୁ ଯାହା ବୋଇଲୁ ସତ୍ୟ ସେହି କଥା ଗୋଟି ।
ତଳ ହସ୍ତରେ ଘେନିଲୁ ଯେ ପର୍ଶୁରାମ ତହୁଁ
ଆନକୁ ଦାନ ମାଗିବୁ ଆମ୍ଭେ ଅବା କାହୁଁ ।
ବିଦ୍ୟା ଗୁରୁ ଦୀକ୍ଷା ଗୁରୁ ଅସ୍ତ୍ରଶିକ୍ଷା ଗୁରୁ
କାରଣ ପୁରୁଷ ତହୁଁ ପ୍ରତିଗ୍ରହ କରୁ ।
ଧନ ଦାନେ ଭୂମି ଦାନେ ନାହିଁ ପ୍ରୟୋଜନ
ଆମ୍ଭଙ୍କୁ ଦକ୍ଷିଣା ଦେବାପାଇଁ ଯେବେ ମନ ।
ସତ୍ୟ କଲେ ଆମ୍ଭେ ସିନା ମାଗିବୁ ତୁମ୍ଭଙ୍କୁ
ମାଗିଲା ଉତ୍ତାରୁ ପୁଣି ନ ଦିଅ ଆମ୍ଭଙ୍କୁ ।
ଦୁର୍ଯ୍ୟୋଧନ ବୋଇଲା ଯା ମାଗିବ ଭୋ ଭ୍ରାତ
ଅବଶ୍ୟ ଦେବୁ ତ୍ରିବାର ଆମ୍ଭର ଏ ସତ୍ୟ ।
ଦ୍ରୋଣ ବୋଇଲେ ବାବୁରେ ମାଗୁଛି ତୁମ୍ଭଙ୍କୁ
ଦ୍ରୁପଦ ରାଜାକୁ ଧରି ଦେବ ଯେ ଆମ୍ଭଙ୍କୁ ।
ମୁ ତୁମ୍ଭର ଗୁରୁ ତୁମ୍ଭେ ଆମ୍ଭ ଶିଷ୍ୟ ସିନା
ଏତିକି ଦେଲେ ହୋଇବ ମୋହର ଦକ୍ଷିଣା ।
ଶୁଣିଣ ସେ ଦୁର୍ଯ୍ୟୋଧନ କୋପେଣ ପ୍ରଚଣ୍ଡ
ଦ୍ରୁପଦ ପୁରକୁ ଯିବା ସାଜ ସମଦଣ୍ଡ ।

ରଥ ଗଜ ଅଶ୍ୱ ସାଜ ସଇନ୍ୟ ପଦାତି
ବାଜିଲା ନିଶାଣ ଢୋଲ ଦମା ଅପ୍ରମିତ ।
ରଥ ଗଜ ତୁରଙ୍ଗମ ସାଜନ୍ତି ତୁରିତେ
ବିରହନ୍ତି ଚୋଖାବାହୀ ସାଜିଣ ରାଉତେ ।
ବିଜିଘୋଷ ଟମକ ଯେ ବୀର ତୂର ବାଜେ
ଏକାଦଶ ଅକ୍ଷୌହିଣୀ କୁରୁବଳ ସାଜେ ।
ଦଣ୍ଡ ସଜ ହେବା ଦେଖି ହସିଲା ଫାଲଗୁନି
ଦ୍ରୋଣ ବୋଇଲେ ହସିଲୁ କହ ତୁ କିଘେନି ।
ଅର୍ଜ୍ଜୁନବୋଲେ ଗୁରୁ ହେ ହସିଲି ଏଥକୁ
ଏତେ ଦଣ୍ଡ ସାଜ କିମ୍ପା ଦ୍ରୁପଦ ଛାରକୁ ।
ପ୍ରଜ୍ଞା ଜଣେ ଥାଇ ତାକୁ ଆଣଇ ନା ଧରି
କିଞ୍ଚିତ କଥାକୁ କିମ୍ପା ଦଣ୍ଡ ସଜ କରି ।
ଦୁର୍ଯ୍ୟୋଧନ ବୋଇଲା ତୁ ଜନ୍ମ ହୁଁ ଯେ ନଷ୍ଟ
ଯେତେକ ପ୍ରତିଜ୍ଞା କଲୁ ହେବ ସବୁ ଭ୍ରଷ୍ଟ ।
ବ୍ରାହ୍ମଣ ଗୁରୁ ବୋଲିଏ ନ କହିଲେ ତୋତେ
ଭାଗ୍ୟବର ହେଲେ ନାଶ ଯାଆନ୍ତୁ କିଞ୍ଚିତେ ।
ଗୁରୁଙ୍କ ଛାମୁରେ ଏତେ ଦର୍ପେ କଥା କହୁ
ଅଳପ ଜାଣି ପ୍ରତିଜ୍ଞା ବହୁତର କହୁ ।
ଦ୍ରୁପଦ ନାମେ ଯେବଣ ରାଜା ଚକ୍ରବର୍ତ୍ତୀ
ଅସଂଖ୍ୟ ବଳବନ୍ତ ସେ ପଞ୍ଚାଳାଧିପତି ।
ପଦ୍ମେକ ରଥ ଯାହାର ନବ ପଦ୍ମ ହସ୍ତୀ
ପରାର୍ଦ୍ଧେକ ଅଶ୍ୱ ସାତ କ୍ଷଉଣୀ ପଦାତି ।
ଚାରିଶତ ପାରିଦଣ୍ଡ ଖଟୁଆନ୍ତି ପାଖେ
କେମନ୍ତେ ଧରି ଆଣିବୁ ତୁଯାଇ ଏକାନ୍ତେ ।
ବୋଇଲେ ବାସବ ଏହା ନୁହେଁ ଅକାରଣ
ଏହିକ୍ଷଣି ଦେଖିବଟି ମୋର କ୍ଷତ୍ରିପଣ ।
ଦ୍ରୋଣ ଗୁରୁଯେବେ ଆଜ୍ଞା ଦେବେଟି ନିତାନ୍ତ
ଦ୍ରୁପଦ ଦୁଷ୍ଟକୁ ଆଣିଦେବୁ କ୍ଷଣମାତ୍ର ।
ଦୁର୍ଯ୍ୟୋଧନ ବୋଇଲା ତୁ ଯାଅ ନିଜେ ବାବୁ
ଦ୍ରୁପଦ ଆଣିଲେ ସିନା ଏ ପ୍ରତିଜ୍ଞା ସବୁ ।
ଅଜଗବ ଧନୁ ତୁଣ ଦ୍ରୋଣ କରେ ଘେନି
ଅର୍ଜ୍ଜୁନର କରେ ଦେଲେ ଘେନିଲା ଫାଲଗୁନି ।
ପ୍ରଶଂସା କରନ୍ତି ଗୁରୁ ଅର୍ଜ୍ଜୁନକୁ ମୋତେ
ଶତ ସହସ୍ର ପ୍ରଣତି କରୁ ଗୁରୁ ପାଦେ ।
ଦ୍ରୋଣ ବୋଇଲେ ତୁ ବାବୁ ହୁଅ ଜଗଜିତା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନୋହୁ କେ ଜିଣନ୍ତା ।
ଆଜ୍ଞା ପ୍ରମାଣେ ଚଳିଲା ଯେ ଦ୍ୱିତୀୟ କୃଷ୍ଣ
ପ୍ରତିଜ୍ଞାବନ୍ତ ସୁନ୍ଦର ବିଜୟ ବଳିଷ୍ଠ ।
ବନପୁର ଗ୍ରାମ ଜିଣି ଗମଇ ପଞ୍ଚାଳେ
ହରଷେ ଚଳଇ କୃଷ୍ଣାବେଣୀ ନଦୀକୂଳେ ।
ରାଜ୍ୟ ନିକଟେ ମଳୟ ନାମ ମହାଗିରି
ତାହାର ଶିଖରେ ବିଜେ ହେଲେ ଧନୁ ଧରି ।
ରତ୍ନ ମୁକୁଟ କୁଣ୍ଡଳ ମଣି ଶିରେ ଶୋଭା
ସୁରବର ସୁନ୍ଦର ତା ରୁଦ୍ର ଚନ୍ଦ୍ର ପ୍ରଭା ।
ଦେଶାଉରେ ପୁଚ୍ଛାକଲେ ଗୁଣ ଦେଖି ସବୁ
କେବଣ ରାଜାର ଅଟ କୁମର ତୁ ବାବୁ ।
ବାସବି ବୋଇଲେ ତୁମ୍ଭେ କହ ଯା ରାଜାକୁ
ଦ୍ରୁପଦ ବଇରୀ ଆସିଅଛି ସଂଗ୍ରାମକୁ ।
ତୁମ୍ଭେ କହ ଯାଇ ତୁମ୍ଭ ରାଜାର ଆଗର
ଦଣ୍ଡ ଘେନି ଆସି କରୁ ମୋ ସଙ୍ଗେ ସମର ।
ଶ୍ରୀମନ୍ତ ଲୋକଙ୍କ ଆଜ୍ଞା ନୁହଇ ଯେ ଭ୍ରଷ୍ଟ
ଦର୍ଶନେ ମୁକତି ପୁରେ ପ୍ରସନ୍ନତା ପେଟ ।
ରାଜାର ଦଣ୍ଡକୁ ସିନା ଜଣେ ଏକା ବାହି
ତାହାର ବଚନ ଭ୍ରଷ୍ଟ ନ କଲେ ଯେ କେହି ।
ଦେବାର୍ଚ୍ଚନ ସାରି ରାଜା ବିଜେ ଅବକାଶେ
ପାତ୍ର ମିତ୍ର ଅମାତ୍ୟ ଯେ ଖଟୁଆନ୍ତି ପାଶେ ।
ଦେଶାଉରେ କହନ୍ତି ଯେ କରପତ୍ର ଯୋଡ଼ି
ଅସମ୍ଭବ କଥା ଏକ ଶୁଣ ଦଣ୍ଡଧାରୀ ।
ରାଜାଙ୍କର ଦେଶାଉରେ ସିନା ଦିବ୍ୟଚକ୍ଷୁ
ସଭ୍ୟ ଅସଭ୍ୟ କହିବୁ ମନ୍ତ୍ରୀ ତାହା ବାଛୁ ।
ହସ୍ତକେ ଧନୁ ହସ୍ତରେ ଶର ଅଛି ଧରି
ବିଦ୍ୟାଧର କି ଗଗନୁ ମର୍ତ୍ତ୍ୟେ ଅବତରି ।
ବୋଇଲା ବାରତା କହ ତୁମ୍ଭର ରାଜାକୁ
ଦଣ୍ଡ ଘେନି ଆସି ଦେଉ ସଂଗ୍ରାମ ଆମ୍ଭଙ୍କୁ ।
କରୁଣାକର ମନ୍ତ୍ରୀକୁ ନରପତି ରାଇ
କେବଣ ଜନ ସେ ତୁମ୍ଭେ ବୁଝିଆସ ଯାଇ ।
ରାଜାର ବଚନେ ମନ୍ତ୍ରୀବର ଚଳିଗଲା
ଦଶସହସ୍ର ଯେ ଯୋଦ୍ଧା ତୁଳେ ବାଛିନେଲା ।
ଆସନ୍ତେ ଯେ ଯୋଦ୍ଧା ତୁଳେ ଯାଏ ସବୁ ପୂରି
ଘଣ୍ଟିଘାଗୁଡ଼ି ଶବ୍ଦରେ ଉଚ୍ଛୁଳଇ ପୁରୀ ।
ଧର ଧର ମାର ମାର ଧ୍ୱନି ଜିଣି ପବି
ଝଲକନ୍ତି ଲାଙ୍ଗିଆଏ ଯେହ୍ନେ ମଧ୍ୟାଲବି ।
ପର୍ବତେ ଥାଇ ଦେଖିଲେ କୁନ୍ତୀ ଦେବୀ ସୁତ
ଦଶ ଧାଡ଼ିରେ ଆସନ୍ତି ସଇନ ବହୁତ ।
ମହାମତ୍ତ ସିଂହ ପ୍ରାୟ ଛାଡ଼ିଛନ୍ତି ରଡ଼ି
ସେ ଶବ୍ଦେ ମନ୍ଦର ଗିରି ପଡ଼ିବ କି ଝଡ଼ି ।
ଦେଖି ସବ୍ୟ ସାଚୀ ଶର ଯୋଚି କୋପଚିତ୍ତେ
ଦଶ ନାରାଚ ବାଛିଣ ମାଇଲା କିଞ୍ଚିତେ ।
ଧାଡ଼ିକରେ ଆସୁଥିଲେ ସହସ୍ରେକ ଗଜ
ସମସ୍ତଙ୍କ ଅଙ୍ଗେ ଫୁଟିଗଲା ସେ ନାରାଚ ।

ଏମନ୍ତେ ଫୁଟିଲେ ଦଶ ଶରେ ଦଶ ଧାଡ଼ି
ଏକାବେଳକେ ଆୟୁତେ ହସ୍ତୀ ରଡ଼ି ଛାଡ଼ି ।
ହସ୍ତୀ ରାଉତେ ସମସ୍ତେ ପଡ଼ିଲେକ ଢଳି
ଯେସନେ ପବନ ଘାତେ ଶୁଅଇ କଦଳୀ ।
ରାଜାର ଅଗ୍ରତେ ଯାଇ ଜଣାଇଲେ ଚାରେ
ଦଣ୍ଡ ଘେନିଣ ଦ୍ରୁପଦ ପଶିଲେ ସମରେ ।
ପଦ୍ମକ ରଥ ବତିଶ ପଦ୍ମ ମତ୍ତହସ୍ତୀ
ଅଶୀ ପଦ୍ମ ଅଶ୍ୱ ସାତ କ୍ଷଉଣୀ ପଦାତି ।
ଧାମନ୍ତି ଯୋଦ୍ଧାଏ ଘୋର ସିଂହରଡ଼ି କରି
ସପତ ଯୋଜନ ଯାଏ ଥାଟ ଆସେ ପୂରି ।
ପର୍ବତ ଉପରେ ଥାଇ ବିଚାରେ ଅର୍ଜ୍ଜୁନ
ସାଧୁ ତୋହର ସମ୍ପଦ ସାଧୁ ତୋ ଜୀବନ ।
ଗୁରୁ ଆଜ୍ଞା ନ ହେଲେ ତୋତେ ମାରିବାକୁ
ବିନା ଅନୁରୋଧେ କିମ୍ପା ଆସନ୍ତି ଏଠାକୁ ।
ଗୁରୁଙ୍କର ମଇତ୍ର ଏ ଅଟନ୍ତି ଯୁକତେ
ଗୁରୁ ସମାନ ନାଶ ମୁଁ କରିବି କେମନ୍ତେ ।
ସଦ୍‌ଭାବ କରିଛନ୍ତି ମୋତେ ଗୁରୁ ଦ୍ରୋଣେ
ବିନ୍ଧିନେଇ ଦେବି ମୁହିଁ ତାହାଙ୍କ ଚରଣେ ।
ମୋହନ ଶରେ ଭେଦିଲା ଦ୍ରୁପଦର ଥାଟ
ଅନେକ ନାରାଚ ଯାଇ ପଡ଼େ ନୋହୁ ଭେଟ ।
ରଥ କେ ସହସ୍ର ଗଜେ ଗଜ ପାଞ୍ଚଶତ
ଅଶ୍ୱ କେ ଅଢ଼ାଇ ଶତ ପଦାତି କେ ଶତ ।
ଏତେକ ନାରାଚ ବିନ୍ଧି ଅର୍ଜ୍ଜୁନ ତା ଭେଦି
ସାତ ଯୋଜନ ମାଡ଼ିଣ ପଡ଼ିଲେ ସେ ଯୋଦ୍ଧୀ ।
ମୋହଶରେ ଅଚେତନ ହୋଇଲେ ସଇନି
ଦ୍ରୁପଦ ରାଜାକୁ ଧଇଲେକ ଫାଲଗୁନି ।
ଦ୍ରୁପଦ ବୋଇଲେ ବାବୁ କେବଣ ପୁରୁଷ
ତ୍ରିଭୁବନେ ନାହିଁ ଏଡ଼େ କାହାର ସାହସ ।
ଅର୍ଜ୍ଜୁନ ବୋଇଲେ ମୁହିଁ କୁନ୍ତୀଙ୍କର ସୁତ
ଦ୍ରୋଣଙ୍କ ଠାବରୁ ବିଦ୍ୟା ଶିଖିଲି ବହୁତ ।
ତହୁଁ ସେ ଗୁରୁ ଆମ୍ଭଙ୍କୁ ଦକ୍ଷିଣା ମାଗିଲେ
ଦ୍ରୁପଦ ରାଜାଙ୍କୁ ଆଣି ଦିଅ ତୁ ବୋଇଲେ ।
ତାହାଙ୍କର ବଚନେ ମୁଁ ଏଥି ଅଇଲଇଁ
ତେଣୁ କରି ସୈନ୍ୟ ତୋର ନିପାତ କଲଇ ।
ଅର୍ଜ୍ଜୁନ ବୋଇଲେ ଭୀତି ନ କର ତୁ କିଛି
ଦ୍ରୋଣ ଗୁରୁଙ୍କର ଶିଷ୍ୟ ମୁହିଁ ଆସିଅଛି ।
ମୋର ସଙ୍ଗେ ଥିଲେ ତୋତେ ନାହିଁ ନାପ୍ରମାଦ
ଆନ ଜନକୁ ତୁ ଭୀତି ନ କର ଦ୍ରୁପଦ ।
ଦ୍ରୁପଦ ବୋଇଲେ ଦ୍ରୋଣ କରିଛି ମୁଁ ଦ୍ରୋଣେ
ଏଣୁ ଶରଣ ପଶୁଛି ମୁଁ ତୋର ଚରଣେ ।

ଅର୍ଜ୍ଜୁନ ବୋଇଲେ ତେତେ ଦେବି ଏକ ଶାସ୍ତି
ଗୁରୁଙ୍କ ବଚନ ଯେଣୁ ଶିଷ୍ୟ ନ ମେଣ୍ଟନ୍ତି ।
ଡୋର ଗୋଟି କେ ବାନ୍ଧିବି ତୋର ବେନି କର
ଏଥକୁ ଭୋ ତାତ ମୋର କୋପ ତୁ ନ କର ।
ଶାସ୍ତି ଦେଖି ତତେ ଦୟା କରିବେ ଯେ ଦ୍ରୋଣ
ଚିର କୋପ ନୁହନ୍ତି ଯେ ଉତ୍ତମ ବ୍ରାହ୍ମଣ ।
ଦ୍ରୁପଦ ବୋଇଲେ ଯେହ୍ନେ ତାହାଙ୍କ ପ୍ରତିଜ୍ଞା
ତୋହର ବୋଲେ କେମନ୍ତେ କରିବୁ ଅବଜ୍ଞା ।
ବାନ୍ଧିଲେ ଅର୍ଜ୍ଜୁନ ତାଙ୍କୁ ପାଟଡୋରି ଘେନି
ଦ୍ରୁପଦ ରାଜନ ଆଗେ ପଛେ ଫାଲଗୁନୀ ।
ନବ ଦିନେ ଚଳିଗଲେ ଯୁଣ ଶତ ତିନି
ମିଳିଲେ ବାରୁଣାବନ୍ତ ରାଜ୍ୟରେ ସେବେନ୍ତି ।
କେଶବାସମାନ ଅଙ୍ଗ ଧୂଳିରେ ଧୂସର
ବିରୂପ କରିଣ ନେଲେ ଗୁରୁଙ୍କ ଛାମୁର ।
ଦ୍ରୁପଦ ରାଜାର କର ବାମ କରେ ଧରି
ଆଖଡ଼ା ଘରେ ପଶିଲେ ଡୋର ବାନ୍ଧିକରି ।
ପଲ୍ୟଙ୍କ ଉପରେ ଗୁରୁ ଅଛନ୍ତି ଯେ ଶୋଇ
ଦ୍ରୁପଦକୁ ଘେନି ପାର୍ଥ ଅଛି ଉଭା ହୋଇ ।
ଗୁରୁଙ୍କର ନିଦ୍ରା ମୁହିଁ ଭାଙ୍ଗିବି କେମନ୍ତେ
ପଲ୍ୟଙ୍କ ଖୁରାରେ ବାନ୍ଧି ବୋଲେ ନରନାଥେ ।
ମୁହିଁ ଯାଉଛି ଯୁଧିଷ୍ଠି ଦେବ ଛାମୁଯାଏ
ତୁ ଏଥେ ଥାଇ ରୋଦନ କରୁଥାଅ ରାୟେ ।
ମହାବିଜ୍ଞ ବ୍ରାହ୍ମଣ ସେ ଦ୍ରୋଣ ମହାଗୁରୁ
ଅବସ୍ଥା ଦେଖିଣ ସେହି ତୋତେ ଦୟା କରୁ ।
ନିସତ ହୋଇ ପଳାଇ ନ ଯାଅ ଦ୍ରୁପଦ
ନାରାଚ ବିନ୍ଧିଲେ ହେବ ଗୁରୁ ଶିରଛେଦ ।
ଯୁଧିଷ୍ଠିର ବିଦୁରଙ୍କୁ ଆଣଇ ମୁଁ ରାଇ
ଉଦ୍ଧାର କରାଇ ଦେବୁ ହୋଇଣ ବିନୟୀ ।
ସେଠାରୁ ବାହାର ହୋଇ ଗଲେକ ହରଷେ
ସଞ୍ଜୟ ବିଦୁର ଭୀଷ୍ମ ଯୁଧିଷ୍ଠିର ପାଶେ ।
ବୋଇଲେ ମୁଁ ଦ୍ରୁପଦକୁ ଆଣିଅଛି ଧରି
ଗୁରୁଙ୍କୁ ସମସ୍ତେ କହି ଦିଅ ମୁକ୍ତ କରି ।
ଏମନ୍ତ ସମୟେ ବୀର କର୍ଣ୍ଣ ଦୁର୍ଯ୍ୟୋଧନ
ଶତ ଭାଇଙ୍କୁ ସଭାରେ ଘେନି ଦୁଃଶାସନ ।
ଆଖଡ଼ାଶାଳରେ ଆସି ମିଳିଲେ ସମସ୍ତେ
ଦେଖିଲେ ଡୋର ଲାଗିଛି ଦ୍ରୁପଦର ହସ୍ତେ ।
ପଲ୍ୟଙ୍କେ ବନ୍ଧା ହୋଇଛି ପଞ୍ଚାଳ ରାଜନ
ଦ୍ରୋଣ ଗୁରୁ କରିଛନ୍ତି ପଲ୍ୟଙ୍କେ ଶୟନ ।
ଧାଇଁ ଯାଇଁ ଦ୍ରୁପଦର ବାଳକୁ ଧରନ୍ତି
ମାରନ୍ତି ଅନେକ ଶାସ୍ତି ତାହାଙ୍କୁ ଦିଅନ୍ତି ।

ମୂର୍ଖ ଦୁର୍ବାର ଅଟନ୍ତି ଧୃତରାଷ୍ଟ୍ର ସୁତେ
ନାରାଚରେ ସାତବେଣ୍ଟି କଲେ କୋପ ଚିତ୍ତେ ।
ମାରନ୍ତି ଠେଲା ଗୋଇଠା ପଛବାହାବାନ୍ଧି
ଅର୍ଜ୍ଜୁନ ରଖ ବୋଲି ସେ ଭୟେ ଉଚ୍ଚେ କାନ୍ଦି ।
ଗୋଳ ଶୁଣି ନିଦ୍ରା ତେଜି ଉଠିଲେକ ଦ୍ରୋଣ
ଦେଖିଲେ ଦ୍ରୁପଦ କେଶବାସକୁ ଧରିଣ ।
ମାରନ୍ତି ଅନ୍ଧ ତନୟେ ଉପରୋଧ ଛାଡ଼ି
ଭୟରେ ସେ ନରପତି ଉଚ୍ଚେ ଛାଡ଼ି ରଡ଼ି ।
ଦ୍ରୋଣ ବୋଇଲେ ନ ମାର ରହ ରହ ବାବା
ଏ ଆମ୍ଭ ମିତ୍ର ଦ୍ରୁପଦ ବାରେ ଛାଡ଼ିଦେବା ।
ପଲ୍ୟଙ୍କେ ଥାଇ ଦ୍ରୁପଦ ଅବସ୍ଥା ଦେଖିଲେ
ଆହା ମିତ୍ର ବୋଲି ବେଗେ ଉଠି କୋଳ କଲେ ।
ତୁ ମୋହର ମଇତ୍ର ହେ ପଞ୍ଚଭୂତ ଆତ୍ମା
ଜାଣୁ ଜାଣୁ ଆପେ ଗଞ୍ଜି ହୋଇଲୁ ମହାତ୍ମା ।
ଦ୍ରୁପଦ ବୋଇଲେ ମୁହିଁ ଅପରାଧୀ ମିତ୍ର
ଦ୍ରୋଣ ବୋଇଲେ ତୁମ୍ଭେ ତ ଅଟ କ୍ଷତ୍ରୀପୁତ୍ର ।
ଆମ୍ଭେ ଭିକ୍ଷାସୀ ବ୍ରାହ୍ମଣ ତୁମ୍ଭ ସମ ନୋହୁ
ମିତ୍ର ବୋଲିବା ଉଚିତ ହେବ ଅବା କାହୁଁ ।
ରାଜା ହୋଇଥିଲେ ସିନା ହୁଅନ୍ତି ମଇତ୍ର
ମିତ୍ର ବୋଲି ଡାକି ଲଜ୍ଜା ପାଇବ ବହୁତ ।
ଏବେ ତ ପାଞ୍ଚାଳ ଦେଶ ହୋଇଲା ଆମ୍ଭର
ତୁମ୍ଭ ସଙ୍ଗେ ମିତ୍ରଯୋଗ୍ୟ ହେଉ କି ବିଚାର ।
ଏ ସମୟେ ଭୀଷ୍ମ ଦ୍ରୋଣ ସଞ୍ଜୟ ବିଦୁର
ଭୀମ ଆଦି ଚାରି ଭାଇ ଘେନି ଯୁଧିଷ୍ଠିର ।
ପ୍ରବେଶ ହୋଇଲେ ଆସି ଆଖଡ଼ା ଶାଳରେ
ଅର୍ଜ୍ଜୁନ ପ୍ରଣାମ କଲେ ଗୁରୁଙ୍କ ପୟରେ ।
ଦ୍ରୋଣ ବୋଇଲେ ବାବୁରେ ଏକା କେତେ ମନ୍ତେ
ସାତ ଅକ୍ଷୌହିଣୀ ବଳ ଦ୍ରୁପଦ ସଙ୍ଗତେ ।
ତାହାନ୍ତ ଜିଣି ଆଣିଲୁ ଦ୍ରୁପଦକୁ ଧରି
ଏସବୁ ବୃତ୍ତାନ୍ତ ମୋତେ କହ ତୁ ବିସ୍ତାରି ।
ଅର୍ଜ୍ଜୁନ ବୋଲେ ଗୁରୁ ହୋ ସମସ୍ତଙ୍କୁ ବାଣେ
ମୋହିତ କରି ବାନ୍ଧିଲି ଦ୍ରୁପଦକୁ ରଣେ ।
ଦ୍ରୋଣ ବୋଇଲେ ଅଦୋଷୀ ପ୍ରାଣୀଙ୍କି ନିୟତ
କରିବାର ଆମ୍ଭର ତ ନୁହଇ ଉଚିତ ।
ଏବେ ସେ କେମନ୍ତେ ପ୍ରାଣ ପାଇବେରେ ବାବୁ
ଅର୍ଜ୍ଜୁନ ବୋଇଲେ ଯେବେ ପୁଣି ଆଜ୍ଞା ଦେବୁ ।
ଏଥେ ଥାଇ ବଞ୍ଚାଇ ମୁଁ ପାରଇ ସମସ୍ତ
ଦ୍ରୋଣେ ବୋଇଲେ କେମନ୍ତେ ବୁଝିବା ତା ସତ୍ୟ ।
ତତକ୍ଷଣେ ଧନୁ ଧରି ବାସବ ତନୁଜ
ତୂଣୀରୁ କାଢ଼ିଲା ବାଛି ଏକଇ ନାରାଚ ।

ମୃତ ସଞ୍ଜୀବନୀ ମନ୍ତ୍ରେ ଜୀବନ୍ୟାସ ଦେଲା
ବହୁତ ତିଆରି ତାକୁ ଗୁଣେ ବସାଇଲା ।
ବିନ୍ଧନ୍ତେ ସେ ଶର ଗୋଟି ଯହୁଁ ଗଲା ଚଳି
ଦ୍ରୁପଦର ଥାଟ ପଡ଼ିଥିବା ସ୍ଥାନେ ମିଳି ।
ସମସ୍ତଙ୍କୁ ଜୀବ ଦେଲା ଜଣେ ନ ଛାଡ଼ିଲା
ହାତୀ ଘୋଡ଼ା ସହିତରେ ଯେତେ ପଡ଼ିଥିଲା ।
ଅର୍ଜ୍ଜୁନକୁ ଧନ୍ୟ ଧନ୍ୟ କହିଗଲେ ଦେଶେ
ନୃପତିଙ୍କୁ ନ ଦେଖି ସେ ରହିଲେ ଭରସେ ।
ଅର୍ଜ୍ଜୁନ ଶର ବାହୁଡ଼ି ପଶିଲା ତୂଣୀରେ
ଦେଖି ଆଚମ୍ବିତ ହେଲେ ଭୀଷ୍ମ ଆଦି ବୀରେ ।
ଦ୍ରୁପଦ ଅବସ୍ଥା ଦେଖି ବୋଇଲେ ଅର୍ଜ୍ଜୁନ
ସାତବେଣ୍ଟି କରି କେହୁ ଦେଲା ଅପମାନ ।
ଗୁରୁଙ୍କ ମଇତ୍ର ଏହି ଅଭିଷେକୀ ରାଜା
ଆମ୍ଭର ଉଚିତ ସିନା ତାଙ୍କ ପାଦ ପୂଜା ।
ଏମନ୍ତ ଶୁଣିଣ ଗୁରୁ ବୋଇଲେ ଅର୍ଜ୍ଜୁନ
ନ ଜାଣି ତାହାକୁ ଦଣ୍ଡ ଦେଲା ଦୁର୍ଯ୍ୟୋଧନ ।
ଏବେ ଦ୍ରୁପଦକୁ ସ୍ନାନ ଭୋଜନ କରାଇ
ଆଣ ମୋହର ପାଶକୁ ମିଳି ସବୁ ଭାଇ ।
ତତକ୍ଷଣେ ଦ୍ରୁପଦକୁ କରାଇଣ ସ୍ନାନ
ପିନ୍ଧାଇଲେ ଦିବ୍ୟ ସରୁ ଦେବାଙ୍ଗ ବସନ ।
ଉତ୍ତମ ପଦାର୍ଥ ଦେଲେ ଭୋଜନ ନିମନ୍ତେ
ଭୋଜନ ସାରି ଦ୍ରୁପଦ ବସିଲେକ ସୁସ୍ଥେ ।
ଅକ୍ଷତ ନେଇ ତାହାଙ୍କୁ କହିଲେକ ଦ୍ରୋଣ
ଏବେ ହୋ ମଇତ୍ର ତୁମ୍ଭେ ଆମ୍ଭେ ଏକ ପ୍ରାଣ ।
ଅଭିମାନ ନ ଘେନିବ ମନରେ ଭୋ ମିତ
ମୋହର ଶିଷ୍ୟ ତୁମ୍ଭର ଅଟନ୍ତି ତ ସୁତ ।
ଏମନ୍ତେ ତିଆରି ତାଙ୍କୁ ଶାଢ଼ୀ ଦେଇ ଶିରେ
ଯାଅ ଯାଅ ମିତ୍ର ଏବେ ତୋର ରାଜପୁରେ ।
ଦ୍ରୁପଦ ସେଠାରୁ ଲଜ୍ଜା ଅଭିମାନ ଘେନି
ଅରଣ୍ୟକୁ ଗଲା ତେଜି ନିଜ ରାଜଧାନୀ ।
ମଳୟ ପର୍ବତ ତଳେ କାଶୀ ନଦୀ ତୀରେ
ଗଉରୀ ଯେ ତପ କରୁଥିଲେ ସେ ସ୍ଥାନରେ ।
ମନେ ବିଚାରେ ରାଜ୍ୟକୁ କିପରି ମୁଁ ଯିବି
ଅମାତ୍ୟ ପାତ୍ରଙ୍କ ମୁଖ କିପରି ଚାହିଁବି ।
ବସିଲା ଜୀବନ ଆଶା ଛାଡ଼ି ଘୋର ତପେ
ରାଜବେଶ ଛାଡ଼ି ବସେ ତପୋଧନ ରୂପେ ।
ପଞ୍ଚଭୂତକୁ ସଞ୍ଜମୀ ବସି ମହାରାୟେ
ରୁଦ୍ରଦେବତା ଚିନ୍ତନ୍ତି ଅଜପାର ଲୟେ ।
ଅଣ ଅକ୍ଷର ନାଥ ଯେ କୃପାଜଳ ସିନ୍ଧୁ
ଅନ୍ଧକ ତାରଣ ନାଥ ମଉଳିଲେ ଇନ୍ଦୁ ।

ସଂସାର ଦର୍ପ ଭାଙ୍ଗିଲା ଯେଉଁ କାମଦେବ
ତାହାକୁ ନାଶିଲୁ ତୋର ନାମ ବାମଦେବ ।
ସଦାନନ୍ଦ ପୁରୁଷ ତୋ ନାମ ସଦାଶିବ
ଦକ୍ଷ ଯଜ୍ଞ ନାଶିଲୁ ତୁ ବହି ତମ ଭାବ ।
ଅଣାକାର ପୁରୁଷ ତୁ ନାଥ ତୋର ଅଙ୍ଗ
ଇଚ୍ଛାରେ ରୂପ ଧଇଲୁ ପ୍ରଭୁ ଧବଳାଙ୍ଗ ।
ଆଦିନାଥ ତୁ ଈଶାନ ଜଗତର ଗୁରୁ
କଳିମଳ ଧ୍ୱଂସିବାକୁ ତୁହି ଚିନ୍ତା କରୁ ।
ଏକଇ କାୟା ତୋହର ସ୍ୱାମୀ ପଞ୍ଚ ଶର
ସୁରପାଦ ନିତ୍ୟ ତୋର ନାମ ଗଙ୍ଗାଧର ।
ସଂସାର ଠାକୁର ତୋର ମହାରୁଦ୍ର ମନ୍ତ୍ର
ଗିରିଜା ବଲ୍ଲଭ ନାମ ପ୍ରକାଶିଲୁ ତନ୍ତ୍ର ।
ପିନାକ ହସ୍ତ ଭୂଷଣ ତୋହର ଉରଗ
କପଟି ମେଖଳ ତୋର ଅନନ୍ତ ଭୁଜଙ୍ଗ ।
ଯୋଗାରୂଢ଼ ପୁରୁଷ ତୁ ନ ଇଚ୍ଛିଲୁ କିଛି
ଯୋଗ ଲୟକୁ କେବଳ ଘେନିଲୁ ତୁ କିଛି ।
ଚରାଚର ଜୀବଜନ୍ତୁ ଆଦି କୀଟ ପୋକ
ଉଲଗ୍ନଶାୟୀ ହୋଇଣ ଭ୍ରମିଲୁ ତ୍ରିଲୋକ ।
ପିନାକ ଧନୁ ଖଟ୍ୱାଙ୍ଗ ଡମ୍ବରୁ ତୋ ହସ୍ତେ
ତାକୁ ଗାଲତୂରୀ ବାଦ୍ୟେ ପକାନ୍ତି ଦୂରିତେ ।
ପ୍ରତିଜ୍ଞା ସାର୍ଥକ ସ୍ୱାମୀ ଦକ୍ଷ ଯଜ୍ଞ ଭଞ୍ଜା
କପିଳା ଗୋବିନ୍ଦାରଣ ବ୍ରହ୍ମାଶିର ଗଞ୍ଜା ।
କବନ୍ଧ ବିଦାରଣ ତୁ ଅନାଦି ଈଶାନ
ନମସ୍ତେ ହେ ବିରୁପାକ୍ଷ ସ୍ୱାମୀ ତ୍ରିଲୋଚନ ।
କରୁଣାକର ତ୍ରୈଲୋକ୍ୟ ଜନ ଚିନ୍ତାମଣି
କୋଟିଏ ଯୁଗକୁ ତୁହି ନିମିଷକେ ମଣି ।
ଶ୍ରୀ ନୀଳକଣ୍ଠ ଚରଣେ ନମାମି ନମାମି
କପିଳାସ ସିଂହଦ୍ୱାରେ ରଖ ମୋତେ ସ୍ୱାମୀ ।
ଭୂଧରଜା ବଲ୍ଲଭ ଶ୍ରୀ ଚରଣରେ ଦାସ
କିଞ୍ଚିତେ ଖଣ୍ଡନ କର ମୋର ମହାପାଶ ।
ଶ୍ରୀ ମହେଶ୍ୱର ରୂପକୁ ସହସ୍ର ଦଇନି
କରଇ ମୁହିଁ ଶାରଳା ଦାସ ଶୂଦ୍ରମୁନି ।

—୦—

## ସଭାରେ କୁରୁ ପାଣ୍ଡବଙ୍କର ଅସ୍ତ୍ରବିଦ୍ୟା ଦେଖାଇବା, କୌରବଙ୍କ ଗଦାଶିକ୍ଷା

ଅଗସ୍ତି ମୁନି କହିଲେ ପୁରାଣ ସଂଯୋଗେ
ଯୁଗପତି ବୈବସ୍ୱତ ମନୁଙ୍କର ଆଗେ ।
ଶ୍ରୀ ମହାଭାରତର ଏ ଆଦ୍ୟପର୍ବ କଥା
ସଂସାର ସିନ୍ଧୁ ନଉକା ମୁକ୍ତି ଫଳ ଦାତା ।
ଯେବଣ ଗ୍ରନ୍ଥ ଶୁଣିଲେ ଆୟୁଷ ବଢ଼ଇ
ଶତ୍ରୁକ୍ଷୟ ଯାଇ ରିପୁଦର୍ପକୁ ଗଞ୍ଜଇ ।
କୁରୁବୀର ମାନଙ୍କର ପ୍ରତିଜ୍ଞା ଶୁଣିଲେ
ବଳରାମ ନାରାୟଣ ଅଗ୍ରତେ କହିଲେ ।
ହସ୍ତିନାରେ କରୁଛନ୍ତି ଦେଖନ୍ତେ ସାଧନା
ଆଖଡ଼ାଶାଳ ଦେଖିବା ଚାଲ ଯାଇ କିନା ।
ତାଳଧ୍ୱଜ ରଥେ ବିଜେ କଲେ ବଳଦେବ
ନନ୍ଦିଘୋଷ ରଥେ ଯାଇ ବିଜୟ ମାଧବ ।
ତାଳଧ୍ୱଜ ରଥେ ଯାଇ ଦାରୁକ ସାରଥି
ନନ୍ଦିଘୋଷକୁ ବାହଇ ଅନାଧୃଷ୍ଟ ରଥି ।
ବସନ୍ତଋତୁ ଆବର ଫାଲଗୁନ ମାସ
ଶୁକ୍ଳପକ୍ଷ ତ୍ରୟୋଦଶୀ ଭୃଗୁଙ୍କ ଦିବସ ।
ରେବତୀ ନକ୍ଷତ୍ର ପୁଣି ବାଣିଜ୍ୟକରଣ
ଇନ୍ଦ୍ରଯୋଗ ଘେନିଯାନ୍ତି କାହ୍ନୁ ସଂକର୍ଷଣ ।
ଦ୍ରୋଣ ଗଲେ ଯେ ପ୍ରୟାଗ ନାମେ ମହାତୀର୍ଥେ
ପାଛୋଟିଗଲେ ଯେ ସାତୋତ୍ତର ଶତଭ୍ରାତେ ।
ଦ୍ରୋଣଙ୍କୁ ନେଇ ଛୁଡ଼ିଲେ ସ୍କନ୍ଦ ନାମେ ବନେ
ପ୍ରବେଶିଲେ ଅଶ୍ୱତ୍ଥାମା କୃପ ତପ ସ୍ଥାନେ ।
ଦେଖିଲେ ଅଶ୍ୱତ୍ଥାମାର ଏକଇ ଆସନ
ଚଉଦ ବରଷ ଏକ ଲୟ ଯେ ବିଧାନ ।
କାହାର ନାମକୁ ସେହି ନ ଧଇଲେ ମନେ
ଶୂନ୍ୟକୁ ଲୟ କରିଣ ଚାହିଁଇ ଗଗନେ ।
ବୋଧଇ ଯେ ଅଣାକାର ସାଧେ ବ୍ରହ୍ମଜ୍ଞାନ
ଏମନ୍ତେ ଚଉଦବର୍ଷ ରହିଥାଇ ଧ୍ୟାନ ।
ପବନକୁ ନିରୋଧି ଯେ ଟେକଇ ଉଜାଣି
ଏକାଦଶ ଇନ୍ଦ୍ରିୟଙ୍କୁ ଏକ କରି ଆଣି ।
ବ୍ୟାସଙ୍ଗୁଳ ଗଦା ବୋଲିଅଛି ଏକ ଶୋଷା
ନିଦ୍ରା ଆଳସ୍ୟ ଆବର ନାହିଁ କ୍ଷୁଧା ତୃଷ୍ଣା ।
ପଞ୍ଚମୁଦ୍ରା ନାଳଦ୍ୱାରା ତିହୁଡ଼ିରେ ବାଟ
କାଳ ଅନଳ ଭେଟିଲେ ପାଟଣା ଶ୍ରୀହଟ ।
ଛନ୍ଦିଣ ପକାଇଲା ସେ ବାଆସ୍ତରୀ ମୁଦ୍ରା
ଆପଦ ଦହନ କଲା ଭାଙ୍ଗି ମହାମୁଦ୍ରା ।
ନିଦ୍ରାପୁରୁଷ ଅଟଇ ତହିଁକି ଯେ କାଳ
ବିନାଶ କରଇ ଏହି ସିନା ଯେ ସକଳ ।
ପବନକୁ ଉଡ଼ାଇଣ ନବଦ୍ୱାର ବାଟେ
କାହାକୁ ବନ୍ଧନ କରି ଶୋଷିବ ଏ ଘଟେ ।
ନବଦ୍ୱାର ନିରୋଧିଣ ବସିଛି ମହାତ୍ମା
ଦେଖି ନ ଦେଖଇ ଶୂନ୍ୟ ଶବଦ ଗାରିମା ।
ଜିହ୍ୱାକୁ ଗୋପନ କରି ଘଣ୍ଟିକାର ମୂଳେ
ତହିଁ ସେ ଅମୃତ ପାନ କରେ ସୁଖକାଳେ ।

ଶୋଷକ ପୁରୁଷ ସାଧି ଉଭୟ କାଳକୁ
ଅମାୟା ରୂପେ ରହିଣ ଚାହିଁଣ ଶୂନ୍ୟକୁ ।
ନାଡ଼ୀ ଯହିଁ ପବନ ଯେ ନାହିଁ ପଞ୍ଚଶିଖା
ନାହିଁ ଅନଳ ଅନଙ୍ଗ ନାହିଁ ବାଟ ରେଖା ।
ନାହିଁ ଗ୍ରାସ ନାହିଁ ଶୋକ ନାହିଁ ନା ପ୍ରୟାସ
ଜିହ୍ୱା ଇନ୍ଦ୍ର ଗୋପ୍ୟ କରି କଲା ଗୃହବାସ ।
ପୁରାଣ ତପ ପାଇଲା ତେଜିଣ ବିକାର
ଆସନ ତେଜି ଉଠିଲେ ପ୍ରଭୁ ନିରାକାର ।
ଶୂନ୍ୟଶବ୍ଦ ହେଲା ବର ମାଗ ଅଶ୍ୱଥାମା
ସମାଧି ଯୋଗେ ଉତ୍ତର ନ ଦେଲେ ମହାତ୍ମା ।
କେବଣ ଭୁବନକୁ ତୁ ବରିଅଛୁ ଇଚ୍ଛା
ମାଗରେ ବର ତୋହର ଯେ ବା ମନୋବାଞ୍ଛା ।
ଅଶ୍ୱଥାମା ବୋଲେ ଉତ୍ପତ୍ତି ହେଲି ଭୁବି
ଏ ପୃଥ୍ୱୀ ଥିବାଯାକେ ମୁଁ ଏହି ମତେ ଥିବି ।
କାଳ କାମ ନିଦ୍ରା ମୋତେ ନ ପାରିବ ଜିଣି
ହେଉ ତୋତେ ପ୍ରାପତ ଯେ ବୋଲି ଦେବ ସ୍ୱାମୀ ।
କୃପାଚାର୍ଯ୍ୟ ହିଁ ମାଗିଲେ ଏହିରୂପେ ବର
ଏ ପୃଥିବୀ ଥିବାଯାଏ ହେବି ମୁଁ ଅମର ।
ଅଶ୍ୱଥାମା କୃପାଚାର୍ଯ୍ୟ ଆହାର ବିହୀନେ
ଉଠିଯାଇ ନ ପାରନ୍ତି ତହୁଁ ଅନ୍ୟସ୍ଥାନେ ।
ଭୀମସେନ କୋଳ କରି ନେଲା ଅଶ୍ୱଥାମା
କନ୍ଧରେ ଘେନିଣ ସେହି କ୍ଷତ୍ରିୟ ମହାତ୍ମା ।
କୃପାଚାର୍ଯ୍ୟଙ୍କୁ ଧରିଣ ବୀର ଦୁଃଶାସନ
କାନ୍ଧେ ବସାଇଲା ଧୃତରାଷ୍ଟ୍ରର ନନ୍ଦନ ।
ଘେନି ଆସୁଅଛନ୍ତି ସେ ବାରୁଣାକୁ ପଥେ
ରାମକୃଷ୍ଣଙ୍କୁ ଭେଟିଲେ କୌସ୍ତୁଭ ପର୍ବତେ ।
ଯୁଧିଷ୍ଠିର ଭୀମ ଆଦି ପଞ୍ଚ ସହୋଦର
ନମସ୍କାର କଲେ ରାମକୃଷ୍ଣଙ୍କ ପୟର ।
କୁରୁବୀରେ ନମସ୍କାର ନ କଲେ ଯେ କେହି
ପ୍ରବେଶ ହେଲେ ବାରୁଣାବନ୍ତ ଗ୍ରାମେ ଯାଇ ।
କୃପ ଅଶ୍ୱଥାମାକୁ ସେ ଅକ୍ଷତେ ବନ୍ଦାଇ
ସ୍ନାନ ଭୋଜନେ ତାହାଙ୍କୁ ସନ୍ତୋଷ କରାଇ ।
ଶ୍ରୀକୃଷ୍ଣ ଭୋଜନ କଲେ କୁନ୍ତୀ ଗୃହେ ରହି
ବଳଦେବ କଲେ ତହିଁ ଅମୃତ ମଣୋହି ।
ସପତପଳ ମଉଳି ବହି କାମପାଳ
ପବନ ଆହାର କରି ବଞ୍ଚନ୍ତି ସେ କାଳ ।
ଭୀଷ୍ମଙ୍କୁ ଚାହିଁ କହିଲେ ଦେବ ସଙ୍କର୍ଷଣ
କି କି ବିଦ୍ୟା ଶିକ୍ଷା କଲେ ରାଜପୁତ୍ରଗଣ ।
ଦେଖିବା ନିମନ୍ତେ ଆମ୍ଭେ ଆସିଅଛୁ ଏଥେ
କି କି ବିଦ୍ୟା ଦେଇଛନ୍ତି ଭରଦ୍ୱାଜସୁତେ ।

ଏମନ୍ତ ଶୁଣି ଗାଙ୍ଗେୟ ବୋଇଲେ ତା ସତ
କି କି ବିଦ୍ୟା ଶିଖିଛନ୍ତି ଦେଖନ୍ତୁ ସମସ୍ତ ।
ଧୃତରାଷ୍ଟ୍ରଙ୍କୁ ବୋଇଲେ ଗଙ୍ଗାର ନନ୍ଦନ
ଆହେ ନରପତି ଶୁଣ ଆମ୍ଭର ବଚନ ।
ରଙ୍ଗସଭା କରି ବିଦ୍ୟା ଦେଖାନ୍ତୁ କୁମରେ
ସଞ୍ଜୟକୁ ଆଜ୍ଞା ଦେଲେ ଅନ୍ଧ ନୃପବରେ ।
ସଞ୍ଜୟ ମନ୍ତ୍ରୀ ତକ୍ଷଣେ ନିର୍ମାଣିଲା ସଭା
ରଙ୍ଗନୀଳ ପତାକାରେ ପାଇଲା ସେ ଶୋଭା ।
ବିଚିତ୍ର ଚାନ୍ଦୁଆମାନ ଟଙ୍ଗାଇଲେ ନେଇ
ଗୃହମାନ ନିର୍ମାଣିଲେ ବଢ଼େଇ ଲଗାଇ ।
ରାଜାମାନଙ୍କର ଗୃହ ମନ୍ତ୍ରୀର ମନ୍ଦିର
ପୁତ୍ରଙ୍କ ନିମନ୍ତେ ହେଲା ଭିନ୍ନ ଭିନ୍ନ ଘର ।
ଚଇତ୍ରମାସ ଯେ କୃଷ୍ଣ ଚତୁର୍ଦ୍ଦଶୀ ଦିନ
ସଭାରେ ବସିଲେ ପାତ୍ର ମନ୍ତ୍ରୀ ସଭାଜନ ।
ସାମନ୍ତ ନୃପତି ଆସି ବସିଲେ ସଭାରେ
ଭୂରିଶ୍ରବା ଭୀଷ୍ମ ଆଦି ଅନ୍ଧ ନୃପବରେ ।
କୃଷ୍ଣ ବଳରାମ ଆସି ବସିଲେ ଆସନେ
ଯୁଧିଷ୍ଠିରଙ୍କୁ ଅନାଇଁ ଗଙ୍ଗାର ନନ୍ଦନେ ।
ବୋଇଲେ ତୁମ୍ଭର ବିଦ୍ୟା ଦେଖାଅ ସଭାରେ
ଶୁଣିଣ ଯୁଧିଷ୍ଠି ତହୁଁ ଉଠି ଖରତରେ ।
ଧନୁଶର ଧରି ବିଦ୍ୟାମାନ ଦେଖାଇଲେ
ଏଥିଉତ୍ତାରେ ସେ ଦୁର୍ଯ୍ୟୋଧନଙ୍କୁ କହିଲେ ।
ଦୁର୍ଯ୍ୟୋଧନ ଦେଖାଇଲା ତାର ବିଦ୍ୟାମାନ
ତଦୁତ୍ତାରେ ଭୀମସେନ ବୀର ଦୁଃଶାସନ ।
ତଦନ୍ତେ ସକଳ ପୁତ୍ର ଜଣେ ଜଣେ ଆସି
ବିଦ୍ୟାମାନ ଦେଖାଇଲେ ସଭାମଧ୍ୟେ ବସି ।
ଶେଷରେ ଅର୍ଜ୍ଜୁନ ଆସି କରେ ଧନୁ ଧରି
ଆଧାନ ସନ୍ଧାନ କଲେ ଗୁଣକୁ ଟଙ୍କାରି ।
ପ୍ରୟୋଗ ଉତ୍ତାରମନ ଦେଖାଇଲେ ତହିଁ
ସମସ୍ତେ ପ୍ରଶଂସା କଲେ ଅର୍ଜ୍ଜୁନଙ୍କୁ ଚାହିଁ ।
ଏଥୁଅନ୍ତେ ଅଶ୍ୱଥାମା ଦ୍ରୋଣଙ୍କ ନନ୍ଦନ
ବିଦ୍ୟା ଦେଖାନ୍ତେ ସନ୍ତୋଷ ହେଲେ ସଭାଜନ ।
ଏମନ୍ତ ସମୟେ କର୍ଣ୍ଣ ମିଳିଲା ସଭାରେ
ବିଦ୍ୟା ତହିଁ ଦେଖାଇଲା ଅନେକ ପ୍ରକାରେ ।
ସମସ୍ତେ ତାହାକୁ ଚାହିଁ କଲେ ଧନ୍ୟ ଧନ୍ୟ
କେ ବୋଇଲା ଏ ଅଟଇ ଅର୍ଜ୍ଜୁନ ସମାନ ।
କେ ବୋଇଲା ଅର୍ଜ୍ଜୁନ ହୁଁ ଭଲ ଜାଣେ ଏହି
କେ ବୋଇଲା ଅଶ୍ୱଥାମା ବିଶେଷ ଜାଣଇ ।
ଏମନ୍ତ ସଭାରେ ଦ୍ୱନ୍ଦ୍ୱ କଲେ ସଭାଜନେ
ଦୁର୍ଯ୍ୟୋଧନ ବୋଇଲା ସେ ଦୁହେଁ ଏହିସ୍ଥାନେ ।

ସମର କରନ୍ତୁ ଭଲ ମନ୍ଦ ଯେ ବାରିବା
କେ ହାରିବ କେ ଜିଣିବ ସାକ୍ଷାତେ ଦେଖିବା ।
ଏ କଥା ଗୋଟି ସବୁରି ମନକୁ ଅଇଲା
ଶୁଣି ଯୁଦ୍ଧ କରିବାକୁ କର୍ଣ୍ଣ ଯେ ଧାଇଁଲା ।
ସଭାରେ ଯେ କୃପାଚାର୍ଯ୍ୟ ବସିଥିଲେ ଉଠି
ବୋଇଲେ ଯେ ନ ଯୋଗାଇ ଏହି କଥା ଗୋଟି ।
ରାଜପୁତ୍ର ସଙ୍ଗେ ରାଜପୁତ୍ର କରେ ପଣ
ମନ୍ତ୍ରୀ ସଙ୍ଗେ ମନ୍ତ୍ରୀ ଯୁଝେ ଏ କଥା ପ୍ରମାଣ ।
ରଥି ସଙ୍ଗେ ରଥି ଯୁଝେ ଯୁଦ୍ଧର ଏ ରୀତି
ଏ କର୍ଣ୍ଣ ଅଟେ କେବଣ ଦେଶର ନୃପତି ।
ଶୁଣି କର୍ଣ୍ଣ ଲାଜପାଇ ବସିଲା ସଭାରେ
ଦୁର୍ଯ୍ୟୋଧନ ବୋଲେ ଯେବେ ଅଛଇ ଶାସ୍ତ୍ରରେ ।
ଆଜିଠାରୁ ଅଙ୍ଗଦେଶେ କଲି ନରପତି
ଏହା କହି ଶାଢ଼ୀ ଦେଲା କର୍ଣ୍ଣ ଶିରେ ଧାତି ।
ଧୃତରାଷ୍ଟ୍ର ଆଜ୍ଞା ଦେଲେ ଏତିକି ଯେ ଦେଉ
ଅନ୍ୟଦିନେ ଦେଖାଇବ ଆଜି ପୁଣି ଥାଉ ।
ରାମକୃଷ୍ଣଙ୍କୁ ପୁଚ୍ଛିଲେ କି ଦେଖିଲ କହ
ରାମ ବୋଇଲେ ଦେଖିଲୁ ଧନୁର୍ବିଦ୍ୟା ରାୟ ।
ଦେଖାଇଲେ ଧନୁ ଶସ୍ତ୍ର ବିଦ୍ୟା ଏ ସମସ୍ତ
ହୋଇନାହିଁ ଏହାଙ୍କର ଜାଣ ଗଦାହସ୍ତ ।
ଏମନ୍ତ କହି ଉଠିଣ ଗଦାକୁ ଧଇଲେ
ଆକର୍ଷଣ କରି ସ୍ୱାମୀ ଗଦା ବୁଲାଇଲେ ।
ବୁଲାନ୍ତେ ଚକ୍ର ପବନ ଶୂନ୍ୟରେ କି ଉଠି
ଆକର୍ଷଣ କରି ସଂହାରିବେ ପୁଣି ସୃଷ୍ଟି ।
ଦେଖି ଦୁର୍ଯ୍ୟୋଧନ ଉଠି ଚରଣେ ପ୍ରଣମି
ତୋର ଗଦାହସ୍ତ ମୋତେ ଶିଖାଇବା ସ୍ୱାମୀ ।
ବୋଇଲେ ଆଖଡ଼ା କର ଯେ ବନ ପର୍ବତେ
ଯାହାର ରାଜି ତହିଁ କି ଯାଉଥାଅ ନିତ୍ୟେ ।
ଅର୍ଜ୍ଜୁନ ବୋଇଲା ସ୍ୱାମୀ ଦ୍ରୋଣ ଆମ୍ଭ ଗୁରୁ
ତାହାଙ୍କ ବିଦ୍ୟାହୁଁ ଆମ୍ଭେ ଆନ ଯେ ନ ଲୋଡୁ ।
ଏକା ଗୁରୁକେ ଅନେକ ବିଦ୍ୟା ଶିଖି ସାଧି
ବ୍ୟାଧି ନାଶକରେ ଯେହ୍ନେ ଏକା ମଉଷଧି ।
ଅପାର ରାଉଳ ଗଲେ ନ ବର୍ତ୍ତଇ ରୋଗୀ
ଅପାର ଅନ୍ନ ଖାଇଲେ ନ ହୁଅଇ ଯୋଗୀ ।
ଅପାର କୁଟୁମ୍ବେ କ୍ରୋଧ କଳି ଉପୁଜଇ
ଅପାର ପ୍ରତିଗ୍ରହେ ଯେ ବିପ୍ର ନାଶଯାଇ ।
ଅପାର ବୁଦ୍ଧିରେ ଜାଣ କାର୍ଯ୍ୟ ହୁଏ ହାନି
ଅପାର ମନ୍ତ୍ର ଘେନିଲେ ହୁଅଇ ଅଜ୍ଞାନୀ ।
ଅପାର ସ୍ତିରୀ ହରିଲେ ଆୟୁ କ୍ଷୟ ପାଇ
ଅପାର ହିଂସାରେ ଦେହ ପତନ ହୁଅଇ ।
ଅପାର ଲୋକେ ଇନ୍ଦୁର ନ ପାରନ୍ତି ମାରି
ଅପାର ତୀର୍ଥ କଲେ ଯେ ହୁଏ ଦେଶାନ୍ତରୀ ।
ଅର୍ଜ୍ଜୁନ ଭାଙ୍ଗିଲା କହି ଅପାରର କଥା
ଅପାର ଅପାର କହି ହେଲା ଜଗଜ୍ଜିତା ।
ନିତ୍ୟ ଦୁର୍ଯ୍ୟୋଧନ ଯାଇଁ ସେ ବନ ପର୍ବତେ
ଗଦା ବିଦ୍ୟା ଶିଖେ ବଳରାମଙ୍କ ସଙ୍ଗତେ ।
ଗଣ୍ଠି ମୁଷ୍ଟି ଆକର୍ଷଣ ସଂହରଣ ଆଦି
ବଳରାମଠାରୁ ଶତ ଭ୍ରାତା ସବୁ ସାଧି ।
ଜୟ ତୁ ଜୟ ତୁ ରାମ ରେବତୀର ସାଇଁ
ସପତ ଫଣାରେ ତୋର ମଉଳି ଶୋଭଇ ।
ହଳଧର ସ୍ୱାମୀ ତୁହି ଅନନ୍ତ ମୂରତି
କୋଟି ସିଂହ ପରାକ୍ରମ ବଳ ଅପ୍ରମିତି ।
ଶରଣ ସୋଦର ତୁହି ଦୁଃଖୀଜନ ବନ୍ଧୁ
ଅଗାଧ ଅପାର ତୋର ମହିମା ଯେ ସିନ୍ଧୁ ।
ମୁଁ ଶାରଳା ଦାସ ତୋର ଚରଣେ ଶରଣ
ସେବକ କରିଣ ରଖ ପ୍ରଭୁ ସଙ୍କର୍ଷଣ ।

—୦—

## ଭାନୁମତୀର ସ୍ୱୟମ୍ବର

ବଦନ୍ତି ଅଗସ୍ତି ଆହୋ ମନୁ ନୃପମଣି
ଶ୍ରୀ ମହାଭାରତ ଆଦିପର୍ବର ଏ ବାଣୀ ।
ବିଦ୍ୟାନଗରୀ ବୋଲିଣ ଦକ୍ଷିଣ କୋଶଳେ
ଭୁମନ୍ୟୁ ବୋଲିଣ ତହିଁ ଅଛି ମହୀପାଳେ ।
ଭୁବନବତୀ ଅଟଇ ତା ଭାରିଯା ନାମ
ପରମ ସାଧବୀ ସେହି କରେ ଧର୍ମ କର୍ମ ।
ଦୁହିତାଏ ହେଲା ତାର ନାମ ଭାନୁମତୀ
ତିନି ଭୁବନରେ ସେହି ଏକା ରୂପବତୀ ।
ପରମ ଜ୍ଞାନବତୀ ଯେ ଅଟଇ ସୁନ୍ଦରୀ
ଶାସ୍ତ୍ରରେ ନିର୍ଜିତା ପୁଣ୍ୟଆତ୍ମା ସୁକୁମାରୀ ।
ବାଲ୍ୟାକାଳରୁ ବଞ୍ଚିଲା କରି କ୍ଷୀରପାନ
କ୍ଷୀର ଆହାରେ ବର୍ତ୍ତଇ ନ ଛୁଅଇଁ ଅନ୍ନ ।
ଦେବାଙ୍ଗ ବସନେ ତାର ନ ବଳଇ ମତି
ନୃପରିଶାସ୍ତ୍ର ବଖାଣ କରୁଥାଇ ନିତି ।
କୋକିଳ ସ୍ୱରକୁ ଜିଣି ବଚନ ସେ ଭାଷେ
ଦେବସ୍ତିରୀ ଦେଖି ଲଜ୍ଜା ପାଇଲେ ଆକାଶେ ।
ଭୁମନ୍ୟୁ ପଚାରଇ ତୁ ସ୍ତରୀକୁଳେ ଜାତ
କାହାକୁ ପ୍ରଦାନ ତେତୋ କରିବା ଗୋ ମାତ ।
ଶୁଣିଣ ବୋଇଲା ତାକୁ କନ୍ୟା ଭାନୁମତୀ
ବିମୁଖ ନ ହୁଅ ତାତ ମୁହିଁ ମହାସତୀ ।
ଆମ୍ଭେ ଚାରିକନ୍ୟା ଅଟୁ ସ୍ୱର୍ଗର ଯୁବତୀ
ଦ୍ୱାପର ଯୁଗରେ ମଧ୍ୟ ଭୁବନେ ଉତ୍ପତ୍ତି ।

ଅହଲ୍ୟା ଯେ ଅରୁନ୍ଧତୀ ରତି ଦମୟନ୍ତୀ
ତ୍ରେତାରେ ସୀତା ସାବିତ୍ରୀ ତାରା ଇନ୍ଦୁମତୀ ।
ଦ୍ୱାପରେ ଯେ ଉପୁଜିଲା ରେବତୀ ରୁକ୍ମିଣୀ
ଭାନୁମତୀ ଦ୍ରୋପଦୀ ଯେ ଚାରି ଏ ବହେଣୀ ।
ତୁ ମୋତେ ଦେଖି ବିମୁଖ ନୁହ ଆହେ ତାତ
ଜଉତୁକ ପାଇଁ ଆମ୍ଭେ ମର୍ତ୍ତ୍ୟପୁରେ ଜାତ ।
ମୋର ଯେତେବେଳେ ତାତ ହୋଇବଟି ଇଚ୍ଛା
ତୋହର ଆଗେ କହଇ ସିନା ମନୋବାଞ୍ଛା ।
ଏ ବଚନ କହନ୍ତେ ଯେ ସମୟେକ ଗଲା
ଏମନ୍ତ ଯେ ଚଉଷଠି ବରଷ ହୋଇଲା ।
ବାଳୁତ ଭାବେ ଖେଳଇ ଘରେ ସେ କୁମାରୀ
ପୁଣି ହିଁ ସେ ଦୁହିତାକୁ ଭୁମନ୍ୟୁ ପଚାରି ।
ମାଗୋ ଏବେ ଆଜ୍ଞା ତୁହି ଦେବୁ କିନା ମୋତେ
କାହାକୁ ପ୍ରଦାନ ମୁହିଁ କରିବଇଁ ତୋତେ ।
ଭାନୁମତୀ ବୋଲେ ଯେବେ ହେଲଣି ଆତୁର
ରାଜାମାନଙ୍କୁ ଅଣାଇ କର ସ୍ୱୟମ୍ବର ।
ଦୁହିତାର ବଚନେ ଯେ ଭାଷେ ନୃପମଣି
ଧଡ଼ ବସ୍ତ୍ର ଥାଉଁ ଗାଢ଼ ନୁହଇ ଦୁଲ୍ଲଣୀ ।
ଲକ୍ଷେ ନୃପତି ଅଛନ୍ତି ଏହି ପୃଥିବୀରେ
ସ୍ୱୟମ୍ବର କଲେ ସର୍ବେ ଆସିବେ ମୋ ପୁରେ ।
ଯାହାକୁ ନ ଆଣିବା ସେ ହେବ ଅବରଣ
ଧର୍ମ ନାଶଯିବ କାର୍ଯ୍ୟ ହେବ ଅକାରଣ ।
ସତ୍ୟଯୁଗେ ଯାଗ କଲେ ଯମଦଗ୍ନି ଯତି
ସହସ୍ରାର୍ଜ୍ଜୁନେ ନବରି ଆଣିଲେ ସବୁନ୍ତି ।
ଏକା ଜଣେ ପୁଣି ଧାଡ଼ିଦେଲା ଯଜ୍ଞକାଳେ
ଶାସ୍ତ୍ରାଘାତେ ପଳାଇଲେ ସର୍ବ ମହୀପାଳେ ।
ଯମଦଗ୍ନିର ସେ ଧରି ଛେଦିଲାକ ଶିର
ଯାଗ ଭାଙ୍ଗିଣ ସମସ୍ତ ଦ୍ରବ୍ୟ କଲା ଚୁର ।
ସ୍ୱୟମ୍ବର ହେବ ସବୁ ଆଣିଲେକ ଯାଇ
କାର୍ଯ୍ୟ ନୋହିଲେଟି ମାଗୋ ଆପେ ନାଶ ଯାଇ ।
ଭାନୁମତୀ ବୋଲେ ସ୍ୱୟମ୍ବର ଯାଗବରେ ।
ଧର୍ମ ନାଶଯାଇ ଯେବେ ଜଣେ ନ ବରିଲେ.
ଭୁମନ୍ୟୁ ବୋଇଲା ମୁହିଁ ଅଟେ ଧନହୀନ ।
ଏତେ ସୈନ୍ୟଙ୍କୁ ପାଳିବି କାହିଁ ମାଗୋ ଅନ୍ନ
କନ୍ୟା ବୋଇଲା ଧନକୁ ନ କରହେ ଚିନ୍ତା ।
ମୁହିଁ ସବୁ ଧନ ଅନ୍ନ ଦେବି ତୋତେ ପିତା ।
ଭୁମନ୍ୟୁ ବୋଇଲା କେହ୍ନେ ସଂପ୍ରତେ ମୁଁ ଯିବି
ପରୀକ୍ଷା କରି ଦେଖିଲେ ତୃପତି ହୋଇବି ।
ଗାତ ଗୋଟିଏ ତୁ ତାତ ନିର୍ମାଣ ଯେ କର
ମୋହର ମନ୍ତ୍ରରେ ପାଣି ଫୁଟାଇଣ ଭର ।
ପାକ ପରଷିଲେ ହେବ ସେ ଅମୃତ ରସ
ସମଦଣ୍ଡ ସୈନ୍ୟଙ୍କୁ ତୋ ଇଚ୍ଛାଏ ପରଷ ।
ଲକ୍ଷେକ ରାଜାର ତାତ ଯେତେକ ସଇନ୍ୟ
ଇଚ୍ଛାଏ ଭୁଞ୍ଜନ୍ତି କିନା ଷଡ଼ରସ ଅନ୍ନ ।
ପରୀକ୍ଷା ନିମନ୍ତେ ମନ୍ତ୍ର ପାଣି ଆଣି ଦେଲେ
ଭୁମନ୍ୟୁ ତା ନେଇ ନିଜ ପାଶେ ବସାଇଲେ ।
ଅମୃତରସ ଯେ ପାକ ହୋଇଲା ଯୁକତେ
ପରଷନ୍ତେ ନ ସରିଲା ସୈନ୍ୟବଳ ଯେତେ ।
ଏକାଦଶ ଅକ୍ଷୌହିଣୀ ଭୁବନ୍ୟୁର ଥାଟ
ଏକା ଯୋଗାଡ଼କେ ଆଉ ନେ ହେଲା ନିଅଣ୍ଟ ।
ଭୁମନ୍ୟୁ ବୋଇଲା ମାଗୋ ଏ ଅତି ଦୁର୍ଲ୍ଲଭ
ମଧ୍ୟ ଭୁବନେ ନୁହଇ ଏକଥା ସମ୍ଭବ ।
କାହାର ପ୍ରସନ୍ନେ ଏହି ମନ୍ତ୍ର ତୁ ଗୋ ପାଇ
କେବଣ ପୁଣ୍ୟବଳେ ଗୋ ଏସନ ଭିଆଇ ।
ଦୁହିତା ବୋଇଲା ତାତ ଶୁଣ ପୂର୍ବ ସ୍ମୃତି
ବ୍ରହ୍ମାଙ୍କର ଭାରିଯା ଯେ ଅଟଇ ସାବିତ୍ରୀ ।
ଆମ୍ଭେ ସାତକନ୍ୟା ଅଟୁ ତାଙ୍କ ପରିବାରୀ
ରୁକ୍ମିଣୀ ଦ୍ରୌପଦୀ ଭାନୁମତୀ ଆଦି କରି ।
ଅରୁନ୍ଧତୀ ରେବତୀ ଯେ ଅଞ୍ଜନା କମଳା
ରନ୍ଧନ ବିଦ୍ୟା ବ୍ରାହ୍ମଣୀ ସୁପ୍ରସନ୍ନେ ଦେଲା ।
ଭୁମନ୍ୟୁ ବୋଇଲେ ମାଗୋ ମିଳିବ କି ଅନ୍ନ
ଧନ ନ ଥିଲେ ନୁହଇ ଅନୁକ୍ଷଣେ ଦାନ ।
ଭାନୁମତୀ ବୋଲେ ନାହିଁ ଧନକୁ ତ ଚିନ୍ତା
ଯେତେ ଧନ ଲାଗିବ ମୁଁ ଦେବି ସିନା ପିତା ।
ଭୁମନ୍ୟୁ ବୋଲେ ପରୀକ୍ଷା କରିଣ ଦେଖିବି
ସ୍ୱୟମ୍ବରକୁ ମୁଁ ସିନା ସ୍ୱୀକାର କରିବି ।
ଭାନୁମତୀ ବୋଲେ ତାତ ବୁହାଇ ପାଷାଣ
ମୋହର ଛାମୁକୁ ତୁମ୍ଭେ ଏହିକ୍ଷଣି ଆଣ ।
ସାତୋଟି ସାଙ୍ଗ ଲାଗିଲେ ଜାଣ ଦଶ ଧରି
ପାଷାଣେକ ଥୋଇଦେଲେ ବୋହି ଆଣିକରି ।
ଭାନୁମତୀ ସମର୍ଜ୍ଜିଲା କରରେ ପାଷାଣ
ହସ୍ତ ଲାଗନ୍ତେ ସୁବର୍ଣ୍ଣ ହେଲା ତତକ୍ଷଣ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ଭୁମନ୍ୟୁ ନୃପତି
ପ୍ରତ୍ୟକ୍ଷଲକ୍ଷ୍ମୀ ହୋଇଛୁ ତୁଗୋ ଉତପତ୍ତି ।
ଭାନୁମତୀ ବୋଲେ ତାତ ଜନ୍ମେ ଜନ୍ମେ ସିଦ୍ଧି
ଦୁଇହସ୍ତେ ଅଛି ମୋର ଶଙ୍ଖ ପଦ୍ମ ନିଧି ।
ମାଙ୍କଡ଼ା ପଥରେ ତାତ ଲାଗିଲେ ମୋ କର
ଯାହା ବାଞ୍ଛା କରିବ ତା ହୋଇବ ନିକର ।
କନ୍ୟା ମାସ ଶୁକ୍ଳପକ୍ଷ ଦଶମୀ ଯେ ତିଥି
ଶରଧ ଉତ୍ସବ ଅନ୍ତେ ଅପର୍ଣ୍ଣା ପାର୍ବତୀ ।

ଯାତ୍ରା ପଣ୍ଡିତ ବାସରେ ଶ୍ରବଣା ନକ୍ଷତ୍ରେ
ସ୍ୱୟମ୍ବର ଅନୁକୂଳ ଘେନି କରପତ୍ରେ ।
ଶୂଦ୍ରକ ନାମେ ମନ୍ତ୍ରୀକୁ ନରପତି ରାଇ
ବୋଲେ ନିମନ୍ତ୍ରଣ କର ସ୍ୱୟମ୍ବର ପାଇଁ ।
ରାଜା ବଚନେ ଶୂଦ୍ରକ ଅନେକ ହରଷ
ଦେଶାଉରଙ୍କୁ ପେଷିଲା ଚଉଦିଗ ଦେଶ ।
ଭାନୁମତୀ ସ୍ୱରୂପେ ସେ ଚିତ୍ରପଟ କଲା
ରାଜାଙ୍କୁ ତା ଦେଖାଇବା ପାଇଁ ତାହା ଦେଲା ।
ମନ୍ତ୍ରୀର ବଚନେ ଥାଳି ଘେନିଗଲେ ଦୂତେ
ରାଜା ନିମନ୍ତ୍ରଣ ବୋଲି କହିଲେ ତୁରିତେ ।
ଭାନୁମତୀ ସ୍ୱୟମ୍ବର ବୋଲିଣ ଜଣାଇ
ଲିଖିତ ଚିତ୍ରପଟକୁ ଛାମୁରେ ଦେଖାଇ ।
ଭାନୁମତୀର ଛାମୁକୁ ବୁହାଇ ପାଷାଣ
କରରେ ଛୁଆଇଁ ପାଣିଦ୍ରବ୍ୟ କରି ପୁଣ ।
ଏମନ୍ତ ରାଜାର ଦ୍ରବ୍ୟ ଅନେକ ହୋଇଲା
ଭଣ୍ଡାରରେ ଥୋଇବାକୁ ଠାବ ନ ପାଇଲା ।
ଅନେକ ବିଶ୍ୱକର୍ମାଙ୍କୁ ଡକାଇ ଆଣିଲା
ତାହାଙ୍କୁ ରାଜା ବହୁତ ରତ୍ନ ବାଣ୍ଟିଦେଲା ।
ଛାୟା ମଣ୍ଡପେକ ଭିଆଇଲେ ଶୁଭଯୋଗେ
ଅକ୍ଷତ ଅର୍ଘ୍ୟମାନ ଯେ ଭିଆଇଲେ ଆଗେ ।
ଅଶ୍ୱଶାଳ ଗଜଶାଳ କରେ ନଦୀ କୂଳେ
ସୁବର୍ଣ୍ଣ କଳସ ଘରେ ଥାପି ଅନୁକୂଳେ ।
ନେତର ପତାକାମାନ ଉଡ଼େ ଫର ଫର
କଦଳୀ ପୋତି ତୋରଣ ବାନ୍ଧି ଦ୍ୱାର ଦ୍ୱାର ।
ଅଶୀ ପଦ୍ମ ଘର ବସେ ଭୁମନ୍ୟୁର ନଗ୍ରେ
ବିଜୟ ଭୁମନ୍ୟୁ ରାଜା ମଣ୍ଡାଇଲା ବ୍ୟଗ୍ରେ ।
ଯେସନେ ଦିଶଇ ଶୋଭା ପୁର ବାରସ୍ୱତୀ
ଇନ୍ଦ୍ରର ଭୁବନ ଏହି କି ଅମରାବତୀ ।
ଗୁଆ ଅକ୍ଷତ ଯେ ପାଇଛନ୍ତି ରାଜାମାନେ
ପ୍ରବେଶ ହୋଇଲେ ଯାଇ ବିଦ୍ୟାନଗ୍ର ସ୍ଥାନେ ।
ପାଦ୍ୟ ଅର୍ଘ୍ୟ ଆଦି ଘେନି ସେ ଭୁମନ୍ୟୁରାଜା
ସମସ୍ତ ରାଜାମାନଙ୍କୁ କଲା ପାଦ ପୂଜା ।
କଳିଙ୍ଗ ଉଡ଼ଙ୍ଗ ଦେଶ ତେଲିଙ୍ଗ ଆବର
ଉଡ଼ଙ୍ଗ ଚୁଡ଼ଙ୍ଗ ବଙ୍ଗଦେଶ ବିଜେ ପୁର ।
ଚିର ଦେଶ ନୀର ଦେଶ ମହାତୃଣ ଦେଶ
ତ୍ରିମୁହୂର୍ତ୍ତ ଭୋଜକଟ ମନ୍ଦାର ନରେଶ ।
କାମାକ୍ଷୀ କାଉଁରୀ ଦେଶ ଡାହାଳ ବେଲାଳ
କୌଶିକୀ ଗଉରୀ ଦେଶ ନେପାଳ ଭୂପାଳ ।
ମାଳବ ଦେଶ କୁଞ୍ଜର ଦେଶ ମରହଟ୍ଟ
ମଗଧ ଦେଶ କର୍ଣ୍ଣାଟ ଦେଶ ମହାରାଷ୍ଟ୍ର ।

ମତ୍ସ୍ୟ ଦେଶ କାଶୀ ଦେଶ ରାଷ୍ଟ୍ର ଗୁଜରାଷ୍ଟ୍ର
କାଶ୍ମୀର ଯେ କନ୍ୟାକୁବ୍‌ଜ ନିର୍ଝର ସୌରାଷ୍ଟ୍ର ।
ନୀଳ ଅନିଳ ଆବର ସୁକାନ୍ତି ଉତ୍କଳ
ମହ୍ଲାର ଗାନ୍ଧାର ଦେଶ ପଞ୍ଚାଳ କୋଶଳ ।
ବ୍ୟୂହ ମଣ୍ଡଳ ଆବର ଶୋଣିତ ମଣ୍ଡଳ
ଚୋଳ ମଣ୍ଡଳ ଯେ ମେରୁ ମଣ୍ଡଳ ସୁଢ଼ଳ ।
ମଧୁମଣ୍ଡଳ ମଳୟ ମଣ୍ଡଳ ମରୁତ
ବାରୁଣାବନ୍ତ ମଣ୍ଡଳ ଗ୍ରାମ ଇନ୍ଦ୍ରପ୍ରସ୍ଥ ।
ଅମରା ମଣ୍ଡଳ ପଦ୍ମ ମଣ୍ଡଳ ଭାସ୍କର
ଧୃତମଣ୍ଡଳ ଧୂମାନ୍ତ ମଣ୍ଡଳ ଈଶ୍ୱର ।
ସ୍ଥାପିଥିଲେ ଯେ ଛତିଶ ମଣ୍ଡଳ ଯଯାତି
ବରଣ ପାଇ ଅଇଲେ ଏସବୁ ନୃପତି ।
ସୋମରାଷ୍ଟ୍ର ମହାରାଷ୍ଟ୍ର ରାଷ୍ଟ୍ର ଧୃତରାଷ୍ଟ୍ର
କନକରାଷ୍ଟ୍ର ଭୈରବରାଷ୍ଟ୍ର ଉଡ଼ରାଷ୍ଟ୍ର ।
ଚିତ୍ରରାଷ୍ଟ୍ର ପୁଞ୍ଜରାଷ୍ଟ୍ର ଦେଶ ଭାନୁରାଷ୍ଟ୍ର
ହଳକରଙ୍ଗରାଷ୍ଟ୍ର ଯେ ନୀଳ ଅଙ୍ଗରାଷ୍ଟ୍ର ।
ସଉରାଷ୍ଟ୍ରକୁ ଘେନିଣ ଏମନ୍ତ ଯେ ବାର
ଭିଆଣ ଅଟଇ ରାଷ୍ଟ୍ରପତିମାନଙ୍କର ।
କାମେଶ୍ୱର ନଗର ଯେ ଉଜାଣି ନଗର
ଶାରଳା ନାମେ ନଗର ଯୋଜନ ନଗର ।
କାଞ୍ଚି ନଗର ଉଦୟ ପୁର ଯେ ନଗର
ବଡ଼ମ୍ବା ନଗର ଆଉ ବିଜୟ ନଗର ।
କୁଣ୍ଡୀ ନଗର ମହେନ୍ଦ୍ର ନଗର ଆବର
ନୀଳ ଅନିଳ ଦେଶ ଯେ ପୁଣି ହିଁ ମନ୍ଦାର ।
ଯେନାବଳୀ ନଗ୍ର ପଦ୍ମଦଳ ନାମେ ନଗ୍ର
ରୁଦ୍ର ନଗ୍ର ବିଷ୍ଣୁ ନଗ୍ର ମଥୁରା ଯେ ନଗ୍ର ।
ସୁତଳ ନଗର ପୁଣି ଯମୁନା ନଗର
ଖଣ୍ଡପୁର ନଗର ଯେ ନଗ୍ର ବିନ୍ଧ୍ୟବର ।
ସୁବଳୟା ନଗର ଯେ ବିଡ଼ାଳ ନଗର
କନଖଳ ନଗର ଯେ ମେଖଳ ନଗର ।
ଏ ଆଦି ଯେତେ ନଗର ରାଜା ପ୍ରିୟବ୍ରତ
ପୂର୍ବରୁ ଭିଆଇଥିଲେ ସେ ରାଜା ସମସ୍ତ ।
ଭୁମନ୍ୟୁ ନଗ୍ରେ ବରଣେ ଯାଇ ବିଜେ କଲେ
ପାଦ୍ୟ ଅର୍ଘ୍ୟ ଦେଇରାଜା ତାହାଙ୍କୁ ପୂଜିଲେ ।
ମହୋଦଧି କୋଶଳ ଯେ ଦକ୍ଷିଣ କୋଶଳ
କୁଞ୍ଜୀଗଳ କୋଶଳ ଯେ ଭୈରବା କୋଶଳ ।
ବୀରବର କୋଶଳ ଯେ ଭୈରବା କୋଶଳ
କାଉଁରୀ କୋଶଳ ଭାରବିଦ୍ୟା ବିଦୁନ୍ନାଳ ।
ମତ୍ସ୍ୟ କୌଶଳ ଆଦର ଉତ୍ତର କୋଶଳ
ମେରୁ କୋଶଳ କୋଶଳ ମୟଳ ଅନିଳ ।

ଭାନୁମତୀ ଯେ କୋଶଳ ନାମେ ଉଦେଗିରି
ଈଶାନ ଭାଗେ ବସଇ ଏ କୋଶଳ ଚାରି ।
ତଳ ଭୁଜଙ୍ଗ କୋଶଳ ଫାଲଗୁନି କୋଶଳ
ଆଗ୍ନି କୋଶଳ ଯୋଜନ କୋଶଳ ସକଳ ।
ପୁରଞ୍ଜୟ ରାଜାଙ୍କର ଭିଆଣ ଏ ସର୍ବ
ବରଣ ପାଇ ଅଇଲେ ସବୁ ନରଦେବ ।
କୋଶଳାଧିପତିମାନେ ଦଣ୍ଡ ଛତ୍ର ସେନି
ଭୁମନ୍ୟୁ ଦେଶେ ମିଳିଲେ ସଙ୍ଗରେ ସଇନି ।
ଉତ୍ତର ପଶ୍ଚିମ ପୂର୍ବ ଦକ୍ଷିଣ ଏ ଚାରି
ସମସ୍ତ ଦେଶୁ ଅଇଲେ ଯେତେ ଦଣ୍ଡଧାରୀ ।
ସବୁନ୍ତି କରନ୍ତି ଏକରୂପେ ରାୟ ପୂଜା
ବର ବେଶରେ ବିଜୟ ହେଲେ ସର୍ବ ରାଜା ।
ସବୁ ନୃପତି ପାଇଲେ ରତ୍ନ ସିଂହାସନ
ରତ୍ନ ଦେଇ ରାଜା ତାଙ୍କୁ କରଇ ସମ୍ମାନ ।
ପଶ୍ଚିମରେ ଦୁଇ ଉଣା ସହସ୍ର ପାଞ୍ଚଶ
ଉତ୍ତରରେ ଏକ ଉଣା ସହସ୍ର ଚାଳିଶ ।
ଦକ୍ଷିଣରେ ଏକା ଉଣା ସହସ୍ର ସପତ
ପୂର୍ବରେ ତିନି ସହସ୍ର ରାଜା ଅବସାର୍ଥ ।
ଏମନ୍ତ ଯେ ଚାରି ଉଣା ଲକ୍ଷେକ ନୃପତି
ଭୁମନ୍ୟୁ ଦେଶେ ପ୍ରବେଶ ସମସ୍ତେ ହୁଅନ୍ତି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଉଡ଼ରାଷ୍ଟ୍ର
ରାକ୍ଷସ ପିଶାଚ ଦୈତ୍ୟ ଆଦି ମରହଟ୍ଟା ।
ଯୁଗ ମହ୍ଲାର କିରାତ ବର୍ବର ନୃପତି
ଗନ୍ଧର୍ବ କିନ୍ନର ଚନ୍ଦ୍ର ସୂର୍ଯ୍ୟ ସମଗୋତ୍ରୀ ।
ହଇହୟ ବନାଉଜ ରୁଦ୍ର ତଇଲଙ୍ଗ
ମହାରାଷ୍ଟ୍ର କୁଞ୍ଚର ଯେ ଆବର ଚୁଡ଼ଙ୍ଗ ।
ଏହାଙ୍କ ମଧ୍ୟରେ ଅଷ୍ଟାଦଶ ବଂଶୀ ଲେଖା
ଆଉ ସବୁ ନରପତି ତାହାଙ୍କର ଶାଖା ।
ସମସ୍ତ ରାଜାଗଣ ଯେ ଯାହା ଥାଟ ଥିଲେ
ସ୍ୱୟମ୍ବର ସଭାମଧ୍ୟେ ଆସି ବିଜେ କଲେ ।
ଦେଖିଣ ସାନନ୍ଦ ହୋଇ ଭୂମନ୍ୟୁ ଭୂପାଳ
ରାଜାଙ୍କୁ ବରଣ କଲା ଦେଇ ରତ୍ନମାଳ ।
ଅନେକ ସୂପକାର ଯେ କରନ୍ତି ରନ୍ଧନ
ମଣୋହି କରନ୍ତି ରାୟେ ସାରି ନିତ୍ୟକର୍ମ ।
ରାଜାଙ୍କୁ ସମ୍ଭାଳି ରାଜେ ଭୂମନ୍ୟୁ ନୃପତି
ଆପେ ଗଲା ଯହିଁ ଅଛି କନ୍ୟା ଭାନୁମତୀ ।
ବିନୟ ଭାବେ ପଚାରେ ନୃପ ଦୁହିତାକୁ
ତୋର ଆଜ୍ଞାରେ ଆଣିଲି ନିମନ୍ତ୍ରି ରାଜାଙ୍କୁ ।
କେମନ୍ତେ ବିଧାନ ହେବ କହ ତଥ୍ୟ ଦରି
ଘେନି ତୋ ଇଚ୍ଛାରେ ବର ଆଣ ମାଳାବରି ।

ଅନେକ ସମ୍ଭାର ଘେନି ବିଜେ କଲେ ନୃପେ
ତୁହି ସେ ବୁଝିବୁ ସିନା ରାଜାଙ୍କୁ ସ୍ୱରୂପେ ।
ଭାନୁମତୀ ବୋଲେ ତାତ କର ଏକ ବୃଦ୍ଧି
ଯାହା କରେ ଅଛି ଶଙ୍ଖନିଧି ପଦ୍ମନିଧି ।
ସେ ରାଜାକୁ ପ୍ରଦାନ ତୁ କରିବୁ ଯେ ମୋତେ
ଭୂମନ୍ୟୁ ବୋଇଲା ତାହା ଜାଣିବି କେମନ୍ତେ ।
ତୁ ଦେଖ ମାତା ଗୋ ଯାଇ ତାଙ୍କ ଚିହ୍ନବର୍ଣ୍ଣ
ତୁ ଗୋ ମାହେଶ୍ୱରୀ ତୋତେ ସବୁ ଦୃଶ୍ୟମାନ ।
ଦୁହିତାକୁ ସମାର୍ଜିଣ ଚଳଇ ଭୂମନ୍ୟୁ
ସଭାମଧ୍ୟେ ବିଜେ ହୋଇ ପୁଲକିତ ତନୁ ।
କନ୍ୟା ଶୁକଳ ଦଶମୀ ଦିନ ଅନୁକୂଳ
ଦୁଇ ମାସରେ ସ୍ଥାପନ କରି ସଭାସ୍ଥଳ ।
ମକର ଶୁକଳପକ୍ଷ ଦଶମୀ ଯେ ତିଥି
ମୃଗଶିରା ନକ୍ଷତ୍ର ଯେ ବାର ବୃହସ୍ପତି ।
ତୈତିଳ ନାମେ କରଣ ପ୍ରୀତି ନାମେ ଯୋଗ
ମକର ସଂକ୍ରାନ୍ତି ଚତୁର୍ଦ୍ଦଶ ଦିନ ଭୋଗ ।
ତାର ଚନ୍ଦ୍ର ବାର ଯୋଗ ନକ୍ଷତ୍ର ବିଚାରି
ଅମୃତ ଯୋଗେ ସଭାରେ ମିଳି ଦଣ୍ଡଧାରୀ ।
ଶ୍ରୀହସ୍ତେ ଅର୍ଘ୍ୟ ଘେନିଣ ଭୂମନ୍ୟୁ ଯେ ରାଜା
ପଞ୍ଚାମୃତେ କରି ନୃପତିଙ୍କ ପାଦପୂଜା ।
ବସନ କୁଣ୍ଡଳ ଦିବ୍ୟ ରତ୍ନମାଳା ଦେଇ
ସକଳ ରାଜାଙ୍କୁ ବର ବେଶ ଯେ କରଇ ।
ଶିରେ ମୁକୁଟ ହୃଦରେ କୁସୁମର ମାଳ
କୁଙ୍କୁମ ଲେପନ ଅଙ୍ଗେ କରି ମହୀପାଳ ।
ସଭା ମଧ୍ୟରେ ପ୍ରବେଶି ଭୂମନ୍ୟୁ ନୃପତି
ସମସ୍ତଙ୍କୁ ବିନୟରେ କରିଣ ପ୍ରଣତି ।
ପୁଣ ପୁଣ ଦଣ୍ଡବତ ପ୍ରଣିପାତ କରି
ମୁଁ ଯହିଁ କି ସ୍ୱୟମ୍ବର କଲି ଦଣ୍ଡଧାରୀ ।
ମୋହର ଦୁହିତା ନାମ ଅଟେ ଭାନୁମତୀ
ତାହାର ଇଚ୍ଛାରେ ସେହି ବରିବ ନୃପତି ।
ଯାହାକୁ ତା ଇଚ୍ଛା ତାକୁ ବରିବ କୁମାରୀ
ମାଳା ଦେଇଣ ବରିଲେ ଦେବି ବିଭା କରି ।
ଏଥକୁ ନ ପୁଣ ଧରାଧରି ହୁଅ ରାୟେ
ଲକ୍ଷେ ରାଜାଙ୍କୁ ମୋହର ଏକ ଦୁହିତାଏ ।
ମାଳା ଦେଇଣ ସୁନ୍ଦରୀ ଧରିବ ଯା ହସ୍ତ
ସେହି ସିନା ହୋଇବ ଯେ ତାର ପ୍ରାଣନାଥ ।
ଏଥିକୁ ସତ୍ୟ ବଚନ କରିବା ଗୋସାଇଁ
ଅଭିମାନ କଲେ କନ୍ୟା ମୁଁ ଆଣିବି ନାହିଁ ।
ରାଜାମାନେ ବୋଇଲେ ଏ ଅଟଇ ଯଥାର୍ଥ
ସବୁ ରାଜା କି ଏଥିରେ ଅଟ ଅପଣ୍ଡିତ ।

ଉଚ୍ଚ ଉଚ୍ଚ ରାଜାଙ୍କର ପ୍ରକୃତି ଯେ ମନ୍ଦ
ବଳବନ୍ତ ହେତୁ ସେହି ଚିନ୍ତନ୍ତି ପ୍ରମାଦ ।
ରାଜାଙ୍କ ବଚନ ଶୁଣି ବୋଲନ୍ତି ଭୂମନ୍ୟୁ
ଏତେକ ପ୍ରମାଦ ସିନା ହୋଇବା ମୋ ଜ୍ଞାନୁ ।
ବାଣାସୁର ବଜ୍ରନାଭ ଯେ କାଳ ଦମନ
ମେରୁଶୃଙ୍ଗ ଶମ୍ବର ଏ ଆଦି ଯାତୁଧାନ ।
ଏମାନେ ବୋଇଲେ ତୁ ନ ଭାଳ ରାୟେ କିଛି
ସ୍ୱୟମ୍ବର ବିଧାନେ ସେ ଏସନେକ ଅଛି ।
ନିମନ୍ତ୍ରଣ କଲେ ପାଇ ଅବଶ୍ୟ ଯହିଁକି
ଏକ କନ୍ୟା ପ୍ରାପତ କି ହୋଇବ ସଭିଙ୍କି ।
ସମସ୍ତ ରାୟେ ବୋଇଲେ ହେଲା ଆମ୍ଭ ସତ୍ୟ
ଯାହାର ସୁଦଶା କର୍ମ ତାକୁ ହେବ ପ୍ରାପ୍ତ ।
ବିଶ୍ୱନାଥଙ୍କୁ ସେବିଣ ଅଛଇ ଯେ ପୂର୍ବେ
ତାହାର ପୁଣ୍ୟ ସମସ୍ତେ ପାଇବେ କି ଏବେ ।
ସମସ୍ତ ନୃପତି ଆମ୍ଭେ ନୋହୁ ଏକା ଗୋତ୍ରୀ
ଜଣେ କନ୍ୟା ପାଇଲେ ସେ ହୋଇବୁ ତୃପତ ।
ଏଥକୁ ଭୀତି ନ କର ରାଜା ତୋର ଚିତ୍ତେ
ଦୁହିତାକୁ ଆଣ ତୋର ସଭାର ସମେତେ ।
ଦେଖିବାକ ବର୍ଣ୍ଣ ଚିହ୍ନ କେମନ୍ତ କୁମାରୀ
ସ୍ୱୟମ୍ବରା ମୁଖ ଦେଖି ଦୁଷ୍କୃତ ଯେ ହରି ।
ରାଜାମାନଙ୍କୁ କରାଇ ଦୃଢ଼ ସତ୍ୟବ୍ରତ
ନିଜ ଭୁବନେ ପ୍ରବେଶ ହେଲା ନରନାଥ ।
ଦୁହିତାକୁ ବେଶଭୂଷା କରାଇ ନୃମଣି
ରତ୍ନ ଖଚିତ ହାନ୍ଦୋଳା ମଧ୍ୟେ ବସ୍ତ୍ର ଟାଣି ।
ଲକ୍ଷେ ଚାମର ଢାଳନ୍ତି ଦାସୀ ଚଉକତି
ଲକ୍ଷେ ଦଣ୍ଡ ଲକ୍ଷେ ନେତ ଚିରାଳ ଉଡ଼ାନ୍ତି ।
ଲକ୍ଷେକ ଜୟ ଶଙ୍ଖ ଯେ ସ୍ଫୁରଇ ଅଗ୍ରତେ
ଧାଇ ପରିବାରିମାନେ ଗୋଡ଼ାନ୍ତି ସଙ୍ଗତେ ।
ସୁବର୍ଣ୍ଣ ଚାଙ୍ଗୁଡ଼ାମାନ ଘେନିଣ କାମିନୀ
ଧାମନ୍ତି କରନ୍ତି ପୁଣି ହୁଳହୁଳି ଧ୍ୱନି ।
ସହସ୍ରେ ବନିତା ନୃତ୍ୟ କରନ୍ତି ଅଗ୍ରତେ
ବିଜୟ ବିଳାସିନୀ ସେ ବରିବା ନିମନ୍ତେ ।
ସଭା ମଧ୍ୟରେ ସୁବର୍ଣ୍ଣ ମେଢ଼ ରହିଅଛି
ବାଳ ଆଦିତ୍ୟ ପ୍ରାୟ ତା ତେଜ ବିରାଜୁଛି ।
ସଭାରେ ଥାଇ ବୋଇଲେ ରାଜା ଜରାସନ୍ଧ
ଅମୂଲ୍ୟ ରୂପ ବର୍ଣ୍ଣ ଏ ଶାରଦୀୟ ଚନ୍ଦ୍ର ।
କନ୍ୟାକୁ ଯେ ଉତ୍ତରାଅ ହାନ୍ଦୋଳର ମଧ୍ୟୁ
ପ୍ରତ୍ୟକ୍ଷେ ନାରାୟଣ ଯେ ହେବେ ପ୍ରାଣବନ୍ଧୁ ।
ରାଜାଙ୍କର ନିରାଧାର ବଚନକୁ ଘେନି
ପାଦେ ଉଭା କରାଇଲେ ମେଢ଼ରେ ନନ୍ଦିନୀ ।

ରାଜାଏ ଦେଖନ୍ତି ନିଷ୍କଳଙ୍କ ଚନ୍ଦ୍ର ତେଜା
କାମବଶେ ମୂର୍ଚ୍ଛାଗତ ଦେଖି ସର୍ବ ରାଜା ।
ସାଧୁ ସାଧୁ ସାଧବୀ ଏ ପ୍ରତ୍ୟକ୍ଷେ ଅପର୍ଣ୍ଣା
ଅନିମିତ୍ତେ ଅଇଲ ଏ ଦେବଯୋଗ୍ୟ ସିନା ।
ଜରାସନ୍ଧ ନରପତି କରଇ ବିଚାର
ଏ ସଭା ମଧ୍ୟରେ ନାହିଁ ଏହା ଯୋଗ୍ୟବର ।
ପ୍ରତ୍ୟକ୍ଷରେ ଦିଗପାଳ ବିଜେ କଲେ ଏଥି
ତାହାଙ୍କ ବଲ୍ଲବ ଅବା ହେବ ଭାନୁମତୀ ।
ମୋହ ବିଚାରେ ନୋହିବ ଏହି କିଛି କାର୍ଯ୍ୟ
ହୋଇବୁ ଦୂଷିତ ଏଥି ଉପୁଜିବ ଲାଜ ।
ନକ୍ଷତ୍ରଗଣ କି ହେବ ଇନ୍ଦ୍ରର ସମାନେ
ରାଜାର ଚିତ୍ତ ବିରସ ସୁନ୍ଦରୀ ଦର୍ଶନେ ।
ଦୁହିତାର ଅଗ୍ରତରେ ବୋଲଇ ଭୂମନ୍ୟୁ
ସ୍ୱୟମ୍ବର କଲି ମାଗୋ ତୋ ଆଜ୍ଞା ପ୍ରମାଣୁ ।
ଧାର୍ମିକ ବଂଶିକ ବିବେକ ଯେ କୁଳଶୀଳ
ଏହା ହୁଁ ପୁଣ୍ୟବନ୍ତ ଯେ ନାହିଁ ରବିତଳ ।
ଏସନ ବିଚାର କରି ମନେ କର ବାଞ୍ଛା
ଯାହାକୁ ପାର ବର ଗୋ ଯେ ତୋହର ଇଚ୍ଛା ।
ପିତାର ବଚନ ଶୁଣି ବୋଲେ ଭାନୁମତୀ
ଶଙ୍ଖ ପଦ୍ମନିଧି ବହେ କେବଣ ନୃପତି ।
ଦୁହିତା ବଚନେ ରାଜା ପଚାରଇ ଯାଇ
କର ପଲ୍ଲବ ଯୋଡ଼ିଣ କହେ ରାଜସାଇଁ ।
ଭୋ ସ୍ୱାମୀ ଆନ ସନ୍ଦେହ ମୋର ନାହିଁ କିଛି
ଏକ ସନ୍ତକ ଦୁହିତା ମୋର ମନେ ବାଛି ।
ଶଙ୍ଖନିଧି ପଦ୍ମନିଧି ଅଛି ଯାର କରେ
ତାହାକୁ ଦୁହିତା ମୋର ବରିବ ସଭାରେ ।
ରାଜାର ବଚନେ ବୋଲେ ରାଜା ଜରାସନ୍ଧ
ଶଙ୍ଖ ପଦ୍ମନିଧି ବହେ ଏକା ରାମଚନ୍ଦ୍ର ।
ମାନବ ଜନ୍ମରେ ନାହିଁ ଏତେକ ଲକ୍ଷଣ
ଶଙ୍ଖ ପଦ୍ମନିଧି କରେ ବହେ ନାରାୟଣ ।
ରାଜା ବଚନେ ବୋଇଲେ ନୃପ କାମେଶ୍ୱର
ମୂର୍ଖପଣେ କହିଲୁ ତୁ ମଗଧ ଈଶ୍ୱର ।
ଶଙ୍ଖନିଧି ପଦ୍ମନିଧି କରେ ଯାର ନାହିଁ
ମୂର୍ଦ୍ଧାଭିଷେକୀ ହୋଇବ ସେ ନୃପତି କାହିଁ ।
ବିଷ୍ଣୁ ଅଂଶ ନ ଥିଲେ ତ ନୋହେ ପୃଥ୍ୱୀପତି
ବିଷ୍ଣୁ କଳା ନ ଥିଲେ କି ଅଭିଷେକୀ ହୁନ୍ତି ।
ମୂର୍ଖ ସ୍ୱଭାବେ ଭୂମନ୍ୟୁ ଜାଣି ନାହିଁ କିଛି
ସବୁରି କରରେ ଶଙ୍ଖ ପଦ୍ମନିଧି ଅଛି ।
କାମେଶ୍ୱରବାକ୍ୟ ବୋଲେ ସେ ଭୂମନ୍ୟୁରାୟେ
ତୋହର ଇଚ୍ଛାଏ ବର ଯାଇଲୁ କି ମାଏ ।

ସ୍ୱୟମ୍ବରେ ବିଜେ କଲେ ନରପତି ଯେତେ
ଶଙ୍ଖ ପଦ୍ମନିଧି ଅଛି ସବୁଙ୍କର ହସ୍ତେ ।
ଭାନୁମତୀ ବୋଲେ ପୁଣି ବୁଝ ଯାଇଁ ତାତ
ଏ ଶିଳା ଗୋଟିକ ଦିଅ ରାଜାଙ୍କର ହସ୍ତ ।
ଯାହାର କର ଲାଗିଲେ ପାଣିଦ୍ରବ୍ୟ ହେବ
ତାହାକୁ ପ୍ରଦାନ କର ସେ ମୋର ବଲ୍ଲଭ ।
ଏସନ ନିଷ୍ଠୁର ଯହୁଁ ବୋଲେ ଭାନୁମତୀ
ପାଷାଣ ଘେନିଣ ଗଲା ଭୂମନ୍ୟୁ ନୃପତି ।
ଜରାସନ୍ଧ ଦମଘୋଷ ଶାଳ୍ୱ କାମେଶ୍ୱର
ପରୀକ୍ଷା ନିମନ୍ତେ ନୃପ ଦେଲା ତାଙ୍କ କର ।
ଦେଲା ଚାରି ଉଣା ଲକ୍ଷେ ରାଜାଙ୍କର କରେ
ପାଷାଣ ଆନ ନୋହିଲା ଦେଖିଲେ ନେତ୍ରରେ ।
ସନ୍ତକ ନାସ୍ତି ଦେଖିଣ ନିନ୍ଦି ଭାନୁମତୀ
ବୋଇଲା ତ ସ୍ୱୟମ୍ବରେ ନୋହିଲି ତୃପତି ।
ମୋର ସ୍ୱଇଚ୍ଛାରେ ଯେବେ ନ ପାଇଲି ବର
ମୋହର ନିମନ୍ତେ ଧ୍ୱଂସ ହୋଇଲୁ ପିଅର ।
ବୋଲେ ନୃପତିଙ୍କ ସଭା ମଧ୍ୟେ ଉଭା ହୋଇ
ଦୁହିତାର ବାଞ୍ଛାସିଦ୍ଧି ନୋହିଲା ଗୋସାଇଁ ।
ମୋ ଠାରେ ତୁମ୍ଭେ ଯେ ଅନୁଗ୍ରହ କରିଥିବା
ଯେ ଯାହାର ଭୁବନକୁ ଏବେ ଚାଲିଯିବା ।
ଶୁଣିଣ ବିରସ ହେଲେ ନରପତିଗଣ
ଜଳୌକା ମୁଖେ ଯେସନେ ଦିଅନ୍ତି ଲବଣ ।
ସଜ୍ଜନ ରାଜାଏ ଯିବାପାଇଁ କଲେ ବାଞ୍ଛା
ଦୁର୍ଜ୍ଜନ ରାଜା ନ କଲେ ଯିବାପାଇଁ ଇଚ୍ଛା ।
ବୋଇଲେ ଯେବେ ଦୁହିତା ନ କରିବ ଦାନ
କିମ୍ବା କଲ ବିଡ଼ମ୍ବନ ଦେଶର ବିଧାନ ।
କେ ବୋଇଲେ ଏ ଭୂମନ୍ୟୁ ରାଜା ମୁଣ୍ଡକାଟି
ବଳେ ଚାଲ ଘେନିଯିବା କନ୍ୟାରତ୍ନ ଗୋଟି ।
ଏସନକ ବିଚାରନ୍ତି ସମସ୍ତ ଦୁର୍ବୁଦ୍ଧି
ଛାଡ଼ିଲେକ ଧର୍ମମାନ ଆଚରି ଅବଧି ।
ଧର ଧର ମାର ମାର ଶୁଭେ ଗୁରୁଗୋଳ
ଉଚ୍ଚବାଚ ଶବଦରେ ପଡ଼ଇ ଚହଳ ।
କନ୍ୟା ନେବାକୁ ଲୋଡ଼ନ୍ତି ଦୁରାଧର୍ଷେବଳେ
ରୈବତ ପର୍ବତେ ଥିଲେ ଧୃତରାଷ୍ଟ୍ର ବାଳେ ।
ବାଟେ ଆସୁ ଗୋଳ ଶୁଣି ଧାଇଁଲେ କୁମାରେ
ଦେଖନ୍ତି ଯେ ମହାଗୋଳ ଭୂମନ୍ୟୁ ରାଜ୍ୟରେ ।
ଘୋର ଶବଦ ଶୁଭଇ ପଡ଼ଇ ଚହଳ
ଭୂମନ୍ୟୁକୁ ବେଢ଼ିଛନ୍ତି ନୃପତି ସକଳ ।
ଭୂମନ୍ୟୁକୁ ବୋଇଲେ ଯେ ଧୃତରାଷ୍ଟ୍ର ବାଳେ
ରାଜାଙ୍କର ଦୁଷ୍ଟ ବୁଦ୍ଧି ଦେଖି ନେତ୍ର ଡୋଳେ ।

ଆମ୍ଭେମାନେ ରାଜା ତୋର ହୋଇବୁ ସହାୟ
ବଳେ କେମନ୍ତେ କନ୍ୟାକୁ ନେବେ ଦୁଷ୍ଟରାୟ ।
ଅନ୍ୟାୟ ଦେଖିଣ କୋପେ ଆଦିତ୍ୟ ନନ୍ଦନ
କରେଣ ଧନୁ ଧଇଲା ମହାବଳୀ କର୍ଣ୍ଣ ।
କେ ବଳେ କନ୍ୟା ନେବରେ କାର ଏଡ଼େ ଦର୍ପ
ଖଗେଶ୍ୱର ଦେଖି ଯେହ୍ନେ ଭୟ କରେ ସର୍ପ ।
ମେରୁର ତୁଲେ ବଡ଼ିମା ଅଟେ ଧନୁର୍ଦ୍ଧର
ଅଭେଦ୍ୟ ବଜ୍ର ଶରୀର କର୍ଣ୍ଣ ମହାବୀର ।
ଗଜପଲ ଦେଖି ଯେହ୍ନେ କେଶରୀ ଗରଜି
କର୍ଣ୍ଣମୂର୍ତ୍ତି ରାଜାଙ୍କର ଦର୍ପ ଦେଲା ଭାଙ୍ଗି ।
ଆରେ ରହ ରହ ବୋଲି ଡାକେ ବୀର ଜରା
ଲକ୍ଷେକ ଯୋଦ୍ଧା ଘେନିଣ ଧାମଇଁ ସେ ତ୍ୱରା ।
ଦ୍ରୋଣଙ୍କ ବିଦ୍ୟା ବଳରେ ବଳବନ୍ତ କର୍ଣ୍ଣ
ନିର୍ଭୟ କ୍ଷତ୍ରିୟ ବୀର କଲା ମହାରଣ ।
ହାବୋଡ଼ା ଶରେକ ଘେନି ମାଇଲା ଜରାକୁ
ସେ ଶସ୍ତ୍ର ତେଜ ଲାଗିଲା ସହସ୍ର ରାଜାଙ୍କୁ ।
ରଥ ଘେନିଣ ପଡ଼ିଲା ମଗଧ ଈଶ୍ୱର
ପଡ଼ିଲେ ଦଶ ସହସ୍ର ରଥି ଯେ ଆବର ।
ଜରାସନ୍ଧ ମୋହ ହେବା ଦେଖି ରାଜାମାନେ
ପଳାନ୍ତେ ଗରଜି କର୍ଣ୍ଣେ ପଶେ ମହାରଣେ ।
ଅନୁକ୍ଷଣେ ନାରାଚ ଯେ କର୍ଣ୍ଣେ ବିନ୍ଧୁ ବିନ୍ଧୁ
ଆଟରେ ଶୁଭଇ ବୀର କର୍ଣ୍ଣ ସାଧୁ ସାଧୁ ।
କର୍ଣ୍ଣ ବଳବୀର୍ଯ୍ୟ ଦେଖି ନୃପତି ଭୂମନ୍ୟୁ
କର୍ଣ୍ଣର ତୁଲେ ନାରାଚ ବିନ୍ଧେ ଘେନି ଧନୁ ।
ଦୁର୍ଯ୍ୟୋଧନ ଦୁଃଶାସନ ଘେନି ଭାଇ ଶତ
କୁନ୍ତ ନାରାଚ ବିନ୍ଧିଲେ ହୋଇ ଧନୁହସ୍ତ ।
ପଣ୍ଡିତ ରାଜା ଯେମାନେ ଗଲେ ଅପସରି
ସମରକୁ ଇଚ୍ଛାକଲେ ସହସ୍ର ଯେ ଚାରି ।
କର୍ଣ୍ଣ ମହିମା ମାନବେ ଦେବେ ଅଗୋଚର
ଭାଙ୍ଗିଲେ ଦୁଷ୍ଟେ କେହି ନ ରହିଲେ ଛାମୁର ।
ରଣେ ଭଙ୍ଗ ଦେଇ ନୃପେ ପଳାଇଲେ ପୁଣି
ଭୂମନ୍ୟୁକୁ ଆଣିଲା ଯେ କୁରୁ ଚୂଡ଼ାମଣି ।
ଦେଖିଣ ପ୍ରଶଂସା ତାକୁ କରଇ ଭୂମନ୍ୟୁ
ସାଧୁ ସାଧୁ ତୁମ୍ଭେମାନେ ଅଟ କାହା ସୁନୁ ।
ଦୟାର ସାଗର ତୁମ୍ଭେ ପର ଦୁଃଖେ ଦୁଃଖୀ
ଭୂମନ୍ୟୁ ନୃପ ପଚାରେ ଦୁହିତାକୁ ଡାକି ।
ଏ କଥା ଯୋଗାଇ କିଗୋ ତୋର ବିଚାରକୁ
ତୋତେ ପ୍ରଦାନ କରିବା ଏ ବୀର କର୍ଣ୍ଣକୁ ।
ଲଜ୍ଜା ସମୁଦ୍ରରୁ ଏ ଗୋ ଉଦ୍ଧାରିଲା ହେଲେ
ଏହାର ସମାନ ଯୋଦ୍ଧା ନାହିଁ ରବି ତଳେ ।

ଧର୍ମେ ଦୟା କରି ରକ୍ଷା କଲା ସିନା ମୋତେ
ମୋହର ଧର୍ମ ଉଚିତ ହେଉ ଦେବି ତୋତେ ।
ପିତାର କଠୋର ବାଣୀ ବିନୟେ ଯେ ଶୁଣି
ସନମତ କଲା ସେହି ରାଜାର ଦୁଲଣୀ ।
ଶ୍ରୀ କରେ ସୁନ୍ଦରୀ ଘେନି ନୀଳୋତ୍ପଳ ମାଳା
କର୍ଣ୍ଣ ଛାମୁରେ ପ୍ରବେଶ ହେଲା ରାଜାବାଳା ।
ରାଧେୟ ବୋଇଲା ମୋତେ ନ ବର ସଙ୍ଗାତ
ଆପେ ଧରିଲାକ ଯାଇ ଭାନୁମତୀ ହାତ ।
ଦୁର୍ଯ୍ୟୋଧନର ଅଗ୍ରତେ କଲା ନେଇ ଉଭା
ଏ କୁରୁନାଥ ଏହାର ଗଳେ ମାଳା ଦେବା ।
ଦୁର୍ଯ୍ୟୋଧନ ବୋଲେ ମିତ୍ର ବରିଛି ତୁମ୍ଭଙ୍କୁ
ତୁମ୍ଭ ଭାରିଯା କେମନ୍ତେ ଦେଉଛ ଆମ୍ଭଙ୍କୁ ।
କର୍ଣ୍ଣ ବୋଇଲା ମୋହର ତୁ ପରମ ଗୁରୁ
ତୁ ଥାଉଁ ରାଜ ଦୁହିତା ମୋତେ ଲୋଡ଼ା କରୁ ।
ଶଙ୍ଖନିଧି ପଦ୍ମନିଧି ତୋର ବେନି ହସ୍ତେ
ଶଙ୍ଖ ପଦ୍ମନିଧି ଅଛି ଏହା କରପତ୍ରେ ।
ମୂର୍ଦ୍ଧାଭିଷେକୀ ଦୁହିତା ଅଟେ ଭାନୁମତୀ
ମାନଗୋବିନ୍ଦ ତୁ ସୋମବଂଶୀ ଚକ୍ରବର୍ତ୍ତୀ ।
ତୋ ଥାଉଁ ରାଜକନ୍ୟା କି ହୋଇବ ମୋହର
ଏ ଭୂମନ୍ୟୁ ନରପତି ରାଜ ରାଜେଶ୍ୱରୀ ।
ରାଜାର କୁମାରୀ ହେବ ରାଜାର ବଲ୍ଲଭୀ
ଅନାଦି ଅପର୍ଣ୍ଣା ମାହେଶ୍ୱରୀ ଏ ସାଧବୀ ।
ଶଙ୍ଖନିଧି ପଦ୍ମନିଧି ଅଛି ଯାର ହସ୍ତେ
ମୁହିଁ ଯେ ତାହାକୁ ବିଭା ହୋଇବି କେମନ୍ତେ ।
ଭିତରେ ହର୍ଷ ବାହାରେ ନାସ୍ତି କରୁଥିଲା
କର୍ଣ୍ଣବାକ୍ୟେ ଦୁର୍ଯ୍ୟୋଧନ ସାନନ୍ଦ ହୋଇଲା ।
ଦୁର୍ଯ୍ୟୋଧନ କରେ ଶଙ୍ଖ ପଦ୍ମନିଧି ଦେଖି
ଆନନ୍ଦ ମନେ ବରଣ କଲା ଶଶି ମୁଖୀ ।
କର୍ଣ୍ଣର ମଇତ୍ରପଣ ଦେଖି ବିଜ୍ଞଜନେ
ଆପଣା ଭାରିଯା ନେଇ ସମର୍ପିଲା ଆନେ ।
କହିବ କି ସ୍ୱଭାବ ହିଁ ଏସନକ ପ୍ରୀତି
କର୍ଣ୍ଣ ଦୁର୍ଯ୍ୟୋଧନଙ୍କର ଶୁଦ୍ଧ ଏକମତି ।
କର୍ଣ୍ଣ ପ୍ରସନ୍ନେ ବରିଲା ଯହୁଁ ରାଜବାଳୀ
ଗଣିକା ଗଣ ନାଚିଲେ ଦେଇ କରତାଳି ।
ପୁରନାରୀମାନେ ମିଳି ହୁଳହୁଳି ଦେଲେ
ଭୁବନବତୀ ଜନନୀ ସାନନ୍ଦ ହୋଇଲେ ।
ଆନନ୍ଦରେ କୋଳେ ଧରି ଆପଣେ ଭୂମନ୍ୟୁ
ବରବେଶ କରାଇଲେ ଗାନ୍ଧାରୀର ସୁନୁ ।
କନ୍ୟା ସ୍ୱୟମ୍ବର ଜାଣି ବ୍ୟାସ ପରାଶର
ଦୁର୍ବାସା ମାର୍କଣ୍ଡ ଆଦି ଘେନି ମୁନିବର ।

ପ୍ରବେଶ ହୋଇଲେ ରାଜା ଭୂମନ୍ୟୁ ମଣ୍ଡଳେ
ଦେଖିଣ ତାହାଙ୍କୁ ପୂଜା କଲେ ମହୀପାଳେ ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣ ଯେ ଦୁର୍ଜ୍ଜୟ
ବେଦ ବ୍ୟାସଙ୍କର ପାଦେ କରିଣ ବିନୟ ।
ପ୍ରଣାମ କରି ତାହାଙ୍କୁ କଲେକ ଆଦର
ବ୍ୟାସ ବୋଇଲେ ଭୂମନ୍ୟୁ ଏ ପୁତ୍ର ଆମ୍ଭର ।
ପଞ୍ଚରାଜ୍ୟ ଠାକୁର ଏ ଅଟେ ସୋମବଂଶୀ
ନିଷ୍କଳଙ୍କ ସୁଲକ୍ଷଣ ରୂପ ଶତ୍ରୁ ହାସୀ ।
ଏ ଜମ୍ବୁଦ୍ୱୀପ ପୃଥ୍ୱୀ କି ଏହି ସେ ଧାରଣ
ଜୁଆଇଁ କଲୁ ତୋହର ପୂର୍ବଭାଗ୍ୟେ ଜାଣ ।
ବ୍ୟାସଙ୍କ ମୁଖରୁ ରାଜା ଏସନକ ଶୁଣି
ଭୋ ଦେବ ମୁଁ ସ୍ୱୟମ୍ବର କଲି ଯେ ନ ଜାଣି ।
ରାଜାଙ୍କୁ ନ ବରିଲା ମୋ ସୁତା ଭାନୁମତୀ
ଆବର ବୋଇଲା ତାତ ଶୁଣ ଯେ ମୋ ପତି ।
ଶଙ୍ଖନିଧି ପଦ୍ମନିଧି ଅଛି ଯାର କରେ
ଏ ବରଣମାଳା ଦେବି ତାହାର ଗଳାରେ ।
ପାଷାଣେ ଯା କର ଲାଗି ହେବ ପାଣି ଦ୍ରବ୍ୟ
ମୁହିଁ ତାହାର ବଲ୍ଲଭୀ ସେ ମୋର ବଲ୍ଲଭ ।
ଏ ଗୁଣବନ୍ତ ଜାଣ ତ ନ ହୋଇଲେ କେହି
ବଳେ ନେବାକୁ ଇଚ୍ଛନ୍ତି ଦୁଷ୍ଟଭାବ ବହି ।
ମୋହର ଧର୍ମ ଉଚିତ ହୋଇଲା ଯୁକତେ
ଏମାନେ କାହୁଁ ଅଇଲେ ଦୟାବହି ଚିତ୍ତେ ।
ବ୍ୟାସ ବୋଇଲେ ସର୍ଜ୍ଜିଛି ଯାହା ପ୍ରଜାପତି
କାହାରି ବୋଲେ ଅନ୍ୟଥା ନୁହଇ ସେ ନୀତି ।
ବହୁ କି କହିବା ରାଜା ତୁ ତ କି ନ ଜାଣୁ
ଶୁଣ ସାବଧାନେ ଆମ୍ଭେ ଶାସ୍ତ୍ର ଯେ ବଖାଣୁ ।
ଆକାଶୁ ମଧ୍ୟ ଭୁବନ ତେଜି ଏ ଭୂତଳେ
ଦେବତା ଉତପତ୍ତି ହୁନ୍ତି କାଳେ କାଳେ ।
ଦୁର୍ଯ୍ୟୋଧନ ବୋଲେ ଏହୁ ଯେବଣ କୁମର
ପ୍ରତ୍ୟକ୍ଷରେ ଏ ପନ୍ନଗ ବିଷ୍ଣୁ ଅବତାର ।
ମହା ନିଶବଦ ବୋଲି ଏକ ବଇକୁଣ୍ଠେ
ପନ୍ନଗ ବିଷ୍ଣୁ ଆସନ ତହିଁ ସେ ନ ତୁଟେ ।
ଶୁଦ୍ଧ ସ୍ଫଟିକବର୍ଣ୍ଣ ସେ ଅଟେ ନିରାକାର
ଦିବାରାତ୍ର ଅନଳସ ଶରୀର ତାଙ୍କର ।
ସ୍ୱର୍ଗ ତେଜି ମର୍ତ୍ତ୍ୟ ତେଜି ପାତାଳକୁ ତେଜି
ସୁତଳ ରସାତଳ ଯେ ଅତିତଳ ଭଜି ।
ଭୁବନେ ଭୁବନେ ରାଜା ତୋର ନାମ ଖ୍ୟାତି
ଯୁଗେ ଯୁଗେ ତୋ ଦୁହିତା ଅଟେ ଭାନୁମତୀ ।
ସୁରଗଣେ ଲୋଭ କରି ମାଗିଲେ ତୁମ୍ଭଙ୍କୁ
ଏ ଭାନୁମତୀକୁ ଦେଲୁ ପନ୍ନଗ ବିଷ୍ଣୁଙ୍କୁ ।

ଭୂତଳ ପୁରେ ଦୁହିତା ତୋର ତପ କଲା
ଲକ୍ଷେକ ବରଷ ନାରାୟଣଙ୍କୁ ଚିନ୍ତିଲା ।
କଠୋର ଦେଖି ପ୍ରସନ୍ନ ହେଲେ ନିରାକାର
ଏ ଭାନୁମତୀ କନ୍ୟାର ଆପେ ହେଲେ ବର ।
ପ୍ରସନ୍ନ ହୋଇ ବୋଇଲେ ସେ ପରମଯୋଗୀ
ଜନ୍ମେ ଜନ୍ମେ ହେବୁ ତୁହି ମୋହର ବଲ୍ଲଭୀ ।
ସେ ଭାନୁମତୀ କି ଘେନି ଗଲେ ନାରାୟଣ
କାଳକ ରହିଲା ଯୋଗ ପୁରୁଷ ସଙ୍ଗେଣ ।
ଶୂଦ୍ରକ ନାମେ ଆଦିତ୍ୟ ସତ୍ୟଯୁଗ ବ୍ରହ୍ମା
ପନ୍ନଗ ବିଷ୍ଣୁଙ୍କୁ ଲୟ କଲା ମହାତମା ।
କାଳେ ହେ ସେ ପୁଣି ଗଲେ ବୈକୁଣ୍ଠ ପୁରକୁ
ସାତମନୁ ଚିନ୍ତିଲା ସେ ପନ୍ନଗ ବିଷ୍ଣୁଙ୍କୁ ।
ଏବେ କଠୋର ତପରେ ପାଇଲା ସମାଧି
ନାରାୟଣ ପୁରୁଷଙ୍କୁ ଚିନ୍ତି ନିରବଧି ।
କଠୋର ତପ ଦେଖିବ ଭାଳି ନିରାକାର
ଭାନୁମତୀ କି ରାଇଣ ଦେଲେ ଏ ଉତ୍ତର ।
ଶୂଦ୍ରକ ବ୍ରହ୍ମା ଚିନ୍ତୁହିଁ ଆମ୍ଭଙ୍କୁ ଦେଖିବ
ବର କାମନା କରିବ ଭୁବନ ନ ଯିବ ।
ଏଥେ ରହିବ ଏ ପୁଣି କଳପି ହୋଇବ
ନବ ସୃଷ୍ଟି କି ତହିଁ କେ ଭିଆଣ କରିଣ ।
ତେଣୁ କରି ଦୃଶ୍ୟ ଆମ୍ଭେ ନୋହିଲୁ ତାହାକୁ
ରାଗେଣ ଲୋଡୁଛି ଶିର କମଳ ଦେବାକୁ ।
ଭାନୁମତୀ ବୋଇଲେ ହେ ଶୁଣିମା ଅନାଦି
ଆକାଶ ହିଁ ସୁଖ ଏଥି କି ଅଛି ସମ୍ବାଦି ।
ପନ୍ନଗ ବିଷ୍ଣୁ ବୋଇଲେ ସ୍ୱର୍ଗ ମର୍ତ୍ତ୍ୟପୁରେ
ଅନେକ ଭୋଗ ଯେ ବିଳସନ୍ତି ଦେବ ନରେ ।
ପୁଣି କାଳେ କାଳେ ମୃତ୍ୟୁ ହୁଅଇ ପ୍ରାପତ
ଜନ୍ତୁପତି ଦଣ୍ଡେ ଯୁଣ ପ୍ରାଣର ବିଘାତ ।
ସୁଖ ଭୋଗକୁ ଯେବଣ ଜନ କରେ ଇଚ୍ଛା
ସ୍ୱର୍ଗ ମର୍ତ୍ତ୍ୟପୁରକୁ ସେ କରେ ମନେ ବାଞ୍ଛା ।
କୃତାନ୍ତକ ଦଣ୍ଡକୁ ଯେ କରେ ମନେ ଭୀତି
ଏହି ଭୁବନେ ସେବଇ ଆମ୍ଭଙ୍କୁ ସେ ଚିନ୍ତି ।
ତୁ ପ୍ରିୟା ଏବେ ଆମ୍ଭର ବଚନେକ କର
ତୁମ୍ଭେ ଉଭା ହୁଅ ସେହି ଧାତାର ଛାମୁର ।
ତୋତେ ଦେଖିଣ ତାହାର ତପଦର୍ପ ଭାଙ୍ଗୁ
ଆମ୍ଭଙ୍କୁ କଠୋର ତପ କରିଣ ନ ଭଜୁ ।
ସେ ପନ୍ନଗ ନାରାୟଣ ବଚନାର୍ଥ ପାଇ
ବେଶ ଭୂଷଣେ ବ୍ରହ୍ମାର ଛାମୁକୁ ଯେ ଯାଇ ।
ଶ୍ରୀକରେ ଘେନିଣ ଅର୍ଘ୍ୟ ଥାଳି ମାହେଶ୍ୱରୀ
ଶୂଦ୍ରକ ବ୍ରହ୍ମା ପାଶରେ ମିଳି ଅବଧାରୀ ।

ଅର୍ଘ୍ୟ ଗୋଟିଏ ନେଇଣ ଦେଲେ ବ୍ରହ୍ମାମାଥେ
ହୁଳହୁଳି ଶବଦକେ କଲେ ପୁରୁଷାର୍ଥେ ।
ଅପର୍ଣ୍ଣାର ହୁଳହୁଳି ପଶିଲା ତା ଗର୍ଭେ
ବିନ୍ଧିଲା ମଦନ ଶର ଘେନି କାମଦେବେ ।
ରେତ ଗଳିତ ହୋଇଲା ଭାଙ୍ଗି ମହାତପ
ଦେଖିଲା ବେଦବର ସେ ମୋହିନୀ ସ୍ୱରୂପ ।
ଧ୍ୟାନେ ଜାଣିଲା ବିଷ୍ଣୁର ଅଟଇ ଏ ମାୟା
କୋପେ ପ୍ରଜ୍ୱଳିତ ସିଦ୍ଧ ସମାଧି ସେ କାୟା ।
ସାତମନୁ ପରିଯନ୍ତେ ତପ ଘୋର କଷ୍ଟ
ନିର୍ଦ୍ଦୟ ନାଥ ତହିଁରେ ନୋହିଲୁ ସନ୍ତୁଷ୍ଟ ।
ପ୍ରସନ୍ନ ନୋହିଲା ଏତେ ଦୃଢ଼ ତପୋମତେ
ନ ଦେଖାଇଲୁ ତୁ ତୋର ରୂପ କଦାଚିତ୍ତେ ।
ମର୍ତ୍ତ୍ୟପୁରେ ଜାତ ହୁଅ ତୁ ମନୁଷ୍ୟ ରୂପେ
ସମସ୍ତେ ଦେଖନ୍ତୁ ତୋତେ ଅଜପେ ଅତପେ ।
ତୁ ଭାନୁମତୀ ଭାଙ୍ଗିଲୁ ମୋର ତପ ରସି
ମଧ୍ୟଭୁବନେ ଉପୁଜ ହୋଇ ତୁ ମାନୁଷୀ ।
ଏ ଦୁଃଖେ ଅର୍ଜିଲା ତପ ଭାଙ୍ଗିଲୁ ମୋହର
ପତିପତ୍ନୀ ତୁମ୍ଭେ ଯୋନିମାର୍ଗେ ଅବତାର ।
ତପ ଧର୍ମ ହୁଡ଼ି ରାମ ଯହୁଁ ଉପୁଜିଲା
ରାଗ ମୋହ ହିଂସାରେ ଯେ ଧର୍ମ ନାଶଗଲା ।
ନାରାୟଣ ଦୃଶ୍ୟ ହେଲେ ଶୂଦ୍ରକ ବ୍ରହ୍ମାକୁ
ବେଦବର କୋପଚିତ୍ତେ ତେଜିଲେ ଆମ୍ଭଙ୍କୁ ।
ରାଗେ ବୋଇଲେ ଆମ୍ଭଙ୍କୁ ନୋହିଲୁ ତୁ ଦୃଶ୍ୟ
ଧୃତରାଷ୍ଟ୍ର କୋଳେ ଜନ୍ମି ମାନବୀ ବିଳସ ।
ଭୂମନ୍ୟୁ ଦୁହିତା ହେଉ ଏହି ଭାନୁମତୀ
ମାନଗୋବିନ୍ଦ ହୋଇବ ମାନଚକ୍ରବର୍ତ୍ତୀ ।
ଅଷ୍ଟଦିନେ ଏ କନ୍ୟାକୁ ବିଭା ହେଉଥିବ
କନ୍ୟା ଅବସ୍ଥା ଏହାର ସବୁକାଳେ ଥିବ ।
ଶୂଦ୍ରକ ବ୍ରହ୍ମା ବଚନ ଏହୁ ପ୍ରତିପାଳି
ମର୍ତ୍ତ୍ୟେ ଜନ୍ମ ଦୁର୍ଯ୍ୟୋଧନ ଏ ତୋହର ବାଳି ।
ବରକନ୍ୟା ବେଶ ହୋଇଥିବ ଆବିରତେ
ଏଥି ଥିବେ ଭାରା ନିଦାରିବା ପରିଯନ୍ତେ ।
ମନୁ ପୁରୁଷକୁ ଚାହିଁ ବଦନ୍ତି ଅଗସ୍ତି
ବ୍ୟାସେ ଛଡ଼ାଇଲେ ନୃପତିର ମନେ ଭ୍ରାନ୍ତି ।
ଭୂମନ୍ୟୁ ସାନନ୍ଦ ହେଲା ବ୍ୟାସଙ୍କ ବଚନେ
ଉତ୍ସବ କରାଏ ରାଜା ବିଭାର ବିଧାନେ ।
ନଗ୍ରେଣ ଅନେକ ବାଦ୍ୟ ମଙ୍ଗଳ ଉତ୍ସବ
ଭୂମନ୍ୟୁ ଯୋଗାଡ଼ କରିଥିଲା ନାନା ଦ୍ରବ୍ୟ ।
ଶଶଧର ଗୋତ୍ରୀ ଅଟେ ବୀର ଦୁର୍ଯ୍ୟୋଧନ
ଉଦ୍ଦାଳକ ଗୋତ୍ରୀ ସେହି ଭୂମନ୍ୟୁ ରାଜନ ।

ଉଦ୍ଧାଳକ ପୁରୋହିତ କରନ୍ତି ଯେ ବିଭା
ବରକୁ କନ୍ୟା ଉଭୟେ ପାଉଛନ୍ତି ଶୋଭା ।
ଭୁମନ୍ୟୁ କୋଳେ ବସିଲା କନ୍ୟା ଭାନୁମତୀ
ବ୍ୟାସଙ୍କ କୋଳେ ବିଜୟ ହେଲେ କୁରୁପତି ।
ଏସନକ ବିଭାଘର କଲେ ନାମ ଗୋତ୍ରେ
ଦେଶକାଳ ଉଚ୍ଚାରିଣ ରାଜ ପୁରୋହିତେ ।
ସ୍ୱୀଉକାର ବରଣ ଏ ଆଦି କର୍ମ ସାରି
ବର ହସ୍ତେ ସମର୍ପିଲେ ନୃପତି କୁମାରୀ ।
କୁଶ ହସ୍ତ କରାଇଣ ରାଜ ପୁରୋହିତେ
ଦକ୍ଷିଣା ବର୍ତ୍ତକ ଶଙ୍ଖେ ଜଳ ତିଳ ହସ୍ତେ ।
ଦୁହିତା ଦେଲୁ ଦକ୍ଷିଣା ଦିଅସି ହେ ରାୟେ
ଯେ ବିଧାନେ ପାରିହେବୁ କର ତା ଉପାୟେ ।
ଶଙ୍ଖେ ଜଳ ତିଳ ଘେନି ନୃପତି ଭୁମନ୍ୟୁ
ପଦ୍ମେକ ଗୋଧନ ଦେଲା ଏକ ଖର୍ବ ଧେନୁ ।
ଚାରିଲକ୍ଷ ଅଶ୍ୱ ଦେଲା ଚୋଖା ଶତେ ବାଜୀ
ପବନୁ ବେଗ ତାଙ୍କର ଅଧିକ ବିରାଜି ।
ଲକ୍ଷେକ ଗଜ ଦେଲା ସେ ସବୁ ଶ୍ୱେତବର୍ଣ୍ଣ
ଲକ୍ଷେକ ଚାମର ସାତ ଭଣ୍ଡାର ରତନ ।
ଲକ୍ଷେକ ସ୍ୱର୍ଣ୍ଣ ଆବର ଲକ୍ଷେ ପରିବାରୀ
ବାଛିଣ ଦେଲା ଗଣିକାଗଣ ନୃତ୍ୟକାରୀ ।
ଲକ୍ଷେ ପାଟଛତ୍ର ଲକ୍ଷେ ଆଲଟ ଉଦଣ୍ଡ
ଆବର ଦେଲାକ ଚାରି ଲକ୍ଷ ପାରିଦଣ୍ଡ ।
ଅୟୁତେକ ରଥ ଦେଲା ମଣି ରତ୍ନେ ସାଜି
ଏକରଥେ ଯୋଚାଅଛି ଚାରି ଚାରି ବାଜୀ ।
ଯଉତୁକ ଦେଇ ପାଣି ଦେଲା ଦଣ୍ଡଧାରୀ
ବେଦବାକ୍ୟ ନାମ ଗୋତ୍ର ମୁଖରେ ଉଚ୍ଚାରି ।
କନ୍ୟା ସମର୍ପି ଦକ୍ଷିଣା ଦେଇଗଲା ରାୟେ
ଲାଜା ହୋମ ଶେଷ କଲେ ମନ୍ତ୍ରରେ ମୁନିଏ ।
ଘୃତ ପାରଣା କଲେ ସେ ବର କନ୍ୟା ବେନି
ମୁନିଜନମାନେ କଲେ ଆଶୀର୍ବାଦ ଧ୍ୱନି ।
ଦୀର୍ଘାୟୁ ହେଲା ଶୁଭରେ ରହ ସୁଲକ୍ଷଣୀ
ଭାଗ୍ୟବତୀମାନେ ଅର୍ଘ୍ୟ ବନ୍ଧାଇଲେ ଆଣି ।
ବିଭା ସାରି ବର କନ୍ୟା ଗଲେ ନିଜପୁରେ
ଯେ ବିଧି ମଣୋହି ଶେଷ କରନ୍ତେ ମନ୍ଦିରେ ।
ଅଷ୍ଟ ଦିବସ ରହିଣ ବିଭାର ସଂଯୋଗେ
ପୁଣି ବିଭାହେଲା ଭାନୁମତୀ ସେହି ବାଗେ ।
ରଥ ଗଜ ଅଶ୍ୱ ଗାଭୀ ସଇନ୍ୟ ପଦାତି
ଭାଳନ୍ତି ଘେନି ହସ୍ତିନାପୁରେ କୁରୁପତି ।
ପ୍ରବେଶ ହୋଇଲେ ଯାଇ କୁଞ୍ଜଗଳ ଦେଶେ
ଭୀଷ୍ମ ବିଦୁର କହିଲେ ଧୃତରାଷ୍ଟ୍ର ପାଶେ ।

ଶୁଣ ଦେବ ସାବଧାନେ କହଇ ସଞ୍ଜୟ
ବଡ଼ ସମାରୋହେ ଆସେ ତୋହର ତନୟ ।
ଭାନୁମତୀ ଦେଶେ ଅଛି ଭୁମନ୍ୟୁ ଯେ ରାଜା
ଦକ୍ଷିଣ କୋଶଳେ ସେହୁ ପାଏ ପାଦ ପୂଜା ।
ତାହାର ଦୁହିତା ନାମ ଅଟେ ଭାନୁମତୀ
ଦୁର୍ଯ୍ୟୋଧନକୁ ପ୍ରଦାନ କଲା ନରପତି ।
କନ୍ୟାକୁ ଘେନି ଆସଇ ଅନେକ ସମ୍ଭାରେ
ବହୁତ ଯୌତୁକ ଦେଇଅଛି ନୃପବରେ ।
କନ୍ୟା ଘେନିଣ ପ୍ରବେଶ ହେଲା ନିଜ ଦେଶେ
ଶୁଣିଣ ଅନ୍ଧ ରାଜନ ଅନେକ ହରଷେ ।
ବୋଇଲେ ପୁରେ ଉତ୍ସବ କରାଅ ବିଦୂର
ପୁତ୍ର ଉଦିତ ହୋଇଲା ଯେବେଟି ମୋହର ।
ରାକାର ଆଜ୍ଞାରେ ଗଲା ଅମୃତବତୀ ବଳା
ନଗ୍ରେ ଉତ୍ସବ କରାନ୍ତି ହୋଇ ମେଳାମେଳା ।
ହାଟ ବାଟ ଦାଣ୍ଡ ଘାଟ ସବୁ ନିଜ କରି
ସୁବର୍ଣ୍ଣ କଳସମାନ ଥାପି ପୁର ଦ୍ୱାରି ।
ଅନେକ ଜନ ମିଳିଣ ଧାମନ୍ତି ଗହଳେ
ଅତି ଆନନ୍ଦ ଉପୁଜେ ସବୁରି ମନରେ ।
ହସ୍ତିନାରେ ଥାଟ ଘେନି ଭୀମ ଯେ ଯୁଧିଷ୍ଠି
ଅନେକ ସମାରୋହରେ ଯାଆନ୍ତି ପାଛୋଟି ।
ତାହାଙ୍କୁ ସେ ଇନ୍ଦ୍ରପ୍ରସ୍ଥେ ଭେଟିଲେକ ଯାଇ
ଭୀଷ୍ମ ଆଶ୍ଚର୍ଯ୍ୟ ହୋଇଲେ ତାହାଙ୍କୁ ଅନାଇଁ ।
ଦୁର୍ଯ୍ୟୋଧନ ରାଜା ବିଜେ ହସ୍ତୀର ଉପରେ
ଅଙ୍ଗେ ଅଳଙ୍କାର ଭାନୁମତୀ ଅଛି କୋଳେ ।
ସମୁଦ୍ର ମନ୍ଥନେ ଯେହ୍ନେ ଲକ୍ଷ୍ମୀ ନାରାୟଣ
ତେସନେକ ବର କନ୍ୟା ଦିଶନ୍ତି ଶୋଭନ ।
ଚନ୍ଦ୍ରର କୋଳେ ଯେସନେ ଦିଶଇ ରୋହିଣୀ
ଗଙ୍ଗାଙ୍କୁ ଘେନି କି ବିଜେ ହେଲେ ଶୂଳପାଣି ।
ରତିଙ୍କି ଘେନି ଯେସନେ ବିଜୟ କନ୍ଦର୍ପ
ବର କନ୍ୟାକୁ ଦେଖିଲେ ତେସନ ସ୍ୱରୂପ ।
ଅନେକ ବୀର ତୂରୀ ଯେ ବାଜଇ ଉଚ୍ଛୁଳି
ଗଣିକାଗଣ ଆନନ୍ଦେ ଦ୍ୟନ୍ତି ହୁଳହୁଳି ।
ଶଙ୍ଖ ମହୁରୀ ଶବଦ ଘନ ଘନ ସ୍ୱରେ
ମଙ୍ଗଳ ଗୀତ ଗାୟନ କରନ୍ତି ସୁସ୍ୱରେ ।
ବାଜୀ ଖେଳଙ୍କୁ ଦେଖାନ୍ତି ଆନନ୍ଦେ ରାଉତେ
ବୁଲାନ୍ତି ଲାଙ୍କିଆ ଅସିପତ୍ର ଧରି ହସ୍ତେ ।
ଆସନେ ଏସନ ସମାରୋହେ ଦଣ୍ଡ ପୂରି
ହରଷେ ଗୋଡ଼ାନ୍ତି ପଛେ ପଛେ ନରନାରୀ ।
ବୋଲନ୍ତି ଏବେ ଏ ବେଶ ହସ୍ତିନା ମୋହିଲା
ପଣ୍ଡୁ ବନବାସ ଗଲାଦିନୁ ସେ ନ ଥିଲା ।

ଚକ୍ଷୁରେ ଦାରିଦ୍ର୍ୟ ଫିଟିଗଲା ଏହା ଦେଖି
ଏବେ ଏ ହସ୍ତିନା ରାଜ୍ୟ ହେବ ବଡ଼ ସୁଖୀ ।
ଅନେକ ସାନନ୍ଦ ହୋଇ ହରଷ ମାନସ
ଦଧିମଙ୍ଗଳ କରାଇ ରାଜ୍ୟରେ ପ୍ରବେଶ ।
ସଙ୍ଗେ ସୁଲକ୍ଷଣୀ ଘେନି ବିଜୟ ଗାନ୍ଧାରୀ
ହସ୍ତରେ ଅର୍ଘ୍ୟ ଘେନିଣ ଶୁଭ ଅବଧାରୀ ।
ହସ୍ତରୁ ଓହ୍ଲାଇ ଧରି ଭାନୁମତୀ ହସ୍ତ
ଗଲେ ଯେ ଆସ୍ଥାନେ ବିଜେ କରିଛନ୍ତି ତାତ ।
ଦୁର୍ଯ୍ୟୋଧନ ବୋଇଲେ ହେ ଶୁଣ ଆଗୋ ମାଏ
ଜନମ ଅନ୍ଧ ହୋଇଲେ ଧୃତରାଷ୍ଟ୍ର ରାୟେ ।
ଚକ୍ଷୁ ଥାଉ ଥାଉ ଅନ୍ଧ ହୋଇଛ ଆପଣ
ଅନ୍ଧ ପଟଳ କାଢ଼ ଗୋ ଆମ୍ଭ ବାଣୀ ଶୁଣ ।
ଆମ୍ଭଙ୍କୁ ଯେ ଉତପତ୍ତି କଲ ଗର୍ଭଗତେ
ଚକ୍ଷୁ ଥାଉଁ ସମ୍ପଦ ନ ଦେଖିବ କେମନ୍ତେ ।
ସ୍ୱାମୀର ଅପମାନ ଗୋ ଏଥୁଁ ନୁହେଁ ବଡ଼
ସମ୍ପଦ ଦେଖିବ ଅନ୍ଧପଟଳ ଗୋ କାଢ଼ ।
ଭାନୁମତୀ ଦେଶର ଯେ ଭୁମନ୍ୟୁ ନୃପତି
ତାହାଙ୍କ ଦୁହିତା ନାମ ଅଟେ ଭାନୁମତୀ ।
କର୍ଣ୍ଣକୁ ପ୍ରଦାନ କରୁଥିଲେ ସେ କୁମାରୀ
ବିଭା ନୋହି ଦେଲା ମୋତେ ଅନୁଗ୍ରହ କରି ।
ତ୍ରୈଲୋକ୍ୟ ମୋହିନୀ ସେହି ଅଟେ ରୂପବତୀ
ଶଙ୍ଖ ପଦ୍ମନିଧି ବେନିକରେ ବିରାଜନ୍ତି ।
ପାଷାଣେ ହସ୍ତ ଲାଗିଲେ ହୁଏ ପାଣିଦ୍ରବ୍ୟ
ଏଡ଼େ ସମ୍ପଦ କେମନ୍ତେ ମାଗୋ ନ ଦେଖିବ ।
କ୍ଷଣେ ଅନ୍ଧ ପଟଳ ଗୋ କାଢ଼ି ଦେଖ ନେତ୍ରେ
ଆମ୍ଭଙ୍କୁ ଅର୍ଘ୍ୟଦେଇ ଗୋ ପଛେ ବାନ୍ଧ ଯତ୍ନେ ।
ଗାନ୍ଧାରୀ ବୋଇଲେ କିସ ସମ୍ପଦ ଦେଖିବି
ବିପଦ ଦେଖିବି ପୁଣ କେମନ୍ତେ ଛାଡ଼ିବି ।
ଏହି ସମ୍ପଦକୁ ଚିର ବୁଝୁଅଛୁ ବାଳ
ଏ ସମ୍ପଦ ନ ରହିବ ତୋର ଚିରକାଳ ।
ଜନ୍ମକାଳେ ଦେଖିଲି ମୁଁ ତୋ ଦୁଷ୍ଟ ପ୍ରକୃତି
ତୁମ୍ଭରି ଯେତେକ କଥା ଦେଖଇ ଅନୀତି ।
ବିଦୁର କହିଲା ମୋତେ ପରମାର୍ଥ ବାଣୀ
ଅନ୍ଧପଟଳ ବାନ୍ଧିଲି ତା ବଚନ ଶୁଣି ।
ହରଷ ବିରସ ବାବୁ ନ କରାଅ ମୋତେ
ସମ୍ପଦ ନ ରହେ ଚିରକାଳ ପରିଯନ୍ତେ ।
ଗାନ୍ଧାରୀ କହିଲା ଯହୁଁ ନିରପେକ୍ଷ ବାଣୀ
ଦୁର୍ଯ୍ୟୋଧନ କୋପକଲା ସେ ବଚନ ଶୁଣି ।
ଭାନୁମତୀକୁ ଘେନିଣ ବିଜୟେ ଭୁବନେ
ସଞ୍ଜୟ କହିଲେ ଧୃତରାଷ୍ଟ୍ର ସନ୍ନିଧାନେ ।
ବଡ଼ ସମ୍ପଦ ଅଜିବ ଏ ତୋହର ପୁତ୍ର
ରାଜ୍ୟେ ପଶନ୍ତେ ଦିଶିଲା ଇନ୍ଦ୍ରର ସଞ୍ଜାତ ।
ଶଚୀ ପ୍ରାୟ ଶୋଭା ଦିଶେ ଭୁମନ୍ୟୁ ନନ୍ଦିନୀ
ଇନ୍ଦ୍ର କୋଳେ ଶଚୀଥିବା ପ୍ରାୟେ ସେହି ବେନି ।
ସାନନ୍ଦ ହୋଇଲେ ଶୁଣି ଅନ୍ଧ ନରପତି
ଜୟ ତୁ ଜୟ ଶାରଳା ଦେବୀ ଗୋ ପାର୍ବତୀ ।
ଯଜ୍ଞେ କାୟା ବିନାଶିଲୁ ସ୍ୱାମୀ ଅପମାନେ
ସ୍ୱାମୀର ବିରହ ସହି ନ ପାରି ଆପଣେ ।
ଜନମିଲୁ ଆସି ପୁଣି ହିମାଳୟ ଘରେ
ରହିଲୁ ଗୋ ମାତା ଦେବୀ ମନର ଉଦରେ ।
ତପ କରି ସ୍ୱାଧୀଙ୍କର ପାଇଲୁ ଗୋ ଭେଟ
ଭୋଳାନାଥ ସ୍ୱାମୀ ମନ କଲୁ ଗୋ ଉଚ୍ଚାଟ ।
ଦେବତାଏ ଆସି ତୋତେ କଲେ ବହୁ ସ୍ତୁତି
ପୁତ୍ରେକ ପ୍ରଦାନ ତାକୁ କଲୁ ହୈମବତୀ ।
ସ୍କନ୍ଧ ଜନନୀ ନାମକୁ ବହିଲୁ ସେ ଦିନୁ
ଦେବଥାଟେ ସେନାପତି ହେଲା ତୋର ସୁନୁ ।
ତାଡ଼କା ଅସୁର ବଧ କଲା ତୋ କୁମର
ଜନ୍ମେ ଜନ୍ମେ ମୁହିଁ ତୋର ଚରଣେ କିଙ୍କର ।
ତେଣୁ ମୋ ନାମ ଶାରଳା ଦାସ ହେଲା ମାତ
ଜନମ କାଳରୁ ମୁହିଁ ମୂର୍ଖ ଅପଣ୍ଡିତ ।
ଏ ଭାରତ ଲେଖିବାକୁ ମୋର କି ଶକତି
ତୋହର କୃପାରୁ ସିନା ବଳିଲା ମୋ ମତି ।
ସଦା ତୋହର ଚରଣେ ମୋହର ଦଇନୀ
ଶାରଳା ଦାସ ମୋହର ନାମ ଶୂଦ୍ରମୁନି ।

—o—

## କୁରୁପାଣ୍ଡବଙ୍କର ଝିମାଣି ଖେଳ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ଭାନୁମତୀକୁ ପାଇଣ ଧୃତରାଷ୍ଟ୍ର ସୁନୁ ।
ଆପଣାକୁ ମନେ ମନେ କରି ବଡ଼ ଜ୍ଞାନ
କାହାକୁ ନମସ୍କାର ନ କରେ ଦୁର୍ଯ୍ୟୋଧନ ।
ସବୁବେଳେ ବରବେଶ ସେହି ହୋଇଥାଇ
ଆଠଦିନେ ପୁନରପି ଥରେ ବିଭାହୋଇ ।
ବଳରାମଙ୍କ ତହୁଁ ସେ ଗଦାବିଦ୍ୟା ପାଇ
କାହାକୁ ଯେ ନ ଗଣନ୍ତି ତାର ଶତଭାଇ ।
ଆଖଡ଼ାରେ ଗଦାଯୁଦ୍ଧ କରନ୍ତି ସେ ନିତି
ଭୀମ ଦୁଃଶାସନର ଯେ ହୋଇଲା ଅପ୍ରୀତି ।
କର୍ଣ୍ଣ ଅର୍ଜ୍ଜୁନ ଏ ଦୁହେଁ ଉପେକ୍ଷିଲେ ଭାବ
ଯୁଧିଷ୍ଠି ଦୁର୍ଯ୍ୟୋଧନର ନାହିଁ ନା ଅଭାବ ।
ଇନ୍ଦ୍ରପ୍ରସ୍ଥ ଆଖଡ଼ାରେ ହୋଇ କୁତୁହଳ
ଭିଆଇଲେ ଯେ ଝିମାଣି ନାମେ ଏକ ଖେଳ ।

ଯୁଧିଷ୍ଠିର ଦୁର୍ଯ୍ୟୋଧନ ହେଲା ମୂଳ ଗଣ୍ଡି
ଭୀମ ଦୁଃଶାସନ ଧରି କାଠି ଖଣ୍ଡି ଖଣ୍ଡି ।
କର୍ଣ୍ଣ ଅର୍ଜୁନ ଏ ଦୁହେଁ ଗଲେ ଏକଯୋଗେ
ଦୁଃଶାସନ ପଡ଼ିଲେ ଏ ଦୁର୍ଯ୍ୟୋଧନ ଭାଗେ ।
ସହଦେବ ଶଲ୍ୟ ଗଲେ ବଣ୍ଟା ବଣ୍ଟି ହୋଇ
ଏ ଅନୁକ୍ରମେ ନକୁଳ ଅଶ୍ୱତ୍ଥାମା ଦୁଇ ।
ଦୁର୍ଯ୍ୟୋଧନ ଭାଗେ ଗଲେ ଅଶ୍ୱତ୍ଥାମା ଶଲ୍ୟ
ଏସନେ ବାଣ୍ଟ ହୁଅନ୍ତି କରି ଧର୍ମଗୁଳ ।
ଭୀମ ଦୁଃଶାସନ ଦୁହେଁ କଲେ ତହିଁ କକ୍ଷା
ଆମ୍ଭର ଭାଗ ନିରସ ତୁମ୍ଭର ଅପେକ୍ଷା ।
ଭୀମସେନ ନ ସହିଲା ଦୁଃଶାର ବଚନ
ଏଥିପାଇଁ ତୋର କିମ୍ପା ବିରସ ଯେ ମନ ।
ଶଲ୍ୟ କୃପ ଅଶ୍ୱତ୍ଥାମା କର୍ଣ୍ଣର ସହିତ
କଚ୍ଛ ହୁଅ ତୁମ୍ଭେ ପଞ୍ଚୋତ୍ତର ଶତ ଭ୍ରାତ ।
ଆମ୍ଭେ ପାଞ୍ଚଭାଇ ପଛେ ହେଉ ଏକ କତି
ଖେଳର ଚରିତ ଆଜ ଜାଣିବା ଯୁକତି ।
ଭୀମ ବାକ୍ୟେ ଦୁର୍ଯ୍ୟୋଧନ କଲା ସନମତ
ପଶ୍ଚିମେ ରହିଲେ ପଞ୍ଚୋତ୍ତର ଶତ ଭ୍ରାତ ।
ପୂର୍ବେ ଗଲେ ଯୁଧିଷ୍ଠିର ଘେନି ପାଞ୍ଚଭାଇ
ଦୁଇପାର୍ଶ୍ୱେ ଗୁଳା ଦେଲେ ଗାରକାଟି ଦେଇ ।
ଈଶାନେ ଯୁଧିଷ୍ଠି ଭୀମସେନ ପଛଆଡ଼େ
ବଢ଼ିଲାକ ଉଛବାଚ ଝିମାଣିର ଖେଳେ ।
ପ୍ରଥମରେ ଗଡ଼ାଇଲା ବୀର ଦୁଃଶାସନ
ପଳାନ୍ତି ପାଞ୍ଚେ ଯେସନେ ଚଳଇ ପବନ ।
ବନଚର ଦେଖି ଯେହ୍ନେ ଖେଦଇ ହରିଣୀ
ନିଃଶ୍ୱାସ ଧରି ଖେଦଇ ଦୁଃଶା ବୀରମଣି ।
ରେ ରେ କାର କରି ସେହି ଧାଇଁଲାକ ଖେଦି
ଯୁଧିଷ୍ଠିରଙ୍କୁ ମାଇଲା ଚିରାମାରି କୁଦି ।
ଅଙ୍କାନେ ପଡ଼ିଲେ ଖାଇ ତା ଚାପୋଡ଼ା ଘାତ
ନାସିକା ବେନି ପୁଡ଼ାରୁ ବହିଲା ଶୋଣିତ ।
ମାରିକରି ଦୁଃଶାସନ ଆସଇ ଲେଉଟି
ଆରେ ଆରେ ବୋଲି ଭୀମ ଗୋଡ଼ାଇଲା ଉଠି ।
ମଧ୍ୟ ଦାଣ୍ଡରେ ମାଇଲା ସେ ଦୁଃଶାସନକୁ
ଏକ ପ୍ରହାରକେ ଭାଙ୍ଗି ପଡ଼ିଲା ତା ବୁକୁ ।
ଦୁର୍ଯ୍ୟୋଧନ ଯେ ପଳାଏ ଗୋଡ଼ାଏ ମାରୁତି
ଚାପୁଡ଼େ ମାଇଲା ଭୀମ ପଡ଼ିଲା ସେ କ୍ଷିତି ।
ଦୁର୍ଜ୍ଜୟ ଦୁର୍ବଳ ଆଦି ଦୁରାନ୍ତକ ମୂଳେ
ପାଦେ ତାହାକୁ ମାଇଲା ଭୀମ କରତଳେ ।
ମୂର୍ଚ୍ଛାଯାଇ ପଡ଼ିଲେକ ଗାନ୍ଧାରୀ ଦୁଲ୍ଲାଳେ
ବାହୁଟିଆ ଜୀବ ଜାଣି ପଳାନ୍ତି ଯେ ଶଲ୍ୟେ ।

ଚିରାଯେ ମାରି ହାବୁଡ଼ି ମାଇଲା ଶଲ୍ୟଙ୍କୁ
ପ୍ରହାରେ ଶଲ୍ୟ ପଡ଼ିଲେ ଭୂମିମାଡ଼ି ବୁକୁ ।
ବାମପାଦ ପଡ଼େ ତାଙ୍କ ପିଠି ମଧ୍ୟ ଖଣ୍ଡେ
ଡାହାଣ ପାଦ ପଡ଼ିଲା ଶଲ୍ୟଙ୍କର ମୁଣ୍ଡେ ।
ମସ୍ତକ ପିଠି ଫୁଟିଣ ଶୋଣିତ ଝଳକି
ବାହୁଡ଼ଇ ବୃକୋଦର ବିକ୍ରମ ସିଂହ କି ।
କୁରୁବୀରେ ପଡ଼ିଗଲେ ଅଚେତନ ହୋଇ
ଶଲ୍ୟ କର୍ଣ୍ଣ ଅଶ୍ୱତ୍ଥାମା ଚେତାଇ ହରାଇ ।
ବୈବସ୍ୱତ ମନୁଙ୍କୁ ଯେ କହନ୍ତି ଅଗସ୍ତି
କୁରୁ ପାଣ୍ଡବଙ୍କ ହେଲା ଏଠାରୁ ଅପ୍ରୀତି ।
ଧୃତରାଷ୍ଟ୍ର ଅଗ୍ରତରେ କହିଲେ ସଞ୍ଜୟ
ଖେଳ ବିନୋଦେ ଅଚେତ ହେଲେତ ତନୟ ।
ଏକାକେ ଭୀମ ମାଇଲା ସବୁଙ୍କୁ ହିଁ ଖେଳେ
ଝିମାଣି ଭିଆଇଲେ ସେ ମିଳି କୁତୁହଳେ ।
ଭୀଷ୍ମ ସଞ୍ଜୟ ପ୍ରବେଶ ହୋଇଲେକ ଯାଇ
ପୁଅନ୍ତ ଆଣିଲେ ଘରେ ଚେତନା କରାଇ ।
ଧୃତରାଷ୍ଟ୍ର ସୁମରଇ ରେବତୀଙ୍କ ବନ୍ଧୁ
ଜୟ ତୁ କାମପାଳ ହେ ଅଭୟବ ଇନ୍ଦୁ ।
ଶୁଦ୍ଧ ସ୍ଫଟିକ ଯାହାର ତନୁ ବିରାଜଇ
ଶେଷ ପୁରୁଷ ତୋ ଲୟ ଅଜପାରେ ଥାଇ ।
ଅଦୃଷ୍ଟ ଧବଳ ବର୍ଣ୍ଣ ଚିହ୍ନ ଯା ଶରୀରେ
ଯାର ବଦନେ ଅଭୟ ସୁରାସୁର ନରେ ।
ଏ ମନ ଏକ ଆସନେ କୋଟି କଳ୍ପ ର ହି
ମଉଳିଲେ ଆହରଣ ମହାଦର୍ପ ଅହି ।
ଚୈତନ୍ୟ ପୁରୁଷ ଯୋଗୀ ନ ପାନ୍ତି ଯେ ଚିନ୍ତି
ଦୁର୍ଜ୍ଜନ ଦର୍ପ ଧ୍ୱଂସନେ ତୋହର ଉତ୍ପତ୍ତି ।
କାଳାନ୍ତକ ପୁରୁଷ ତୁ କାଳଦର୍ପ ଧ୍ୱଂସି
ଅବ୍ୟୟ ଅତୁଟ ତୁହି ବଇକୁଣ୍ଠ ବାସୀ ।
ପାଣ୍ଡୁର ଲୋହିତ ଶଙ୍ଖ ଶ୍ୱେତ ପୀତ ନୀଳ
କୁଙ୍କୁମ ବର୍ଣ୍ଣେ ସପତ ଫଣୀ ତୋର ଶିର ।
ପବନ ଉଜାଣି ନେଲୁ ସ୍ୱାମୀ ଯୋଗଲୟେ
ସ୍ୱରୂପେ ତ୍ରିଲୋଚନ ତୁ ନାଥ ଅନାମୟେ ।
ନିଶ୍ଚଳ ଆସନ ତୋର ପ୍ରଭୁ ସଉନନ୍ଦି
ସର୍ବ ସୋଦର ବନ୍ଧୁ ତୋ ଦରଶନେ ସିଦ୍ଧି ।
ପ୍ରସନ୍ନେ ପ୍ରାପତ ହୋଇ ବୈକୁଣ୍ଠ ଭୁବନ
ଜଗଦବନ୍ଦନ ନାମ ହେ ସୁଢ଼ଳ ନୟନ ।
ମହାଯୋଗେ ଲୟ ନାଥ ଅର୍କରାଜ ତୀର୍ଥେ
ଝରେ ସୁଧାରସ ଦେବ ସନ୍ତାପ କରନ୍ତେ ।
ଶ୍ରୀଭୁଜେ ଶୋଭଇ ସ୍ୱାମୀ ସମର୍ଥ ସୌନନ୍ଦ
ଦର୍ଶନେ ଛେଦଇ ଭବ ଭୟ ମୋହବନ୍ଧୁ ।

ଅମ୍ବା କଦମ୍ବା ପ୍ରଳମ୍ବାସୁର ଧ୍ୱଂସକାରୀ
ରେବତୀ ରମଣ ନାଥ ଅଟୁ ହଳଧାରୀ ।
ସୁରସିଦ୍ଧ ମୁନିଗଣ ଯା ଚରଣା ବନ୍ଦେ
ଅଭୟ ବର ଦେଉ ତୁ ପରମ ସାନନ୍ଦେ ।
କଳାନଳ ବଞ୍ଚାଇଲୁ ତୁ ଅନାଦି ଯୋଗି
କଳିକାଳ ଦର୍ପ ଧ୍ୱଂସି ଇଚ୍ଛାକଲୁ ଭୋଗି ।
ଶତ ବିନତି ସେ କାମପାଳର ଚରଣେ
ଶକ୍ତି ମୁକ୍ତି ଇଚ୍ଛା କଲି ହେବ ତୋ ଶରଣେ ।
ରେବତୀ ରମଣ ସ୍ୱାମୀ ହଳାୟୁଧ ପାଣି
ଅନନ୍ତ କୋଟି ବ୍ରହ୍ମାଣ୍ଡେ ତୁହି ଶିରୋମଣି ।
ଅନିତ୍ୟ ସଂସାର ଲୋଭ ମୋହକ୍ରୋଧ ହିଂସା
ଏଥୁ ତରିବାକୁ ଦେବ ବଢ଼ାଇଲେ ଆଶା ।
ସୃଷ୍ଟି ବିଦାରଣ ସ୍ୱାମୀ ଚରଣେ ନମାମି
ଏ ଭବଜଳୁଁ ଉଦ୍ଧରି ଧର ଦେବ ସ୍ୱାମୀ ।
ସହସ୍ରେ ପ୍ରଣାମ ନୀଳାମ୍ବର ପାଦତଳେ
ଶାରଳା ଦାସ ମାଗଇ ଦେବ କାଳେ କାଳେ ।

—o—

## କୁନ୍ତୀସହ ପାଣ୍ଡବଙ୍କର ଇନ୍ଦ୍ରପ୍ରସ୍ଥେ ଅବସ୍ଥିତି

ଆହେ ମନୁ କୁରୁବଂଶ ନୃପ ଧୃତରାଷ୍ଟ୍ର
ସ୍ତୁତିରେ ଯେ ବଳରାମ ହୋଇଲେ ସନ୍ତୁଷ୍ଟ ।
ଧ୍ୟାନେଣ ଚିନ୍ତିଲା ଯହୁଁ ଅମ୍ବିକାର ବାଳ
ଆହ୍ୱାନ କମ୍ପିଲା ଦେବ ସ୍ୱାମୀ କାମପାଳ ।
ହସ୍ତିନା ନଗରେ ଦେବ କଲେକ ବିଜୟ
ଧୃତରାଷ୍ଟ୍ର ଅଗ୍ରତରେ କହଇ ସଞ୍ଜୟ ।
ଆସନ ତେଜି ଉଠିଲା କୁରୁକୁଳ ସ୍ୱାମୀ
ଶ୍ରୀ କାମପାଳ ଦେବଙ୍କ ଚରଣେ ପ୍ରଣମି ।
ଶୋକ ଗଦଗଦ ସ୍ୱରେ କହେ ଧୃତରାଷ୍ଟ୍ର
କାମପାଳ ସ୍ୱାମୀ ଦେଖ ପୁତ୍ରଙ୍କର କଷ୍ଟ ।
ଯହିଁର ନିମନ୍ତେ ହେଲା ସୁହୃଦରେ ଭୀତି
ଖେଳ ବିବାଦରେ ଭୀମ ମାଇଲା ସବୁନ୍ତି ।
ରାମ ବୋଇଲେ ତୁ ଭୀତି ନ କର ହୋ କିଛି
ଖେଳ ପରିହାସେ ଭୀତି ଏସନକ ଅଛି ।
ମୋହର ବିଦ୍ୟାରେ ଏହୁ ହୁଅନ୍ତି ଶକତା
ଗଦା ଯୁଦ୍ଧରେ ହୋଇବେ ସର୍ବେ ଜଗଜ୍ଜିତା ।
ଶତେ ପୁତ୍ରଙ୍କ ମଥାରେ ଦେଲେ ପ୍ରଭୁହସ୍ତ
ପୁନରପି ଧୃତରାଷ୍ଟେ ବୋଇଲେ ଏମନ୍ତ ।
ତୁ କିଛି ଭୀତି ନ କର ଲାଗିଲାକ ମୋତେ
ବଳରାମଙ୍କ ବଚନେ ଧୃତରାଷ୍ଟ୍ର ଚିତ୍ତେ ।
ନ ରହିଲା ମନ ଭୀତି ଦେହ କଲା ପୁଷ୍ଟ
ବଳରାମଙ୍କୁ ମେଲାଣି ଦେଲା ଧୃତରାଷ୍ଟ୍ର ।
ବିଜେ କଲେ କାମପାଳ ଦ୍ୱାରକା ଭୁବନେ
ସନ୍ନିଧିରେ ପୁଚ୍ଛାକଲେ ଦେବ ଜନାର୍ଦ୍ଦନେ ।
କହନ୍ତି ଯେ ବଳରାମ ଧୃତରାଷ୍ଟ୍ର କଥା
କଥା ପ୍ରସଙ୍ଗେ କହିଲେ ଖେଳର ବାରତା ।
ରାମ ନ ଜାଣନ୍ତି ହରି ଅର୍ଜ୍ଜୁନଙ୍କ ପ୍ରୀତି
ଦୁର୍ଯ୍ୟୋଧନ ସପକ୍ଷେ କହନ୍ତି ହଳପତି ।
ଧୃତରାଷ୍ଟ୍ର ପୁଅଙ୍କର ଶିରେ ହସ୍ତ ଦେଲୁଁ
ବିଦ୍ୟା ଶିଖାଇବା ପାଇଁ ତାକୁ ଆବୋରିଲୁ ।
ବୋଇଲୁ ପଣ୍ଡୁ ପୁଅଙ୍କୁ କଲୁ ଯେତେ ଭୀତି
ଏକା ଦୁର୍ଯ୍ୟୋଧନ ଜାଣ ଜିଣିବ ସବୁନ୍ତି ।
ଏ ପଞ୍ଚ କଟକେ ହେବ ପୁଣି ମହାରାଜ
ଏମନ୍ତ କରି ସଞ୍ଚିଲା ଗାନ୍ଧାରୀ ତନୁଜ ।
ବଳରାମଙ୍କ ମୁଖରୁ ଏସନକ ଶୁଣି
ହୃଦଗତେ ବିଚାରନ୍ତି ଦେବ ଚକ୍ରପାଣି ।
ପାଣ୍ଡବଙ୍କୁ ଅନ୍ଧ ମନେ ଧଇଲା ଅନ୍ତର
ତାଙ୍କୁ ପୁଣି ସାହା ହେଲେ ଦେବ ହଳଧର ।
ଗରୁଡ଼ ପିଠିରେ ବିଜେ କଲେ ଦେବ ହରି
ପ୍ରବେଶ ହୋଇଲେ ଇନ୍ଦ୍ରପ୍ରସ୍ଥ ନାମେ ଗିରି ।
ରାତ୍ରକାଳେ ତହିଁ ବିଜେ କଲେ ନାରାୟଣ
ଗରୁଡ଼ ପୃଷ୍ଠୁ ଉତୁରି ପ୍ରଭୁ ଜନାର୍ଦ୍ଦନ ।
ଅର୍ଜ୍ଜୁନଙ୍କୁ ସୁମରଣା ଦେବ କଲେ ଧ୍ୟାନେ
ବାସବି ପ୍ରବେଶ ବାସୁଦେବ ସନ୍ନିଧାନେ ।
ଦେଖିଲା ସେ ନାରାୟଣ ବିଜୟ ଶିଖରେ
ଶତ ସହସ୍ର ଯେ ଦଣ୍ଡ ପ୍ରଣିପାତ କରେ ।
ଅର୍ଜ୍ଜୁନକୁ କୋଳ କରି ଦେବ ସେ ମୁରାରି
ପଚାରନ୍ତି ସେ କୁଶଳ ବାର୍ତ୍ତା ଦେବ ହରି ।
କି କଥା ହେଲା ଝମାଣି ଖେଳରସ ଯୋଗେ
କୁରୁବୀରଙ୍କୁ ମାଇଲା ଭୀମସେନ ରାଗେ ।
ଅର୍ଜ୍ଜୁନ କହେ ସ୍ୱାମୀଙ୍କୁ ଦୁଃଶା ଗୋଡ଼ାଇଲା
ରାଗେ ଚାପୁଡ଼େ ମାରିଣ ଅଚେତନ କଲା ।
ଦେବ ସହି ନ ପାରିଲେ ସେ ରାଗ ମାରୁତି
ଏକ ନିଃଶ୍ୱାସେ ଗୋଡ଼ାଇ ମାରିଲେ ସବୁନ୍ତି ।
ଅଭିମାନେ ଧୃତରାଷ୍ଟ୍ର ରାମଙ୍କୁ ସୁମରି
ହସ୍ତିନାପୁରେ ପ୍ରବେଶ ହେଲେ ହଳଧାରୀ ।
ବହୁତ ପ୍ରତିଜ୍ଞା ଦେବ କଲେ ନୀଳାମ୍ବର
ବୋଇଲେ ଆଜ ହୋଇଲେ ଏ ପୁତ୍ର ଆମ୍ଭର ।
ବୋଲନ୍ତି ଶ୍ରୀହରି ବଳରାମ ମୁଖ୍ୟ କରି
କର୍ଣ୍ଣ ଦୁର୍ଯ୍ୟୋଧନ ଆଦି ଭାଇଙ୍କି ଯେ ଧରି ।

ଅନ୍ଧ ଧୃତରାଷ୍ଟ୍ର ଜାଣ ଭିଆଉଛି ମନ୍ଦ
ଅବଶ୍ୟ ତୁମ୍ଭର ତୁଳେ ହୋଇବଟି ଦ୍ୱନ୍ଦ ।
ଆଜ ହୁଁ ବିଶ୍ୱାସ ତୁମ୍ଭେ ନ କର ଅନ୍ଧକୁ
ଦୁର୍ଯ୍ୟୋଧନ ଅଶ୍ୱତ୍ଥାମା କର୍ଣ୍ଣ ଯେ ଶଲ୍ୟଙ୍କୁ ।
ପାର୍ଥ ବୋଲେ ତୋର ଯେବେ ଆମ୍ଭପାଇଁ ଚିନ୍ତା
ଲକ୍ଷେ ବଳରାମ ହେଲେ ନ ହେବ ଶକତା ।
ଅର୍ଜ୍ଜୁନ ପ୍ରତିଜ୍ଞା ଦେଖି ତୋଷ ମଧୁରିପୁ
ତୁମ୍ଭ ପ୍ରତିଜ୍ଞା ସାର୍ଥକ ବୁଝ ବଳ ବପୁ ।
ଭୋଜନ ଶୟନେ କେଭେ ନ ଯିବ ଉଶ୍ୱାସ
ଶତ୍ରୁର ଛିଦ୍ର ବୁଦ୍ଧିରେ ହୁଏ ଲୋକ ନାଶ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ବୀର
ତିଆରିର ଉପାୟ କରି ସଙ୍ଗୁ ଅପସର ।
କହି ନାରାୟଣ ତହିଁ ଗଲେ ଅନ୍ତରୀକ୍ଷେ
ଯୁଧିଷ୍ଠିରଙ୍କୁ ଅର୍ଜ୍ଜୁନ କହିଲେ ସମକ୍ଷେ ।
ଯୁଧିଷ୍ଠି ବୋଇଲେ ସେ ତ ଜଗତ ମୋହନ
ଜାଣେ ସମସ୍ତ ବିଚାର ଯେହ୍ନେ ପାପ ପୁଣ୍ୟ ।
ଆମ୍ଭେ ତ ଧୃତରାଷ୍ଟ୍ରଙ୍କୁ ଭକ୍ତି କରୁ ନିତ୍ୟେ
ସେ ଆମ୍ଭର ମନ୍ଦକଥା ଚିନ୍ତିବେ କେମନ୍ତେ ।
ହୃଦରେ କଳଙ୍କ ବହିଥାଇ ଯେଉଁ ପ୍ରାଣୀ
ତାହାର ସେ ପାପେ ସିନା ହୋଏ ଜାଣ ହାନି ।
ଧର୍ମକୁ ଆଶା କରିଣ ଥାଅ ହୃଦଗତେ
ଧର୍ମ ଥିଲେ ପାପ ହିଁ ନ ଲାଗେ କଦାଚିତ୍ତେ ।
ଅଜାତ ଶତ୍ରୁ ତାଙ୍କର ଚିତ୍ତେ କୋପ ନାହିଁ
ଶାନ୍ତ କଲେ ପରମାର୍ଥ ମାର୍ଗକୁ ଦେଖାଇ ।
ପୁଅକୁ ବସାଇ ନିତ୍ୟ ଭାଳେ ଧୃତରାଷ୍ଟ୍ର
ଭୀମା ପାଇଁ ମୋ ହୃଦରେ ଜାତ ହୁଏ କଷ୍ଟ ।
ସଞ୍ଜୟ ବୋଇଲେ ଯେବେ ଅନ୍ତର ତୋ ଚିତ୍ତେ
ପଣ୍ଡୁ ପୁଅ ସମ୍ଭାଳିବୁ ଆଉ ତୁ କେମନ୍ତେ ।
ହୃଦରେ କଳଙ୍କ ବହିଥାନ୍ତି ଯେଉଁ ପ୍ରାଣୀ
ତାହାଙ୍କୁ ଘେନି ବିଚାର କରୁ ନୃପମଣି ।
ସଞ୍ଜୟ ମନ୍ତ୍ରୀ ବଚନେ ରାଜା କୁରୁପତି
ବିଦୂରକୁ ଏକାନ୍ତରେ ରାଇ ନିଶା ରାତି ।
ବାବୁ ପରମ ପଣ୍ଡିତ ଅଟୁ ମହାଜ୍ଞାତା
କେମନ୍ତ ବିଚାର କରୁ ଭୀମସେନ କଥା ।
ବିଦୂର ବୋଇଲେ ସ୍ୱାମୀ ଅଜ୍ଞାନ ବାଳକେ
ପ୍ରିୟ ଅପ୍ରିୟ ହୁଅନ୍ତି ଖେଳ କଉତୁକେ ।
ତହିଁକି କିମ୍ପା ସ୍ୱାମୀ ତୁ କରୁ ଅନୁତାପ
ତୋହ ବ୍ୟଗ୍ରକେ ତାଙ୍କର ଅଛଇ କି ବାପ ।
ଧୃତରାଷ୍ଟ୍ର ବୋଇଲେକ ଭୀମ ଜୀଇଥିଲେ
ମୋହର ପୁତ୍ରଙ୍କୁ ସୁଖ କାହିଁ ଅଛି ଭଲେ ।

ବିଦୂର ବୋଇଲା ଯେବେ ଧଇଲୁ ଅନ୍ତର
ସଙ୍ଗ ଛଡ଼ାଇ ପାଞ୍ଚଙ୍କୁ ଏଥୁ ଦୁର କର ।
ବିଦୂର ବଚନେ ଧୃତରାଷ୍ଟ୍ର ହିଁ କହଇ
ଯାହା ତୁ କହିଲୁ ଏହା ସ୍ୱରୂପ ଅଟଇ ।
ଏଣେ ହସ୍ତିନା ରାଜ୍ୟର ଇନ୍ଦ୍ରପ୍ରସ୍ଥ ଦୂରେ
ଆଖଡ଼ା ରଚି ଅଛନ୍ତି ବନସ୍ତ ଭିତରେ ।
ସେ ଆଖଡ଼ା ଶାଳେ ଭୀମ ପଶଇ ଯେ ନିତି
ଗଦା ବୁଲାଇ ଧରଇ ବୀର ସୁର ମୂର୍ତ୍ତି ।
କରବୀର ବୋଲି ଅଛି ଏକଇ ପର୍ବତ
ଯୋଜନ ବନ ଅୟୁତ ଉସ୍ପର୍ଗ ଯେ ଶତ ।
ଗଦା ବୁଲାଇଣ ଭୀମ ସଂହାରି ନ ପାରି
ପର୍ବତ ଉପରେ ନେଇ ବୁଲାଇ ପ୍ରହାରି ।
ବାଉନ ବାଉନ ଭାର ଭୀମ ଗଦା ଘେନି
ସେ ଆଘାତେ ଗିରିବର ହେଲା ଚୁନି ଚୁନି ।
ଦେଖି ତ୍ରାସିଲେ ସମସ୍ତ କୁରୁ ମହାବୀରେ
ଭୀଷ୍ମ କହିଲେ ଯେ ଧୃତରାଷ୍ଟ୍ରଙ୍କ ଛାମୁରେ ।
ଆହେ କୁରୁବୀରେ ତୁମ୍ଭେ ସାବଧାନେ ଶୁଣ
ଭୀମର ମହିମା ଆମ୍ଭେ ଦେଖିଲୁ ଏକ୍ଷଣ ।
କରବୀର ପର୍ବତକୁ ଜାଣୁନା ତୁ ରାୟେ
ସେ ପର୍ବତ ଚୁରିଦେଲା ଭୀମ ଗଦାଘାଏ ।
ବାଳୁତ କାଳରୁ ତାର ଏଡ଼େକ ମହିମା
ମଦମତ୍ତ ସିଂହ ପ୍ରାୟ ଦିଶଇ ସେ ଭୀମା ।
ପୁଅକୁ ତିଆରି ବାବୁ ଥାଅ ପ୍ରତିପାଳି
ଭୀମର ସହିତେ କେହି ନ କରିବେ କଳି ।
ଯାହାକୁ ସେ ପ୍ରହାରିବ ରୋଷେ ପରିହାସେ
ସେହି କେଭେ ନ ବର୍ତ୍ତଇ ଜାଣ ତାରତ୍ରାସେ ।
ଭୀଷ୍ମଙ୍କ ବଚନେ ଧୃତରାଷ୍ଟ୍ର କଲା ଚିନ୍ତା
କେଉଁକ୍ଷଣେ ଜାତ କଲା ତାହାକୁ କୋଇନ୍ତା ।
ଏମନ୍ତ ସମୟେ ଆସି ପଣ୍ଡୁର ତନୟେ
ଧୃତରାଷ୍ଟ୍ର ସନ୍ନିଧିରେ ନମିଲେ ବିନୟେ ।
ସଞ୍ଜୟ ବୋଇଲେ ସ୍ୱାମୀ ଶୁଣ କୁରୁପତି
ଯୁଧିଷ୍ଠିର ଭୀମ ଆଦି ପ୍ରଣାମ କରନ୍ତି ।
କଲ୍ୟାଣ ବାଞ୍ଛା କଲେ ସେ କୁରୁ ରାଜସାଇଁ
ବାବୁ ଇନ୍ଦ୍ର ପ୍ରସ୍ଥେ ରହ ତୁମ୍ଭେ ପାଞ୍ଚ ଭାଇ ।
ଭୀମ କଥା ଦୁର୍ଯ୍ୟୋଧନ କ୍ଷଣେ ନ ସହଇ
ଭାଇରେ ଭାଇରେ କଳି ଯେମନ୍ତେ ନୁହଇ ।
ଅହର୍ନିଶି ବରବେଶ ହୁଏ ମାନୀପଣେ
ଉତକର୍ମ ବଢ଼ାଇଲା ଆପଣେ ଆପଣେ ।
ଅଭିମାନ ନ ସହଇ ସେ ମାନଗୋବିନ୍ଦ
ବିନା ତାପେ ଅରଜିଲା ଏସନ ସମ୍ପଦ ।

ତୋହର ଯେ ଭାଇ ଭୀମ ଅଟେ ବଡ଼ ମନ୍ଦ
ଏକଠାବେ ଥିଲେ ବାବୁ ଉପୁଜିବ ଦ୍ୱନ୍ଦ ।
ଯୁଧିଷ୍ଠି ବୋଇଲେ ତାତ ଏ ଅଟେ ଯୁକତ
ତୋହର ଆଜ୍ଞା ପ୍ରମାଣେ ଯିବି ଇନ୍ଦ୍ର ପ୍ରସ୍ଥ ।
ଏମନ୍ତ ସମୟେ ଭୀମ ଆଖଡ଼ାରେ ପଶି
ବେନି ଗଦା ବଲାଇଲା ପୃଥ୍ୱୀକୁ ଆକର୍ଷି ।
ଦେଖି ମହା ଭୟ କଲେ ଦେବୀ ଯେ ବସୁଧା
ବିନୟ ଭାବେ କହଇ କଥା ଯେ ପ୍ରସିଦ୍ଧା ।
ଆକର୍ଷି ଗଦା ପିଟନ୍ତେ କୁମର ଉପରେ
ରସାଗତ ହୋଇବି ନା ତୋହର ପ୍ରହାରେ ।
ଗଦା ସଂହାରଣ ଦେଖି ପୃଥ୍ୱୀର ବିକଳ
ପୁଣି ଗଦା ବୁଲାଇଲା ହୋଇ କୁତୁହଳ ।
ପର୍ବତ କମ୍ପିଲା ତାର ଭୀମମୂର୍ତ୍ତି ଦେଖି
ଶୂନ୍ୟ ପୁରୁଷ ଯେ ଗଲେ ଆସନ ଉପେକ୍ଷି ।
ଗଦା ବୁଲାଇଣ କରେ ବୀର ତହୁଁ ଗଲା
ଭୀମରୂପେ ଆକାଶକୁ ଆକ୍ରୋଶି ଚାହିଁଲା ।
ଅଧର ପୁଷ୍ଟ କରିଣ ଓଷ୍ଠେ ଦନ୍ତ ଚାପି
ଯମ ଦେବତାର ଦେହେ ଭୟ ଗଲା ବ୍ୟାପି ।
ବୋଇଲା ମାରୁତି ମୋର ଏ ଗଦାର ଭାର
ପୃଥିବୀ ପର୍ବତ ସବୁ ନ ପାରିଲେ ସୁର ।
ଧୃତରାଷ୍ଟ୍ର ଶତ ପୋଏ ଏ ମୋ ଗଦାଘାତ
ସହି କି ପାରିବେ ମୃତ୍ୟୁ ଲଭିବେ ନିୟତ ।
ଏସନ କଥା ଶୁଣିଲୁ ଦେବରାୟେ ଶଲ୍ୟ
ନୃପ ଅଗ୍ରତେ କହିଲେ ଭୀମ ମହା ମଲ୍ଲ ।
ଗଦା ବୁଲାଇ ସେ ମହାମୂରତି ଧଇଲା
ଗାନ୍ଧାରୀ ଶତ ପୁତ୍ରଙ୍କୁ ଆକ୍ରୋଶ ବୋଇଲା ।
ତ୍ରଇଲୋକ୍ୟେ ଆଉ କେହି ନ ପାରଇ ସହି
ତାହାଙ୍କ ନିମନ୍ତେ ଏହି ଗଦା ଅଛି ବହି ।
ଧୃତରାଷ୍ଟ୍ର ବୋଇଲେ ତ ଶୁଣିଲୁ ଯୁଧିଷ୍ଠି
ଭୀମର ପ୍ରକୃତି ମନ୍ଦ କରିବ ଅରିଷ୍ଟି ।
ତା ପ୍ରତିଜ୍ଞାବେଳେ ଯେବେ ମୋର ପୁତ୍ରଥାନ୍ତେ
ଶତ ଭାଇ ବେଢ଼ି ତାକୁ ଅବଶ୍ୟ ମାରନ୍ତେ ।
କୁନ୍ତୀ ବୋଇଲେକ ମୋତେ ଭୀଷ୍ମ ନାଶ କଲେ
ଅନିମିତ୍ତ ଶତଶୃଙ୍ଗ ପର୍ବତୁ ଆଣିଲେ ।
ପୁଅଙ୍କୁ ଘେନିଣ କୁନ୍ତୀ ଗଲେ ଅଭିମାନେ
ରହିଲେକ ଯାଇ ଦେବୀ ଇନ୍ଦ୍ରପ୍ରସ୍ଥ ସ୍ଥାନେ ।
ପୁଅଙ୍କୁ ଘେନିଣ କୁନ୍ତଭୋଜର କୁମାରୀ
ଭୀମକୁ ହିଁ ସନ୍ନିଧିରେ ବସାଇ ତିଆରି ।
ଏଡ଼େକ ଦୁର୍ବୁଦ୍ଧି କିମ୍ପା ଆଚରରେ ବାବୁ
ତୋହ ଯୋଗୁଁ କାର୍ଯ୍ୟ ନାଶ ଯାଇକିନା ସବୁ ।
ବହୁ ଦୟା କରିଥିଲେ ଆମ୍ଭଙ୍କୁ ନୃପତି
ଏକା ତୋହ ଯୋଗୁ ଉପୁଜିଲା ଏ ବିକୃତି ।
ଭୀମସେନ ନ ଶୁଣଇ କୁନ୍ତୀଙ୍କର ବାଣୀ
ହୃଦେ ନ ଧରିଲା ଯେହ୍ନେ ବଧିର ପରାଣୀ ।
ରଜନୀ ପ୍ରଭାତେ ସାରି ସ୍ନାନ ନିତ୍ୟକର୍ମ
ଧୃତରାଷ୍ଟ୍ର ଦରଶନେ ଯାନ୍ତି ଦେବ ଧର୍ମ ।
ରାଜା ଆଉ ଗାନ୍ଧାରୀ କି କରି ନମସ୍କାର
ରାଜା ବୋଲନ୍ତିରେ ବାବୁ ବସ ଯା ସଭାର ।
ସଭାରେ ଯାଇ ପ୍ରବେଶ ହୁନ୍ତି ପାଞ୍ଚ ଭାଇ
ଆସ୍ଥାନେ ବିଜୟ ଯୁଧିଷ୍ଠିର ଗୁଣଗ୍ରାହୀ ।
ଶତେକ ଭାଇ ଘେନିଣ ନିଜେ କୁରୁବୀର
ଭୀଷ୍ମ ଶଲ୍ୟ କୃପ ଭୂରିଶ୍ରବା ଯେ ବିଦୂର ।
ଅଶ୍ୱଥାମା କର୍ଣ୍ଣ ଆଦି ସର୍ବେ ଛନ୍ତି ବସି
ଯୁଧିଷ୍ଠିର ପାଞ୍ଚ ଭାଇ ଉଭାହେଲେ ଆସି ।
ଭୀଷ୍ମ ଶଲ୍ୟ ଭୁରିଶ୍ରବା ଚରଣେ ପ୍ରଣାମି
କାଖେ ହାତଦେଇ ଉଭାହେଲେ ଦେବସ୍ୱାମୀ ।
ଦୁର୍ଯ୍ୟୋଧନ ବୋଇଲେ ହେ ଧର୍ମସୁତ ବସ
ଭୀମକୁ ବୋଇଲେ ବସ ପବନର ଶିଷ୍ୟ ।
ଅର୍ଜୁନକୁ ବୋଇଲେକ ବସରେ ବାସବି
ଅଶ୍ୱିନୀ ସମ୍ଭବ ବୋଲେ ନକୁଳକୁ ଭାବି ।
ସହଦେବକୁ ବୋଇଲା ମାଦ୍ରୀପୁତ୍ର ବସ
ହୃଦୟରେ କିନ୍ତୁ ବହି କରିଲା ଝିଙ୍ଗାସ ।
ଆଜ୍ଞା ପ୍ରମାଣେ ବସନ୍ତି ତହିଁ ପଞ୍ଚବୀରେ
ଆସ୍ଥାନ ଯେ ମଉଳିଲା ପ୍ରହରକ ପରେ ।
ଚଳନ୍ତି ପାଣ୍ଡବେ ଇନ୍ଦ୍ରପ୍ରସ୍ଥ ଭୁବନକୁ
ଭୀମସେନ ପଚାରଇ ଯାଇ କୋଇନ୍ତାଙ୍କୁ ।
ସଭାରେ ତ ଦୁର୍ଯ୍ୟୋଧନ କରଇ ଅନୀତି
ପାଞ୍ଚଙ୍କ ପିତା କହଇ ଆନ ଆନ ଜାତି ।
କୁନ୍ତୀ ଦେବୀ ବୋଇଲେ ତୁ ନ ଜାଣୁରେ ଭୀମ
ପିତାର ନାମ ଧରନ୍ତେ ଉଦିତ ଯେ ଧର୍ମ ।
ଜ୍ଞାନ କହିଲେକ କୁନ୍ତଭୋଜର ନନ୍ଦିନୀ
ମାତାଙ୍କର ବଚନରେ ଭୀମ ହେଲେ ତୁନି ।
ପୁଣି ହିଁ ଯେ ହସ୍ତିନାକୁ କରନ୍ତି ଗମନ
ଧୃତରାଷ୍ଟ୍ର ଗାନ୍ଧାରୀ କି କରନ୍ତି ଦର୍ଶନ ।
ଶୁଭ କଲ୍ୟାଣ ବାଞ୍ଛନ୍ତି ପୁତ୍ରେ ଅବଧାରୀ
ସଭାରେ ବସ ବୋଇଲେ ତାଙ୍କୁ ଦଣ୍ଡଧାରୀ ।
ପିତା ମାତାଙ୍କର ଆଜ୍ଞା ଅଟେ ଅଲଙ୍ଘିତ
ସଭାରେ ପ୍ରବେଶ ହେଲେ ଯାଇଁ ପଞ୍ଚଭ୍ରାତ ।
ଭୁରିଶ୍ରବା ଶଲ୍ୟ ଭୀଷ୍ମ କରି ନମସ୍କାର
ଆସ୍ଥାନ ତଳରେ ଉଭା କାଖେ ଦେଇ କର ।

ଧର୍ମ ପୁତ୍ର ବସ ବୋଲି ବୋଲେ ଦୁର୍ଯ୍ୟୋଧନ
ବସ ବସ ଭୀମସେନ ପବନ ନନ୍ଦନ ।
ଅର୍ଜୁନକୁ ବୋଇଲେକ ବାସବୀରେ ବସ
ବସ ମାଦ୍ରୀ ଦେବୀ ସୁତ ଅଶ୍ୱିନୀର ଶିଷ୍ୟ ।
ଦୁର୍ଯ୍ୟୋଧନ ଆଜ୍ଞାରେ ସେ ବସନ୍ତି ସଭାରେ
ଅଭିମାନରେ ତାଙ୍କର ବଚନ ନ ସ୍ଫୁରେ ।
ବେଳ ପ୍ରହରକେ ପରେ ମଉଳେ ଆସ୍ଥାନ
ଦୁର୍ଯ୍ୟୋଧନ ପ୍ରବେଶଇ ଆପଣା ଭୁବନ ।
ଯୁଧିଷ୍ଠି ଚଳନ୍ତି ଇନ୍ଦ୍ରପ୍ରସ୍ଥ ଭୁବନକୁ
କରନ୍ତି ସ୍ନାନ ଭୋଜନ ଯେ ନିତ୍ୟକର୍ମକୁ ।
ଏହିପରି କରନ୍ତି ସେ ନିତି ଯାତାୟାତ
ପ୍ରତିଦିନ ଦୁର୍ଯ୍ୟୋଧନ ବୋଲେ ଏହିମତ ।
ଯୁଧିଷ୍ଠି ଅଜାତ ଶତ୍ରୁ ନାହିଁ ତାଙ୍କ କୋପ
ମହାରାଗେ ଭୀମସେନ କରେ ପରିତାପ ।
ବୃକୋଦର ପଡ଼ି କୁହେ କୁନ୍ତୀ ଦେବୀପାୟେ
କଟୁ ବଚନ ସହି ନ ପାରଇ ଗୋ ମାଏ ।
କୁନ୍ଦୀ ଦେବୀ ବୋଇଲେ ତୁ ଅଟୁ ବଡ଼ ମନ୍ଦ
ଅନବରତରେ କିମ୍ପା କରୁ କକ୍ଷା ଦ୍ୱନ୍ଦ୍ୱ ।
ପିତାର ପୁଣ୍ୟରେ ସିନା ଉପୁଜଇ କାଳ
ପିତାର ପୁଣ୍ୟେ ପୁତ୍ରର ହୁଏ ଆୟୁର୍ବଳ ।
କୁନ୍ତୀଙ୍କର ମୁଖ ଚାହିଁ ରାଗେ ବୋଲେ ଭୀମ
ପଞ୍ଚ ଭ୍ରାତାଙ୍କର ଧରେ ପଞ୍ଚ ପିତା ନାମ ।
କୁନ୍ତୀ ବୋଲନ୍ତି ନ ଜାଣୁ ତୁହି ମନ୍ଦ ବାଇ
ପଞ୍ଚ ଆତ୍ମାରେ ଯେ ପାଞ୍ଚ ଦେବତା ହୁଅଇ ।
ଭୀମ ବୋଲେ ଜାତ କଲୁ ଆମ୍ଭଙ୍କୁ କେମନ୍ତେ
ପଣ୍ଡୁର ନାମ ତ ପଡ଼େ ସଭାର ଅଗ୍ରତେ ।
କୁନ୍ତୀ ବୋଇଲେ ଯେ ପଣ୍ଡୁ ଅଟଇ ମନୁଷ୍ୟ
ଦେବ ଅଂଶରେ ସବୁରି ଶରୀର ପ୍ରକାଶ ।
ଭଲକଥା ହିଁ କହଇ ସିନା ଦୁର୍ଯ୍ୟୋଧନ
ଏଥକୁ କିମ୍ପାଇ ବାବୁ କରୁ ଅଭିମାନ ।
ଯୁଧିଷ୍ଠି ନକୁଳ ଅରଜୁନ ସହଦେବ
ଏହାଙ୍କର ମନେ ନାହିଁ ବିକୃତ ସ୍ୱଭାବ ।
ଭୀମ ନ ବିସ୍ମରି ମନେ ପାଇ ବଡ଼ ଲାଜ
ବିଚାରେ ନ ସହି ଦେବ କରିବା ବହିର୍ଯ୍ୟ ।
ଭାଦ୍ରବ ଶୁକଳ ଷଷ୍ଠୀ ସଉରୀ ବାସର
ସ୍ୱାତୀ ନକ୍ଷତ୍ର ସମସ୍ତ ଭୋଗ ସେ ଦିନର ।
କୌଳବ ନାମେ କରଣ ବ୍ରହ୍ମନାମେ ଯୋଗ
ସିଂହ ସଙ୍କରାନ୍ତିର ଯେ ଦଶଦିନ ଭୋଗ ।
ସେଦିନ ହସ୍ତିନା ସଭାମଧ୍ୟେ ହେଲା କଥା
ଉପହାସ କଲେ ଏହା କଲା ସିନା ମାତା ।
ମାତା ଅବିଚାରେ ପୁତ୍ର କଳଙ୍କ ରହିଲା
ଏଡ଼େକ ସଭାରେ ଉପହାସ ଉପୁଜିଲା ।
ବଂଶ ନ ରହୁ ପଛକେ ହୋଇବ ଅପୁତ୍ର
ଅନାଚାରୀ ହୋଇ ପୁତ୍ର ନୋହୁ ପୁଣ ଜାତ ।
ଅଇଲେ ଯୁଧିଷ୍ଠି ଦେବ ତହୁଁ ଲାଜ ପାଇ
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହୋଇଲେକ ଯାଇ ।
ଭୀମ ଆବର କାହାକୁ ଉତ୍ତର ନ ଦେଲା
ନିଜ ମନ୍ଦିରେ କବାଟ କିଳିଣ ଶୋଇଲା ।
ସ୍ନାନ ଆବର ଭୋଜନ ନ କଲା ସେ କିଛି
କଟୁ ବଚନ ନ ସହି ମୃତ୍ୟୁକୁ ସେ ଇଛି ।
ମଣୋହିର ବେଳ ଯହୁଁ ହୋଇଲା ଯୁକତି
କୁନ୍ତୀଦେବୀ ଯାଇ ଭୀମସେନକୁ ଡାକନ୍ତି ।
ବାବୁ ସୂର୍ଯ୍ୟବେଳ ହେଲା ଉଠ ବୃକୋଦର
ସ୍ନାନ ସାରିଣ ମଣୋହି ଗୃହେ ବିଜେ କର ।
ଭୀମ କବାଟ କିଳିଣ ଶୋଇଅଛି ପୁଣି
କୁନ୍ତୀଙ୍କ ବଚନ ଭୀମ କର୍ଣ୍ଣରେ ନ ଶୁଣି ।
ଆରେ ଭୀମ ବୋଲି ଡାକି ରହିଲେ ସେ ଫୁଟି
ଶବ୍ଦ ଶୁଣି ବିଜେ କଲେ ସେ ସ୍ଥାନେ ଯୁଧିଷ୍ଠି ।
ଯୁଧିଷ୍ଠି ଡାକ ଦିଅନ୍ତି ଉଠ ଭୀମସେନ
କାହାକୁ ବାବୁରେ କହ ଏଡ଼େ ତୋର ତମ ।
ଏ ତୋର ଶରୀରେ କିମ୍ପା ହେଉଅଛି ତ୍ରାସ
ବେଳେ ଭୁଞ୍ଜୁ ଭୁଞ୍ଜୁ ହେଉଥାଉ ଅସନ୍ତୋଷ ।
ଷାଠିଏ ପଉଟି ଅନ୍ନେ ହେଉ ଅତୃପତି
ଭୋଜନେ ସ୍ନାନେ ଉତ୍ସବେ ନାହିଁ ତୋର ଭୀତି ।
ସୂର୍ଯ୍ୟବେଳେ ଯେବେ ବାବୁ କିରବୁ ଭୋଜନ
ତେବେ ସିନା ସେ ଭୋଜନ ପକ୍ୱ ହେବ ଅନ୍ନ ।
ସୋମବଳେ ମଣୋହିରେ ଅଗ୍ନିମନ୍ଦ ହୋଇ
ଯାହା ଖାଇବଟି ତାହା ପକ୍ୱ ନ ହୁଅଇ ।
କାହାରି ବୋଲ କର୍ଣ୍ଣେ ନ ଶୁଣଇ ମାରୁତି
ବେଳ ଅସ୍ତଗଲା ହେଲା ପୁଣି ନିଶା ରାତି ।
ଯୁଧିଷ୍ଠିର ବିଚାରନ୍ତି ପାର୍ଥ ମୁଖ ଚାହିଁ
ଭୀମ ଅଭାବେ କାହାରି ମଣୋହି ଯେ ନାହିଁ ।
ଅର୍ଜୁନ ଯେ ସୁମରଇ ପ୍ରଭୁ ରଘୁନାଥ
ବୈନତେୟ ବାହନରେ ବିଜୟ ଅଚ୍ୟୁତ ।
ଖଗ ପୃଷ୍ଠରୁ ଉତୁରି ଦେବ ଦାମୋଦର
ଯୁଧିଷ୍ଠି ଦେବଙ୍କୁ ଯାଇ କଲେ ନମସ୍କାର ।
ଯୁଧିଷ୍ଠି ଦେବ ମଥାରେ ଦେଲେ ବେନିପାଣି
ବୋଇଲେ ଭୀମ ବଚନ ବୁଝ ପରିମାଣି ।
କବାଟକୁ କିଳିଦେଇ ଶୋଇଲା ଅଭୁତେ
ଅନାଥ ହୋଇଲୁ ଆମ୍ଭେ ସିନା ଚାରିଭ୍ରାତେ ।

ବାଳୁତକାଳୁ ଆମ୍ଭର ଅଟେ ମନ୍ଦ କର୍ମ
ଅଭୋଗ ଲିଙ୍ଗ ହୋଇଣ ଆମ୍ଭର ଜନମ ।
ପିତାଙ୍କୁ ଯେ ନ ଦେଖିଲୁ ଆମ୍ଭେ ଭଲ କରି
ଅନ୍ତରେ ଧଇଲେ ଧୃତରାଷ୍ଟ୍ର ନ ବିଚାରି ।
ପୁରରୁ ବାହାର କରିଦେଲେକ ଆମ୍ଭନ୍ତ
ରହିଲୁ ଘୋର ଅରଣ୍ୟେ ଏହି ଇନ୍ଦ୍ରପ୍ରସ୍ଥ ।
ଏତେ କଷ୍ଟରେ ପୁଣି ଏହାର ଏଡ଼େ କଥା
କବାଟ କିଳି ଶୁତିଣ ପାଉଅଛି ବ୍ୟଥା ।
ଗୋବିନ୍ଦ ବୋଲନ୍ତି ଉଠ ଉଠ ହେ ମାରୁତି
ଆମ୍ଭର ଛାମୁରେ କହ କେବଣ ଅପ୍ରୀତି ।
ଭୀମସେନ ବୋଇଲେକ ଶୁଣ ବାସୁଦେବ
ହସ୍ତିନାପୁରେ ପାଇଲି ମୁଁ ବଡ଼ ଅଭାବ ।
ଆସ୍ଥାନରେ ଦୁର୍ଯ୍ୟୋଧନ ବୋଲେ ପାଞ୍ଚପିତ
ଉପହାସ କରି ବୋଲେ ଧିକ ତୁମ୍ଭ ମାତ ।
ଏସନ ବଚନ କହ କାହାବଳେ ସହୁ
ପ୍ରାଣ ବିସର୍ଜିବି ପଛେ ଏ ଜୀବନ ଯାଉ ।
କଟୁବାକ୍ୟ ବ୍ରହ୍ମହତ୍ୟା ଦୋଷ କଲା ସରି
ଅନ୍ନଗ୍ରାହୀ ନାଥ ମୋତେ ଦୟାକରି ହରି ।
ଭାଇଙ୍କର ଧୃତରାଷ୍ଟ୍ର କାଶୀଦେବ ଜାଣ
ତାକୁ ଦର୍ଶନ ନ କଲେ ନ ରୁଚଇ ଅନ୍ନ ।
ସେ ଅନ୍ଧ ପୁଣି ଯେ ଆଜ୍ଞା ଦିଅଇ ଆମ୍ଭଙ୍କୁ
ଝିଙ୍ଗାସ କରିବା ପାଇଁ ପଠାଏ ସଭାକୁ ।
ଏ ଚାଣ୍ଡାଳ ପୁଣି ଏହା ସହଇ କେମନ୍ତେ
କିଞ୍ଚିତରେ ଆଜ୍ଞା ମୋତେ ନ ଦିଏ ବିକୃତେ ।
ମାର ବୋଲି ବୋଇଲେ ସେ ମାରନ୍ତି ସବୁନ୍ତି
ଭୀଷ୍ମ ଭୁରିଶ୍ରବା ଆଦି ଶଲ୍ୟ ମହାରଥି ।
କ୍ଷତ୍ରିୟକୁଳେ ଜନମି ଏହି ବଡ଼ ପାପୀ
ଅନବରତରେ ଏହି ଅଟଇ ଅକୋପୀ ।
ଭୀମ ବଚନ ଶୁଣିଣ ବଦନ୍ତି ଅଚ୍ୟୁତ
କବାଟ ଫେଡ଼ ମାରୁତି କହଇ ଯଥାର୍ଥ ।
ଉଠି ଭୀମସେନ କରେ ଫେଡ଼ିଲା କବାଟ
ଭୀମ ବାସୁଦେବ ହେଲେ ଏକାନ୍ତରେ ଭେଟ ।
ସେ ଯେବେ ତୋହର ଭୀମ ଝିଙ୍ଗାସିଣ କହି
ତୁ ବାବୁ କଟୁ ବଚନ ନ ପାରୁ କି କହି ।
ମାରୁତି ବୋଲଇ ଦେବ ନ ଜାଣେ ମୁଁ ତାହା
ସେ କଥା ମୋତେ କହିବା କାଳିନ୍ଦୀର ନାହା ।
ଗୋବିନ୍ଦ ବୋଇଲେ ଧରିଥାଅ ହୃଦଗତେ
ପବନ ପୁତ୍ର ସେ ତୋତେ ବୋଲିବ ଯୁକତେ ।
ସଭାରେ ତାର ବଚନ ତୁହି ନ ସହିବୁ
ଆହେ ଗୋଲକ ପୁତ୍ର ମୁଁ ବସିଛି ବୋଲିବୁ ।
ଏମନ୍ତ ବଚନ ଶୁଣି ଧୃତରାଷ୍ଟ୍ର ସୁତ
ସଭାରେ ଲଜ୍ଜା ପାଇବ ମୁଖ ହେବ ନତ ।
ଭୀମ ବୋଲେ ଏଡ଼ା ଦେବ ନ ଜାଣେ ମୁଁ କିଛି
ଯେବଣ କଳଙ୍କ ମୋତେ କହିଲ ଶ୍ରୀବତ୍ସି ।
ଜୟ ତୁ ଜୟ ତୁ ଦେବ ନ ଜାଣେ ମୁଁ କିଛି
ଯେବଣ କଳଙ୍କ ମୋତେ କହିଲ ଶ୍ରୀବତ୍ସି ।
ଜୟ ତୁ ଜୟ ତୁ ଦେବସୁତ ଦେବ ସୁତ
ଜୟ ତୁ ଜୟ ତୁ ଦେବ ଅନାଦି ଅଚ୍ୟୁତ ।
ଜୟ ତୁ ଜୟ ତୁ ଦେବ ଜୟ ପୀତବାସ
ତୋହର ପାଶେ ଶରଣ ମୁଁ ଶାରଳା ଦାସ ।

—o—

## ଦୁର୍ଯ୍ୟୋଧନର ଅପମାନ ଓ ପାଷାଣ ଗୃହ ନିର୍ମାଣ

ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ଏ ମହାଭାରତ ଆଦ୍ୟପର୍ବ ସମାଚାର ।
ଏସନ ବୋଇଲେ ଯହୁଁ ରୁକ୍ମିଣୀ ନାୟକ
ଅନୁକ୍ଷଣେ ଭୀମ ଘୋଷେ ଗୋଲକ ଗୋଲକ ।
ଗମନେ ଶୟନେ ସ୍ନାନେ କି ଅବା ଭୋଜନେ
ଗୋଲକ ଗୋଲକ ବୋଲୁଥାଇ ଭୀମସେନେ ।
ଅନ୍ନ ପୁଡ଼ାଏ ଭୁଞ୍ଜଇ ବସି ମହତୋଷେ
ଗୋଲକ ଗୋଲକ ବୋଲି ବୋଲଇ ହରଷେ ।
ଶୟନ ଆସ୍ଥାନେ ବିଜେ କରେ ଭୀମସେନ
ଗୋଲକ ଶବ୍ଦକୁ ଘୋଷୁଥାଇ ରାତି ଦିନ ।
ଯହୁଁ ରାତି ହେଲା ତିନି ପ୍ରହର ଯେ ଆସି
ପାହାନ୍ତା ନିଦ୍ରା ଘାରିଲା ନ ପାରିଲା ଘୋଷି ।
ତତକ୍ଷଣେ ପାଶୋରିଲା ପାଣ୍ଡବ ସୁନ୍ଦର
ଉଠି ଦରାଣ୍ଡଇ ଭୀମ ଶୟନ ମନ୍ଦିର ।
ଆହା ପଦ ଗୋଟି ମୋର ଗଲୁ କେଉଁ କତି
ଲୋଡ଼ନ୍ତେ ସହଦେବଙ୍କୁ ହାବୋଡ଼ିଲା ଧାତି ।
କିଏ ବୋଲିଣ ଚମକି ଉଠି ସହଦେବ
ଭୀମ ବୋଲେ କି କହିଲେ କହ ବାସୁଦେବ ।
ସହଦେବ ବୋଇଲା ସେ ଗୋଲକ ଯେ ବୋଲି
ନିସ୍ତରିଲି ବାବୁ ଆରେ ହଜିଲା ପାଇଲି ।
ଗୋଲକ ଗୋଲକ ବୋଲୁ ଅଛି ମନେ ମନ
ରଜନୀ ପାହିଲା ଉଠିଗଲେ ଭୀମସେନ ।
ଗୋଲକ ପୁତ୍ର ପଦ ଯେ ହୃଦମଧ୍ୟେ ଘୋଷେ
ବହନ ସ୍ନାନ ଭୋଜନ ସାରିଲେ ହରଷେ ।
ମହା ଆନନ୍ଦ ହୋଇଣ ବୋଇଲେ ଯୁଧିଷ୍ଠି
ଚାଲ ଯିବା ଦେବ ଧୃତରାଷ୍ଟ୍ରକୁ ହିଁ ଭେଟି ।

ସେ ଯେବେ ଆମ୍ଭର କାଶୀନାଥ ବିଶ୍ୱଦେବା
ଦେବ ପିତୃ ଛାଡ଼ି ମୂଳ ସିନା ତାଙ୍କ ସେବା ।
ଯୁଧିଷ୍ଠିର ଗମନ୍ତି ଯେ ହସ୍ତିନା ପୁରକୁ
ବାଟ କଢ଼ାଏ ଗୋଲକ ବୋଲି ଭୀମ ତାଙ୍କୁ ।
ଯୁଧିଷ୍ଠି ବୋଲନ୍ତି କି କି ବୋଲ ଆରେ ମନ୍ଦ
ନପୁଣ ଭାଇଙ୍କ ତୁଲେ କରି ଲୋଡ଼ ଦ୍ୱନ୍ଦ୍ୱ ।
ଭୀମସେନ ବୋଇଲେ ମୁଁ ଆଗ ନ ହୋଇବି
ତୁମ୍ଭେ ଯେବେ ନାହିଁ କର ପଛେ ପଛେ ଯିବି ।
ଆଗରେ ଯୁଧିଷ୍ଠି ଦେବ ପଛରେ କିରୀଟି
ତାହାଙ୍କ ପଛରେ ସାନ ଭାଇ ଦୁଇ ଗୋଟି ।
ସବୁରି ପଛରେ ଥାଇ ଗୋଡ଼ାଏ ମାରୁତି
ଗୋଲକ ପୁତ୍ର ବୋଲଇ ହୋଇ ତୋଷମତି ।
ତହୁଁ ଧୃତରାଷ୍ଟ୍ର ପୁରେ ବୋଇଲେ ପ୍ରବେଶ
ନମସ୍କାର କଲେ ମିଳି ଅନ୍ଧରାଜା ପାଶ ।
ଆସ୍ଥାନରେ ବସ ବୋଲି ବୋଲେ ଧୃତରାଷ୍ଟ୍ର
ଦୁର୍ଯ୍ୟୋଧନ ପାଶେ ଯାଇ ବିଜେ ଧର୍ମଚାଟ ।
ଧର୍ମ ପୁତ୍ର ବସ ବୋଲି ବୋଲେ କୁରୁବୀରେ
ଅନୁରାଗେ ନାଥ ଯାଇ ବସିଲେ ସଭାରେ ।
ଅର୍ଜ୍ଜୁନକୁ ବୋଇଲେ ଯେ ବସ ଇନ୍ଦ୍ର ପୁତ୍ର
ଆଜ୍ଞା ପ୍ରମାଣେ ବସିଲେ ବୀରବର ପାର୍ଥ ।
ନକୁଳ ସହଦେବଙ୍କୁ ଆଜ୍ଞା ଅବଧାରୀ
ଅଶ୍ୱିନୀ କୁମାର ପୁତ୍ର କହି ଦଣ୍ଡଧାରୀ ।
ନକୁଳ ଯେ ସହଦେବ ବସିଲେ ସଭାଏ
ପଛେ ପବନ ତନୟ ପରବେଶ ହୁଏ ।
ଦୁର୍ଯ୍ୟୋଧନ ବୋଇଲା ହେ ବାୟୁସୁତ ବସ
ଗୋଲକ ପୁତ୍ର ବସୁଛି ହୋଇ ହସ ହସ ।
ଭୁରିଶ୍ରବା ଭୀଷ୍ମେ ହସି କରତାଳି ଦେଇ
ଏସନ ମରମ ଭୀମ ପାଇଲୁ ତୁ କାହିଁ ।
ଅନେକ ଅଭିମାନରେ ସେ ମାନଗୋବିନ୍ଦ
ମଥାପୋଡି କପାଳରେ ଦେଇ ହସ୍ତ ଦ୍ୱନ୍ଦ୍ୱ ।
ସେହିକ୍ଷଣି ଆସ୍ଥାନରୁ ଉଠିଣ ନୃପତି
ଅଭିମାନ ପାଇ ଗଲା ମାନଚକ୍ରବର୍ତ୍ତୀ ।
ଭିତରେ କୁଟ ଭୁବନେ ପ୍ରବେଶ ହୋଇଲା
କବାଟ କିଳିଣ ରାଜା ରୁଷିଣ ଶୋଇଲା ।
ଜଣାଇଲେ ମଣୋହିର ବେଳ ସୁପକାରେ
ସମସ୍ତ ଡାକନ୍ତି ମାନଗୋବିନ୍ଦଙ୍କୁ ଦ୍ୱାରେ ।
ସଞ୍ଜୟ ବିଦୁର ଦ୍ୱାରେ ସମସ୍ତେ ପ୍ରବେଶ
ଭୀଷ୍ମ ଭୁରିଶ୍ରବା ଯାଇ ହୋଇଲେ ପାରୁଶ ।
କବାଟ ଫେଡ଼ରେ ବାବୁ ମାନଚକ୍ରବର୍ତ୍ତୀ
କି ନିମନ୍ତେ ବିକୃତ ତୁ ଧଇଲୁ ତୋ ମତି ।
ସୂର୍ଯ୍ୟବେଳରେ ମଣୋହି କର ବେଗେ ଉଠ
କଠୋର ଦେଖିଣ ବିଜେ କଲେ ଧୃତରାଷ୍ଟ୍ର ।
ବୋଲନ୍ତି ପିତା ବାବୁରେ ଉଠ କୁରୁପତି
ତୁ ମାନଗୋବିନ୍ଦ ଅଟୁ ମାନଚକ୍ରବର୍ତ୍ତୀ ।
କବାଟ ପାରି ଶୋଇଲୁ କି ନିମନ୍ତେ ବାବୁ
ତୁ କୁରୁ ରାଜା ପାଳନକର୍ତ୍ତା ଅଟୁ ସବୁ ।
କାହାରି ବୋଲେ ବୀର ସେ ନ ଦେଲେ ସମ୍ଭାଷ
ଆପେ ଗାନ୍ଧାରୀ ବିଜୟ କଲେ ଆସି ପାଶ ।
ଗାନ୍ଧାରୀ ବୋଇଲେ ବାବୁ ଉଠ ଉଠ ବାଳ
ତୁ ସିନା ପଞ୍ଚ ରାଜ୍ୟକୁ ଅଟୁ ମହୀପାଳ ।
ମାତାକୁ ଦେଖି ତନୟ ହୁଅଇ ଯେ ବାଇ
ସମସ୍ତ ମୁଖକୁ ବାବୁ ତୁ ସିନା ବୁଝାଇ ।
ତୋର ଅପଣ୍ଡିତ ଗୁଣେ ପୃଥ୍ୱୀ ଯିବ ଭାସି
ନ ଯୋଗାଏ ତୋତେ ଯେହୁ ପକା ତାକୁ ନାଶି ।
କୁବୁଦ୍ଧିରେ କୁଶଯ୍ୟାରେ ଲକ୍ଷ୍ମୀ ହୁଏ ହାନି
ଅଭୟ ପୁରୁଷ କିମ୍ବା ହେଉ ଅଭିମାନୀ ।
ଅପଣ୍ଡିତ ଲୋକଙ୍କର ଏସନକ ଗତି
କ୍ଷତ୍ରିଙ୍କର ଅଭିମାନ ନୁହଇ ଯୁକତି ।
ତୁହି ସିନା ଏ ସଂସାରେ ଅଟୁ ଦଣ୍ଡଧାରୀ
ଅନେକ ମତେ ବୁଝାଇ କହିଲା ଗାନ୍ଧାରୀ ।
ଦୁର୍ଯ୍ୟୋଧନ ବୋଲେ ତୋତେ କହଇ ବିଶ୍ୱାସ
ଭୀମ ଉତ୍ତରକେ ଦେଲା ମୋତେ ଉପହାସ ।
ମନ ହିଁ ଜାଣଇ ସିନା ଯାର ଯେତେ ପାପ
ମାତା ହିଁ ଜାଣଇ ସିନା ପୁତ୍ରଙ୍କର ବାପ ।
ଗାନ୍ଧାରୀ ବୋଇଲେ ବାବୁ ତୁହି ମନ୍ଦ କଲୁ
ଆପଣା କଳଙ୍କ ଆପେ ତୁହି ବଢ଼ାଇଲୁ ।
ଯୁଧିଷ୍ଠିର ଅଟଇ ଯେ ତୋର ଜ୍ୟେଷ୍ଠଭ୍ରାତ
ତାହାକୁ ନିତ୍ୟ ତୁ ବୋଲୁ ବସ ଧର୍ମ ସୁତ ।
ପବନ ନନ୍ଦନ ବସ ଭୀମକୁ ବୋଇଲୁ
ଇନ୍ଦ୍ର ପୁତ୍ର ବସ ବୋଲି ଅର୍ଜ୍ଜୁନେ କହିଲୁ ।
ମାଦ୍ରୀ ସୁତେ ବୋଲୁ ବସ ଅଶ୍ୱିନୀ ତନୁଜ
ତେଣୁ ଭୀମ ବୋଲେ ତୋତେ ଗୋଲକ ଆତ୍ମଜ ।
ସେ ବିଦ୍ୟମାନେ ଅଟନ୍ତି ତୋର ପାଞ୍ଚ ଭାଇ
ଆପଣାର ଛିଦ୍ରକଥା ଆପଣେ ଲୁଚାଇ ।
ପଣ୍ଡୁ ଧୃତରାଷ୍ଟ୍ର ଏହି ଅଟନ୍ତି ଅଭିନ୍ନ
ତୋତେ ଲାଜ ନୁହଇ କି ତାଙ୍କ ଅପମାନ ।
ସୋଦରଙ୍କୁ ଝିଙ୍କାସ ତୁ କଲୁ ଅନିମିତ୍ତେ
କାଳେ ସେହି ପାପଫଳ ଫଳିଗଲା ତୋତେ ।
ଦୁର୍ଯ୍ୟୋଧନ ବୋଇଲା ମୋ ପିତା ଧୃତରାଷ୍ଟ୍ର
ଗାନ୍ଧାରସେନ ଦୁହିତା ବଂଶେ ତୁ ଗରିଷ୍ଠ ।

ପିତା ମୋର ଧୃତରାଷ୍ଟ୍ର ତୁହି ମୋର ମାତା
ଗୋଲକ ପୁତ୍ର ବୋଇଲା ଭୀମା ଏ କି କଥା ।
ଭୀଷ୍ମ ଭୁରିଶ୍ରବା ପୁଣି ହସିଲେ ତା ଶୁଣି
ଲାଜ ଅପମାନ ସଭାମଧ୍ୟେ ପାଇ ପୁଣି !
ଗାନ୍ଧାରୀ ବୋଲେ ପଣ୍ଡିତ ଅଟ ମୋର ପୁତ୍ର
ପାଣ୍ଡବଙ୍କୁ ଝିଙ୍ଗାସ ତୁ କଲୁଣି ବହୁତ ।
ଆପଣା ଶରୀରେ ବାବୁ ପଡ଼ିଛି ଅଂସାଇ
ପରକୃମି ବାଛୁ ନାସାଦ୍ୱାରେ ହାତ ଦେଇ ।
ଦୁର୍ଯ୍ୟୋଧନ ବୋଇଲେ ଗୋ ଏ ଅର୍ଥ କେମନ୍ତ
ଗୋଲକ କହିବା ମୋର ପକ୍ଷେ କି ଉଚିତ ।
ଗାନ୍ଧାରୀ ବୋଲେ ମଣୋହି କର ଏବେ ଉଠି
ତହିଁ ଉତ୍ତାରେ କହିବା ସିନା ଅର୍ଥ ଗୋଟି ।
ଦୁର୍ଯ୍ୟୋଧନ ବୋଲେ ଅଛି ଏ କଳଙ୍କ ଯେବେ
କାହିଁକି ଗୁପତ କରୁ କହୁ କି ନା ଏବେ ।
ତହିଁର ଅର୍ଥ ଶୁଣିଲେ ସିନା ମହାମାଇ
ଉଠି ଭୋଜନ ମନ୍ଦିରେ କରିବି ମଣୋହି ।
ଗାନ୍ଧାରୀ ବୋଇଲେ ବାବୁ ଶୁଣ ପୂର୍ବକଥା
ଗାନ୍ଧାରସେନ ରାଧା ଯେ ଅଟେ ମୋର ପିତା ।
କୃତ୍ତିକା ନକ୍ଷତ୍ର ଜ୍ୟେଷ୍ଠ ଅମାବାସ୍ୟା ଦିନ
ଜନମ ହୋଇଲି ମୁହିଁ ଦିନ ବିଦ୍ୟମାନ ।
ଜାତି ଉଆଁସୀ ଆବର ମୁଁ ବ୍ରହ୍ମଅସୁରୀ
କେହି ନୋହିଲେ ବିବାହ ମୋତେ ପ୍ରାଣେ ଡରି ।
ଦୂରସ୍ଥ ରାଜାଙ୍କୁ ପିତା ମୋହର ବରିଲା
ମୋ ନାମେ ବରି ବାଇଶି ରାଜାଙ୍କୁ ମାଇଲା ।
ଗାନ୍ଧାରସେନ ବ୍ୟାସଙ୍କୁ ହକାରି ପୁଚ୍ଛଇ
ବ୍ୟାସ ବୋଇଲେ ସାହାଡ଼ାବୃକ୍ଷେ ବିଭା ଦେଇ ।
ପିତାଙ୍କର ଅଗଣାରେ ବୃକ୍ଷ ଗୋଟି ଥିଲା
ବ୍ୟାସଙ୍କୁ ନେଇ ଗାନ୍ଧାରସେନ ଦେଖାଇଲା ।
ଆପେ ବ୍ୟାସ କନ୍ୟାବେଶ କରାଇଲେ ମୋତେ
ବର ବେଶ କରାଇଲେ ବୃକ୍ଷକୁ ସ୍ୱହସ୍ତେ ।
ମୋତେ ବିଭା କରାଇଲେ ପରାଶର ପୁତ୍ର
ସାହାଡ଼ା ବୃକ୍ଷ ଡାଳରେ ମୋ ଡାହାଣ ହସ୍ତ ।
କୁଶରେ ବନ୍ଧନ କଲେ ପରାଶର ବାଳ
ଗାନ୍ଧାରସେନ ନେଇଣ ଦେଲେ ତୀର୍ଥ ଜଳ ।
ମୋର କର ତାର ତହିଁ ଲାଗନ୍ତେ ପ୍ରତ୍ୟକ୍ଷ
ତତକ୍ଷଣେ ଝାଉଁଳିଲା ସେ ସାହାଡ଼ା ବୃକ୍ଷ ।
ସେ ପିତା ବ୍ରହ୍ମରାକ୍ଷସ କନ୍ୟା ଯାଏ ଖାଇ
ଅଷ୍ଟୋତ୍ତର ଶତ କନ୍ୟା ମଲେ ତାହାପାଇଁ ।
ବ୍ୟାସ ଥାଇ ଆପେ ଆପେ ତାହା ଭିଆଇଲେ
ଧୃତରାଷ୍ଟ୍ର ରାଜା ନେଇ ମୋତେ ବିଭାକଲେ ।

ଏସନ ବିଶ୍ୱାସ କଥା ନ ଜାଣନ୍ତି ଆନ
ବ୍ୟାସ ବାସୁଦେବ ଜାଣେ ଏଥିର ବିଧାନ ।
ଯାହା ତୁ ଲୋଡ଼ିଲୁ ବାବୁ ତାହା ହିଁ ପାଇଲୁ
ପରଛିଦ୍ର କହି ନିଜ ମର୍ମ ବଢ଼ାଇଲୁ ।
ଭୀମ ଯାହା କହିଲା ସେ ନିଶ୍ଚୟ ଅଟଇ
ଶୁଣି ଦୁର୍ଯ୍ୟୋଧନ ମନେ ବିଶ୍ୱାସ ଲଭଇ ।
ଏ ଗୁପତ କଥା ଯେବେ ଜାଣିଥିଲା ଭୀମା
ନ ଜାଣି ହୁଡ଼ିଲି ମୁହିଁ ନ ରଖିଣ ସୀମା ।
ନିତି ନିତି ଭୀମା ଏହା ବୋଲିବ ଯେ ମୋତେ
ଆବର ସଭାରେ ମୁହିଁ ବସିବି କେମନ୍ତେ ।
ଗାନ୍ଧାରସେନ ପାମର କିମ୍ପା ଏହା କଲା
ବିଧବାକନ୍ୟାକୁ ଜାଣ ମୋ ପିତାଙ୍କୁ ଦେଲା ।
ଏଡ଼େ ପାପକ୍ଷଣେ ତୁହି ହୋଇଲୁ ଗୋ ଜାତ
ପିତା ଘରେ ପଡ଼ି କିମ୍ପା ନ ମଲ ଗୋ ମାତ ।
ଏତେ ବୋଲି ବୀର କର୍ମ ଆଦରିଣ ଉଠ
ସ୍ନାନ ନିତ୍ୟକର୍ମମାନ ସାରି ଧାର୍ତ୍ତରାଷ୍ଟ୍ର ।
ମଣୋହିରେ ବିଜେ କଲା ମନର ହରଷେ
ଭାନୁମତୀ ରାଣୀ ଆଣି ଅନ୍ନାଦି ପରଷେ ।
ମଣୋହି ସମ୍ପୂର୍ଣ୍ଣ କରି ବିଜେ ପଲ୍ୟଙ୍କରେ
ସେହିଦିନୁ ଦୁର୍ଯ୍ୟୋଧନ ନ ବସେ ସଭାରେ ।
ଯୁଧିଷ୍ଠି ବୋଇଲେ ଭୀମସେନ ମୁଖ ଚାହିଁ
ଦୁର୍ଯ୍ୟୋଧନକୁ ଅନୀତି ବୋଇଲୁ କିମ୍ପାଇଁ ।
ତାର ପିତା ଧୃତରାଷ୍ଟ୍ର ମାତା ଯେ ଗାନ୍ଧାରୀ
ଗୋଲକ ପୁତ୍ର ବୋଇଲୁ କିମ୍ପା ନ ବିଚାରି ।
ଭୀମ ବୋଇଲା ଆମ୍ଭଙ୍କୁ କରଇ ଝିଙ୍ଗାସ
ଅନେକ କହିଲାଣି ସେ ଅନେକ ଦିବସ ।
ପାଞ୍ଚଙ୍କର ପିତା ନାମ ଧରଇ ସଭାରେ
ଉପହାସ କରନ୍ତି ଯେ ବସି କୁରୁବୀରେ ।
ଏବେ ଜାଣିଲା ହୋଇଛି ଯେମନ୍ତ ଯେ ଦେହୀ
ନୋହିଲେ କିମ୍ପା ଚଳନ୍ତା ନିଷ୍କଳଙ୍କ ସେହି ।
ପ୍ରବେଶ ଯୁଧିଷ୍ଠି ଯାଇଁ ଇନ୍ଦ୍ରପ୍ରସ୍ଥ ପୁରେ
ନିତି ସେ ସେବନ୍ତି ଧୃତରାଷ୍ଟ୍ରଙ୍କ ପୟରେ ।
ସେହିଦିନୁ ଆସ୍ଥାନରେ ନାହିଁ ଜାଣ ସଭା
ଯେ ଯାହା ଆସନେ ବଢ଼ିଛନ୍ତି ରାଜଦେବା ।
କୂଟ କପଟ କ୍ଷତ୍ରୀ ଯେ ମାନ ଚକ୍ରବର୍ତ୍ତୀ
ବୁଦ୍ଧିମନ୍ତ ଭାଗ୍ୟବନ୍ତ ବିଦିତ କୀରତି ।
ଲୋହଗିରି ନାମେ ଥିଲା ପର୍ବତ ଗୋଟାଏ
ଉତ୍ସର୍ଗ ବିସ୍ତାର ତାର ଅଟେ କ୍ରୋଶ ଶଏ ।
ଶିଳ୍ପ ବିନ୍ଧାଣୀମାନଙ୍କୁ ଆଣିଲା ରୁଣ୍ଡାଇ
ଶ୍ରୀ ଭୁଜେ ଶାଢ଼ୀ ସକଳ ବଳାରତ୍ନ ଦେଇ ।

ରାତ୍ରକାଳେ ସେ ପର୍ବତେ ଲଗାଇଲା ନେଇ
ଏହାକୁ କାଟିବ ଭାଗ ବରତନ ଖାଇ ।
ପ୍ରଥମ ଘର ଗୋଟିକ ହୋଇବ ସୁସଞ୍ଚ
ଯୋଜନେ ବିସ୍ତାର ତିନିଶତ ହାତ ଉଚ୍ଚ ।
ତହିଁ ନିର୍ମାଣିବ ବଜ୍ର କାବଟ ଯେ ଗୋଟି
ବାହାର କିଳିଣି ଥିବ ଭିତରୁ ନ ଫିଟି ।
ଜଣକରେ ବରତନ ଦେଲା ଗ୍ରାମ ଷୋଳ
ଏହି ଆଜ୍ଞା ଦେଇଗଲା ଧୃତରାଷ୍ଟ୍ର ବାଳ ।
ପାଞ୍ଚ ଉତ୍ତର ଶତେକ ଲାଗିଲେ ବିନ୍ଧାଣୀ
କାଟନ୍ତି ପଥରମାନ ବଜ୍ର କୀଟ ଜାଣି ।
ଦ୍ୱାଦଶ ବରଷେ ତାହା କଲେକ ନିର୍ମାଣ
ସଉଭାଗୀ ନଦୀକୂଳେ ଅପୂର୍ବ ଗଠନ ।
ଉତ୍ତର କୂଳେ ତାହାର ଅରବିନ୍ଦ ଗିରି
ଦୁର୍ଯ୍ୟୋଧନ ଯେ ପଥର ଘର ତହିଁ କରି ।
ଭିତରେ ପିତୁଳାମାନ ଅତି ସୁଶୋଭନ
ଦେଖି ସାନନ୍ଦ ହୋଇଲା ରାଜା ଦୁର୍ଯ୍ୟୋଧନ ।
ବିନ୍ଧାଣୀମାନଙ୍କୁ ଧନ ରତ୍ନେ କଲା ତୋଷ
ଶାରଳା ପାଦେ ଶରଣ ଶ୍ରୀ ଶାରଳା ଦାସ ।



## ସବଂଶ ଗାନ୍ଧାରସେନର ପଥର ଘରେ ବନ୍ଦୀ ଓ ଶକୁନିର ମନ୍ତ୍ରୀତ୍ୱ ଲାଭ

ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ମହାଭାରତ ଚରିତ ଯେ ଆଦ୍ୟପର୍ବର ।
ଏକଦିନେ ଦୁର୍ଯ୍ୟୋଧନ ଗାନ୍ଧାରୀ କି କହି
ମାତା ମହାଦେଈ ଆଜ୍ଞା ଦିଅ ଆମ୍ଭଙ୍କୁ ହିଁ ।
ଯିବି ମୁଁ ଗାନ୍ଧାରସେନ ନୃପତି ରାଜ୍ୟକୁ
କେମନ୍ତେ ସେ କରେ ରାଜ୍ୟ ଦେଖିବି ତାହାକୁ ।
କେମନ୍ତେ ସମ୍ପଦବନ୍ତ ହୋଇଛି ମୋ ଅଜା
କେମନ୍ତ କରି ପାଳଇ ରାଜ୍ୟ ଜନପ୍ରଜା ।
କଥା ପାଶୋରି ଗଲାଣି ଜାଣିଲେ ଗାନ୍ଧାରୀ
ଯାଅ ବୋଲି ପୁତ୍ରକୁ ଯେ ଆଜ୍ଞା ଅବଧାରୀ ।
ଦୁଃଶାସନ ଦୁର୍ଜ୍ଜୟ ଯେ କର୍ଣ୍ଣ ଶଲ୍ୟ କୃପ
ଅଶ୍ୱତ୍ଥାମା ସହିତରେ ଯେତେ ଯେତେ ନୃପ ।
ଏତେକ ସଙ୍ଗରେ ଘେନି ରାଜା କୁରୁପତି
ଗାନ୍ଧାରସେନ ରାଜ୍ୟକୁ ଚଳଇ ତଡ଼ତି ।
ରାତ୍ର କି ଦିବସ ସେହୁ କରଇ ପ୍ରୟାଣ
ହସ୍ତିନାକୁ ଯେ ପନ୍ଦର ଶତ ଯେ ଯୋଜନ ।
ପ୍ରବେଶ ହୋଇଲେ ପଞ୍ଚବିଂଶ ଦିବସରେ
ଦେଶାଉରେ ଜଣାଇଲେ ରାଜାର ଛାମୁରେ ।
ବାରତା ପାଇ ଗାନ୍ଧାରସେନ ନରପତି
ଦଣ୍ଡ ଘେନି ଆସଇ ଯେ ପାଛୋଟି ତଡ଼ତି ।
ବୈଦୂର୍ଯ୍ୟ ପର୍ବତ ତଳେ ହେଲେ ଭେଟାଭେଟି
କୁଶଳ ବାରତାମାନ ପୁଛେ ଧାର୍ତ୍ତରାଷ୍ଟ୍ରି ।
ଦୁର୍ଯ୍ୟୋଧନ ବୋଲଇ ହୋ ଶୁଣ ମାତ ତାତ
ବଳ ଛାଡ଼ି ତୋର ମୋର ହୋଇବା ଏକାନ୍ତ ।
ପର୍ବତ ଉପରେ ଯାଇ ବସି ଅଜା ନାତି
ଦୁର୍ଯ୍ୟୋଧନ ବୋଲେ ଶୁଣ ରାଜଚକ୍ରବର୍ତ୍ତୀ ।
ମୁହିଁ ସହି ନ ପାରିଲି ଯୁଧିଷ୍ଠି ଆର୍ଦ୍ଦୋଳି
ସେ ନିମନ୍ତେ ଅଇଲି ମୁଁ ତୋ ତହିଁକି ଭାଳି ।
ଭୀମ ଅନେକ ଝିଙ୍ଗାସ କଲା ପୁଣି ମୋତେ
ମୁହିଁ ତାର ପ୍ରାଣହତ୍ୟା କରିବି କେମନ୍ତେ ।
ଭୂଇଁ ଛୁଇଁ କର୍ଣ୍ଣେ ହସ୍ତ ଦେଲାକ ଗାନ୍ଧାର
ଯାହା କହିଲୁ ଦୁଃସହ ଅତି ଅଗୋଚର ।
ତୋହବଳେ ପାଣ୍ଡବଙ୍କୁ ହୋଇବ କି କରି
ପ୍ରତ୍ୟକ୍ଷେ ସେ ଦେବକଳା ଘେନି ଅବତରି ।
ଧର୍ମଙ୍କର ବୀର୍ଯ୍ୟେ ଜାତ ଯେବଣ ଯୁଧିଷ୍ଠି
କର ଲେଉଟାଇଲେ ସେ ଲେଉଟଇ ସୃଷ୍ଟି ।
ବୃକୋଦର ବୀର ଜାତ ପବନର ବୀର୍ଯ୍ୟେ
ହସ୍ତେ ଗଦା ଧଇଲେ ସେ ତ୍ରାସେ ଦେବରାଜେ ।
ମହାବଳବନ୍ତ ହାଦେ ଅଟଇ ସେ ଭୀମ
ଲକ୍ଷେ ଯୋଜନୁ ତାହାକୁ ତ୍ରାସ କରେ ଯମ ।
ବାସବର ନନ୍ଦନ ଯେ ଅଟଇ ଫାଲଗୁନି
ଏକ ନାରାଚେ ତ୍ରୈଲୋକ୍ୟ ପାରଇ ସେ ଜିଣି ।
ନକୁଳ ବୋଲି ତାହାର ଯେବଣ ଆତ୍ମଜ
ଆକାଶେ ପାଟ ଅଛି ଯେ ଅଶ୍ୱିନୀ ଆତ୍ମଜ ।
ତାହାର ଅନୁଜ ଯେହୁ ସହଦେବ ବୋଲି
ଭୁତଭବିଷ୍ୟତ ଜ୍ଞାତା ଶ୍ରବଣେ ଶୁଣିଲି ।
ମୋହର ବଚନ ଶୁଣରେ ମାନଗୋବିନ୍ଦ
ସମୟେ ବରତିଥାଅ ନ କରିଣ ଦ୍ୱନ୍ଦ୍ୱ ।
ଦୁର୍ଯ୍ୟୋଧନ ବୋଇଲା ମୁଁ ଯୁଦ୍ଧ ନ କରିବି
ଉପାୟ କରିଣ ମୁହିଁ ପାଣ୍ଡବ ମାରିବି ।
ଗାନ୍ଧାରସେନ ବୋଇଲା କେବଣ ଉପାୟ
ଦୁର୍ଯ୍ୟୋଧନ ବୋଲେ ଆସ ଦେଖାଇ ବିରାୟ ।
ଗାନ୍ଧାର ବୋଲେ ଅଇଲୁ ଯେବେ ମୋର ପୁରେ
ଦିନ ପାଞ୍ଚ ସାତ ରହିଯାଅ ମୋର ଘରେ ।
ଦୁର୍ଯ୍ୟୋଧନ ବୋଲେ ଅଜା ନ କହ ଯେ ମୋତେ
ପାଣ୍ଡବଙ୍କୁ ନାଶ କଲେ ବର୍ତ୍ତଇ ନିଶ୍ଚିନ୍ତେ ।
ସବୁ ସୈନ୍ୟ ପଠିଆଇ ଦିଅ ତୋର ଦେଶ
ଇଷ୍ଟ କୁଟୁମ୍ବ ଘେନିଣ ମୋର ସଙ୍ଗେ ଆସ ।

ଆପଣାର ସତ ପୁତ୍ର ଘେନି ସେ ଗାନ୍ଧାର
ଛୟାଶୋଇ ଭାଇ ବନ୍ଧୁ ଆହୁରି ତାହାର ।
ଆପଣାକୁ ଘେନି ଶଏ ସତାଶୋଇ ଜଣ
ଦୁର୍ଯ୍ୟୋଧନ ଏତେ ଘେନି କରଇ ପ୍ରୟାଣ ।
ସୌବର୍ଦ୍ଧନ ବନେ ଆସି ହୋଇଲେ ପ୍ରବେଶ
ମିଳିଲେକ ଯାଇଁ ଲୋହ ଗିରିବର ପାଶ ।
କୂଟ କପଟୀ ରାଜା ସେ ଫେଡ଼ି ଯନ୍ତ୍ରଗୋଟି
ଆପେ ଭିତରେ ପଶିଲା ଆଗେ ଧାର୍ତ୍ତରାଷ୍ଟ୍ରି ।
ପଛେ ଗୋଡ଼ାଇ ପଶିଲେ ସେ ଗାନ୍ଧାରସେନ
ପିତା ସଙ୍ଗରେ ପଶିଲେ ତାର ପୁତ୍ରମାନ ।
ଦୁର୍ଯ୍ୟୋଧନ ବୋଲେ ଅଜା ବିଚାର କରଇ
ଭୀମ ଗଦା ସହିବାକି ଏହି ପରବତ ।
ଏହା ଆହେ ଅଜା ତୁହି ଦେଖ ଦୃଢ଼କରି
କବାଟ କିଳେ ବାହାରେ ମୁହିଁ ଥାଇ କରି ।
ଦେଖି ବିଚାର କରଇ ଗାନ୍ଧାର ନୃପତି
ବାବୁ ଦୁର୍ଯ୍ୟୋଧନ ତୁହି ମାନ ଚକ୍ରବର୍ତ୍ତୀ ।
ତୋହର ବୁଦ୍ଧିବଳେ ସିନା ହୋଇଲା ନିର୍ମାଣ
ପ୍ରତ୍ୟକ୍ଷେ ଏ ଦିଶୁଛି କି ଅମର ଭୁବନ ।
ପିତା ପୁତ୍ରେ ଭଲକରି ବିଚାରକୁ କର
କାହାକୁ କି ବୁଦ୍ଧି ଦିଶେ କହ ମୋ ଆଗର ।
ଏତେକ କହୁ ବାହାର ହେଲା ଧାର୍ତ୍ତରାଷ୍ଟ୍ର
ବାହାରୁ ଲଗାଇଦେଲା ସେ କବାଟ ଗୋଟି ।
ଗାନ୍ଧାରସେନ ବୋଇଲା ଫେଡ଼ କି ନା ବାବୁ
ସର୍ବଜ୍ଞ ନାଥ ତୁ ତୋତେ ବୁଦ୍ଧି ଦିଶେ ସବୁ ।
ଦୁର୍ଯ୍ୟୋଧନ ବୋଇଲାକ ଶୁଣ ହେ ଗାନ୍ଧାର
ତୁହି ନିଦାନ ବଇରୀ ଅଟୁ ଯେ ମୋହର ।
ମାତାଙ୍କୁ ମୋହର ତୁହି ଯେଉଁ କୃତ୍ୟ କଲୁ
ବିଧବା କନ୍ୟାକୁ ଧୃତରାଷ୍ଟ୍ରେ ଆଣି ଦେଲୁ ।
ଗୋଟିକ ବୃକ୍ଷେକ ପୂର୍ବେ ବିଭା ଦେଇଥିଲୁ
ଏବେ କେମନ୍ତେ ବିଧବା ମୋ ପିତାକୁ ଦେଲୁ ।
ଅଗ୍ନିରେ ଦହନ କିମ୍ବା ନ କଲୁ ତାହାକୁ
ସେ କଥା କଳଙ୍କ ଭୀମ ବୋଇଲା ଆମ୍ଭଙ୍କୁ ।
ତୋତେ ମାଇଲେ ଯେ ପାଶୋରିବି ସେହି କଥ
ତୋହର ନିମନ୍ତେ ମୋରେ ଇଚ୍ଛା ଅପ୍ରମିତ ।
ପାଣ୍ଡବଙ୍କ ନିମନ୍ତେ ନିର୍ମିତ ନୁହେଁ ଘର
ତୋତେ ମାରିବା ନିମନ୍ତେ ନିର୍ମିତ ଗାନ୍ଧାର ।
ତୁ ଥାଅ ନିଶ୍ଚିନ୍ତେ ଏଥେ ଯାଉଅଛି ମୁହିଁ
ବଜ୍ର କିଙ୍କିଣୀ କି କିଳି ଗଲା କୁରୁସାଇଁ ।
ଆପଣା ପୁରରେ ଯାଇଁ ହୋଇଲା ପ୍ରବେଶ
ସ୍ନାନ ଭୋଜନ କରିଣ ହୋଇଲା ହରଷ ।
ତଥ୍ୟ ବାରତା ପାଇଣ ଅଇଲା ଗାନ୍ଧାରୀ
ଦୁର୍ଯ୍ୟୋଧନର ଅଗ୍ରତେ ଆସି ବିଜେ କରି ।
ବାବୁ ତୁ ମୋର ପିତାକୁ ଭରି ବନ୍ଦି ଘର
ଅର୍ଜିବୁ ସୋଦର ବଧ ପାପ କି ପ୍ରକାର ।
ଗାନ୍ଧାରସେନ ଥିଲେ ତ ତୋର ହୁନ୍ତା ହିତ
କେବେ ହେ ନ ବାହୁଡ଼ଇ ଜାଣି କଲା କୃତ ।
ଦୁର୍ଯ୍ୟୋଧନ ନ ଶୁଣିଲେ ଗାନ୍ଧାରୀର ବୋଲ
ଗାନ୍ଧାରୀ ବୋଲେରେ ବାବୁ ନ କଲୁ ତୁ ଭଲ ।
ଯଦ୍ୟପି ତାଙ୍କୁ ମୋହର କଲୁ ଏଡ଼େ କୃତ୍ୟ
ଅନ୍ନ ଦେଉଥାଅ ଜୀଇଥିବା ପରିଯନ୍ତ ।
ଦୁର୍ଯ୍ୟୋଧନ ବୋଲେ ମାଗୋ ତୋହର ବଚନେ
ଦେବଇ ଅନ୍ନ ବ୍ୟଞ୍ଜନ ଦେଇ ପ୍ରତିଦିନେ ।
ମାତା ବୋଲ ଶିରୋଧାର୍ଯ୍ୟ କରି କୁରୁବୀର
ବସାଇ କଲା ତକ୍ଷଣେ ଅନ୍ନ ଏକ ଭାର ।
ଏକ ଭାର ଅନ୍ନ ତିନି ପାଣି କଳସୀଏ
ନିଯୋଗୀଙ୍କ ମୂଳେ ନେଇ ଦିଏ କୁରୁ ରାୟେ ।
ବନ୍ଧଜଳା ବାଟେ ନେଇ ଦିଅନ୍ତି ସେ ଅନ୍ନ
ଦେଖି ବିଚାର କରଇ ସେ ଗାନ୍ଧାରସେନ ।
ଅନ୍ନ ବିନେ ମଲେ ମୁକ୍ତ ନୁହନ୍ତି ତ ଜନ
କେମନ୍ତେ ଛାଡ଼ିବା ଆମ୍ଭେ ଯାଚିବାର ଅନ୍ନ ।
ତେଣୁ ସମସ୍ତେ ପାତନ୍ତି ଦକ୍ଷହସ୍ତ ଗୋଟି
ସମସ୍ତଙ୍କୁ ଜ୍ୟେଷ୍ଠ ପୁତ୍ର ଦିଏ ଅନ୍ନ ବାଣ୍ଟି ।
ଜଣ ଜଣକରେ ଗୁଣ୍ଡା ଗୁଣ୍ଡା ଏକ ଅନ୍ନ
ଘଟିକ ପାଣି ପିଅନ୍ତି ଚଳାଏ ପ୍ରମାଣ ।
ଏହି ମତେ ନିତି କୁରୁବୀର ଯେ ଦିଅଇ
ଶକୁନି ତହୁଁ ଥୋକାଏ ଲୁଚାଇ ରଖଇ ।
ଭାତ ଲୁଚାଇ ଚକଟି ଲିପି ଦିଏ କାନ୍ଥେ
ବୁଦ୍ଧି ଦିଆଇଲା ଆପେ ଜୀଇଁବା ନିମନ୍ତେ ।
ବଦନ୍ତି ଅଗସ୍ତି ଶୁଣ ରାଜା ରାଜେଶ୍ୱର
ଛ ମାସ ପର୍ଯ୍ୟନ୍ତ ଦେଲା ଅନ୍ନ ଏକ ଭାର ।
ଛଅମାସ ଅନ୍ତେ ପୁଣି ବୁଦ୍ଧି ଏକ କଲା
ଅଙ୍ଗଏକ ଦିଅ ସୂପକାରେ ଆଜ୍ଞା ଦେଲା ।
ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଚଉଷଠି ଦିନ
ଆଜ୍ଞାଏ ବଢ଼ାଇଦେଲେ ଅଧଭାରେ ଅନ୍ନ ।
ତାହାକୁ ବାଣ୍ଟି ଭୁଞ୍ଜିଣ ହୋଇଲେ ବିକଳ
ଥାଳି ଏକ ଅନ୍ନ ଦେଲା ରାଜା କିଛି କାଳ ।
ତାହା ଦେଖି ବିଚାରଇ ଗାନ୍ଧାର ରାଜନ
ବିନାଦୋଷେ ନାଶକଲା ପାପୀ ଦୁର୍ଯ୍ୟୋଧନ ।
ଶଏ ଛୟାଶୋଇ ଜଣେ ଥାଳିଏକ ଭାତ
ସମସ୍ତ ଆହାର ଏହା କରିବେ କେମନ୍ତ ।

ଦୁର୍ଯ୍ୟୋଧନର ତ ଆମ୍ଭେ ନୋହୁ ନା ବଇରୀ
ବିନା ଅପରାଧେ ମାରେ ଆମ୍ଭଙ୍କୁ ଏ ଭରି ।
ଏ ମୋହର ବଂଶ ମାରୁଅଛି ଅନିମିତ୍ତେ
ଥାଳିଏ ଭାତ ସମସ୍ତେ ଭୁଞ୍ଜିବା କେମନ୍ତେ ।
ଏକ ଥାଳିଆ ଅନ୍ନକୁ ଏକ ଜଣେ ଭୁଞ୍ଜି
ପିତା କାର୍ଯ୍ୟ କରି ଦୁର୍ଯ୍ୟୋଧନ ବଂଶ ଗଞ୍ଜି ।
ଗାନ୍ଧାରସେନ ମୁଖରୁ ଏସନକ ଶୁଣି
ଜ୍ୟେଷ୍ଠପୁତ୍ର ଶକୁନି ଯେ କହିଲା ଏ ବାଣୀ ।
ତୁ ଯେମନ୍ତେ ଆଜ୍ଞା ଦେଲୁ ପିତା ନୃପସାଇଁ
ଦୁର୍ଯ୍ୟୋଧନ ବଂଶ କ୍ଷୟ କରି ମୁଁ ପାରଇ ।
ଗାନ୍ଧାରସେନ ବୋଇଲା ଅନ୍ନଥାଳି ଖାଅ
ସବୁରି ଆୟୁଷ ଘେନି ତୁହି ବର୍ତ୍ତିଥାଅ ।
ସେ ଥାଳିକ ଅନ୍ନ ଦେଇ ଭୁଞ୍ଜାନ୍ତି ଶକୁନି
ସର୍ବେ ପ୍ରାଣତ୍ୟାଗୀ ହେଲେ କିଛିଦିନେ ପୁଣି ।
ଶଏ ପଞ୍ଚାଶେଇ ଜଣ କଲେ ପ୍ରାଣତ୍ୟାଗ
ଶକୁନି ଘେନି ବଞ୍ଚିଲା ଏକା ମହାଭାଗ ।
ଗାନ୍ଧାରୀ ପଚାରଇ ଯେ ଶୁଣରେ ଶକୁନି
ତୁ ମୋହର ଜ୍ୟେଷ୍ଠ ପୁତ୍ର ଅଟୁ ମହାଜ୍ଞାନୀ ।
ବାବୁ ପୁତ୍ର ମୁହିଁ ରକ୍ଷା କରିଥିଲି ତୋତେ
ଦୁର୍ଯ୍ୟୋଧନ ବଂଶ ନାଶ କରିବୁ କେମନ୍ତେ ।
ଶକୁନି ବୋଲେ ଅନେକ ବୁଦ୍ଧି ମୋର ଅଛି
ତୋ ବାକ୍ୟ କେମନ୍ତ କହ କାର୍ଯ୍ୟ ସିଦ୍ଧି ଗଛି ।
ତୁ ଯେ ଯାଇଅଛୁ ଏବେ ବୁଦ୍ଧି ମୋତେ କହ
ହୃଦେ ଧରିଥିବି ତୋର ବଚନେ ସନ୍ଦେହ ।
ଗାନ୍ଧାରସେନ ବୋଇଲା ଶୁଣ ଜ୍ୟେଷ୍ଠ ପୁତ୍ର
ଯେତେବେଳେ ମୋ ଜୀବନ ହେବ ସମାପତ ।
ଏହି ମୋହର ଡାହାଣ ପଲ୍ଲବର ଅସ୍ଥି
ଯତ୍ନେ ଥୋଇଦେବୁ ଯେହ୍ନେ ନ ଜାଣେ ନୃପତି ।
ଡାହାଣ ହସ୍ତ ଡାହାଣ ପବ ଖଣ୍ଡ କାଟି
ତାହା କରାଇବୁ ବାବୁ ପଶା ଦୁଇ କାଠି ।
ବାମହସ୍ତ ପବ କାଟି କରାଇବୁ ସାର
ତିରିଶ କୋଠି କଟାଇ ଖେଳାଇବୁ ଖେଳ ।
ଅବଶ୍ୟ ତୁ ଏ ସଂସାରେ ହେବୁ ଭଲ ଜଣେ
ରାଜାର ତୁଲେ ତୁ ବସିଥିବୁ ମନ୍ତ୍ରୀପଣେ ।
ତୁହି ତ ତାହାଙ୍କୁ ନାଶ କରି ନ ପାରିବୁ
ଯୁଧିଷ୍ଠି ଦୁର୍ଯ୍ୟୋଧନଙ୍କୁ ପଶା ଖେଳାଇବୁ ।
ଆପେ ଖେଳେ ପାତିବୁ ତୁ ଦୃଢ଼ କରି ଦଶା
ଦାନ ପଡ଼ିବଟି ବାବୁ ତୋହର ମନୀଷା ।
ଯୁଧିଷ୍ଠି ହରାଇ ଜିତାଇବୁ ଦୁର୍ଯ୍ୟୋଧନେ
ଘେନାଇବୁ ରାଜ୍ୟଭାର ଦଣ୍ଡ ସିଂହାସନେ ।
ଆମ୍ଭ ସହିତେ ଭାରିଯା ଦେବୁ ଦୁର୍ଯ୍ୟୋଧନ
ସଭାତଳେ ବସାଇବୁ ନେଇ ପାଞ୍ଚ ଜଣ ।
ସଭା ଆସ୍ଥାନରେ ବସିଥିବ କୁରୁରାଜା
ସଭାକୁ ତୁ ଅଣାଇବୁ ପାଣ୍ଡବ ଭାରିଜା ।
ବିବସନ କରାଇବୁ ସଭା ମଧ୍ୟସ୍ଥଳେ
ସେ କଥା ଲିଭିବ ଯେହ୍ନେ ଭୀମ ବକ୍ଷସ୍ଥଳେ ।
ସେହି ରାଗ ମନେ ଘେନି ବୀର ଭୀମ ତମେ
ଦୁର୍ଯ୍ୟୋଧନ ବଂଶ ନାଶ କରିବ ସଂଗ୍ରାମେ ।
ତୁହି ରଣଯଜ୍ଞ କରି ସହଦେବ ହସ୍ତେ
ଭଣଜାକୁ ମରାଇଣ ମାରିବୁ ପଶ୍ଚାତେ ।
ଶକୁନି ବୋଇଲା ତାତ କହିଲୁ ସେ କଥା
ଦେବଙ୍କୁ ଯେ ଅଗୋଚର ଏ ତୋର ବ୍ୟବସ୍ଥା ।
ଭୁଜ ତୋର ତାତ ଏତେ ପୁଣ୍ୟ କଲା କାହିଁ
ପ୍ରତେ କରାଅ ଏଥିରେ କଥା ମୋତେ କହି ।
ଗାନ୍ଧାରସେନ ବୋଲେ ଏ ତ୍ରେତାର ବୃତ୍ତାନ୍ତ
ସମସ୍ତ ଶସ୍ତ୍ର ଶାସ୍ତ୍ରେ ମୁଁ ଅଟଇ ନିର୍ମିତ ।
ପଶାଖେଳ ଖେଳି ମୁହିଁ ଦ୍ୱାରେ ପ୍ରତିଦିନେ
ଗଙ୍ଗାଙ୍କୁ ମୁଁ ସେବାକଲି ସେହି ଅଭିମାନେ ।
ପାଞ୍ଚ ବରଷ ପର୍ଯ୍ୟନ୍ତ କଲି ଘୋର ତପ
କଠୋର ତପେ ଦେଖିଲି ଗଙ୍ଗାଙ୍କ ସ୍ୱରୂପ ।
ଉତ୍ତରାୟଣେ ପ୍ରସନ୍ନ ହେଲେ ଧବଳାଙ୍ଗୀ
ବୋଇଲେ ଗାନ୍ଧାରସେନ ବର ଘେନି ମାଗି ।
ମୁଁ ବୋଇଲି ଯେବେ ଦୟା କଲ ଆଦିନାରୀ
ବିଜୟ ପଶା ସାର ତୁ ଦିଅ ଆଣିକରି ।
ସେ ପଶାରେ କେହି ମୋତେ ନୋହିବେ ଜିଣନ୍ତା
ସୁପ୍ରସନ୍ନେ ପଶା ସାର ଦେଲେ ଆଦିମାତା ।
ପଶା କାଠି ସାର ବାବୁ ଆସନ୍ତେ ମୁଁ ଘେନି
ଗଙ୍ଗା ବୋଇଲେ ତୋ ତହିଁ ଥିବ ବର୍ଷ ତିନି ।
ଏ ତିନି ବରଷେ ତିନି ଭୁବନେ ଜିଣିବୁ
କଥା ରୁହାଇଣ ପୁଣି ବାହୁଡ଼ାଇ ଦେବୁ ।
ସେ ବିଜୟ ପଶା ସାର ଘେନି ଗୃହେ ଗୃହେ
ଅନେକ ରାଜାଙ୍କୁ ମୁହିଁ ଜିଣିଲି ପଶାଏ ।
ଆଣିଲି ଧନ ଭଣ୍ଡାର ଗଜାଶ୍ୱ ପଦାତି
ପଶାଖେଳ ଭୟେ କେହି ନଇଲେ ମୋ କତି ।
ତିନିବର୍ଷ ଅନ୍ତେ ତୀର୍ଥ ଉତ୍ତରାଙ୍କେ ଗଲି
ଗଙ୍ଗାଙ୍କ ବିଜୟ ପଶା ସ୍ତୁତିକରି ଦେଲି ।
ପଶା ଘେନିବାକୁ ପାତିଦେଲେ ଦେବୀ ହସ୍ତ
ବିନୟ ଭାବେ ବୋଇଲି ମୁଁ ତାଙ୍କୁ ଏମନ୍ତ ।
ତୁ ଯେ ପ୍ରସନ୍ନ ହୋଇଲୁ ମାହେଶ୍ୱରୀ ମୋତେ
ନ ଥିବ କି ତୋର ଅନୁଗ୍ରହ ଏ ଜଗତେ ।

ଗଙ୍ଗା ବୋଇଲେ ଏ ପଡୁଥିଲା ଯେଉଁ କରେ
ସେ ସ୍ତବ ପବ ଘେନିବ ଯେ ତୋ ମୃତ୍ୟୁକାଳେ ।
କରିବ ଡାହାଣ ପବ ପଶା ଦୁଇକାଠି
ବାମ ହସ୍ତର ପ୍ରବକୁ ଗୁଳି ଷୋଳ ଗୋଟି ।
ତୋହର ବଂଶରେ ରହିଥିବ ସବୁଦିନେ
କେହି ଜିଣି ପାରିବେ ତାଙ୍କୁ ତ୍ରିଭୁବନେ ।
ଗଙ୍ଗା ପ୍ରସନ୍ନ ବାବୁରେ ନୁହେ ଆନ କରି
କହୁ କହୁ ପ୍ରାଣ ତ୍ୟାଗ କଲେ ଦଣ୍ଡଧାରୀ ।
ପିତାର ବଚନେ ସେହି କୁମାର ଶକୁନି
ହସ୍ତର ଅସ୍ଥି ପବକୁ ଯତ୍ନ କରି ଘେନି ।
ପଥରେ ଘୋରିଣ କଲା ପଶା ଦୁଇ କାଠି
ବାମ ହସ୍ତ ପବ କଲା ସାର ଷୋଳ ଗୋଟି ।
ଶଏ ଛୟାଣୋଇ ଜଣ ହରାଇଲେ ପ୍ରାଣ
ଏକମାତ୍ର ଶକୁନିର ରହିଲା ଜୀବନ ।
ଥାଳିଏକ ଅନ୍ନ ଦେଉଥିଲା କୁରୁପତି
ଅନ୍ତେଣ ତାହା ଦେଲା ମାନଚକ୍ରବର୍ତ୍ତୀ ।
କାନ୍ଥରେ ଲିପିଥିଲା ଶକୁନି ଯେତେ ଅନ୍ନ
ତାହା ଖାଇଣ ପିଣ୍ଡ ରଖଇ ପ୍ରତିଦିନ ।
ଏଥୁ ଅନନ୍ତରେ ହେ ରହସ୍ୟ କଥା ଶୁଣ
ମାନଚକ୍ରବର୍ତ୍ତୀ ତହୁଁ କଲାକ ଯେସନ ।
ଆସ୍ଥାନୁ ଉଠି ନୃପତି ପ୍ରସା କରିଗଲା
ବଟବୃକ୍ଷର ତଳରେ ଯାଇଣ ବସିଲା ।
ତାହାର ପ୍ରସାରେ ଭାସିଗଲା ବଟ ମଞ୍ଜି
ଦେଖି ନୃପତି ହସିଲା କରି ମୁଖ ଭଙ୍ଗୀ ।
ମନେ ପାଞ୍ଚିଲା ଜାତ ଏ ବୀଜୁ ଏଡ଼େ ତରୁ
ଏମନ୍ତ ପାଞ୍ଚିଣ ରାଜା ହସେ କୁରୁ କୁରୁ ।
ଏମନ୍ତ ବୋଲିଣ ତହୁଁ ନୃପତି ହସିଲା
ଏଡ଼େକ ତରୁର ମଞ୍ଜି ମୂତ୍ରେ ଭାସିଗଲା ।
ପାଣି ଝରି ଘେନି ଯାଉଥିଲା ଯେ ମାଳତୀ
ନୃପତିର ହସ ଦେଖି ସେ ହସେ ଝଟତି ।
ନୃପତି ବୋଇଲେ ଆଲୋ ହସିଲୁ କାହିଁକି
ବେଗ କରିଣ କହ ତୁ ବିଚାରି ତହିଁକି ।
ଏହା ମୋତେ ମୋଢ଼ୀ ଆଲୋ କହସି ବିଚାରି
ନୋହିଲେ ନାସା ଶ୍ରବଣ ଛେଦିବି ତୋହରି ।
ଏମନ୍ତ କାହାକୁ ବୋଲି ନୃପତି ଉଠିଲା
ମନେ ବଡ଼ ଖେଦ ପାଇ ସେ ଦାସୀ ଚଳିଲା ।
ସେହିଦିନ କିଛି ଅନ୍ନ ପାଣି ଘେନି ନାରୀ
ଜଳାବାଟେ ପଥର ଘରରେ ଦେଇ କରି ।
ବୋଇଲା ଏଥି କେ ମହାତମା ଅଛ ଜୀଇଁ
ଆଜିକ ଅନ୍ନ ମୁଠିଏ ଭୁଞ୍ଜିଥାଅ ତୁହି ।
କାଲିଠାରୁ ତୁମ୍ଭେ ବାବୁ କର୍ମ ଆଦିରିବ
ଆଉ କେ ତୁମ୍ଭଙ୍କୁ ଅନ୍ନ ପାଣି ଆଣି ଦେବ ।
ତାହାକୁ କାରଣ ଯେ ଶକୁନି ପଚାରିଲା
କାଲି ନାକ କାନ କଟାହେବ ସେ ବୋଇଲା ।
ଶକୁନି ବୋଇଲା କିମ୍ପା କଟାହେବ ନାକ
ମୋହ ଆଗେ କହ ସେ ସମସ୍ତ କଥାଯାକ ।
ମାଳତୀ ବୋଲେ ନୃପତି ପ୍ରସା କରି ଗଲେ
ପ୍ରସ୍ରାକରୁ କରୁ ରାଜା ହସିଣ ଉଠିଲେ ।
ତାହାଙ୍କର ହସରୁ ଯେ ହସିଲଇଁ ମୁହିଁ
ସେଥିଯୋଗୁ ମହାକୋପ କଲେ ନରସାଇଁ ।
କାହିଁପାଇଁ ମାଳତୀ ଯେ ହସିଲୁ ତୁ କହ
ନୋହିଲେ ଲୋ ନାସା ଛେଦି ନାଶିବି ତୋ ଦୋହେ ।
ଶକୁନି ବୋଇଲେ ମାଗୋ କାହିଁକି ତୁ ଡରୁ
ବଟବୃକ୍ଷ ତଳେ ଯାଇଁ ବସିଲେ ସେ କୁରୁ ।
ତା ପ୍ରସାରେ ବଟଫଳ ଭାସିଗଲା ଯହୁଁ
ମନେ ମନେ ପାଞ୍ଚି ରାଜା ହସିଲାକ ତହୁଁ ।
ବୋଲେ ଏଡ଼େ ତରୁ ବୀର୍ଯ୍ୟ ମୂତ୍ରେ ଭାସିଗଲା
ମନେ ଏମନ୍ତ ପାଞ୍ଚିଣ ନୃପତି ହସିଲା ।
ପଚାରିଲେ ରାଜା ତାଙ୍କୁ କହ ଏହି କଥା
ମନରେ ପ୍ରତେ ଯେହୁ ଯେ କରିବ ସର୍ବଥା ।
ଏମନ୍ତ ଶୁଣି ମାଳତୀ ଅନ୍ନ ଦେଇଗଲା
ନବରେ ଯାଇଣ ତାର ପ୍ରବେଶ ହୋଇଲା ।
ନୃପତି ବୋଇଲେ ସେହି ପୋଇଲୀକୁ ରାଇ
ପଚାରିଲେ କଥା ଆଲୋ ନ କହୁ କିମ୍ପାଇଁ ।
ସେ ବୋଇଲା ଗୋସାଇଁ ହେ ଶୁଣ ମୋର ବାଣୀ
ଏ ଛାର କଥାକୁ ନିଷ୍ଠା କରିଅଛ ପୁଣି ।
ତୁମ୍ଭେ ଯେ ବଟବୃକ୍ଷର ତଳେ ବସିଥିଲ
ପରିସ୍ରାରେ ମଞ୍ଜି ତାର ଭାସିବା ଦେଖିଲ ।
ମନେ ପାଞ୍ଚିଲ ଯେ ଏଡ଼େ ବୀର୍ଯ୍ୟୁ ଏଡ଼େ ତରୁ
ପ୍ରସାରେ ବହିଯାଉଁ ଯେ ହସ କୁରୁ କୁରୁ ।
ଏହା ଶୁଣି ନରପତି ଚକିତ ହୋଇଲା
ମନର କଥା ଏ ମୂଢ଼ା କି ରୂପେ ଜାଣିଲା ।
ଏ ବୁଦ୍ଧି ଏହାର ନୁହେଁ ବୋଲି ସେ ଭାବିଲା
ଏକଥା ଏହାକୁ ଅବା କିଏ ସେ କହିଲା ।
ବୋଇଲା ମାଳତୀ ଏହା କେ କହିଲା ତୋତେ
ମୋ ମନର ବାରତା ଲୋ ଜାଣିଲୁ କେମନ୍ତେ ।
ଏ କଥା ମୋ ଆଗେ କହ ତୁ ଆଲୋ ପାମରୀ
ନୋହିଲେ ନାସା ଶ୍ରବଣ ଛେଦିବି ତୋହରି ।
ଏ ରୂପେ ବୋଲିଣ ରାଜା ବିଜେ କରିଗଲା
ସନ୍ଧ୍ୟା ସମୟେ ମାଳତୀ ଅନ୍ନ ନେଇ ଗଲା ।

ବୋଇଲା ବାପ ଆଜକ ଅନ୍ନ ଭୋଗ କର
ନିଶ୍ଚୟରେ ମୃତ୍ୟୁ ଏବେ ହୋଇଲା ମୋହର ।
ନୃପତି ବୋଇଲା ଏହା କେ କହିଲା ତୋତେ
ଯାହାର ନାମ କହିଲେ ପ୍ରେତେ ଯିବ ଚିତ୍ତେ ।
ମାଳତୀ ତୋହର ଏହା ନୁହଇ ଲୋ ବୁଦ୍ଧି
କେମନ୍ତେ ଜାଣିଲୁ ତାହା କରିବୁ ଅବଧି ।
ଶକୁନି ବୋଲେ ମାତ ଗୋ କହିବୁ ତୁ ଯାଇଁ
ପଥର ଘରେ ଅଛି ସେ କହିଲା ଗୋସାଇଁ ।
ଏମନ୍ତ ଶୁଣିଣ ତହୁଁ ଦାସୀ ଚଳିଗଲା
ନବରେ ଯାଇଣ ପୁଣି ପ୍ରବେଶ ହୋଇଲା ।
ଆରଦିନ ନରପତି ତାକୁ ପଚାରିଲା
କହଲୋ ମାଳତୀ ତୋତେ କେ ତାହା କହିଲା ।
ଦାସୀ ବୋଇଲା ଗୋସାଇଁ ଶୁଣ ଦଣ୍ଡଧାରୀ
ମୁହିଁ ଛାର ସ୍ତିରୀଜାତି ଅଟଇ ପାମରୀ ।
ମୋର ଦୋଷ ପ୍ରଭୁ କ୍ଷମା କରିବାକୁ ତୁମ୍ଭେ
ସଦା ଅପରାଧୀ ଅଟୁ ଜାଣ ସ୍ତିରୀ ଆମ୍ଭେ ।
ମୁହିଁ ତୁମ୍ଭର ଆଜ୍ଞାରେ ଯାଇ ହେ ଗୋସାଇଁ
ପଥର ଘରେ ଯେ ଅନ୍ନ ଦେଉଥିଲି ନେଇ ।
ତାହାକୁ ବୋଇଲି କହ ଏଥିରେ ଯେ ଅଛ
ଆଜିଠାରୁ ମୃତ୍ୟୁ ମୋର ହୋଇବ ଅବଶ୍ୟ ।
ମୋତେ ତ ତୁମ୍ଭର ନରପତି କୋପ କଲେ
ନାସା ଶ୍ରବଣ ଛେଦିଣ ମାରିବେ ବୋଇଲେ ।
ଏମନ୍ତ ବୋଲିଣ ତାଙ୍କୁ କହିଲଇଁ ଯହୁଁ
ସେହି ମୋତେ ଏହିକଥା କହିଦେଲା ତହୁଁ ।
ଶୁଣି ରାଜା ଦୁର୍ଯ୍ୟୋଧନ ବିଚାରଇ ଚିତ୍ତେ
ସେ ମୋହର ହୃଦକଥା ଜାଣିଲା କେମନ୍ତେ ।
ଏଡ଼େ ବଡ଼ କଥା ସେହି ଜାଣିଲାକ ଯହୁଁ
ମନ୍ତ୍ରୀପଣକୁ ଭାଜନ ଅଟଇ ସେ ତହୁଁ ।
ଏମନ୍ତ ବିଚାରି ରାଜା ହୋଇ ତୋଷମନ
ପଥର ଘର ଫେଡ଼ିବା ପାଇଁ କଲା ମନ ।
ତୁଲେ ଦୁର୍ଯ୍ୟୋଧନ ତହୁଁ ଘେନି ଶତ ଭାଇ
ଭୀଷ୍ମ କର୍ଣ୍ଣ ଅଶ୍ୱତ୍ଥାମା ସଙ୍ଗତରେ ନେଇ ।
ଭୁରିଶ୍ରବା ବାହ୍ଲିକ ଯେ ଶଲ୍ୟ ସେନାପତି
ସମସ୍ତେ ଯାଇଣ ସେହି ଦୁଆର ଫେଡ଼ନ୍ତି ।
ଦେଖିଲାକ ଦୁର୍ଯ୍ୟୋଧନ ଦ୍ୱାରେ କେହି ନାହିଁ
ଜୀବନେ କେ ଅଛି ବୋଲି ଡାକ ସେ ଦିଅଇ ।
ଭିତରୁ ବାହାର ହେଲା ମନ୍ତ୍ରୀ ଯେ ଶକୁନି
ଦୁର୍ଯ୍ୟୋଧନ ବୋଲେ ମାମୁଁ ଅଛୁ ପ୍ରାଣଘେନି
ଆହା ଆହା ମାତୁଳ ହୋ ବୋଲି କୁରୁପତି
ନବରକୁ କୋଳ କରି ନେଲା ମହୀପତି ।

କନକ ଘଟରେ ପାଣି ପୂରାଇ ଅଣାଇ
ସ୍ନାନ କରାଇଲଣ ଆପେ ତହିଁ ଉଭାହୋଇ ।
ଅନେକ ସୁଗନ୍ଧ ଦ୍ରବ୍ୟ ଲେପିଲା ତା କେଶ
ସ୍ନାନ କରାଇ ପିନ୍ଧାଇ ଦେଇ ପୀତବାସ ।
ନାନାବିଧ କୁସୁମରେ କେଶକୁ ସଜାଇ
ଅଷ୍ଟରତ୍ନ ଅଳଙ୍କାରେ ଶରୀର ମଣ୍ଡାଇ ।
ଚତୁଃସମ ମୃଗନାଭି କସ୍ତୁରୀ ଚନ୍ଦନ
ଶକୁନିର ଦେହେ କଲା ଆପେ ଯେ ଲେପନ ।
ଶ୍ରୀ ହସ୍ତରେ ଶାଢ଼ୀ ଦେଲା ତାହାକୁ ନୃପତି
ଏ ପଞ୍ଚ କଟକେ ମାମୁଁ ତୁହି ଏକ ମନ୍ତ୍ରୀ ।
ନାଶଗଲେ ତୋର ପିତା ବନ୍ଧୁ ଯେ ସୋଦର
ଦେଇ ନ ପାରିବି ତାହା ଏକା ମନ୍ତ୍ରୀବର ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା
ଜୟନ୍ତା ଏ ପଞ୍ଚରାଜ୍ୟେ ତୁ ଏକା ଧାରଣା ।
ସମସ୍ତେ ମଲେ ତୁ ମାମୁଁ ବଞ୍ଚିଛୁ କେମନ୍ତେ
ଶକୁନୀ ବୋଇଲା ବାବୁ ଶୁଣ ଏକ ଚିତ୍ତେ ।
ଯେତେ ଅନ୍ନ ଦେଉ ମୁହିଁ ତହିଁରୁ ବଳାଇ
ଚକଟି କାନ୍ଥରେ ତାହା ଲେପିଦେଉଥାଇ ।
ଯେଉଁଦିନୁ ଅନ୍ନ ତୁହି ନ ଦେଲୁ ଆମ୍ଭଙ୍କୁ
ଛଟପଟ ହୋଇ ମଲେ ମୁହିଁ ଦେଖୁ ଦେଖୁ ।
କାନ୍ଥେ ଲେପିଥିବା ଅନ୍ନ ଖାଇ ମୁଁ ବଞ୍ଚିଲି
ଏମନ୍ତ କଷ୍ଟରେ ଏହି ପ୍ରାଣକୁ ରଖିଲି ।
ଶୁଣି ଦୁର୍ଯ୍ୟୋଧନ ବୋଲେ ନ ଘେନ ତା ମନେ
ତୋର ସମ ବୁଦ୍ଧିମନ୍ତ ନାହିଁ ତ୍ରିଭୁବନେ ।
ତୁ ମୋହର ମୁହିଁ ତୋର ଅଟେ ଯେ ଭଣଜା
ତୁ ମନ୍ତ୍ରୀ ମୋହର ମୁହିଁ ତୋହର ଯେ ରାଜା ।
ତୋହର କଥାକୁ ମାମୁଁ ନ କରିବି ଆନ
ତୋହର ବଚନ ମୋର ଦେହରେ ଚନ୍ଦନ ।
ତୋର ଆଜ୍ଞା ଏହି ପଞ୍ଚରାଜ୍ୟେ ନିରାଧାର
ଏ ପଞ୍ଚ କଟକ ଜାଣ ଅଟଇ ତୋହର ।
ଛାମୁରେ ବାଜଇ ସ୍ୱର୍ଣ୍ଣବନ୍ଧା ଶଙ୍ଖ ଲକ୍ଷେ
ଆଲମ୍ୱ ଉଦ୍ଦଣ୍ଡ ପାଟଛତ୍ର ବେନି ପାଖେ ।
ବାମ ଡାହାଣେ ଉଭାରି ଦଶଲକ୍ଷ ରଥ
ଲକ୍ଷେକ ଚାମର ବେନି ପାରୁଶେ ଢାଳନ୍ତି ।
ଆଗେ ଚାଲେ ମହାମତ୍ତ ପଞ୍ଚଗୋଟି ଗଜ
ପଛେ ପାଞ୍ଚ ଅର୍ବୁଦ ଯେ ଚୋଖା ଅଶ୍ୱସଜ ।
ଏସନ ସମ୍ପଦ ମଧ୍ୟେ କରାଇ ଶକୁନି
ଗାନ୍ଧାରୀ ଛାମୁକୁ ଗଲା ଦୁର୍ଯ୍ୟୋଧନେ ଘେନି ।
ସଞ୍ଜୟ ମନ୍ତ୍ରୀ କହିଲେ ଶୁଣ ଗୋ ତୋହରି
ଶକୁନି ନାମେ ବର୍ତ୍ତିଲା ଭାଇ ଯେ ଗାନ୍ଧାରୀ ।

ପୁରୁଷାର୍ଥ କରାଇଣ ରାଜା ଦୁର୍ଯ୍ୟୋଧନ
ଦ୍ୱିତୀୟ ଇନ୍ଦ୍ର ପରାୟ ଦିଶଇ ତୋ ସାନ ।
ଗାନ୍ଧାରୀ ବୋଇଲେ ବଂଶେ ସବୁ ଗଲ ନାଶ
ଏକା ପାମରରେ କରୁ ଜୀବନକୁ ଆଶ ।
ମୁହିଁ ତୋହର ଯେ ମନ୍ଦ ପ୍ରକୃତି ଜାଣିଲି
ଦୁର୍ଯ୍ୟୋଧନ ବଂଶ ନାଶ କରିବୁ ତୁ ବୋଲି ।
ମୋହର ବଚନ କର କୁରୁରାଜ ଦେବ
ଏ ଶକୁନିଠାରେ ବାବୁ ନ କର ସଭାବ ।
ଯାହା ବଂଶ ନାଶ କଲୁ ତାକୁ କଲୁ ମନ୍ତ୍ରୀ
ଦୁଇକୁଳ ନ ପାଇବି ବୋଲି ମହାସତୀ ।
ମାମୁଁ କୁଳ ଦୁର୍ଯ୍ୟୋଧନ କଲୁ ଯେବେ ନାଶ
ତୋହର ଏ ବଂଶ ନାଶ କରିବ ଅବଶ୍ୟ ।
ଗାନ୍ଧାରୀ କହିଲେ ସିଦ୍ଧ ଯଥାର୍ଥ ଏ ବାଣୀ
ମୂର୍ଖ ଦୁର୍ଯ୍ୟୋଧନ ତାହା ଶ୍ରବଣେ ନ ଶୁଣି ।
କର୍ଣ୍ଣ ଶକୁନି ଆବର ଅଶ୍ୱତ୍ଥାମା ନୃପ
ଏକାନ୍ତେ ଘେନି ଏକାନ୍ତେ ଭାଳେ ବସି ଭୂପ ।
ବିଦୂର କହିଲେ ଯାଇଁ ଯୁଧିଷ୍ଠି ଅଗ୍ରତେ
ଧୃତରାଷ୍ଟ୍ର ପୁତ୍ର ରାଗ କଲା ବାବୁ ତୋତେ ।
ତୁ ଏହାକୁ ବୁଝୁଥାଅ କଥା ପରିମାଣି
ପ୍ରମାଦ ଚିନ୍ତିବ ତୋର ନିଶ୍ଚେ କୁରୁମଣି ।
ଗାନ୍ଧାରସେନର ବଂଶ ନାସିଲା ତୋ ରାଗେ
ଶକୁନି ମନ୍ତ୍ରୀ ଭେଟିଲା ଆସି ଶୁଭଯୋଗେ ।
ଅବଶ୍ୟ ପ୍ରମାଦ ଚିନ୍ତି ନାଶିବେ ତୁମ୍ଭଙ୍କୁ
ଅନେକ ମତେ ସମ୍ଭାଳି ଥାଅ ତୋ ଭୀମକୁ ।
ଯୁଧିଷ୍ଠିର ପଚାରନ୍ତି ବିଦୂର ଅଗ୍ରତେ
ଧୃତରାଷ୍ଟ୍ର ସୁତ ରାଗ କରେ କିମ୍ପା ମୋତେ ।
ଯଦ୍ୟପି ଅଦୟା ମୋତେ କରେ କୁରୁରାୟ
ତୁ ମାତ୍ର ତାତ ହୋଇବୁ ମୋ ପ୍ରତି ସଦୟ ।
ବିଦୂର ବାସୁଦେବ ଏ ହୋଇଲେ ସପକ୍ଷ
ତ୍ରୈଲୋକ୍ୟ ମୋତେ କେ ଅଛି କହ ସମକକ୍ଷ ।
ଏମନ୍ତ କହି ମେଲାଣି ଦେଲେ ବିଦୂରକୁ
ଶାରଳା ଦାସ କହଇ ସେବି ଶାରଳାଙ୍କୁ ।



## ଜତୁଗୃହ ନିର୍ମାଣ ଓ ଭୀମର ବିଷଲଡୁ ଭକ୍ଷଣ

ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
କୁଟ ଉପାୟ କରଇ ଧୃତରାଷ୍ଟ୍ର ସୁନୁ ।
ଦୁର୍ଯ୍ୟୋଧନ ଶକୁନି ଯେ କର୍ଣ୍ଣ ଅଶ୍ୱତ୍ଥାମା
ବାରୁଣାବନ୍ତେ ଭାଳନ୍ତି ବସି ଏ ମହାତ୍ମା ।
ତୁଳମାସ କୃଷ୍ଣପକ୍ଷ ଦ୍ୱିତୀୟ ଯେ ତିଥି
ବନସ୍ତେ ରହି ଭାଳଇ ମାନଚକ୍ରବର୍ତ୍ତୀ ।
ପୁରୋଚନ ନାମରେ ଯେ ଏକ ଦ୍ୱିଜବର
ଏକାକୀ ଆସୁଅଛି ସେ ବନସ୍ତ ଭିତର ।
ପର୍ବତରେ ଦୁର୍ଯ୍ୟୋଧନ କର୍ଣ୍ଣ ଛନ୍ତି ବସି
ସନ୍ନିଧିରେ ପୁରୋଚନ ପଣ୍ଡା ହେଲେ ଆସି ।
ଧାର୍ମିକ ବିବେକୀ ବେଦ ଶାସ୍ତ୍ରେ ସେ ନିର୍ଜିତ
ବେଦାଧ୍ୟୟନ କରନ୍ତି ବ୍ରାହ୍ମଣ ସତତ ।
କର୍ଣ୍ଣ ପଚାରିଲା ତୁମ୍ଭେ କାହିଁର ପଣ୍ଡାଏ
ବନ ମଧ୍ୟେ ଭ୍ରମୁଅଛ ହୋଇଣ ନିର୍ଭୟେ ।
ବ୍ୟାଘ୍ରେ ଭଲ୍ଲୁକେ ନ କର କିମ୍ପା ତୁମ୍ଭେ ଶଙ୍କା
ଏ ଘୋର ବନସ୍ତେ କିମ୍ପା ବୁଲୁଅଛ ଏକା ।
ପୁରୋଚନ ବୋଇଲା ତୁ କାହିଁର ନୃପତି
ହତରାଜ୍ୟ ପ୍ରାୟ ହୋଇ ଭାଳୁଛ କି ମତି ।
କର୍ଣ୍ଣ ବୋଇଲା ହେ ତୁମ୍ଭେ ଶୁଣ ଦ୍ୱିଜବର
ପଞ୍ଚ କଟକାଧିପତି ଦୁର୍ଯ୍ୟୋଧନ ବୀର ।
ଏହାର ମନରେ କଷ୍ଟ ଶତ୍ରୁ ଉପଦ୍ରବେ
ଅନେକ ବିରାଗ ପାଇ ଅନୁକ୍ଷଣେ ଭାବେ ।
ଧାର୍ମିକ ବିବେକୀ ଏହି ବିଚକ୍ଷଣ ରାୟ
ବିପ୍ର ବୋଲେ କେଡ଼େ ଶତ୍ରୁ କରେ ତାକୁ ଭୟ ।
ରଥ ଗଜ ଅଶ୍ୱ ତାର ପଦାତି ବା କେତେ
କର୍ଣ୍ଣ ବୋଲେ ମାତା ରାଣ୍ଡୀ ସର୍ବେ ପଞ୍ଚଭ୍ରାତେ ।
ପୁରୋଚନ ବୋଇଲାକ ଏତେକ ଛାରକୁ
କିମ୍ପା ତୁମ୍ଭେ ବେଢ଼ି ମାରି ନ ପାର ତାହାଙ୍କୁ ।
ଦୁର୍ଯ୍ୟୋଧନ ବୋଲେ ଆମ୍ଭେ ତାଙ୍କୁ ନୋହୁ ସରି
ଯୁଦ୍ଧେ ସେହୁ ମହାମତ୍ତ ବଳିଷ୍ଠ କେଶରୀ ।
ପୁରୋଚନ ବୋଲେ ମୋର ଅଛଇ ଉପାୟ
ତାହାକୁ ନାଶ କରିବି ମୁହିଁ କୁରୁରାୟ ।
ତାହାକୁ ଗ୍ରାମ ଗୋଟିଏ ମାତ୍ର ତୁ ଛାଡ଼ିବୁ
ଜୟ ସଜଳସଘୃତ ଛଟପଣ ଦେବୁ ।
ଜତୁ ଗୃହ ଏକ ମୁହିଁ ଭିଆଇବି କୂଟେ
ଜଉ ସଜସଳ ଗୁଆଘୃତ ଛଟପଣେ ।
ପାଣ୍ଡବଙ୍କୁ ରୁହାଇବୁ ସେ ଘରେ ତୁ ଆଣି
ଅଗ୍ନି ଲଗାଇ ଦେବଇଁ ସେ ଘରେ ରଜନୀ ।
ଜତୁ ଗୃହରେ ଦହନ ହେଲେ ପାଞ୍ଚବୀରେ
ଏକା ମରଦି ନିର୍ମାଣି ପୁର ଦ୍ୱିଜ ବରେ ।
ଶୁଣି ପରମ ସାନନ୍ଦ ହେଲା କୁରୁପତି
ବ୍ରାହ୍ମଣଙ୍କୁ ସମ୍ଭାଷଣ କରି ବହୁ ପ୍ରୀତି ।
ବୋଇଲା ବାରୁଣାବନ୍ତ ଅଟେ ମୋର ରାଜ୍ୟ
ତୋହର ଆଜ୍ଞାରେ ଏହା ଛାଡ଼ିଲଇଁ ଦ୍ୱିଜ ।

ଅନେକ ରତ୍ନ ଦେଇଣ କଲା ଗଉରବ
ଆମ୍ଭାହୁଁ ଅଧିକ ତାହାଠାରେ ପ୍ରିୟଭାବ ।
ଶୀଘ୍ର ଆଣିଦେଲା ଜଉଦିଆ ଛଟପଟ
ଏକା ମରଦି ନିର୍ମାଣ ପୁର ଦ୍ୱିଜ ଶ୍ରେଷ୍ଠ ।
ଆନନ୍ଦେ ବିଚିତ୍ରପୁର କରେ ବିପ୍ରମଣି
ଲମ୍ଭାନ୍ତି ରତ୍ନ ମୁକୁତା ଜରା ଶ୍ରେଷ୍ଠମଣି ।
କାଛ ଚାଳ ରୁଅ ବତା ଶେଣି ଆଦି କରି
ଜଉ ସଜଳସ ଘୃତ ଛଣପଟ ଜଡ଼ି ।
ଭିତରେ ସେମାନେ ତାର ପରେ ସୁଚିକାମ
ଝଟକନ୍ତି ମଣି ରତ୍ନ ସୁଢ଼ଳ ଉତ୍ତମ ।
ସୁବର୍ଣ୍ଣ କଳସମାନ ବସାଇ ଉପରେ
ପୁର ନିର୍ମାଣିଲା ବିପ୍ର ପାଞ୍ଚ ବରଷରେ ।
ଯୁଧିଷ୍ଠିରଙ୍କୁ କହନ୍ତି ଡାକି ଧୃତରାଷ୍ଟ୍ରେ
ଥିବା ନ ଯୋଗାଇ ତୋତେ ହସ୍ତିନା ନିକଟେ ।
ଭୀମ ଦୁର୍ଯ୍ୟୋଧନଙ୍କର ହୋଇଲା ଅପ୍ରୀତି
ମନ୍ଦ ହୋଇଣ ବାବୁରେ ନ ରହ ତୁ ଏଥି ।
ବାରୁଣାବନ୍ତ ଭୁବନେ ଘେନି ତୁମ୍ଭ ମାତା
ସୁଖେ ରାଜ୍ୟ ଭୋଗ କର ତୁମ୍ଭେ ପଞ୍ଚଭ୍ରାତା ।
ଯୁଧିଷ୍ଠି ବୋଇଲେ ଆମ୍ଭେ ଆଦ୍ୟହୁଁ ବନରେ
ଜନମି ବଢ଼ିଲୁ ଶତଶୃଙ୍ଗ ପର୍ବତରେ ।
ଯେ ମୋର ଆଜ୍ଞା ସାନନ୍ଦ ହେଲି ପଞ୍ଚଭୂତେ
ବାରୁଣାବନ୍ତ ଭୁବନେ ରହି ତୁ ନିଶ୍ଚିନ୍ତେ ।
ଧୃତରାଷ୍ଟ୍ର ଆଜ୍ଞା ଶିରେ ନିରାଧାର କରି
ଶୁଭ ଅନୁକୂଳ ଲଗ୍ନବେଳା ଯେ ବିଚାରି ।
ମାର୍ଗଶିର କୃଷ୍ଣପକ୍ଷ ପ୍ରତିପଦା ଦିନ
କୃତ୍ତିକା ବୃକ୍ଷ ଯେ ରବିବାର ଦିନମାନ ।
ବାଳବ ନାମେ କରଣ ଶିବ ନାମେ ଯୋଗ
ତାର ଚନ୍ଦ୍ର ବଳ ଶଶି ଉଚ୍ଚାଂଶରେ ଭୋଗ ।
ଏସନକ ଶୁଭ ଶୁଦ୍ଧବେଳା ଅନୁକୂଳେ
ବାରୁଣାବନ୍ତକୁ ଗଲେ ଶୁଭଲଗ୍ନବେଳେ ।
ଯୁଧିଷ୍ଠି ନକୁଳ ଭୀମାର୍ଜ୍ଜୁନ ସହଦେବ
କୁନ୍ତୀଙ୍କୁ ଘେନି ଚଳିଲେ ସେ ପାଞ୍ଚପାଣ୍ଡବ ।
ପ୍ରବେଶ ହେଲେ ବାରୁଣାବନ୍ତ ପୁରେ ଯାଇ
ଜତୁ ଗୃହ ଦ୍ୱାର ପାଶେ ମିଳି ପାଞ୍ଚ ଭାଇ ।
ଦେଖନ୍ତି ଭୁବନ ଗୋଟି ଅତି ପରିମଳ
ସୁବର୍ଣ୍ଣ କଳସମାନ ଦିଶନ୍ତି ସୁଢ଼ଳ ।
ଚଉଁରୀ ଗୃହ ବିସ୍ତାର ସାତଗୋଟି ପୁର
ଖଚିତ ମଣି ନିକର ମାଣିକ୍ୟ ବିସ୍ତାର ।
ସୁବର୍ଣ୍ଣ ପାତିଆ କାମ ଉପରେ ଛାଉଣି
ଗଣ୍ଡା ଗଣ୍ଡା ମରକତ ବଇଡୁର୍ଯ୍ୟ ମଣି ।
ବାରସ୍ୱତୀ ପୁର ପ୍ରାୟ ତେଜ ଦିଶେ ଫୁଟି
ଭୀମ ବୋଇଲା ସୁନ୍ଦର ଏହି ପୁର ଗୋଟି ।
ଯୁଧିଷ୍ଠି ବୋଇଲେ ଦେଖି ଭିତରକୁ ପଶ
କେମନ୍ତେ ସ୍ୱରୂପ ତାର ବିଚାରିଣ ଆସ ।
ଯୁଧିଷ୍ଠି ଆଜ୍ଞା ପ୍ରମାଣେ ଚଳିଲା ମାରୁତି
ଜତୁ ଘର ଭିତରକୁ ପଶିଲା ଝଟତି ।
କନକ ପାତ୍ର ରସାଣ ରେଖ ରତ୍ନଖଞ୍ଜା
କି ଅବା ସେ ବାରାନିଧି ରତ୍ନରୂପ ଗଞ୍ଜା ।
ଭୀମସେନ ବୋଇଲା ଏ ଶୁଣ ରାଜଦେବେ
ରାମ ଗୋବିନ୍ଦ ସୁଦୟା କଲା କି ପ୍ରସ୍ତାବେ ।
ମଧ୍ୟସ୍ୱର୍ଗରେ ଏମନ୍ତ ଦେଖିଲା ତ ନାହିଁ
ତାଠାରେ ଦୟା ବସିଲା ମୋର ଏହା ଚାହିଁ ।
ଧୃତରାଷ୍ଟ୍ର-ପୁଅକୁ ମୋ ମନେ ରାଗ ଥିଲା
ଏହୁ ଭୁବନ ଦେଖନ୍ତେ ସେ ସମସ୍ତ ଗଲା ।
ଯୁଧିଷ୍ଠିର ବୋଇଲେ ସେ ଅଟେ ମୂର୍ଖ ପ୍ରାଣୀ
ପଣ୍ଡିତଙ୍କ କଥା ମାନ କେବେ ହେଁ ନ ଶୁଣି ।
ଆପେ ବିଜେ କଲେ ଜତୁ ଗୃହର ଭିତରେ
ପୁର ସୁସଞ୍ଚ ଦେଖିଣ ବିଚାରନ୍ତି ବୀରେ ।
ଚନ୍ଦ୍ରଶାଳା ମନ୍ଦିର ଯେ ଚଉଁରୀ ଭୁବନ
ଦକ୍ଷିଣ ଜଗତି ନାନାବିଧ ରତ୍ନ ଚିହ୍ନ ।
ମେଢ଼ ନିର୍ମାଣ ଆବର ଦକ୍ଷିଣ ଜଗତି
ବିଶେଶ୍ୱର ଆସନ କି ପୁର ବାରସ୍ୱତୀ ।
ଭିତରେଣ ସଜଳସ ଜଉ ଘୃତ ଜଡ଼ି
ଉପରେ ରସାଣ ପତ୍ର ରତ୍ନ ଖଞ୍ଜାକରି ।
ଦେଖନ୍ତି ଅତି ସୁରଙ୍ଗ ଅତ୍ୟନ୍ତ ଦୁର୍ଲ୍ଲଭ
ଶୋଭା କୁବେର ଅଳକା ଭୁବନ ସନ୍ନିଭ ।
ପ୍ରତ୍ୟକ୍ଷେ ନିର୍ମଳ ଦେବ ଭୁବନ ପରାୟ
ଦେଖି ପରମ ସାନନ୍ଦ ଧର୍ମର ତନୟ ।
ଯୁଧିଷ୍ଠି ବୋଇଲେ ଆମ୍ଭେ ଅଟୁ ପଞ୍ଚଭ୍ରାତା
ଆମ୍ଭର ମାତା ଅଟନ୍ତି କୁନ୍ତଭୋଜ ସୁତା ।
ଏସନ ପୁର ନିର୍ମାଣ କଲା ଦୁର୍ଯ୍ୟୋଧନ
କାହା ବିଚାରକୁ ଏହା ଦିଶଇ କେଶନ ।
ମାତାଏ ବୋଇଲେ ବଡ଼ ସୁସଞ୍ଚ ଏ ପୁରୀ
ଦୁର୍ଯ୍ୟୋଧନ ସଦ୍‌ଭାବେ ନିର୍ମାଣ ଏପରି ।
ତାହାର ଛନ୍ଦେ ଆମ୍ଭଙ୍କୁ ନାହିଁ ପାପ ବାଧା
ମାନଗୋବିନ୍ଦ ଏ ପୁର କଲା ବହି ଶ୍ରଦ୍ଧା ।
ଭୀମ ବୋଇଲା ଭୋ ଦେବ ସୁସଞ୍ଚ ଏ ପୁରୀ
ପ୍ରିୟଭାବେ ନିର୍ମାଣିଲା ଏହା ଦଣ୍ଡଧାରୀ ।
ଏବେ ଜାଣିଲି ତାହାର ନିଷ୍କଳଙ୍କ ହିଆ
ସୋଦରପଣେ ପାଇଲା ଦେବ ନରନାହା ।

ଅର୍ଜ୍ଜୁନ ବୋଇଲା ଦେବ ଦୁର୍ଯ୍ୟୋଧନ ଭଲ
ବଢ଼ିଲା ପ୍ରୀତି ଆମ୍ଭର ନୋହିବ ଅନ୍ତର ।
ସହୋଦର ଗୁଣ ଦେବ ଜାଣିବା କେମନ୍ତେ
ଧନ ପ୍ରାଣ ଭାରିଜା ଯେ ଭାବଇ ନିରତେ ।
ନକୁଳ ବୋଇଲା ତାର ନିଷ୍କଳଙ୍କ ହିଆ
ସେହି ଦୁର୍ଯ୍ୟୋଧନ ଦେଲା ଆମ୍ଭଙ୍କୁ ଯେ ଏହା ।
ମହା ଧାର୍ମିକ ବିବେକୀ ସୋଦର ଉତ୍ତମ
ଆମ୍ଭଙ୍କୁ ସେ ସମ୍ଭାଳିଲା ହେବ ତାର ଧର୍ମ ।
ସହଦେବ ବୋଇଲାକ ସୁସଞ୍ଚ ଏ ସ୍ଥାନ
ଅନେକ ପୁର ସୁସଞ୍ଚ ଦିଶଇ ଭବନ ।
ଦୁର୍ଯ୍ୟୋଧନର ଏଡ଼େକ କାହିଁ ଯେ ସୁହୃଦ
କପଟ ପ୍ରାୟ ବୁଝଇ ପଡ଼ିବ ପ୍ରମାଦ ।
ଯୁଧିଷ୍ଠିର କୋଳ କଲେ ସେ ସହଦେବଙ୍କୁ
ତୋର ପ୍ରସାଦେ ମଙ୍ଗଳ ଅଛଇ ଆମ୍ଭଙ୍କୁ ।
ଗୋପ୍ୟ କର କଥା ସବୁ ନ ଜାଣୁ ସେ ଭୀମ
ଏହିକ୍ଷଣି ଦ୍ୱନ୍ଦ୍ୱ କରି କରିବ ସଂଗ୍ରାମ ।
ଧୃତରାଷ୍ଟ୍ରର ସମସ୍ତ ପୁଅଙ୍କୁ ମାରିବ
ଅନ୍ଧ ରାଜା ଗୋଟି ମୋର ଅନାଥ ହୋଇବ ।
ସେହି ଅବା କପଟରେ କଲା ନ ବିଚାରି
କେମନ୍ତେ ଧର୍ମରେ ଏଥୁ ହୋଇବାକ ପାରି ।
ସହଦେବ ତୁନି ହେଲେ ଯୁଧିଷ୍ଠି ବଚନେ
ରହିଲେ ଜଗତ ବନ୍ଦନ ଆପଣା ଭବନେ ।
କ୍ରୀଡ଼ନ୍ତି ସେ ବିହରନ୍ତି ବିକଟ ବିଟପେ
ମାରନ୍ତି ହରିଣୀ ଯେହ୍ନେ ବନଚର ଥୋପେ ।
ପର୍ବତରେ ବିହରନ୍ତି ଖେଳ କୁତୁହଳେ
ଯେସନେକ ସିଂହ ବନେ ନିର୍ଭୟରେ ଖେଳେ ।
ମୃଗ ବାହୁଟିଆ ଗଣ୍ଡା ଜୀବମାନ ଧରି
ଧୃତରାଷ୍ଟ୍ରଙ୍କୁ ଯାଆନ୍ତି ଦରଶନ କରି ।
ପୁରୋଚନକୁ ରାଇଣ ବୋଲେ ଦୁର୍ଯ୍ୟୋଧନ
ପାଣ୍ଡବଙ୍କ ମୃତ୍ୟୁର କି ଅଛଇ ବିଧାନ ।
ପୁରୋଚନ ବୋଲେ ଗଙ୍ଗାକୂଳିଆ ମୁଁ ଦ୍ୱିଜ
ଅଥର୍ବବେଦୀ ମୋହର ସର୍ବ ବିଦ୍ୟା ଗ୍ରାହ୍ୟ ।
ଯେବଣ ମତେ ଉପାୟେ ମାରିବ ଶତ୍ରୁଙ୍କୁ
ତହିଁରେ ଅଧର୍ମ କିଛି ନାହିଁ ଯେ ଆମ୍ଭଙ୍କୁ ।
ବିଷ ଯୋଗାଡ଼େକ ଏବେ ଭିଆଇବି ମୁହିଁ
ଭୀମକୁ ମୁଁ ପରିକ୍ଷିଣ ଭାବେଣ ଭୁଞ୍ଜାଇ ।
ଶୁଣି ହରଷ ହୋଇଲା ରାଜା ଦୁର୍ଯ୍ୟୋଧନ
ବେଗେ ଏହାର ଯୋଗାଡ଼ କର ହେ ବ୍ରାହ୍ମଣ ।
ମୋର ରାଜ୍ୟ ରୁହାଇବୁ ତୁହି ବୁଦ୍ଧିମନ୍ତ
ଭୁରିଶ୍ରବା ଭୀଷ୍ମ କୃପ ସଞ୍ଜୟ ଏମନ୍ତ ।
ପାଶରେ ବସାଇ ଦିନେ ଭାବେ ଧୃତରାଷ୍ଟ୍ର
ରାଜ୍ୟକୁ ଅଯୋଗ୍ୟ ମୋର ନୟନ ଯେ ଭ୍ରଷ୍ଟ ।
ବ୍ୟାସ ଦୁର୍ବାସାଙ୍କ ଅନୁରାଗେ ଜାଣ ମୋର
ପୁଅଙ୍କୁ ପାଇଲି ହେଲେ କ୍ଷତ୍ରିୟ ଦୁର୍ବାର ।
ପୁଅକୁ ଗୋଟିଏ କରାଇବି ଅଭିଷେକୀ
ଧର୍ମ ସ୍ୱରୂପ ବିଚାରି ତୁମ୍ଭେ କହିବ କି ।
ଲାଜ ଭୟ ଉପରୋଧମାନ କରି ତେଜ୍ୟା
ଏପଞ୍ଚରାଜ୍ୟେ ହୋଇବ କହ କିଏ ରାଜା ।
ସମସ୍ତ ଯୋଦ୍ଧାଏ ଶୁଣି ହୋଇଲେ ସନ୍ତୁଷ୍ଟ
ଭୁରିଶ୍ରବାଏ ବୋଇଲେ ଅବିଚାରେ ନଷ୍ଟ ।
କାର୍ଯ୍ୟ ପାଇଁ ପଚାରିଲୁ ଯେବେ ଦୃଢ଼ କରି
ନ ପୁଣ କୋପ ତୁ ମୋତେ କରୁ ନ ବିଚାରି ।
ଧୃତରାଷ୍ଟ୍ର ବୋଇଲେ ଯେ କିଛି ନାହିଁ ଦୋଷ
ସ୍ୱରୂପ କହିବି ଯାହା ବିଚାରକୁ ଦୃଶ୍ୟ ।
ସମସ୍ତଙ୍କୁ ବସାଇଣ କହେ ଭୁରିଶ୍ରବା
ଆମ୍ଭ ବିଚାରେ ଏ ରାଜ୍ୟ ଯୁଧିଷ୍ଠିଙ୍କୁ ଦେବା ।
ଯାହାଙ୍କର ବଚନକୁ ଭଜନ୍ତି ସଂସାରେ
ତାଙ୍କୁ ରାଜ୍ୟଭାର ଦେବା ଆସେ ମୋ ବିଚାରେ ।
ଆମ୍ଭଙ୍କୁ ଘେନି ଭାବିଲୁ ଯେବେ କୁରୁନାଥ
ଆମ୍ଭ ବିଚାରକୁ ଜାଣ ଯୋଗାଏ ଏମନ୍ତ ।
ଯୁଧିଷ୍ଠି ଥାଇ ନୁହଇ ଦୁର୍ଯ୍ୟୋଧନ ରାଜା
ଯୁଧିଷ୍ଠିରଙ୍କୁ ଭଜନ୍ତି ଦେଶ ଜନପ୍ରଜା ।
ଅଳପ ଦୋଷେ ବହୁତ କରଇ ଯେ କୋପ
ଦୁର୍ବାର ଅପାଳକ ସେ ଅଟେ କିଏ ନୃପ ।
ଦୁର୍ଯ୍ୟୋଧନକୁ କରିବ ବଳେ ଯେବେ ରାଜା
ଅନେକ ଦେଶୁଁ ପଳାଇ ଯିବେ ଜନପ୍ରଜା ।
ଜ୍ୟେଷ୍ଠ ପୁତ୍ର ଥାଉ ନୁହେଁ କନିଷ୍ଠ ଯେ ନୃପ
ଅଦକ୍ଷ ପୁତ୍ର ନୁହେଁ ଯେ ଭାଙ୍ଗିବ ତା ଦର୍ପ ।
ଯୁଧିଷ୍ଠି ରାଜା କଲେ ଏ ଧିକ ରାଜ୍ୟ ହେବ
ନିର୍ଦ୍ୱନ୍ଦ୍ୱ ହୋଇଣ ଦିନ ସୁବିଧାରେ ଯିବ ।
ତୁ ଏହା ଅବା ଭାଙ୍ଗିବୁ ବଳେ ଧୃତରାଷ୍ଟ୍ର
ଆପେ ଛତ୍ର ଉଡ଼ାଇବ ଶିରେ ବହି ପାଟ ।
ଏକ ରାଜ୍ୟ ଗୋଟି ଦୁଇ ଦଣ୍ଡଧାରୀ ହେଲେ
ଅନେକ ଦ୍ୱନ୍ଦ୍ୱ ହେବ ନ ଯିବ ଦିନଭରେ ।
ଶାନ୍ତନୁ ନନ୍ଦନରାଜ୍ୟ ଦେଲେ ତୋତେ କାଳେ
କାଳଦମନ ଘେନିଲା ତୋର ରାଜ୍ୟ ବଳେ ।
ପଳାଇ ପଶିଲୁ ଶତଶୃଙ୍ଗ ପ୍ରବତେ
ରାଜ୍ୟ ମାଡ଼ି ବସିଲା ସେ ଆସି ପଞ୍ଚ ପ୍ରସ୍ଥେ ।
ପଣ୍ଡୁ ଯେ ବେଳରେ ତପେ ହୋଇଥିଲା ମଗ୍ନ
ପଞ୍ଚଦଶ ବରଷରେ ହ୍ୱନ୍ତେ ତପ ପୂର୍ଣ୍ଣ ।

ଭାଗ୍ୟବଶରେ ତୋଷି ବିଦ୍ୟା ଅନେକ ପାଇଲା
କାଳ ଦମନର ତୁଲେ ଘୋର ଯୁଦ୍ଧ କଲା ।
ପଣ୍ଡୁରାଜା ଜାଣଇ ଯେ ଶବ୍ଦଭେଦୀ ବାଣ
ତେଇଶ ଦିନରେ ଶତ୍ରୁବଳ ହେଲେ କ୍ଷୀଣ ।
ଚଉବିଂଶ ଅକ୍ଷୌହିଣୀ ଅଟେ ତାର ଥାଟ
ପଣ୍ଡୁରାଜା ଶସ୍ତ୍ରାଘାତେ ହେଲେ ପ୍ରାଣଭ୍ରଷ୍ଟ ।
ଏତେ ବଳ ଘେନି ରାଜ୍ୟ ମାଡ଼ି ବସିଥିଲା
ପଣ୍ଡୁର ବିଘାତେ ତାର ବଂଶ ନାଶଗଲା ।
ତୋତେ ଆଣି ବସାଇଲା ହସ୍ତିନା ଭୁବନେ
ସମ୍ପଦ ଦେଇ ରହିଲା ଯାଇ ଘୋର ବନେ ।
ପଣ୍ଡୁର ଅର୍ଜ୍ଜିନ ଅଟେ ଏ ପଞ୍ଚ ରାଜ୍ୟ ହିଁ
ପଣ୍ଡୁ ପୁତ୍ରଙ୍କୁ ସଂସାର ଜନ ଯେ ଭଜଇ ।
ତୁ ଅବା ଏ କଥା ରାଜା କରିବୁ ଗୁପତ
ସେମାନେ ତ ଜାଣିଛନ୍ତି ଏଥିର ତଦନ୍ତ ।
ଯୁଧିଷ୍ଠିର ଥିଲେ ତୋର ରାଜ୍ୟଭାର ନୋହି
ବିଦୂର ବୋଇଲେ ଦେବ ଯୁଧିଷ୍ଠିର କହି ।
ଏ ମଧ୍ୟ ବୋଧି ପାରିବୁ ଯୁଧିଷ୍ଠିର ଶାନ୍ତ
ଭୀମ ଅର୍ଜ୍ଜୁନ କଦାପି ନୋହିବେଟି ତୃପ୍ତ ।
ଶକୁନି ବୋଲେ କଥାଏ ମନକୁ ଆସଇ
ପଣ୍ଡୁ ପଞ୍ଚ ପୁତ୍ରେ ପ୍ରାଣ ନାଶ କରିବଇଁ ।
ଧର୍ମ ସୁମରି ସଭାରୁ ଗଲେ ସର୍ବେ ଉଠି
ପାଣ୍ଡବ ମାରିବ ବୁଦ୍ଧି କରେ ଧାର୍ତ୍ତରାଷ୍ଟ୍ରି ।
କୁଟ ପାଞ୍ଚନ୍ତି ଶକୁନି ଦ୍ୱିଜ ପୁରୋଚନ
କର୍ଣ୍ଣ ଦୁଃଶାସନ ଶତ ଭ୍ରାତା ଦୁର୍ଯ୍ୟୋଧନ ।
ବିଷ ଲଡୁର ଯୋଗାଡ଼ କଲେ ମନେ ଭାଳି
ଧରି ତେଜ୍ୟା କଲେ ସର୍ବେ ଅସତ୍ୟକୁ ପାଳି ।
ଶୁଣିଣ ବିରସ ହେଲେ ଧୃତରାଷ୍ଟ୍ର ରାୟେ
ତେଣେ ଭ୍ରମନ୍ତି ବନରେ କୁନ୍ତୀ ପାଞ୍ଚପୋଏ ।
ଗଣ୍ଡା ଗୋଟିଏ ମାଇଲେ ପଶି ଘୋର ବନେ
ଯୁଧିଷ୍ଠିର ବୋଇଲେ ଯେ ଡାକି ଭୀମସେନେ ।
ବାବୁ ଅପୂର୍ବ ପଦାର୍ଥ ନିଅ ହସ୍ତିନାକୁ
ଗଣ୍ଡା ଗୋଟି ଦିଅ ନେଇ ତୁ ଧୃତରାଷ୍ଟ୍ରଙ୍କୁ ।
ଯୁଧିଷ୍ଠି ବଚନେ ଗଲା ପବନର ଶିଷ୍ୟ
ଗଣ୍ଡାଜୀବ ଘେନି ହେଲା ହସ୍ତିନା ପ୍ରବେଶ ।
ସଞ୍ଜୟ ବିଦୂର ଭୁରିଶ୍ରବା ଅଶ୍ୱଥାମା
ଏହାଙ୍କୁ ଘେନି ଭାଳଇ ନୃପତି ମହାତ୍ମା ।
ଧୃତରାଷ୍ଟ୍ର ବୋଇଲେ ଯେ ତୁମ୍ଭେ ଭାଙ୍ଗ ମୋତେ
ତ୍ରେତାଯୁଗେ ଦଶରଥ କଲେଟି କେମନ୍ତ ।
ଶ୍ରୀ ରାମଚନ୍ଦ୍ର ଅଟନ୍ତି ତାଙ୍କ ଜ୍ୟେଷ୍ଠ ପୁତ୍ର
ତାଙ୍କୁ ଛାଡ଼ି ରାଜ୍ୟ ଦେଲେ ନେଲା ତ ଭରତ ।

ବିଦୂର ବୋଇଲେ ଖଳବାକ୍ୟେ ଏହା କଲା
ସେ କଥା ନୋହିଲା ପୁଣି ଆପେ ନାଶଗଲା ।
କେତେବେଳେ ମନେ ତୁହି ନ ଭାଳ ଏମାନ
ମନ୍ଦବୁଦ୍ଧି ଭାଳି କରୁ ପୁଅଙ୍କୁ ବିଭିନ୍ନ ।
ଆପେ କଷ୍ଟ ପାଇବୁ ତୁ ବଂଶ ନାଶଯିବ
ତୋର ବୁଦ୍ଧିବଳେ ସ୍ୱାମୀ ଏମନ୍ତ ହୋଇବ ।
ଏମନ୍ତ ଭାଳେଣି ବସି କରିବା ସମୟେ
ଗଣ୍ଡାଭାର ଘେନି ଭୀମ ମିଳେ ହସ୍ତିନାଏ ।
ବିଦୂର ବୋଇଲେ ଏଥେ ନାହିଁ ପାପସୀମା
ଗଣ୍ଡା ଘେନି ଦରଶନ ଦେଲା ଆସି ଭୀମା ।
ଏମନ୍ତ ଭକତି ତୋତେ କରିଥାନ୍ତି ନିତ୍ୟେ
ତାଙ୍କ ପାଇଁ ପାପକଥା ଧରୁଛୁ କେମନ୍ତେ ।
ଭକତଙ୍କ ପାଇଁ ଯେହୁ ଧରେ ପାପକଥା
ଆପେ ନାଶଯାଇ ଆପେ ବୁଡ଼ଇ ସର୍ବଥା ।
ଏ କଥାମାନ ଯଦ୍ୟପି ମିଥ୍ୟା ଯେ ହୋଇବ
କହ ଏ ସଂସାର ଆଉ କେମନ୍ତେ ବର୍ତ୍ତିବ ।
ପୂର୍ବର ପାତକେ ଏବେ ହେଲୁ ହୀନଚକ୍ଷୁ
ଏ ଜନ୍ମେ ପୁଣି ପ୍ରମାଦ ପରେ ଚିନ୍ତୁଅଛୁ ।
ଏବେ ପାପ କଲେ ନାହିଁ ଉପରକୁ ଗତି
କର୍ମ ହିଁ ବହୁତ ଜନ୍ମେ ଜନ୍ମେ ଦିଏ ଶାସ୍ତି ।
ବିଦୂର ବଚନେ କୋପେ ଅନ୍ଧ ନରମଣି
ଖଣ୍ଡା ଏକ ଘେନି ଆସେ ବିଦୂରକୁ ହାଣି ।
କୋଳ କରି ଧଇଲେକ ଅଶ୍ୱଥାମା କୃପ
ରହ ରହ କୁରୁପତି କିମ୍ପା ଏଡ଼େ ତାପ ।
ଉଠିଣ ବିଦୂର ତହୁଁ ଗଲା ନିଜସ୍ଥାନେ
ବୋଇଲା ତୁ ସର୍ବନାଶ କରିବୁ ଏ ଜ୍ଞାନେ ।
ଭୀମଙ୍କୁ କୋଳ କରିଣ ବସାଇ ନିକଟେ
ବଦନ୍ତି ମୁଖେ ଚୁମ୍ବନ ଦେଇ ଧୃତରାଷ୍ଟ୍ରେ ।
ବାବୁ ତୁ କହିବୁ ଯାଇ ଯୁଧିଷ୍ଠି ଛାମୁର
ସୋଦର ଭିନ୍ନ କରାଉଅଛି ଏ ବିଦୂର ।
ଏହାଙ୍କ କଥାକୁ କେହି ନ ଯିବ ବିଶ୍ୱାସ
ଦ୍ୱନ୍ଦ୍ୱ ଭିଆଇ ସମସ୍ତ କରିବ ବିନାଶ ।
ଧୃତରାଷ୍ଟ୍ର ବୋଇଲେକ ଦୁର୍ଯ୍ୟୋଧନେ ରାଇ
ଭୀମକୁ ଘେନିଣ ଭୁଞ୍ଜି ବସ ସର୍ବ ଭାଇ ।
ପିତାବାକ୍ୟେ ଦୁର୍ଯ୍ୟୋଧନ ନେଲା କୋଳ କରି
ସରୋବର ଜଳେ ପଶି ସ୍ନାନ ବେଗେ ସାରି ।
ଠାବେ ଠାବେ ବିଜେ କଲେ ସୁସଞ୍ଚ ଭବନେ
ଭୀମ ବସିଲାକ ଦୁର୍ଯ୍ୟୋଧନ ସନ୍ନିଧାନେ ।
ଡାହାଣରେ ଦୁର୍ଯ୍ୟୋଧନ ବାମେ ଦୁଃଶାସନ
ମଧ୍ୟଭାଗେ ବସାଇଲେ ପବନ ନନ୍ଦନ ।

ରତ୍ନ ଝରିଲେ ଦେଲେକ ସୁବାସିତ ପାଣି
ସୁବର୍ଣ୍ଣର ପଲଙ୍କ ଯେ ଠାବେ ଦେଲେ ଆଣି ।
ପରଷଇ ଅନ୍ନ ବିପ୍ର ସ୍ୱର୍ଣ୍ଣପାତ୍ର ଘେନି
ଚିନ୍ତୁଛି ପ୍ରମାଦ ପୁରୋଚନ ଯେ ଅଜ୍ଞାନୀ ।
ଭୋଜନରେ ଅତୃପତି ପବନର ବଳା
ଭୁଞ୍ଜଇ ଭୀମ ଆହାରେ ହୋଇ ମତିଭୋଳା ।
ଦୁଦୁରା ମଞ୍ଜି ଗଞ୍ଜାଇ ବିଷ ସଙ୍ଗେ ଚୂରି
ମାଛେ ମିଶାଇ ରାନ୍ଧିଲା ତାକୁ ଯତ୍ନ କରି ।
ଯେ ଭଲତା ଦୁର୍ଯ୍ୟୋଧନ ଦୁଃଶାସନେ ଦେଲା
ତଳେ ବିଷ ଥିଲା ଭୀମ ପାତ୍ରେ ପରଷିଲା ।
ମଧୁର ସମାନେ ତାହା ଭୁଞ୍ଜଇ ମାରୁତି
ଶଙ୍ଖୁଆ ମିଶାଇ ପଣା ଆଣିଦେଲା କତି ।
ଦୁର୍ଯ୍ୟୋଧନ ବୋଇଲା ଯେ ମୋର ତୃଷା ନାହିଁ
ଭୀମସେନର କତି କି ଦେଲା ସେ ବଢ଼ାଇ ।
ସନ୍ତୋଷେ ପିଆଇ ତାହା ପାଣ୍ଡବ ସୁନ୍ଦର
ଦ୍ୱିଗୁଣେ ଘାରିଲା ତାକୁ ମଧୁର ଆହାର ।
ଅଧାମ ଭିତରେ ଭରି ଅଛି ଯେ ମହୁରା
ତହୁଁ କପୋରାଏ ଭୀମକତି ନେଇ ଦେଲା ।
ଖଣ୍ଡ ଶାକରରେ ମଧ୍ୟେ ବିଷ ଅଛି ଦେଇ
ଭୁଞ୍ଜଇ ବୃକୋଦର ତା ମନେ ହର୍ଷ ବହି ।
ମତ୍ତ ଦର୍ପରେ ଘାରିଲା ବିଷ ଅପ୍ରମିତେ
ମଧୁରସ ପାଇ କ୍ଷେପିଯାଏ ଭୀମ ଗାତ୍ରେ ।
ଭୁଞ୍ଜୁ ଭୁଞ୍ଜୁ ତହିଁ ଢଳି ପଡ଼ିଲାକ ଭୀମ
ଭୂମି ଉପରେ ପଡ଼ିଲା ହୋଇ ମତିଭ୍ରମ ।
ଦେହ ନିଶ୍ଚଳ ନ ରହେ ନିଃଶ୍ୱାସ ପବନ
ଛାଡ଼ିଲା ପ୍ରାଣ ହୋଇଲା ବୀର ଅଚେତନ ।
ଆଦିତ୍ୟ ଅସ୍ତ ହୋଇଲେ ଯେ ପଶ୍ଚିମ ଦିଗେ
ରାତ୍ର ଅର୍ଦ୍ଧ ହୋଇଲାକ ସେହି ନିଶାଭାଗେ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଦୁର୍ବିନ୍ଦ ଦୁର୍ଦ୍ଧିଷ୍ଟ
ଭୀମକୁ ଧରି ଘେନିଣ ଗଲେ ଜଳଘାଟ ।
ଯେ ଯମୁନା ନଦୀକୂଳେ ଥାଆନ୍ତି ନାଗୁଣି
ଭୀମକୁ ବାନ୍ଧିଣ ମେଲି ଦେଲେ ତହିଁ ଆଣି ।
ତହିଁ ସେ ଥାଇ ନାଗୁଣି ନାମେ ବେଲାମାଳୀ
ପଦ୍ମେକ ନାଗୁଣି ଘେନି କରେ ଜଳକେଳି ।
ନାଗୁଣୀ ବଳ ଘେନିଣ ଖେଳୁଥିଲା ଜଳେ
ପଦ୍ମ ବିକାଶେ ଶିଶିର ରତୁର ଅକାଳେ ।
ନାଗୁଣୀ ମନେ ବିଚାରେ ଏ କିସ ଅପୂର୍ବ
ଶିଶିରେ ହୁଏ ସୁରଭି ବନସ୍ତ ଉତ୍ସବ ।
କାଲି କିଛି ନ ଥିଲା ତ ଏହି ନଦୀ ଜଳେ
ଅଦ୍‌ଭୂତେ ବିକଶିତ ହୋଇଲା କମଳେ ।
ଦେଖେ ନିକଟରେ ଯାଇଁ ଏ କିସ ଅପୂର୍ବ
ଦେଖିଲେ ଭାସେ ସୁନ୍ଦର ଏକ ମୃତଶବ ।
ଅତି ସୁକୁମାର ଅଟେ ସୁସଞ୍ଚ ତା କାୟ
ରାତ୍ରରେ ଦିଶେ ଶରଦ ଚନ୍ଦ୍ରମା ପରାୟ ।
ଦେଖି ଧଇଲା ସୁନ୍ଦରୀ ସେହି ବେଲାମାଳୀ
ଏ ପୁରୁଷ ଅଟଇ ତ ମୋ ହୃଦ ସଙ୍ଖାଳି ।
କୋଳ କରି ନାଗୁଣୀ ଯେ ବୁଡ଼ାଇଲା ତାଙ୍କୁ
ଘେନିଣ ଗଲେ ସକଳେ ପାତାଳ ପୁରକୁ ।
ଛାମୁରେ ଦିଅନ୍ତେ ନେଇ ଦେଖି ନାଗରାଜ
ବିଚାରଇ ଏ କେବଣ ଦିଗ୍‌ପାଳ ଆତ୍ମଜ ।
ଅମୃତ ଦେଲାକ ନେଇ ବୃକୋଦର ମୁଖେ
ନବତନୁ ବଳପାଇ ଉଠିଲା ପ୍ରତ୍ୟକ୍ଷେ ।
ସଚେତନ ହୋଇ ଭୀମ ଚାହେଁ ଚଉକତି
ଦେଖଇ ଭୁବନେ ଦିଶେ ଜଳ ଅପ୍ରମିତି ।
ଭୀମସେନ ତହିଁ ମନ ମଧ୍ୟରେ ବିଚାରି
ମୁହିଁ ତ ପଡ଼ିଲି ଆସି ଜଳ ମଧ୍ୟପୁରୀ ।
କେ ମୋତେ ଏହି ସ୍ଥାନକୁ ଆଣିଲା କପଟେ
ଅଗାଧ ଜଳ ଭିତରେ ଯିବି କେଉଁବାଟେ ।
ଏ ନାଗୁଣୀବଳ ସବୁ ପକାଇବି ମୋଡ଼ି
ଯିବାକୁ ତ ବାଟ ନାହିଁ ଅନ୍ଧକାର ପୁରୀ ।
ପୁଣି ବିଚାରେ ଏହାଙ୍କ ସଙ୍ଗତେ ପୀରତି
ଭାବ ବଢ଼ାଇଲେ ମୋତେ ଅଛି ସଦ୍‌ଗତି ।
ଭୀମସେନ ବୋଲେ ମାଗୋ ତୁମ୍ଭେ ତ ନାଗୁଣୀ
ମୁହିଁ ମନୁଷ୍ୟ ଏଥକୁ କିନ୍ତୁ ମୋତେ ଆଣି ।
ଭୀମସେନର ବଚନେ ସେ ଅନନ୍ତ ବାଳୀ
ଭୀମକୁ କୋଳ କରିଣ ବୋଲେ ବେଲାମାଳୀ ।
ଅନନ୍ତ ନାଥ ଦୁହିତା ଆମ୍ଭେ ଜଳବାସୀ
ସନ୍ଧ୍ୟାମାଳୀ ବେଲାମାଳୀ ବିନ୍ଧ୍ୟମାଳୀ ମିଶି ।
ତିନିହେଁ ଅଟୁ ଅନନ୍ତ ରାଜାର କୁମାରୀ
ଯମୁନା ଜଳ ଯୋଜନ ସହସ୍ର ଯେ ଚାରି ।
କ୍ରୀଡ଼ା କରନ୍ତେ ଭେଟିଲୁ ଆମ୍ଭେ ତୁମ୍ଭଙ୍କୁ ହିଁ
ଉପୁଚିଆଇଲୁ ଜଳେ ମୃତପିଣ୍ଡ ହୋଇ ।
ଦୁର୍ଯ୍ୟୋଧନ ତୋତେ କୁଟେ ଭୋଜନେ ବସାଇ
କପଟ କରିଣ ବିଷଲଡୁ ଯେ ଖୁଆଇ ।
ଲୋଭେ ଖାଇଣ ପଡ଼ିଲୁ ତୁହି ଅଚେତନେ
ଅଗାଧ ଜଳେ ମେଲିଲେ ପକାଇ ବନ୍ଧନେ ।
ଆସିଣ ଭେଟିଲୁ ତୋତେ କ୍ରୀଡ଼ାରଙ୍ଗ କାଳେ
ଅନନ୍ତ ରାଜା ଛାମୁକୁ ଆଣିଲୁ ପାତାଳେ ।
ଅମୃତ ଦେଇଣ ମୁଖେ ଜୀଆଇଲେ ତାତ
ତୁ ଏବେ ମାରୁତି ମାରି ଲୋଡ଼ୁଛୁ ଆମ୍ଭନ୍ତ ।

ପର ଉପକାର କରି ଆପେ ନାଶ ଯିବା
ବିନାଶକାଳେ ହୋ ଉପକାର ନ କରିବା ।
ନାଗୁଣୀ ବଚନେ ଭୀମସେନ ଲଭି ଶାନ୍ତି
ଛାଡ଼ିଲା ତ କୋପକଲା ବଢ଼ାଇଲା ପ୍ରୀତି ।
ଅନନ୍ତ ଯେ ବିଜେ କଲେ ଭୀମ ସନ୍ନିଧାନ
ପବନ ନନ୍ଦନ ଦେଖି ହରଷିତ ମନ ।
ବାବୁ ତୁହି ସୋମବଂଶୀ ଅଟୁ ମହାବଳୀ
ପ୍ରଦାନ କରିବି ତୋତେ ମୁହିଁ ବେଲାମାଳୀ ।
ମାରୁତି ବୋଇଲେ ତାତ ତୋର ଯା ବିଚାର
ନାସ୍ତି କରି ପାରଇ କି ତାହା ମୋର ଛାର ।
ଯାଚିଲା କନ୍ୟା ଆବର ଯାଚିଦେଲା ଅନ୍ନ
ଏହା ଉପେକ୍ଷିଲେ ତାତ ହୁଅଇ ଅଧର୍ମ ।
ଅମୃତଯୋଗେ ସ୍ୱୀକାର କରି ନାଗରାୟେ
ବେଲାମାଳୀକି ଭୀମକୁ ଦାନ କରିଦିଏ ।
କନ୍ୟାକୁ ପ୍ରଦାନ କରି ସେ ଅନନ୍ତ ରାଜା
ଅନେକ ସମ୍ଭାରେ କଲା ଭୀମକୁ ସେ ପୂଜା ।
ପୁରୁଷ ବଶ ବିଦ୍ୟା ଯେ ଜାଣଇ ନାଗୁଣୀ
ଭାବେ ବଶୀଭୂତ କଲା କାଳଦଣ୍ଡ ପାଣି ।
ପାତାଳେ ରହିଲା ଭୀମ ନାଗୁଣୀର ପାଶେ
ପାଶୋରିଲା ସୋଦରଙ୍କୁ ଭୋଗର ବିଳାସେ ।
ଯୁଧିଷ୍ଠିର ପଚାରନ୍ତି ଅର୍ଜ୍ଜୁନେ ହକାରି
ଭୀମ ଗଣ୍ଡା ଘେନିଗଲା ନ ଆସିଲା ଫେରି ।
ନବଦିବସ ଆସି ତ ହୋଇଲା ଆଜକୁ
କେମନ୍ତେ ସେ ଭୀମସେନ ମୂର୍ଚ୍ଛିଲା ଆମ୍ଭଙ୍କୁ ।
କୁନ୍ତୀ ବୋଇଲେକ ସେହି ସଙ୍ଗ ମେଳ ପାଇ
ଖେଳ କଉତୁକେ ତହିଁ ଅଛଇ ଯେ ରହି ।
କୁନ୍ତୀଙ୍କ ବଚନେ ପୁଣି ଷଡ଼ଦିନ ଗଲା
ଷୋଳ ଦିବସ ହୋଇଲା ବାରତା ନଇଲା ।
ଯୁଧିଷ୍ଠି ଅର୍ଜ୍ଜୁନ ଗଲେ ଭୀମକୁ ଯେ ଲୋଡ଼ି
ପ୍ରବେଶ ହୋଇଲେ ଯାଇ ହସ୍ତିନା ନଗରୀ ।
ଧୃତରାଷ୍ଟ୍ର ପାଦତଳେ ଯାଇଣ ପ୍ରଣମି
ଭୀମସେନ ଅଇଲା ଯେ କେଣେ ଗଲା ସ୍ୱାମୀ ।
ଧୃତରାଷ୍ଟ୍ର ବୋଇଲା ସେ ଅଇଲା ଯେ ଦିନ
ଗଣ୍ଡାଗୋଟି ଦେଇ ଏଥେ ନ କଲା ଭୋଜନ ।
ତତକ୍ଷଣ ଗଲା ବାବୁ ନ ଅଇଲା ଏଥ
ଶୁଣିଣ ଆଶ୍ଚର୍ଯ୍ୟ ହେଲେ ଧର୍ମଙ୍କର ସୁତ ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣ ଶକୁନିଙ୍କୁ
ଜଣେ ଜଣେ ପୁଚ୍ଛାକଲେ ଜାଣ କି ଭୀମକୁ ।
ସମସ୍ତେ ବୋଇଲେ ଆମ୍ଭେ ଦେଖିନାହୁଁ କେହି
ପଞ୍ଚକଟକେ ଲୋଡ଼ନ୍ତି ମନେ ଶୋକ ବହି ।
କୁନ୍ତୀଙ୍କ ଅଗ୍ରତେ ପୁଚ୍ଛାକଲେ ବେନି ଭ୍ରାତେ
ଭୀମକୁ ଗୋ ନ ପାଇଲୁ ଲୋଡ଼ି ପଞ୍ଚପ୍ରସ୍ଥେ ।
ଶୁଣିଣ ଶୋକ କରନ୍ତି କୁନ୍ତଭୋଜ ସୁତା
ନ ପାଇଲୁ ଆଜଯାଏ ତୋହର ବାରତା ।
ନ କହି କେଣିକି ଗଲୁ ଆରେ ଭୀମସେନ
କପଟେ ମାଇଲେ ଅବା ଗାନ୍ଧାରୀ ନନ୍ଦନ ।
ତୋହର ବିହୁନେ ବାବୁ ସକଳ ଅନ୍ଧାର
ଏମନ୍ତେ କରନ୍ତେ ଶୋକ ଚାରି ସହୋଦର ।
ବୋଇଲେ ଯାଉଛୁ ମାତ ଖୋଜିବାକୁ ପୁଣି
ଭୀମ ବିହୁନେ ମରିବା ଆମ୍ଭେ ପଞ୍ଚ ପ୍ରାଣୀ ।
ବୋଇଲେ କୁନ୍ତୀ ତୁମ୍ଭଙ୍କୁ ରଖୁ ବସୁଦେବ
ଶ୍ରୀକୃଷ୍ଣ ସୁମରି ବାବୁ ଯାଅ ଏଥୁ ଜବ ।
ଶ୍ରୀହରି ଶ୍ରୀହରି ସ୍ମରି ଗଲେ ଚାରି ଭାଇ
ଶାରଳା ଦାସ ଶାରଳା ପାଦପଦ୍ମ ଧ୍ୟାୟି ।

—୦—

## ପାଣ୍ଡବାସୁର ବଧ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ଅନ୍ଧକ ବଂଶରେ ଏକ ଅସୁର ଉତ୍ପତ୍ତି ।
ପଣ୍ଡୁମତୀର ଗର୍ଭରୁ ଜାତ ସେ ଅସୁର
ପାଣ୍ଡବାସୁର ତା ନାମ ଅଟେ ମହାବୀର ।
ଥାଟ ନାହିଁ ସେ ପାଣ୍ଡବାଅସୁରର ତୁଲେ
ଇନ୍ଦ୍ର ରୁଦ୍ରଙ୍କୁ ଜିଣଇ ସଂଗ୍ରାମ ସେ କଲେ ।
ବାମ କରେ ଶୂଦ୍ର ତାର ଡାହାଣେ କୃପାଣ
ଏତିକି ଘେନି ଜିଣଇ ସମସ୍ତ ଭୁବନ ।
ସଂଗ୍ରାମେ ନିର୍ଭୟ ସେହି ଦୈତ୍ୟ ମହାବଳୀ
ଜିହ୍ୱାରୁ ରୁଧିର ଦେଇ ତୃପ୍ତ କଲା କାଳୀ ।
ପ୍ରସନ୍ନେ ବର ତାହାକୁ ଦେଲେ ମହାଦେବୀ
ଭଗବତୀର ବରେ ସେ ଦାନବ ଚ୍ରିଜୀବୀ ।
ପାଣ୍ଡବାସୁର ବାହିଲା ଭୁବନ ହସ୍ତିନା
ଶରୀରେ ଅସ୍ତ୍ର ନ ଭେଦେ ଅଟେ ବଜ୍ରସେହ୍ନା ।
ଯେତେକ ଜନ ଯେ ଦେଖୁଅଛି ବାଟେ ଯାଉ
ଆହାରକୁ ନ ଅଣ୍ଟଇ ଯେତେ ଜନ୍ତୁ ଖାଉ ।
ହସ୍ତିନା ରାଜ୍ୟେ କଲା ସେ ଅନେକ ଅରିଷ୍ଟି
ଏହି ବାରତା ପାଇଲେ ବୀର ଧାର୍ତ୍ତରାଷ୍ଟ୍ରି ।
ଦୈବେତେ କୁରୁଏ ଥିଲେ ବଳରାମ ତୁଲେ
ନିଦାଘ ବନେ ପାଣ୍ଡବାସୁରକୁ ଦେଖିଲେ ।
କର୍ଣ୍ଣ ବୋଇଲେ ଅଟଇ ଏହି ସେ ଅସୁର
ଗୋରୁ ବ୍ରାହ୍ମଣ ଋଷିଙ୍କି ମାଇଲା ଅପାର ।
ଦୁର୍ଯ୍ୟୋଧନ ବୋଇଲା ହେ ବେଢ଼ିଧର ଏହା
ହସ୍ତିନାକୁ ବାନ୍ଧିନେବା ଜାଣୁ କୁରୁନାହା ।

ଏତେ ବିଚାରି ବେଢ଼ିଲେ ହୋଇ ମହାକୋପ
ନରଙ୍କୁ ଦେଖି ଉଷତ ହେଲା କଉଣପ ।
କୁରୁବୀରେ ଗଦାବର ବୁଲାଇଲେ ତୋଳି
ଅସୁର ଶରୀରେ ପଡ଼ି ହୋଇଗଲା ଧୂଳି ।
ଗଦାବର ଭାଙ୍ଗନ୍ତେ ଯେ ହୋଇଲେ ବିରସ
ଘୁଞ୍ଚି ଯାଇଣ ରହିଲେ ସର୍ବ କୁରୁଶିଷ୍ୟ ।
ଦେଖିଣ ପାଣ୍ଡବାସୁର ହୋଇ ମହାକୋପ
ବଜ୍ର ମୂଷଣ ଧରିଣ ଧାଏଁ କଉଣପ ।
କର୍ଣ୍ଣ ଦୁର୍ଯ୍ୟୋଧନ ବୀର ଦୁର୍ବିନ୍ଦ ଦୁର୍ଯ୍ୟୟ
ଅଶ୍ୱତ୍ଥାମା ଆଦି କରି ଦେଖି ଦୈତ୍ୟକାୟ ।
ଭୟ ପାଇ କୁରୁବୀରେ ପଳାନ୍ତେ ବିକଳେ
ସମସ୍ତ ଗୋଡ଼ାଇ ବୀର ମାଇଲା ମୂଷଳେ ।
ଗାନ୍ଧାରୀର ଶତପୁତ୍ର କର୍ଣ୍ଣ ଅଶ୍ୱତ୍ଥାମା
ସମସ୍ତ ମାଇଲା ସେହି ଅସୁର ମହାତ୍ମା ।
ସବୁରି କେଶ ଧଇଲା ହସ୍ତେ ଲୋଚା କରି
ଘେନି ଆସଇ ବାରୁଣାବନ୍ତ ନାମେ ଗିରି ।
ଦୈବ ଯେବେ ଆଣି ମୋତେ ଦେଲାକ ବ୍ୟଞ୍ଜନ
ପର୍ବତ ଉପରେ ବସି କରିବି ଭୋଜନ ।
ଯୁଧିଷ୍ଠିର ରହିଛନ୍ତି ସେ ବାରୁଣାବନ୍ତେ
ଭୀମକୁ ନ ଦେଖି ଖୋଜୁଛନ୍ତି ଚାରି ଭ୍ରାତେ ।
ପର୍ବତ ଉପରେ ମୃତ ପିଣ୍ଡମାନ ଥୋଇ
ନଦୀରେ ସ୍ନାନ କରଇ ହୋଇ ଅବଗାହୀ ।
ଯୁଧିଷ୍ଠି ଦେଖିଲେ ଧୃତରାଷ୍ଟ୍ରର ପୁଅଙ୍କୁ
ଭୟ କଲେ ଅନ୍ତର୍ଗତେ ଦେଖି ଅସୁରକୁ ।
ଭୀମକୁ ଯେ ସୁମରନ୍ତି ଧର୍ମ ଧର୍ମ ଭାଷି
ବାବୁରେ ଅନାଥ କରି କେଣେ ଅଛୁ ପଶି ।
କେବଣ ରାକ୍ଷସ ମୋର ଭାଇଙ୍କି ମାଇଲା
ଆମ୍ଭେ କି ବର୍ତ୍ତିବୁ ଏଥେ ପ୍ରମାଦ ପଡ଼ିଲା ।
ଶୋକଭରେ ସୁମରିଲେ ଧର୍ମଙ୍କ ନନ୍ଦନ
ପାତାଳେ କମ୍ପିଲା ଭୀମସେନର ଆସନ ।
ବୋଇଲେ ଯେ ବୃକୋଦର ଶୁଣ ବେଲାମାଳୀ
ମୋତେ ନ ଦେଖି ସୋଦର ବ୍ୟାକୁଳରେ ଭାଳି ।
ଚାରି ସହୋଦର ମୋର ଆବର ଯେ ମାତ
ପଥ ନ ଦିଶେ କେମନ୍ତେ ଯିବଇଁ ସଙ୍ଗାତ ।
ଭ୍ରାତମାନଙ୍କୁ ମୁହିଁ ଯେ ଦର୍ଶନ କରିବି
ପୁଣି ହିଁ ତୋର ପାଶକୁ ବହନ ଆସିବି ।
ବୋଲଇ ଯେ ବେଲାମାଳୀ ଶୁଣ ପ୍ରାଣନାଥ
ଦେଖିବୁ ନାହିଁ କି ସ୍ୱାମୀ ତୋର ଚାରିଭ୍ରାତ ।
ତୋହର ରେତ ଯେ ମୋର ଗର୍ଭେ ପଡ଼ିଅଛି
ମୋହର ଗର୍ଭ ହୋଇଛି ଅଳ୍ପ ଅଳ୍ପ ଭାରି ।
ଏଥିକୁ ନ ପୁଣ ସ୍ୱାମୀ କରୁ ମନେ ଭ୍ରାନ୍ତି
କାଳେ ପୁଣି ବୋଲୁ ତୁହି ହୋଇଲୁ ଅସତୀ ।
ଭୀମସେନ ବୋଇଲେ ଯେ ହୋଇବ ଦୁଲ୍ଲାଳ
ଏହାର ନାମ ବାଛି ତୁ ଦେବୁ ଯେ ବେଲାଳ ।
ମୁହିଁ ମହାବଳୀ ତୁହି ଅଟୁ ନାଗବଳୀ
ଦୁହିଁଙ୍କର ନାମ ଦେଇଥିବୁ ଏହା ଭାଳି ।
ବେଲାଳସେନ ତା ନାମ ଦେବୁ ଗୋ ସୁନ୍ଦରୀ
କନ୍ୟା ହେଲେ ବେଲାବଳୀ ନାମ ଦେବୁ ଗୋରୀ ।
ନାଗୁଣୀକୁ ପ୍ରବୋଧିଣ ଚଳେ ବୃକୋଦର
ନାଗୁଣୀର ମାୟାରୁ ସେ ହୋଇଲା ବାହାର ।
ସ୍ନାନ କରି ଆସିଣ ସେ ଦୁର୍ଦ୍ଦାନ୍ତ କୌଣପ
ମିଳିଲା ସେ ମୃତ ପିଣ୍ଡମାନଙ୍କ ସମୀପ ।
ଅର୍ଜ୍ଜୁନ ନକୁଳ ଯୁଧିଷ୍ଠିର ସହଦେବ
ଚାରିଭାଇ ଓଗାଳିଲେ ଦେଖିଣ ଦାନବ ।
କୋପଭରେ ହୋଇ ହସ୍ତେ ଶୂଳେକ ବୁଲାଇ
ପର୍ବତ ଉପରକୁ ସେ ଆସୁଅଛି ଧାଇଁ ।
ହାବୁଡ଼ା ଶର ବିନ୍ଧିଲା ପାର୍ଥ କୋପଭରେ
ଧାତିକାରେ ପଡ଼ିଲା ସେ ଦାନବ ଉପରେ ।
ଦେହେ ଭେଦନ୍ତେ ପାଇଣ ସେ ବିଷମଘାତ
ରୁଧିର ବହିଲା ଦୈତ୍ୟ ହୋଇଲା ଅଚେତ ।
ପୁଣି ଚେତି ଉଠିଲା ସେ ଦୁର୍ବାର କୌଣପ
ଶୂଳେକ ପିଟିଲା ମନେ ବହି ଗୁରୁତାପ ।
ଅର୍ଜ୍ଜୁନ ପ୍ରହାର କଲା ବଜ୍ର ମୁଦୁଗର
ଅସ୍ତ୍ରେ ଅସ୍ତ୍ର ବାଜି କମ୍ପିଗଲା ସ୍ୱର୍ଗପୁର ।
ଏମନ୍ତେ କରନ୍ତେ ଦୁଇବୀର ଘୋର ରଣ
ଭୀମ ପ୍ରବେଶ ହୋଇଲା ଯାଇ ତତକ୍ଷଣ ।
ଦେଖି ପରମ ଆନନ୍ଦ ହୋଇଲେ ଯୁଧିଷ୍ଠି
ବାବୁ ମରି ପଡ଼ିଛନ୍ତି ଦେଖ ଧାର୍ତ୍ତରାଷ୍ଟ୍ରି ।
ଭଇରବ ଆଖଡ଼ାରୁ ଆସୁଥିଲେ ଫେରି
ପାଣ୍ଡବାସୁର ମାଇଲା ସମସ୍ତଙ୍କୁ ଧରି ।
ଆହାର କରିବାବେଳେ ଭେଟିଲୁ ତାହାକୁ
ଯୁଦ୍ଧେ ଜିଣି ନ ପାରିଲୁ କଦାପି ଏହାକୁ ।
ଭୀମ ବୋଇଲା ଭୋ ଦେବ ଏଥିରେ ନ ବଡ଼
ଖାଉ ଅସୁର ମରନ୍ତୁ କଉରବ ରାଢ଼ ।
ଆପଣାର ବଇରୀ କି ମାରୁଅଛି ପର
ଏ ପରମ ହିତ ଦେବ କାର୍ଯ୍ୟ ହିଁ ଅପାର ।
ଗଣ୍ଡା ଘେନି ହସ୍ତିନାକୁ ଗଲି ଯେଉଁ ଦିନ
ଭୁଞ୍ଜାଇ ବସାଇ ମୋତେ ଦୁଷ୍ଟ ଦୁର୍ଯ୍ୟୋଧନ ।
କପଟେ କରି ଅଛନ୍ତି ପାକ ଷଡ଼ରସ
ତହିଁର ସଙ୍ଗତେ ମୋତେ ପରଷିଲେ ବିଷ ।

ବିଷ ଖାଇ ଢଳିଲି ମୁଁ ଦେବ ନିଶାକାଳେ
ବାନ୍ଧି ମେଲିଲେ ଅଗାଧ ଯମୁନାର ଜଳେ ।
ଅନନ୍ତ ନାଗ ଦୁହିତା ନାମେ ବେଲାମାଳୀ
ନାଗୁଣୀ ବଳ ଘେନି ସେ କରେ ଜଳକେଳି ।
ମୋତେ ଦେଖିଦେବ ଘେନିଗଲେ ସେ ପାତାଳେ
ଅମୃତ ଦେଇ ଅନନ୍ତ ମୋତେ ଜୀଆଇଲେ ।
ଅନନ୍ତ ବିବାହ ମୋତେ କଲେକ କୁମାରୀ
ଅନେକ ଭକତି କଲା କନ୍ୟା ଦାସୀପରି ।
ଆସନ କମ୍ପିଲା ମୋର ତୁମ୍ଭେ ସୁମରନ୍ତେ
ଏକା ନିମିଷେ ଅଇଲି ନାଗୁଣୀର ମନ୍ତ୍ରେ ।
ଆମ୍ଭ ହସ୍ତେ ନାଶ ଯାହା କରନ୍ତୁ ବଇରୀ
ଦଇବ ନାଶିବା ଏବେ ଦେଖ ଦଣ୍ଡଧାରୀ ।
ଯୁଦ୍ଧ ଛାଡ଼ ଏକୋଉର ଶତଭ୍ରାତ ଖାଉ
ଯାବତ କାଳକୁ ଆମ୍ଭ ଅରିଷ୍ଟ ଯେ ଯାଉ ।
ଯଦ୍ୟପି ଏ ଦୁର୍ଯ୍ୟୋଧନ ପରାଣ ପାଇବ
ଆମ୍ଭେ ଯେ ଅନେକ ଦୁଃଖ ପାଇବା ଭୋ ଦେବ ।
ଯୁଧିଷ୍ଠିର ବୋଇଲେ ଯେ ନ କର ତୁ କୋପ
ଦଇବ ଦଣ୍ଡ ବିହିଲା ପାପ ଅନୁରୂପ ।
ପରେ ପାପ ଚିନ୍ତିଲା ଯେ ଭୁଞ୍ଜିଲା ଆପଣେ
ପ୍ରତ୍ୟକ୍ଷେ ପଡ଼ିଲା ବାବୁ ଦେଖ ଏହିକ୍ଷଣେ ।
ପର ଉପକାରୀ ପର ହିଂସାକାରୀ ପ୍ରାଣୀ
ଦଇବ ଦଣ୍ଡ ବିହଇ ବେଳକାଳ ଜାଣି ।
ଯୁଗେ ଯୁଗେ ଧର୍ମେ ଲକ୍ଷ୍ମୀ ବର୍ଦ୍ଧିତରେ ବାବୁ
ଧର୍ମେ ଚଳଇ ରେ ଭ୍ରାତ ଚରାଚର ସବୁ ।
ଧର୍ମେ ଥିଲେ ହିଂସା ନାଶ ନାହିଁଟି ପ୍ରାଣୀର
ଧର୍ମ ହିଁ କରି ପାରଇ ବିପଦରୁ ପାର ।
ଅନିତ୍ୟ ସଂସାର କେହି ନୁହଇ କାହାର
ଜଳବିନ୍ଦୁ ପ୍ରାୟ ଏହି ପ୍ରାଣୀଙ୍କ ଶରୀର ।
ତୁ ମନରେ ଅଧର୍ମକୁ ନ ଧରରେ ଭୀମ
ମୃତ ପିଣ୍ଡ ଜୀଆଇଲେ ଉଦେ ହେବ ଧର୍ମ ।
ଅଧର୍ମୀ ଲୋକର ଧର୍ମ ସବୁ କରୁଥିବା
ସେହି ନାଶଯିବା ଆମ୍ଭେ ଧର୍ମରେ ତରିବା ।
ବାବୁ ଧୃତରାଷ୍ଟ୍ର ପୁଅ ଆମ୍ଭର ସୋଦର
ଯଶ ଉପୁଜିବ ବାବୁ ଏହାଙ୍କ ଉଦ୍ଧାର ।
ତୋର ଆପଦ ଘେନଇ ମୁହିଁ ଆରେ ବାପ
ଭାଇ ଦୁର୍ଯ୍ୟୋଧନ ଠାରୁ ଛାଡ଼ ଛାଡ଼ କୋପ ।
ଆମ୍ଭେ ଥାଇଁ ଦୁର୍ଯ୍ୟୋଧନ ଯେବେ ନାଶଯିବ
ଅନ୍ଧ ରାଜା ଗୋଟି ଭାଇ ଅନାଥ ହୋଇବ ।
ଯଦ୍ୟପି ଏ କୁରୁବୀରେ ମରିବେ ପ୍ରସ୍ତାବେ
ମୁହିଁକି ବର୍ତ୍ତିବି ବାବୁ ଏହାଙ୍କ ଅଭାବେ ।

କଠୋର ବଚନଯୁଧିଷ୍ଠିଙ୍କ ମୁଖୁ ଶୁଣି
ଅସୁର ପାଖକୁ ଧାଇଁଗଲା ବୀରମଣି ।
ବୃକୋଦରକୁ ଦେଖିଣ ସେ ଅସୁର ବେଗେ
ବଜ୍ର ମୂଷଳ ପିଟିଲା ଭୀମ ବାମ ଅଙ୍ଗେ ।
ପଡ଼ିଣ ବଜ୍ର ମୂଷଳ ଚୂର ହୋଇଗଲା
ଅସିବର ଘେନି ବେଗେ ଅସୁର ଧାଇଁଲା ।
ଖଡ଼ଗ ମାରନ୍ତେ ତାକୁ ଧଇଲା ମାରୁତି
ଅସୁର ହାତୁ ଉଛୁଟି ଘେନିଲା ଝଟତି ।
ସେ ଅସିବର ଆୟୁଧେ ବାହୁଡ଼ାଇ ହାଣି
ପଡ଼ି ଅସୁରର ଛିଡ଼ିଗଲା ଦକ୍ଷପାଣି ।
ପୁଣି ଆର କରେ ନେଇ ଭୀମ ପ୍ରହାରିଲା
ପଡ଼ନ୍ତେ ସେ ବାମକର ଦୈତ୍ୟର ଛିଡ଼ିଲା ।
ପୁଣି ବାରେ ପ୍ରହାରିଲା ହୋଇ କୋପାନଳ
ତାଳୁଠାରୁ ପାଦ ଯାଏ ହେଲା ବେନିଫାଳ ।
ପୂର୍ବେ ବର ଦେଇଥିଲେ ତାକୁ କାଳରାତ୍ରି
ତୋ ଶରୀର ନ କାଟିବ ଇନ୍ଦ୍ର ବଜ୍ର ଶକ୍ତି ।
ଏହି ଅସିବର ଶୂଳ ଥିବାଯାଏ ହସ୍ତେ
ତ୍ରୈଲୋକ୍ୟରେ କେହି ଜିଣି ନ ପାରିବ ତୋତେ ।
ତୋହର ଏ ଶସ୍ତ୍ର ଘେନି ତୋତେ ଯେ ମାରିବ
ଦୁଇଫାଳ କରି ତୋର ଶରୀର ଚିରିବ ।
ତେବେ ତୁହି ନାଶଯିବୁ ଜାଣିଥା ଅବଶ୍ୟ
ତାହାର ଶସ୍ତ୍ରେ ହାଣନ୍ତେ ସେହି ଗଲା ନାଶ ।
ନମସ୍ତେ ହେ ସୁରବର ସୁନ୍ଦର ଶ୍ରୀରାମ
ନମସ୍ତେ ଇକ୍ଷ୍ୱାକୁ ବଂଶଧର ଗୁଣଧାମ ।
ନମସ୍ତେ ରାମ ଅସୁର ବଳ ଧ୍ୱଂସକାରୀ
ନମସ୍ତେ ବାଳି ବାନର ବୀର ଦର୍ପହାରି ।
ନମସ୍ତେ ରାମ କୋଦଣ୍ଡ ଦୀକ୍ଷା କଳ୍ପତରୁ
ନମସ୍ତେ ରାମ ରାବଣ ଦର୍ପହର ଗୁରୁ ।
ନମସ୍ତେ ସିନ୍ଧୁ ବନ୍ଧନ ହରିବଳ ବନ୍ଧୁ
ନମସ୍ତେ ପାତାଳ ତମନାଶ ପୂର୍ଣ୍ଣଇନ୍ଦୁ ।
ନମସ୍ତେ ରାମ ସ୍ଥାବର ଜଙ୍ଗମର ଆଦି
ନମସ୍ତେ ରାମ ସମସ୍ତ କାର୍ଯ୍ୟ ପାରୁ ସାଧି ।
ନମସ୍ତେ ତାଡ଼କା ଦର୍ପ ବିନାଶି ହେ ରାମ
ନମସ୍ତେ ବୈକୁଣ୍ଠପୁର ବାସୀ ଗୁଣଗ୍ରାମ ।
ଭାଗବତ ନାରାୟଣ ଚରଣେ ଶରଣ
ସୂର୍ଯ୍ୟବଂଶ ନାଥ ମୋତେ କର ଉଦ୍ଧାରଣ ।
ପାର୍ବତୀଙ୍କର ଅଭୟ ଚରଣର ଦାସ
ଶାରଳା ଦାସ ସୁମରେ ନିତ୍ୟ କଇଳାସ ।

—୦—

## ଜତୁଗୃହ ଦାହର ମନ୍ତ୍ରଣା

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗବାସୀ
ଅମୃତ ରସ ବକତା ଯହୁଁ ବ୍ୟାସ ଋଷି ।
ପାଣ୍ଡବାସୁରକୁ ଯହୁଁ ପାଣ୍ଡବେ ବଧିଲେ
ପାଣ୍ଡବ ନାମକୁ ପାଞ୍ଚଭାଇ ସେ ପାଇଲେ ।
ବାଦ୍ୟ ବଜାଇ ବୋଇଲେ ଶୂନ୍ୟେ ଶୂନ୍ୟଦେବ
ଆଜ ହୁଁ ତୁମ୍ଭର ନାମ ହୋଇଲା ପାଣ୍ଡବ ।
ଅଚେତନ ହୋଇ ପଡ଼ିଥିଲେ କୁରୁବୀରେ
ଚେତା ପାଇଲେ ଅର୍ଜୁନ ଜୀବନ୍ୟାସ ଶରେ ।
ଭୀମସେନ ବୋଲେ ଯେ ପ୍ରତିଜ୍ଞା କରୁଥିଲା
ବିଷଲଡୁ ଦେଇ ମୋତେ କପଟେ ମାଇଲା ।
ତୁମ୍ଭ ନିମନ୍ତେ ପାଣ୍ଡବାସୁରକୁ ମୁଁ ନାଶି
ପାଣ୍ଡବ ନାମ ପାଇଲୁ ଦେଲେ ସ୍ୱର୍ଗବାସୀ ।
ଅପମାନ ପାଇ ଯାନ୍ତି କୁରୁବୀରମାନେ
ବିଜୟ କଲେ କ୍ରମରେ ହସ୍ତିନା ଭୁବନେ ।
ସଞ୍ଜୟ କହିଲେ ଶୁଣ ଅମ୍ବିକାର ସୁତ
ପୁଅଙ୍କ ଚରିତ ତୋତେ ଅଟେ ବିପରୀତ ।
ବଳରାମଙ୍କ ମେଳରୁ ଆସନ୍ତେ ତୋ ପୁତ୍ରେ
ପାଣ୍ଡବାସୁର ଭେଟିଲା ବାଟରେ ବନସ୍ତେ ।
ସଂଗ୍ରାମ କରି ମାଇଲା ସବୁଙ୍କୁ ହିଁ ରୋଳେ
ଭକ୍ଷଣ କରନ୍ତା ନେଇ ପକାଇ ଅନଳେ ।
ପଣ୍ଡୁ ନନ୍ଦନ ଭେଟିଲେ ଏମନ୍ତ ସମୟେ
ପର୍ଶୁରାମ ହୁଁ ପ୍ରତିଜ୍ଞାବନ୍ତ କୁନ୍ତୀ ପୋଏ ।
ପାଣ୍ଡବାସୁରକୁ ମାରି ପ୍ରତିଜ୍ଞା ରଖିଲେ
ପାଣ୍ଡବ ବୋଲି ତାହାଙ୍କୁ ଅମରେ ବୋଇଲେ ।
ସଞ୍ଜୟ କହୁଁ ପ୍ରବେଶ ହେଲା ଦୁର୍ଯ୍ୟୋଧନ
ଧୃତରାଷ୍ଟ୍ର ଅଗ୍ରତରେ କହିଣ ବିକର୍ଣ୍ଣ ।
ଶକୁନି ବୋଇଲା ଦେବ ଶୁଣ କୁରୁସାଇଁ
ଭୀମସେନ ପାର କଲା ବିଷଲଡୁ ଖାଇ ।
ନିଶ୍ଚୟ ତୋ ବଂଶନାଶ ହେବ ରାଜ୍ୟ ପାଇଁ
ପାଣ୍ଡବେ ଥିଲେ ତୋହର ପୁତ୍ର ପ୍ରାଣ କାହିଁ ।
ଶୁଣିଣ ବିଷାଦ ପାଏ ଅମ୍ବିକାର ବଳା
ଅଗାଧ ଜଳେ ବୁଡ଼ିବ ନିଶ୍ଚେ ମୋର ଭେଳା ।
ଶକୁନି ବୋଇଲା ତୁ ହୋ ଶୁଣ କୁରୁସାଇଁ
ପାଣ୍ଡବ ନାଶେ ଉପାୟ କର ଏବେ ତୁହି ।
ଉତ୍ତମ ବିଚାର ଏବେ କର କୁରୁନାଥେ
ପାଣ୍ଡବେ ରହିଅଛନ୍ତି ବାରୁଣା ପ୍ରଶସ୍ତେ ।
ପୁରୋଚନ ରାଇ ଆଜ୍ଞା ଦେଲେ କୁରୁପତି
ତୁ ଯାଅ ବ୍ରହ୍ମାଣ ଏବେ ପାଣ୍ଡବଙ୍କ କତି ।
ସୂପକାର ହୋଇ ତାଙ୍କ ପାକ ତୁ ରାନ୍ଧିବୁ
ବିଷ ପରଷି ଅନ୍ନରେ ପାଣ୍ଡବ ମାରିବୁ ।
ନୋହିଲେ ନିଦ୍ରା ସମୟେ ତୁହି ନିଶାକାଳେ
ଜତୁ ଗୃହକୁ ଦହିବୁ ଲଗାଇ ଅନଳେ ।
ରାଜାର ଆଜ୍ଞା ପାଇଣ ପାପୀ ପୁରୋଚନ
ବାରୁଣାବନ୍ତେ ଚଳଇ ଘେନି ଦ୍ୱିଜରାଣ ।
ଆଷାଢ଼ମାସ ବିଷ୍ଟି ଯେ ପୂର୍ଣ୍ଣିମାର ଦିନ
ଉତ୍ତରାଷାଢ଼ା ନକ୍ଷତ୍ର ଧନୁ ବିଦ୍ୟମାନ ।
ବାରୁଣାବନ୍ତେ ସେଦିନ ଯାଇ ସେ ମିଳିଲା
ଯୁଧିଷ୍ଠିର ସନ୍ନିଧିରେ ପ୍ରବେଶ ହୋଇଲା ।
ବ୍ରାହ୍ମଣକୁ ଦେଖି ପଚାରନ୍ତି ଦେବୀ କୁନ୍ତୀ
କେବଣ କାର୍ଯ୍ୟେ ଅଇଲେ ବିପ୍ର ଆମ୍ଭ କତି ।
ପୁରୋଚନ ବୋଲେ ଶୁଣ ଭୋଜର କୁମାରୀ
ତୁମ୍ଭେ ଯେ ଦୁଃଖ ପାଉଛ ହସ୍ତେ ପାକ କରି ।
ମୁହିଁ ତ ଭଲ ଜାଣଇ ରନ୍ଧନ ବିଧାନ
ପାକ କରି ଦେଉଥିବି ମୁହିଁ ପ୍ରତିଦିନ ।
ଧୃତରାଷ୍ଟ୍ର ବୋଲାଇଟି ଯେବଣ ରାଜନ
ଅନବରତରେ ତାର ତୁମ୍ଭ ପ୍ରତି ଧ୍ୟାନ ।
ତାଙ୍କ ପୁତ୍ରଙ୍କୁ ତାଙ୍କର ନାହିଁ ଏଡ଼େ ଚିନ୍ତା
ନିତି ନେଉଥାଇ ପାଞ୍ଚଜଣଙ୍କ ବାରତା ।
ପୁରୋଚନ କଥା ଶୁଣି ଧର୍ମ ଯୁଧିଷ୍ଠିର
ଏକାନ୍ତେ ସହଦେବଙ୍କୁ ବୋଲନ୍ତି ନବର ।
ବାବୁ ଏ ବିପ୍ର ଚରିତ କେମନ୍ତ ତୁ ମଣୁ
ତୁ ଯେ ବୁଦ୍ଧି ବିଚକ୍ଷଣ ସବୁ କଥା ଜାଣୁ ।
ସହଦେବ ବୋଲେ ଦେବ ଉତ୍ତର କୋଶଳେ
ଜ୍ଞାନପୁର ବୋଲି ଗ୍ରାମ ଗଙ୍ଗାନଦୀ କୂଳେ ।
ନବସହସ୍ର ଶଉଧ ଷାଠିଏ ବସତି
ସମସ୍ତ ଜନେ କୁଜ୍ଞାନୀ ମନୁଷ୍ୟ ନାଶନ୍ତି ।
ତହିଁର ମହାଜନ ଏ ଅଟଇ ଶାସନୀ
ପାପ ପ୍ରକୃତି ଏହାର ଅଟଇ କୁଜ୍ଞାନୀ ।
ଗଉଡ଼ିଆ ଗୋଖର ଅଟେ ଏ ମନ୍ଦ ନଷ୍ଟ
ଭିଆଇଲେ ଜଉ ସଜଳସ ଛଣପଟ ।
ଭୀମସେନ ଠାକୁରଙ୍କୁ ଦେଲା ବିଷଲଡୁ
ଆମ୍ଭଙ୍କୁ ଏ ବିଷ ଦେବ ପାକ କରୁ କରୁ ।
ଯୁଧିଷ୍ଠି ବୋଇଲେ ରହ ରହ ସହଦେବ
ଭୀମ ଜାଣିଲେ ଏହାର ପ୍ରାଣ ବିନାଶିବ ।
ସୁଜ୍ଞାନୀ କୁଜ୍ଞାନୀ ହେଉ ଅଟଇ ବ୍ରାହ୍ମଣ
ଅର୍ଥବ ବେଦୀ ବିରାଜେ ବିପ୍ରର ଲକ୍ଷଣ ।

ଏହାର ପାପରେ ନାଶଯାଉ ଏହା ଦେହୀ
ବ୍ରହ୍ମହତ୍ୟା ଦୋଷ ଯେ ନ ଲାଗୁ ଆମ୍ଭଙ୍କୁ ହିଁ ।
ଆମ୍ଭର ଶପଥ ଏହା ସଂହରି ହୃଦ୍‌ଗତେ
କଦାଚିତ୍ତେ ନ କହିବୁ ଭୀମର ଅଗ୍ରତେ ।
ଯୁଧିଷ୍ଠିର ବୋଇଲେ ହୋ ଶୁଣସି ପଣ୍ଡାଏ
ତୁମ୍ଭଙ୍କୁ ଆଜ୍ଞା ଦେଲେ କି ଜ୍ୟେଷ୍ଠ ପିତାରାୟେ ।
ଆଦ୍ୟୁ ଜାତ ହେଲୁ ଶତଶୃଙ୍ଗ ପରବତେ
ବନ ଫଳମୂଳ ଭକ୍ଷିଥାଉଁ ଯେ ବନସ୍ତେ ।
ଯେମନ୍ତ ଆମ୍ଭର ତାତ ତେମନ୍ତ ପ୍ରକୃତି
ଅନ୍ନ ଭୋଜନରେ ଆମ୍ଭେ ନୋହୁ ନା ତୃପତି ।
ପିତା ଯେବେ ପେଷି ଦେଲେ ଥାଅ ଆମ୍ଭ ତୁଲେ
ଅନ୍ନ ତୁମ୍ଭେ ରାନ୍ଧିଦେବ ଆମ୍ଭ ଇଚ୍ଛା ହେଲେ ।
ରହିଲେ ପଣ୍ଡାଏ ତହିଁ ପାଣ୍ଡବଙ୍କ କତି
ହୃଦୟରେ ପାପଚିନ୍ତି ବାହାରରେ ପ୍ରୀତି ।
କୁମ୍ଭ ମାସ ଶୁକ୍ଳପକ୍ଷ ତିଥି ତ୍ରୟୋଦଶୀ
ଗୁରୁବାର ପୁଷ୍ୟା ନକ୍ଷତ୍ରର ବେଳେ ଆସି ।
ରାତ୍ର କାଳରେ ପ୍ରବେଶ ହୋଇଲେ ବିଦୂରେ
ଜତୁ ଗୃହେ ଶୋଇଛନ୍ତି ସୁଖେ ପାଞ୍ଚ ବୀରେ ।
ଯୁଧିଷ୍ଠିଙ୍କୁ ବୋଲଇ ସେ ପଣ୍ଡିତ ସୁବିଜ୍ଞ
ରାତ୍ରରେ ପାଶେ ବସାଇ କହଇ ସର୍ବଜ୍ଞ ।
ଧୃତରାଷ୍ଟ୍ରର ଚରିତ ଶୁଣିଲଟି କର୍ଣ୍ଣେ
ଅଭିଷେକ କରିବାକୁ ଲୋଡ଼େ ଦୁର୍ଯ୍ୟୋଧନେ ।
ଆମ୍ଭଙ୍କୁ ଘେନି ଭାଳିଲା ପାଶରେ ବସାଇ
ଭୀଷ୍ମ ବୋଇଲେ ଯୁଧିଷ୍ଠି ଥାଉ ରାଜା କାହିଁ ।
ତାହା ଶୁଣି କୋପ କଲା ସେ ମାନଗୋବିନ୍ଦ
ତେଣୁ ତୁମ୍ଭଙ୍କୁ ଚିନ୍ତିଲା ସର୍ବଦା ପ୍ରମାଦ ।
ମଧୁ ପିଙ୍ଗଳ ଜାତି ଯେ ଅଟେ ବଡ଼ ମନ୍ଦ
ତାଠାରୁ ମନ୍ଦ ଅଟଇ ବାପ ତାର ଅନ୍ଧ ।
ଏ ପୁରୋଚନ ବ୍ରାହ୍ମଣ ଅଟେ ମହାଦୁଷ୍ଟ
ଭୀମସେନଙ୍କୁ ସେ ବିଷ ଖୁଆଇଲା ନଷ୍ଟ ।
ଧର୍ମେଣ ପାର ହୋଇଲା ପବନ ତନୟ
ହେତୁ କରି ରଖିଥିବୁ ସମସ୍ତ ହୃଦୟ ।
ପୁର ଭିଆଇଲା ପୁରୋଚନଟି କପଟେ
ସକଳସଗୁଆ ଘୃତ ଜଉ ଛଣପଟେ ।
ଏବେ ସେ ଉପାୟ କରିବଟି ପୁରୋଚନ
ବିଷ ଦେବ ତା ହସ୍ତେ ନ କରିବ ଭୋଜନ ।
ରାତ୍ରରେ ଯେବଣ ଦିନ ତୁମ୍ଭେ ନିଦ୍ରା ଯିବ
ସେହିଦିନ ଏ ବ୍ରାହ୍ମଣ ଏ ପୁର ପୋଡ଼ିବ ।
ଅଗ୍ନି ନ ରଖିବ ଯତୁଘରର ଭିତରେ
ତୁମ୍ଭର କି ହେବ ପାପ ଥାଉ ତା ଚିତ୍ତରେ ।
ଗୁପ୍ତେ ପାର ହୋଇଯାଅ ନ ଥା ତୁମ୍ଭେ ଏଥେ
କେମନ୍ତେ ବିଚାର ବାବୁ ବୁଝ କରି ତଥ୍ୟେ ।
ତୁମ୍ଭଙ୍କୁ ମୁଁ ଚିନ୍ତା କରୁଥିବି ହୃଦେ ଧରି
ତୁମ୍ଭେ ଯିବାଯାଏ ନାହିଁ ବିଶ୍ରାମ ମୋହରି ।
ଏତେ ବୋଲି ଗଲେ ତହିଁ ଅମ୍ବୁବତୀ ସୁତ
ଧୃତରାଷ୍ଟ୍ର ଅଗ୍ରତରେ ମିଳିଲେ ତ୍ୱରିତ ।
ପ୍ରଣମି କଲ୍ୟାଣ ବାଞ୍ଛା କଲା କୁରୁରାୟ
ଆସ୍ଥାନ ପାଇ ବସିଲା ସେ ସ୍ଥାନେ ସଞ୍ଜୟ ।
ଯୁଧିଷ୍ଠିର ହକାରିଣ ବୋଇଲେ ଭୀମକୁ
ତୁ ବାବୁ ରାତ୍ରିରେ ଇଚ୍ଛା ନ କର ନିଦ୍ରାକୁ ।
ମହାବନ ଏହି ଦୈତ୍ୟଦାନବର ଭୂଇଁ
ବ୍ୟାଘ୍ର ଭାଲୁ ସିଂହ ଗଣ୍ଡା ଅନେକ ଅଛଇ ।
ଦିବସେ ମାରୁତି କ୍ଷେପିଯାଏ ଘୋର ବନେ
ଜୀବମାନଙ୍କୁ ମାରିଣ ଭୁଞ୍ଜେ ପ୍ରତିଦିନେ ।
କନ୍ଦମୂଳ ଗ୍ରାସ କରେ ବେଳକାଳ ଜାଣି
ଭୀମସେନ ଘରେ ଘରେ ଭ୍ରମଇ ରଜନୀ ।
ପାତାଳରେ ନାଗବାଳୀ ବିଭା ହୋଇଥିଲା
ତାହାର ଗର୍ଭୁ ପୁତ୍ରେକ ଜନମ ହୋଇଲା ।
ବଡ଼ ହିଁ ସୁନ୍ଦର ସେହି ମହାବଳବନ୍ତ
ଅନନ୍ତ କି ସେ ଅନନ୍ତ ଶାସ୍ତ୍ରରେ ନିର୍ଜିତ ।
ତା ନାମ ବେଲାଳସେନ ଦେଲା ତାର ମାତା
ପୁତ୍ରକୁ ଦେଖି ଆନନ୍ଦ ଅତ୍ୟନ୍ତ ଦୁହିତା ।
ବୃଷର ଶୁକଳପକ୍ଷ ଦଶମୀର ଦିନ
ସୋମବାର ନକ୍ଷତ୍ର ଯେ ହସ୍ତା ରାଶି କନ୍ୟା ।
ସେଦିନ ଯେ ପୁରୋଚନ ଗଲା ହସ୍ତିନାକୁ
ବାରତା କହିଲା ଦୁର୍ଯ୍ୟୋଧନ ନୃପତିଙ୍କୁ ।
ଅନ୍ନ ସଞ୍ଚାମାନ ନାହିଁ ପଣ୍ଡୁ ପୁତ୍ରଙ୍କର
କନ୍ଦମୂଳ ଭକ୍ଷନ୍ତି ସେ ଯେହ୍ନେ ବନଚର ।
ଅଗ୍ନି ବିବର୍ଜିତ କଲେ ଜଉଘର ଠାରେ
ଲୋଡ଼ିଲେ ପାଇବା କାହୁଁ ଗହନ ଗନରେ ।
ଆନ ଘରେ ଯେବେ ଥାନ୍ତା ତାର ସନ୍ନିଧାନେ
ତେବେ ସେ ଆଜ୍ଞା ପାଆନ୍ତ ସିନା ଗୃହସ୍ଥାନେ ।
ଶକୁନି ବୋଇଲା ମୋର ବୋଲ ଯେ କରିବ
ଝିମଶାଳମାନ ସ୍ଥାନେ ସ୍ଥାନେ ଖୋଳାଇବ ।
ଅନଳ ଲଗାଇ ପୋଡୁଥାନ୍ତୁ ରହି ରହି
ନ ଥିବା ବେଳରେ ଅଗ୍ନି ପାଇବ ଯେ ତହିଁ ।
ଯେତେବେଳେ ନିଦ୍ରା ଯିବେ ପାଣ୍ଡବ ରଜନୀ
ଝିମଶାଳୁ ଅଗ୍ନି ଆଣି ଲଗାଇବୁ ପୁଣି ।
ଶକୁନି ବଚନ ଶୁଣି ସେ ମାନଗୋବିନ୍ଦ
ବିନ୍ଧାଣିମାନ ରାଇଣ ଦେଲେକ ନରେନ୍ଦ୍ର ।

ଶାଢ଼ୀ ସୁନାବଳା ରତ୍ନ ଦେଲାକ ବଧାଇ
ବାରୁଣାବନ୍ତେ ସହସ୍ର ଶାଳ କର ଯାଇ ।
ବନସ୍ତଗୋଟି ଅଛଇ ତହିଁକି ନିକଟ
ଅଙ୍ଗାରେ ପୋଡ଼ିବା ପାଇଁ ତହିଁକି ନିକଟ ।
ଭ୍ରାତାମାନେ ରହିଁବେଟି ତହିଁ ମୋର ଯାଇ
ପାଣ୍ଡବଙ୍କ ସପକ୍ଷ ହୋ ହୁଅ ତୁମ୍ଭେ ଯାଇ ।
ଆପେ ବିଜେ କଲା ତହିଁ ମନ୍ତ୍ରୀ ଯେ ଶକୁନି
ବାରୁଣାବନ୍ତେ ମିଳିଲା ବିନ୍ଧାଣୀଙ୍କୁ ଘେନି ।
ଜତୁ ଗୃହ ବେଢ଼ି ପୁଣି ରହିଲେକ ତହିଁ
କାଠ ମାଟି ଜମାଇଲେ ବନସ୍ତରୁ ବହି ।
ସନ୍ନିଧେ ପ୍ରବେଶ ହେଲେ ପଣ୍ଡୁରାଜବଳା
ଦେଖିଲେ ଚାରିପାରୁଶେ ଅଙ୍ଗାରର ଖେଳା ।
ମାତୁଳଙ୍କୁ ଦେଖି ପାଦେ କଲେ ନମସ୍କାର
ଏ କି ଭିଆଣ ବୋଇଲେ ତାଙ୍କୁ ଯୁଧିଷ୍ଠିର ।
ବୋଲଇ ସେ ପୁରୋଚନ ରାଜାଙ୍କୁ କହିଲେ
ଘୋର ଅରଣ୍ୟେ ତୋ ପୋ ଏକାକୀ ରହିଲେ ।
ଶୁଣି ଧୃତରାଷ୍ଟ୍ର ମନେ ପାଇଲାକ ତ୍ରାସ
ଝିମଶାଳ କରିବାକୁ ଦେଲାକ ଆଦେଶ ।
ଶକୁନି କହିଲେ ପାଣ୍ଡବଙ୍କ ସନ୍ନିଧିରେ
ନିର୍ଭୟ ହୋଇଣଥାଅ ତୁମ୍ଭେ ବନ ଘୋରେ ।
ରାତ୍ର ଦିବସ ଏ ରହି କରିବେ ଗଠନ
ପଞ୍ଚଦଶ ମାସେ ଗୃହ ହୋଇବ ନିର୍ମାଣ ।
ଦ୍ୱାଦଶ ବଖରା ଲେଖା ଘରକୁ ନିର୍ମାଣି
ଲୁହାର କାମ କରିଲେ ଏ ଲୌହ ବିନ୍ଧାଣୀ ।
ଏମନ୍ତେ ସହସ୍ର ଘର ହୋଇବ ନିର୍ମିତ
ଲୁହାର କାମେ ବିନ୍ଧାଣୀ ଲାଗିଲେ ସମସ୍ତ ।
ପୁରୋଚନ ଥିବ ସଦା ତୁମ୍ଭ ସନ୍ନିଧାନେ
ତୁମ୍ଭଙ୍କୁ ସାହା ହୋଇବ ଅନ୍ନଜଳପାନେ ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ବିଜ୍ଞ ସେ ପଣ୍ଡିତ
ଧାର୍ମିକ ବିବେକୀ ନୀତି ଶାସ୍ତ୍ରରେ ନିର୍ଜିତ ।
ତୁମ୍ଭ ମନ ଜ୍ଞାନରେ କି ଥାଇ ପାପ କଥା
ଧର୍ମ ହିଁ ସପକ୍ଷ ହୋଇଥାଏ ସେ ସର୍ବଥା ।
ରହିଥିଲେ ଦ୍ୱିଜବର ଯୁଧିଷ୍ଠିଙ୍କ ତୁଲେ
ବିନ୍ଧାଣିମାନେ ରହିଣ ଶାଳକୁ ସର୍ଜିଲେ ।
ସିଂହ ଶୁକ୍ଳ ତ୍ରୟୋଦଶୀ ତିଥି ଅର୍କବାରେ
ଧନିଷ୍ଠା ନକ୍ଷତ୍ର କୁମ୍ଭ ରାଶି ସେ ଦିନରେ ।
ବିଦୂର ମହାତ୍ମା ବିଜେ କଲେ ନିଶାକାଳେ
ଭୀମସେନକୁ ଭେଟିଲେ ପରବତ ତଳେ ।
ବୋଇଲେ ଯୁଧିଷ୍ଠିରଙ୍କୁ ଡାକ ମୋର କତି
ଆଜ୍ଞା ପରମାଣେ ତହୁଁ ଚଳଇ ମାରୁତି ।
ଯୁଧିଷ୍ଠିର ଅର୍ଜ୍ଜୁନକୁ ଘେନି ବୃକୋଦର
ଭେଟିଲେ ବିଦୂରେ ଯାଇ ସୁରନଦୀ ତୀର ।
ଯୁଧିଷ୍ଠି ବୋଇଲେ ଭୀମସେନକୁ ଯେ ରାଇ
ମାତାଙ୍କୁ ଆସ ବାରୁଣାବନ୍ତରେ ରୁହାଇ ।
ବିଦୂର ବୋଇଲେ ଯୁଧିଷ୍ଠିଙ୍କ ମୁଖ ଚାହିଁ
ଘରର ଚରିତମାନ ଜାଣିଛୁ କି ତୁହି ।
ଯୁଧିଷ୍ଠି ବୋଇଲେ ତାତ ଥିଲା ମୁହିଁ ଏକା
ଦଇତ୍ୟେ ଦାନବେ ମୋର ଥିଲା ବଡ଼ ଶଙ୍କା ।
ଶକୁନିଙ୍କ ପ୍ରସାଦେ ମୁଁ ହୋଇଲି ନିଃଶଙ୍କ
ରାତ୍ର ଦିବା ବିନ୍ଧାଣିଙ୍କ ଶବ୍ଦ ଠକ ଠକ ।
ଅପାର ସଙ୍ଗ ପାଇଲି ଜ୍ୟେଷ୍ଠ ପିତା ଯୋଗୁଁ
ଧୃତରାଷ୍ଟ୍ରଙ୍କୁ ପାଇଲି ସିନା ପୂର୍ବଭାଗ୍ୟ ।
ରାଜ୍ୟର ସକଳ ଚିନ୍ତା ଲାଗଇ ରାଜାଙ୍କୁ
ମୋହର ଚିନ୍ତା କେମନ୍ତେ ନ ଲାଗିବ ତାଙ୍କୁ ।
ଯେତେବେଳେ ମୁହିଁ ରହିଥିଲି ଘୋର ବନେ
ଅନେକ ଦୁଃଖେ ବଞ୍ଚିଲି ତାଙ୍କ ପରସନ୍ନେ ।
ବିଦୂର ବୋଇଲେ ଧର୍ମ ଲୋତ୍ତୁ ତୁହି ଚିତ୍ତେ
ଧୃତରାଷ୍ଟ୍ରର ପ୍ରକୃତି ନୁହଇ ଏମନ୍ତେ ।
ଯେମନ୍ତେ ବିନାଶ ତୁମ୍ଭେ ଯିବ ପାଞ୍ଚଭାଇ
ଅନବରତରେ ସେହି ବୁଦ୍ଧି ଚିନ୍ତୁଥାଇ ।
ଯୁଧିଷ୍ଠି ବୋଇଲେ ସାଧୁ ଧୃତରାଷ୍ଟ୍ର ତାତ
ଅଧର୍ମ କଲେ ମୁଁ ଏହା ବୋଲିବି କେମନ୍ତ ।
ଝିମଶାଳ ତୋଳାଇଲେ ମୋ ପାଇଁ ଯତନେ
ବିଦୂର ବୋଇଲେ ବାବୁ ଥାଅ ସାବଧାନେ ।
ଅଗ୍ନି ନ ପାଇଲା ଯହୁଁ ବିପ୍ର ପୁରୋଚନ
ତେଣୁ ଭିଆଇଲା ଏହି ଝିମ ଶାଳମାନ ।
ଚିରନ୍ତନ ଅଗ୍ନି ରଖାଇଲା କୁରୁପତି
ପୁରୋଚନ ଦହିବ ତା ଘେନି ନିଶାରାତି ।
ଏମନ୍ତ କପଟ ଜାଣ ଧୃତରାଷ୍ଟ୍ର କଥା
ବାବୁ ସାବଧାନ ହୋଇଥାଅ ତୁ ସର୍ବଥା ।
ଯୁଧିଷ୍ଠି ବୋଇଲେ ତାତ ତୁମ୍ଭର ଏ ଚିନ୍ତା
କେ ପୁଣି ତ୍ରୈଲୋକ୍ୟ ମୋତେ ପ୍ରସାଦ ବିହନ୍ତା ।
ତଦନ୍ତେ ବିଦୂରେ ଚଳିଗଲେ ନିଜ ପୁରେ
ଯୁଧିଷ୍ଠି ପ୍ରବେଶ ହେଲେ ବାରୁଣା ନଗରେ ।
ମୁଁ ଅତି ପାପର ନାମ ଅଟେ ମୋ ଶାରଳା
ଭବାବଧିରୁ ତାର ମୋତେ ଦକ୍ଷରାଜବାଳା ।

—0—

## ଶଲ୍ୟକାରର ଜନ୍ମ ବୃତ୍ତାନ୍ତ

ହସ୍ତରେ ଖଡ଼ଗେକ ଘେନି ରାତ୍ରିରେ ବିଦୂର
ହସ୍ତିନାପୁରେ ବୁଲଇ ସକଳ ନଵର ।
ନିଶାକାଳେ ଦିନେ ଯାନ୍ତେ ହସ୍ତିନାରେ ଭ୍ରମି
ତୁଲେ ତାର କେହି ନାହିଁ ଏକାକୀରେ ଗମି ।
ପୁରୁଷେକ ଦେଖିଲେ ସେ ବୁଲେ କାନ୍ଦି କାନ୍ଦି
ଚିରିକୁଟି କନାଖଣ୍ଡେ କଟୀରେ ସେ ବାନ୍ଧି ।
ନୟନେ ଅଞ୍ଜନ ତାର ମଥା କେଶ ହୀନ
ବସ୍ତ୍ର ବିହୁନେ ପ୍ରପଞ୍ଚ ଦିଶଇ ସେ ଜନ ।
ନିଶାପତି ଦେଖିଣ ସେ ହୋଇଲା ଗୁପତ
ଧାଇଁ ଯାଇଁଣ ବିଦୂର ଧଇଲେ ତା ହସ୍ତ ।
ବିଦୂର କହିଲେ ତାକୁ ଯାଉ କାହା କତି
ପ୍ରପଞ୍ଚ ଅବସ୍ଥା ତୋର ଦିଶୁ ହୀନ ଜାତି ।
ହସ୍ତିନା ଭୁବନେ ତୋହପରି ଲୋକ ନାହିଁ
ଏସନ ଦରିଦ୍ରାବସ୍ଥା ପାରିଲୁ କିମ୍ପାଇଁ ।
ସ୍ୱରୂପ କଥା କହିବୁ ମୋହର ଅଗ୍ରତେ
ମିଥ୍ୟା କହିଲେ ମୁଁ ନାଶ କରିବିଟି ତୋତେ ।
ବିଦୂର ବଚନେ ଭୟେ ବୋଲଇ ତସ୍କର
ମୁଁ ଯେବଣ ଜାତି କହୁଅଛି ଦଣ୍ଡଧର ।
ମୁହିଁ ଜାତିରେ ତସ୍କର ଅଟଇ ଯୁକତେ
ବିଦୂର ବୋଇଲେ ଜାତି ତସ୍କର କେମନ୍ତେ ।
ମୁହିଁଟି ଦେବ ତସ୍କର ଅଟେ ହୀନ ଜାତି
ଘରଦ୍ୱାର ନାହିଁ ଚୌର୍ଯ୍ୟକର୍ମେ ଥାଇ ବର୍ତ୍ତୀ ।
ପୁଣି ବିଚାରି ପୁଚ୍ଛଇ ଅମ୍ବୁବତୀ ସୁତ
କେମନ୍ତେ କରି ନେଉରେ କହ ପରବିତ୍ତ ।
କାନ୍ଥ ଖୋଳି ମୁହିଁ ଦେବ ପଶଇ ଭିତରେ
ପରଧନ ଚୋରୀ କରି ନିଏ ରାତ୍ରକାଳେ ।
ବିଦୂର ବୋଇଲେ ଘରେ ଥାନ୍ତି ଲୋକମାନ
କେବଣ ବାଟରେ ପଶି ଚୋରି କରି ଆଣ ।
କହଇ ଉତ୍ତର ତାହା ଶୁଣିମା ଗୋସାଇଁ
ଚାରିଖାନି ଚଉରାଶି ଜୀବ ସେ ଭିଆଇ ।
ଚୌର୍ଯ୍ୟବୃତ୍ତି ବୋଲି ଏକ ତହୁଁ ଭିଆଇଲା
ଲକ୍ଷଣା ବୋଲି ପଦାର୍ଥ ଏକ ଉପୁଜିଲା ।
ତାହାକୁ ଘେନିଣ କାନ୍ଥ ଖୋଳୁ ନିଶାରାତି
ଭିତରେ ପଶିଲେ ତହିଁ କେହି ନ ଦେଖନ୍ତି ।
ବିଦୂର ବୋଇଲେ ମୋତେ ତା ସ୍ୱରୂପ କହ
କିପରି ଲକ୍ଷଣା ତାର କା ହାତେ ଗଢ଼ାଅ ।
କହେ ଖଲ୍ୟକାର ଦେବ ଶୁଣ ସାବଧାନେ
ତୁଳମାସ ଅମାବୈର ଚଣ୍ଡୀ ପୂଜାଦିନେ ।
ତାର ବାର ରକ୍ଷ ଚନ୍ଦ୍ର ଶୁଭ ସେ ଦିନର
ଯେତେକ ଅଛନ୍ତି ଦେବ ଚୋର ତସକର ।
ସେହିଦିନ ଲକ୍ଷଣା ଯେ କରନ୍ତି ବିଚାରି
ତହିଁକି ସେ ପ୍ରତିକାର ଅଛଇ ଆହୁରି ।
ସେହି ପାହାନ୍ତାରେ ଜନ୍ମେ ଯେବଣ ହିଁ ବଳା
ଚଉର୍ଯ୍ୟପଣ ବିଧିକୁ ସେହି ଅନୁକୂଳା ।
କୃତ୍ତିକା ନକ୍ଷତ୍ର ପୁଣି ଯାର ବୃଷରାଶି
ତାହାକୁ ବରଣ କରି ଆମ୍ଭେ ଘେନିଆସି ।
ପ୍ରଭାତରୁ ସ୍ନାନ ସାରି କଳାବସ୍ତ୍ର ପିନ୍ଧି
ମଲା ପାଇପିଙ୍କ ଶଙ୍ଖା ଖଣ୍ଡେ ହସ୍ତେ ପିନ୍ଧି ।
ରାତ୍ର ହୋଇଲେ ଯତନେ ପାଳୁ ପୂଜା କରି
ନୂତନ ଅଗ୍ନି ଉତ୍ତରି ଚକମକି ଧରି ।
ରାତ୍ର ତିନି ପ୍ରହରରେ କୃଷ୍ଣଛାଗ ନେଇ
ଚଣ୍ଡୀ ଦେବୀଙ୍କୁ ରକତ ଭାତ ବଳି ଦେଇ ।
ପ୍ରସୁତି ଧରିବା ଲୁହା ଏକ ଖଣ୍ଡ ନେଇ
ପତ୍ରାବଳୀ କରିବ ତା ଅଗ୍ନିରେ ସିଝାଇ ।
ଯୋଗେଣ ନିର୍ମିତ କରେ ତାହା ମହାରଣା
ତିନିଧାର କରି ଦେବ ଗଢ଼ାଇ ଲକ୍ଷଣା ।
ଭୋ ଦେବ ବିଦୂର ଏବେ ଶୁଣ ସାବଧାନ
ଆପେ କରାଇଣ ଥିଲେ ତାହା ଜନାର୍ଦ୍ଦନ ।
ଗୋପପୁରେ ଜନ୍ମ ହେଲେ ଦେବ ବନମାଳୀ
ରଙ୍ଗ ଅବତାରେ ବିଳସିଲେ ବ୍ରଜବାଳୀ ।
ହରି ରାଧାର ହୋଇଲା ଅନେକ ପୀରତି
ଚନ୍ଦ୍ରସେଣା ଗଉଡ଼ ତା ନ ଛାଡ଼ଇ କତି ।
ରାତ୍ରରେ ଶୁଆଏ ନେଇ ଗମ୍ଭୀରି ଭିତରେ
ଅନେକ ଯତ୍ନେ କବାଟ କିଳି ବସେ ଦ୍ୱାରେ ।
ମଦନେ ଆରତ ହୋଇ ଦେବ ବନମାଳୀ
ରାଧା ନିମନ୍ତେ ଭ୍ରମନ୍ତି ରାତ୍ରେ ଗଳି ଗଳି ।
ଶତ କବାଟ କିଳିଣ ଚନ୍ଦ୍ରସେଣା ଘେନି
ରାଧା ଅଛି ନ ପାଇଲେ ବାଟ ଦେବସ୍ୱାମୀ ।
ଅସମ୍ଭାଳ ହୋଇ ସ୍ୱାମୀ ମଦନ ଆରତେ
ରାଗେ କବାଟ ପେଲନ୍ତି ହରି ନିଜ ମାଥେ ।
କବାଟେ କଣ୍ଟା ବାଜିଲା କପାଳେ ତାଙ୍କର
ମଥା ଗୋଟି ଫୁଟିବାରୁ ବହଇ ରୁଧିର ।
ଧାତାର ମନେ ବହୁତ ଚିନ୍ତା ଉପୁଜିଲା
ହୃଦୟ ମଧ୍ୟରେ ପୁଣି ବିକଳ ହୋଇଲା ।
ନାରାୟଣଙ୍କୁ ପ୍ରସନ୍ନ ହେଲେ ପିତାମହ
ରୁଧିର ପୋଛି ପକାନ୍ତି ନନ୍ଦରାଜା ପୁଅ ।
ନାରାୟଣ ରୁଧିରକୁ ଚାହିଁ ବେଦପତି
କଟାକ୍ଷ ମନ୍ତ୍ରରେ ଘାଆ ଫୁଙ୍କି ଝାଡ଼ିଦ୍ୟନ୍ତି ।

ଭୋ ନାରାୟଣ ପାଇଲ କାମେ ଏ ଅବସ୍ଥା
ନିରୋଧିଲା ଚନ୍ଦ୍ରସେଣା ଗୃହରେ ବନିତା ।
ଲୁହା ଅସ୍ତ୍ର ଦେଉଅଛି ତୋତେ ବନମାଳୀ
ଏହା ଘେନି ଭିତରେ ତୁ ପଶ କାନ୍ଥ ଖୋଳି ।
ସେ ଲୁହା ଶସ୍ତ୍ର ଗୋଟିକ ଘେନିଣ ଅଚ୍ୟୁତ
ଖୋଳି ପକାଇଲେ ତାର ପଥରର କାନ୍ଥ ।
ବ୍ରହ୍ମାଙ୍କର ମାୟାରୁ ତ ନ ଶୁଭେ କାହାକୁ
କାନ୍ଥ ଖୋଳି ବନମାଳୀ ଗଲେ ଭିତରକୁ ।
ଏଣେ ରାଧାଙ୍କୁ ତ ଲାଗିଅଛି କାମବାଧା
କେଶବଙ୍କୁ ଦେଖି ତାର ବଳିଲା ଶରଧା ।
ଅଞ୍ଜନ ବିଦ୍ୟା ଯେ ଦେଇଥିଲେ ବେଦପତି
ନୟନେ ଲଗାଇ ଚାହିଁଦେଲେ ଚଉକତି ।
ଦିହୁଡ଼ି ଲାଗିଲା ପ୍ରାୟ ହୋଇଲା ଆଲୁଅ
ଅନ୍ଧାର ଘର ଦିଶିଲା ସୂର୍ଯ୍ୟଉଦେ ପ୍ରାୟ ।
ଆଉ ଏକ ବିଦ୍ୟା ଦେଇଥିଲେ ବେଦବର
ନିଦ୍ରା ଧୂଳି ଗୁଡ଼ାଏକ ଦେଇ କୃଷ୍ଣ କର ।
ତାହାଙ୍କୁ ପକାଇଦେବେ ଗୋପାଳ ଉପରେ
ଅଚେତନ ହୋଇ ନିଦ୍ରାଗଲା ସେ ଶେଯରେ ।
ରାଧାର ହସ୍ତକୁ ଧରି ନାରାୟଣ ଟେକି
ଝଟତି ଉଠି ବସିଲେ ଦେବୀ ଚନ୍ଦ୍ରାବଳୀ ।
ରାଧାର ହସ୍ତକୁ ଧରି ପଶିଲେ ଗମ୍ଭୀରେ
ନାନାରଙ୍ଗେ କ୍ରୀଡ଼ାରସ କଲେ ସେହିପୁରେ ।
ରାଧା କୃଷ୍ଣଙ୍କର ଯହୁଁ ସରିଲାକ କେଳି
ରାତ୍ରି ଶେଷେ ବାହାରିଲେ ତହୁଁ ବନମାଳୀ ।
ବିଚାରନ୍ତି ଏ ବିଧିରେ କାର୍ଯ୍ୟ ହେଲା ସିଦ୍ଧି
କାଳେ କାଳେ ହେଉଥାଉ ଏହିପରି ବିଧି ।
ଏ ଲକ୍ଷଣେ ନାରାୟଣ ଏହା ନିର୍ମାଣିଲେ
ତେଣୁ ଏ ଶସ୍ତ୍ରର ନାମ ଲକ୍ଷଣା ରଖିଲେ ।
ସେହି ବିଦ୍ୟାରେ ଅନେକ କର୍ମ କଲେ ହରି
ସେ ମୋତେ ଦେଲେ ଏ ବିଦ୍ୟା ଅତି ଗୁପ୍ତ କରି ।
ବିଦୂର ବୋଇଲେ ବାବୁ ଏ ବଡ଼ ପ୍ରସ୍ତାବ
ତୋର କେଶବର କାହୁଁ ହେଲା ଏତେ ଭାବ ।
ବିନୟ ଭାବ ବହିଣ କହେ ଖଲ୍ୟକୀର
ବାସୁଦେବ ଗୋପପୁରେ ହୋଇ ଅବତାର ।
ରାଧାର ତୁଲେ ଯହୁଁ ନ ପାରିଲେ ପୀରତି
ରାଇଲେ ସ୍ୱର୍ଗ ସୁନ୍ଦରୀ ନାମେ ଏକ ଦୂତୀ ।
ସେହି ଅମରଙ୍କ ଦୂତୀ ସ୍ୱର୍ଗପୁର ନାରୀ
ତାହା ସଖୀ ଚଉଷଠି କୋଟି ବିଦ୍ୟାଧରୀ ।
ସ୍ତମ୍ଭନ ମୋହନ ଆଉ ବଶ୍ୟ ଉଚ୍ଚାଟନ
ଗୁଟିକା ଅଞ୍ଜନ ଆଦି ଧରଣ ଧାରଣ ।
ସର୍ବ ବିଦ୍ୟା ଜାଣଇ ସେ ସ୍ୱରଗ ସୁନ୍ଦରୀ
ତା ଭାବ ରସ ବଚନେ ପାଷାଣ ତରଳି ।
କୃଷ୍ଣ ତାକୁ ପଠାଇଲେ ରାଧିକା ନିମନ୍ତେ
ପ୍ରବେଶି ରାଧାକୁ ବଶ କଲା ସେ ତ୍ୱରିତେ ।
ନନ୍ଦପୁଅ ବୋଲେ ଗୋପୀନିନ୍ଦା କରୁଥିଲେ
ସ୍ୱରଗ ସୁନ୍ଦର ବାକ୍ୟେ ସର୍ବେ ବଶ ହେଲେ ।
ବଇଶାଖ ଶୁକ୍ଳପକ୍ଷ ଚଉଠିର ଦିନ
ରୋହିଣୀ ଭୋଗାନ୍ତେ ମୃଗଶିରାର ଆଗମ ।
ସେଦିନ ରାଧିକା ନିଜପୁରେ ଛନ୍ତି ରହି
ଶ୍ୱଶୁର ଘରେ ଶାଶୁକୁ ତାହାର ଶୁଆଇ ।
ବସନ୍ତ ଉତ୍ସବ ହେଲା ମଥୁରା ନଗରେ
ଦୁଧ ଦହି ଘେନି ସର୍ବେ ଗଲେ କଂସପୁରେ ।
ଯହୁଁ ଗୋପ ଜନଶୂନ୍ୟ ମନ୍ଦିର ହୋଇଲା
ସ୍ୱରଗ ସୁନ୍ଦରୀକି ଯେ ରାଧିକା ରାଇଲା ।
ଆପଣାର ଅଳଙ୍କାର ସମସ୍ତ କାଢ଼ିଲା
ସେ ସ୍ୱରଗ ସୁନ୍ଦରୀକି ରାଧିକା ମଣ୍ଡିଲା ।
ଆପଣାର ଅଷ୍ଟଅଳଙ୍କାରକୁ ପିନ୍ଧାଇ
କବରୀ ଭାରେ ଖୋସିଲା ପୁଷ୍ପମାଳ ଦେଇ ।
କସ୍ତୁରି ଗନ୍ଧ ଲେପନ କଲାକ ସର୍ବାଙ୍ଗ
ତାମ୍ବୁଳ ଦେଇ ଅଧର କଲା ତାର ରଙ୍ଗ ।
ବୋଇଲାକ ସଖୀ ତୁ ଗୋ ଯାଅ ଏହିକ୍ଷଣ
ନନ୍ଦସୁତ କହ୍ନାଇକି ବହନ ତୁ ଆଣ ।
ଆପଣା ନୂପୁର କାଢ଼ି ତାହା ପାଦେ ଦେଇ
ରାଧା ବଚନେ ସ୍ୱରଗ ସୁନ୍ଦରୀ ଚଳଇ ।
ରାଧିକା ଦେବୀ ନିମନ୍ତେ ଦେବ ମଧୁହାରି
ମାଧବୀ ଲତାର ତଳେ ପଥ ଅନୁସରି ।
ଯମୁନା ତୀରେ କଦମ୍ବ ବୃକ୍ଷେ ପୁଣି ଉଠି
ପରଦାର ଅର୍ଥେ ହରି ଏସନକ କଷ୍ଟୀ ।
ଏମନ୍ତ ପଥ ଉଦ୍ଦେଶ୍ୟ କର ଜଗନ୍ନାଥ
ନୂପୁର ଶବ୍ଦ ଶୁଣିଲେ ଗମନର ପଥ ।
ଡେଇଁ ପଡ଼ିଲେକ ହରି କଦମ୍ବର ଡାଳୁ
ତରଳ ନୟନେ ସେହି ଛାହିଁଲେ ଦୂରରୁ ।
ମଦନାଜଳେ ବୁଡ଼ାଇଛନ୍ତି ନିଜ କାୟ
ଦୂତିକାକୁ ଦେଖିଲେ ସେ ରାଧିକାର ପ୍ରାୟ ।
କାମ ଆରତେ ବିହ୍ୱଳ ଦେବ ମଧୁହାରୀ
ମାଧବୀ ଲତାର ତଳେ ପଥ ଅନୁସରି ।
ରାଧା ବୋଲି ଦୂତିକାକୁ ଦେବ କୋଳ କରି
ମଦନ ଆରତେ କିଛି ବିଚାରି ନ ପାରି ।
ଦୂତୀ ପିନ୍ଧିବା ବସନ ପକାଇଲେ କାଢ଼ି
ଅନ୍ଧକାରେ ଦେବ କିଛି ନ ପାରିଲେ ବାରି ।

ବିଶେଷେ ନିକୁଞ୍ଜ ଲତା ଗହନ ଯେ ବନ
ବସନ୍ତ ଋତୁ ଅଙ୍ଗକୁ ଦହଇ ମଦନ ।
ବନସ୍ତେ କୋକିଳ ଧ୍ୱନି କରେ ହୋଇ ମତ୍ତ
ମନସିଜ ବାଣାଘାତେ ହୋଇ ଉନମତ୍ତ ।
ଏସନ ବିହ୍ୱଳ ଯେଣୁ କଲା କାମଦେବ
ରାତ୍ର ବ୍ରହ୍ମଜ୍ଞାନୀ ନାଥ ଚଞ୍ଚଳ ସ୍ୱଭାବ ।
ରାଧା ଅଳଙ୍କାରମାନ ନୟନରେ ଦେଖି
ରାଧିକା ବୋଲି ଶୃଙ୍ଗାର କରେ ସେ ଦୂତୀକି ।
ଅବଶେଷେ ଜାଣିଲେକ ନୁହଇ ଏ ରାଧା
ଦୂତୀକା ଅଙ୍ଗ ଛୁଇଁଲି ପାଇ କାମ ବାଧା ।
ଏମନ୍ତ ବୋଲି କେଶବ ବସି ମଥାପୋତି
ଅସମ୍ଭାଳ ହୋଇ ତହିଁ ପଳାଇଲା ଦୂତୀ ।
ଆପଣାର ବସ୍ତ୍ର ସେହି ବାରି ନ ପାରିଲା
କହ୍ନାଇର ବସ୍ତ୍ର ପିନ୍ଧି ବେଗେ ପଳାଇଲା ।
ବାସ ନ ପିନ୍ଧନ୍ତି ହର ନ ବାନ୍ଧନ୍ତି କେଶ
ଦୂତୀ ଅଙ୍ଗ ଛୁଇଁବାର ମନରେ ବିରସ ।
ଦେଖ ଦେଖ ଏହି ପାପୀ କାମର ଅଦିତି
ମୋହଭଳି ଲୋକକୁ ଏ ଦେଲା ଏଡ଼େ ଶାସ୍ତି ।
ଏହାର ବଳେ ମୁଁ କଲି ଏଡ଼େ ବଡ଼ କଥା
ମାନବମାନଙ୍କୁ ଦେବ ଏସନ ବ୍ୟବସ୍ଥା ।
ମୁହିଁ ଯାହା କଲି ତାହା ରହିବ ସଂସାରେ
ଗୁରୁ ଗୌରବ ନ ମାନି ଯିବେ ପରଦାରେ ।
ବୃଦ୍ଧ ବୟସକୁ ମୁହିଁ ନ ପାରିଲି ବାରି
ଅଭାବେ ବୁଡ଼ିଲି କାମଶରେ ହୋଇ ଘାରି ।
କେତେ କାଳ ବୃଦ୍ଧା ପୁଣି କୁଟୁଣୀଏ ଗୋଟା
ତାହାଠାରେ କାମ ମୋର ବଳାଇଲା ଚେଷ୍ଟା ।
ନ ପୁଣ ରାଧା ଛାମୁରେ କହେ ଦୂତୀ ଯାଇ
ଉପହାସ କରି ମୋତେ କହିବ ଯେ ରାଇ ।
ଭୋ ସରସ୍ୱତୀ ଦୂତୀକା କଣ୍ଠେ ଯାଇ ବସ
ଏକଥା ରାଧିକା ଆଗେ ନ କରୁ ପ୍ରକାଶ ।
ପରଦାର ହରଣ ଏ ପୁଣି ଅସମ୍ଭବ
ଏ କଥା ଦୂତୀ ଆନକୁ କେବେ ନ କହିବ ।
ଯଦ୍ୟପି କହିବ ଏହି ରାଧିକାର ଆଗ
ରାଧା ଶୁଣିଲେ କରିବ ନାହିଁ ଯେହ୍ନେ ରାଗ ।
ଏତେ ବିଚାରି ଉଠିଲେ ଦେବ ନରହରି
ପିନ୍ଧିବା ବସ୍ତ୍ର ଦେଖନ୍ତି ଦୂତିକାର ଶାଢ଼ୀ ।
ଏହା ଦେଖି ସ୍ୱାମୀ ମନ ଦ୍ୱିଗୁଣ ବିରସ
ଏହା ଅନୁସରି ମନେ ଲାଗିଲା ସନ୍ଦେଶ ।
ଏସନ ଅବସ୍ଥା ମୋତେ ଦେଲୁରେ ଅନଙ୍ଗ
ଜଗବନ୍ଧୁ ପୁରୁଷକୁ କଲୁ ଏଡ଼େ ରଙ୍ଗ ।
ପୋଡୁ ପୋଡୁ ପରଦାର ଆଜିଠାରୁ ନୋହୁ
ଯେ କରିବ ପରଦାର ପ୍ରାଣ ତାର ଯାଉ ।
ପରଦାର ହରଣରେ ଏସନ ଅବସ୍ଥା
ଖେଳର ଯେ ଭିଆଇଲି ମୁଁ ଏସନ କଥା ।
ଏବେ ସେ ଜାଣିଲି ପରଦାରର ଏ ଭେଦ
ପରଦାର ଭୋଗ ହୁଏ ଏସନ ପ୍ରମାଦ ।
ନାରାୟଣ ହିଁ ବିରସ ହୋଇଲେ ଏସନେ
ପରସ୍ତିରୀ ହରଣରେ ନ ପଶିବେ ଜନେ ।
କାମ କାମଶେଣୀ ପକ୍ଷୀ କାମିନୀ କାମାକ୍ଷୀ
ସ୍ତିରୀ ପୁରୁଷ ବିଧାତା ଏସନ ବିହିଛି ।
କମଳା ପିଙ୍ଗଳା ମାତା ଶବଳା ବିହ୍ୱଳା
ସରଳା ତରଳ କଳା ବିମଳା ଶାରଳା ।
କାମାକ୍ଷୀ ସୁମର ନରେ କାମ କଷ୍ଟ ଫାଟୁ
ପରଦାରକୁ ସଂହର ସଂସାର ନ ଫାଟୁ ।
କାମ ସାଗର ଅଗାଧ ଅପ୍ରମିତ ଜଳ
କାହାକୁ ହିଁ ଦୃଶ୍ୟ ନାହିଁ ନାହିଁ ଥଳକୂଳ ।
ଭାଙ୍ଗିଲା ଜଗମୋହନ ପୁରୁଷର ଦର୍ପ
ଉପୁଜଇ ପରଦାର କଲେ ସର୍ବ ପାପ ।
କ୍ଷଣିକ ସୁଖ ସେ ପରଦାର ରସ ରଙ୍ଗ
କ୍ଷଣମ ଭିତରେ ସର୍ବ ବପୁ ହୁଏ ଭଙ୍ଗ ।
କାମାକ୍ଷୀ ଦେବୀ ଚରଣ ସେବା ମୋର ନିତି
ନବଳୁ ମୋ ଚିତ୍ତ ପରଦାର ସଙ୍ଗ ପ୍ରତି ।
ପରଦାର ସଙ୍ଗ କଷ୍ଟ ଅଟଇ ଏମନ୍ତ
ସର୍ବଦା କାତର ଚିତ୍ତ ଦୁଃଖ ହେତୁ ମାତ୍ର ।
ତୋହର ଆଜ୍ଞାରେ ଏହା ତୁହି ଯେ କହିଲୁ
ପରଦାର ମହାଭାର ବୋଲିଣ ବୋଇଲୁ ।
ଶୂଦ୍ରମୁନି ସିଦ୍ଧେଶ୍ୱର ଦାସ ଦେଲୁ ନାମ
ଏ କଥାରେ ମୋହର ନ କର ମତିଭ୍ରମ ।
ତୁ ଯେ ସିଂହବାହିନୀ ଗୋ ପ୍ରତ୍ୟକ୍ଷ ହିଙ୍ଗୁଳା
ଏ ସଂସାରେ ବୋଲାଉ ତୁ ସିଦ୍ଧ ଯେ ଶାରଳା ।
ମୁହିଁ ତୋ ପୁତ୍ର ଶାରଳା ଦାସ ବୋଲାଇଲି
ଅବଶ୍ୟ ପାଇବି ମୁହିଁ ଯାହା ବାଞ୍ଛା କଲି ।

—o—

## ଶ୍ରୀହରିଙ୍କ ବାଲ୍ୟଲୀଳା, ଖଲ୍ୟକାରର ବିବର ନିର୍ମାଣ

ବୈବସ୍ୱତ ମନୁ ପୁଚ୍ଛାକଲେ ହେ ଅଗସ୍ତି
ବଡ଼ ରସକଥା ହରି ବାଳକାଳ ରୀତି ।
ଦୂତୀର ପାଲଟା ବସ୍ତ୍ର ଶ୍ରୀକୃଷ୍ଣ ଧଇଲେ
ନିଜ ବସ୍ତ୍ର ନୁହେଁ ବୋଲି ତାହା ନ ପିନ୍ଧିଲେ ।

ମନରେ ବିରସ ହୋଇ ପଳାଇଲେ ତଳେ
କି ବସ୍ତ୍ର ପିନ୍ଧିବି ବୋଲି ମନରେ ଭାବିଲେ ।
ବଦନ୍ତି ଅଗସ୍ତି ଶୁଣ ଭୋ ମନୁ ପୁରୁଷ
ବସ୍ତ୍ର ପକାଇ ଉଲଗ୍ନେ ବସି ହୃଷୀକେଶ ।
ବାଉଁଶ ଖୋଳ ଗୋଟିଏ ଘେନିଣ ଶ୍ରୀହରି
ନଖରେ ବିଦାରିଣ ତା ବେନିଫାଳ କରି ।
ସୁସଞ୍ଚ କରି ବାହାର କଲେ ତହୁଁ ଶିର
କାଛଟ କଲେ କଟିରେ ବାନ୍ଧିକରି ଡୋର ।
ଦୂତୀକା ଯେ ଗଲା ତହୁଁ ରାଧିକା ଛାମୁକୁ
ଯାହା ଉତ୍ତର ବୋଇଲା ଶୁଣ ରାଧିକାକୁ ।
ଅଲେଖ ତିଳକ ହୋଇ ରାଧା ବହି ଭାବ
ସୁମରଇ ମନ ଏକ କରି ବସୁଦେବ ।
ଛାମୁରେ ପ୍ରବେଶ ହେଲା ସହସା ସୁନ୍ଦରୀ
ଝାଳେ ତ୍ରିପଣ୍ଡ ହୋଇଛି ଶରୀର ତାହାରି ।
ସଜଳ ସୁନ୍ଦରୀ କି ଯେ ପଚାରେ ରାଧିକା
କେଶବଙ୍କୁ ନ ଆଣିଲୁ ଅଇଲୁ ତୁ ଏକା ।
ଦୂତୀକା ବୋଲେଗୋ ତୋର ଯେବେ ଅନୁରାଗ
ତୋଠାରେ ନାହିଁ ତାହାର ତେସନ ସରାଗ ।
ରାଧିକା ବୋଇଲେ ସଖୀ ଏ ତୋର ଅଧର
ବିରସ ଦିଶୁଛି ହୋଇଅଛି ଗୋ ପାଣ୍ଡୁର ।
ଦୂତୀକା ବୋଲଇ ତୁ ଗୋ ଶୁଣସି ମିତଣୀ
ତୋହପାଇଁ କହିଲି ମୁଁ ଅନେକ ଯେ ବାଣୀ ।
ଅନେକ ଉତ୍ତର ତାକୁ କହିଲି ସୁଭାଷ
କହି କହି ଶୁଖିଗଲା ମୋ ଅଧର ଦେଶ ।
କହିଲି ଅନେକ ଚାଟୁ ପଟଳ ଯେ ବାଣୀ
ଯେତେ କହିଲି ସେ ତୋତେ ନ ଭଜିଲା ପୁଣି ।
ରାଧା ବୋଲେ ଖୋଷା ଖୋସି ଥିଲି ମୁଁ ସଜାଡ଼ି
ମୁକୁଳା ହୋଇଣ କିମ୍ପା ମୁଖେ ଅଛି ପଡ଼ି ।
ଦୂତୀକା ବୋଇଲା ଶୁଣ ଆଗୋ ରାଧାମଣି
ବଚନେ ନ ଭଜିବାରୁ କଲଇଁ ଦଇନି ।
ଶୋଇଲି ଅପାର ବେଳଯାଏ ପାଏ ପଡ଼ି
ତେଣୁ କବରୀ ଲେଉଟି ମୋର ଫୁଟି ପଡ଼ି ।
ରାଧା ବୋଲେ ଦେଇଥିଲି ଗଳେ ରତ୍ନମାଳୀ
ପିଠି କଟିକି ସମସ୍ତ ଝୁମ୍ପାମାନ ତଳି ।
ରତ୍ନମାଳ ହୃଦକତି ପିଠିକତି ଝୁମ୍ପା
ରାଧା ବୋଲେ ବିହ୍ୱଳିତ ସଖୀ ହେଲୁ କିମ୍ପା ।
ଦୂତୀ ବୋଲେ ଯେତେବେଳେ ଥିଲି ପାୟେ ପଡ଼ି
ରତ୍ନମାଳା ଲୋଟିଥିଲା ତେଣୁ କଣ୍ଠ ଫେଡ଼ି ।
ବିକଳେ ପିଠି କଟିକି ଦେଲି ଲେଉଟାଇ
ହସ୍ତେ ମୂଳଗଣ୍ଠି କି ମୁଁ ଧଇଲି ନିଠାଇ ।
ତେଣୁ ଏଣୁକରି ଲେଉଟିଲା ପାଟଝୁମ୍ପା
ତୋଠାରେ ନୋହିଲା ତାର କେଉଁଭେ ଅନୁକମ୍ପା ।
ରାଧିକା ବୋଇଲେ ଧୂଳି ପିଠିରେ କିମ୍ପାଇଁ
ଯେତେବେଳେ ଧଇଲି ମୁଁ ତା ପାଦ ନିଠାଇ ।
ଲେଉଟାଇ ପକାଇଲା ହେଲି ମୁଁ ଉତ୍ତାନ
ବିହ୍ୱଳିତ ହେଲା ରତ୍ନଝୁମ୍ପା ଖୋଷାମାନ ।
ଏମନ୍ତ ପିଠିରେ ମୋର ଲାଗିଲାକ ଧୂଳି
ତୋହଯୋଗୁ ସହିଲି ମୁଁ ଏଡ଼େକ ଅର୍ଦ୍ଧୋଳି ।
ରାଧିକା ବୋଇଲେ ସଖୀ ଏ ତୋହର କାୟେ
ବିଦାରିତ ହେଲା କିମ୍ପା ନଖ ଦନ୍ତ ଘାଏ ।
ଦୂତୀ ବୋଇଲା ମୁଁ ପୁଣି ପାଦକୁ ଧଇଲି
ପଳାଯା ବୋଲିଣ ମୋତେ ପାଦେ ଦେଲା ପେଲି ।
କଣ୍ଟି ଲତାରେ ପଡ଼ିଲି ମୁହିଁ ମୁହଁ ମାଡ଼ି
କଣ୍ଟିଲତା କଣ୍ଟା ଲାଗି ମୋ ଶରୀର ଛିଡ଼ି ।
ରାଧା ବୋଲେ ପିନ୍ଧାଇଲି ମୋର ଝୀନଶାଢ଼ୀ
ପୁରୁଷ ବସ୍ତ୍ରକୁ ପିନ୍ଧି ଅଇଲୁ କିପରି ।
ଦୂତୀ ବୋଇଲା ଅନେକ କହିଲି ବିନୟେ
ଏତେ କଷ୍ଟ ଦେଖି ସନମତ କଲା ସ୍ନେହେ ।
ଆଜ ରାତ୍ରେ ରାଧାପୁରେ ଯିବି ମୁଁ ବୋଇଲା
ତେଣୁ ଯେ ମୋହର ମନ ହରଷ ହୋଇଲା ।
ମୁଁ ବୋଇଲି ଯେବେ ଯିବ ଆଜର ତୁ ନିଶି
ମୋହର ହାତେ ରାଧାକୁ ସନ୍ତକ ଦିଅଁସି ।
ରାଧିକା ସଂପ୍ରତେ ଯାଇ ତୋ ସନ୍ତକ ଦେଖି
ନ ଦେଖିଲେ ସଂପ୍ରତେ ନ ଯିବ ଶଶିମୁଖୀ ।
ବୋଇଲେ କିଛି ସନ୍ତକ ନାହିଁ ଲୋ ଦୁହିତା
କେବଳ ପିନ୍ଧିଲା ବସ୍ତ୍ର ଅଛି ମୋର ଏକା ।
ମୁହିଁ ବୋଇଲି ଏହା ତୁ ଦେବୁ ପାଲଟାଇ
ତୁମ୍ଭେ ପିନ୍ଧ କହ୍ନାଇ ଏ ରାଧା ବସ୍ତ୍ର ନେଇ ।
ତୋହର ବସ୍ତ୍ର ବୋଲନ୍ତେ ହୋଇବେ ଉଷତ
ସେ ଶାଢ଼ୀ ପିନ୍ଧିଲେ ନେଇ ଆପେ ଜଗନ୍ନାଥ ।
ତାହାର ପାଲଟା ବସ୍ତ୍ର ମୁହିଁ ଯେ ପିନ୍ଧିଲି
ପରତେ ନିମନ୍ତେ ତୋର ଏ ବସ୍ତ୍ର ଆଣିଲି ।
ଶୁଣି ରାଧିକା ହୋଇଲେ ପରମ ସନ୍ତୁଷ୍ଟ
ମୋହର ପାଇଁ ପାଇଲୁ ତୁ ବହୁତ କଷ୍ଟ ।
ଅନେକ ଉଷତ ଶୁଣି ହୋଇଲେ ରାଧିକା
ବାଳକୁମାରୀ ପରାୟେ ଭଣ୍ଡିଲା ଦୂତିକା ।
ତସ୍କର କହିଲା ଦେବ ଶୁଣସି ବିଦୁର
ଦୂତୀକାକୁ ରାଧା ବୋଲି କଲେକ ଶୃଙ୍ଗାର ।
ସ୍ୱରଗ ସୁନ୍ଦରୀ ଗର୍ଭ ବାସୁଦେବ ବୀର୍ଯ୍ୟେ
ଦଶମାସେ ଉତପତ୍ତି ଗୋଲକ ଆତ୍ମଜେ ।

ଦୂତୀ ବୋଇଲା ହରି ହେ ଏ ମୋର ପୁତ୍ରଟି
ତୋର ସେବା କରିଥାଉ ମୋର ପୁତ୍ରଗୋଟି ।
ଭୋ ବିଦୂର ମୁଁ ଦୁହିତା ଗର୍ଭୁ ଅବତାର
ନାମ ମୋ ହୋଇଲା ଚୌର୍ଯ୍ୟକାରଖଲ୍ୟକାର ।
ବ୍ରହ୍ମାଙ୍କର ହେଲା ଏହି ଲକ୍ଷଣ ପ୍ରତ୍ୟକ୍ଷ
ମୋହର ହସ୍ତେ ତା ଆଣି ଦେଲେକ ଶ୍ରୀବତ୍ସ ।
ମୋତେ ବୋଇଲେ ତୁ ଏବେ କଥା ଏକ କର
କଦମ୍ବ ତଳକୁ ଯୁଣେ ରାଧିକାର ପୁର ।
କଦମ୍ବମୂଳୁ ବିବର ଗୋଟିଏ ଖୋଳିବୁ
ରାଧିକା ପଲ୍ୟଙ୍କ ତଳେ ନେଇ ଫୁଟାଇବୁ ।
ନାରାୟଣଙ୍କ ବଚନେ ଖୋଳିଲି ବିବର
ରାଧାର ପୁରେ ଫୁଟିଲା ଦିବସ ଅଠର ।
ତାଳେ ଉତ୍ସର୍ଗ ବିସ୍ତାର ହେଲା ତାଳ ତିନି
ଲୁଚାଇଲି ପଥର ମୁଁ ଦେଇ ଦ୍ୱାର ବେନି ।
ରାତ୍ରି ହେଲେ ଗୁଆଳୀଙ୍କୁ ନିଦ୍ରା ଯେ କରଇ
ବିବରେ ପଶି କଦମ୍ବ ମୂଳେ ରାଧା ଯାଇ ।
ଇଚ୍ଛାଏ କୃଷ୍ଣଙ୍କୁ ଭଜେ ଚନ୍ଦ୍ରମା ବଦନୀ
ଗୋପାଳ ପାଶରେ ଯାଇ ଶୁଏ ଗୋପାଳୁଣୀ ।
ଖଲ୍ୟକାର ନାମ ମୋର ମୁଁ ଅଟେ ଶବର
ମୋହର ବଚନ ତୁମ୍ଭେ ଶୁଣ ହେ ବିଦୂର ।
ଶୁଣି ବିଦୂର ହୋଇଲେ ଯେ ପରମ ଶାନ୍ତ
ଏହାରେ ତ ମୋ ପୁତ୍ରଙ୍କୁ ହେବ ବଡ଼ ହିତ ।
ବିଦୂର ବୋଇଲେ ତୁହି ଅଟୁ ମହାବଳୀ
କେତେକ ଦୂର ବିବର ପାରିବୁଟି ଖୋଳି ।
ଖଲ୍ୟକାର ବୋଲେ ତୁମ୍ଭେ ଶୁଣ ଯେ ବିଦୂର
ଯେତେ ଦୂର ବୋଲିବ ମୁଁ ଖୋଳିବି ବିବର ।
ଶୁଣିଣ ବିଦୂର ତହୁଁ ପରମ ସାନନ୍ଦେ
ବୋଇଲେ ଆମ୍ଭ ପାଖରେ ତୁ ଥାଅ ଆନନ୍ଦେ ।
ତୁହି ଯେବେ ଚୋର ହୋଇ ଭେଟିଲୁଣି ମୋତେ
ଆଉ କେବେ ଚଉର୍ଯ୍ୟ ତୁ ନ କରୁ ଯେମନ୍ତେ ।
ହସ୍ତିନାରେ ଦୁଇ କାର୍ଯ୍ୟ ଥିଲା ବିଦୂରର
ନଗ୍ର ରକ୍ଷା ଆବର ଭଣ୍ଡାରେ ଅଧିକାର ।
ସେ ରାତ୍ରେ ଖଲ୍ୟକାରକୁ ବୋଲେକ ବିଦୂର
ଭଣ୍ଡାରରୁ ପାଣିଦ୍ରବ୍ୟ ଆଣିଣ ଅପାର ।
ସୁଖେଣ ବିଳସ ତୁହି ଏହି ନଗରର
ଆଉ କେବେ ଚୌର୍ଯ୍ୟବୃତ୍ତି ତୁ ବାବୁ ନ କର ।
ଧନ ପେଲିଲା ଯେ ନେଇ ଆପଣା ମନ୍ଦିରେ
ନିରତେ ଗୋଡ଼ାଇ ଥାଇ ବିଦୂର ପଛରେ ।
କରଯୋଡ଼ି ବୋଇଲା ସେ ଦିନେ ତସକର
ତୁମ୍ଭେ ମୋତେ ପୋଷ ମୁହିଁ କି କରିବି ତୋର ।
ବିଦୂର କହନ୍ତି ତୋତେ ମୁହିଁ ଯେ ପୋଷିଛି
ତୋଠାରେ ଅନେକ କାର୍ଯ୍ୟ ମୋହର ଯେ ଅଛି ।
ଏକାନ୍ତରେ କହିବି ମୁଁ ତାହାର କାରଣ
ତସ୍କର ବୋଲେ ଯେମନ୍ତେ ତୋ ଆଜ୍ଞା-ପ୍ରମାଣ ।
ବିଦୂର ପ୍ରତିବାକ୍ୟ ତୁ କରିବୁଟି ଗୋପ୍ୟ
କାହାର ଆଗରେ ଏହା ନ କହିବୁ ବାପ ।
ତେବେ ସେ ବାବୁରେ କହିପାରଇ ମୁଁ ତୋତେ
ଖଲ୍ୟକାର ବୋଲେ ମୁହିଁ ନୁହଇ ତେମନ୍ତେ ।
ମୀନ କୃଷ୍ଣ ଦ୍ୱିତୀୟା ଯେ ତିଥି ଭୃଗୁବାର
ହସ୍ତା ନକ୍ଷତ୍ରର ଶେଷ ଭୋଗ ସେ ଦିନର ।
ସେଦିନ ବିଦୂର ସଙ୍ଗେ ଘେନି ଶଲ୍ୟକାର
ମିଳିଲେ ଯାଇଣ ଦୁହେଁ ସୁର ନଦୀ କୂଳ ।
ପଥେ ଯାଉଁ ବୁଝାଇଲେ ସେହି ତସ୍କରକୁ
ଜତୁ ଗୃହେ ଭେଟାଇଲେ ନେଇଣ ତାହାକୁ ।
ଗଙ୍ଗାକୂଳୁ ଜତୁ ଗୃହ ଏକାଦଶ ଯୁଣ
ବିବର ଗୋଟିଏ ତହିଁ କରିବୁ ନିର୍ମାଣ ।
ଉଚ୍ଚ ହିଁ ହୋଇବ ଯେଡ଼େ ବିସ୍ତାର ହିଁ ତେଡ଼େ
ଜଣକେ ଯିବ ଆସିବ ନ ପାଇବ ଭିଡ଼େ ।
ଏହି କାର୍ଯ୍ୟକୁ ବାବୁ ସେ ଅଟୁ କି ସମର୍ଥ
ସେ ବୋଲେ ମୁଁ ସ୍ୱାମୀ ୟାର ଅଟଇ ଭିଅନ୍ତ ।
ଆହୁରି ବିସ୍ତାର ମୁହିଁ କରିପାରେ ଏକା
କାହିଁ ପାଇଁ ସ୍ୱାମୀ ତୁମ୍ଭେ ପାଉଅଛ ଶଙ୍କା ।
ଖଲ୍ୟକାରକୁ ବିବରେ ଲଗାଇ ବିଦୂର
ରାତ୍ରେ ନେଇଣ ତାହାକୁ ଦିଅଇ ଆହାର ।
ଚଇତ୍ର ମାସ ପୂର୍ଣ୍ଣିମା ତିଥି ବିଦ୍ୟମାନ
ବୃହସ୍ପତି ବାର ସ୍ୱାତୀ ତୁଳ ରାଶି ପୁଣ ।
ସେହିଦିନ ହରି ବଳରାମ ବେନି ଭ୍ରାତେ
ହସ୍ତିନା ରାଜ୍ୟେ ବିଜୟ କୁରୁନାଥାଗ୍ରତେ ।
ବିଦୂର ଦେଖିଲା ତହିଁ ରାମକୃଷ୍ଣ ବେନି
ଅନେକ ସ୍ତୁତି କରିଣ କଲେକ ଦଣ୍ଡିନୀ ।
ଆସ୍ଥାନୁ ଉଠିଣ ଦେବ ବିଜେ କରି ଯାନ୍ତେ
ପଛରେ ଗୋଡ଼ାଛନ୍ତି ଅମ୍ବୁବତୀ ସୁତେ ।
ଆଗ ହୋଇଣ ଯେ ତହିଁ ଗଲେ ବଳରାମ
ଏକାନ୍ତେ ପୁଚ୍ଛାକଲେକ ଶ୍ରୀ ପୁରୁଷୋତ୍ତମ ।
ଧୃତରାଷ୍ଟ୍ରେ ପାଣ୍ଡବଙ୍କ ଚିନ୍ତଇ ପ୍ରମାଦ
ସେ ଯେ ପାର ହେବେ ଥିଲେ ତୋହର ପ୍ରସାଦ ।
ଝିମାଣି ଖେଳ ରଚନା କଲା ଦୁର୍ଯ୍ୟୋଧନ
କପଟେ ଭୀମକୁ ବିଷ କରିଲା ପ୍ରଦାନ ।
ଏବେ ଦହିବାକୁ ପାଣ୍ଡବଙ୍କୁ ଜତୁ ଘରେ
କପଟ କରି ରଖିଛି ବାରୁଣାବନ୍ତରେ ।

ଖଲ୍ୟକାର ନାମେ ଦେବ ଏକଇ ତସ୍କର
ତାହାଙ୍କୁ ଲଗାଇ ମୁହିଁ ଖୋଳାଏ ବିବର ।
ରାତ୍ରକାଳେ ଯେବେ ଦେବ ଜତୁ ଗୃହ ଜାଳି
ବିବର ଦ୍ୱାରେ ପାଣ୍ଡବେ ତହିଁ ଯିବେ ଚଳି ।
ନାରାୟଣ କହନ୍ତି ଯେ ଖଲ୍ୟକାର ଚୋର
ସ୍ୱରଗ ସୁନ୍ଦରୀ ପୁତ୍ର ଆତ୍ମଜ ଆମ୍ଭର ।
ଆମ୍ଭେ ଶିଖାଇଲୁ ତାକୁ ଚୋରିକାମ ବିଦ୍ୟା
ବିବର ଖୋଳିବାକୁ ସେ ଅଟଇ ସଂସିଦ୍ଧା ।
ବିଦୂର ବୋଇଲେ ମାଟି ପକାଇବା କାହିଁ
ଦେଖିଲେ ଜାଣି ପାରିବ କୁରୁ ନରସାଇଁ ।
କ୍ଷଣକେ ମଉନ ହୋଇ ବସିଲେକ ହରି
ପୁରୁଷ ଦୁଇ ଯେ ବାହୁମୂଳେ ଅବତରି ।
ବୋଇଲେ କିସ ଭକ୍ଷଣ କରିବୁ ତା ଦିଅ
ଶ୍ରୀହରି ବୋଇଲେ ତୁମ୍ଭେ ବେନି ଆମ୍ଭପୁଅ ।
ରଣ ଭଣ ନାମ ହେଲା ତୁମ୍ଭ ଦୁହିଁଙ୍କର
ମୃତ୍ତିକା ଭକ୍ଷଣ କରି ପୂରାଅ ଉଦର ।
ତୁମ୍ଭେ ଦୁହେଁ ସୁରନଦୀ କୂଳେ ଚଳିଯିବ
ଖଲ୍ୟକାର ବାମ ଦକ୍ଷଭୋଗ ଲାଗିଥିବ ।
ଯେତେକ ମୃତ୍ତିକା ସେହି ଖୋଳିବ ପ୍ରତ୍ୟକ୍ଷ
ସେ ମୃତ୍ତିକା ସର୍ବଯାଇ କର ବେନି ଭକ୍ଷ ।
କ୍ରୋଧ ଅନଳ ରଖିଲି ତୁମ୍ଭର ହୃଦରେ
ମୃତ୍ତିକା ସବୁ ଦହନ ହୋଇବ ଉଦରେ ।
ନାରାୟଣଙ୍କ ଆଜ୍ଞାରେ ଗଲେ ଭାଇ ବେନି
ଖଲ୍ୟକାରର ସପକ୍ଷ ହେଲେ ବୋଲ ମାନି ।
ଖୋଳଇ ତସ୍କର ଯେତେ ଭକ୍ଷନ୍ତି ତା ବେଗେ
ବିବର ଗୋଟିଏ ଭିଆଇଲେକ ପ୍ରତ୍ୟକ୍ଷେ ।
ଶ୍ରାବଣ ଶୁକଳପକ୍ଷ ଚତୁର୍ଦ୍ଦଶୀ ଦିନ
ଭୃଗୁବାର ଯେ ଉତ୍ତରାଷାଢ଼ା ବିଦ୍ୟମାନ ।
ସେଦିନ ବିଦୂର ଗଲେ ବାରୁଣାବନ୍ତକୁ
ରାତ୍ର ଅଢ଼ାଇ ପ୍ରହରେ ଭେଟିଲେ ଭୀମକୁ ।
ବାଉନ ବାଉନ ଭାର ଗଦା କରେ ଘେନି
ଜତୁ ଗୃହ ବେଢ଼ି ରାତ୍ରେ ବୁଲାଇ ପାବନି ।
ବିଦୂରକୁ ଡାକି ଭୀମ ବୋଲଇ କିଏରେ
ଆପଣାର ଲୋକ ଜାଣି ମିଳିଲା କତିରେ ।
ବିଦୂରକୁ ଦେଖି ଭୀମ କଲେ ନମସ୍କାର
ବାବୁ ତୁନିହୋଇ ତୁରେ ଯୁଧିଷ୍ଠି ହକାର ।
ସ୍ଥିର କରି ଭୀମ ତୋଳିଆଣେ ଯୁଧିଷ୍ଠିଙ୍କି
ଯୁଧିଷ୍ଠି ବିନୟ ହେଲେ ବିଦୂରଙ୍କୁ ଦେଖି ।
ବିଦୂର ବୋଇଲେ ବାବୁ ଲୟ କରିଥିବ
ଜତୁ ଗୃହର ଭିତର ବିବର ଫୁଟିବ ।

ଖଲ୍ୟକାର ତସ୍କରକୁ କରିବ ଗୌରବ
ତାହାରି ପ୍ରସାଦେ ତୁମ୍ଭେ ଗୋପ୍ୟ ହୋଇଯିବ ।
କଉରବେ କପଟ ଯେ କରନ୍ତି ଅନେକ
ଭଲେ ପାର ହୋଇଯାଅ ସର୍ବେ ଏକ ଏକ ।
ତୁମ୍ଭଙ୍କୁ ସପକ୍ଷଛନ୍ତି ପ୍ରଭୁ ଜଗନ୍ନାଥେ
ସମୟେକ ବଞ୍ଚ ବାବୁ ଦୁଃଖରେ ବନସ୍ତେ ।
ମାତା ସହ ପଞ୍ଚ ଭ୍ରାତ ଷଡ଼ଗୋଟି ପ୍ରାଣୀ
ଏକ ଆତ୍ମା ହୋଇଥିବ ଦ୍ୱିତୀୟ ନ ଜାଣି ।
ମାତାଙ୍କର ସେବା ତୁମ୍ଭେ କରିବ ବନରେ
ପଞ୍ଚଭ୍ରାତା ସମୟେକ ବଞ୍ଚିବ ଦୁଃଖରେ ।
ଯୁଧିଷ୍ଠି ବୋଲେ ତୋ ପ୍ରାୟ ପାଇବୁକି ପିତା
ତୁ ସିନା ଅଟୁ ଆମ୍ଭର ଧର୍ମର ଦେବତା ।
କହି ବିଦୂର ପଶିଲେ ତହୁଁ ଘୋର ବନେ
ସୁରନଦୀ କୂଳେ ଯାନ୍ତି ସାରଦା କାନନେ ।
ବିବର ମଧ୍ୟେ ପଶିଲେ ମହାନିଶାକାଳେ
ଉତ୍ସର୍ଗତା ନବ ତାଳ ବିଦୂର ଦେଖିଲେ ।
ଦେଖିଲେ ବିବର ଗୋଟି ଅତ୍ୟନ୍ତ ବିସ୍ତାର
ବରଷକେ ଖୋଳିଲା ସେ ଯୋଜନ ଏଗାର ।
ଅନେକ ଧନ ଦେଲେ ସେ ତୋଷେ ତସ୍କରକୁ
ବୋଇଲେ ଏ କଥା ତୁହି ନ କହ କାହାକୁ ।
ଏତେ ବୋଲି ବିଦୂର ଯେ ବାହାର ହୋଇଲେ
ସୁରନଦୀ ତୀରେ ଯାଇ କୈବର୍ତ୍ତେ ଭେଟିଲେ ।
ନାବଗୋଟି କୂଳେ ଥୋଇ କର୍ଣ୍ଣଧାର ଥାଏ
ରାତ୍ରେ ଯେ ଜନ ଆସଇ ପାରି କରିଦିଏ ।
ବିଦୂର ବୋଇଲେ ଅଟୁ ତୁ କେବଣ ଜାତି
ଏ ବନ ଗହନେ କିମ୍ପା ଅଛୁ ନିଶାରାତି ।
ସେ ବୋଇଲା ମୁହିଁ ଦେବ ଅଟେ କଇବର୍ତ୍ତ
ନାବରେ ବସାଇ ପାରି କରଇ ସମସ୍ତ ।
ପଣେ ବୋଡ଼ିଏ ଗଣ୍ଡାଏ କଡ଼ା ଆଦି କରି
ଏଥେ ମୁଁ ବର୍ତ୍ତଇ ଏହି ଜୀବିକା ମୋହରି ।
ବିଦୂର ବୋଇଲେ ଏହି ଦୁର୍ଯ୍ୟୋଧନ ରାଜ୍ୟ
ସମସ୍ତ ଜନେ ବର୍ତ୍ତନ୍ତି ପାଇ ଅଇଶ୍ୱର୍ଯ୍ୟ ।
ତୋହର ପ୍ରାୟ ଦରିଦ୍ର ଲୋକ ଏଥେ ନାହିଁ
କେତେଦିନ ବଞ୍ଚିବୁ ଏ ବନେ କଷ୍ଟ ପାଇ ।
ନାବ ଗୋଟି ବୁଡ଼ାଇଣ ଆସ କଇବର୍ତ୍ତ
ଏ ତୁଠରେ ନୁହନ୍ତୁ ଲୋକେ ଆତଯାତ ।
ବିଦୂର ବଚନେ ନାବ ବୁଡ଼ାଏ ଧୀବର
କୈବର୍ତ୍ତକୁ ଘେନି ତହୁଁ ଚଳିଲେ ବିଦୂର ।
ବୋଇଲେ ତୁ ବଡ଼ ଦୁଃଖ ପାଉଅଛୁ ବନେ
ଦେବଇଁ ଅପାର ଧନରତ୍ନ ବର୍ତ୍ତମାନେ ।

ଭଣ୍ଡାର ଫେଡ଼ି ଅପାର ଧନ ତାକୁ ଦେଲେ
ଆପଣାର ଘରେ ନେଇ ପୋତ ଯା ବୋଇଲେ ।
ବିଦୂର ପ୍ରସାଦେ ତାର କଷ୍ଟ ପାଇଗଲା
ବିଦୂରକୁ ଦିନେ କଇବର୍ତ୍ତ ଯେ ପୁଚ୍ଛିଲା ।
ଏତେ ଧନ ଦେଲୁ ମୋତେ ଫେଡ଼ି ତୁ ଭଣ୍ଡାର
କି ଉପକାର କରିଛି ମୁହିଁ ଛାର ତୋର ।
ବିଦୂର ବୋଇଲେ ତୁହି ଅଟୁରେ ମହତ
ତୋହର କାର୍ଯ୍ୟେ ମୋହର ହୋଇବ ବହୁତ ।
କଇବର୍ତ୍ତ ହସ୍ତ ଧରିନେଲେ ନିଶାକାଳେ
ବିବର ସନ୍ନିଧେ ହେଲେ ସୁରନଦୀ କୂଳେ ।
ବିଦୂର କହିଲେ ତୁହି ଏହିଠାରେ ଥିବୁ
ଦିବସ ପାଣିରେ ନାବ ଗୋଟି ବୁଡ଼ାଇବୁ ।
ରାତ୍ରେ ନାବ କାଢ଼ିଥିବୁ ଏ ବିବର ଦ୍ୱାର
ଏଥି ଯେ ଆସିବ ତାଙ୍କୁ କରିଦେବୁ ପାର ।
ପାରି କରିଦେବୁ ନଦୀ ପଶ୍ଚିମ ତୀରକୁ
ତହିଁପରେ ବାର୍ତ୍ତା ଯାଇ କହିବୁ ଆମ୍ଭଙ୍କୁ ।
ବିଦୂର ବଚନ ଶୁଣିକରି କଇବର୍ତ୍ତ
ନାବ ଘେନି ବସିଲା ସେ ସୁରନଦୀ ତଟ ।
ଦିବସେ ନାବ ବୁଡ଼ାଇ ଗୃହେ ଯାଇଥାଏ
ରାତ୍ରେ ପାଣି ନିଗାଡ଼ିଣ ବିଳଦ୍ୱାରେ ରହେ ।
ଗୁପତେ ବିବର ଖୋଳୁଥିଲା ତସକର
ଏଗାର ବରଷେ ତାହା ହୋଇଲା ତିଆର ।
ମୀନମାସ ଶୁକ୍ଳପକ୍ଷ ଦଶମୀର ନିଶି
ଭୌମବାର ଅଶ୍ଳେଷାନ୍ତେ ମଘାସିଂହ ରାଶି ।
ଧୃତି ନାମେ ଯୋଗ ପୁଣି ତୈତିଳ କରଣ
ନବ ଘଡ଼ିରେ ଫିଟିଲା କବାଟର କଣ ।
ସେ ଠାବରେ ଶୋଇଥିଲା ବୀର ସେ ଅର୍ଜୁନ
ଚିଆଇଁ ଉଠି ବସିଲା ବାସବ ନନ୍ଦନ ।
କିଏରେ କିଏରେ ବୋଲି ଦରାଣ୍ଡିଲା ରାଗେ
ବାମ କରେ ଧଇଲାକ ଯାଇଁ କେଶ ବେଗେ ।
ବୋଲେ ଖଲ୍ୟକାର ମୋର ଛାଡ଼ କେଶ ପାର୍ଥ
ବିଦୂର ବଚନେ ମୁହିଁ କରେ ତୁମ୍ଭ ହିତ ।
କଟିରେ ବସି କହଇ ତା ବୃତ୍ତି ଚଉର୍ଯ୍ୟ
ଏ ବିବରେ ପଶି ଏବେ ଯିବା ଦେବରାଜ ।
ବିଦୂରଙ୍କଠାରୁ ମୁହିଁ ବହୁ ଧନ ନେଲି
ଏଗାର ବରଷେ ଏହି ବିବର ରଚିଲି ।
ଅର୍ଜୁନ କହିଲେ ଯାଇ ଯୁଧିଷ୍ଠି ଦେବଙ୍କୁ
ଧର୍ମର ନନ୍ଦନ ହକାରିଲେ ଯେ ଭୀମକୁ ।
ବିବର ଭିତରେ ବାବୁ ପାଶ ବୃକୋଦର
କେତେ ଦୀର୍ଘ ପ୍ରତି ଅଟେ ଦେଖ ବିବରର ।
ଯାଇଣ ପାରିବୁଟି କି ଏ ବିବରେ ପଶି
ଆଜ୍ଞା ପାଇ ଭୀମସେନ ପଶେ ମହାନିଶି ।
ବାଉନ ବାଉନ ଭାର ଗଦା ବେନି କରେ
ବିବର ମଧ୍ୟେ ମାରୁତି ଗମଇ ସତ୍ୱରେ ।
ଊର୍ଦ୍ଧ୍ୱବାହୁ କରି ବେନିହସ୍ତେ ତୋଳି ଗଦା
ଆକାଶ ପ୍ରାୟେ ଦିଶଇ ଅତି ଉଚ୍ଚ ପଦା ।
ଦ୍ୱାଦଶ ଯୋଜନ ଖେଦିଯାଏ ବୃକୋଦର
ପ୍ରବେଶ ମାରୁତି ଯାଇ ସୁରନଦୀ ତୀର ।
ବାହୁଡ଼ାବେଳେ ବିସ୍ତାର କଲା ବେନିହସ୍ତ
ପାଶେ ନ ଲାଗିଲା ଆକର୍ଷିଣ କର ପତ୍ର ।
ବୋଇଲେ ମାରୁତି ଏବେ ସଂଗ୍ରାମ ହିଁ କଲେ
ଯୁଦ୍ଧଭାବ ହେବ ଦୁଇ ଭୁଜ ଆକର୍ଷିଲେ ।
ଗଦା ବୁଲାଇଣ କରେ ଆକର୍ଷିଣ ବୀର
ତାହା ହାବୁଡ଼ିଲେ ନାହିଁ କୌଣସି ଦିଗର ।
ଭୀଷ୍ମରୂପ ଧରି ଯହୁଁ ବୃକୋଦର ଗଲା
ଜତୁଗୃହେ ଯାଇଁ ଯୁଧିଷ୍ଠିରଙ୍କୁ କହିଲା ।
ବଡ଼ ହିଁ ଆଶ୍ଚର୍ଯ୍ୟ ଦେବ ଖଲ୍ୟକାର କଥା
ଦେବଙ୍କୁ ଯେ ଅସମ୍ଭବ ବୁଦ୍ଧି ବଳବନ୍ତା ।
ଯେବଣ ବିବର ଗୋଟି ଖୋଳିଲା ତସ୍କର
ସ୍ୱର୍ଗ ମର୍ତ୍ତ୍ୟ ପ୍ରାୟ ଦୀର୍ଘ ବିବର ବିସ୍ତାର ।
ଶୁଣି ଯୁଧିଷ୍ଠିର ଦେବ ଆନନ୍ଦିତ ଚିତ୍ତେ
ତାକୁ ଧନ ଦେଲେ ଜତୁଗୃହେ ଥିଲା ଯେତେ ।
ଆମ୍ଭ ନିମନ୍ତେ ପାଇଲୁ ଦୁଃଖ ଖଲ୍ୟକାର
ରାଜ୍ୟ ପାଇଲେ କରିବୁ ତାର ଉପକାର ।
ତସ୍କର ବୋଲେ ବିଦୂର ମହାତ୍ମା ହିଁ ଥିଲେ
ତୁମ୍ଭେ ଏ ପଞ୍ଚ କଟକେ ରାଜେଶ୍ୱର ଭଲେ ।
ନିମ୍ନ ଗିରି ଦ୍ୱାରେ ଥିଲା ପର୍ବତ ଗୋଟିଏ
ବିବର ଦ୍ୱାର ଚାପିଣ ଗୋପ୍ୟ କରି ଯାଏ ।
ବିଦୂର ସନ୍ନିଧେ ଯାଇଁ କହଇ ତସ୍କର
ବିବରକୁ ହିଁ କଳ୍ପନା କଲେ ବୃକୋଦର ।
ଶୁଣିଣ ବିଦୂର ହେଲେ ଅନେକ ସାନନ୍ଦ
ଧନରତ୍ନେ ତୋଷ କଲେ ଖଲ୍ୟକାର ହୃଦ ।
ସେହି ରାତ୍ରେ ବିଦୂର ଯେ ତସ୍କରକୁ ଘେନି
ଜତୁଗୃହେ ପ୍ରବେଶିଲେ ବିଶେଷ ରଜନୀ ।
ମୁହିଁ ସଞ୍ଚିଲି ବିବର ଅନେକ ଯତନେ
ଧର୍ମେ ଏଥୁ ପାରି ହୋଇଯାଅ ତୁମ୍ଭେମାନେ ।
ଯେମନ୍ତେ ତା ନ ଜାଣିବେ ଜାଣ ଅନ୍ୟ ଜଣେ
କେତେକ ବରଷ ରୁହ ଯାଇ ଘୋର ବନେ ।
ଜାଣିବା ଧୃତରାଷ୍ଟ୍ରର କେମନ୍ତେଟି ହୃଦ
ତୁମ୍ଭ ନିମନ୍ତେ ବିଷାଦ କି ଅବା ଆନନ୍ଦ ।

ପରମ ଆୟୁଷ ପାଅ ତୁମ୍ଭେ ପାଞ୍ଚଭାଇ
ବାବୁ ତୁମ୍ଭର ଆମ୍ଭର ଭେଟାଭେଟି ନାହିଁ ।
ମୋହରି ଆୟୁଷ ଘେନି ବର୍ତ୍ତିଥାଅ ଭଲେ
ଅଇରି ଦର୍ପ ଗଞ୍ଜିବ ବନକଷ୍ଟେ ଦେଖିଲେ ।
ଭୀମସେନଙ୍କୁ ବିଦୂର ରାଇ ସନ୍ନିଧିକୁ
ବୋଲେ କଷ୍ଟକର୍ମେ ରଖ ବାବୁ ଶରୀରକୁ ।
ବନ ପ୍ରଦେଶେ ପାଇବ ଅନେକ ଯେ ଦୁଃଖ
ଶରୀର ରକ୍ଷା ନିମନ୍ତେ ମାଗିବଟି ଭିକ ।
ତହୁଁ ଅଇଲେ ପାଇବ ସିନା ରାଜପଦ
ଅଳପ ଦିନେ ମିଳିବ ତୁମ୍ଭଙ୍କୁ ସମ୍ପଦ ।
ଏତେକ ତିଆରି ତହୁଁ ଗଲେକ ବିଦୂର
ତାହାଙ୍କ ପଛେ ଗୋଡ଼ଇ ଅଛି ଖଳ୍ୟକାର ।
ହସ୍ତିନା ଭୁବନ ମଧ୍ୟେ ପ୍ରବେଶିଲେ ଯାଇ
ଅଛନ୍ତି ପଞ୍ଚପାଣ୍ଡବେ ଜତୁଗୃହେ ରହି ।
ଶ୍ରୀ ସିଦ୍ଧ ଶାରଳା ପାଦେ ରହୁ ମୋର ମତି
ଶୂଦ୍ରମୁନି ଶାରଳା ଯେ ଭାବୁଥାଇ ନିତି ।

—o—

## ଜତୁଗୃହ ଦାହ ଓ ଭୀମକର୍ତ୍ତୃକ ଅଗ୍ନିସ୍ତବ

ବିଦୂର ଗଲେକ ତହୁଁ ଦ୍ୱାରକା ପୁରକୁ
ସମସ୍ତ କଥା କହିଲେ ସେ ବାସୁଦେବଙ୍କୁ ।
ମୋହର ଏତେକ ହେଲା ଆହେ ଦାମୋଦର
ତୁମ୍ଭ ବୁଦ୍ଧିବଳେ ଜତୁଘର କର ପାର ।
ଶ୍ରାବଣ ଶୁକଳ ତ୍ରୟୋଦଶୀ ଚନ୍ଦ୍ରବାର
ମୂଳା ନକ୍ଷତ୍ର ସେ ଭୋଗ ଅଟେ ସେ ଦିନର ।
ବାସବଙ୍କୁ ରାଇ ଆଜ୍ଞାଦେଲେ ନାରାୟଣ
ବାରୁଣାବନ୍ତରେ କର ଜଳ ବରଷଣ ।
ନାରାୟଣଙ୍କ ଆଜ୍ଞାରେ ବରଷନ୍ତି ମେଘେ
ମୂଷଳ ପ୍ରମାଣ ଧାର ଅବିଚ୍ଛିନ୍ନ ବେଗେ ।
ଅନୁଭବ ଗ୍ରାମେ ଥିଲା ଏକଇ କିରାତ
ଜୟନ୍ତୀ ନାମେ ଭାରିଯା ତାର ପାଞ୍ଚପୁତ୍ର ।
ପଡ଼ିଲା ନିର୍ଘାତ ବଜ୍ରସୂଚୀ ତାହା ବାସ
ଅଜ ନାମା କିରାତ ଯେ ହୋଇଗଲା ନାଶ ।
କୁଡ଼ିଆ ଗୋଟି ତାହାର ପୁଣି ଗଲା ଜଳି
ପଞ୍ଚପୁତ୍ର ଘେନି ପଳାଇଲା ତାର ବାଳୀ ।
ଜତୁଗୃହ କାନ୍ଥପାଶେ ଲାଗିଲାକ ଯାଇ
ଭୀମସେନ ବୋଇଲେରେ ଆସିଛୁ କିମ୍ପାଇଁ ।
କିଏ ସେଟି ବୋଲି ଚାହିଁଦେଲେ ଦେବୀ କୁନ୍ତୀ
ଆସ ଆସ ମହାମ୍ୟାଣୀ ଅଟୁ ତୁ କି ଜାତି ।
ସେ ବୋଇଲେ ମୁହିଁ ଅଟେ କିରାତୁଣୀ ଜାତି
ଏହି ପାଞ୍ଚଗୋଟି ପୁତ୍ର ମୋହର ଅଛନ୍ତି ।
ସ୍ୱାମୀ ମୋର ନାଶଗଲା ବଜ୍ରସୂଚୀ ପଡ଼ି
ରହିବାକୁ ଠାବ ମୋତେ ଦିଅକି ନା ଲୋଡ଼ି ।
ପାଞ୍ଚଗୋଟି ଅଛନ୍ତି ଯେ ମୋର ବାଳଶିଷ୍ୟ
ନାମଗୋଟି ଯେ ତୋହର ଅଟଇ ଗୋ କିସ ।
ମୋହର ନାମ ଜୟନ୍ତୀ ମୁହିଁ କିରାତୁଣୀ
କୁନ୍ତୀ ବୋଇଲେ ଭିତରେ ପଶୁ ମହାମ୍ୟାଣୀ ।
ନାମ ମଇତ୍ର ଗୋ ତୁହି ହୋଇଲୁ ମୋହର
ମୋର ପାଞ୍ଚପୁତ୍ର ପାଞ୍ଚପୁତ୍ର ହିଁ ତୋହର ।
ଆସ ଭିତରେ ବିଶ୍ରାମ କର ଗୋ ସଙ୍ଗାତ
ସୁସ୍ଥ ହୁଅନ୍ତୁ ତୋହର ପାଞ୍ଚଗୋଟି ସୁତ ।
ଦ୍ୱାର ଛାଡ଼ ଭୀମ ଏହି ଆସନ୍ତୁ ଭିତର
ମାତାଙ୍କ ଆଜ୍ଞାରେ ଭୀମ ଛାଡ଼ିଦେଲା ଦ୍ୱାର ।
ପୁର ଗୋଟିକେ ରହିଲା ଯାଇ ଶବରୁଣୀ
ଶଯ୍ୟା ଗୋଟିଏ ତାହାକୁ ଦେଲେ ଦେବୀ ଆଣି ।
ଆସିଥିଲେ ସେ ଅନେକ ବନେ ଦୁଃଖ ପାଇ
ସୁଖେ ନିଦ୍ରାଗଲେ ତହିଁ ନିର୍ଭୟ ସେ ହୋଇ ।
ଯୁଧିଷ୍ଠି ଭୀମ ନକୁଳ ପାର୍ଥ ସହଦେବ
କୁନ୍ତୀଙ୍କୁ ଘେନି ବସିଲେ ପାଞ୍ଚ ହିଁ ପାଣ୍ଡବ ।
ଯୁଧିଷ୍ଠିର ବୋଇଲେକ ଶୁଣିମା ଗୋ ମାଏ
ଏ ଠାବରୁ ପାରିହୋଇଯିବା ଏ ସମୟେ ।
ପର୍ବତକୁ ଆଡ଼ିଆଇ ପଶିଲେ ଭିତରେ
କୁନ୍ତୀକୁ ଯେ ଭୀମସେନ ବସାଇଲେ ଶିରେ ।
ଡାହାଣ କାନ୍ଧେ ଯୁଧିଷ୍ଠି ବାମରେ କିରୀଟି
କାଖେ ବସାଇଲା ସାନଭାଇ ଦୁଇଗୋଟି ।
ବାଉନ ବାଉନ ଭାର ଗଦା ବେନିହସ୍ତେ
ନୀରବେ ଚଳେ ବିକ୍ରମ ପବନ ସଞ୍ଜାତେ ।
ଯାଇଣ ମିଳିଲା ଭୀମ ସୁରନଦୀ ତୀର
ଦେଖିଲା ନିର୍ଜନ ମହାଘୋର ଅନ୍ଧକାର ।
ପାଞ୍ଚଙ୍କୁ ହିଁ ବସାଇଣ ସୁରନଦୀ କୂଳେ
ଜତୁଗୃହକୁ ସେ ପୁଣି ଲେଉଟିଣ ଚଳେ ।
ବିବରେ ପଶିଣ ଭୀମ ଜତୁ ଗୃହେ ମିଳି
ଝିମଶାଳୁଁ ଅଗ୍ନିହୁଳା ଆଣିଦେଲା ଜାଳି ।
ଭୀମସେନ ପୁରୋଚନ ପଣ୍ଡାକୁ ବୋଲଇ
ପ୍ରତିଜ୍ଞାକଲୁ ପାଣ୍ଡବ ମାରିବାକୁ ତୁହି ।
ଏବେ ତ ମୃତ୍ୟୁ ତୋହର ହୋଇଲା ନିଜର
ପାଣ୍ଡବଙ୍କୁ ମାରି ରାଜ୍ୟ ଦିଅ କୁରୁବୀର ।
କପଟେ ଏ ଜତୁଘର ତୁହି ଭିଆଇଲୁ
ଭୁଞ୍ଜାଇ ବସାଇ ମୋତେ ବିଷ ପରଷିଲୁ ।

ପୁରୋଚନକୁ ଝିଙ୍ଗାସି ପବନର ବଳା
ଧାତିକାରେ ଜତୁଘରେ ଲଗାଇଲା ହୁଳା ।
ଜଉ ସଜଳସ ଗୁଆଘୃତ ଛଣପଟି
ଚାରି ପଦାର୍ଥ ଚଣ୍ଡାଳ ଘର କଲୁ ସୃଷ୍ଟି ।
ଯେତେବେଳେ ଲାଗିଲାକ ଅଗ୍ନି ଜତୁଘରେ
ଜଳିଲା କାଳ ଅନଳ ପରି ବିକରାଳେ ।
ଭୀମ ପଳାନ୍ତେ ଯେ ମହାତେଜ ଲାଗି ଲାଗି
ଅନେକ ଯେ ସ୍ତୁତିଗଲା ଯେ ପରମ ଯୋଗୀ ।
ଜୟ ତୁ ଜୟ ତୁ ଦେବ ଦେବ ବୈଶ୍ୱାନର
ଜୟ ତୁ ଜୟ ତୁ ଦେବ ଅଟୁ ଅଣାକାର ।
ଜୟ ତୁ ଜୟ ତୁ ଦେବ ସ୍ୱରୂପ ହେଙ୍ଗୁଳା
ଜୟ ତୁ ଜୟ ତୁ ଦେବ ପ୍ରସନ୍ନ ମଙ୍ଗଳା ।
ଜୟ ତୁ ଜୟ ତୁ ଦେବ ଅଟୁ ବ୍ରହ୍ମବେତ୍ତା
ଜୟ ତୁ ଜୟ ତୁ ଦେବ ଦର୍ପ ଭଗ୍ନକର୍ତ୍ତା ।
ଜୟ ତୁ ଜୟ ତୁ ଦେବ ମହାତେଜ ମୂର୍ତ୍ତି
ଜୟ ତୁ ଜୟ ତୁ ଦେବ ସ୍ୱାହାଦେବୀ ପତି ।
ଜୟ ତୁ ଜୟ ତୁ ଦେବ କ୍ରୋଧ କାଳାନଳ
ଜୟ ତୁ ଜୟ ତୁ ଦେବ ଲୋହିତ ପିଙ୍ଗଳ ।
ଜୟ ତୁ ଜୟ ତୁ ଦେବ ଅନଳ ତୋ ରୂପ
ଜୟ ତୁ ଜୟ ତୁ ଦେବ ବଉଦ ସ୍ୱରୂପ ।
ଜୟ ତୁ ଜୟ ତୁ ଦେବ ଗୋପନ ଶରୀର
ଜୟ ତୁ ଜୟ ତୁ ଦେବ ସିନ୍ଧ ପାରାବାର ।
ଜୟ ତୁ ଜୟ ତୁ ଦେବ ଆହାରେ ବୈରାଗୀ
ଜୟ ତୁ ଜୟ ତୁ ଦେବ ସୁପ୍ରସନ୍ନ ଯୋଗୀ ।
ଜୟ ତୁ ଜୟ ତୁ ଦେବ ପ୍ରସନ୍ନ ତୋ ଦୀକ୍ଷା
ଜୟ ତୁ ଜୟ ଦେବକର ମୋତେ ରକ୍ଷା
ଜୟ ତୁ ଜୟ ତୁ ଦେବ ଅଟୁ ସର୍ବଭକ୍ଷ
ଜୟ ତୁ ଜୟ ତୁ ଦେବ ପିତାମହ ସାକ୍ଷ ।
ଜୟ ତୁ ଜୟ ତୁ ମହୀବ୍ରହ୍ମ ବେଗଗାମି
ଜୟ ତୁ ଜୟ ଅଭୟ ବରଦାତା ସ୍ୱାମୀ ।
ଜୟ ତୁ ଜୟ ତୁ ଦେବ ସ୍ୱାହାଦେବୀ ସାଇଁ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ପାଦେ ଧ୍ୟାୟି ।
ଭୀମସେନ ସ୍ତୁତି କଲା ଅଗ୍ନି ଦେବତାଙ୍କୁ
ଆପଦକାଳେ କଟାଳ ନ କର ଆମ୍ଭଙ୍କୁ ।
ଯହୁଁ ଅନେକ ଯେ ସ୍ତୁତି ଭୀମସେନ କଲା
ସ୍ୱାହାର ବଲ୍ଲଭ ଶାନ୍ତରୂପକୁ ଭଜିଲା ।
ମୋତେ ଏବାରେକ ରକ୍ଷା କର ଆହେ ବହ୍ନି
ମୋହର ସମାନେ ଦେବି ଶତେ ଜଣ ପୁଣି ।
ଏତେକ ସ୍ତୁତି କରିଣ ବୀର ବୃକୋଦର
ଧାତିକାରେ ପଶିଲା ସେ ପାତାଳ ବିବର ।
କରେଣ ଧରି ଚିପିଲା ପରବତ ଗୋଟି
ଧାଇଁଯାଇଁ ମାରୁତି ଯେ ଭେଟିଲା ଯୁଧିଷ୍ଠି ।

—୦—

## କୁମ୍ଭୀର ଦୈତ୍ୟ

ଅଗସ୍ତି କହନ୍ତି ଶୁଣ ମନୁ ନରସାଇଁ
ଏଥୁଅନ୍ତେ ଯାହା ଯାହା କଲେ ପାଞ୍ଚଭାଇ ।
ଅନେକ ରତ୍ନ ଆଣିଲା ଭୀମା ଜତୁ ଘରୁ
ଯୁଧିଷ୍ଠି ବୋଇଲା ଆଣି ଏମାନ କି କରୁ ।
ବିବର ଦ୍ୱାରରେ ବୀର ବିଚାରନ୍ତି ବସି
କଇବର୍ତ୍ତ ନାବ ଘେନି ମିଳିଲାକ ଆସି ।
ତାହାକୁ ଦେଖି ବିବରେ ହୋଇଲେ ଗୁପତ
ସ୍ୱାମୀ ରହ ବୋଲି ଡାକ ଦେଲା କଇବର୍ତ୍ତ ।
ବିଦୂର ମହାତ୍ମା ମୋରେ ଧନ ରତ୍ନ ଦେଇ
ନବବର୍ଷେ ହେଲା ଏଥି ଅଛନ୍ତି ଜଗାଇ ।
ନାବ ଗୋଟି ଘେନି ମୁହିଁ ତାଙ୍କ ବଚନରେ
ରାତ୍ରଦିନ ବସିଛି ମୁଁ ଏଥି ଉନିଦ୍ରରେ ।
ବିଦୂର ବଚନ ସୁମରିଣ ପଞ୍ଚଭ୍ରାତେ
ବିବର ମଧ୍ୟୁ ବାହାର ହେଲେ ତତ୍କ୍ଷଣାତେ ।
କୈବର୍ତ୍ତ ବଚନ ଶୁଣି ହୋଇଲେ ହରଷ
ତାହାକୁ ଦେଖି ପାଣ୍ଡବେ ପରମ ସନ୍ତୋଷ ।
ନାବରେ ବସ ଭୋ ସ୍ୱାମୀ ଦେବି ପାରିଆଇ
ଘାଟ ପଡ଼ିଅଛି ଏତେ ଆତଯାତ ନାହିଁ ।
ପ୍ରଥମେ ବସିଲେ ନାବେ ଯାଇ ଦେବୀ କୁନ୍ତୀ
ଯୁଧିଷ୍ଠି ଦ୍ୱିତୀୟେ ପାର୍ଥ ତୃତୀୟେ ବସନ୍ତି ।
ଚତୁର୍ଥେ ବସିଲେ ମାଦ୍ରୀ ଦେବୀ ବେନି ସୁତେ
ପଞ୍ଚମରେ ବୃକୋଦର ନାବରେ ବସନ୍ତେ ।
ବୃକୋଦର ଭାରା ନାବ ସହି ନ ପାରିଲା
ଟବ ଟବ ହୋଇ ନାବ ଗୋଟି ବୁଡ଼ିଗଲା ।
ଧାତିକାରେ ନାବୁଁ ଡେଇଁପଡ଼ି ବୃକୋଦର
ଟୋଳି ନାବକୁ ଧଇଲା ନେଇ ବାମକର ।
ପାଣି ନିଗାଡ଼ି ଦେଇଣ ବସେ ପୁଣି ନାବେ
ଭୀମ ବସିବା ନ ସହି ନାବ ଜଳେ ବୁଡ଼େ ।
କରପତ୍ର ଯୋଡ଼ି ବୋଲେ ନାବେ କର୍ଣ୍ଣଧାର
ଭୀମ ଯେ ବସନ୍ତୁ ଆଗ ମଙ୍ଗରେ ନାବର ।
ସମସ୍ତେ ବସିବା ଆମ୍ଭେ ସାନମଙ୍ଗ କତି
ତେବେ ବା ନାବ ଚଳିବ ହୋଇ ପରିପାଟି ।
ପୁତ୍ରଙ୍କୁ ଘେନିବସି ସେ ସଙ୍ଗେ ଦେବୀ କୁନ୍ତୀ
ଭୀମସେନ ଯାଇ ବଡ଼ ମଙ୍ଗରେ ବସନ୍ତି ।
ଯେତେବେଳେ ଭୀମସେନ ବଡ଼ ମଙ୍ଗେ ଉଠି
ଭାରାରେ ସେ ନାବ ଗୋଟି ପଡୁଛି ଲେଉଟି ।

ପୁଣି ଓହ୍ଲାଇ ପଡ଼ିଲେ ନାବରୁ ତ୍ୱରିତେ
ନାବ ସମ୍ଭାଳି ଧଇଲେ ଯାଇ କରପତ୍ରେ ।
କକଡ଼ା ମାସ ଯେ କୃଷ୍ଣପକ୍ଷ ବର୍ଷାକାଳ
ପୂରିଅଛି ନଦନଦୀ ନ ଦିଶଇ କୂଳ ।
ଅନେକ ଗଭୀର କେହୁ ପାରେ ଅନ୍ତକରି
ଭାଳନ୍ତି ଯୁଧିଷ୍ଠି ଦେବ ମନରେ ବିଚାରି ।
ବୋଲନ୍ତି ସହଦେବଙ୍କୁ ଚାହିଁ ଧର୍ମ ସୁତେ
ନାବ ନ ସହଇ ପାରି ହୋଇବା କେମନ୍ତେ ।
ସହଦେବ ବୋଲେ ଆଜ୍ଞା ଦିଅନ୍ତୁ ଭୀମକୁ
ବେନି ଗଦା ପକାନ୍ତୁ ଏ ନଦୀ ଭିତରକୁ ।
ପାଣିର ଭିତରେ ସେହି ଥାଉ କି ନା ପଡ଼ି
ବାହୁଡ଼ିବାବେଳେ ଏଥୁ ନେଇ ସିନା କାଢ଼ି ।
ଏକେ ବଳବନ୍ତ ଗଦାବରେ ବେନିହସ୍ତ
ବାଉନ ବାଉନ ଭାର କି ସେ ପରବତ ।
ନାବ ମାତ୍ରକ କେ କେତେ ଭାରା ହିଁ ସହିବ
ବୃକୋଦର ମୂର୍ତ୍ତି ଏଇଲୋକେ ଅସମ୍ଭବ ।
ସହଦେବ ଯୁଧିଷ୍ଠିଙ୍କ ଆଜ୍ଞା ପରମାଣ
ସୁରନଦୀରେ ଗଦାକୁ ଫିଙ୍ଗି ଭୀମସେନ ।
ସାନମଙ୍ଗେ ପାଞ୍ଚଜଣ ଭୀମ ବଡ଼ ମଙ୍ଗେ
ନାବକୁ ବାହଇ କର୍ଣ୍ଣଧାର ବେଗେ ବେଗେ ।
ନଦୀରେ ନାବ ଚଳଇ ହଲଚଲ ପାଣି
ଜଳପ୍ରଭା ବାହାରିଲା ଜନ ବାକ୍ୟ ଶୁଣି ।
ପଞ୍ଚତିରିଶ ଯୋଜନ ପୂରିଅଛି ଜଳ
ତୁଣ୍ଡ ବିସ୍ତାରି କୁମ୍ଭୀର କଲାକ ହାନ୍ଦୋଳ ।
ଦେ ଦେ ବୋଲି ଡାକଦେଇ ଭୀଷ୍ମରୂପେ ପୁଣି
ନାବ ହିଁ ବୁଡୁଅଛଇ ତା ପ୍ରତାପ ଶୁଣି ।
ଯୁଧିଷ୍ଠିର ପଚାରିଲେ ଏକଥା କେମନ୍ତ
କରପତ୍ର ଯୋଡ଼ି ତହିଁ ବୋଲେ କଇବର୍ତ୍ତ ।
କୁମ୍ଭୀର ରହିଛି ଚାରିଯୁଗ ହେଲା ଏଥେଁ
ଜଣେକ ବସାଇ ଅଛି ଯାଏ ଯେ ଏ ପଥେ ।
ନବ ବରଷ ହେଲାଣି ପଡ଼ିଛି ଏ ବାଟ
କ୍ଷୁଧାରେ ଜଳୁଅଛଇ ଜଳପ୍ରଭା ପେଟ ।
ଜଣେ ତ ପାଇଲେ ଜଳ ହାନ୍ଦୋଳ କରିବ
ନାବ ସହିତେ ଏକ୍ଷଣି ସମସ୍ତ ଭକ୍ଷିବ ।
ଯୁଧିଷ୍ଠି ଚାହିଁଲେ ଭୀମସେନର ବଦନ
ବାବୁ ଦୁଃସହ ସଙ୍କଟ ପଡ଼ିଲା ଏସନ ।
ବାବୁ ତୁ ମୋର ସୋଦର ଅଟୁ ପ୍ରାଣସଖା
ତୋର ପ୍ରସନ୍ନ ବଦନ କ୍ଷଣେ ମୋତେ ଦେଖା ।
ଭୀମ ପ୍ରତିବାକ୍ୟ ସହଦେବ ଅଟେ ସାନ
ନକୁଳ ଅଟଇ ଦେବ ମାଦ୍ରୀର ନନ୍ଦନ ।
ଚଉଦ ଭୁବନ ବାର୍ତ୍ତା ଥାଇ ଏହା ଗର୍ଭେ
ଜାଣି ନ କହେ ପାପିଷ୍ଠ ଏହି ସହଦେବ ।
ମୋ ବିଚାରେ ଦେବ ସହଦେବକୁ ହିଁ ଦେବ
ଆମେ ପାଞ୍ଚଜଣ ଏଥୁ ପାର ହୋଇଯିବା ।
ଯୁଧିଷ୍ଠି ବୋଇଲେ ପିତା ମାତା ଅବସାନେ
ଏ ପୁତ୍ର ଗୋଟି ଅର୍ଜିଲେ ପଣ୍ଡୁ ଯେ ଉଦ୍ୟାନେ ।
ପଣ୍ଡୁ ପୁତ୍ର ବୋଲି ବ୍ୟଥା ପାଉଅଛି ଜାଣ
ରାଜ୍ୟ ହିଁ ଭାବୁଅଛଇ ଏହାକୁଟି ପୁଣ ।
ଆବର ବିଶେଷ ଜାଣେ ଆଗତ ସମସ୍ତ
ଭୂତ ଭବିଷ୍ୟତ ବର୍ତ୍ତମାନ ଗତାଗତ ।
ଏ ବୀଚକ୍ଷଣ ପୁତ୍ରେକ ଦେବଇ କେମନ୍ତେ
ମନ୍ତ୍ରୀ ନ ଥିଲେ ରାଜ୍ୟ ହିଁ ପାଳନ୍ତି କି ପାତ୍ରେ ।
ଆନ ଜଣେ ବାଛ ବାବୁ ସହଦେବ ଛାଡ଼ି
ଭୀମସେନ ବୋଇଲେ ଯେ କର ଦୁଇଯୋଡ଼ି ।
ସ୍ୱାମୀ ନକୁଳ ଅଟଇ ଅତି ସୁକୁମାର
ସପତ ପଳ ଚନ୍ଦନ ଲେପଇ ଶରୀର ।
ହଂସୁଲୀ ତୁଳିରେ ପଡ଼େ କର୍ପୂରର ଧୂଳି
ତହିଁରେ ତାହାକୁ ପୁଣି ନିଦ୍ରା ହିଁ ନ ମାଡ଼ି ।
ବନସ୍ତେ ସେ ଏତେ ସୁଖ ପାଇବ ବା କାହିଁ
ଅବଶ୍ୟ ମରିବ ସୁଖ ଭୋଗ ଏ ନ ପାଇ ।
ଭୋ ସ୍ୱାମୀ ଏହି କଥାକୁ ବିଚାର କରିବା
ନକୁଳକୁ ଦେଇ ଦେବ ପାରି ହୋଇଯିବା ।
ଯୁଧିଷ୍ଠିର ବିଚାରିଲେ ଭୀମର ବଚନେ
ସାବତ ମାତା ପୁତ୍ର ମୁଁ ଦେବଇଁ କେସନେ ।
ଆକାଶରେ ପାଟ ବାବୁ ଅଛଇ ଯାହାର
ମୁଁ କେମନ୍ତେ ପରମାଦ ଚିନ୍ତିବି ତାହାର ।
ଅନ୍ୟ ଜଣେକ ବିଚାର ବୋଲ କରି ନାମ
କରପତ୍ର ଯୋଡ଼ି ପୁଣି କହେ ଭୀମସେନ ।
ସ୍ୱାମୀ ବଡ଼ ହିଁ ପାପିଷ୍ଠ ଅଟଇ ଫାଲଗୁନି
ନିରସ୍ତ୍ର ଶତ୍ରୁ ନ ମାରେ ରଣେ ଅସ୍ତ୍ର ଘେନି ।
ଦୁର୍ଯ୍ୟୋଧନ ତୁଳେ ଦିନେ ସଂଗ୍ରାମ ହୋଇବ
ବିରଥ ହେଲେ ଶତ୍ରୁକୁ ଏହି ନ ମାରିବ ।
ଏହା ହୁଁ ପାପିଷ୍ଠ ହେବା ନାହିଁ ଆର ଜନ
ଶତ୍ରୁକୁ ପାଳଇ ବନ୍ଧୁ ସୋଦର ସମାନ ।
କ୍ଷତ୍ରିୟ ହୋଇଣ ଦେବ ଦୟାବାନ ହେଲେ
ରାଜ୍ୟ ପ୍ରାପତ ନୁହଇ ଶାସ୍ତ୍ର ଏହା ବୋଲେ ।
ଅର୍ଜୁନକୁ ଦେଇ ଆମ୍ଭେ ପାର ହୋଇଯିବା
ତୁମ୍ଭ ମନକୁ ଆସେ କି ନ ଆସଇ ଅବା ।
ସଂଗ୍ରାମ କାଳକୁ ଦେବ କଳଙ୍କ ନ ଥାଉ
ଅର୍ଜୁନକୁ ଦେବା ଦେବ ଏ କୁମ୍ଭୀର ଖାଉ ।

ଯୁଧିଷ୍ଠି ଦେବ ଧଇଲେ କୋଳେ ଅର୍ଜ୍ଜୁନକୁ
ହରି ନାମ ଦେଲେ କୋଳେ ବସାଇ ତାହାକୁ ।
ଇନ୍ଦ୍ର ରେତୁଁ ଜାତ ବାବୁ କୃଷ୍ଣ ଦ୍ୱିତୀୟାତ୍ମା
ଅର୍ଜ୍ଜୁନକୁ ଦେବାକୁ ନ ବଳେ ମୋର ଆତ୍ମା ।
ଯାହାର ପିଅର ବାବୁ ଅଟଇ ମଘବା
ଅମରାଦି ନାଥ ପଦ ଦ୍ୟନ୍ତି ସ୍ୱର୍ଗଦେବା ।
ଯଦ୍ୟପି ଆମ୍ଭେ ପାର୍ଥକୁ ଦେବା ବାବୁ ଏଥେ
କେଶବ ବାସବ ଯୋଗେ ବର୍ତ୍ତିବା କେମନ୍ତେ ।
ବିଦ୍ୟା ଦେଖାଇଣ ଦ୍ରୋଣଗୁରୁ ଯେ ବୋଇଲେ
ତ୍ରଇଲୋକ୍ୟ ଜେତା ଏହି ଅର୍ଜ୍ଜୁନ କହିଲେ ।
ଭଲ କରି ଏହାକୁଟି ଦେଖୁଥିବ ଯେହ୍ନେ
ରାଜ୍ୟ ପ୍ରାପତ ହୋଇବ ଏହା ବିଦ୍ୟମାନେ ।
ଏସନକ ବାକ୍ୟ ଗୁରୁ କହିଛନ୍ତି ମୋତେ
ଗୁରୁଙ୍କର ବଚନ ମୁଁ ଭାଙ୍ଗିବି କେମନ୍ତେ ।
ମୋହର ବଚନ ଦେଇ ନ ପାରେ ବିବସ୍ଥ
ଏ ତିନିଙ୍କୁ ଛାଡ଼ି ବାବୁ ଆନ ଜଣେ ବାଛ ।
ଭୀମସେନ ବୋଇଲେ ଏ ତିନିହେଁ ନୋହିଲେ
ତୁମ୍ଭେ ନ ଯିବ ମୁଁ ନ ଯିବି ତୁମ୍ଭର ବୋଲେ ।
ଅଛନ୍ତି ଆମ୍ଭର ବୃଦ୍ଧା ମାତା ପଣ୍ଡୁନାରୀ
ପଣ୍ଡୁ ପ୍ରସାଦେ ଅନେକ ଭୋଗ ଏହୁ କରି ।
ବନସ୍ତେ ଅନ୍ନ ଆହାର ପାଇବେ ବା କାହିଁ
ଅନେକ ଦୁଃଖ ଯେ ଦେବ ଆମ୍ଭଙ୍କୁ ହିଁ ରହି ।
ବନସ୍ତେ ଅନ୍ନ ଆହାର ପାଇବେ ବା କାହିଁ
ବୟସ ଅଧିକ ଲୋକ ବନେ ଦୁଃଖ ପାଇ ।
ଏହାଙ୍କ ଆଉ ଆମ୍ଭର ଯାଇ ନ ଯୋଗାଇ
ଆମ୍ଭେ ମଲେ ଜଳ ତିଳ ପାଇବେ ଏକା ହିଁ ।
ପୁତ୍ର ଅଭାବେ ପାଇବେ ଏ ଅନେକ ଦୁଃଖ
ଆମ୍ଭେ ମଲେ ମାତାଙ୍କ ଯେ ହେବ ପୁତ୍ର ଶୋକ ।
ଚାଲି ନ ପାରି ଜଞ୍ଜାଳି ହୋଇବେ ଆମ୍ଭର
କୁନ୍ତୀଙ୍କି ଦେବ କି ମନ ବଳିଲା ତୁମ୍ଭର ।
ଭୀମସେନର ବଚନେ ବୋଲନ୍ତି ଯୁଧିଷ୍ଠି
ଜାଣିଲି ଭୀମସେନ ତୁ ବଡ଼ ହିଁ ମୂର୍ଖଟି ।
ଗର୍ଭରେ ଭରି ଆମ୍ଭଙ୍କୁ କ୍ଷୀର ଦାନ ଦେଲା
ଆତ୍ମାରୁ ଜାତ କରିଣ ଆମ୍ଭଙ୍କୁ ପାଳିଲା ।
ସେହୁ ବର୍ତ୍ତିଥିଲେ ଅଛି ଆମ୍ଭଙ୍କୁ ଯେ ଧର୍ମ
ତୁ ତାକୁ କେମନ୍ତେ ଦେଇ ଲୋଡୁଅଛୁ ଭୀମ ।
ଭୀମ ବୋଲେ ତୁମ୍ଭେମାନେ ସମସ୍ତେ ସୋଦର
ଆମ୍ଭର ଯେ ଦୁଇ ମାତା ଅନେକ ପିଅର ।
ଆମ୍ଭର ତହୁଁ ବାହାର ଅଟେ କର୍ଣ୍ଣଧାର
ଏହାଙ୍କୁ ଦେଇଣ ଆମ୍ଭେ ହୋଇଯିବା ପାର ।

ଭୀମର ବଚନେ ଦେବ ହୋଇଲେ ବିସ୍ମୟ
କ୍ଷଣକେ ରହି ହସିଲେ ଧର୍ମଙ୍କ ତନୟ ।
ବାବୁ ଆମ୍ଭର ନିମନ୍ତେ ଜଗିଛି ମସାଦ
ନବବର୍ଷ ହେଲା ରାତ୍ରେ ନାହିଁ ତାକୁ ନିଦ ।
ଖରା ବରଷା ଆବର ଶୀତ ସହି କରି
ଗୃହ ଛାଡ଼ି ଜଗିଅଛି ଯେସନ ପ୍ରହରୀ ।
ପାପ ପୁଣ୍ୟ ଭୀମା କିଛି ବିଚାର ନ କରୁ
ଯେହୁ ଉପକାରୀ ତାକୁ ବାଟେ ଧରି ମାରୁ ।
ମାତାଙ୍କୁ ଚାହିଁ ବୋଇଲେ ଧର୍ମଙ୍କର ସୁତ
ମାଗୋ ଆମ୍ଭେ ଅଟୁ ତାର ତିନିଗୋଟି ସୁତ ।
ତୋ ତିନି ପୁତ୍ରରୁ ଦିଅ ଗୋଟିଏ ବିଚାରି
ନକୁଳ ସହଦେବକୁ ଦିଅ ଦୂର କରି ।
କୁନ୍ତୀଦେବୀ ପ୍ରତିବାକ୍ୟ ଶୁଣ ବାବୁ ଧର୍ମ
ଶତ୍ରୁ ମିତ୍ର ନାହିଁ ଏହୁ କରଇ ସଂଗ୍ରାମ ।
ଅନ୍ତର ଧଇଲେ ଏହଯୋଗୁ ଧୃତରାଷ୍ଟ୍ର
ନ ଜାଣେ ଗୁରୁ ଗୌରବ ଏହି ଭୀମ ଦୁଷ୍ଟ ।
ଷାଠିଏ ପଉଟି ଅନ୍ନ ବେଳକୁ ନ ଅଣ୍ଟି
ପେଟ ପୂରିଲେକ ହେଉଥାଇ ମହାକଷ୍ଟୀ ।
ଭିକ୍ଷା ମାଗିବାକୁ ଏ ନ ଯିବ କଦାଚିତେ
ଅଳପ ଭିକ୍ଷା ଦେଲେ ନ ଦିଶିବ ଯୁକତେ ।
ଯାଅ ଯେ ପଣ୍ଡାଏ ବୋଲି ଯେ ଅବା ବୋଲିବ
କୁଢ଼ିଆ ତାର ଉପାଡ଼ ତାହାକୁ ମାରିବ ।
ଏସନକ ଦୁଷ୍ଟଲୋକ ସଙ୍ଗତେ ନ ଥାଉ
ଭୀମସେନକୁ ଦେବା ଏ ଜଳପ୍ରଭା ଖାଉ ।
ଯୁଧିଷ୍ଠି ମାୟେ କରନ୍ତି ଏସନ ଭାଳେଣି
ଦୁହିଁଙ୍କ ବିଚାର ଭୀମ ଜାଣି କହେ ବାଣୀ ।
ତୁମ୍ଭର ମନ ଜାଣିଲି ଆଗୋ ମାତ ମୁହିଁ
ମୋତେ ଦେବାକୁ ବିଚାର କର ତୁମ୍ଭେ ଦୁଇ ।
ଏତେ ବୋଲି ଭୀମ ଜଳେ ପଡ଼ିଲାକ ଡେଇଁ
ଜଳପ୍ରଭା ଧାଇଁ ଯାଇ ଧଇଲା ନିଠାଇ ।
ଦୁଇ ହସ୍ତେ ଧରି ଉପରକୁ ଫିଙ୍ଗିଦେଲା
ଝିଣ୍ଟିକା ପରାୟେ ଭୀମ ଉଦରେ ପଶିଲା ।
କୁମ୍ଭୀର ଗର୍ଭ ଦିଶଇ ପାତାଳ ପରାୟ
ତାହାର ଗର୍ଭେ ପଶିଲା ପବନ ତନୟ ।
ନାବ ବାହିକରି ତହିଁ ନେଲା କର୍ଣ୍ଣଧାର
ଓହ୍ଲାଇଲେ ଚାରି ଭାଇ ମାତା ଯେ କୂଳର ।
ଯୁଧିଷ୍ଠିର ଶୋକ କଲେ ଭୀମକୁ ନ ଦେଖି
ଝର ଝର ହୋଇ ଲୁହ ବହେ ବେନି ଆଖି ।
ନକୁଳ ଯେ ସହଦେବ ଆବର କିରୀଟି
ଅଚେତନ ହୋଇ ପଡ଼ିଲେକ ମହୀଲୋଟି ।

ଆରେ ଆରେ ବଳବନ୍ତ ମୋର ଭାଇ ଗୋଟି
ଅନେକ ବ୍ୟାକୁଳ ହୋଇ କାନ୍ଦନ୍ତି ଯୁଧିଷ୍ଠି ।
କେଣିକି ଯିବି ଭାଇରେ ତୋହର ଅଭାବେ
ବାଟ କଢ଼ାଇ କେ ନେବ ବନେ ମୋତେ ଏବେ ।
ମନ୍ଦବୁଦ୍ଧି ହୁଅଇଟି ଯେ ନିର୍ବଳ ପ୍ରାଣୀ
ଦଶଦିଗ ଅନ୍ଧାରରେ ହେଲା ମୋତେ ଜାଣି ।
ରିପୁ ତ୍ରାସ କରୁଥିଲା ତୋ ପ୍ରାକର୍ମ ଦେଖି
ତୋହର ଅଭାବେ ମୁହିଁ ହେଲି ମହାଦୁଃଖୀ ।
କୁନ୍ତୀ ବୋଇଲେ ବାବୁରେ କିମ୍ପା କରୁ ଶୋକ
ରାତି ପାହିଲାଣି ପୁଣି ଜାଣିବେଟି ଲୋକ ।
ହଜିଲା ପ୍ରାଣୀକୁ କିବା ଥିବା ବାଟ ଚାହିଁ
ମଲା ନ ଆସଇ ଭସ୍ମ ଅଙ୍କୁରେ କି କାହିଁ ।
ଚାରିଗୋଟି ପୁତ୍ରଙ୍କର ହସ୍ତ ଦେବୀ ଧରି
ପଶିଲେ ଗହନ ବନେ ନୃସିଂହ ସୁମରି ।
ଭୀମ ତୁନି ହୋଇଥିଲା କୁମ୍ଭୀରର ଗର୍ଭେ
ଭାଇ ମାତାଙ୍କର ମନ ଜାଣିବା ପ୍ରସ୍ତାବେ ।
ନିରାଶ ହୋଇଣ ଯହୁଁ ଗଲେ ଘୋର ବନ
କୁମ୍ଭୀର ଗର୍ଭରେ ଭୀମରୂପ ଭୀମସେନ ।
ବୃକୋଦର ମୂରତିର ଧରି ମହାବଳୀ
ଶରୀର ବିକାଶେ ନବ ତାଳହୁଁ ଉଗୁଳି ।
ପଞ୍ଚ ତାଳ ଉତ୍ସର୍ଗ ସେ କୁମ୍ଭୀର ଗର୍ଭଟି
ମହାଭାରା ପାଇ ଗଲା ତାର ପେଟ ଫାଟି ।
କୁମ୍ଭୀରକୁ ମାରି ତାର ଛାଲକୁ ଉତ୍ତାରି
ବାହାରିଲା ଭୀମ ଜଗନ୍ନାଥଙ୍କୁ ସୁମରି ।
ନାବଗୋଟି ଘେନି ଯାଉଥିଲା କଇବର୍ତ୍ତ
ରାଗେ ଚାପୋଡ଼େ ମାଇଲା ପବନର ସୁତ ।
ତାହାଙ୍କ ଭାଳିବାକାଳେ ତୁହି ବସିଥିଲୁ
ମୋତେ ଦେବାକୁ ତୁହିରେ ସନମତ କଲୁ ।
କୋପେ ମୁଣ୍ଡ ଆଜି ତୋର ପକାନ୍ତିରେ ମୋଡ଼ି
ନାବଗୋଟି ଭାଙ୍ଗନ୍ତି ମୁଁ ଶତ ଖଣ୍ଡ କରି ।
ବିଦୁରଙ୍କ ଯୋଗୁଁ ତାର ରଖିଲି ପରାଣ
ଏହି କଥା ନ କହିଣ କରିବୁ ଗୋପନ ।
କେବଳ ତୁ ବିଦୁରଙ୍କ ଆଗରେ କହିବୁ
ଆନ କେହି ଜାଣିଲେ ତୁ ସବଂଶେ ମରିବୁ ।
ଭୟେ ନାବିକ କହଇ ରଖ ମୋର ପ୍ରାଣ
ମୁହିଁ ଦେବ ତୁମ୍ଭପାଦେ ପଶିଲି ଶରଣ ।
ସତ୍ୟ କରୁଅଛି କେଭେ ନ କହିବି କାହିଁ
ଏହାକହି ନାବଗୋଟି ନେଲା ସେହି ବାହି ।
ଜଗତ ପ୍ରାଣ ନନ୍ଦନ ପଶେ ଘୋର ବନେ
ମେଦିନୀ କମ୍ପୁଅଛଇ ଚରଣ ପତନେ ।

ଯୁଧିଷ୍ଠି ବୋଇଲେ ମାଗୋ ପ୍ରମାଦ ପଡ଼ିଲା
କେବଣ ଦୈତ୍ୟ ଆମ୍ଭଙ୍କୁ ଦେଖିଣ ଧାଇଁଲା ।
ଆହା ଭାଇ ଭୀମ ମୁହିଁ କିମ୍ପାଇଁ ନ ମଲି
ତୋତେ ମରାଇଣ ଭାଇ ଏବେ ନାଶ ଗଲି ।
କୁନ୍ତୀ ବୋଇଲେ ବାବୁ ତୁ ନ ଭାଳ ଯୁଧିଷ୍ଠି
ଦାନବ ନୁହଁଇ ଏ ତୋ ଭାଇ ଭୀମ ସେଟି ।
ଯୁଧିଷ୍ଠିର ପ୍ରତିବାକ୍ୟ ଏଡ଼େ ଗୋ ନିର୍ଦ୍ଦୟା
ସ୍ତ୍ରୀ ଲିଙ୍ଗ ହୋଇ ପାଷାଣଠାରୁ ଟାଣ ହିଆ ।
ଗର୍ଭରେ ଧରି ମାତା ଗୋ ପୁତ୍ରକୁ ମରାଇ
କେମନ୍ତ ଗର୍ଭେ ତୋହର ଅଛି ନ ବଥାଇ ।
କୁନ୍ତୀ ଯେ ବୋଇଲେ ଭ୍ରାନ୍ତି ନ କର ତୁ କିଛି
କୁମ୍ଭୀରକୁ ମାରି ତୋର ଭାଇ ଆସୁଅଛି ।
ଏସନ ବିଚାର କରୁଛନ୍ତି ଦେବ ଧର୍ମ
ସନ୍ନିଧେ ପ୍ରବେଶ ଯାଇ ହେଲେ ବୀର ଭୀମ ।
କୁନ୍ତୀଦେବୀ ପ୍ରାୟେ ବୀର ଶୋଇଲା ପ୍ରଣମି
ଭୀମକୁ କୋଳେ ଧରିଲେ ଯୁଧିଷ୍ଠିର ସ୍ୱାମୀ ।
ଆମ୍ଭର ଦେଖନ୍ତେ ତୋତେ ନେଲା ସେ କୁମ୍ଭୀର
କେବଣ ବାଟେ ତୁ ପୁଣି ହୋଇଲୁ ବାହାର ।
ଭୀମ ବୋଇଲା ସ୍ୱାମୀ ମୁଁ ତା ଗର୍ଭରେ ଥିଲି
ଉଦର ବିଦାରି ଦେବ ବାହାର ହୋଇଲି ।
କହି ପୁଣି ଭୀମସେନ ଆନନ୍ଦିତ ମନେ
ଚାଲେ ପବନ ଗତିରେ ଗହନ କାନନେ ।
ଚାଲନ୍ତେ କୋଶଳେ ସେହୁ କରେ ଏକ ଭଡ଼ା
ବୃକ୍ଷେ ଚୁନା ହେଉଛନ୍ତି ପଡ଼ିଲେ ହାବୁଡ଼ା ।
ଚାଲି ନ ପାରିଣ କୁନ୍ତୀ ବସିଲେକ ଫୁଟି
ରହ ରହ ଭୀମ ମାତା ଚାଲି ନ ପାରେଟି ।
ଭୀମସେନ ବୋଇଲେ ହେ କରୁଛ କେମନ୍ତ
ଦୁର୍ଯ୍ୟୋଧନ ବେଷ୍ଟକାରେ ବୁଲନ୍ତି ବହୁତ ।
କୁନ୍ତୀଙ୍କୁ କୋଳ କରିଣ ଧଇଲା ପାବନୀ
ମଥାପରେ ବସାଇଲା କରପତ୍ର ଘେନି ।
ଡାହାଣ କନ୍ଧେ ଯୁଧିଷ୍ଠି ବାମରେ କିରୀଟି
ବେନି କାଖେ ବସାଇଲା ସାନ ଦୁଇଗୋଟି ।
ଚାଲଇ ପାବନି ପବନୁ ହିଁ ଅତି ବେଗ
ପାଦଲାଗି ପାଷାଣ ଯେ ହୁଏ ଶତ ଭାଗ ।
ବନଚର ମୃଗ ଆଦି ଯେ ପଡ଼ନ୍ତି ଆଗ
ବେନିହାତେ ହାମ୍ପୋଡ଼ିସେ ଚାଲେ ବେଗ ବେଗ ।
ଅଇଶ୍ୱର୍ଯ୍ୟ ନାମେ ବନେ ପ୍ରବେଶ ହୋଇଲେ
କନ୍ଦମୂଳ ଫଳ ତହିଁ ଭକ୍ଷଣ ଯେ କଲେ ।
ପଥଶ୍ରାନ୍ତ ହୋଇ କୁନ୍ତୀଦେବୀ ଯେ ଶୋଇଲେ
ଯୁଧିଷ୍ଠି ପାର୍ଥ ମାଦ୍ରୀଜ ଅଶକତ ହେଲେ ।

ଶୋଇଲେ ସମସ୍ତେ ତହିଁ ଅଶକତ ହୋଇ
ଭୀମସେନ ବସିଅଛି ନିଦ୍ରା ଯେ ନ ପାଇ ।
ଝଙ୍କଡ଼ପୁର ବାସିନୀ ଦେବୀ ଗୋ ଶାରଳା
ଶୂଦ୍ରମୁନି ଶ୍ରୀ ଶାରଦା ଦାସ ତୋର ବଳା ।

—୦—

## ବିଶ୍ୱାମିତ୍ର ଚରିତ ଓ ଅଷ୍ଟବସୁଙ୍କର ବିବରଣ

ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଜତୁ ଘରୁ ପୁରୋଚନ ଗଲା ଯେ କେଣିକି ।
ଶବରୁଣୀ ପାଞ୍ଚ ପୁତ୍ର କଲେ ସେ କେମନ୍ତେ
ଏହା ସଂକ୍ଷେପି କହିବା ମୋତେ ତପୋବନ୍ତେ ।
ଅଗସ୍ତିଙ୍କ ପ୍ରତିବାକ୍ୟ ଶୁଣ ହୋ ରାଜନ
ଜତୁ ଗୃହକୁ ଦହନ କଲା ଭୀମସେନ ।
ଅଗ୍ନିର ସଙ୍ଗେ ସେ ପଡ଼ି ପୋଡ଼ି ମିଳାଇଲେ
ପୁରୋଚନ ପଣ୍ଡା ନାଶ ଗଲାକ ତହିଁରେ ।
ଜୟନ୍ତୀ ଶବରୁଣୀ ଯେ ପାଞ୍ଚପୁତ୍ର ଘେନି
ମହାନିଶାରେ ବହନ ହେଲେ ଗୃହେ ପୁଣି ।
ଶବରୁଣୀ ପାଞ୍ଚ ପୁତ୍ର ଘେନି ଷଡ଼ଜଣ
ତାଙ୍କ ସଙ୍ଗେ ପୁରୋଚନ ପଣ୍ଡା ଯେ ବ୍ରାହ୍ମଣ ।
ଏ ସାତ ଦହନ ହୋଇ ମଲେ ଜତୁ ଘରେ
ସମସ୍ତେ ବିନାଶ ହେଲେ ଅଗ୍ନିର ଭିତରେ ।
ଅଗସ୍ତି ବୋଲନ୍ତି ଶୁଣ ବୈବସ୍ୱତ ସୁନୁ
କହିଲେ ସଂଶୟ ହେଲା ତୁମ୍ଭ ଋଷିମନୁ ।
କେବଣ ପାପ ଏମାନେ କରିଥିଲେ ପୂର୍ବେ
ନିର୍ଦ୍ଦୋଷେ ଦହନ ହେଲେ କେବଣ ପ୍ରସ୍ତାବେ ।
ଏହା ଯେ କହିବା ହେଉ ମୋତେ ବିଜ୍ଞପତି
ଶୁଣିଲେ ମହାତ୍ମା ଫିଟିଯିବ ମନଭ୍ରାନ୍ତି ।
ବଦନ୍ତି ଅଗସ୍ତି ଶୁଣ ମନୁ ସାବଧାନେ
ପୂର୍ବ ଦୁଷ୍କୃତେ ଦହନ ହୋଇଲେ ଏମାନେ ।
ବିନ୍ଧ୍ୟକକ୍ଷ ଦେଶ ରାଜା ଗାଧି ନରପତି
ଯୁବା ବୟସେ ହୋଇଲେ ଏହୁ ଅଧିପତି ।
ଗାଧିର ନନ୍ଦନ ଜାଣ ବିଶ୍ୱାମିତ୍ର ରାଜା
ମଞ୍ଚରେ ନୃପତି ସେହୁ ଜାଣିଣ ବିଜୋଡ଼ା ।
ଦିଗବିଜେ କରଇ ସେ ସର୍ବ ଦ୍ୱୀପେ ପଶି
ସମସ୍ତ ରାକ୍ଷସଙ୍କୁ ସେ ପାରଇ ଆକ୍ରୋଶି ।
ପଦ୍ମେକ ରଥ ତାହାର ବେନିପଦ୍ମ ହସ୍ତୀ
ଚାରିସିନ୍ଧୁ ଅଶ୍ୱ ସାତ କ୍ଷଉଣୀ ପଦାତି ।
ଏତେକ ଘେନିଣ ରାଜା କରେ ଦିଗବିଜେ
ବନ ଗହନ ଦେଖିଣ ମାରଇ ଦନୁଜେ ।

ମକର ଶୁକ୍ଳପକ୍ଷ ନବମୀ ଯେ ତିଥି
ଦିଗବିଜେ କଲେ ବିଶ୍ୱାମିତ୍ର ନରପତି ।
ଅରଣ୍ୟେ ଦେଖଇ ରାଜା ଅନ୍ନ ପାଣି ନାହିଁ
ଦଶମୀ ଏକାଦଶୀରେ ନୋହି ଅବଗାହୀ ।
ତିନିଦିନ ଉତ୍ତାରେ ସେ ବନେ ଭ୍ରମନ୍ତେଣ
ଭେଟିଲେ ସେ ଋଷିବର ବଶିଷ୍ଠ ଆଶ୍ରମ ।
ଦେଖିଣ ବଶିଷ୍ଠ ତାଙ୍କୁ କଲେ ଅର୍ଘ୍ୟପୂଜା
ବୋଇଲେ ଏ ଶ୍ରମ କାହୁଁ ପାଇଥିଲେ ରାଜା ।
ରାଜା ପ୍ରତିବାକ୍ୟେ ଆମ୍ଭେ କଲୁ ବନବାସ
ମାଇଲୁ ଅନେକ ଦୁଷ୍ଟ ପିଶାଚ ରାକ୍ଷସ ।
ଅଶକତ ମୋଦେ ଚାଲି ନ ପାରନ୍ତି ବଳ
ତିନିଦିନ ହେଲା ପାଇନାହୁଁ ଅନ୍ନଜଳ ।
ଏସନକ ପ୍ରତିବାକ୍ୟ ବଶିଷ୍ଠ ବୋଇଲେ
ଏହିକଥା କର ନୃପ ମନକୁ ଅଇଲେ ।
ଆମ୍ଭଠାରେ ଅଛି ଅନ୍ନ ପୁଡ଼ାଏ ଭୋ ରାୟେ
ଗୋଟି ଚାରି ଭୁଞ୍ଜିଯାଅ ଇଚ୍ଛା ଯେବେ ହୋଏ ।
ବିଶ୍ୱାମିତ୍ର ବୋଲନ୍ତି ଯେ ବଳ ଅକ୍ଷୌହିଣୀ
ଏହାକୁ ଅନ୍ନ ବାଣ୍ଟିବ କେହ୍ନେ ମହାମୁନି ।
ବଶିଷ୍ଠ ବୋଇଲେ ଏଥେ ବସ ବିଶ୍ୱାମିତ୍ର
ସମସ୍ତେ ଭୁଞ୍ଜନ୍ତୁ ବସି ଯେତେ ଅଛି ଭାତ ।
ବନରୁ ଯେ ଶାଳପତ୍ର ଆଣନ୍ତୁ ପୁଡ଼ାଏ
ସମସ୍ତେ ସିଞ୍ଚନ୍ତୁ ଦନା ଗୋଟିଏ ଗୋଟିଏ ।
ସୁମନ୍ତକୁ ବୋଇଲେ ସେ ଦୁହିଁଦିଅ ଗାଇ
ବ୍ୟଞ୍ଜନ ନାହିଁ ଦେବାକ କ୍ଷୀର ସଙ୍ଗେ ନେଇ ।
ବଶିଷ୍ଠଙ୍କ ଭାରିଯା ଯେ ଅଟେ ଅରୁନ୍ଧତୀ
ପରମ ମାହେଶ୍ୱରୀ ସେ ରନ୍ଧନ କରନ୍ତି ।
ସାତ ଅକ୍ଷୌହିଣୀ ବଳ ଘେନି ସେ ପର୍ବତେ
ବସିଲେ ତିନି ଯୋଜନ ମାଡ଼ି ବିଶ୍ୱାମିତ୍ରେ ।
ବଶିଷ୍ଠ ଚେଲା ପାଞ୍ଚଶ ସହସ୍ର ଯେ ଶିଷି
ଅରୁନ୍ଧତୀ ଦିଅନ୍ତି ସେ ସମସ୍ତ ପରଷି ।
ଗାଈ ଗୋଟିକର ଦୁଧ ହାଣ୍ଡିକର ଭାତ
ଯାହାର ଯେତେକ ଇଚ୍ଛା ଭୁଞ୍ଜନ୍ତି ସମସ୍ତ ।
ଦିନ ଅର୍ଦ୍ଧେ ମଣୋହିରେ ରାଜା ବିଜେ କଲା
ଆଦିତ୍ୟ ଅସ୍ତ ସମୟେ ମଣୋହି ସରିଲା ।
ସମସ୍ତ ସଇନ୍ୟ ଭୁଞ୍ଜି ହୋଇଲେ ତୃପତି
ଆଚମନ ସାରି ବିଜେ କଲେ ନରପତି ।
କହୁଛନ୍ତି ବିଶ୍ୱାମିତ୍ର ଶୁଣିବା ମୁନି ହେ
ବଡ଼ ଆଶ୍ଚର୍ଯ୍ୟ ଦେଖିଣ ପଡ଼ିଲୁ ସନ୍ଦେହେ ।
ଗାଈ ଗୋଟିକର ଦୁଧ ହାଣ୍ଡିକର ଭାତ
ଏତେକ ଅଣ୍ଟିଲା ମୋର ଅକ୍ଷୌହିଣୀ ସାତ ।

ବଶିଷ୍ଠ ବୋଇଲେ ଶୁଣ ବିଶ୍ୱାମିତ୍ର ରାୟେ
ଆହୁରି ରହି ଅଛଇ ପଖାଳ ଗୁଡ଼ାଏ ।
ବିଶ୍ୱାମିତ୍ର ପ୍ରତିବାକ୍ୟ ଶୁଣି ତପୋନିଷ୍ଠ
ମୋତେ ଦେବା ହେଉ ତୁମ୍ଭ ଗାଈଗୋଟି ଶ୍ରେଷ୍ଠ ।
ସହସ୍ରେକ ଗାଭୀ ମୁହିଁ ଦେବଇଁ ତୁମ୍ଭଙ୍କୁ
ବଶିଷ୍ଠ ବୋଇଲେ କେହୁ ସମ୍ଭାଳିବ ତାଙ୍କୁ ।
ଏକା ଧେନୁ ହିଁ ଆମ୍ଭର ଅଟଇ ଯୁକତେ
ଥରେ ପ୍ରସବିଲେ ଦୁହୁଁ ମନୁ ପରିଯନ୍ତେ ।
ତୁ ମହାପଣ୍ଡିତ ରାଜା ଅଟୁ ବୁଦ୍ଧିମନ୍ତ
ବ୍ରାହ୍ମଣର ଗାଈ ତୁହି ହରିବୁ କେମନ୍ତ ।
ଶୁଣି ବିଶ୍ୱାମିତ୍ର ମହାରାଜା ତୁନି ହେଲେ
ଦୁଷ୍ଟ ଲୋକେ ନୃପତିଙ୍କୁ ଯାଇ ଶିଖାଇଲେ ।
ବନସ୍ତେ ଚାଲ ହୋ ଆମ୍ଭେ ଗୋପନରେ ଥିବା
ବନସ୍ତ ଭିତରୁ ଗାଈ ଅଡ଼ାଇଣ ନେବା ।
ଦୁଷ୍ଟଙ୍କ ବାକ୍ୟେ ସମ୍ମତ ବିଶ୍ୱାମିତ୍ର ରାଜା
ମୁଁ ଯେଣେ କହୁଛି ତେଣେ ଅଡ଼ାଇ ନିଅ ଯ । ।
ବନୁ ତୁମ୍ଭେ ଅଡ଼ାଇଣ ଘେନିଯାଅ ଗାଈ
ଗୁପତ କରିଣ ରାଜା କହିଦେଲେ ତହିଁ ।
ରାଜାର ବଚନେ ଚଳିଗଲେ ବୀର ଦୁଷ୍ଟେ
ଗାଈ କି ଭେଟିଲେ ଯାଇ ବୈତରଣୀ ତଟେ ।
ଅଡ଼ାଇ ନେବାକୁ ବୁଦ୍ଧି କଲେ ମହାରଥା
ଦୁଷ୍ଟଲୋକେ ଦେଖି କୋପ କଲେ ସେ ଗୋ ମାତା ।
କ୍ଷୀର ଖାଇ ରାବି କୋପ ବୃଷ୍ଟିରେ ଚାହାନ୍ତି
ଦେଖି ଦୁଷ୍ଟବୀରେ ମନେ ପାଇ ମହାଭୀତି ।
ଗୋମାତା କୋପେଣ ତାଙ୍କୁ ମାଇଲାକ ଶୃଙ୍ଗେ
ଫୁଟି ଅଶ୍ୱ ଯୋଦ୍ଧା ପଳାଇଲେ ଅତିବେଗେ ।
ସହସ୍ରେକ ଯୋଦ୍ଧା ଯାଇ ବେଢ଼ିଥିଲେ ଗାଈ
ରାଗେଣ ଗୋମାତା ତାଙ୍କୁ ମାଇଲେ ଗୋଡ଼ାଇ ।
ଋଷି ଯହୁଁ ଗାଈଗୋଟି ନ ଦେଲେ ମାଗନ୍ତେ
ଆସନ୍ତି ସମସ୍ତ ଦଣ୍ଡ ଘେନି ବିଶ୍ୱାମିତ୍ରେ ।
ଦେଖିଲେ ନୃପ ସହସ୍ର ଯୋଦ୍ଧା ଛନ୍ତି ପଡ଼ି
ସୁଖେ ଗୋ ମାତା ନଦୀରେ ପାଣି ପିଏ ଚରି ।
ଦେଖି କୋପେ ଆଜ୍ଞାଦେଲେ ବିଶ୍ୱାମିତ୍ର ରାଜା
ସମସ୍ତେ ଘେରି ଗାଈ କି ଅଡ଼ାଇ ଆଣ ଯା ।
ରାଜା ଆଜ୍ଞାରେ ଚଳିଲେ ଥାଟ ଅଶ୍ୱ ଗଜ
ରଥୀ ଯୋଦ୍ଧାଏ ଆବର ବଳିଷ୍ଠମ ନୁଜ ।
ଲକ୍ଷେ ପୁର କରି ଯାଇ ବେଢ଼ିଲେ ଗାଈ କି
ଗୋ ମାତାର କୋପ ବଢ଼ିଗଲା ସୈନ୍ୟ ଦେଖି ।
ବେନି ଶିଙ୍ଗ ହେଲା ତାର ପର୍ଶୁ ତୀକ୍ଷ୍ଣ କାତି
ନିଃଶ୍ୱାସ ବହିଲା ଧରି ଅଣଚାଶ ମୂର୍ତ୍ତି ।
ଖୁରା ହୋଇଲା ତାହାର ଅସି ବଜ୍ରମୁନା
ପିଠିର ଚର୍ମ ହୋଇଲା ତାର ବଜ୍ରସେହ୍ନା ।
ଶରୀର ଲୋମ ତାହାର ନାରାଚ ନିକର
ଗାଈ ଶରୀରରୁ ଶସ୍ତ୍ର ପଡ଼େ ନିରନ୍ତର ।
ନିଃଶ୍ୱାସ ପବନ ଘାଏ ଉଡ଼ିଯାନ୍ତି ଶରେ
ନିଃଶ୍ୱାସ ଛାଡ଼ନ୍ତେ ଦେବୀ ଅତି କୋପଭରେ ।
ଅନେକ ଦୂରେ ପଡ଼ିଲେ ବିଶ୍ୱାମିତ୍ର ସୈନ୍ୟେ
ଦେଖି ଚମତ୍କାର ହେଲେ ଯୋଦ୍ଧା ବୀରମାନେ ।
ପବନ କି ବହେ ଅଣଚାଶ ଖଣ୍ଡ ଘେନି
ଯେ ଯହିଁ ପଡ଼ିଲେ ଉଠି ନ ପାରି ବାହିନୀ ।
ସାତକ୍ଷୌଣୀ ବଳ ବିଶ୍ୱାମିତ୍ରଙ୍କର ଥିଲେ
ଏକା ଗୋମାତାର କୋପେ ସର୍ବେ ନାଶ ଗଲେ ।
ତେରଜଣ ଘେନି ରାଜା ଗଲା ଦୁଃଖ ପାଇ
ଭରଦ୍ୱାଜ ଆଶ୍ରମରେ ପ୍ରବେଶିଲେ ଯାଇଁ ।
ଭରଦ୍ୱାଜ ବୋଇଲେ ହୋ କହ ବିଶ୍ୱାମିତ୍ର
ବିପରୀତ ଦିଶୁଅଛି କିମ୍ପା ତୋର ଗାତ୍ର ।
କାହାର ତୁଳେ ତୁ ରାଜା କଲୁ ହୋ ବିବାଦ
ସମସ୍ତ ଭୁବନ ତୁହି କରିପାରୁ ସାଧ୍ୟ ।
ବିଶ୍ୱାମିତ୍ର କହିଲେ ଯେ ବଶିଷ୍ଠଙ୍କ କଥା
ଲୋଭେ ଆଣି ଲୋଡ଼ିଲି ମୁଁ ତାହାର ଗୋ-ମାତା ।
ଅନେକ ରାଜାଙ୍କୁ ମୁହିଁ ଜିଣିଲି ସଂଗ୍ରାମେ
ଗୋ ମାତା ନାଶକଲା ମୋ ସୈନ୍ୟ ଅନୁକ୍ରମେ ।
ରାଜ୍ୟ ବିତ୍ତ ଶସ୍ତ୍ରବଳ ନୁହଇ ସର୍ବଥା
ଧର୍ମ ତପବଳେ ଲୋକ ହୁଏ ବଳବନ୍ତା ।
ପୋଡୁ ଏ ରାଜ୍ୟ ମୋହର ନାହିଁ ପ୍ରୟୋଜନ
ଯିବଇଁ ମୁଁ ଦେଶାନ୍ତର ହେବି ତପୋଧନ ।
ସମସ୍ତ ତେଜ୍ୟା କରି ସେ ନୃପେ କଲା ଇଚ୍ଛା
ପଶିଲାକ ଧର୍ମ ବ୍ରହ୍ମପଦ କରି ବାଞ୍ଛା ।
ମହାଘୋର ତପେ ବସି ବିଶ୍ୱାମିତ୍ର ସୁନୁ
ଆଶ୍ରମେ ପଶି ଫିଟାଇ ନେଲେ କାମଧେନୁ ।
ରଜନୀ ପ୍ରଭାତେ ମୁନି ନ ଦେଖି ଆଶ୍ରମେ
ଖୋଜି ଖୋଜି ନ ପାଇଲେ ଘୋର ତପୋବନେ ।
ବିଶ୍ୱାମିତ୍ର କହନ୍ତି ଯେ ଅଷ୍ଟବସୁ ଚାହିଁ
ବଶିଷ୍ଠଙ୍କ କାମଧେନୁ ଆଣ ଯେ ଚୋରାଇ ।
ରାଜଋଷିର ବଚନେ ଗଲେ ଅଷ୍ଟବସୁ
ବଶିଷ୍ଠ ଗାଈ ଦେଖିଲେ ବନରେ ଯେ ପଶୁ ।
ଚଉର୍ଯ୍ୟ ଭାବକୁ ବହି ଗଲେ ନିଶାକାଳେ
ଆଶ୍ରମେ ପଶି ଫିଟାଇ ନେଲେ ବାହୁବଳେ ।
ରଜନୀ ପ୍ରଭାତେ ମୁନି ନ ଦେଖି ଆଶ୍ରମେ
ଖୋଜି ଖୋଜି ନ ପାଇଲେ ଘୋର ତପୋବନେ ।

ଦୁହିଁବାକୁ ଲୋଡ଼ିଲେ ଯେ ତହିଁ ଗାଈ ଗୋଟି
ଭ୍ରମି ଚଉକତି ଲୋଡ଼ି ଲୋଡ଼ି ଶ୍ରମେ ଫୁଟି ।
ଅନେକ ଶ୍ରମ ପାଇ ସେ ଲୋଡୁଛନ୍ତି ଗାଈ
ବସୁ ବୋଇଲେ ଏମନ୍ତେ ନେବା ଯେ କିମ୍ପାଇଁ ।
ମହାମନ୍ତ୍ର ଉଚ୍ଚାରିଲେ ତହିଁ ଅଷ୍ଟ ଭାଇ
ଆପେ ଆଗ ହେଲେ ପଛେ ଗୋଡ଼ାଇଲେ ଗାଈ ।
ଦ୍ୟୁମନୁ ପର୍ବତ ଶିଖେ ବାନ୍ଧିଲେକ ଗାଈ
ଗଣ୍ଡା ଗୋଟିଏ ଆଣିଲେ ମାରି ଅଷ୍ଟ ଭାଇ ।
ଶଉରୀ ପାକରେ ପୋଡ଼ି ତାହାର ଯେ ମାଂସ
ଗାଈଠାରୁ ଦୁହିଁଲେ ସେ ଅମୃତ ଗୋରସ ।
ଅଷ୍ଟଭାଗ କରି ତାକୁ ଭୁଞ୍ଜି ଅଷ୍ଟ ଭାଇ
ଏ ସମୟେ ବଶିଷ୍ଠ ଯେ ଗାଈ ଖୋଜି ଯାଇ ।
ଗାଈ ଲୋଡ଼ି ଲୋଡ଼ି ଯାଉଅଛନ୍ତି ବଶିଷ୍ଠେ
ଭେଟିଲେ ଗାଈ ଦ୍ୟୁମନୁ ଗିରିବର ପୃଷ୍ଠେ ।
ଧାଇଁ ଯାଇ ତା କତିରେ ବସି ବ୍ରହ୍ମଚାରୀ
ଆଶ୍ୱାସି ଗାଈର ଫେଡ଼ି ଦିଅନ୍ତି ଦଉଡ଼ି ।
ପର୍ବତ ଉପରୁ ଧାଇଁ ଆସି ଉମା ବସୁ
ବଶିଷ୍ଠଙ୍କୁ ପ୍ରହାରିଲେ ଘେନିଣ ପରଶୁ ।
ପରଶୁ ଘାତରେ ମୁନି ମହାବ୍ୟଥା ପାଇ
ରାଗେଣ ବୋଇଲେ ଅଶ୍ୱ ତୁହି ହୁଅ ଯାଇ ।
ଅନିଳବସୁ ଧାଇଁଲା କରେ ଯଷ୍ଟି ଧରି
ପିଟିଲା ସେ ବଶିଷ୍ଠଙ୍କୁ ମହାକୋପ କରି ।
ବଶିଷ୍ଠ କୋପେ ବୋଇଲେ ଏହିକ୍ଷଣି ତୁହି
ଅନ୍ଧ ହୋଇ କଷ୍ଟେ ଏହି ବନେ ଥାଅ ରହି ।
ପ୍ରିୟବସୁ ବଶିଷ୍ଠଙ୍କୁ ପକାଇଲେ ପେଲି
କୋପେ ବଶିଷ୍ଠ ବୋଇଲେ ଯିବ ତୁମ୍ଭେ ଜଳି ।
ଶୁଦ୍ଧାଙ୍ଗ ସିଦ୍ଧାଙ୍ଗ ବିଜ୍ଞ ଋଷଭ ବସନ୍ତ
ବ୍ରହ୍ମଙ୍କ ବସୁଙ୍କୁ ଘେନି ଏହି ପଞ୍ଚ ଭ୍ରାତ ।
କୋପେ ଯଷ୍ଟି ପ୍ରହାରିଲେ ବଶିଷ୍ଠଙ୍କ ଶିରେ
କୋପଭରେ ମହାଶାପ ଦେଲେ ମୁନିବରେ ।
ତୁମ୍ଭେ ପାଞ୍ଚଭାଇ ଜାତ ହେଲା ମାତ୍ରେ ମର
ଶାପ ପାଇ ଅପସରି ଗଲେ ଅଷ୍ଟ ବୀର ।
ପୁଣି ମୁନିଙ୍କି କହିଲେ ସେ ବିନୟ କରି
ବିଶ୍ୱାମିତ୍ରଙ୍କ କଥାରେ କଲୁ ଗୋରୁ ଚୋରି ।
କେମନ୍ତ ମୁକତି ହେବୁ କହ ମୁନିବର
ବଶିଷ୍ଠ ବୋଇଲେ ଚୋରି କଲ ଗୋରୁ ମୋର ।
ଉମା ବସୁ ଗଙ୍ଗା ଗର୍ଭେ ଜନ୍ମ ଭୀଷ୍ମନାମେ
ଯୁଧିଷ୍ଠି ନିମନ୍ତେ ଦେହ ଛାଡ଼ିବ ସଂଗ୍ରାମେ ।
ଦାର ଗ୍ରହଣ ନ କରି ହୋଇବ ବୈଷ୍ଣବ
ତେବେ ଯାଇ ଏ ଶାପରୁ ମୁକତି ପାଇବ ।
ଅନିଳ ବସୁ ହେ ଅନ୍ଧ ହୋଇଥିବ ପଡ଼ି
ଯୁଧିଷ୍ଠିର ଦରଶନେ ଶାପୁ ଯିବ ତରି ।
ପ୍ରିୟବସୁ ପୁରୋଚନ ପଣ୍ଡା ବୋଲାଇବ
ପାଣ୍ଡବଙ୍କୁ ଦ୍ରୋହ ପାଇଁ ଆପେ ନାଶ ଯିବ ।
ଏ ପଞ୍ଚ ବସୁ ହୋଇବ ଗଙ୍ଗା ଗର୍ଭେ ଜାତ
ଶିର ଛେଦନ କରିବ କୋପେ ଗଙ୍ଗା ମାତ ।
ଶବରୁଣୀ ଗର୍ଭେ ଜନ୍ମି ଏହି ପାଞ୍ଚ ଭାଇ
ଜତୁଗୃହେ ରହିଥିବେ ମାତା ସହ ଯାଇ ।
ପୁରୋଚନ ସହିତରେ ଯିବେ ଏହୁ ଜଳି
ଶାପରୁ ମୁକତ ହୋଇ ସ୍ୱର୍ଗେ ଯିବେ ଚଳି ।
ବଶିଷ୍ଠଙ୍କ ଶାପ ପାଇ ସେହି ପଞ୍ଚବସୁ
ଜତୁ ଗୃହରେ ଶରୀର କଲେ ଜାଣ ପାଂଶୁ ।
ଅନିଳ ଅନ୍ଧ ହୋଇଣ ପଡ଼ିଅଛି ବନେ
ସେହି ମୁକତି ହୋଇବ ଯୁଧିଷ୍ଠି ଦର୍ଶନେ ।
ମହାଭାରତ ଯୁଦ୍ଧରେ ଭୀଷ୍ମ ମହାତେଜା
କରିବେ ସେ ପାଣ୍ଡବଙ୍କ ହିତେ ଶରଶଯ୍ୟା ।
ଏମନ୍ତେ ଅଟନ୍ତି ଅଷ୍ଟ ବସୁ ଗାଈ ଚୋର
ପାଣ୍ଡବଙ୍କ ନିମନ୍ତେ ଏ ତେଜିବେ ଶରୀର ।
ବଶିଷ୍ଠଙ୍କ ଶାପରୁ ସେ ହୋଇବେ ମୁକତ
ଯୁଧିଷ୍ଠିଙ୍କ କାର୍ଯ୍ୟେ ହେବ ଏହାଙ୍କର ହିତ ।
ଶୁଣିଣ ସନ୍ତୋଷ ହେଲେ ମନୁ କନ୍ଧ ରାଜା
ଅଗସ୍ତିଙ୍କ ପାଦପଦ୍ମେ କରେ ଅର୍ଘ୍ୟ ପୂଜା ।
ସାଧୁ ପଣ୍ଡିତ ତୁମ୍ଭେ ହେ ମହାତ୍ମା ଅଗସ୍ତି
ଏ ଅମୃତ ମହାରସ ପାନେ ହେଲା ଗତି ।
ଏସନ ସମସ୍ତେ ହେଲେ ଅନଳେ ଦହନ
ଗୋପନେ ପାଣ୍ଡବମାନେ ଗଲେ ଘୋର ବନ ।
ଏଥିର ବାରତାମାନ ପାଇ କୁରୁପତି
କିସ ବୋଇଲା ସଭାରେ କହ ମହାଯତି ।

—୦—

## ପାଣ୍ଡବଙ୍କ ମୃତ୍ୟୁବାର୍ତ୍ତା ଶୁଣି ଧୃତରାଷ୍ଟ୍ର ପ୍ରଭୃତିଙ୍କର ପ୍ରେତକ୍ରିୟା ସମାଧାନ

ବଦନ୍ତି ଅଗସ୍ତି କୁମ୍ଭ ଋଷିଙ୍କର ସୁନୁ
କଲୁଷ ଧ୍ୱଂସନେ ଶୁଣ ବୈବସ୍ୱତ ମନୁ ।
ରାତ୍ରେ ଯହୁଁ ଜତୁ ଗୃହ ହୋଇଲା ଦହନ
ପଳାଇଲେ ଝିମଶାଳେ ଥିଲେ ଯେତେ ଜନ ।
ସମାରୋହେ ଆସ୍ଥାନରେ ବିଜେ କୁରୁପତି
କରପତ୍ର ଯୋଡ଼ି ତହିଁ ଡଗରା ଜଣାନ୍ତି ।
ସ୍ୱାମୀ ପାଣ୍ଡବେ ଯେ ଥିଲେ ଜତୁଗୃହେ ରହି
ଆଜ ରାତ୍ରରେ ଦହନ ହେଲେ ସର୍ବେ ତହିଁ ।

ପୁରୋଚନ ପଣ୍ଡା ଦେବ ସଙ୍ଗେ ଶୋଇଥିଲା
ତାହାଙ୍କ ସଙ୍ଗରେ ସେହି ଦହନ ହୋଇଲା ।
ଏସନ ବଚନ ଶୁଣି ରାଜା କୁରୁପତି
ମୂର୍ଛାଗଲେ ପଡ଼ିଲା ସେ ମାନଚକ୍ରବର୍ତ୍ତୀ ।
ଦୁଃଶାସନ ଦୁର୍ଜୟ ଏ ଆଦି ଶତ ଭ୍ରାତ
ଶସ୍ତ୍ର ପକାଇ ପଡ଼ିଲେ ହୋଇ ମୂର୍ଚ୍ଛାଗତ ।
ଭୂରିଶ୍ରବା ଅଶ୍ୱତ୍ଥାମା ଭୀଷ୍ମ ମହାରଥ
ଶଲ୍ୟ କୃପ ସହିତରେ କର୍ଣ୍ଣ ବଳବନ୍ତ ।
କେଶବାସ ଅସମ୍ଭାଳେ ଅଚେତନ ରାୟେ
ଶୋକ କରନ୍ତି ଗାନ୍ଧାରୀ ଦୁର୍ଯ୍ୟୋଧନ ମାଏ ।
ହା ପୁତ୍ର ବୋଲି ରୋଦନ କରେ ଧୃତରାଷ୍ଟ୍ର
ଏତେ କାଳେ ଧାତା ଆଣିଦେଲୁ ଏତେ କଷ୍ଟ ।
ପୁତ୍ରଙ୍କୁ ପାଇଲି ମୁହିଁ ପଣ୍ଡୁର ଅଭାବେ
ପ୍ରମାଦେ ଭୟେ ଥୋଇଲି ନେଇ ଅନ୍ୟ ଠାବେ ।
ଜଗତମୋହନ ବାବୁ ତୋର ରୂପଗୋଟି
ଅନାଥ ବନ୍ଧୁ ସୋଦର ସଙ୍ଗତେ ଯୁଧିଷ୍ଠି ।
ଅଜାତ ଶତ୍ରୁ ସର୍ବଜ୍ଞ ସାକ୍ଷାତରେ ଧର୍ମ
ଆରେ ବାବୁ ମୋର ଭୀମ ଆରେ ଅରଜୁନ ।
ବୁଦ୍ଧିମନ୍ତ ବଳବନ୍ତ ଧର୍ମବନ୍ତ ଜ୍ଞାତା
ତ୍ରୈଲୋକ୍ୟ ଅଭୟ ବାବୁ ତୁମ୍ଭେ ରଣଜେତା ।
ଅନାଥର ନାଥ ମୋର ଅନ୍ଧର ଲଉଡ଼ି
ଏକେ ଅନ୍ଧ ପାଳିଥିଲି ଦୁଃଖକଷ୍ଟେ ପଡ଼ି ।
ପାଣ୍ଡବାସୁର ମାରିଣ ଉଦ୍ଧରିଲା ବଂଶ
ପାଣ୍ଡବ ନାମ ତୁମ୍ଭଙ୍କୁ ଦେଲେକ ତ୍ରିଦଶ ।
ହା ହା ନନ୍ଦନ ମୋହର କେଉଁ ଗତି କଲ
ଗଭୀର ସମୁଦ୍ରେ ମୋର ଭେଳା ବୁଡ଼ାଇଲ ।
ଦୁଃଖୀର ସଙ୍ଖାଳି ମୋର ପ୍ରାଣ ପଞ୍ଚଭୂତ
ମୁଁ ତୁମ୍ଭ ଆପଦ ଘେନି ଯାଇ କି ନା ପୁତ୍ର ।
ଦେବଲୋକରେ ତ ତୁମ୍ଭେ ହୋଇଥିଲ ଜନ୍ମ
କେଉଁ ପାପ ଦୋଷେ ନାଶଗଲା ଏଡ଼େ ଧର୍ମ ।
ବାବୁ ମୋହର ନନ୍ଦନ ଅର୍ଜୁନ ଫାଲଗୁନି
ନାମ ଗୋଟି ଦେଲେ ତୋତେ କୃଷ୍ଣକୋଳ ଘେନି ।
ଏହି ଜୀବନେ ଆବର ଦୁଃଖ ପରେ ଦୁଃଖ
ମୁହିଁ ଚାଣ୍ଡାଳ ବର୍ତ୍ତିବି ଚାହିଁ କାହା ମୁଖ ।
ବାଳଭାବ ଛାଡ଼ି କ୍ରମେ କ୍ରମେ ହୋଇ ଯୁବା
ସଞ୍ଚିତ କୁଳ ବୁଡ଼ାଇ କେଣେ ଗଲ ବାବା ।
ରୋଦଇ ଗାନ୍ଧାରୀ ଦେବୀ ଧୃତରାଷ୍ଟ୍ର ରାଣୀ
ଭୂମିରେ ଗଡ଼ଇ ଦେବୀ ବଜ୍ରାଘାତ ଜାଣି ।
ପୁତ୍ର କଷ୍ଟେ ମୋ ଶରୀର ହୁଅଇ ବିଦାରି
ପୋଡୁ ପୋଡୁ ମୋର ଦେହ କିମ୍ପା ଥିବି ଧରି ।

ଅନ୍ଧପଟଳ ବାନ୍ଧିଲି ନ ଦେଖିବି ଦୁଃଖ
କଷ୍ଟର ଉପରେ କଷ୍ଟ ଦେଲୁ ଚତୁର୍ମୁଖ ।
ଆରେ ମୋହର ନକୁଳ ଆରେ ସହଦେବ
ସୁଲକ୍ଷଣ ସୁବୁଦ୍ଧି ତୁ ଅମର ସ୍ୱଭାବ ।
ବାବୁ ତୋହର ଚାଲନ୍ତେ ଶୋହେ ମଞ୍ଚପୁରୀ
ଆସନେ ବସୁଁ ଯେସନେ ଶୋହେ ଅମରାରି ।
ପ୍ରମାଦ ଡରେ ତୁମ୍ଭଙ୍କୁ ଲୁଚାଇଲୁ ନେଇ
ଏବେ ନାଶ କଲି ତହିଁ ହୀନବୁଦ୍ଧି ହୋଇ ।
ଆମ୍ଭର ମରଣ ହୋଇଥାନ୍ତା ତୁମ୍ଭ ଆଗେ
ଆଗ ତୁମ୍ଭର ମରଣ ହେଲା ମନ୍ଦଭାଗ୍ୟେ ।
ନିର୍ଲ୍ଲଜ ଆତ୍ମା ନ ଫୁଟେ କିମ୍ପା ପୁତ୍ର ଶୋକେ
ପତ୍ନୀ ଭର୍ତ୍ତା ବଳ ଦେବୁ ଏବେ ପୁତ୍ର ମୁଖେ ।
ପୁତ୍ରେ କିମ୍ପା ନାଶ ଗଲେ ମାତା ପିତା ଥାଉଁ
ଭୋ ଦେବି ପୁରୁଷ ଏହା ଭିଆଇଲୁ କାହୁଁ ।
ଆଗୋ କୁନ୍ତୀ ତୁ ମୋହର ଅଟୁ ପ୍ରାଣସଖୀ
ତୋ ପୁତ୍ରହୁଁ ଅଧିକ ତୁ ମୋ ପୁତ୍ରଙ୍କୁ ଦେଖି ।
ମୁହିଁ ତ ବସିଅଛି ଗୋ ହୋଇଣ ଅନ୍ଧୁଣୀ
ଏ ପଞ୍ଚକଟକେ ସିନା ତୁହି ଠାକୁରାଣୀ ।
କାହାକୁ ସମର୍ପିଗଲୁ ଏଡ଼େକ ସମ୍ପଦ
ମେଣ୍ଟି ନ ପାରିଲୁ ତୁହି କର୍ମର ବିପଦ ।
ଦରାଣ୍ଡି ହୋଇଣ ଅନ୍ଧ ବାହାରକୁ ଆସି
ଅଗାଧ ଜଳେ ପଶିବି ଏ ଶରୀର ଝାସି ।
କେ ମୋତେ ଏଥୁ କଢ଼ାଇ ନେବ ଜତୁଘରେ
ଅନ୍ଧ ଅନ୍ଧୁଣୀ ମରିବୁ ପୁଅଙ୍କ ସଙ୍ଗରେ ।
ଦୁର୍ଯ୍ୟୋଧନ ବୋଲେ ତାତ ଶୋକ ନ କରିବା
ଦହନ ଶରୀର କାହୁଁ ଲୋଡ଼ିଲେ ପାଇବା ।
ତୁହି ତାହାଙ୍କର ଗୁଣ ନ ଜାଣୁ କି ପିତା
ଆମ୍ଭଙ୍କୁ ମାଇଲା ବାଟେ ପାଣ୍ଡବ ଦଇତା ।
ନଦୀରେ ପଶି ବୁଡୁଛି ଖାଇବ ସବୁହିଁ
ଏମନ୍ତବେଳେ ଉଠିଲେ ଯାଇ ପାଞ୍ଚଭାଇ ।
ମୁଁ ତାଙ୍କଠାରେ ଅନେକ କରିଅଛି ପାପ
ତାହା ସୁମରିଲେ ହୃଦେ ବଢ଼େ ଅନୁତାପ ।
ଯୁଦ୍ଧରେ ମାଇଲା ସେହି ପାଣ୍ଡବ ଦୈତ୍ୟଙ୍କୁ
ଅମୃତ ଦେଇଣ ଜିଆଇଲେ ସେ ଆମ୍ଭଙ୍କୁ ।
କଲା ଉପକାର ଯେ ନ ସୁମରନ୍ତି ଜନ
ଅବଶ୍ୟ ସେ ନରକରେ ହୁଅନ୍ତି ପତନ ।
ଏସନ ସଖା ଅନ୍ତର ନ ଧରନ୍ତି ହୃଦେ
ଜରା ମାଇଲା ଆମ୍ଭଙ୍କୁ ଖେଳର ବିନୋଦେ ।
ଦ୍ରୋଣ ବାକ୍ୟେ ଉଦ୍ଧାରିଲେ ଆମ୍ଭଙ୍କୁ ସେ କାଳେ
କହୁଁ କହୁଁ ଦୁର୍ଯ୍ୟୋଧନ ପଡ଼େ ମହୀତଳେ ।

ଶୋକେ ପଡ଼ି ମଧ୍ୟେ ଧୃତରାଷ୍ଟ୍ର ଧାର୍ତ୍ତରାଷ୍ଟ୍ରି
କାନ୍ଦେ ଧୃତରାଷ୍ଟ୍ର ତହିଁ ହେଉ ଘୋଡ଼ା ଲୋଟି ।
ଶତ ଭାଇଙ୍କର ଶୋକ କହି ତ କେ ପାରେ
ନିର୍ଘାତ ବାଣ ପଡ଼େ କି ସବୁରି ଶରୀରେ ।
ପାଣ୍ଡବ ବିହୂନେ ମୋର ଜୀବନେ କି ଆଶ
ଏହିକ୍ଷଣି ମୋତେ କିଏ ଦିଅନ୍ତା କି ବିଷ ।
ଦେହ ମିଳାଉ ଅର୍ଜ୍ଜୁନ ଦହନକୁ ଶୁଣି
ତୁମ୍ଭ ଅଭାବେ ନିର୍ମାଖି ହୋଇଲି ମୁଁ ପୁଣି ।
ଦଶଦିଗ ଅନ୍ଧକାର ହେଲା ମୋତେ ଆସି
କାହା ସମର୍ଥ ଦେଖିବୁଁ ଆଖଡ଼ାରେ ପଶି ।
କି ଅବା ଚନ୍ଦ୍ର କିରଣ ରାହୁ ନାଶକଲା
ଉର ଶିର ଦୁର୍ଯ୍ୟୋଧନ ପାଷାଣେ କୋଡ଼ିଲା ।
କୋଳ କରିଣ ଗାଙ୍ଗେୟ ଧରିଛନ୍ତି ଭିଡ଼ି
ଦୁଃଶାସନକୁ ଅଛନ୍ତି ଭୁରିଶ୍ରବା ଧରି ।
ସଞ୍ଜୟ ଧରିଅଛଇ ଅନ୍ଧ ରାଜନକୁ
ରାଧା ଧରିଛି ଗାନ୍ଧାରସେନ ଦୁହିତାକୁ ।
ବିଦୁର ମହାତ୍ମା କହେ ତାହାକୁ ପ୍ରବୋଧି
ରୁହ ଦୁର୍ଯ୍ୟୋଧନ ଶୋକ ନ କର ଅବଧି ।
ଆମ୍ଭ ଦେହ ନ ସହଇ ତୋର ଶୋକ ଦେଖି
ପାଣ୍ଡବେ ଆସିବେକି ତୁ ଶୋକେ ହେଲେ ଦୁଃଖୀ ।
ସମସ୍ତେ ହିଁ ମରିବା କି ପାଣ୍ଡବଙ୍କ ପାଇଁ
କେ ଆଣିପାରିବଟି କି ପାଣ୍ଡବେ ଜୀଆଇଁ ।
କରନ୍ତି ଯେ ଅପ୍ରମିତ ଶୋକ ତହିଁ ମିଳି
ବ୍ରହ୍ମାଣ୍ଡ ଉଛୁଳିଅଛି ଅସଂଖ୍ୟ ବୋବାଳି ।
ଦେଶେ ଦେଶେ ବୁଲିଲେ ଯେ ଏଡ଼େ ସୁଖ ଭୋଗ
ଛାଡ଼ିଲେ ଗୃହ ଜଞ୍ଜାଳ ଆଶ୍ରା କଲେ ଯୋଗ ।
ସୋଦର ନିଧନ କଷ୍ଟେ ଅନେକ ବୋବାଳି
କେ ଏଥେ ରହିବ ମରୁଛନ୍ତି ଆଜି କାଲି ।
ଭାଗ୍ୟବନ୍ତ ପାଣ୍ଡବ ସେ ଅତି ପୁଣ୍ୟଦେହୀ
କାହାର କିଛି ନ ଦେଖି ଧର୍ମେ ଗଲେ ସେହି ।
କେ ଆଗେ କେ ପଛେ ଯାଇ ଏସନ ସଂସାର
ଏଥିପାଇଁ ଶୋକ କିମ୍ପା କରୁ ବାରମ୍ବାର ।
ବହୁତ ପକ୍ଷୀକି କିମ୍ପା ଅର୍ଗଳି ଦେଉଛ
ଆମ୍ଭେ ହିଁ ମରିବା ବୃଥା ଶୋକ କରୁଅଛ ।
ଆମ୍ଭର ଶୋକ କରିବା ନୁହଇଟି ଭଲ
ଶୋକ କଲେ ପରରାଷ୍ଟ୍ରେ କଳିବେଟି ବଳ ।
ଅଗସ୍ତି କହନ୍ତି ଶୁଣ ମନୁ ନରପତେ
ଦ୍ରୋଣ ଗୁରୁ ଥିଲେ ରହି ତ୍ରିପୁରା ପର୍ବତେ ।
ଦେଶାଉର ମୁଖୁଁ ଶୁଣି ପାଣ୍ଡବ ନିଧନ
ତପ ଧର୍ମ ଉପେକ୍ଷିଣ କରନ୍ତି ଗମନ ।

ପ୍ରବେଶ ହୋଇଲେ ଯାଇଁ ହସ୍ତିନା ଭୁବନେ
ଦେଖିଣ ବିରସ ଭରଦ୍ୱାଜଙ୍କ ନନ୍ଦନେ ।
ଲୁହେ ଜରଜର ହୋଇଅଛି ଚକ୍ଷୁ ବେନି
ଦ୍ରୋଣ ଗୁରୁ ବୋଲି କେହି ନ ପାରିଲେ ଚିହ୍ନି ।
ବିଦୁରଙ୍କୁ ଦ୍ରୋଣ ଗୁରୁ ପୁଚ୍ଛନ୍ତି ଏକାନ୍ତେ
ପାଣ୍ଡବେ ବିନାଶ ଗଲେ କେମନ୍ତେ ତୋ ଥାନ୍ତେ ।
ସେ ବୋଇଲେ ଭୀମ ଦୁଃଶା ହୋଇଲେ ଅପ୍ରୀତି
ପୁତ୍ରଙ୍କୁ ଘେନିଣ ଅପସରି ଗଲେ କୁନ୍ତୀ ।
ବାରୁଣାବନ୍ତରେ ରହିଥିଲେ ଯାଇ ସୁତେ
ପ୍ରମାଦ ପଡ଼ିଲା ତାଙ୍କୁ କର୍ମର ଆୟତ୍ତେ ।
ବିଦୁରଠାରୁ ବିନାଶ ବାକ୍ୟ ଗୁରୁ ଶୁଣି
ମୂର୍ଚ୍ଛାହୋଇ ପଡ଼ିଗଲେ ପାର୍ଥ ଗୁଣ ଗୁଣି ।
ଧାଇଁ ଯାଇଁ କୋଳ କଲେ ପୁତ୍ର ଅଶ୍ୱତ୍ଥାମା
ଅଚେତନ ହୁଅ କିମ୍ପା ଆହେ ମହାତମା ।
ବିଦୁର ବୋଇଲେ ସ୍ଥିର ହୁଅ ସ୍ଥିର ହୁଅ
ପଣ୍ଡିତ ହୋଇଣ ଗୁରୁ କିମ୍ପା କର କୋହ ।
ପଳାଇବା ଲୋକ ପାଇଁ ବିକଳ ହୋଇବା
ଦୂତ ବରଗି ଆଣିବି ଆପେ ବା ଆଣିବା ।
ସବୁ ଅଛଇ ଯଦ୍ୟପି ପ୍ରାଣଗଲା ଛାଡ଼ି
ତହିଁକି ଫଳ ହୋଇବ ମହୌଷଧି ଲୋଡ଼ି ।
ଅଗ୍ନି ଦହନରେ ଯେହୁ ହେଲା ଭସ୍ମ ସାତ
ତହିଁକି ଶୋକ କରିବା କେବଣ ବିହିତ ।
ଦହନ ପୁରୁଷ ଯାକୁ ଗ୍ରାସିଲା ଦହନେ
ତହିଁ ପାଇଁ ଶୋକ କର କେବଣ କାରଣେ ।
ରହ ରହ ଗୁରୁଦେବ ଛାଡ଼ ମନୁ ଶୋକ
କିସ ମୁହିଁ ବୁଝାଇବି ନୁହ ତୁମ୍ଭେ ମୂର୍ଖ ।
ଛାଡ଼ ହେ ଗୁରୁ ସକଳ ଶୋକ ମୋହ ଚିନ୍ତା
ସ୍ଥିର ହୋଇ ରହଇ କି ସଳିଳ ବହନ୍ତା ।
କାଳ ବୋଲି ଜାଣ ସେହି ଯେବଣ ପୁରୁଷ
ନିର୍ଦ୍ଦୟ ନିରପେକ୍ଷ ସେ ଅଟଇ ଅଦୃଶ୍ୟ ।
ତାହାକୁ କେ ଜିଣିବାକୁ ଅଛି ସାମରଥ
ଜାଣି ରାଜ୍ୟଭାର ଛାଡ଼ିଦେଲେ ବିଶ୍ୱାମିତ୍ର ।
ସର୍ବଜନ ପରିତ୍ୟାଗୀ ହେଲେ ବଇରାଗୀ
ଦ୍ୱନ୍ଦ୍ୱ ତେଜି ତପେ ମଜ୍ଜିହେଲେ ମହାଯୋଗୀ ।
ଅଗସ୍ତି କହନ୍ତି ମନୁ ନୃପତି ଶୁଣନ୍ତି
ବିଦୁରଙ୍କ ହୃଦୟରେ ଉପୁଜିଲା ଭୀତି ।
ରାତ୍ରେ ଗୋପନରେ ମିଳି ସୁରନଦୀ କୂଳେ
ଦେଖିଲେ ନାବିକ ବସିଅଛି ରାତ୍ରକାଳେ ।
ବିଦୁରଙ୍କୁ ଦେଖି ପାଦେ ପ୍ରଣମି ନାବିକ
ନବ ବର୍ଷ ହେଲା ନିଦ୍ରା ନାହିଁ ମୋର ଦେଖ ।

ବିଦୂର ବୋଇଲେ ରାତ୍ରେ କରିଛୁ କି ପାରି
କହ ହୋ ନାବିକ ମୋର ଆଗେ ସତ କରି ।
ନାବିକ ବୋଇଲା ଦେବ କାଲି ରଜନୀରେ
ପାଞ୍ଚଜଣ ଏକ ନାରୀ ଥିଲେ ଏ ବିବରେ ।
ମୋତେ ଦେଖିଣ ହୁଅନ୍ତେ ବିବରେ ଗୋପନ
ମୁଁ ଯାଇଁ ବୋଇଲି ଶୁଣ ମୋହର ବଚନ ।
ବିଦୂର ମହାତ୍ମା ମୋତେ ଧନ ରତ୍ନ ଦେଇ
ନବବର୍ଷ ହେଲା ଏଥେ ଅଛନ୍ତି ଜଗାଇ ।
ଦିବସରେ ଶୁଏ ମୋର ରାତ୍ରେ ନିଦ୍ରା ନାହିଁ
ନାବରେ ବସିଲେ ନାବ ନେବି ମୁହିଁ ବାହି ।
ସମସ୍ତେ ବସିଲେ ଜଣେ ତା ମଧ୍ୟରେ ମୋଟା
ତାହାର ହସ୍ତରେ ଥିଲା ଗଦା ବେନିଗୋଟା ।
ସେ ବସନ୍ତେ ନାବ ଗୋଟି ହେଲା ଟୁବୁ ଟୁବୁ
ମୁଁ ବୋଇଲି ଏ ଜଣକ ରହୁ ପଛେ ବାବୁ ।
ତା ମଧ୍ୟେ ଜଣେ ବୋଇଲା ଗଦା ଫିଙ୍ଗି ଜଳେ
ଗଦାକୁ ଫିଙ୍ଗିଦେଇ ସେ ବସିଲା ନାବରେ ।
ମଝି ନଈରେ ହୁଅନ୍ତେ ନାବଗୋଟି ଯାଇ
ଜଳପ୍ରଭା ବାହାରିଲା ଦେ ଦେ ବୋଲି କହି ।
ସେ ଡେଇଁପଡ଼ିଲା ଜଳେ ଗିଳିଲା କୁମ୍ଭିରୀ
ଏ ପଞ୍ଚ ଜଣଙ୍କୁ ମୁହିଁ ଦେଲି ପାରି କରି ।
ସମସ୍ତେ ରୋଦନ କରି ଅରଣ୍ୟକୁ ଗଲେ
କୁମ୍ଭିରୀକି ମାରି ଆସି ମୋତେ ସେ ଭେଟିଲେ ।
ବୋଇଲେ ଆରେ ପାମର ତୁ ବିଚାର କରି
ମୋତେ ଜଳେ ଦେଲୁ ପରା ଖାଇବ କୁମ୍ଭିରୀ ।
ଏହା କହି ଚାପୁଡ଼େକ ମାରି କୋପଭରେ
ବୋଇଲେ ନାବ ସହିତେ ବୁଡ଼ାନ୍ତି ଜଳରେ ।
ବିଦୂରଙ୍କ ଯୋଗୁ ତୋର ରହିଲା ପରାଣ
ବିଦୂର ଭିନ୍ନ ଏକଥା ଜାଣେ ଯେବେ ଆନ ।
ସବଂଶେ ମାରିବି ତୋତେ ଏକଥା ନିୟତ
ନୁହଇ ମାନବ ସେହି ସାକ୍ଷାତେ କୃତାନ୍ତ ।
ବିଦୂର ବୋଇଲେ କାହିଁ ନ କହିବୁ ତୁହି
ନିଶ୍ଚୟେ ସବଂଶେ ତୋତେ ମାରିବଟି ସେହି ।
ଆଜିଠାରୁ ରାତ୍ରେ ଆଉ ଅନିଦ୍ରା ନୋହିବୁ
ପୂର୍ବପରି ଦିବସରେ ନାବ ବାହୁଥିବୁ ।
ଏମନ୍ତ କହି ବିଦୂର ମିଳି ଜତୁଘରେ
ଦେଖିଲେକ ପୁରୋଚନ ପୀଣ୍ଡାକୁ ଅନଳେ ।
ଶବରୁଣୀ ପାଞ୍ଚପୁତ୍ର ଚିହ୍ନିଣ ବିଦୂର
ଆନନ୍ଦ ମନେ ମିଳିଲେ ହସ୍ତିନା ନଗର ।
ହରି ବଳରାମ ଥିଲେ ରୈବତ ପର୍ବତେ
ଇନ୍ଦ୍ର ଉତ୍ସବ ବିଧାନ କରନ୍ତି ସମସ୍ତେ ।

ଏମନ୍ତ ସମୟେ ଯାଇ ମିଳି ଡଗରାୟେ
ଉଗ୍ରସେନ ସନ୍ନିଧିରେ ବାରତା ଜଣାଏ ।
ସ୍ୱାମୀ ଯେ ପାଣ୍ଡବେ ଥିଲେ ବାରୁଣାବନ୍ତରେ
କୁନ୍ତୀ ଆଦି ଦଗ୍ଧ ହୋଇ ମଲେ ପାଞ୍ଚବୀରେ ।
ଦେଶାଉରଙ୍କ ମୁଖରୁ ଏସନକ ଶୁଣି
ଉଗ୍ରସେନ ଜଣାଇଲା ଦେବ ଚକ୍ରପାଣି ।
ଶୁଣି ଯଦୁ ଭୋଜବୀରେ ଏସନେକ କଥା
ଜତୁଗୃହେ ଦଗ୍ଧ ହେଲେ ପାଣ୍ଡବ କୋଇନ୍ତା ।
ଲୋକିତେ ଚକିତ ହେଲେ ପ୍ରଭୁ ଚକ୍ରପାଣି
ଅତି ଶୋକେ ଅଚେତନ ହୋଇଲେକ ପୁଣି ।
ଯଦୁ ଭୋଜବୀର ସ୍ୱାମୀ ଶ୍ରୀପୁରୁଷୋତ୍ତମ
ନାରାୟଣ ଅଚେତନ ଦେଖି ବଳରାମ ।
ନାରାୟଣ ବଳରାମ ବହୁତ ବ୍ୟାକୁଳ
ପୁଣ ପୁଣ ଅଚେତନ ଦେବ କାମପାଳ ।
ଆହା ଯୁଧିଷ୍ଠି ବୋଲନ୍ତି ଦେବ ହଳପତି
ଅଦୋଷେ ନାଶ ଗଲେ ଏ କର୍ମର ବିପତ୍ତି ।
ପାଣ୍ଡବେ ଯେବେଟି ହୋଇଥିବେ ପ୍ରାଣେ ଭ୍ରଷ୍ଟ
ଅନେକ କଷ୍ଟ ପାଇବ ରାଜା ଧୃତରାଷ୍ଟ୍ର ।
ବଦନ୍ତି ଯେ ଶଙ୍କର୍ଷଣ ବାବୁ ଜନାର୍ଦ୍ଦନ
ଧୃତରାଷ୍ଟ୍ରକୁ ଯାଇ କି କରିବା ଦର୍ଶନ ।
ରାଇ ସାତ୍ୟକି ଦାରୁକ ଦୁଇ ଦେବରାଜ
ନନ୍ଦିଘୋଷ ସାଜି ଆଣ ରଥ ତାଳଧ୍ୱଜ ।
ନାରାୟଣ ଆଜ୍ଞାରେ ଯେ ସେ ବେନି ସାରଥି
ଅନେକରଥ ଘେନିଣ ରଥକୁ ମଣ୍ଡାନ୍ତି ।
ନନ୍ଦିଘୋଷ ରଥ ଗୋଟି ସାଜଇ ସାତ୍ୟକି
ସୁବର୍ଣ୍ଣ ବନ୍ଧା ଚାମର ଏକ ଲକ୍ଷ ଯୋଖି ।
ଡାଳିମ୍ବ ଦନ୍ତ ଚାମର ଉଡ଼େ ହୋଇ ତ୍ୱରା
ଲାଗିଅଛି ଶତସରି ମୁକ୍ତା ମାଳା ଝରା ।
ନେତ ପତାକା ଉଡ଼ଇ ଉଡ଼େ ଫର ଫର
ସୁବର୍ଣ୍ଣର ଧ୍ୱଜା ଶୋହେ ପତାକା ଉପର ।
ସୁବର୍ଣ୍ଣ କାଠିରେ ଅଷ୍ଟରତ୍ନର ଉଦଣ୍ଡେ
ଚଳନ୍ତି ବୈଦୁର୍ଯ୍ୟେ ନୀଳାରତ୍ନ କୋଣକାଣ୍ଡେ ।
ସହସ୍ର ସହସ୍ର ହୀରା କନକରେ ଜଡ଼ି
ତହିଁ ସଙ୍ଗେ ମରକତ ମଣି ଧାଡ଼ି ଧାଡ଼ି ।
ଫେରକେ ଗଜ ମୁକୁତା ପାଞ୍ଚ ପାଞ୍ଚ ସରି
ରତ୍ନ ଉପରେ ମାଣିକ୍ୟ ଦରପଣ ଝଳି ।
ଶତସରି ମୁକୁତାରେ ମାଣିକ୍ୟର ପୁଞ୍ଜ
ତରୁଣ ଆଦିତ୍ୟ ତେଜ ପ୍ରଭାବରେ ଗଞ୍ଜ ।
ରଥ ଚାରିକତି ଶୋହେ ସୁବର୍ଣ୍ଣ ଘଟିକା
ଝଟକଇ ପରିମଳ ରତନର ଶିଖା ।

ଶୁକ୍ଳ ରଙ୍ଗପତନୀ ବାସ ନେଇ ତୁଳେ
ଗଜମୁକ୍ତା ରତ୍ନନେଇ ଉପରେ ସିଞ୍ଚିଲେ ।
ତାଳଧ୍ୱଜ ରଥେ ସ୍ୱର୍ଣ୍ଣ ଅୟୁତେକ ଖଞ୍ଜି
ଯେସନେ ଅମ୍ବର ଶୋଭା ଦିଶଇ କି ଗଞ୍ଜି ।
ରଥର ଚାରି ପୀଢ଼ରେ ସ୍ୱର୍ଣ୍ଣ କୋଣ କାଣ୍ଡ
ଝଟକନ୍ତି ହୀରା ଜିଣି ଜ୍ୟୋତି ମାରତଣ୍ଡ ।
ଏସନ ଜ୍ୟୋତିରେ ତାଳଧ୍ୱଜ ରଥ ଶୋଭା
କୁବେର ଭଣ୍ଡାର ଚନ୍ଦ୍ରକିରଣର ପ୍ରଭା ।
ଶ୍ୱେତ ଗୋକ୍ଷର ଅନନ୍ତ ଚାରିଗୋଟି ହୟ
କଳହପ୍ରିୟ ଅଟନ୍ତି ମହାତେଜୋମୟ ।
ଏକ ନିମିଷେ ତ୍ରିଲୋକ୍ୟ ପାରନ୍ତି ସେ କ୍ଷେପି
ମହାଯଜ୍ଞରୁ ସେ ଜାତ ତେଣୁ ନାମୀ ରୂପୀ ।
ମୂଳେ ସହସ୍ର ସହସ୍ର ଯେ ବାଜୀ
ଚୋଖାର ତୁରଙ୍ଗମ ସେ ପବନକୁ ଗଞ୍ଜି ।
ଏ ଅଶ୍ୱ ନେଇ ଯୋଚିଲା ଦାରୁକ ସାରଥି
ଶ୍ୟେନପକ୍ଷୀ ପ୍ରାୟେ ସେହି ଗଗନ କ୍ଷେପନ୍ତି ।
ତାଳଧ୍ୱଜ ରଥେ ବିଜେ କଲେ କାମପାଳ
ଶ୍ରୀଭୁଜେ ଶୋଭିତ ସ୍ୱାମୀ ସୌନକ ମୂଷଳ ।
ଶିରେ ଶୋହେ ସପ୍ତଫଣୀ ଭୁଜଙ୍ଗ କୁଣ୍ଡଳୀ
ରେବତୀ ବଲ୍ଲଭ ପ୍ରଜ୍ଞା ସସରଥ ହଳୀ ।
ଶିରେ ସୀମନ୍ତ କନ୍ଧରେ ମେଖଳା ପଇତା
ପୀତବସ୍ତ୍ର ଆଭରଣ ଶୁକ୍ଳ ବର୍ଣ୍ଣ ଚିତା ।
ଯାତ୍ରା ମଙ୍ଗଳ ସୁଯୋଗ ଶୁଭ ଅନୁକୂଳେ
ସୁଭଦ୍ରା ମଣ୍ଡନ ସ୍ୱାମୀ ବିଜେ କାମପାଳେ ।
ଦାରୁକ ମଣ୍ଡିଲା ପୁଣି ନନ୍ଦିଘୋଷ ରଥ
ତହିଁରେ ବିଜେ ସମ୍ଭ୍ରମେ ପ୍ରଭୁ ଯଦୁନାଥ ।
ଅରୁଣବର୍ଣ୍ଣ ପୃଥୁଳ ଚାରିଗୋଟି ହୟ
ଜଳଦାରୁଣ ଅନଳ ବିସ୍ତାରିଣ କାୟ ।
ଶୋହେ ଭୁଜେ ଶଙ୍ଖ ଚକ୍ର ଗଦା କୌମଦକୀ
ବିଜୟ ଜଗମୋହନ ସ୍ୱାମୀ ଯେ ମନ୍ଦକୀ ।
ଉଡ଼ନ୍ତି ସେ ହୟବର ପବନ କି ଜାଣି
ଦେଖିଣ ସାନନ୍ଦ ଦେବ ଦିନକର ମଣି ।
ବାହନ୍ତି ଯେ ତୁରଙ୍ଗମ ବେନି ସେ ସାରଥି
ହସ୍ତିନାରେ ପ୍ରବେଶିଲେ କୃଷ୍ଣ ହଳପତି ।
ଭୁବନ ଦିଶଇ ଅମଙ୍ଗଳ ଛାରଖାର
ରୋଦନ୍ତି କଳହପୁର ପ୍ରାୟ କୁରୁବୀର ।
ଶିଖଣ୍ଡୀ ନନ୍ଦନମାନ ଗୋବିନ୍ଦର କାୟ
ଶୋକେ ଗଡ଼ିବାରୁ ହୋଇଅଛି ରେଣୁମୟ ।
ଧୃତରାଷ୍ଟ୍ର ଆଦି ସର୍ବଜନ କଷ୍ଟ ଦେଖି
ଆସନ୍ତି ସେ ବେନି ଯାନ ବାହନ ଉପେକ୍ଷି ।

ସଞ୍ଜୟ ପ୍ରତିବାକ୍ୟ ଶୁଣି ଧୃତରାଷ୍ଟ୍ର
ସନ୍ନିଧେ ବିଜୟ କଲେ ଆସି ରାମକୃଷ୍ଣ ।
ଗାନ୍ଧାରୀ ରମଣ ଶୋକଭରେ କହେ କଥା
ଏସନ ବିପତ୍ତି ମୋତେ ବିହିଲା ବିଧାତା ।
ଭୀମ ଦୁଃଶାସନ ଯହୁଁ ଲଗାଇଲେ କଳି
ମୁହିଁ ଯୁଧିଷ୍ଠିଙ୍କି ଘେନି ଏକାନ୍ତରେ ଭାଳି ।
ଏଠାରେ ଥିଲେରେ ବାବୁ ହେବ ଭିନ୍ନ ଭିନ୍ନ
ବାରୁଣାବନ୍ତେ ରହ ତୋ ଭାଇଙ୍କୁ ଘେନିଣ ।
ଅଲଙ୍ଘିତ ଗୁରୁବାକ୍ୟ ଭାବିଣ ଯୁଧିଷ୍ଠି
ବାରୁଣାବନ୍ତେ ରହିଲେ ପୁତ୍ର ପାଞ୍ଚଗୋଟି ।
କାଲି ରାତ୍ରେ ଦେବ ମୋତେ ପଡ଼ିଲା ବିପତ୍ତି
ସେ ପାଞ୍ଚ ପୁତ୍ର ମୋହର ହେଲେ ବିନଶ୍ୟତି ।
ଝିମ ଶାଳ ଅଗ୍ନି ଲାଗି ଦଗ୍ଧ ହୋଇଲେ
କୁନ୍ତୀ ସହିତ ମୋହର ପାଞ୍ଚ ପୁତ୍ର ମଲେ ।
ବିନାଶ କାଳକୁ ଦେଖ ବିପରୀତ ବୁଦ୍ଧି
ବିପତ୍ତି କର୍ମେ ମୋହର ଲେଖିଅଛି ବିଧି ।
କହୁଁ କହୁଁ ମୂର୍ଚ୍ଛାଗତ ହେଲା ଧୃତରାଷ୍ଟ୍ର
ଧଇଲେ ସେ ଜଗନ୍ନାଥ ଦେଖି ତାର କଷ୍ଟ ।
ଜଗତବନ୍ଧୁ ସେ ଜଗତର ହିତକାରୀ
କେବଣ ପାତକେ ମୋତେ ଏ ବିପତ୍ତି ପଡ଼ି ।
ଦୁର୍ଯ୍ୟୋଧନ ଅଚେତନ ରାମ ମୁଖ ଚାହିଁ
ଏ ବେଳେ ସାହା ନୋହିଲ କିମ୍ପା ହଳସାଇଁ ।
ଶ୍ରୀହରି ବୋଲନ୍ତି ଶୁଣ ଆହେ କୁରୁପତି
ଦଇବ କୃତ୍ୟ ଏ ତୋର ନୋହିଲା ଅନୀତି ।
ବୋଇଲେ କାହିଁ ଦହନ ଥୋଇଲେ ପାଣ୍ଡବେ
ବଦନ୍ତି ଚାଲ ଦେଖିବାନିମିଁ ବଳଦେବେ ।
ରାମର ବଚନେ ସଜ ହେଲେ ଧୃତରାଷ୍ଟ୍ର
ଅନେକ ଗହଳେ ଚଳିଗଲେ କୁରୁଥାଟ ।
ଜତୁ ଗୃହ ଦେଖିବାକୁ ଯାଉଛନ୍ତି ବଳ
ମହାତେଜରେ ଶରୀର ଦହୁଛି ଅନଳ ।
ବିଦୂରକୁ ଏକାନ୍ତରେ ଡାକି ଜନାର୍ଦ୍ଦନ
କିସ ଚରିତ ଏ କହ କେବଣ ବିଧାନ ।
ବିଦୂର ବୋଲେ ଗଲେଣି ସେ ବାହାର ହୋଇ
ବନେ ପଶିଲେ କାହାକୁ ଗୋଚର ଯେ ନାହିଁ ।
ଭୋ ନାଥ ନାରାୟଣ ତୁ ମନ୍ଦକୃତ୍ୟ କଲୁ
ଜତୁର ଘରକୁ କିମ୍ପା ଏହାକୁ ଆଣିଲୁ ।
ଦଗ୍ଧ ହୋଇଛନ୍ତି ଜୟନ୍ତୀର ପାଞ୍ଚ ପୁତ୍ରେ
ନ ପୁଣ ଚିହ୍ନନ୍ତି ଏହି ଦେଖ ଚର୍ମ ନେତ୍ରେ ।
ଶ୍ରୀହରି ତ୍ରାସ ପାଇଲେ ବିଦୂର ବଚନେ
ସୁଦର୍ଶନକୁ ପେଷିଲେ ସେ ଦହନ ସ୍ଥାନେ ।

ନ ଚିହ୍ନନ୍ତୁ କୁରୁ ଏ ଦ୍ୱିଗୁଣେ ଅଗ୍ନି ଦହୁ
ବାସୁଦେବ ମାୟା ପୁଣ ଜାଣିବ ବା କେହୁ ।
ଯେଉଁ ଦେବ ମାୟାରେ ଏ ସଂସାର ରଚନା
ଭାରା ନିବାରଣ ଅର୍ଥେ କୂଟ କଲେ ସିନା ।
ଶ୍ରୀହରି ବୋଇଲେ ଆହେ ଶୁଣ କୁରୁପତି
ମୃତପିଣ୍ଡ ଧଇଲେକ ହୋଇଯିବେ ଯନ୍ତି ।
ଦୂରେ ଥାଇ ଦେଖିବା ହେ ସର୍ବ ବୀରମାନେ
ଦେଖିଲେକ ସାତଗୋଟି ପିଣ୍ଡ ସେ ଦହନେ ।
ପଡ଼ିଲା ହା ହା ଦଇବ ବୋଲି କୁରୁପତି
ଭୀଷ୍ମ ଦ୍ରୋଣ ଶଲ୍ୟ ଭୂରିଶ୍ରବା ସର୍ବକ୍ଷିତି ।
ଦୁର୍ଯ୍ୟୋଧନ ଶତଭ୍ରାତା ଆଦି ଯେତେ ଥିଲେ
ପାଣ୍ଡବଙ୍କର ଅଭାବେ ସମସ୍ତେ ପଡ଼ିଲେ ।
ରାମକୃଷ୍ଣ ସମାର୍ଜନ କରନ୍ତି ସବୁନ୍ତି
ଗୋବିନ୍ଦ ବୋଇଲେ ଆହେ ଶୋକ କର ଶାନ୍ତି ।
ଶୋକ ଶାନ୍ତିକର ଆହେ ଅମ୍ବିକାର ସୁତ
ପର ରାଜ୍ୟକୁ ତ ଘେନିଅଛୁ ହୋ ବହୁତ ।
ବହୁତ କୁଟୁମ୍ବ ଅର୍ଜିଅଛୁ ଧୃତରାଷ୍ଟ୍ର
ମୋହର ବିଚାରେ ତୋତେ ହେବ ବହୁ କଷ୍ଟ ।
ଧୃତରାଷ୍ଟ୍ର ଦୁର୍ଯ୍ୟୋଧନେ ଶାନ୍ତ କରାଇଲେ
ବାହୁଡ଼ିଣ ହସ୍ତିନାରେ ପ୍ରବେଶ ହୋଇଲେ ।
କରନ୍ତି ଯେ କୁରୁବୀରେ ପ୍ରେତର ବିଧାନ
ରହିଲେ ଯଦୁନନ୍ଦନ ରାଜାର ଆସ୍ଥାନ ।
ନବଦିନେ ନବଗୋଟି ପିଣ୍ଡଦାନ କଲେ
ଦଶଦିନ ପୁଣି ସେହି ଦଶ ପିଣ୍ଡ ଦେଲେ ।
ହୋମ ଶେଷ କରି ପୁଣି କଲେ ଘୃତ ପାକ
ପାରଣା କଲେକ ଘୃତ ପାୟସ ଯାବକ ।
ଏ ମହାଭାରତ ଶୁଣି ନରେ ଯାଅ ତରି
ଶ୍ରୀ ଶାରଳା ଦାସ ଲେଖେ ମଙ୍ଗଳା ସୁମରି ।

—o—

## ଶକ୍ରଜିତ ବଧ

ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି
ଦ୍ୱାରକାକୁ ହସ୍ତିନାରୁ ଅଇଲେ ଶ୍ରୀପତି ।
ଶତଧନୁ ଅନାଦୃଷ୍ଟ ପୁଣି କୃତବର୍ମା
ରାତ୍ରେ ବସି ଭାଳନ୍ତି ଏ ତିନି ପାପଆତ୍ମା ।
କୃତବର୍ମା ବୋଲେ ଏବେ ତୁମ୍ଭେ ଦୁଇଜଣ
ଦେଖିଲ ତ ଶକ୍ରାଜିତ ରାଜା ମନ୍ଦପଣ ।
ତାହାର ଦୁହିତା ନାମ ଅଟେ ଶକ୍ରାବତୀ
ଆମ୍ଭଙ୍କୁ ଦେବାକୁ ସତ୍ୟ କଲେ ନରପତି ।
ପ୍ରସନ୍ନାଜିତ ପାଇଁ କି ପ୍ରମାଦ ଲାଗିଲା
ଡରେ ବାସୁଦେବଙ୍କୁ ସେ କନ୍ୟା ଦାନ କଲା ।
ଏସନକ ଅପମାନ ଦେଲା ଏଥି ମୋତେ
ମୁହିଁ ଭୋଜବଂଶୀ ଶ୍ରେଷ୍ଠ ଅଟଇ ଯୁବତେ ।
କୃତବର୍ମାର ବଚନେ ବୋଲେ ଶତଧନୁ
କ୍ଷତ୍ରୀ ଅପମାନ ପାଏ ଅଳ୍ପ ଦୋଷ ଗୁଣୁ ।
ମୋତେ ଦେବାକୁ ବୋଇଲା ସତ୍ୟା ସୁକୁମାରୀ
ବାଳକାଳରୁ ସେ ପୁଣି ଥିଲା ସତ୍ୟ କରି ।
ଡରେ ବାସୁଦେବଙ୍କୁ ସେ ଏବେ ଦେଲାବାଳୀ
ଏଡ଼େ ଅପମାନ ଦେଲା ଶକ୍ରାଜିତ ବାଳୀ ।
ତାହାର ବଚନ ଶୁଣି ବୋଲେ ଅନାଧୃଷ୍ଟ
ଶକ୍ରାଜିତ ଠାରୁ ଆନ କେହୁ ଅଛି ଦୁଷ୍ଟ ।
ବାଳକାଳରୁ ସେ କୋଳେ ବସାଇ ଆମ୍ଭଙ୍କୁ
ସତ୍ୟ ବାକ୍ୟେ ବୋଲିଅଛି ସତ୍ୟାକୁ ଦେବାକୁ ।
ବଳେ ବଳେ ହରଙ୍କୁ ସେ କଲାକ ପ୍ରଦାନ
କେ କହିବ ଏସନକ ତାର ଅପମାନ ।
ହରିଙ୍କୁ ଦେଇ ସେ କଲା ଏସନକ କୃତ୍ୟ
ରକ୍ଷା କରିବ କି ସେତେବେଳେ ଜଗନ୍ନାଥ ।
କୃତବର୍ମା ବୋଇଲେକ କେ ଯାଇ ପାରଇ
ଶକ୍ରାଜିତକୁ ମାଇଲେ ଅପମାନ ଯାଇ ।
କରପତ୍ର ଯୋଡ଼ି ବୋଲେ ଦୁଷ୍ଟ ଅନାଧୃଷ୍ଟ
ଏକ୍ଷଣି କରିବି ଆଜ୍ଞା ଦେଲେ ପ୍ରାଣେ ଭ୍ରଷ୍ଟ ।
ଶତଧନୁ ଅନାଧୃଷ୍ଟ କୃତବର୍ମା ତୁଲେ
ଶକ୍ରାଜିତର ଶୟନ ସ୍ଥାନେ ପହଞ୍ଚିଲେ ।
ହସ୍ତରେ ଖଣ୍ଡା ଖଣ୍ଡିଏ ଘେନି ଅନାଧୃଷ୍ଟ
ଶକ୍ରାଜିତ ନିଦ୍ରା ସ୍ଥାନେ ମିଳିଲା ପାପିଷ୍ଠ ।
ବିଷ୍ଣୁ ଭୁବନ ଅଭୟପୁର ଯେ ଅଟଇ
କାହାରି ଘରେ ତହିଁ କବାଟ ନ ପଡ଼ଇ ।
ନ ପଶଇ ଯମ କାଳଦଣ୍ଡ ଯେଉଁ ପୁର
ତ୍ରୈଲୋକ୍ୟ ଅଜୟ ସେହି ଦ୍ୱାରକା ନଗର ।
ରାତ୍ରିରେ ପଶିଲା ତହିଁ ଅନାଧୃଷ୍ଟ ବୀର
ନିଦ୍ରାନ୍ୱିତ ଶକ୍ରାଜିତ ପଲ୍ୟଙ୍କ ଉପର ।
କରେ ପୁଣି ଘେନିଅଛି ବିଜୟ କଟାରୀ
ରାତ୍ର ଅର୍ଦ୍ଧେ ମିଳିଲା ସେ ଶକ୍ରାଜିତ ପୁରୀ ।
ପଲ୍ୟଙ୍କ ଉପରେ ଶେଜ ନେତର ସୁପାତି
ଉପରେ ଜଳଇ ପୁଣି ସହସ୍ରେକ ବତୀ ।
ସମ୍ପୂର୍ଣ୍ଣ ଯୁବା ସୁନ୍ଦରୀ ସସ୍ର ବିଳାସିନୀ
ପଲ୍ୟଙ୍କରେ ଶୋଇଛନ୍ତି ସକଳ କାମିନୀ ।
ନେତ ଚନ୍ଦ୍ରାତପ ଏକ ରଚିତ ଉପରେ
ଚଉକତିରେ ଲମ୍ବନ୍ତି ମୁକୁତାର ହାରେ ।
ମଳେ ମରକତ ମାଳ ଦିଶେ ଅତି ତୋରା
ଠାବେ ଠାବେ ଲାଗିଅଛି ମାଣିକ୍ୟର ଝରା ।

ଦ୍ୱିତୀୟ ସ୍ୱରଗ ପ୍ରାୟେ ତାହାର ଭୁବନ
ଚଉପାଶେ ବେଢ଼ିଛନ୍ତି ଦିବ୍ୟାଙ୍ଗନାଗଣ ।
ଯାହାର ମାତା ନିଜେ ଅଟଇ ଗୋବିନ୍ଦ
ଅଭୟ ଭୁବନ ସେହି ପରମ ଆନନ୍ଦ ।
ଦ୍ୱିତୀୟ ଇନ୍ଦ୍ର ପ୍ରାୟ ସେ ସୁନ୍ଦର ବଳିଷ୍ଠ
ନିର୍ଭୟ ତସ୍କର ରୂପେ ପଶିଲା ପାପିଷ୍ଠ ।
ଉତ୍ତାନଶାୟୀ ହୋଇଣ ଥିଲା ନୃପମଣି
ହୃଦୟରେ ଅଛି ତାର ସ୍ୟମନ୍ତକ ମଣି ।
ବିଜୟ କଟାରିଊର୍ଦ୍ଧ୍ୱ ବାହୁରେ ସେ ଧରି
ଶକ୍ରାଜିତର ଉପରେ ନିରାଶେ ପ୍ରହାରି ।
ମହାପ୍ରତାପୀ ସେ ଦୁଷ୍ଟ ଅନାଧୃଷ୍ଟ ଚଣ୍ଡ
ଶକ୍ରାଜିତ ନୃପତିକୁ କଲା ବେନିଖଣ୍ଡ ।
ପଲ୍ୟଙ୍କ ଉପରେ ତାଙ୍କୁ ପକାଇଲା ହାଣି
କରେଣ ଘେନିଲା ସେହି ସ୍ୟମନ୍ତକ ମଣି ।
ବାହାର ହୋଇଲା ତହୁଁ ମହାନିଶା କାଳେ
ଶତଧନୁ କୃତବର୍ମା ଥିଲେ ଏକ ମେଳେ ।
ଅକ୍ରୂର ଯେ ତାହାଙ୍କର ଅଟଇ ବିଶ୍ୱାସୀ
ତାର ଛାମୁରେ ତିନିହେଁ ମିଳିଲେକ ଆସି ।
ଅକ୍ରୁର ଆଗେ କହିଲେ ଏ ସବୁ ବୃତ୍ତାନ୍ତ
ଆଜ ରାତ୍ରେ ଆମ୍ଭେ କଲୁ ଶକ୍ରାଜିତେ ହତ ।
ଅକ୍ରୁର ବୋଇଲା ତୁମ୍ଭେ ମନ୍ଦକୃତ୍ୟ କଲ
ରାଗ ନ ସଂହରି କିମ୍ବା ମୋତେ ନ କହିଲ ।
ଅବଶ୍ୟ ଜାଣିବେ ଏହା ଦେବ ଜନାର୍ଦ୍ଦନ
ପାପକଥା ଗୋଟି କେଭେ ନୁହଁଇ ଗୋପନ ।
ତିନିହେଁ ପଶିଲ ତୁମ୍ଭେ ପାପ ବାରାନିଧି
ବିନାଶ କାଳେ ଚିନ୍ତିଲ ଏହି ମନ୍ଦ ବୁଦ୍ଧି ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଯାର ଗର୍ଭଗତ
ସତ୍ୟଭାମା ବାସୁଦେବଙ୍କର ପଞ୍ଚଭୂତ ।
ନୂତନ ଶ୍ୱଶୁର ସେହି ନୂତନ ଭାରିଯା
ଅନେକ କୋପ କରିବେ ନିଶ୍ଚେ ଦେବରାଜା ।
ଅକ୍ରୁର ବୋଇଲେ ଶୁଣ ଅମ୍ବିକାର ବଳା
ଦ୍ୱାରକାରେ ନ ରହିଣ ଏଥୁଁ ବେଗେ ପଳା ।
ସ୍ୟମନ୍ତକ ମଣି କିମ୍ବା ଘେନ ନ ବିଚାରି
ପ୍ରତ୍ୟକ୍ଷ ସନ୍ତକ ସେହି ହୋଇବ ତୁମ୍ଭରି ।
ବିଶେଷେ ଦୋଷ ଆବର ସନ୍ତକ ଦେଖିଲେ
କେ ରଖିପାରିବ ବାସୁଦେବ କୋପ କଲେ ।
ଅକ୍ରୁର ମୁଖରୁ ବୀର ଏ ବଚନ ଶୁଣି
ତାହାର ହସ୍ତରେ ଦେଲା ସ୍ୟମନ୍ତକ ମଣି ।
ମହାଭୟ ପାଇ ଅନାଧୃଷ୍ଟ ଶତଧନୁ
ଦ୍ରୁତେ ପଳାଇଗଲା ସେ ଦ୍ୱାରକା ଭୁବନୁ ।

ଏଥୁଅନନ୍ତରେ ପୁଣ ପାହିଗଲା ରାତି
ଚିଆଇଁ ଉଠିଲେ ଶକ୍ରାଜିତର ଯୁବତୀ ।
ଦେଖିଲେ ହୋଇଛି ବେନିଖଣ୍ଡ ନୃପମଣି
ଉଚ୍ଚସ୍ୱରେ ସୁନ୍ଦରୀଏ କଲେ ଶୋକବାଣୀ ।
ଆହା ସ୍ୱାମୀ ବୋଲି ସେ ରୋଦନ କଲେ ବାଳୀ
ଅନ୍ତଃପୁର ଭିତରେ ଯେ ପଡ଼ିଲା ବୋବାଳି ।
ଶକ୍ରାଜିତର ଭୁବନେ କାନ୍ଦ ଗୋଳ ଶୁଣି
ଅଇଲେ ଅନେକ ତହିଁ ଯଦୁ ବୀରମଣି ।
ଯଦୁ ଭୋଜ ବଂଶ ବୃଷ୍ଣି ବଂଶ ଆଦି କରି
ଚଉବିଂଶ ଯୋଜନରେ ଲୋକେ ତହିଁ ପୂରି ।
ପିତାର ଅଭାବ ଶୁଣି ଦେବୀ ସତ୍ୟଭାମା
ଅନ୍ତଃପୁରୁ ବାହାରିଲେ ନାରାୟଣ ବାମା ।
ହା ହା ତାତ ବୋଲି କରି କାନ୍ଦେ ଅସମ୍ଭାଳେ
ଉଚ୍ଚେ ରୋଦନ କରିଣ ଧାମନ୍ତି ସକଳେ ।
ପିତାର ଭୁବନେ ବିଜେ କଲେ ମହାସତୀ
ଦେଖିଲେକ ପିତାଙ୍କର ଏସନକ ଶାସ୍ତି ।
ଜାନୁ ଭାନୁ ବୋଲିଣ ଯେ ତାର ପାଟବଂଶୀ
କୋଳ କରି ସ୍ୱାମୀଙ୍କୁ ଯେ ଧରନ୍ତି ଆକର୍ଷି ।
ରୁଧିରରେ ବିଲେପନ ସବୁଙ୍କରି କାୟ
ଅୟୁତେ ସୁନ୍ଦରୀଙ୍କର ନେତ୍ରୁ ବହେ ଲୁହ ।
ପିତାର ଅଭାବ ଦେଖି ଦେବୀ ଶକ୍ରାବତୀ
ସମସ୍ତଙ୍କୁ ଚାହିଁ ହେଲେ ମହାକୋପ ମୂର୍ତ୍ତି ।
କେବଣ ଦୋଷ ଯେ କଲା ମୋହର ପିଅର
ଅଦୋଷେ ନାଶ କିମ୍ପାଇ ଗଲେ ନୃପବର ।
ସୁଦର୍ଶନ ଚକ୍ର ଯହିଁ ବୁଲଇ ପ୍ରଚଣ୍ଡ
ମାଛି ଚରଣ ପଡ଼ିଲେ ହୁଏ ଶତ ଖଣ୍ଡ ।
ଯମର କାଳଦଣ୍ଡ ନ ପଶେ ଯେଉଁ ପୁରୀ
ଆନ ଦର୍ପେ କି ମୋହର ପିତା ନାଶ କରି ।
ଅଦୋଷରେ କେହୁ ନାଶ କଲା ମୋର ତାତ
ତାହାର ପାଞ୍ଜି ନିଶ୍ଚୟ ପୋଛିଲା କୃତାନ୍ତ ।
ଏସନ ବାକ୍ୟ କହିଲେ ଯହୁଁ ଠାକୁରାଣୀ
ସମସ୍ତେ ଯେ ଭୟ କଲେ ଯେ ବଚନ ଶୁଣି ।
ତ୍ରସ୍ତ ହୋଇ ନ ରହିଲେ କେହି ତାଙ୍କ କତି
ଜଗନ୍ନାଥ ଠାକୁରାଣୀ ଦେବେ କି ନା ଶାସ୍ତି ।
ଯାର ଯୁଆଇଁ ଅଟନ୍ତି ଦେବ ଜନାର୍ଦ୍ଦନେ
ତାଙ୍କୁ କେ ପ୍ରମାଦ ଦେଲା ଦ୍ୱାରକା ଭୁବନେ ।
ଉଗ୍ରସେନ ସହିତରେ ନନ୍ଦ ବସୁଦେବେ
ସମସ୍ତେ କାନ୍ଦନ୍ତି ଶକ୍ରାଜିତର ଅଭାବେ ।
ତ୍ରଇଲୋକ୍ୟେ ଅସମ୍ଭବ ଯାହାର ଚରିତ
କାହାର ଭରସା ଏଡ଼େ ତାପ୍ରମାଦଚିନ୍ତ ।

ସତ୍ୟଭାମା ଯେ ପୁଷ୍ପକ ବିମାନ ଆରୋହି
ଦ୍ୱାରକାପୁର ଆସିଲେ ଆପେ ସଜ ହୋଇ ।
ପୁଷ୍ପକ ରଥ ଚଢ଼ିଣ ବାଣାର ଭୁବନୁ
ପିତା ନାଶଗଲା ମୋର ବାସୁଦେବ ଜ୍ଞାନୁ ।
ପ୍ରସନ୍ନାଜିତ ନିମନ୍ତେ ଏକ ଅପବାଦ
ସେ ରାଗକୁ ନ ପାସୋରି ଚିନ୍ତିଲେ ପ୍ରମାଦ ।
ଜାଣିକି ନା ଏଥିରେ ଯେ ତଦନ୍ତ କି ମାନ
ଦେବୀ ଗଲେ ଆରୋହିଣ ପୁଷ୍ପକ ବିମାନ ।
ଶୂନ୍ୟେ ଗମନ କଲେ ଯେ ହସ୍ତିନା ପୁରକୁ
ଉଚ୍ଚେ ରୋଦନ କରନ୍ତି ସୁମରି ପିତାକୁ ।
ପଛେ ଗମନ୍ତି ପ୍ରଦ୍ୟୁମ୍ନ ପୁତ୍ର ଶାମ୍ବ ଗଦ
ବିଚାରନ୍ତି ଦ୍ୱାରକାରେ ପଡ଼ିବ ପ୍ରମାଦ ।
ସଙ୍ଗତରେ ଗୋଡ଼ାଇଲେ ଏ ତିନି କୁମାରେ
ଆଗେ ରୋଦନ କରନ୍ତି ଦେବୀ ଉଚ୍ଚସ୍ୱରେ ।
ଚଳନ୍ତି ସେ ଠାକୁରାଣୀ କୁଞ୍ଜଗଳ ଦେଶେ
ପଛରେ କୁମାରମାନେ ଗୋଡ଼ାନ୍ତି ବିରସେ ।
ଏଣେ ପ୍ରେତକାର୍ଯ୍ୟ ଯଥାବିଧିରେ କରାଇ
ପରମାର୍ଥ କଥା ବହୁ ଧୃତରାଷ୍ଟ୍ରେ କହି ।
ହସ୍ତିନାପୁରୁ ବାହାର କୃଷ୍ଣ କାମପାଳେ
ଯାନମାନ ଆରୋହି ଆସନ୍ତି ପ୍ରାତଃକାଳେ ।
ତାଳଧ୍ୱଜ ରଥ ପରେ ବିଜେ ଦେବ ହଳୀ
ନନ୍ଦିଘୋଷ ଆରୋହିଣ ଦେବ ବନମାଳୀ ।
ଇନ୍ଦ୍ରପ୍ରସ୍ଥ ଯାଏ ରାଯେ ଆସଇ ପାଛୋଟି
ଯୋଜନ ଉତ୍ତାରୁ ବାହୁଡ଼ାଇ ଧାର୍ତ୍ତରାଷ୍ଟ୍ରି ।
ଗୋବିନ୍ଦ ପ୍ରତିବାକ୍ୟ ନ କର ଶୋକ ବାବୁ
ଆଉ ପାଣ୍ଡବଙ୍କୁ କାହିଁ ଲୋଡ଼ିଲେ ପାଇବୁ ।
ନଷ୍ଟ ପ୍ରାଣୀ ଚିନ୍ତାକଲେ ଆପେ ପ୍ରାଣହାରି
ଏ ପଞ୍ଚ କଟକେ ତୁହି ହେଲେ ଅଧିକାରୀ ।
ଦୁର୍ଯ୍ୟୋଧନ ପ୍ରତି ବାକ୍ୟ ନ ଧରି ତା ଚିତ୍ତେ
ନାରାୟଣ ଅନୁଗ୍ରହ କରୁଥିବୁ ମୋତେ ।
ଏତେ ବୋଲି ବାହୁଡ଼ିଲା ରାଜା କୁରୁପତି
ରାମ ନାରାୟଣ ରଥେ ବସିଣ ଚଳନ୍ତି ।
ଚଳନ୍ତି ଶ୍ରୀ ବାସୁଦେବ ଦ୍ୱାରାବତୀ ଦେଶେ
ଦେଖିଲେକ ବିମାନେକ ଆସଇ ଆକାଶେ ।
ଦାରୁକ ବୋଇଲା ଶୁଣ ଦେବ କାମପାଳ
ସ୍ୱରଗ ତେଜି ଆସଇ କିବା ଆଖଣ୍ଡଳ ।
ଗୋବିନ୍ଦ ତା ନିରୂପନ୍ତି ପୁଷ୍ପଯାନ ଦେଖି
ସ୍ତିରୀ ଏକ ଆସଇ କି ଆକାଶେ ଉପେକ୍ଷି ।
ନିରୀକ୍ଷି ଦେଖି କହନ୍ତି ଦେବ ହଳପାଣି
ଦ୍ୱାରକା ବିମାନ ପ୍ରାୟ ଦେଖାଯାଏ ପୁଣି ।

ଦୂରୁ ଦେଖି ନନ୍ଦିଘୋଷ ତାଳଧ୍ୱଜ ରଥ
ଉଚ୍ଚରେ ରୋଦନ କଲେ ଆହା ଶକ୍ରାଜିତ ।
ଯହୁଁ ସନ୍ନିଧିରେ ଦେବୀ ଦେଖିଲେ ବିମାନ
ଢଳିଣ ପଡ଼ିଲେ ତହିଁ ହୋଇଣ ଅଜ୍ଞାନ ।
ଦାରୁକ ସାରଥି ଘୁଞ୍ଚାଇଲା ତାଳଧ୍ୱଜ
ରଥରୁ ଡେଇଁ ପଡ଼ିଲେ ଆପେ ଦେବରାଜ ।
ନାରାୟଣ କୋଳ କରି ସତ୍ୟାକୁ ଧରନ୍ତି
ଦେଖିଣ ଆଶ୍ଚର୍ଯ୍ୟ ହେଲେ ପ୍ରଭୁ ହଳପତି ।
ଗୋବିନ୍ଦ ବୋଇଲେ କହ କହ ଶଶିମୁଖୀ
କାହାର ନିମନ୍ତେ ତୁମ୍ଭେ ଏସନକ ଦୁଃଖୀ ।
ପୂର୍ଣ୍ଣଚନ୍ଦ୍ର ବଦନ ତୋ ମଳିନ ଦିଶଇ
ଦରହସିତ ବହନ ବିରସ କିମ୍ପାଇଁ ।
ପ୍ରାଣର ସଖୀ ମୋହର ଆତ୍ମା ପଞ୍ଚଭୂତ
ତୋ ଶୋକ ମୋର ଶରୀର ଦହୁଛି ସଙ୍ଘାତ ।
ସତ୍ୟା ବୋଇଲାକ ସ୍ୱାମୀ ଏହା କିମ୍ପା କଲ
ଏଣେ ଆପଣ ଆସି ମୋ ପିତାକୁ ନାଶିଲ ।
ମୋ ପିତା ଦୁହିତା ଆଣି ଦେଲା ତୁମ୍ଭ ହସ୍ତେ
ଶରଣ ପଶିଲା ପ୍ରାଣରକ୍ଷାର ନିମନ୍ତେ ।
ବିଶ୍ୱାସଘାତକ ଏବେ ହେଲେ ଦେବ ହରି
ଶରଣାଗତ ନାଶିଲେ ନାରକୀର ପରି ।
ଏମନ୍ତ ବଚନ ଯହୁଁ କହିଲେ ସୁରେଖା
ଯେଣୁ ଅଗୋଚର ତେଣୁ ହୋଇଲେ ତାଟକା ।
ଶ୍ରୀକୃଷ୍ଣ ବୋଲନ୍ତି ସଖୀ କୋପ କର ଶାନ୍ତି
କେସନକ ସ୍ୱରୂପ ଗୋ କହ ଫିଟୁ ଭ୍ରାନ୍ତି ।
ଏସନବେଳେ ପ୍ରଦ୍ୟୁମ୍ନ ଶାମ୍ବ ଆଉ ଗଦ
ଶତ ସହସ୍ର ପ୍ରଣମି ରାମକୃଷ୍ଣ ପାଦ ।
ହରି ପଚାରନ୍ତି ଶୁଣ ହେ ମୀନକେତନ
ଶକ୍ରାଜିତ ନୃପତିର ଚରିତ କେସନ ।
ପ୍ରତିବାକ୍ୟ ପ୍ରଦ୍ୟୁମ୍ନର ଶୁଣ ଜଗନ୍ନାଥ
ରାତ୍ରେ ନାଶଗଲେ ଦେବ ନୃପ ଶକ୍ରାଜିତ ।
କେବଣ ଦୁରାତ୍ମା ରାତ୍ରେ ପଶି ତାଙ୍କ ପୁରୀ
ଶକ୍ରାଜିତକୁ ଛେଦିଲା ବେନିଖଣ୍ଡ କରି ।
ପ୍ରଦ୍ୟୁମ୍ନ ବାକ୍ୟେ ବିସ୍ମୟ ହେଲେ ଜଗନ୍ନାଥ
କାହାବଳେ ଦ୍ୱାରକାରେ ହୋଇଲା ଏମନ୍ତ ।
କାହାର କି ଦୋଷ ରାଜା ଶକ୍ରାଜିତ କଲା
କେଉଁ ପାତକରେ ତାକୁ ଏଡ଼େ ଶାସ୍ତି ହେଲା ।
ଶାନ୍ତ ହୁଅ ସତ୍ୟଭାମା ଶୁଣ ମୋ ବଚନ
ତୋ ପିତା ଶତ୍ରୁକୁ ମୁହିଁ କରିବି ନିଧନ ।
ଯେ ମାଇଲା ତୋ ପିତାକୁ କାଲି ଅନିମିତ୍ତେ
ଦ୍ୱାରକାରେ ଥୋଇବି କି ତା ବଂଶ ସହିତେ ।

ସତ୍ୟଭାମା ଘେନିଗଲେ ଦ୍ୱାରକା ଭୁବନେ
ଦେଖିଲେ ଦ୍ୱାରକା ଲୋକେ ଛନ୍ତି ହତଜ୍ଞାନେ ।
ଅକ୍ରୁର ବୋଇଲା ଡାକିଆଣ ଶତଧନୁ
ମୋ ବାକ୍ୟେ ପଳାଇଯାଅ ଦ୍ୱାରକା ଭୁବନୁ ।
ବାସୁଦେବ ଲୋଡ଼ିବେଟି ସତ୍ୟର ବଚନେ
ଶତଧନୁ ନ ରହ ଏ ଦ୍ୱାରକା ଭୁବନେ ।
ସତ୍ୟଭାମା ଶୋକ ଶାନ୍ତ ହେବା ପରିଯନ୍ତେ
ସମୟେ କହିବା ବାସୁଦେବଙ୍କ ଅଗ୍ରତେ ।
ଅକ୍ରୁର ବଚନ ଶୁଣି ବୀର ଶତଧନୁ
ଦ୍ୱାରକାରୁ ବାହାରିଲା ବୃହଦ୍ଧ୍ୱଜ ସୁନୁ ।
ଦ୍ୱାରକାରୁ ବାହାରିଲା ମହାନିଶାକାଳେ
ଗହନ ବନେ ପଶିଲା ପ୍ରାଣର ବିକଳେ ।
ସତ୍ୟଭାମାକୁ ଘେନିଣ ଦେବ ଯଦୁସାଇଁ
ଦ୍ୱାରକା ଭୁବନ ମଧ୍ୟେ ପ୍ରବେଶିଲେ ଯାଇଁ ।
ବିଜେ ବାସୁଦେବ ଶକ୍ରାଜିତର ଭୁବନେ
ରୋଦନ କରୁଅଛନ୍ତି ବେଢ଼ି ରାଣୀଗଣେ ।
ବାସୁଦେବ ମୁଖ ଚାହିଁ ଦନ୍ତେ ତୃଣ ଘେନି
ରୋଦନ୍ତି ବାଳାମଣିଏ ଉରେ ତାଡ଼ି ପାଣି ।
ଏ ଭୁବନେ କେଉଁ ପାପ କଲା ଶକ୍ରାଜିତ
କେହୁ ଅପରାଧୀ ହେଲା ତୋଠାରେ ଅଚ୍ୟୁତ ।
ବିକଳ ଦେଖିଣ ମଧୁରିପୁ କୋପେ ବସି
ରାଗବଶୁ କାଳାନଳ ପ୍ରାୟକ ବିକାଶି ।
ରାମ ବୋଇଲେ ଏପୁରେ ହେଲା କେଉଁ ଦୋଷ
ଏ ପୁରେ ଶୁକ୍ରର ତେଜ ହୁଏ ବିକାଶ ।
ଯମଦଣ୍ଡ ନ ପଶଇ ଯେଉଁ ଭୁବନକୁ
କେଉଁ ଦୋଷରୁ ଘୋଟିଲା ଏହା ଏ ପୁରକୁ ।
ରାମ ବୋଇଲେ ସମର୍ଥଜିତକୁ ଡକାଇ
ପିତାକୁ ତୁମ୍ଭର ଏବେ ଦଗ୍ଧକର ନେଇ ।
ଜାଣିବା ତଦନ୍ତ କରି ଏ କେଡ଼େ ବଇରୀ
ଏ ବେଳେ ଆମ୍ଭେ କାହାକୁ ପାଇବାନା ଲୋଡ଼ି ।
ଗୋବିନ୍ଦ ଯେ ଆଶ୍ୱାସନା କରନ୍ତି ସବୁନ୍ତି
ନାରାୟଣଙ୍କ ବଚନେ ସର୍ବେ ଲଭି ଶାନ୍ତି ।
ପଲ୍ୟଙ୍କ ଉପରେ ନେଇ ଶୁଆଇଲେ ଶବ
ଶ୍ମଶାନକୁ ବୋହିନେଲେ ଶକ୍ରାଜିତ ଦେବ ।
ଚିତା ଆରୋପଣ କରି ବସାଇଲେ ତହିଁ
ମୁଖାଗ୍ନି ଦେଲା ସମର୍ଥଜିତ ରାୟେ ନେଇ ।
ଦହନ କଲେକ ଶମଶାନେ ଶକ୍ରାଜିତ
ପ୍ରେତର ଆହ୍ନିକ କର୍ମ କରନ୍ତି ତା ନିତ୍ୟ ।
[illegible] ଛାଡ଼ି କଲେ ଏକୋଦିଷ୍ଟ ଦିନେ
[illegible] ।

ବଦନ୍ତି ଅଗସ୍ତି ଶୁଣ ମନୁ ବୈବସ୍ୱତ
ପ୍ରସ୍ତାବ ବାକ୍ୟେ କହିଲି ଶ୍ରୀ ମହାଭାରତ ।
ଏହି ଯେ ମହାଭାରତ ପୁରାଣରେ ସାର
ଶୁଣନ୍ତେ ସେ ହେବ ଭକ୍ତ କଳୁଷରୁ ପାର ।
ସମ୍ପୂର୍ଣ୍ଣ କରି ଯେ ନର ନାରୀଏ ଶୁଣନ୍ତି
ଲଭନ୍ତି ହେ ଅଇଶ୍ୱର୍ଯ୍ୟଧନ ପୁତ୍ର ନାତି ।
ଶତେବାର ଗଙ୍ଗାଜଳେ ଝାସନ୍ତେ ସେ ଫଳ
ସେ ଫଳ ଏ ଆଦ୍ୟପର୍ବ ଶୁଣନ୍ତେ କେବଳ ।
ନମସ୍ତେ ଦେବ ରାଧିକାଦେବୀ ମନୋହାରୀ
ମୂଢ଼ ଶାରଳା ଦାସକୁ ଭବୁଁ କର ପାରି ।

—୦—

## ଶକ୍ରାଜିତର ପୂର୍ବଜନ୍ମ ବୃତ୍ତାନ୍ତ

ଅଗସ୍ତିଙ୍କୁ ପୁଚ୍ଛା କଲେ ବୈବସ୍ୱତ ରାୟ
ଶକ୍ରାଜିତ ପୂର୍ବକଥା କହ ମହାଶୟ ।
କେବଣ ବଂଶରେ ସେହି ଅଟେ ମହାରାଜ
ସଂକ୍ଷେପି କହିବା କୁମ୍ଭ ଋଷିଙ୍କ ଆତ୍ମଜ ।
ଅଗସ୍ତିଙ୍କ ପ୍ରତିବାକ୍ୟ ସୂର୍ଯ୍ୟବଂଶୀ ଶୁଣ
ସୁରର ପୁତ୍ର ହୋଇଲା ଶମ୍ଭୁଜିତ ରାଣ ।
ଶମ୍ଭୁଜିତର ପୁତ୍ର ଯେ ହେଲା ସୁରଜିତ
ଏହାର ପୁତ୍ର ହୋଇଲା ରାଜା ସୁରକ୍ଷିତ ।
ଧୂମକେତୁ ହେଲା ସୁରକ୍ଷିତର ନନ୍ଦନ
ତାହାର ପୁତ୍ର ହୋଇଲା ରାଜା ଭାଗ୍ୟବାନ ।
ସେ ଭାଗ୍ୟବାନ ରାଜାର ମହିମା ତୁ ଶୁଣ
ସୁକାନ୍ତି ନଗରୀ ବୋଲି ପୂର୍ବଦିଗ୍ ଭାଗେଣ ।
ବ୍ରାହ୍ମଣ ଶାସନ ଘର ପଞ୍ଚାଶ ବସତି
ବେଦ ବିଦ୍ୟାରେ ସେମାନେ ନିର୍ଜିତ ଅଟନ୍ତି ।
ଶଶିକର ବୋଲି କରି ଏକଇ ବ୍ରାହ୍ମଣ
ତାହାର ଭାରିଯା ନାମ ପ୍ରିୟାବତୀ ପୁଣ ।
ସମୟେକ ଶଶିକରେ ବିପ୍ର ନାଶଗଲା
ତାହାର ଭାରିଯା ବାଲ୍ୟ ବିବାହ ହୋଇଲା ।
କିଛିଦିନ ଅନ୍ତରେ ସେ କୁମାର୍ଗେ ଚଳିଲା
ସେ ଦେଶ ସାଧବ ବେନି କନ୍ୟା ଜାତ କଲା ।
ତାକୁ ଗ୍ରାମ ବାହାରେ ସେ ରାତ୍ରେ ପକାଇଲା
ପେଟ ଟଣା ବୋଲି ଘର ଭିତରେ ଶୋଇଲା ।
ରାତ୍ର ପ୍ରଭାତୁ ଗ୍ରାମରୁ ଜମ୍ବୁକୀଏ ଯାନ୍ତି
ରୋଦନ କରନ୍ତେ ସେହି ବାଳାକୁ ଦେଖନ୍ତି ।
ଅତ୍ୟନ୍ତ ସୁନ୍ଦରୀ ସୂର୍ଯ୍ୟକିରଣକୁ ଜିଣି
ରାତ୍ର ପାହିଲେ ଯେସନେ ଦିଶେ ଦିନମଣି ।
ଜମ୍ବୁକୀଏ ସେ ବାଳୁତ କନ୍ୟା ଘେନିଗଲେ
ଆପଣାର ଭୁବନରେ ନେଇଣ ରଖିଲେ ।

ଆଖୁ ଗଛରୁ ଯେ କ୍ଷୀର ଆଣନ୍ତି ସେ ଧରି
ପ୍ରତିଦିନ ଦିଅନ୍ତି ସେ ବାଳୀ ତୁଣ୍ଡେ ଭରି ।
ନିରସ ମନ କରିଣ ନେଇ ପାଣି ପେଜ
କୁମାରୀ ତୁଣ୍ଡେ ଦିଅନ୍ତି ନ କରି ଅଗ୍ରାହ୍ୟ ।
ଏମନ୍ତେ ସେ କୁମାରୀକୁ ବରଷକ କଲେ
କଇଥ ଯେ କରମଙ୍ଗା ଜାମୁ ଆଣିଦେଲେ ।
ଯେ ଋତୁରେ ଯେଉଁ କୋଳି ଫଳ ଦ୍ୟନ୍ତି ଆଣି
ବାଳିକା ହାତେ ଦିଅନ୍ତି ଭକ୍ଷଇ ସେ ପୁଣି ।
ଆଖୁ କାକୁଡ଼ି ଆଦି ଯେ ସୁସଞ୍ଚ ପଦାର୍ଥ
ତାହା ଆଣି ଦିଅନ୍ତି ସେ ବାଳିକାର ହସ୍ତ ।
ଖାଇ ବଢ଼ଇ ନବୀନା କାମକଳା ବାଳୀ
ଦେଖି ସାନନ୍ଦ ହୁଅନ୍ତି ଶୃଗାଳ ଶୃଗାଳୀ ।
ସପତ ବରଷ ହେଲା କାମିନୀକି ଯହୁଁ
ଅଙ୍ଗ ବସ୍ତ୍ର ଗ୍ରାସ ଆଣି ଦିଅନ୍ତି ସେ ତହୁଁ ।
ବନସ୍ତ ଭିତରେ ରହିଥାଇ ସେ ଶୃଗାଳ
ନ ଦିଶଇ ସୂର୍ଯ୍ୟ ଯେ ଗଗନ ମଣ୍ଡଳ ।
ଏକ ଦିନେ ସେହି ବେନି ପରାଣୀ ନାହାନ୍ତି
ବିବରୁ ବାହାର ହୋଇ ବାଳା ରୂପବତୀ ।
ମନେ ବିଚାରେ ବଢ଼ିଲି ଜମ୍ବୁକୀର ଘର
ଏହାର ଗର୍ଭରୁ ମୁଁ ତ ନୁହଇ ବାହାର ।
ପ୍ରାଣର ସଖା କରିଣ ଏ ମୋତେ ପାଳନ୍ତି
ମୋର ମାତା ପିତା ବେନି ପରାଣୀ ଅଟନ୍ତି ।
ଗଗନେ ଦେବ ଥାଇ ସେ ରୂପ ନିରେଖନ୍ତି
ଧନ୍ୟରେ ସୁନ୍ଦରୀ ନବ ଯୁବତୀ ମୂରତି ।
ଶରୀର ଚମ୍ପା କୁସୁମ ପ୍ରାୟ ଝଟକଇ
କେଶବ ଚାମର ଭ୍ରମର ମାଳାକୁ ନିନ୍ଦଇ ।
କର୍ଣ୍ଣ ତଡ଼କିଆ କାମ କମାଣକୁ ଜିଣି
ଉଦୟ ବର୍ତ୍ତୁଳ ପଦ୍ମ ପତ୍ରରେ ରସାଣି ।
ଜାତିରେ ପଦ୍ମିନୀ ତୁହି ଅଟୁ ରୂପବତୀ
ତୋର ରୂପ ଦେଖି ମୋହ ଯିବେ ମୁନିଯତି ।
ଦିନୁଦିନ ସୁନ୍ଦରୀର ବଢ଼ଇ ଶରୀର
ଶୃଗାଳୀ କହଇ ଦିନେ ଶୃଗାଳ ଆଗର ।
କାହାକୁ ଦେବ ଆମ୍ଭର ଏ ଦୁହିତା ଗୋଟି
କେ ନେବ ଆମ୍ଭେ ତରିବା ପଶୁ ଜନମଟି ।
ବୋଲଇ ଶୃଗାଳ ଶୁଣ ଶୁଣରେ ସଙ୍ଗାତ
ବିହି ଯାହା କରିଥିବ କପାଳେ ଲିଖିତ ।
ଏମନ୍ତେ କିଛିଦିନେ ସୌଭାଗ୍ୟବାନ ରାଜା
ପାରିଧି ନିମନ୍ତେ ଗଲା ସଙ୍ଗେ ଘେନି ପ୍ରଜା ।
କ୍ଷୋଳ ସାଆନ୍ତ ବାସ୍ତରି ନିଯୋଗାନ୍ତ ଘେନି
ଗହନ ବନସ୍ତ ଖେଦି ଆସେ ନୃପମଣି ।

ସାହାଡ଼ ବୃକ୍ଷର ତଳେ ଅଶ୍ୱକୁ ବାନ୍ଧିଲା
ନିଗମ ବନ ଭୂମିରେ କାମିନୀ ଦେଖିଲା ।
କାହାକୁ ହିଁ ନ କହିଣ ଗଲା ନୃପନାଥ
ହୃଦେ କଥା ରଖି ଖୋଜେ ବନ ପ୍ରସ୍ଥାପ୍ରସ୍ଥ ।
ପାରିଧି କରିଣ ରାଜା ରାଜ୍ୟକୁ ଚଳିଲା
ଛଅମାସ କାଳ ଏଣେ ଅତୀତ ହୋଇଲା ।
ଦିନେ ରାଜା କରି କଷାବସ୍ତ୍ର ପରିଧାନ
ବନସ୍ତକୁ ଗଲା କନ୍ୟା ଉଦ୍ଦେଶ୍ୟରେ ପୁଣ ।
ପୂର୍ବ ପରକାରେ ତାକୁ ଦେଖେ ନରସାଇଁ
ମନୁଷ୍ୟକୁ ଦେଖି କନ୍ୟା ସେଠାରୁ ପଳାଇ ।
ଯାଇ ଗୁପତ ବିବର ଭିତରେ ପଶିଲା
ସେଦିନ ନୃପତି ତହୁଁ ବାହୁଡ଼ି ଆସିଲା ।
ଆରଦିନ ଭୁଞ୍ଜିସାରି ବନସ୍ତକୁ ଗଲା
ଚୋରରୂପେ ଜାମୁଗଛ ଉପରେ ବସିଲା ।
ବିବରୁ ବାହାର ହେଲା କନ୍ୟା ରତ୍ନ ସାର
ରାଜାର ଦୃଷ୍ଟି ପଡ଼ିଲା ତାହାର ଉପର ।
ନିରେଖଇ ରାଜା ବସି ତା ରୂପ ଲକ୍ଷଣ
କାହା ଦୁହିତା କି ବନ ଦେବତା ଏ ପୁଣ ।
କ୍ଷଣକ ମଧ୍ୟେ ଅଇଲେ ଜମ୍ବୁକୀ ଜମ୍ବୁକ
ଖାଇବାକୁ ଆଣିଦେଲେ ଆଖୁ ଫୁଟି ପକ୍ୱ ।
ଦୁହିତାର ହସ୍ତେ ନେଇ ସବୁ ଦ୍ରବ୍ୟ ଦେଲେ
ଥୋକାଏ ଖାଇ ଥୋକାଏ ବିବରେ ରଖିଲେ ।
କ୍ଷଣକ ଉତ୍ତାରୁ ରାଜା ବୃକ୍ଷୁ ଓହ୍ଲାଇଲେ
କାହାର ପଦାର୍ଥ ବୋଲି ମନେ ବିଚାରିଲେ ।
ଏହାକୁ ମାଗିଲେ ସିନା ଜାଣିବା କାରଣ
ପଶୁ ଘରେ ବାମାଜନ୍ମ ହେଲା କେଡ଼େ ପୁଣ ।
ଏତେ ବୋଲି ରାଜା ତାହା ପାଶରେ ହୋଇଲେ
ଜମ୍ବୁକ ଜମ୍ବୁକୀ ଭୟେ ଭିତରେ ପଶିଲେ ।
ସେ ସତ୍ୟଯୁଗରେ ପୁଣ ଏ କଥା ପ୍ରମାଣ
ଚଉପାୟାଙ୍କର ଭାଷା ମନୁଷ୍ୟ ରୂପେଣ ।
ନୃପତି କହଇ ଶୁଣ ଜମ୍ବୁକ ଜମ୍ବୁକୀ
ଏ ତୋହର ଦୁହିତାକୁ ଆମ୍ଭଙ୍କୁ ଦେବୁ କି ।
ଜମ୍ବୁକୀ ବୋଲେ ଗୋସାଇଁ ତୁମ୍ଭେ ମହାରାଜା
ମୋ ଝିଅକୁ ବିଭା ହେଲେ ପାଇବ ଯେ ଲଜ୍ଜା ।
ମନୁଷ୍ୟର ଦୁଇଗୋଡ଼ ବିଧାତା ନିର୍ମାଣ
ଆମ୍ଭ ପଶୁଜନ୍ମ କହି ଚାରି ଯେ ଚରଣ ।
ତାହା ଶୁଣିଣ ରାଜନ ଅଳପ ହସିଲେ
ତୋହର ଦୁହିତା ତୁହି ଦେବୁ କି ବୋଇଲେ ।
ନୃପତି ବଚନେ ନାସ୍ତି କରି ନ ପାରିଲା
ଦେବ ହିଁ ଦୁହିତା ବୋଲି ସନମତ କଲା ।

କେବଣ ଦିନରେ ଆମ୍ଭେ ବିଭା ଯେ ହୋଇବୁ
ଏହା ବିଚାରିଣ କହ ବନସ୍ତରୁ ଯିବୁ ।
ମକର ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର
ବିଚାରିଲେ ସେ ଦିନରେ ବିଭାଲଗ୍ନ ସାର ।
ବୋଲନ୍ତି ରାଜନ ଶୁଣ ଶୁଣ ବନ ଜୀବ
ଦୁହିତାକୁ ଘେନି ଆମ୍ଭ ନବରକୁ ଯିବ ।
ଶୁଣି ଜମ୍ବୁକ ଜମ୍ବୁକୀ ବୋଲନ୍ତି ବଚନ
ଯାଚିଦେଲେ ମୋ ବଂଶର ପୁଣ୍ୟ ଦେବହୀନ ।
ଏହି ଠାବକୁ ଆସିଣ ବିଭା ହୋଇଯିବ
ଏ ବଚନ ଶୁଣି ରାଜା ବୋଲେ ମନୋଭାବ ।
ମୋହର ଅଇଲେ ସୈନ୍ୟବଳ ହିଁ ଆସିବେ
ଏଠାରେ ଅନ୍ନ ଭୋଜନ କାହୁଁ ସେ ପାଇବେ ।
ଶୁଣି ଜମ୍ବୁକ ଜମ୍ବୁକୀ ବୋଲଇ ବଚନ
କେଉଁ ବୃତ୍ତି ଅବା ମୋତେ ଦେଇଛ ଆସନ ।
ସମସ୍ୟା ନ ଦେଇ ରାଜା ବାହୁଡ଼ିଣ ଗଲା
ମକର ଶୁକ୍ଳ ପକ୍ଷରେ ବିଭା ଆରମ୍ଭିଲା ।
ଷୋଳସାମନ୍ତ ବାସ୍ତରି ନିଯୋଗାନ୍ତ ଘେନି
ବାଦ୍ୟ ବାଜଇ ବାହାରେ ବିପ୍ରଜଣ ତିନି ।
ରାଜାର ନବରକୁ ସେ କୋଶେ ବାଟ ଜାଣ
ପ୍ରବେଶ ହୋଇଲା ଯାଇ ସେ ଠାବରେ ପୁଣ ।
ବେଳ ପ୍ରହର ମଧ୍ୟରେ ବିଭା ଯେ ହୋଇଲେ
କୁମ୍ଭ ଲଗ୍ନରେ ନୃପତି ବିଭା ଆରମ୍ଭିଲେ ।
ବିଭାହୋଇ ଯଉତୁକ ହେବା ବେଳେ ପୁଣି
ବିପ୍ର ବୋଲେ କି ଦକ୍ଷିଣା ଦେବ ଦିଅ ଆଣି ।
ଜମ୍ବୁକୀ ବୋଲଇ ରାଜା ଶୁଣ ମୋ ବଚନ
ଏ ତୋର ରାଜ୍ୟ ପଞ୍ଚାଶ ସହସ୍ର ଯୋଜନ ।
ଯାବତ ଉଠିଆ ପୃଥ୍ୱୀ ତୋର କୋଠଧନ
ପଡ଼ିଆ ବୃତ୍ତି ଯେତେକ ମୋର କୋଠ ଜାଣ ।
ତାହା ତୋତେ ମୁହିଁ ଦେଲି ସତ୍ୟବାକ୍ୟ କରି
ଉଠିଆ କରିଣ ଭୋଗ କର ଦଣ୍ଡଧାରୀ ।
ହସ୍ତ ଧରି କନ୍ୟାକୁ ସେ ସମର୍ପିଣ ଦେଲା
ଏହା ଦଶ ଦୋଷ କ୍ଷମା କରିବ ବୋଇଲା ।
ପିତା ମାତା ଧରି କନ୍ୟା କାନ୍ଦିଲା ଅନେକ
ରାଜ୍ୟ ଦେଲି ଯଉତୁକ ବୋଇଲା ଜମ୍ବୁକ ।
ହାନ୍ଦୋଳାରେ ବସି ରାଜା ରାଣୀ ଚାଲିଗଲେ
ଚନ୍ଦ୍ର ରୋହିଣୀ ଯେସନେ ସେ ଶୋଭା ପାଇଲେ ।
ଆଠଦିନେ ସେହି ରାଜ୍ୟ ସୀମାପାର ହେଲା
ଉପବାସେ ଭୋକେ ଶୋଷେ ଆହାର ନ କଲା ।
ତାର ସତ୍ୟ ଦେଖି ଇନ୍ଦ୍ର ପାଣି ବରଷିଲା
ଭୂମିରୁ ନ ଖାଇ ପ୍ରାଣ ଦେହରୁ ଖାଇଲା ।
ସେ ରାଜ୍ୟର ସୀମା ପାର ହେଲେ ବେନି ପ୍ରାଣୀ
ଏସନକ ସତ୍ୟ ଆନ ନ ପାଳିବେ ପୁଣି ।
ସେ ଭାଗ୍ୟବାନର ପୁତ୍ର ହେଲା ଗୁଣଜିତ
ତାହାର ପୁତ୍ରଟି ଏହି ଜାଣ ଶକ୍ରାଜିତ ।
ତାହାର ପୁତ୍ର ହୋଇଲା ସମର୍ଥକ ଜିତ
ବାସୁଦେବଙ୍କର ଶଳା ସେହି ସତ୍ୟା ଭ୍ରାତ ।

—o—

## ମଧୁବନ ବୃତ୍ତାନ୍ତ ଓ କିନ୍ନର ଦୈତ୍ୟ ବଧ

ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ବୈବସ୍ୱତ
ଗହନ ବନେ ପାଣ୍ଡବେ କଲେ କି କି କୃତ୍ୟ ।
ବଦନ୍ତି ଅଗସ୍ତି ଶୁଣ ମନ୍ଥ ଯୁଗପତି
ନିର୍ଭୟରେ ଦୁର୍ଯ୍ୟୋଧନ ହୋଇଲା ନୃପତି ।
ପାଣ୍ଡବେ ମିଳିଲେ ଯାଇ ଅରଣ୍ୟ ଗହନେ
ଗମନ୍ତି ରାତ୍ର ଦିବସ ଉଚ୍ଚ ସୀମସ୍ଥାନେ ।
ରାତ୍ର ପ୍ରଭାତେ ଭୀମକୁ ପୁଚ୍ଛନ୍ତି ଯୁଧିଷ୍ଠି
ନିତ୍ୟକର୍ମ ସାରିବାରେ ଦେଖ ଜଳଘାଟି ।
ସ୍ୱାମୀର ଆଜ୍ଞା ଘେନିଣ ଚଳେ ବୃକୋଦର
ଭ୍ରମଇ ଗହନ ବନ ପର୍ବତ କନ୍ଦର ।
ନ ଦେଖଇ ବାଟ ଚଉକତିରେ ଖୋଜଇ
ନ ପାଇଣ ଜଳଘାଟ ଲେଉଟି ଆସଇ ।
ଦେଢ଼ ପ୍ରହର ହେଲାଣି ଆସି ଦିନକର
ସରଯୁ ନଦୀ ତୀରରେ ବିଜେ ବୃକୋଦର ।
ନଦୀ ତୀରରେ ଦେଖିଲା ଏକ ମଧୁବନ
ଭୂମିରେ ଝଡ଼ି ପଡ଼ିଛି ପକ୍ୱ ଫଳମାନ ।
ଆମ୍ବ ପଣସ କଦଳୀ ଟଭା ନାରିକେଳ
ନାନା ଫଳଭରେ ଶାଖା ଲୋଟେ ଭୂମିତଳ ।
ଭୀମ ପଶିଲା ସେ ମଧୁବନର ଭିତରେ
ସମ୍ପୂର୍ଣ୍ଣ ରୂପେ ଭୋଜନ କରେ ଆନନ୍ଦରେ ।
ଭାରେକ ଫଳ ତହିଁରୁ ତୋଳିଲା ମାରୁତି
ଯୁଧିଷ୍ଠିଙ୍କୁ ଦେବ ବୋଲି ବିଚାରଇ ମତି ।
ସରଯୁ ନଦୀରେ ପଶି ସ୍ନାନ ଶେଷ କଲା
ଭୋଜନ ଆଳସେ ନିଦ୍ରା ତାହାକୁ ଘାରିଲା ।
ଫଳ ଭାର ଗୋଟି ବୀର ସୀମସ୍ଥାନେ ଦେଇ
ଆଳସ୍ୟରେ ନିଦ୍ରାଗଲା ମହାସୁଖ ପାଇ ।
ମନୁ ପଚାରିଲେ କହ ଆହେ ମୁନିବର
ସେହି ମଧୁବନ ତୋଟା ଅଟଇ କାହାର ।
ବଦନ୍ତି ଅଗସ୍ତି ମନୁ ପୁଚ୍ଛାକଲୁ ଯାହା
କିନ୍ନର ବୋଲିଣ ଏକ ଅସୁରଙ୍କ ନାହା ।

କୁମ୍ଭୀର କିନ୍ନର ବେନି ଅଟନ୍ତି ଏ ଭ୍ରାତେ
ସୁର ନଦୀରେ କୁମ୍ଭୀର ମଲା ଭୀମହାତେ ।
କୁମ୍ଭୀର ଦଇତ୍ୟ ଜ୍ୟେଷ୍ଠ ବଳିଷ୍ଠ ଏ ଭାଇ
ମଧୁବନର ଠାକୁର ଏହିଟି ଅଟଇ ।
ଅସୁରର ଭୟେ କେହି ତହିଁକି ନ ଯାନ୍ତି
ସେ ତୋଟାରେ ନିଦ୍ରାଯାଇ ଅଛଇ ମାରୁତି ।
ମଣୋହି ସାରିଣ ବିଜେ କଲାକ ଅସୁର
ଦେଖଇ ବୁଲିକରି ସେ ତୋଟାର ଭିତର ।
ମନୁଷ୍ୟର ଗନ୍ଧ ଯହୁଁ ଗନ୍ଧାଇଲା ବନେ
ବନେ ଅସୁର ଲୋଡ଼ଇ ଅତି ତୋଷମନେ ।
ଯାଇଣ ଭେଟିଲା ସେହି ସରଯୁର ତୀର
ଅଚେତନେ ଶୋଇଅଛି ସେହି ବୃକୋଦର ।
ଦଇତ୍ୟକୁ ଭୟ ନାହିଁ ତାହାରି ମନରେ
ନିଃଶଙ୍କେ ଯାଇଛି ନିଦ୍ରା ସନ୍ତୋଷ ଚିତ୍ତରେ ।
ମକର କେତନ ପ୍ରାୟ ଦିଶଇ ତା କାୟ
ଦେଖିଣ ସାନନ୍ଦ ହେଲା ସେ ଅସୁର ରାୟ ।
ବୋଇଲା ଆଜ ଦିବସ ଅଟେ ମୋର ଧନ୍ୟ
ଅକସ୍ମାତେ ନର ମାଂସ ମିଳିଲା ଭୋଜନ ।
ନଦୀରେ ପଶିଣ ସ୍ନାନ କରି କଉଣପ
ଭୀମପାଶେ ମିଳିଲା ସେ କରିଣ ପ୍ରତାପ ।
ନିଦ୍ରାରେ ପାଣ୍ଡବ ହୋଇଅଛି ଅଚେତନ
କୋପେ ଉଦ୍ଧତ ଅସୁର କରଇ ଗର୍ଜନ ।
ଭୀମସେନ ସନ୍ନିଧିରେ ଦେଲା ଘୋରରଡ଼ି
ଯେସନେ କି ଗିରିବର ପଡୁଅଛି ଝଡ଼ି ।
ନିଦ୍ରାଭରେ କିଛି ସେ ନ ଜାଣଇ ମାରୁତି
ପୁଣି ପୁଣି ରଡ଼ି ଦେଲା ଭୀମସେନ କତି ।
ତଥାପି ଭୀମସେନର ନିଦ୍ରା ନ ଭାଙ୍ଗିଲା
ଶାଳବୃକ୍ଷେକ ଉପାଡ଼ି ଶରୀରେ ପିଟିଲା ।
ଭାଙ୍ଗି ସେହି ବୃକ୍ଷ ଗୋଟି ହେଲା ଶତ ଚୂର
ତଥାପି ନୋହିଲା ନିଦ୍ରାଭଙ୍ଗ ବୃକୋଦର ।
ପୁଣି ପର୍ବତେକ ଦୈତ୍ୟ ଧରିଣ ବୁଲାଇ
ଭୀମସେନ ବାମଅଙ୍ଗେ ପ୍ରହାରିଲା ନେଇ ।
ପର୍ବତ ଚୂର୍ଣ୍ଣ ହୋଇଲା ଭୀମଅଙ୍ଗେ ପଡ଼ି
ଚିଆଇଁ ଉଠିଲା ଭୀମ ରେ ରେ କାର କରି ।
ଅସୁରକୁ ହିଁ ସମସ୍ୟା ଦିଅଇ ପାବନି
କାହିଁର ପାମର ଖଳ ମୂର୍ଖ ତୁ ଅଜ୍ଞାନୀ ।
ପ୍ରାଣିଙ୍କର ନିଦ୍ରାଭଙ୍ଗ କରି ନ ଯୋଗାଇ
ଆପଣାର ଶିରଚ୍ଛେଦ କଲା ଦୋଷ ପାଇ ।
ଅସୁର ବୋଲଇ ମୋର ଏ ଅକ୍ଷୟତୋଟା
ମନୁଷ୍ୟ ହୋଇ କେମନ୍ତେ ପଶିଲୁ ତୁହିଟା ।
ମକର କେତେନ ପ୍ରାୟ ଦିଶଇ ତୋ କାୟ
ଦେଖି ଆନନ୍ଦ ହୋଇଲା ମୋହର ହୃଦୟ ।
ଆଜ ସିନା ଧନ୍ୟ ଧନ୍ୟ ମୋହର ଜୀବନ
ଇଷ୍ଟଦେବତା ସୁମର କରିବି ଭୋଜନ ।
ତୁ ମାନବ ଅଟୁ ମୋର ଅତି ସ୍ୱାଦୁଭକ୍ଷ
ଜୀବନ ଦେବାକୁ ଏଥି ପଶିଲୁ ପ୍ରତ୍ୟକ୍ଷ ।
ଅସୁରର ପ୍ରତିଜ୍ଞା ଯେ ଶୁଣିଣ ପାବନି
ଗର୍ଜିଣ ଉଠିଲା ତହୁଁ ମହାତେଜ ଘେନି ।
ଅସୁରକୁ ଧରେ ତହୁଁ ଭୀମ ବାମଭୁଜେ
କୋପେ ଆକର୍ଷଇ ସେହି ଦୁର୍ବାର ଦନୁଜେ ।
ଭୀମସେନକୁ ଧରିଣ ପଡ଼ିଲା ଅସୁର
କାଳାନ୍ତକ ମହାଯୋଦ୍ଧା ପାଣ୍ଡବ ସୁନ୍ଦର ।
ପ୍ରଥମ ଯୁଦ୍ଧେ ହାରଇ ଶତଶୃଙ୍ଗ ଶାପେ
ଦ୍ୱିତୀୟ ଯୁଦ୍ଧ କରଇ ଭୀମ ଉଠି କୋପେ ।
ଅସୁରକୁ ପକାଇଲା ଭୀମ ଲେଉଟାଇ
ମନ୍ଦର ମାଡ଼ି ଯେସନେ ହିମାଦ୍ରୀ ବସାଇ ।
ଅସୁରକୁ ମାଡ଼ି ଭୀମ ବସି ବକ୍ଷସ୍ଥଳେ
ମୁଥେକ ପ୍ରହାର କଲା ମହାକୋପ ଭରେ ।
ବଜ୍ର ଆଘାତେ ପର୍ବତ ପଡ଼େ ଯେହ୍ନେ ରାଜି
ଭୀମସେନ ମୁଥ ବାଜି ଅସୁର ଗରଜି ।
ପୁଣ ପୁଣ ପ୍ରହାରିଲା ମୁଥ ବୃକୋଦର
ଅସୁରର ଶିର ଭାଙ୍ଗି ହେଲା ଶତ ଚୂର ।
ତହୁଁ କିନ୍ନର ଦୈତ୍ୟକୁ ମାଇଲା ପାବନି
ଆକାଶପୁରେ ଶୁଭିଲା ସାଧୁ ସାଧୁ ଧ୍ୱନି ।
ଭୀମକୁ ଅନେକ ସ୍ତୁତି ପୃଥ୍ୱୀ ଦେବୀ କଲା
ତୋ ପ୍ରସାଦେ ମୋର ଭାରା ଉଶ୍ୱାସ ହୋଇଲା ।
କ୍ଷତ୍ରୀୟ ବୀର ଜୀବନ ସାଧୁ ଅଟେ ତୋର
ସାଧୁ ସାଧୁ ବୋଲିଣ ଯେ ଦେବ କଲେ ଶୀର ।
କୁମ୍ଭୀର ଦୈତ୍ୟକୁ ତୁହି ନାଶ କଲୁ ହେଲେ
ଗଙ୍ଗା ଉଶ୍ୱାସ ପାଇଲା ତୋର ପୁଣ୍ୟବଳେ ।
କଳେବର ଧାରଣ ତୁ ଶରଣ ପଞ୍ଜର
ପ୍ରତିଜ୍ଞା ସାର୍ଥକ ସାଧୁ ଜୀବନ ତୋହର ।
ଏସନକ ସ୍ତୁତି ମଧ୍ୟ କଲେ ବିବୁଧାଦି
ପୁରୁଷବର ସୁନ୍ଦର ତୁହି ପାରୁ ସାଧି ।
ହିଡ଼ିମ୍ବକ ବଳ ଆଉ ଅଛନ୍ତି ଏ ବନେ
ମାର କୌଣପ କାରଣ ପାନ୍ଥ ତପୋଧନେ ।
ଦେବଙ୍କ ଆଜ୍ଞା ତୁମ୍ଭଙ୍କୁ ହୋଇଲା ଅକାଶେ
ଏ ଚାରି ଦୈତ୍ୟ ନିମନ୍ତେ କଷ୍ଟ ବନବାସେ ।
କିନ୍ନର ଦୈତ୍ୟ ନିଧନ କରି ଭୀମସେନ
ଫଳ ଭାର କରେ ଧରି କରଇ ଗମନ ।

ପତର ଝରିରେ ପୁଣି ପୁରାଇଣ ପାଣି
ବାହୁଡ଼ଇ ବୃକୋଦର ବାୟୁଗତି ଜିଣି ।
ବାଟ ଚାହିଁ ବସିଛନ୍ତି ଯୁଧିଷ୍ଠି ଭୀମକୁ
ହକାରି କହନ୍ତି ପୁଣ ପାଶେ ଅର୍ଜ୍ଜୁନକୁ ।
ଭୀମସେନ ଗଲା ଏତେବେଳ ପରିଯନ୍ତେ
କି ଅବା ପ୍ରମାଦ ତାକୁ ପଡ଼ିଲା ବନସ୍ତେ ।
ଏ ମହାଘୋର ବନସ୍ତେ ଥାଆନ୍ତି ଅସୁରେ
ଭୀମସେନ ପାଦ ବାରି ଯାଅ କିଛି ଦୂରେ ।
ସ୍ୱାମୀଙ୍କର ଆଜ୍ଞା ବୀରବର ଶିରେ ଘେନି
ଭୀମସେନ ଅନୁସରି ଚଳଇ ଫାଲ୍‌ଗୁନି ।
କରୁଣାକର ନାମରେ ଏକ ଗିରିବର
ସେଠାରେ ଭୀମସେନକୁ ଦେଖି ପାର୍ଥବୀର ।
ଭୀମସେନ ପାଦେ ଅରଜ୍ଜୁନ ପରଣାମି
ଅପାରକାଳ ବିଳମ୍ବ କଲେ ଦେବ ସ୍ୱାମୀ ।
ଭୀମସେନ ହସିଲାକ ପାର୍ଥ ମୁଖ ଚାହିଁ
କିନ୍ନର ଦୈତ୍ୟ କୁମ୍ଭୀର ଦୈତ୍ୟ ସାନଭାଇ ।
ମଧୁବନ ତୋଟାରେ ସେ କଲାକ ବିରୋଧ
ମହାବଳବନ୍ତ ସେହି ହେଲା ମହାଯୋଦ୍ଧ ।
ଅନେକ ଦ୍ୱନ୍ଦ୍ୱ ହୋଇଲା ତାହାର ମୋହର
ସଂଗ୍ରାମେ ବଧିଲି ମୁହିଁ ସେ ଅସୁର ବୀର ।
ତେଣୁ ବିଳମ୍ବ ହୋଇଲା ଆରେ ଫାଲଗୁନି
ଅପ୍ରମାଦେ ଅଇଲି ମୁଁ ଫଳ ଭାର ଘେନି ।
ଭୀମ ଅର୍ଜ୍ଜୁନ ଏ ବେନି ଏସନ ସମ୍ଭାଷି
ଯୁଧିଷ୍ଠିରଙ୍କ ଛାମୁରେ ମିଳିଲେକ ଆସି ।
ଉଦକ ସ୍ନାନ କରନ୍ତି ତହିଁ ଧର୍ମସୁତ
ଛାମୁରେ ଅର୍ଜ୍ଜୁନ କହେ ଅସୁର ବୃତ୍ତାନ୍ତ ।
ଯୁଧିଷ୍ଠିରଙ୍କ ବିରସ ଭାବ ଉଦେ ଚିତ୍ତେ
ଅସୁରର ସଙ୍ଗେ ଦ୍ୱନ୍ଦ୍ୱ କଲୁ ତୁ କେମନ୍ତେ ।
ତୋତେ ମାରି ଆମ୍ଭଙ୍କୁ ସେ ମାରନ୍ତା ପଶ୍ଚାତେ
ଆରବେଳେ ନ କରିବୁ ଏ କୃତ୍ୟ ଏକାନ୍ତେ ।
ସଖା ସଇନ୍ୟ ଆମ୍ଭର ସଙ୍ଗେ କେହି ନାହିଁ
ଅସୁର ବିପକ୍ଷ ବାବୁ ନୋହିବୁରେ ତୁହି ।
ଭୀମ ବୋଇଲା ସ୍ୱାମୀ ମୁଁ ଯତନେ ଲୋଡ଼ଇ
ପାଇଲେ ମାରିବି ମୋର ଏ ବ୍ରତ ଅଛଇ ।
ସାରିଲେ ସ୍ନାନ ତର୍ପଣ ଜପ ମନ୍ତ୍ର ପୂଜା
ଫଳ ଭୋଜନେ କଲେକ ବସି ଧର୍ମ ରାଜା ।
ଭୋଜନ ସାରି କରନ୍ତି ଦେବ ଆଚମନ
ଭୋଜନ ଆଳସ୍ୟ ହେତୁ କଲେକ ଶୟନ ।
ଫଳ ଭାରେ କେ ବଞ୍ଚିଲେ ତହିଁ ଦିନ ତିନି
ରହିଲେ ପାଣ୍ଡବେ ସୁଖେ ଦିବସ ରଜନୀ ।

ସେ ବନୁ ଚଳନ୍ତି ପୁଣି ଗହନ ଅରଣ୍ୟେ
ସିଂହ ବ୍ୟାଘ୍ର ଆଦି ଜୀବ ଦେଖନ୍ତି ନୟନେ ।
ଯମୁନାରୁ ବହିଯାଏ ଶରବନ୍ଧା ନଈ
ସେ ନଦୀ କୂଳେ ପ୍ରବେଶ ହୋଇ ସର୍ବେ ଯାଇ ।
ବୀରଭୋଗ୍ୟ ପର୍ବତରେ ଯାଇଣ ରହିଲେ
ପାଞ୍ଚଜଣ ତହିଁ ସ୍ନାନ ତର୍ପଣ ସାରିଲେ ।
ସ୍ୱାଦୁଫଳ ଖୋଜି ଖୋଜି ନ ପାଇ ସେ ବନେ
ସେଦିନ ଉପବାସରେ ରହିଲେ ସେମାନେ ।
ମାର୍ଗଶିର ଶୁକ୍ଳ ତ୍ରୟୋଦଶ ଶୌରିବାର
ଅଶ୍ୱିନୀ ନକ୍ଷତ୍ର ପୂର୍ଣ୍ଣ ଭୋଗ ସେ ଦିନର ।
କୌଳବ ନାମେ କରଣ ପରିଘ ଯେ ଯୋଗ
ବିଛା ସଂକ୍ରାନ୍ତି ପଚିଶ ଦିନ ଯାଇ ଭୋଗ ।
ସର୍ପିଣୀ ନଦୀର କୂଳେ ମିଳିଲେ ପାଣ୍ଡବେ
ନିରାଶେ ବଞ୍ଚିଲେ କନ୍ଦମୂଳର ଅଭାବେ ।
ସିଂହ ବ୍ୟାଘ୍ର ବୃକ ଭାଲୁ ମଦମତ୍ତ ହସ୍ତୀ
ଏ ଜୀବମାନେ ଦିଶନ୍ତି ତହିଁ ଅପ୍ରମିତି ।
ଖାଦ୍ୟ ଫଳ ଖାଇଣ ପୃଥ୍ୱୀରେ କାର୍ଯ୍ୟ କରି
ଧର୍ମ ଉଦିତ କରନ୍ତି ଆପେ ଦୁଃଖେ ପଡ଼ି ।
ଅନେକ ଦୁଃଖେ ମୃଗୟାଅର୍ଥେ ଘୋର ବନେ
ଗଣ୍ଡା ହରିଣ ମାରିଣ ବଞ୍ଚନ୍ତି ଭୋଜନେ ।
ଆକାଶରେ ଲାଗିଅଛି ଶାଳ ବୃକ୍ଷମାନ
ହର୍ଷବିରସେ ବଞ୍ଚନ୍ତି ରହି ଘୋର ବନେ ।
ଦେଖନ୍ତି ତହିଁ ବିବିଧ ତରୁଲତାଗଣ
ଶରଧାରେ ବିହରନ୍ତି ସେହି ଘୋର ବନ ।
ତହିଁ ସୁସ୍ଥରେ ରହିଲେ ପଞ୍ଚପୁତ୍ର କୁନ୍ତୀ
ମନୁଷ୍ୟର ଗତାଗତ ନାହିଁ ତାର କତି ।
ବନେ ଅଗୁରୁ ଚନ୍ଦନ ଛନ୍ତି ବହୁତର
ଖାଦ୍ୟଫଳ ମୂଳ ମାତ୍ର ନାହିଁ ସେ ବନର ।
ମୃଗୟା କରନ୍ତି ତହିଁ ନାନା ବନଜୀବେ
ଶଉରୀ ବିଧିରେ ରାନ୍ଧି ଭୁଞ୍ଜନ୍ତି ପାଣ୍ଡବେ ।
ନିର୍ମଳ ସ୍ଥାନ ଦେଖି ସେ ରହିଲେ ବନରେ
ଦାନବେ ମାରି ବଞ୍ଚନ୍ତି ଅତି ହିଁ ସୁସ୍ଥରେ ।
ପତ୍ର କୁଡ଼ିଆ କରିଣ କ୍ରୀଡ଼ନ୍ତି ହରଷେ
ସେ ବନେ ପାଣ୍ଡବେ ବାସ କଲେ ଦିନ ଦଶେ ।
ଏ ମହାଭାରତ କଥା ଅଟେ ଅକଥିତ
ଶାରଳା ଦାସ କହଇ ପଢ଼ ଅବିରତ ।

—୦—

## ହିଡ଼ିମ୍ବକ ବଧ ଓ ଘଟୋତ୍କଚର ଜନ୍ମ

ବଇଶାଖ ମାସ ଶେଷ ପୂର୍ଣ୍ଣିମା ଯେ ତିଥି
ଅନୁରାଧା ନକ୍ଷତ୍ର ଯେ ବାର ବୃହସ୍ପତି ।
ଅକାମାବଇ ସ୍ନାହାନ କରିବା ନିମନ୍ତେ
ପୁଣ୍ୟତୋୟା ନଦୀକୂଳେ ଯାଇ ପଞ୍ଚଭ୍ରାତେ ।
ତହିଁ ସ୍ନାହାନ କରିଣ ପିଣ୍ଡଦାନ କଲେ
ଆନନ୍ଦେ ତା କୂଳେ ପଞ୍ଚଦିବସ ରହିଲେ ।
ତହୁଁ ଚଳନ୍ତି ସେ ଘୋର ଗହନ କାନନେ
ପ୍ରବେଶ ହୋଇଲେ ଯାଇ ଡିଡ଼ିମ୍ବକ ବନେ ।
ସାରଣ କେଶରୀ ନାମେ ଅଛି ନଦୀ ଗୋଟି
ଆକାଶ ଗଙ୍ଗାରୁ ବହି ସାଗରରେ ଫୁଟି ।
ସେ ନଦୀର କୂଳେ ବିଜେ ସେ ପଞ୍ଚପୁରୁଷେ
କର୍ମ ବିପାକେ ବୁଲନ୍ତି ରହି ବନବାସେ ।
ଦେଖନ୍ତି ସେ ହିଡ଼ିମ୍ବକ ବନ ହିଁ ବିଶାଳ
ଅବସନ୍ତରେ ବସନ୍ତ ବହେ ଅନୁକୂଳ ।
ଆମ୍ବ ପଣସ କଦଳୀ ଟଭା ନାରିକେଳ
ଜମ୍ବୁ ଜମ୍ବିଳ ନାରଙ୍ଗ ଆଦି ପକ୍ୱଫଳ ।
ଯେତେ ଫଳ ପୁଷ୍ପ ତହିଁ ଲୋଡ଼ିଲେଟି ପାଇ
ଯାହା ମନେ ବାଞ୍ଛା କରି ତାହା ତହିଁ ଥାଇ ।
ଅତିହିଁ ବିସ୍ତାର ସ୍ଥାନ ପଞ୍ଚାଶ ଯୋଜନ
ପିଇବାକୁ ନଦୀଜଳ ମିଳେ ପ୍ରତିଦିନ ।
ବନ ଦେଖିଣ ଆନନ୍ଦ ହେଲେ ପାଞ୍ଚଜଣ
ବିହରି ଦାରାକ୍ଷ ଫଳ କରନ୍ତି ଭୋଜନ ।
ଫଳ ଭକ୍ଷନ୍ତେ ଭାଙ୍ଗିଲା କ୍ଷୁଧାତୃଷା ଖେଦ
ମଳୟ ପବନ ଲାଗି ମାଡ଼ିଲାକ ନିଦ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ଭୀମସେନ
କ୍ଷଣେ ନିଦ୍ରାଯିବା ଦିଅ ଜାନୁ ସୀମସ୍ଥାନ ।
ଭୀମସେନର ଜାନୁରେ ଶିରମାନ ଦେଇ
କାଶୀ ନଦୀ ତୀରେ ନିଦ୍ରା ଗଲେ ଚାରି ଭାଇ ।
ନିଦ୍ରା ଅଳସରେ କୁନ୍ତୀ ଦେବୀ ଗଲେ ଶୋଇ
ନିଶ୍ଚିନ୍ତରେ ନିଦ୍ରାସୁଖ ଭୋଗ କଲେ ତହିଁ ।
ବହୁତ ଆହାରେ ବହୁତର ନିଦ୍ରା ଗଲେ
ମାତାସହ ଚାରି ଭାଇ ଅଜ୍ଞାତ ହୋଇଲେ ।
ଆଦିତ୍ୟର ଅସ୍ତକାଳ ହୋଇଗଲା ଆସି
ଏକମାତ୍ର ଭୀମସେନ ଜଗିଅଛି ବସି ।
କୁନ୍ତୀଙ୍କି ଦେଖିଣ ଶୋକ କଲାକ ମାରୁତି
ଆମ୍ଭଙ୍କୁ ତୁ ଉପୁଜାଇ ପାଇଲୁ ଏ ଶାସ୍ତି ।
କୁନ୍ତଭୋଜ ରାଜାର କି କୁଳର ମଣ୍ଡନୀ
ସୋମବଂଶ ରାଜାର ତୁ ଅଟୁ ପାଟରାଣୀ ।
ପାଞ୍ଚଗୋଟି ପୁତ୍ର ତୁହି କଲୁ ଉତପତ୍ତି
ଆମ୍ଭେ ଥାଉଁ ଥାଉଁ ମାତା ପାଇଲୁ ଏ ଶାସ୍ତି ।
ଧିକ ଜୀବନ ଆମ୍ଭର ଧିକ କ୍ଷତ୍ରିକୁଳ
ହୀନ ବୀର୍ଯ୍ୟ ହେଲୁ ଥାଉଁ ଥାଉଁ ଦର୍ପବଳ ।
ଭୋ ସ୍ୱାମୀ ତୁମ୍ଭେ ପ୍ରତ୍ୟକ୍ଷେ ଧର୍ମ ନିରଞ୍ଜନ
ଯାର ପାଦ ଜଗନ୍ନାଥ କରନ୍ତି ବନ୍ଦନ ।
ଅଜାତ ଶତ୍ରୁ ଭୋ ଧର୍ମରାଜା ହେ ଯୁଧିଷ୍ଠି
କର ଲେଉଟାନ୍ତେ ଯାର ଲେଉଟନ୍ତି ସୃଷ୍ଟି ।
ଶେଜ ପଲ୍ୟଙ୍କ ସୁପାତି ଥାଉଁ ଅପ୍ରମିତେ
ଭୂମିରେ ଭୋ ସ୍ୱାମୀ ନିଦ୍ରା ମାଡ଼ିଲା କେମନ୍ତେ ।
ଅର୍ଜୁନ ବଦନ ଚାହିଁ କହେ ଭୀମସେନ
ବାସବ ନନ୍ଦନ ନାରାୟଣଙ୍କ ଅଭିନ୍ନ ।
କୋଳରେ ବସାଇ ତୋତେ ଶ୍ରୀପୁରୁଷୋତ୍ତମ
ଅତି ସ୍ନେହଭରେ ପୁଣି ଦେଲେ କୃଷ୍ଣନାମ ।
ଏ ମହୀରେ ତୋତେ ନାହିଁ କ୍ଷତ୍ରୀ ବଳବନ୍ତା
ସୁରବର ସୁନ୍ଦର ତୁ ତ୍ରଇଲୋକ୍ୟ ଜେତା ।
କାହାର ଭୟେ ବାବୁରେ ଏସନକ ଶାସ୍ତି
ଯୁଧିଷ୍ଠିଙ୍କ କୃତ୍ୟ ସିନା ଆମ୍ଭର ଦୁର୍ଗତି ।
ନକୁଳ ବଦନ ଚାହିଁ ଭୀମ ଯେ ପ୍ରଶଂସି
ଶରଦ ଚନ୍ଦ୍ରମା ପ୍ରାୟ ବଦନ ପ୍ରକାଶି ।
ଅତି ସୁକୁମାର ବାବୁ ସାକ୍ଷାତେ କୁମାର
ସପତ ପଳ ଚନ୍ଦନ ଲେପୁ ତୁ ଶରୀର ।
ଅଶ୍ୱିନୀ ନନ୍ଦନ ବୋଲି ଭଣି ବୃନ୍ଦାରକେ
ଆକାଶରେ ପାଟ ଅଛି ସୁକୁମାର ମୁଖ୍ୟେ ।
ପଲ୍ୟଙ୍କ ଶଯ୍ୟାରେ ବାବୁ ପୁଷ୍ପର ପାଖଡ଼ୀ
ତହିଁ ଉପରେ କର୍ପୂର ଧୂଳିଥାଏ ପଡ଼ି ।
ତହିଁ ନିଦ୍ରା ନ ମାଡ଼ଇ ଆରେ ମୋର ଭାଇ
ଶାଳପଦ୍ରେ ଶୋଇଲୁ ତୁ ଏବେ ସୁସ୍ଥହୋଇ ।
ବାବୁ ସହଦେବ ଆରେ ମନ୍ତ୍ରୀ ଚୂଡ଼ାମଣି
ଏ ଚଉଦ ଭୁବନର ବାରତା ତୁ ଜାଣି ।
ଭୂତ ଭବିଷ୍ୟତ ବର୍ତ୍ତମାନ ଦିଶେ ତୋତେ
ଆମ୍ଭ ସଙ୍ଗତରେ ଦୁଃଖ ପାଇଲୁ ତୁ ଏତେ ।
ଏ ତୋହର ଅବସ୍ଥା ଯେ କଷ୍ଟମାନ ଦେଖି
ଜଳି କିମ୍ପା ନ ଯାଏରେ ମୋର ବେନି ଆଖି ।
କାହାକୁ ଭୟ ବାବୁରେ ଅଛଇ ତ୍ରୈଲୋକେ
କୁରୁବଳ ଯାକ ମାରିପାରେ ମୁଁ ଏକାକେ ।
ବଚନ ଦରିଦ୍ର ଆଜ୍ଞା ନ ଦିଅନ୍ତି ସ୍ୱାମୀ
ସମ୍ପଦ ଥାଉଁ ବିପଦେ କିମ୍ପା ହୁନ୍ତି ଭ୍ରମି ।
ଗୁଣ ସୁମରିଣ ଶୋକ କରେ ବୃକୋଦର
ବନେ ଥାଇ ଶୁଣିଲା ସେ ହିଡ଼ିମ୍ବ ଅସୁର ।

ହିଡ଼ିମ୍ବକୀ ନାମେ ତାର ଏକଇ ଭଗିନୀ
ତାହାକୁ ରାଇ ବୋଇଲା ଅସୁର ଅଜ୍ଞାନୀ ।
ଆଜି ଜିହ୍ଵା ଶତ ଶତ ପୁଣ୍ୟ କଲା ମୋର
ତେଣୁ ନରମାଂସ ଆସି ମିଳିଲା ବନର ।
କାହିଁ ଅଛଇ ଦେଖା ଯା ଚଳ ଏହିକ୍ଷଣ
ମନୁଷ୍ୟ ମାଂସ ଭକ୍ଷିବି ମୋ ଛାମୁକୁ ଆଣ ।
ଭ୍ରାତାର ବଚନେ ଚଳିଯାଇ ହିଡ଼ିମ୍ବକୀ
ନିବିଡ଼ ବନ ମଧ୍ୟରେ ଯାଏ ଦେଖି ଦେଖି ।
ଦେଖିଲା ବସି ଅଛଇ ପବନ ତନୟ
ଦିଶଇ ମାରୁତି ଅଙ୍ଗ ଅନଙ୍ଗର ପ୍ରାୟ ।
ଦେଖି ଦାନବୀ ମଦନ ଶରେ ହୋଇ ଘାରି
ଅଚେତନ ହେଲା ମନେ ଧର୍ମ ଧର୍ମା ସ୍ମରି ।
ଦାନବୀ ରୂପ ଛାଡ଼ି ସେ ମଦନ ଆରତେ
ମାନବୀ ରୂପ ଧଇଲା କାମିନୀ ସାକ୍ଷାତେ ।
ମାନିନୀ କାଳରୂପିଣୀ ଅତି ସୁକୁମାରୀ
ମଦନ ଶରକୁ ତାର ନିୟମରେ ଭରି ।
ଭୀମସେନ ପାଦତଳେ ଶୋଇଲା ପ୍ରଣମି
ବୋଇଲା କାମସାଗରୁ ଉଦ୍ଧର ଭୋ ସ୍ଵାମୀ ।
ଭୀମ ଆଶ୍ଚର୍ଯ୍ୟ ବୋଇଲା ତାହାର ବଚନେ
ଦେବ ସ୍ତିରୀ ପ୍ରାୟ ଥିଲୁ କେବଣ ଭୁବନେ ।
ଅନେକ ଯେ ଅଳଙ୍କାର ଥାଇ ତୋର କାୟ
ପ୍ରତ୍ୟକ୍ଷେ ତ ଦିଶୁଅଛୁ ସ୍ଵର୍ଗ ରମ୍ଭା ପ୍ରାୟେ ।
ସଦାଶିବର ଭାରିଯା ଅଟୁ କି ପାର୍ବତୀ
ପଦ୍ମବନ ତେଜି କିବା କମଳା ଉତ୍ପତ୍ତି ।
ବ୍ରହ୍ମପୁର ତେଜି କିମ୍ବା ଅଇଲ ସାବିତ୍ରୀ
କାମଦେବ ଭାରିଯା କି ସାକ୍ଷାତେ ତୁ ରତି ।
ସ୍ଵର୍ଗ ତେଜି ଅଇଲୁ କି ତୁହି ଶଚୀ ରାଣୀ
କିସ ବର୍ଣ୍ଣନା କରିବି ତୋର ରୂପ ଗୁଣୀ ।
ମୁହିଁ ଜାତିରେ ମାନବ ଅଟେ ବଡ଼ ଦୁଃଖୀ
ତୁ କିମ୍ପାଇ ଇଚ୍ଛା କରୁ ଶରଦଚନ୍ଦ୍ର ମୁଖୀ ।
ତୋତେ ଯେ ସ୍ଵାମୀ ଯୋଗାଇ ଅନଙ୍ଗ ସୁନ୍ଦର
ଏ ଅବସ୍ଥାରେ କିସଙ୍ଗ ତୋ ସଙ୍ଗେ ମୋହର ।
ତୁ ଯେବେ ପୁଛିଲୁ ଯୋଗ୍ୟ ନୁହେଁ ମୁଁ ତୋହର
ଅଳକା ଭୁବନ ନାଥ ତୋର ଯୋଗ୍ୟବର ।
ଛାଡ଼ ମନରୁ ସୁନ୍ଦରୀ ମୋହର ଭରସା
ଏ ଦୁଃଖ କାଳେ ମୋ ପତି ବଳାଉ ତ ଆଶା ।
ଭୀମ ହିଡ଼ିମ୍ବକୀ କଥା ହୁଅନ୍ତେଣ ତହିଁ
ବିମୁଖ ହୋଇଲା ଡିଡ଼ିମ୍ବକୀ ବାଟ ଚାହିଁ ।
ଭୀମସେନ ପଚାରଇ ଥାଉ କାହା କତି
କେ ତୋହର ସ୍ଵାମୀ ତୁହି କାହାର ଯୁବତୀ ।
ନିଷ୍ଫଳ ଜୀବନ ତୋର ହେଲା କିସ ଅର୍ଥେ
ନିଜ ସ୍ଵାମୀ ଛାଡ଼ି କିମ୍ପା ଇଚ୍ଛା କରୁ ମୋତେ ।
ହିଡ଼ିମ୍ବକୀ ପ୍ରତିବାକ୍ୟ ଶୁଣ ପ୍ରାଣପତି
ହିରଣ୍ୟ ଦଇତ୍ୟ ଅଂଶେ ମୁହିଁ ଉତପତ୍ତି ।
ତାର ନନ୍ଦନ ଦାନବ ନାମ ଜପାସୁର
ଜପାସୁରର ନନ୍ଦନ ନାମ ଦୈତ୍ୟ ଘୋର ।
ଘୋରର ପୁତ୍ର ଦାନବ ମୂର୍ଖ ମହାବଳୀ
ତାହାର ନନ୍ଦନ ହେଲା ଦୈତ୍ୟ ଜପାମାଳୀ ।
ତା ସୁତ ବୀର ତା ପୁତ୍ର କେତୁମାଳା ବୀର
ଅମ୍ବା କଦମ୍ବା ହୋଇଲେ ତାହାର କୁମର ।
ଅମ୍ବା ନନ୍ଦନ ଅସୁର ନିର୍ବାକ କବଚ
ନିର୍ବାତ ନନ୍ଦନ ଅଟେ ଯେ ବଜ୍ର କବଚ ।
ବଜ୍ର କବଚର ଚାରିପୁଅ ଉପୁଜିଲା
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ହେଲା ।
କୁମ୍ଭୀର ଦୈତ୍ୟ ଅଛଇ ସୁରନଦୀ ତୀରେ
କିନ୍ନର ଯେ ମଧୁବନ ତୋଟାର ଭିତରେ ।
ହିଡ଼ିମ୍ବକ ଅଛି ଏହି ହିଡ଼ିନ୍ଦକ ବନେ
ବକ ଦୈତ୍ୟ ରହିଅଛି ଏକଚକ୍ରାରଣେ ।
ଏ ଚାରି ଭାଇଙ୍କ ମଧ୍ୟେ ମୁଁ ଏକା ଭଗିନୀ
ହିଡ଼ିମ୍ବକୀ ନାମ ମୋର ଶୁଣ ବୀରମଣି ।
ମୋତେ କାହାକୁ ପ୍ରଦାନ ନ କରେ ଦଇତ
ଯୁବାକାଳେ ହେଲି ମୁହିଁ ପତି ବିରହିତ ।
ଏତେ କାଳେ ସ୍ଵାମୀ ମୁହିଁ ପାଇଲଇଁ ତୋତେ
ଅସୁର ଭୋଗ ଭୁବନେ ପଶିଲ କେମନ୍ତେ ।
ହିଡ଼ିମ୍ବକ ଭାଇ ରାଇ ପୋଷିଲାକ ମୋତେ
ମୁହିଁ ଯେ ଅଇଲି ଧରି ନେବାର ନିମନ୍ତେ ।
ତୁମ୍ଭେ ନରଜାତି ଅଟ ଅସୁରଙ୍କ ଭକ୍ଷ
ମୁଁ ଆସି ଦେଖିଲି ତୋର ରୂପକୁ ପ୍ରତ୍ୟକ୍ଷ ।
ମଦନ ବାଣରେ ବଶୀଭୂତ ମୁଁ ହୋଇଲି
ଛାଡ଼ିଲି ଲଜ୍ଜା ସୋଦର କୂଳ ତେଜ୍ୟା କଲି ।
ସୋଦର ଛାଡ଼ିଲି ମୁହିଁ କଲି ମନବାଞ୍ଛା
ମୁଁ ତୋହର ଦାସୀ ହେଲି ଯେ ତୋହର ଇଚ୍ଛା ।
ଏ ସମୟେ ହିଡ଼ିମ୍ବକ ବିଳମ୍ବ ଦେଖିଣ
ଧାମଇ କୋପେ ଅସୁର ଧର୍ମ ଉପେକ୍ଷିଣ ।
କାଳାନ୍ତକ ଅସୁର ଯେ ପ୍ରତିଜ୍ଞା ସମର୍ଥ
ଆକାଶ ମେଖଳେ ଲାଗୁଅଛି ତାର ମାଥ ।
ବାମ କରେ ପର୍ବତେକ ଡାହାଣେ ବୃକ୍ଷେକ
ମନ୍ଦରଗିରି କି ଉଡ଼ି ଆସଇ ପ୍ରତ୍ୟକ୍ଷ ।
ଖାଙ୍କର କେଶ ଉଡ଼ଇ ଭଇରବ ରୂପ
ଦିଗମ୍ବର ମୂର୍ତ୍ତି ଭୂମି ଘୋଟାଇ କୌଣପ ।

ତମ୍ଵା ପାତ୍ର ପ୍ରାୟ ଦିଶୁଅଛି ବେନି ଆଖି
ଦୂରରେ ଥାଇଣ ତାକୁ ଦେଖେ ହିଡ଼ିମ୍ବକୀ ।
ଲହ ଲହ ଜିହ୍ଵା ଦନ୍ତ ମୁଖ ବିକଟାଳ
ରେ ରେ କାର ଶବଦରେ ଖଙ୍କାଳି କଙ୍କାଳ ।
ପୃଥିବୀକି ଉଛୁଳାଇ ଅସୁର ଧମାଇଁ
ହିଡ଼ମ୍ଵିକୀ ବୋଲେ ସ୍ୱାମୀ ଯାଅ ଯା ପଳାଇ ।
ଆସୁଅଛି ହିଡ଼ିମ୍ବିକ ଯେ ମହାବଳିଷ୍ଠ
ଯାହାର ଭୟେ ଆସନ ଛାଡ଼େ ସୁରଶ୍ରେଷ୍ଠ ।
ପାଞ୍ଚବେଳ ଧାଡ଼ି ଦେଲା ଅସୁର ସ୍ଵର୍ଗକୁ
ବଜ୍ର ତୋଳି ବାସବ ଯେ ମାଇଲା ତାହାକୁ ।
କୋଟିଏ କିରଣ ତେଜ ଯେଉଁ ବଜ୍ରଶକ୍ତି
ସେ ଶସ୍ତ୍ରେ ବଧ ନୋହିଲା ଦୈତ୍ୟ ମହାକ୍ଷତ୍ରୀ ।
ତାକୁ ସଂଗ୍ରାମେ ସମାନ ନାହିଁ ଜଣେ କେହି
ବଜ୍ରେ ନିର୍ମିତ ହୋଇଛି ଅସୁରର ଦେହୀ ।
ମୋର ବୋଲ ମାନି ବୀର ପଳାଅ ତୁରିତେ
ଅସୁର ମୁଖୁଁ ବଞ୍ଚିବା ବାଟ ନାହିଁ ତୋତେ ।
ଏକ ଚରଣ ତାହାର ପହଣ୍ଡକ କ୍ଷେପି
ପୃଥ୍ୱୀଯାକ ଡେଇଁପାରେ ଦୈତ୍ୟ କାମରୂପୀ ।
ନିକଟ ହୋଇଲା ଅଛି ପାଞ୍ଚ ଯେ ଯୋଜନ
ପଳାଇ ନ ପାର ତୁମ୍ଭେ ଏଥୁ ହେ ବହନ ।
ମୋହର କନ୍ଧରେ ଆସି ସର୍ବେ ତୁମ୍ଭେ ବସ
ଅନ୍ତରୀକ୍ଷେ ଘେନି ମୁହିଁ ବୁଲିବି ଆକାଶ ।
ଭୀମ ବୋଇଲା ଜାଣିଲି ମୁଁ ତୋହର ମନ
କାନ୍ଧେ ବସାଇ ଗିଳିବୁ ଆମ୍ଭଙ୍କୁ ବହନ ।
ହିଡ଼ିମ୍ଵିକୀ ବୋଲେ ଯେବେ କଲୁ ତୁ ଅପ୍ରତେ
ଅଲଙ୍ଘିତ ନିୟମ ମୁଁ କଲି ତୋ ଅଗ୍ରତେ ।
ଯେବେ ତୋ ଦେହରେ ବଳ ପରାକ୍ରମ ଅଛି
ଅସୁର ତୁଲେ ସଂଗ୍ରାମ କର କି ନା ପାଞ୍ଚି ।
ଯଦ୍ୟପି ଏ ହିଡ଼ିମ୍ବିକ ଅଟେ ମୋର ଭାଇ
ତାହାର ଭୟରେ ମୋତେ ନ ବରିଲେ କେହି ।
ତୁ ମୋର ବଲ୍ଲଭ ମଲେ ହେବ ମୋର ଖେଦ
ତୋହର ମୋହର ଆତ୍ମା ଅଟଇ ଅଭେଦ ।
ତା ମୃତ୍ୟୁଭେଦ କହଇ ହେବ ଯେଣେ ସାଧ୍ୟ
ଯେବଣଠାରେ ମାଇଲେ ହେବ ସେହି ବଧ ।
ଭୀମ ବୋଇଲା କହନି ପ୍ରିୟ ମୋ ଅଗ୍ରତ
ହୋଇଲୁ ମୋର ଭାରିଯା ତ୍ରିବାର ମୋ ସତ୍ୟ ।
ବୋଲେ ସେ ଶିବ ସେବିଲା ନବବର୍ଷ ତପେ
ବୋଇଲା ଜିଣିବି ତିନିପୁର ବିଶ୍ୱରୂପେ ।
ଦେବ ଦାନବ ମାନବ ନାଗ ଆଦି କରି
ସପତ ବ୍ରହ୍ମାଣ୍ଡେ ମୋତେ ନୋହିବ କେ ସରି ।
ଯେତେ ମତେ ସୁପ୍ରସନ୍ନେ ହେଲେ ବିଶ୍ୱରୂପ
ଦେହେ ବଜ୍ର ଆଦି ଅସ୍ତ୍ର ପଡ଼ି ପାଉ ଲୋପ ।
ଭୋଳେ ଦେବ ବିଶ୍ଵରୂପ ଧରିକରି ପାତ୍ରେ
ଢାଳିଲେ ସେ ମହାରୂପ ହିଡ଼ିମ୍ବକ ଗାତ୍ରେ ।
ନାଭି ଗଭୀର ତହିଁରେ ମାତ୍ର ନ ପଡ଼ିଲା
ଶରୀରଯାକ ତାହାର ବଜ୍ର ପ୍ରାୟ ହେଲା ।
ଜାଣିଥିବୁ ସ୍ୱାମୀ ତୁହି ସଂଗ୍ରାମର କାଳେ
ଗଭୀର ନାଭି ପୋଡ଼ିବୁ ମାରି ବଜ୍ରଶୂଳେ ।
ତେବେ ଜାଣ ନାଶଯିବେ ଦଇତ୍ୟ ତୋହରି
ଆନଯୁଦ୍ଧେ ତାକୁ ନାହିଁ ତ୍ରଇଲୋକ୍ୟ ସରି ।
ହିରଣ୍ୟକ ପରବତେ ଅଛି ଶୂଳ ଶକ୍ତି
ଦେବଙ୍କ ଯୁଦ୍ଧରେ ଧରିଥିଲା ଦୈତ୍ୟପତି ।
ଭୀମ ବୋଇଲା ସେ ଶକ୍ତି ଦେବୁ ଯେବେ ଆଣି
ତୋର ପ୍ରିୟଭାବ ମୁହିଁ ଜାଣିବି ଏକ୍ଷଣି ।
ଏ ବଚନେ ତହୁଁ କ୍ଷେପିଗଲା ସେ ଅସୁରୀ
ସେହିଠାରେ ଥାଇ ହସ୍ତ ଦେଲାକ ବିସ୍ତରି ।
ପାଞ୍ଚ ଯୋଜନରେ ଅଛି ହିରଣ୍ୟ ପର୍ବତ
ତହିଁକି ପାଇଲା ହିଡ଼ିମ୍ବିକୀ ବାମହସ୍ତ ।
ଭୀମ ଦେଖୁ ସେ ଶକତି ଆଣି ବାମକରେ
ସମର୍ପିଲା ନେଇ ଭୀମସେନର ହସ୍ତରେ ।
ଭୀମସେନ ବୋଇଲା ତୁ ହସ୍ତେ ଘେନିଥିବୁ
ସଂଗ୍ରାମ କଟାଳ ଦେଖି ମୋତେ ଏହା ଦେବୁ ।
ନିଦ୍ରାରେ ଯେ ଅଚେତନ ମୋର ଭ୍ରାତା ମାଏ
ନିଦ୍ରାଭଗ୍ନ କଲେ ଦୋଷ ଅପ୍ରମିବ ହୁଏ ।
ତୋତେ ଲାଗିଲା ଏ ପାଞ୍ଚଜଣଙ୍କର କଥା
ସମରେ ମୋଡ଼ିବି ଏହିକ୍ଷଣି ଦୈତ୍ୟମଥା ।
ଆବର କଥାଏ ତୋତେ ମାଗେ ପ୍ରିୟସଖୀ
ନ ପୁଣ ତୁ ଦୁଃଖ କରୁ ଭାଇ ମୃତ୍ୟୁ ଦେଖି ।
ହିଡ଼ିମ୍ବକୀ ବୋଲେ ସେ ମୋ ଶତ୍ରୁ ଏକା ମାରି
ଦାନବ କରେ ବୁଲାଏ ପର୍ବତେକ ଧରି ।
ପାଣ୍ଡବଙ୍କ ପାଶେ ଆସି ହୋଇଲା ପ୍ରବେଶ
ଦେଖେ ଭଗିନୀ ବସିଛି କାମେ ହୋଇ ବଶ ।
ଝିଙ୍ଗାସେ ଦାନବୀ ହୋଇନରେ ହେଲୁ ଦାସ
ତେଣୁ କରି ତୋତେ ଆଜି କରିବି ବିନାଶ ।
ଏତେ ବୋଲି ମାରିବାକୁ ଇଚ୍ଛନ୍ତେ ଅସୁର
ଜାନୁପରୁ ଭୀମ ମାତା ଭ୍ରାତାଙ୍କର ଶିର ।
ଧୀର କରି ତଳେ ରଖି କଲା ଗରଜନ
ମହାକ୍ରୋଧେ ଦାନବକୁ କହଇ ବଚନ ।
କିରେ ମୋର ଶରଣ ତୋ ପଶିଛି ଭଉଣୀ
ତାହାକୁ ବିନାଶିବାକୁ ଆସୁ ଶିର ଝୁଣି ।

ନିଶ୍ଚେ ଆଜି କାଳ ତୋର ପୂରିଲାଟି ଜାଣ
ଏହା ଶୁଣି ରାକ୍ଷସ ଯେ କଲା ଗରଜନ ।
କରେ ଧରିଥିଲା ଦୈତ୍ୟ ଏକ ଗିରିବର
ବୁଲାଇ ପିଟିଲା ଭୀମସେନର ଉପର ।
ପଡ଼ି କରି ଖଣ୍ଡ ଖଣ୍ଡ ହୋଇ ଭାଜିଗଲା
ଭୀମସେନ ଶରୀର ତା ଜାଣି ନ ପାରିଲା ।
ସାଧୁ ସାଧୁ ମନରେ ସେ ଦୈତ୍ୟରାଜ ବୋଲି
କୋପେ ଭୀମସେନକୁ ସେ ପକାଇଲା ପେଲି ।
ଅସୁର ଡାକ ଦିଅଇ ଆଲୋ ହିଡ଼ିମ୍ବିକୀ
ସୋଦର ହୁଡ଼ିଲୁ ପରପୁରୁଷକୁ ଦେଖି ।
ଏହାଙ୍କର ରକ୍ତ ମାଂସ ଆଗ କରି ଗିଳି
ତୋହର ମୁଣ୍ଡ ମୋଡ଼ିଣ ପଛେ ଦେବି ବଳି ।
ଅନେକ ପ୍ରତିଜ୍ଞା ଯହୁଁ କରଇ ଅସୁର
ହିଡ଼ିମ୍ବିକୀ ବୋଲେ ଭାଇ ତୋ ଗୁଣ ଅପାର ।
ରାଗେ ବିଶ୍ୱରୂପ ଧରି ଧାଇଁଲା ଦଇତ୍ୟ
ଭୁଜ ବଢ଼ିଗଲା ବେନି ଯୋଜନ ପର୍ଯ୍ୟନ୍ତ ।
ଧାତିକାରେ ଉପାଡ଼ିଣ ବେନି ଯେ ପର୍ବତ
ପୁଣି ସେ ପ୍ରହାର କଲା ଭୀମସେନ ମାଥ ।
ବାମଅଙ୍ଗ ପାତି କଲା ପବନର ସୁତ
ପଡ଼ି ଚୂର୍ଣ୍ଣ ହୋଇଗଲା ସେ ବେନି ପର୍ବତ ।
ଭୀମ ଦୈତ୍ୟକୁ ପିଟିଲା ପିଆଶାଳ ବୃକ୍ଷେ
ଅସୁର ଈଶ୍ୱର ତାହା ଧରିଲା ପ୍ରତ୍ୟକ୍ଷେ ।
ହିଡ଼ମ୍ବକ ବୋଇଲା ତୁ ନର ମୋର ବଳି
କେମନ୍ତେ ତୁ ଏଡ଼େ ଦର୍ପ ବହିଲୁ ଛେଳି ଭଳି ।
ଭୀମ ପ୍ରତିବାକ୍ୟ ମୋତେ ନ ଜାଣୁକି ତୁହି
ମୋହର ହସ୍ତରେ ଜାଣ ତୋ ମୃତ୍ୟୁ ଅଛଇ ।
କୁମ୍ଭୀର କିନ୍ନର ଦୈତ୍ୟ ମାରି ମୁହିଁ ତୋତେ
ଖୋଜୁଥିଲି ତୁହି ଆସି ପଡ଼ିଲୁ ମୋ ହସ୍ତେ ।
ଏତକ ବଚନ ଶୁଣି ଦୁର୍ବାର ଦଇତ
ଭୀମସେନକୁ ମାଇଲା କୋପେ ବଜ୍ରମୁଥ ।
ତାହାକୁ ମାଇଲା ବେନି ମୁଥ ଭୀମସେନ
ତ୍ରିପଣ୍ଡ ଶରୀର ରକ୍ତ ବହି ଶ୍ରମ ଘର୍ମ ।
ରାଗେ ଭୀମକୁ ଧଇଲା ଦଇତ ଆକର୍ଷି
ଦୈତ୍ୟଗଳେ ଲଗାଇଲା ଭୀମଭୁଜ ଫାଶି ।
ପାଦେ ପାଦକୁ ଛନ୍ଦିଲା ଦୈତ୍ୟ ମହାବଳୀ
ଅସୁରକୁ ପକାଇଲା ପବନକୁ ତୋଳି ।
ଅସୁରର ବକ୍ଷସ୍ଥଳେ ବସି ଭୀମସେନ
ବେନି ମୁଥ ପ୍ରହାରିଲା କରିଲା ଗର୍ଜନ ।
ହୁଙ୍କାର ଶବଦ କଲା କଉଣପ କୋପେ
ଭୀମସେନକୁ ପାତିଲା ଭୁଜବଳ ଦର୍ପେ ।

ହିଡ଼ିମ୍ବକ ମାଡ଼ିବସି ଭୀମସେନ ହୃଦେ
ବଜ୍ରମୁଥ ପ୍ରହାରିଲା କୋପେ ଘୋର ନାଦେ ।
ଯେସନେ ଆକାଶୁଁ ବଜ୍ର ପଡ଼ଇଟି ଝଡ଼ି
ପ୍ରତିଜ୍ଞାବନ୍ତ ସେ ଭୀମ ଉଠେ ଦେଇ ରଡ଼ି ।
ଅସୁରକୁ ଲେଉଟାଇ ମାଡ଼ିବସେ ଭୀମ
ଅସୁରର ବକ୍ଷସ୍ଥଳୁଁ ବହୁଅଛି ଘର୍ମ ।
ପୁଣି ଅସୁର ତାହାକୁ ପାଦେ ଲେଉଟାଇ
ଭୀମସେନର ଉପରେ ବସଇ ନିଠାଇ ।
ଭୀମକୁ ଯେ ହିଡ଼ିମ୍ବକ କଚାଡ଼ଇ ତୋଳି
ଭୀମର ଆଘାତେ ଗିରିବର ହେଲା ଧୂଳି ।
ଭୀମସେନ ଆକର୍ଷିଣ ଧଇଲା ତାହାକୁ
ବେନିଭୁଜେ ଆକର୍ଷିଣ ବିଦାରିଲା ବୁକୁ ।
ଧରନ୍ତି ପଡ଼ନ୍ତି ଲେଉଟନ୍ତି ମାଲବନ୍ଧେ
କେହି କାହାଠାରୁ ଉଣ ନୁହନ୍ତି ନା ଯୁଦ୍ଧେ ।
ହିଡ଼ିମ୍ବକ ବନେ ହେଲା ଦୁହିଁଙ୍କ ସମର
ଦଶଯୋଜନ ପର୍ଯ୍ୟନ୍ତେ ଗିରି ହେଲା ଚୂର ।
ରୁଧିରରେ ବିଲେପନ ଦୁହିଁଙ୍କର ଅଙ୍ଗ
ଯେସନେକ ଗଇରିକ ଶୈଳ ଦୁଇ ଯୋଗ ।
ବାରଣ ନ ଯାଇ ବୃକ୍ଷେ ଯାମଳ ଯେସନ
ଲୋମ ଲୋମରେ ରୁଧିର ବହେ ଘନ ଘନ ।
ଜଡ଼ିତ ହୋଇଛି ରଣେ ଦୁହିଁଙ୍କର କାୟ
ପ୍ରତ୍ୟକ୍ଷେ ଦିଶନ୍ତି ପୁଷ୍ପ କିଂଶକୁ ପରାୟ ।
ବ୍ରହ୍ମାଣ୍ଡ କମ୍ପୁଛି ବାଜି ସଂଗ୍ରାମର ମୁଦ୍ରା
ତଥାପି ଭାଙ୍ଗିଲା ନାହିଁ ପାଞ୍ଚଙ୍କର ନିଦ୍ରା ।
ଭାଙ୍ଗି ଗୁଣ୍ଡାହେଲା ଯୋଜନକ ପାଞ୍ଚଦଶ
ଦେଖି ହିଡ଼ିମ୍ବିକୀ ତହୁଁ ହୋଇଣ ହରଷ ।
ବୋଇଲେ କୁନ୍ତୀଙ୍କୁ ଚାହିଁ ଉଠ କିନା ମାଏ
ତୁମ୍ଭର ପୁଅ ପଡ଼ିଲେ ରଣେ ଅପଚୟେ ।
ଝଟତି ଉଠି ବସିଲେ ଦେବ ଯୁଧିଷ୍ଠିର
ଭୀମ ନ ଦେଖି ରୋଦନ କରନ୍ତି ଅପାର ।
ବୋଇଲେ ଅସୁରୀ ମାଗୋ ନିଦ୍ରାଗଲୁ ତୁହି
ତୁମ୍ଭର ପୁତ୍ରକୁ ଧରିନେଲା ମୋର ଭାଇ ।
ଶୁଣି ଧାମନ୍ତି ଯେ ଯୁଧିଷ୍ଠିର ଅରଜୁନ
କାନ୍ଦଇ ଯେ ହିଡ଼ମ୍ବିକୀ ନୁଆଇଁ ବଦନ ।
ଅନ୍ତରୀକ୍ଷେ ହିଡ଼ମ୍ବିକୀ ଧାଏଁ କୋପମୂର୍ତ୍ତି
କରେଣ ଘେନି ଅଛଇ ରୁଦ୍ରଶୂଳ ଶକ୍ତି ।
ଦେଖି ତାକୁ ହିଡ଼ିମ୍ବକ ସାନନ୍ଦ ହୋଇଲା
ଆଣ ଲୋ ଶକତି ବୋଲି ଭୁଜ ବିସ୍ତାରିଲା ।
ଭୀମସେନ ଡାକିଲାକ ଅସୁରୀ କି ଦେଖି
ତାର ହସ୍ତେ ଦେଲା ନେଇ ଶକ୍ତି ହିଡ଼ିମ୍ବିକୀ ।

ଭୀମସେନ ହସ୍ତେ ଯହୁଁ ଶକତି ପଡ଼ିଲା
ଦେଖିଣ ଦାନବବର ଆତ୍ମା ଉସ୍ବର୍ଗିଲା ।
ଯହୁଁ ମନେ ଜାତ ହେଲା ବିରସର ଭାବ
ଦୈତ୍ୟ ବକ୍ଷସ୍ଥଳେ ମାଡ଼ି ବସିଲା ପାଣ୍ଡବ ।
ବାମହସ୍ତେ ମାଡ଼ିବସି କୋପେଣ ପାବନି
ନାଭି ମଣ୍ଡଳେ ପ୍ରହାର କଲା ଶୂଳ ଘେନି ।
ନାଭିରେ ପଡ଼ି ତାହାର ଫୁଟିଲାକ ପିଠି
ପୃଥିବୀରେ ପଶିଗଲା ଯୋଜନକ କଣ୍ଠି ।
ଶୂଳମାଡ଼ି ଭୀମସେନ ବସି ବକ୍ଷସ୍ଥଳେ
ଯେହ୍ନେ ନୃସିଂହ ହିରଣ୍ୟ ବିଦାରଣକାଳେ ।
ଯୁଧିଷ୍ଠି ହସିଲେ ଭୀମସେନ ମୁଖ ଦେଖି
ଭୟେ ପଶି ନ ପାରିଲେ ତାହାର କତିକି ।
ଭୟ କଲେ ଦେଖି ସେହି କାଳାନ୍ତକ ମୂର୍ତ୍ତି
ଭୀମ ଦେଖି ଭୀତ ହେଲେ ମାତ ଦେବୀ କୁନ୍ତୀ ।
ବ୍ୟାକୁଳ ହୋଇ ବୋଇଲେ ପୁଣି ମହାସତୀ
ଭୋ ଧର୍ମ ଦେବତା ଆସୁ ମୋର ପୁତ୍ର ବର୍ତ୍ତି ।
ହିଡ଼ିମ୍ବୀ ବୋଇଲା ତୁମ୍ଭେ କିଛି ହିଁ ନ ଭାଳ
ହିଡ଼ିମ୍ବ ଦୈତ୍ୟକୁ ବଧ କଲେ ମହାବଳ ।
ଦନୁଜ ମରଣ ଦେଖି ଭୀମସେନ ଶାନ୍ତ
ସନ୍ନିଧେ ପ୍ରବେଶ ଯାଇ ହେଲେ ଚାରିଭ୍ରାତ ।
ଭୀମସେନ ପ୍ରଣମିତ କରେ ମାତା ପାଦେ
ମୁଖେ ଚୁମ୍ବ ଦେଲେ ଧର୍ମ ନନ୍ଦନ ସାନନ୍ଦେ ।
ବାବୁ ମୁହିଁତୋର ଘେନି ଯାଏରେ ଆପଦ
ମୋତେ ନ କହିଲୁ ତୋତେ ପଡ଼ିଲା ପ୍ରମାଦ ।
ଭୀମସେନ ବୋଲେ ତୁମ୍ଭେ ନିଦ୍ରାଗଲ ସ୍ୱାମୀ
କେହି ଜାଣି ନ ପାରିଲେ ଦୈତ୍ୟ ଭୋଗ ଭୂମି ।
କୁନ୍ତୀ ପାଦେ ପ୍ରଣମିଲା ଆସି ହିଡ଼ିମ୍ବିକୀ
ଭୀମସେନ ପ୍ରଶଂସଇ ତାହାକୁ ହିଁ ଦେଖି ।
ଦାନବୀ ହୋଇ ତୋହର ଏଡ଼େ ସତ୍ୟବାଣୀ
ସହୋଦର ଛାଡ଼ି ହେଲୁ ଆମ୍ଭର ରମଣୀ ।
କୁନ୍ତୀ ବୋଇଲେ ମାତା ଗୋ ହୋଇଲି ତୃପତି
ତୋହର କାମନା ପୂର୍ଣ୍ଣ କରିବି ଗୋ ସତୀ ।
ହିଡ଼ିମ୍ବୀ ବୋଇଲେ ମାଗୋ ଏ ତୋର ନନ୍ଦନ
ଏହାକୁ ଦେଖି ମଦନ ବାଣେ ଅଚେତନ ।
ସୋଦର ଛାଡ଼ିଲି ମୁହିଁ ଏହାର ନିମନ୍ତେ
ମଦନ ଶର ପୀଡ଼ିତ କଲା ଆସି ମୋତେ ।
କୁନ୍ତୀ ବୋଇଲେ ମୋହର ଜ୍ୟେଷ୍ଠପୁତ୍ର ଅଛି
ତାହାକୁ କିମ୍ପାଇ ତୁଗୋ ମନରେ ନ ବାଞ୍ଛି ।
ହିଡ଼ିମ୍ବୀ ବୋଇଲେ ଯାର ଯାହାଠାର ଭାବ
ପ୍ରଜାପତି ଭିଆଇଛି ନୁହେଁ ଆନ ଭାବ ।

ସମୁଦ୍ର ମନ୍ଥିଲେ ଦେବ ଦୈତ୍ୟ ସତ୍ୟଯୁଗେ
କମଳା ଜନମ ହେଲା କୃଷ୍ଣର ଉଦ୍‌ଯୋଗେ ।
ଇଚ୍ଛାଏ ବର ବରିଲା ସେହି ଆଦି ନାରୀ
ବ୍ରହ୍ମ ରୁଦ୍ର ଥାଉଁ ନାରାୟଣଙ୍କୁ ସେ ବରି ।
ଆମ୍ଭେ କାମବତୀ କରୁ ମନରେ ଯା ଇଚ୍ଛା
ବିଚାରିଣ ପୂର୍ଣ୍ଣ କର ମୋର ମନବାଞ୍ଛା ।
ଭୀମକୁ ବୋଇଲେ ତୁମ୍ଭେ ବିଚାର କେମନ୍ତ
ମୁହିଁ ତ ତୋର ବଲ୍ଲଭୀ ତୁ ମୋହର କାନ୍ତ ।
ଯୁଧିଷ୍ଠି ବୋଇଲେ ବାବୁ ନ ଭାଳ ତୁ ଚିତ୍ତେ
ଆଦ୍ୟରୁ ଭାବିନୀ ସେହି ଭାଳୁଅଛି ତୋତେ ।
ତୁ ମହାବଳିଷ୍ଠ ସେହି ନାରୀ ବଳବତୀ
ଏହାର ତୋର ମିଳନ ଅଟଇ ଯୁକତି ।
ଆୟୁର୍ବେଦୀୟ ସଙ୍ଗରେ ସାମବେଦୀ ମିଶି
ଆଦ୍ୟ ହୁଁ ଉତ୍ପତ୍ତି ବ୍ରହ୍ମଗୋତ୍ରୀ ପାଠ ଋଷି ।
ଆୟୁର୍ବେଦରେ ଅଟଇ ସେ ଋଷି ନିର୍ଜିତ
ଅଜପା ଗାୟତ୍ରୀ ମନ୍ତ୍ର ସାଧି ସିଦ୍ଧି ମନ୍ତ୍ର ।
ଗନ୍ଧର୍ବମତେ ଯୁକତେ ଅଛି ପୁଣି ବିଭା
ଭୀମକୁ ହିଡ଼ିମ୍ବୀ ଦାନ କଲେ ଆଦି ଦେବା ।
ମହାବାକ୍ୟ ଉଚ୍ଚାରିଲେ କରି ବେଦଧ୍ୱନି
ବିଭା ଯୋଗ କରାଇଲେ ହିଡ଼ିମ୍ବୀ କାମିନୀ ।
ହୋମ କଲେକ ଦୋହରା ଅଗ୍ନି ଆରୋପିଣ
ଘୃତ ପାରଣା କଲେକ ବସି ବେନି ଜନ ।
ଯଉତୁକ ପାଇଲା ସେ ହିଡ଼ିମ୍ବକ ବନ
ଲଭିଲେ ସେ କୁମାରୀକୁ ବୀର ଭୀମସେନ ।
କୁମ୍ଭ ଶୁକ୍ଳ ଦଶମୀ ତିଥି ଅର୍କବାର
ପୁଷ୍ୟା ନକ୍ଷତ୍ରର ସବୁ ଭୋଗ ସେ ଦିନର ।
ଶୁଭ ନାମେ ଯୋଗ ଗର ନାମରେ କରଣ
କୁମ୍ଭ ସଂକ୍ରାନ୍ତି ପଚିଶ ଦିନ ଭୋଗ ଜାଣ ।
ଭୀମସେନ ରହିଲା ଯେ ହିଡ଼ିମ୍ବିକୀ ତୁଲେ
ଅରଣ୍ୟ ଗିରି ଉପରେ ପୁଣ୍ୟତୋୟା କୂଳେ ।
ସୁସଞ୍ଚ ପର୍ବତ ଗୋଟି ଅତି ପରିମଳ
ଆମ୍ବ ପଣସ କଦଳୀ ଗୁଆ ନାରୀକେଳ ।
କେନ୍ଦୁ କଇଥ ବାହାଡ଼ା ମାତୁଳଙ୍ଗ ବେଲ
ବସନ୍ତ ପବନ ତହିଁ ଅଛି ସର୍ବକାଳ ।
ଯାହା କି ବାଞ୍ଛା କରିବ ତାହା ତହିଁ ପାଇ
ଗନ୍ଧର୍ବ ଗନ୍ଧର୍ବୀଙ୍କର ଅଟେ ସିଦ୍ଧ ତୁଇଁ ।
ସେ କନକ ଗିରିତଳେ ବହେ ସରସ୍ୱତୀ
ହିରଣେଶ୍ୱର ଲିଙ୍ଗ ସେ କଲୁ ଉତପତ୍ତି ।
ଏସନକ ପର୍ବତ ସେ ଅତି ଶୁଦ୍ଧସ୍ଥାନ
ମନୁଷ୍ୟ ଆଗମ ନାହିଁ ସହସ୍ର ଯୋଜନ ।

ହିଡ଼ିମ୍ବ ଯୋଗୁଁ ନିର୍ଭୟ ଦିବସ ରଜନୀ
ସାତଦ୍ୱୀପର ନିର୍ମଳ ସ୍ଥାନ ପାଇ ବେନି ।
ରହିଲେକ କୁତୂହଳେ ତହିଁ ଭୀମସେନ
ବାହୁଟିଆ ଜୀବ ମାରି କରନ୍ତି ଭୋଜନ ।
ରାମ ପାରିଧି କରନ୍ତି ଯେହ୍ନେ ରହି ବନେ
ତେସନେ ଧରା ପଡ଼ନ୍ତି ବନ ଜୀବମାନେ ।
ରହିଲେ ପାଣ୍ଡବମାନେ ହିଡ଼ିମ୍ବ ବନସ୍ତେ
ମହାସୁଖ ପାଇ ସାତବର୍ଷ ପରିଯନ୍ତେ ।
ଭୀମ ହିଡ଼ିମ୍ବକୀର ସେ ବହୁତ ପୀରତି
ଦାସୀ ପ୍ରାୟ ଖଟିଥାଇ ହିଡ଼ିମ୍ବିକୀ ସତୀ ।
କନ୍ୟା ମାସର ଯେ ଶେଷ ପୂର୍ଣ୍ଣିମାର ଦିନ
ପଣ୍ଡିତ ବାର ଅଶ୍ୱିନୀ ଦ୍ୱିଜା ସନ୍ଧିସ୍ଥାନ ।
ସେ ଦିନ ରାତ୍ର ହୋଇଛି ଅଢ଼ାଇ ପ୍ରହର
ହିଡ଼ିମ୍ବକୀ ଗର୍ଭୁ ଜାତ ହୋଇଲା କୁମର ।
ପୁତ୍ରଭାବେ କମ୍ପିଗଲେ ଦଶଦିଗପାଳେ
ଭୀମସେନ ରହିଥିଲେ ପର୍ବତର ତଳେ ।
କୁନ୍ତୀଦେବୀ ଧାଇଁଯାଇ ଧଇଲେ ନନ୍ଦନ
ମହାବଳବନ୍ତ ସେହି ପର୍ବତ ସମାନ ।
କୋଳେ ଦେବୀ ନ ପାରିଲେ ପୁଅକୁ ସମ୍ଭାଳି
ହିରଣ୍ୟଗିରି ଉପରୁ ପଡ଼ିଲାକ ଢଳି ।
ଏକାଦଶ ଯୋଜନ ଯେ ଗିରି ଆୟତନ
ରସାତଳ ହେଲା କୋଳୁଁ ପଡ଼ନ୍ତେ ନନ୍ଦନ ।
ଆପେ କୋପ କରି ତାକୁ ଧଇଲା ମାରୁତି
ପୁତ୍ରମୁଖେ କ୍ଷୀର ଦେଲା ହିଡ଼ିମ୍ବିକୀ ସତୀ ।
ପୁତ୍ରର ମସ୍ତକ ଗୋଟି ଘଟର ଆକାର
କେଶ ସବୁ ଊର୍ଦ୍ଧ୍ୱମୁଖେ ଉଡ଼େ ଫରଫର ।
କ୍ଷୀର ପାନ କରି ପୁତ୍ର ଲଭିଲାକ ଶାନ୍ତି
ଘଟୋତ୍କଚ ନାମ ତାର ଦେଲେ ଦେବୀ କୁନ୍ତୀ ।
ଲୋଭ ମୋହ ଲାଗିବାରୁ ହିଡ଼ିମ୍ବକ ବନେ
ନିଶ୍ଚିନ୍ତେ ରହିଲେ ସୁଖେ ପଣ୍ଡୁର ନନ୍ଦନେ ।
ହିଡ଼ିମ୍ବକ ବଧ ଘଟୋତ୍କଚର ଉତ୍ପତ୍ତି
ଲେଖିଲା ଏହା ଶାରଳା ଦାସ ମୂଢ଼ମତି ।

—୦—

## ଅର୍ଜ୍ଜୁନ କର୍ତ୍ତୃକ କପିଳା ବଧ ଓ ତାହାଙ୍କର ପାପ ଖଣ୍ଡନ

ଏଥୁଅନନ୍ତରେ ଶୁଣ ମନୁ ଯୁଗପତି
ଶୁଣନ୍ତେ ଘୋର କଳୁଷ ନ ଆସିବ କତି ।
ସାବଧାନ ହୋଇ ଶୁଣ ହେ ମନୁ ରାଜନ
ଶ୍ରୀକୃଷ୍ଣ ଚରିତ ପାପ କରିବ ଦହନ ।
କୁମ୍ଭ ଶୁକ୍ଳ ଦ୍ୱିତୀୟା ତିଥି ଅର୍କବାର
ଶତଭିଷା ନକ୍ଷତ୍ର ଯେ ଅଟେ ସେଦିନର ।
ଗର ନାମେ କରଣ ଯେ ଶୁଭନାମେ ଯୋଗ
କୁମ୍ଭ ସଂକରାନ୍ତି କି ଯେ ସାତଦିନ ଭୋଗ ।
ସେହିଦିନ ଶାଳ ତଳେ ବସିଣ ଯୁଧିଷ୍ଠି
ଅର୍ଜ୍ଜୁନକୁ ରାଇ ଏହି ବଚନ ପ୍ରକଟି ।
ପିତୃଶ୍ରାଦ୍ଧ କରିବାକୁ ଧନଞ୍ଜୟ ଏଥେ
ଗଣ୍ଡାଜୀବ ଘେନିଆସ ପଶିଣ ବନସ୍ତେ ।
ଯୁଧିଷ୍ଠିରଙ୍କ ଆଜ୍ଞାରେ ବାସବ ନନ୍ଦନ
ହସ୍ତେ ଧନୁ ଧରି କଲେ ବିପିନେ ଗମନ ।
କରଣ୍ଡକ ନାମେ ଅଛି ଏକଇ ପର୍ବତ
ତହିଁ ପ୍ରବେଶ ହୋଇଲେ କୁନ୍ତୀଦେବୀ ସୁତ ।
କରେ କୃପ ଧରି ଚାହିଁ ଚାହିଁ ଚଉକତି
ଗଣ୍ଡାଜୀବ ନ ଦେଖିଣ ବିରସ ଯେ ମତି ।
ଖୋଜଇ ପାର୍ଥିବ ଦିବା ରଜନୀ କାନନେ
ଗଣ୍ଡାଜୀବ ମାତ୍ରକ ନ ଦେଖଇ ନୟନେ ।
ତହୁଁ ଅର୍ଜ୍ଜୁନ ସେଠାରୁ ଅତି ଖରେ ଚଳି
ମହେନ୍ଦ୍ର ଗିରିର ନଦୀ ତୀରେ ଯାଇ ମିଳି ।
ଦକ୍ଷିଣ ବାହିନୀ ସେହି ପରବତ ଭେଦି
ସରସ୍ୱତୀ ନଦୀରୁ ସେ ଆସେ ପୃଥ୍ୱୀ ଶୋଧି ।
ସେ ନଦୀର ଶୁଦ୍ଧଜଳ ଦେଖି ସବ୍ୟସାଚୀ
ଜଳପାନ କରି ପୁଣି ଧନୁକୁ ଆମଞ୍ଚି ।
ମହେନ୍ଦ୍ର ମାଳ ନାମରେ ଏକଇ ପର୍ବତ
ସେ ଗିରିବର ଉପରେ ବିଜେ ବୀର ପାର୍ଥ ।
ନିରୀକ୍ଷି ନିରୀକ୍ଷି ପୂର୍ବମୁଖେ ବୀରମଣି
ଦେଖଇ ସେ ମହୋଦଧି ସଙ୍ଗମକୁ ପୁଣି ।
ମହାପର୍ବତ ସଙ୍ଗମ ସ୍ଥାନ ଯାଇ ଦେଖି
ଦକ୍ଷିଣ ତଟରେ ପୁଣି ଦେଖିଲା ନିରୀକ୍ଷି ।
କପିଳା ଗୋମାତା ସୁଖେ ଚରୁଅଛି ତହିଁ
ଦେଖି ତାକୁ ବୀରମଣି ହୃଷ୍ଟମନା ହୋଇ ।
ଏହି ସିନା ଗଣ୍ଡାଜୀବ ହୋଇବ ଯୁକତେ
ବନଜୀବ ନୁହଇ ଏ ଭାଳେ ବୀର ଚିତ୍ତେ ।
ଯାହା ପୂର୍ବରୁ କର୍ମରେ ଲିହିଛି ବିଧାତା
କାହାବଳେ ଆନ କରି ହୁଏ ସେହି କଥା ।
ଖୁର୍ପଶର ଏକ କାଢ଼ି ଧନୁରେ ବସାଇ
ସେ ଜୀବକୁ ମାରିଆଣ ବୋଲି ଆଜ୍ଞା ଦେଇ ।
ଚଳଇ ସେ ବାଣ ତହୁଁ ଆଜ୍ଞା ପରମାଣେ
କପିଳାର ସନ୍ନିଧିରେ ମିଳିଲା ତକ୍ଷଣେ ।
ଏ କପିଳା ଗାଈ ପ୍ରାଣ ଘେନିବି କେମନ୍ତେ
କପିଳାକୁ ଦେଖି ବାଣ ବିଚାରି ହୃଦ୍‌ଗତେ ।

ଗୋହତ୍ୟା ଯେ ବ୍ରହ୍ମହତ୍ୟା ନ କରନ୍ତି କେହି
ଏହାକୁ ମାରନ୍ତେ ମୋର ମୋକ୍ଷଗତି ନାହିଁ ।
ନ କାଟିଲେ କୋପ ମୋତେ କରିବ ଯେ ପାର୍ଥ
କେମନ୍ତେ କରିବି ଅନିମିତ୍ତେ ପ୍ରାଣଘାତ ।
ଅନନ୍ତ ହୋଇଣ ଶର ବିସ୍ମରି ବସିଲା
ପାତାଳେ ଫୁଟି ସେ ବାଣ ଈଶ୍ୱର ହୋଇଲା ।
ବାଣ ନ ଆସନ୍ତେ ଦେଖି ବୀର ଫାଲଗୁନୀ
ମହାକୋପ ଉପୁଜିଲା ତାର ଚିତ୍ତେ ପୁଣି ।
ଶରୀର ଯାକରୁ ତାର ଶ୍ରମଝାଳ ଗଳେ
ବୁଲେ ନେତ୍ର କାଳଚକ୍ର ପ୍ରାୟ ଅନ୍ତରାଳେ ।
ଧନୁରେ ସେ ବସାଇଲା ପ୍ରାଣନ୍ତକ ଶର
ତୁ ବହନ ଯାଇ ଛେଦ ସେ ଜୀବର ଶିର ।
ପାର୍ଥର ବୋଲେ ସେ ଶର ଗଲା ଧାତିକାରେ
ତୂରିତେ ପଡ଼ିଲା ଯାଇ କପିଳା ଉପରେ ।
ନାରାଚ ଘାତେ କପିଳା ହେଲା ବେନିଖଣ୍ଡ
ଶବଦ ଏକ ଶୁଭିଲା ସପତ ବ୍ରହ୍ମାଣ୍ଡ ।
ପ୍ରାଣ ଘେନି ବିଚାରଇ ସେହି ଦିବ୍ୟ ଶର
ଗୋବଧ କଲି ମୁଁ ତିନିପୁରେ ନାହିଁ ପାର ।
ଈଶ୍ୱର ଦେବତା ପୂର୍ବେ ଗୋରୁବଧ କଲେ
କାଳେ ହେଁ ସେ ମହାଦେବ ପାର ନ ହୋଇଲେ ।
ଅନେକ ତୀର୍ଥ ଭ୍ରମିଲେ ଦେବ ଦେବ ହର
ଗୋବଧ ଦୋଷ ନ ଗଲା କାହିଁରେ ଯେ ପାର ।
ବାରାଣସୀ ପୁରେ ମଣିକର୍ଣ୍ଣିକାର କୁଣ୍ଡ
ତହିଁ ସ୍ନାନ କଲେ ନ ଛାଡ଼ିଲା ଗୋରୁ ମୁଣ୍ଡ ।
ଧଇଲେ ଭୈରବାମୂର୍ତ୍ତି ଦେବଦେବ ହର
ତଥାପି ଗୋ ମୁଣ୍ଡ ଅଛି ଖର୍ପର ଭିତର ।
ମୋତେ ଜାଣ ଏବେ ପାର ନାହିଁ ତିନିପୁରେ
ମନରୁ ବିସ୍ମରି ବାଣ ବସିଲା ଭୂମିରେ ।
ଯେଉଁ ଠାବରେ ବିସ୍ମୟ ହୋଇଣ ବସିଲା
ସୋମ ନାମରେ ଯେ ତହିଁ ଲିଙ୍ଗେକ ହୋଇଲା ।
ଗୋ ମାତା ରୁଧିର ହେଲା ଯେଉଁଠାରେ ବୃଷ୍ଟି
କୋଟି ଲିଙ୍ଗ ଘେନି ତହୁଁ ସୋମଲିଙ୍ଗ ଫୁଟି ।
ବାଣ ନ ଆସନ୍ତେ କୋପ ବହି ବୀର ପାର୍ଥ
ବାବଲ ଶରକୁ ପୁଣି ଘେନିଲାକ ହସ୍ତ ।
ସେ ବାଣକୁ ତିଆରଇ ବୀର ସବ୍ୟସାଚୀ
ମୋହର ବୋଲ ନ କରି ନ ଆସିବୁ ଘୁଞ୍ଚି ।
ସେ ଜୀବକୁ ଘେନି ତୁହି ଆସ ମୋର ପାଶ
ଧନୁରେ ବସାଇ ତିଆରଇ ଇନ୍ଦୁ ଶିଷ୍ୟ ।
ନିମିଷକ ମଧ୍ୟେ ଆଣି ଆସିବୁ ମୋ କତି
ବେଗେ ନ ଆସିଲେ ଭଗ୍ନ କରିବି ସଂଘତି ।

ଆମଞ୍ଚିଲେ ସେ ବାଣକୁ କରି ରଶ୍ମିଜ୍ୱାଳା
ଶରାସନ ପୂରାଇଣ ସୁରରାଜ ବଳା ।
ଆକର୍ଣ୍ଣ ଓଟାରି ଆଣି ଛାଡ଼ିଦେଲା ଶର
ଗର୍ଜିଣ ପଡ଼ିଲା ଯାଇ କପିଳା ଉପର ।
କପିଳାର ଘେନି ସେହି ଅସ୍ଥି ଚର୍ମ ମୁଣ୍ଡ
ଧାତିକାରେ ବୁଲାଇଲା ସପତ ବ୍ରହ୍ମାଣ୍ଡ ।
ପବନ ପ୍ରାୟ ଗୋ ମେଦ ଆସନ୍ତେ ସେ ଘେନି
ଖସିଣ ଫୁଟି ରୁଧିର ପଡ଼ଇ ମେଦିନୀ ।
ଯେବଣ ଠାବେ କପିଳା ରକତ ପଡ଼ିଲା
ପତଙ୍ଗେଶ୍ୱର ନାମରେ ଲିଙ୍ଗେକ ହୋଇଲା ।
ରୁଧିର ବିନ୍ଦୁ ପଡ଼ିଣ ଗଲା ଯେତେ ଦୂର
ବିନ୍ଦୁକେଶର ନାମ ସେ ହେଲେ ପୃଥିବୀର ।
ଶବ ଚର୍ମ ଘେନି ବାଣ ପାଶରେ ପ୍ରବେଶ
ନିରେଖି ଦେଖିଣ ବୀର ହୋଇଲା ବିରସ ।
ହୃଦଗତେ ପାର୍ଥ ବୀର ବିଚାରଇ ପୁଣି
କପିଳା ଗୋ ମାତା ମୁଣ୍ଡ ପକାଇଲି ହାଣି ।
କପିଳାକୁ ଦ୍ରୋହ ମୁହିଁ କଲଇଁ ଅଦ୍ୟାପି
ମାଳତୀ ଲତା ଲୁଚିଏ ତା ଉପରେ ସ୍ଥାପି ।
ପଞ୍ଚଭୂତ ଆତ୍ମା ନ୍ୟାସୀ ଭାଳେ ବୀରପାର୍ଥ
ଅନିମିତ୍ତେ ଗୋବଧ ମୁଁ କଲି ଏଡ଼େ କୃତ୍ୟ ।
କି ବୋଲି ବୋଲିବେ ମୋତେ ଦେବ ପୁରନ୍ଦର
କେମନ୍ତେ ମୁଖ ଚାହିଁବେ ଦେବ ଚକ୍ରଧର ।
ଦେବତାମାନେ ସ୍ୱର୍ଗରେ କି ବୋଲିବେ ମୋତେ
କେହି ନ ଚାହିଁବେ ମୋର ମୁଖକୁ ଯୁକତେ ।
ଯୁଧିଷ୍ଠି ଦେବଙ୍କ ମୁଖ କେମନ୍ତେ ଚାହିଁବି
ବିଚାରିଣ ମନେ ମନେ ଭାବଇ ବାସବୀ ।
ତହୁଁ ବିରସ ମନରେ ଚଳଇ ଅର୍ଜ୍ଜୁନ
ପ୍ରବେଶ ବାସବୀ ଯୁଧିଷ୍ଠିର ସନ୍ନିଧାନ ।
ମୁଖ ଗୋଟି ବୃକ୍ଷତଳେ ଉପାଡ଼ି ରହଇ
ଆସ ଆସ ଅର୍ଜ୍ଜୁନ ହୋ ରହିଲୁ କିମ୍ପାଇଁ ।
ମୁଖ ଲୁଚାଇ ବୋଲଇ ବୀରବର ପାର୍ଥ
ମୁହିଁ ମହାଦୋଷୀ ମୁଖ ଚାହିଁବ କେମନ୍ତ ।
ଯୁଧିଷ୍ଠି ବୋଇଲେ ବାବୁ କିସ ଦୋଷ କଲୁ
କାହିଁର ନିମନ୍ତେ ମୋର ମୁଖ ନ ଚାହିଁଲୁ ।
ସହଦେବର ବଦନ ଚାହିଁଲେ ଯୁଧିଷ୍ଠି
ବନେ କିସ ଦୋଷ କଲା ମୋର ଭାଇ ଗୋଟି ।
ବନେ ପେଷିଲୁ ତ ଗଣ୍ଡା ଆଣିବାକୁ ଆମ୍ଭେ
ବିସ୍ମୟ ହୋଇ ପାଲଟି ରହିଲା ଆରମ୍ଭେ ।
ପ୍ରାଣର ସଖା ମୋହର ଅଟଇ ଫାଲଗୁନି
ଏହାରେ ଉଶ୍ୱାସ ସିନା ପାଇବ ମେଦିନୀ ।

ସହଦେବ ବୋଇଲାକ ଏ ବଚନ ଶୁଣି
ଅରଣ୍ୟେ ବୁଲିବେ ପାର୍ଥ ଦିବସ ରଜନୀ ।
ଦେଖି ଜୀବେ ପଳାଇଲେ ଭୟ ପାଇ ଦୂରେ
ଲୁଚିଣ ରହିଲେ ଦେବ ଅରଣ୍ୟ କନ୍ଦରେ ।
ଗଣ୍ଡା ନ ପାଇ ଲୋଡ଼ନ୍ତି ପଶି ଘୋର ବନେ
ଗଣ୍ଡାଜୀବ ନ ଦେଖିଲେ ଦେବ ସେ ନୟନେ ।
ଅତିଶ୍ରମେ ଦେବ ଗିରି କନ୍ଦରେଣ ଉଠି
ପୂର୍ବମୁଖେ ଦେଲେ ନଦୀ ସଙ୍ଗମରେ ଦୃଷ୍ଟି ।
ଦେଖିଲେ ଗୋ ମାତା ଚରୁଅଛି ତୀରେ ତାର
ଗଣ୍ଡାଜୀବ ବୋଲି ନିରୂପଣ ବୀରବର ।
ଏହି ଗଣ୍ଡାଜୀବ ବୋଲି ପେଷିଲେ ସେ ଶର
ବାଣ ପଡ଼ିଲା କପିଳା ଗାଇର ଶରୀର ।
ଗୋ ମୁଣ୍ଡ ଦେଖି ବିରସ ବୀରବର ପାର୍ଥ
ବିସ୍ମୟରେ ସୁମରିଲେ ଦେବ ଜଗନ୍ନାଥ ।
ତେଣୁ ତୁମ୍ଭ ମୁଖକୁ ସେ ନ ଚାହାନ୍ତି ଦେବ
ଗୋହତ୍ୟା କଲେକ ତିନିପୁରେ ନାହିଁ ଠାବ ।
ବୋଲନ୍ତି ଯୁଧିଷ୍ଠି ଦେବ କରିବା କି ବୁଦ୍ଧି
କେମନ୍ତେ ଖଣ୍ଡନ ହେବ ଏ ଦୁଃସହ ବ୍ୟାଧି ।
ସହଦେବ ବୋଇଲେ ଯେ ହେଲେ ଦେବଗୋଷ୍ଠୀ
ତେବେ ସେ ଖଣ୍ଡନ ହେବ ଦୁଃସହ ଅରିଷ୍ଟି ।
ଯୁଧିଷ୍ଠି ବୋଇଲେ ହରିଠାରେ ଲୟ କର
ସେ ହରି ଖଣ୍ଡିବେ ସିନା ଆପଦ ଆମ୍ଭର ।
ସ୍ୱାମୀଙ୍କର ବଚନରେ ବୀର ଧନଞ୍ଜୟ
ଶୁଚିମନ୍ତ ହୋଇ କଲା ହରିଠାରେ ଲୟ ।
ଚନ୍ଦ୍ରଶାଳା ମନ୍ଦିରରେ ଥିଲେ ଚକ୍ରଧର
ସତ୍ୟଭାମା ଠାକୁରାଣୀ ଅଛି ପାଶର ।
ଆସନ କମ୍ପନ୍ତେ ଜାଣିପାରି ଚକ୍ରଧାରୀ
ବୈନତେୟ ସୁମରଣା କଲେ ଦେବହରି ।
ସତ୍ୟ ବୋଇଲେ ତେଜିବ କିମ୍ପା ଦେବ ମୋତେ
କେବଣ ବିକୃତ ନାଥ ପାଇଲ ମୋ ଅନ୍ତେ ।
ବଦନ୍ତି କେଶବ ଶୁଣ ଆଗୋ ପ୍ରାଣସହି
ମୋତେ ସୁମରଣା କଲା ଅର୍ଜ୍ଜୁନ ମୋ ଦେହୀ ।
ସତ୍ୟା ବୋଇଲେ ପାଣ୍ଡବ ଜତୁଘରେ ମଲେ
କେମନ୍ତ ଦେବ ତୁମ୍ଭଙ୍କୁ ସୁମରଣା କଲେ ।
କାହିଁ ଲୁଚାଇଣ ଥିଲେ ଏ କେବଣ କୃତ୍ୟ
ଏହାର ତଦନ୍ତ ମୋତେ କହ ଜଗଦ୍ଭୃତ ।
ବଦନ୍ତି ମାଧବ ଶୁଣ ଆଗୋ ପ୍ରାଣସଖି
ମୋହର ଥାନ୍ତେ ପାଣ୍ଡବେ ମୃତ ହୁଅନ୍ତେ କି ।
ଦୁର୍ଯ୍ୟୋଧନର ମହିମା ଜାଣିବା ନିମନ୍ତେ
ଗୋପନେ ବନକୁ ଗଲେ କୁନ୍ତୀ ଦେବୀସୁତେ ।

ଶୁଣ ଆଗୋ ପ୍ରାଣସଖୀ କହିବା ନା ତୋତେ
ପାଣ୍ଡବ ମଲେ ସଖୀ ଗୋ ଦେଖନ୍ତି କି ମୋତେ ।
ଯେ ସେ ପାଣ୍ଡବ ପ୍ରତ୍ୟକ୍ଷେ ଜାଣ ମୁହିଁ ହରି
ଭାର ନିବାରଣ ଅର୍ଥ ମଲେ ଅବତାରି ।
ପାଣ୍ଡବ ମହିମା ଶକ୍ରାବତୀ ଆଗେ କହି
ଗୁପତ କର ଆବର ନ ଜାଣନ୍ତି କେହି ।
ଏତୁଅନନ୍ତରେ ଶୁଣ ହେ ମନୁ ରାଜନ
ଶ୍ରୀକୃଷ୍ଣ ସ୍ମରନ୍ତେ ଜାଣ ବିନତା ନନ୍ଦନ ।
ରମ୍ୟକ ଦ୍ୱୀପରେ ଥାଇ ଜାଣିଲା ତଦନ୍ତ
ଆକାଶ ମାର୍ଗେ ଉଡ଼ିଲା ବିନତାର ସୁତ ।
ଦ୍ୱାରକା ଭୁବନେ ଯାଇ ହୋଇଲା ପ୍ରବେଶ
କୃଷ୍ଣ ପଦ୍ମପାଦେ କଲା ମସ୍ତକ ନିବେଶ ।
କି ନିମନ୍ତେ ସୁମରଣା କଲେ ଦେବ ହରି
ବହନ ତାହା କହନ୍ତୁ ଶଙ୍ଖ ଚକ୍ରଧାରୀ ।
ଭୋ ଗରୁଡ଼ ସୁମରଣା କଲେ ଧର୍ମରାୟେ
ପାଣ୍ଡବଙ୍କୁ ପଡ଼ିଲା କି ବନେ ଅପଚୟେ ।
ଏତେ ବୋଲିଣ ଗରୁଡ଼ ପୃଷ୍ଠେ କଲେ ବିଜେ
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁଷ୍କରେ ସାଜେ ।
କିରିଟୀ ଶିରେ ହୃଦରେ ଶ୍ରୀବତ୍ସଲାଞ୍ଛନ
କଣ୍ଠେ ତୁଳସୀ କଟୀରେ ସୁପାତି ବସନ ।
ହୃଦମଧ୍ୟେ ବିଚାରନ୍ତି ଗରୁଡ଼ ଆସନ
ପାଣ୍ଡବେ ରହିଅଛନ୍ତି ହିଡ଼ିମ୍ବକ ବନ ।
ଜଗନ୍ନାଥଙ୍କ ବଚନ ଶୁଣି ଖଗବର
ଅନ୍ତରୀକ୍ଷ ମାର୍ଗେ ଗଲା ବିନତା କୁମର ।
ଗଗନ ମାର୍ଗେ ଗମନ୍ତେ ତଳେ ଦେଲା ଦୃଷ୍ଟି
ଦେଖିଲାକ ହିଡ଼ିମ୍ବକ ବନରେ ଯୁଧିଷ୍ଠି ।
ପବନ ହୁଁ ଚଞ୍ଚଳ ଯେ ଅଟେ ଖଗେଶ୍ୱର
ବେନି ଦଣ୍ଡେ ପ୍ରବେଶିଲା ଯୁଧିଷ୍ଠି ଛାମୁର ।
ପାଶେ ଯହୁଁ ଦେଖାଗଲା ଧର୍ମଙ୍କ ଆସନ
ଖଗପୃଷ୍ଠୁ ଉତୁରିଲେ ଦେବ ଭଗବାନ ।
ଯୁଧିଷ୍ଠିଙ୍କର ଚରଣେ ପ୍ରଣମନ୍ତି ହରି
ଉଠିଣ କୃଷ୍ଣଙ୍କୁ ଦେବ ଧର୍ମ କୋଳ କରି ।
କୃଷ୍ଣାଜିନ ଛାଲ ଆଣି ଦେଲେ ଧର୍ମ ରାଜା
ଜଗନ୍ନାଥଙ୍କର ପାଦପଦ୍ମ କଲେ ପୂଜା ।
ଭୀମ ଅର୍ଜ୍ଜୁନ ନକୁଳ ମନ୍ତ୍ରୀ ସହଦେବ
ଯେ ଯାହାର ଯଥାବିଧି କଲେ ବାସୁଦେବ ।
କୃଷ୍ଣ ବଦନ୍ତି ଅନ୍ତରେ ବସିଲ ଫାଲଗୁନି
ଆମ୍ଭଙ୍କୁ କଥା ନ କହି ହୋଇଛ ତ ତୁନି ।
ଯୁଧିଷ୍ଠିର ବୋଲନ୍ତି ହେ ଶୁଣ ଜଗଭୁତ
ଗଣ୍ଡା ବୋଲି କପିଳାକୁ ଘାତ କଲା ପାର୍ଥ ।

ଶୁଣି ନାରାୟଣ ହୃଦେ ବିସ୍ମରି ବସିଲେ
ଅର୍ଜ୍ଜୁନ ମୁଖକୁ ଚାହିଁ ସମସ୍ୟା ସେ ଦେଲେ ।
ନ ଜାଣିଣ ଦୋଷ କଲୁ ମୋର ପଞ୍ଚଭୂତ
ମୋହଯୋଗୁ ପାପ ତୋର ହୋଇବ ଯେ ହତ ।
ବ୍ରହ୍ମାଙ୍କୁ ଧ୍ୟାନ କରନ୍ତି ଦେବ ଦେବ ହରି
ଜାଣିଣ ଧାତା ମରାଳ ଚଢ଼ି ବିଜେ କରି ।
କୂଳେ ତାଙ୍କର ଅଛନ୍ତି ବ୍ରହ୍ମଋଷିମାନେ
ବିଜୟ ଚତୁରାନନ କୃଷ୍ଣ ସନ୍ନିଧାନେ ।
କରେ କମଣ୍ଡଳୁ କୁଶବଟୁ ତମ୍ବାପାତ୍ରୀ
ଧୋତି ଉତ୍ତରୀ ପଇତା ଘେନି ବେଦ ପୋଥି ।
ଯହିଁ ବିଜେ କରିଛନ୍ତି ଦେବ ଚକ୍ରଧାରୀ
ତାଙ୍କ ସନ୍ନିଧାନେ ପଦ୍ମଯୋନି ବିଜେ କରି ।
ଦେଖ ପ୍ରଣାମ କରନ୍ତି ଦେବ ଚକ୍ରଧର
ପାଞ୍ଚ ଭାଇ ନମନ୍ତି ସେ ଧାତାଙ୍କ ପୟର ।
ବସିବାକୁ ସେ ଆସନ ଦେଲେ ଦେବରାଜା
ପଦ୍ମାସନ ଦେଇ ପୁଣି କଲେ ଅର୍ଘ୍ୟେ ପୂଜା ।
କେବଣ ଅର୍ଥେ ସ୍ମରଣ କଲୁ ଜଗନ୍ନାଥ
ଭାରା ହରଣ ନିମନ୍ତେ ଜାତ କଲୁ ଧାତ ।
ଅର୍ଜ୍ଜୁନର କଥାମାନ କହିଲେ ସଂକ୍ଷେପି
ଅଛି କି କାରଣେ ଦେବ କହିବା ଅଦ୍ୟାପି ।
ବଦନ୍ତି ଯେ ପଦ୍ମଯୋନି ଦେବଙ୍କୁ ସୁମର
ତେବେ ଆପଦ ଖଣ୍ଡନ ହେବ ଚକ୍ରଧର ।
ଧାତାର ବଚନେ ଦେବ ଦେବ ଗଦାଧାରୀ
ଦେବତାମାନଙ୍କୁ ହୃଦ ମଧ୍ୟେ ଧ୍ୟାନ କରି ।
ନାରାୟଣ ସୁମରନ୍ତେ ବୃନ୍ଦାରକଗଣ
ଜାଣିପାରି ଆରୋହିଲେ ଯେ ଯାହା ବାହନ ।
କୈଳାସ କନ୍ଦର ତେଜି ଦେବ ଦେବ ହର
ବିଜେ କଲେ ମହାବଳ ବୃଷଭ ପୃଷ୍ଠର ।
କରେ ତ୍ରିଶୂଳ ଲଲାଟେ ଦିଶେ ଇନ୍ଦ୍ର ଫୁଟି
କଟୀରେ ବିରାଜେ ବ୍ୟାଘ୍ର ଚର୍ମର ଲାଙ୍ଗୁଟି ।
ଶୁଦ୍ଧ ସ୍ଫଟିକ ପରାୟ ରାଜେ ନିଜ ଗାତ୍ର
ବୃଷଭ ପୃଷ୍ଠରେ ବିଜେ କଲେ ପଞ୍ଚବକ୍ତ୍ର ।
ନବ ଲକ୍ଷ ଡମ୍ବରୁ ଯେ ଅନ୍ତରୀକ୍ଷେ ତୋଳି
ଚୌଦ କୋଟି ଶିବଗଣ ଘେନିଣ କପାଳି ।
ବିନାୟକ ତ୍ରିନାୟକ ନନ୍ଦୀ ମହାକାଳ
ଜୟନ୍ତ ସେ ଅଜୟନ୍ତ ପ୍ରଥମ ମଣ୍ଡଳ ।
ବିଘ୍ନରାଜ ବିଜେ କଲେ ଇନ୍ଦ୍ରର ବାହନେ
କାର୍ତ୍ତିକେଶ୍ୱର ବିଜୟ ମୟୂର ବାହନେ ।
ଈଶ୍ୱର ବିଜୟ କଲେ ହିଡ଼ିମ୍ବକ ବନ
ଦେଖି ପୂଜାବିଧି କଲେ ଧର୍ମଙ୍କ ନନ୍ଦନ ।

ଜଗନ୍ନାଥ ପ୍ରଣିପାତ ଈଶ୍ୱରଙ୍କ ପାଦେ
ଅର୍ଜ୍ଜୁନ କଥା କହନ୍ତି ଦେବ ଆଦିକନ୍ଦେ ।
ପୂଜା ପାଇଣ ବସିଲେ ଦେବ ମହେଶ୍ୱର
ଜଗନ୍ମାତା ବିଜେ କଲେ କେଶରୀ ପିଠିର ।
ଚଉଦ କୋଟି ଚାମୁଣ୍ଡା ଅସଂଖ୍ୟ ଯୋଗିନୀ
ନବକୋଟି କାତ୍ୟାୟନୀ ସଙ୍ଗତରେ ଘେନି ।
ରଙ୍ଗ ପୁଷ୍ପମାଳ ରଙ୍ଗ ବସ୍ତ୍ର ପରିଧାନ
କାହାର ଶରୀର ଗୋଟି ଦିଶେ ରଙ୍ଗବର୍ଣ୍ଣ ।
କଙ୍କାଳୀ ବେତାଳୀ ଉଗ୍ରତାରା ଯେ ଚର୍ଚ୍ଚିକା
ମତୁଆଳ ନାମେ କେହି ଅଟନ୍ତି ରସିକା ।
ଡିବି ଡିବି ଡମ୍ବରୁର ବାଦ୍ୟ ଗୁରୁଘୋଷ
ଘୁମ୍ର ଘୁମ୍ରାର ଶବ୍ଦେ ପୂରଇ ଆକାଶ ।
ମୁଖ ବିସ୍ତାରି ଉର୍ଦ୍ଧ୍ୱକୁ ଚିରା କେ ମାରନ୍ତି
ତୁଣ୍ଡ ବିସ୍ତାରିଣ କେହି ମଡ଼ାକୁ ଭକ୍ଷନ୍ତି ।
ଚାମୁଣ୍ଡାବୃନ୍ଦ ଘେନିଣ ବିଜୟ ଚଣ୍ଡିକା
ସିଂହବାହିନୀଙ୍କି ଦେଖି ଦେବ କଲେ ଶଙ୍କା ।
ହିଡ଼ିମ୍ବକ ବନେ ଯାଇ ବିଜୟ କଙ୍କାଳି
ଦେଖି ପ୍ରଣିପାତ କଲେ ପାଞ୍ଚଭାଇ ମିଳି ।
କଲ୍ୟାଣ ବାଞ୍ଛା କରନ୍ତି ତାହାଙ୍କୁ ତିଶୂଳି
ପଞ୍ଚରାଜ୍ୟେ ରାଜା ହୁଅ ସତ୍ୟ ପ୍ରତିପାଳି ।
ଯୁଧିଷ୍ଠି ବୋଇଲେ ମାଗୋ ଦୋଷ କ୍ଷମା କର
ହତ୍ୟା ଦୋଷ ବିମୋଚନ କରିବା ଆମ୍ଭର ।
ଆହେ ଯୁଧିଷ୍ଠି ତୁମ୍ଭର ପୂରୁ ମନୋବାଞ୍ଛା
ଧାର୍ମିକ ପୁରୁଷ ତୋର ସତ୍ୟେ ଥାଇ ଇଚ୍ଛା ।
ରହିଲେଣି ଶାକମ୍ଭରୀ ହିଡ଼ିମ୍ବକ ବନେ
ଦିକ୍‌ପାଳେ ବିଜେ କରନ୍ତି ଯେ ଯାହା ବାହନେ ।
ମେଷ ଚଢ଼ି ବିଜେ କଲେ ଅଗ୍ନି ଦଇବ ତ
ମହିଷ ବାହନେ ବିଜେ କଲେ ଜନ୍ତୁନାଥ ।
ନରେ କୁବେର ମକର ବାହନେ ବରୁଣ
ମୃଗେକ ଚଢ଼ି ଗମନ କଲେକ ପବନ ।
ଅଣଚାଶ ବାୟୁ ତୁଲେ ବିଜେ ଯାତୁଧାନ
ଅଙ୍ଗାର ପନଗ ତୁଲେ ବିଜେ ଚିତ୍ରସେନ ।
ଜୟନ୍ତ ପ୍ରଚଣ୍ଡାବଳି ଆଗୁଆଣୀ ଥାଟେ
ତାରାଗଣ ଦେବଗଣ ଘେନି ବନବାଟେ ।
ବିଜୟ ମଘବା ହୃଷିକେଶ ସନ୍ନିଧାନେ
ବାୟୁ ବରୁଣ ସହିତ ଦିଗପାଳମାନେ ।
ସତାଇଶ ଯୋଗ ଏକାଦଶ ଯେ କରଣ
ଦେବଗୁରୁ ରାହୁ କେତୁ ଆଦି ଦେବଗଣ ।
ତେତିଶକୋଟି ଦେବତା ଘେନି ଦେବସଭା
ସନନ୍ଦ ସନତ ବିଶ୍ୱକର୍ମା ବିଶ୍ୱଦେବା ।

ଲକ୍ଷେକ ଶିଷ୍ୟ ଘେନିଣ ବିଜେ ବେଦବ୍ୟାସ
ପ୍ରବେଶ ସେ ପିତାମହ ଯୁଧିଷ୍ଠିଙ୍କ ପାଶ ।
ପୌଲସ୍ତ୍ୟ ତ୍ରିଂଶ ସହସ୍ର ଶିଷ୍ୟ ଘେନି ତୁଳେ
ବିଭାଣ୍ଡକ ଷାଠିସସ୍ର ତୁଳେ ବିଜେ କଲେ ।
ଅଗସ୍ତିଙ୍କ ସଙ୍ଗତରେ ଲକ୍ଷେ ବ୍ରହ୍ମରଷି
ମହାସମାରୋହେ ଲକ୍ଷ ଲକ୍ଷ ଋଷି ଆସି ।
ମାର୍କଣ୍ଡେୟ ତୁଳେ ଷାଠିସସ୍ର ବାଳଶିଷ୍ୟ
ନାରାୟଣଙ୍କ ସମୀପେ ହୋଇଲେ ପ୍ରବେଶ ।
ବିଭାଣ୍ଡକ ସୁତ ଋଷ୍ୟଶୃଙ୍ଗ ଯେ ଜନକ
ଲକ୍ଷ ଶିଷ୍ୟ ଘେନି ବିଜେ କଲେ ସୁମନ୍ତକ ।
ପରାଶର ବିଶ୍ୱାମିତ୍ର ଭୃଗୁ ଭରଦ୍ୱାଜେ
ଅଙ୍ଗିରା ଋଷିର ତୁଳେ ଅଶୀସସ୍ର ଦ୍ୱିଜେ ।
ଲୋମଷ ମୁନି ସତ୍ୟପା ବ୍ରହ୍ମବେତ୍ତା ତୁଳେ
ନୈମିଷା ଅରଣ୍ୟେ ଋଷି ଘେନି ବିଜେ କଲେ ।
ଯୁଧିଷ୍ଠିର ଉଭା କରତଳେ ହସ୍ତ ଦେଇ
ମୋର ଦୋଷ ବିମୋଚନ କରନ୍ତୁ ଗୋସାଇଁ ।
ବୋଇଲେକ ବାଞ୍ଛା ସିଦ୍ଧ ହେଉ ଦେବଗୋଷ୍ଠୀ
ଏହି ଦେବ ଘେନି ସ୍ୱର୍ଗେ ବସ ହେ ଯୁଧିଷ୍ଠି ।
ଆସନ ଯେ ପାଦାସନ ପାଦ ଅର୍ଘ୍ୟ ଦେଇ
ବସିଲେ ସମସ୍ତ ଋଷି ଗଉରବ ପାଇ ।
ଦେବଋଷି ରାଜଋଷି ବ୍ରହ୍ମଋଷି ମେଳେ
ମହାସମାରୋହେ ସର୍ବେ ଆନନ୍ଦେ ବସିଲେ ।
ବଦନ୍ତି ଯେ ବାସୁଦେବ ବ୍ୟାସମୁଖ ଚାହିଁ
ସୁଧର୍ମା ସଭା ସ୍ୱର୍ଗରୁ ଆସୁ ସୁରସାଇଁ ।
ଜଗନ୍ନାଥଙ୍କ ବଚନେ ସୁମରିଲେ ଚିତ୍ତେ
ସଭା ଘେନିଣ ମାତଳି ମିଳିଲା ତ୍ୱରିତେ ।
ଦ୍ୱାଦଶ ଯୋଜନ ସେହି ସଭା ଆୟତନ
ଅନେକ ମତେ ଯେ କରିଅଛନ୍ତି ମଣ୍ଡନ ।
ଧନ୍ୟ ଧନ୍ୟ ମହିମା ଯେ ସମସ୍ତେ ପ୍ରଶଂସି
ସବୁ ଦେବତା ସୁଧର୍ମା ସଭା ମଧ୍ୟେ ବସି ।
ପୁଷ୍କର ମେଘ ରାଇଲେ ସୁରପୁର ଈଶ
ଦେବତାଙ୍କ ଶିରେ ବେଗେ ପୁଷ୍ପ ତୁ ବରଷ ।
ଇନ୍ଦ୍ର ଆଜ୍ଞାରେ ପୁଷ୍କର ମେଘ ବେଗେ ଘୋଟି
ଦେବଙ୍କ ସଭା ମଧ୍ୟରେ କଲେ ପୁଷ୍ପ ବୃଷ୍ଟି ।
ମଳୟ ଘେନି ବହିଲା ଦକ୍ଷିଣା ପବନ
ଶୁଷ୍କ ତରୁ ପଲ୍ଲବିଣ ଲତା ଘନ ଘନ ।
ନାନାଦି ବୃକ୍ଷ ତହିଁରେ କୁସୁମ ବିସ୍ତାରି
ଶୁକ ପିକ ନାଦ କଲେ ଭ୍ରମର ଝିଙ୍କାରୀ ।
ମନ ହର୍ଷେ ଉତ୍କଣ୍ଠିତ ସର୍ବ ଜୀବମାନ
ଅବସନ୍ତରେ ବସନ୍ତ ବହେ ଘନ ଘନ ।

କରନ୍ତି ଅପସରାଏ ନୃତ୍ୟ କୁତୁହଳେ
ମୃଦଙ୍ଗ ଧିକାର ଶବ୍ଦ ହୁଏ ତାଳେ ତାଳେ ।
ଗାନ କରନ୍ତି ହରଷେ ନାନା ଯନ୍ତ୍ର ଘେନି
ରଙ୍ଗ ରସେ ନୃତ୍ୟ କଲେ ଅପ୍‌ସରା ରମଣୀ ।
ତିଳୋତ୍ତମା ମଦନିକା ରମ୍ଭା କାମସେନା
ମୋହିନୀ ଚଞ୍ଚଳା ମେନା ସୁମତି ଲଳନା ।
ନାୟକ ମଧ୍ୟେ ଗଣନା ଏହି ଆଠଗୋଟି
ଈଶ୍ୱର ଗାନ୍ଧାର ରସେ ନୃତ୍ୟ ଗୀତେ ଖଟି ।
ବ୍ରହ୍ମବୀଣା ଧଇଲେ ସେ ବ୍ରହ୍ମାର ନନ୍ଦନ
ନୃତ୍ୟରସେ ନିସ୍ତବ୍ଧ ହେଲେ ଦେବଗଣ ।
ଏମନ୍ତବେଳେ ଯୁଧିଷ୍ଠି ଉଠିଲେ ସତ୍ୱରେ
ପ୍ରଣିପାତ କଲେ ମହାସଭାର ପୟରେ ।
ବିଧାତା ବଦନ୍ତି ଉଠ ଉଠ ଯୁଧିଷ୍ଠିର
ବାଞ୍ଛା ସିଦ୍ଧ ହେଉ ପୂରୁ ମନବାଞ୍ଛା ତୋର ।
ଯୁଧିଷ୍ଠି ବୋଇଲେ ଦେବ ଭାରାନାଶ ଅର୍ଥେ
ପୃଥ୍ୱୀରେ ଜନ୍ମ କରିଛୁ ବୀରବର ପାର୍ଥେ ।
ଭୋ ଦେବ ସେ ଯେବେ ପାପୀ ମୁହିଁ କିଏ ପାପୀ
କୃଷ୍ଣ ଅର୍ଜୁନ ବୋଲନ୍ତି ବିକଳେ ଅଦ୍ୟାପି ।
ତୁହି ଯେବେ ଧାତା କ୍ଷୟ ନ କରିବୁ ଦୋଷ
ଆମ୍ଭେ ଦ୍ରୋହୀ ହୋଇ କେହ୍ନେ ଥିବୁ ମର୍ତ୍ତ୍ୟଦେଶ ।
ପୃଥ୍ୱୀ ଭାରାଭର ନାଶ ହୋଇବା ନିମନ୍ତେ
ଆମ୍ଭେମାନେ ଜାତ ହେଲୁ ମଧ୍ୟପୁର ମର୍ତ୍ତ୍ୟେ ।
ଗୋ ବ୍ରାହ୍ମଣ ବଧ ହେବ ସଂଗ୍ରାମ ଭୂମିରେ
ବହିବୁ କାହିଁକି ସେହି ଦୋଷ ବେଦବରେ ।
ଏ ପାର୍ଥ ନ ଜାଣି କଲା ଗୋରୁ ପ୍ରାଣଘାତ
ଏ କଷଣୁ ପାରିକର ଜଗତର ତାତ ।
ଇନ୍ଦ୍ର ବୋଇଲେ ଶ୍ରୀକୃଷ୍ଣ ଅର୍ଜୁନ ଏକାତ୍ମା
ତାହାଙ୍କର ଦୋଷ କାହିଁ ଅଛି ହେ ମହାତ୍ମା ।
ପୁଣି ବୋଇଲେ ଅଟଇ ମୋହର ସନ୍ତତି
ଏହାକୁ ମୁକ୍ତି କରିବା ହେଉ ବେଦପତି ।
ଅଗ୍ନି ଯମ ବରୁଣ ଏ ହୋଇଲେ ବିନୟୀ
ଏହାଙ୍କର ହତ୍ୟାଦୋଷ ପୁଣ ଅଛି କାହିଁ ।
ନକ୍ଷତ୍ର ଗ୍ରହ କରିଣ ଅଷ୍ଟଦିଗପାଳେ
ଅର୍ଜୁନର ଗ୍ରହଦୋଷ ନାହିଁ ତପୋବଳେ ।
ଗୋବିନ୍ଦ ବୋଇଲେ ଆହେ ସ୍ୱାମୀ ତ୍ରିଲୋଚନ
ଦୁଃସହ କଷଣୁ ପାରି କରିବା ଅର୍ଜୁନ ।
ନ ଜାଣି ଏ ଦୋଷ କଲା ଦୋଷ ନାହିଁ ତାର
ଅର୍ଜୁନ ପାପ ମୋଚନ କର ଦେବ ହର ।
ବ୍ରହ୍ମା ବଦନ୍ତି ନାରଦ ସନ୍ନିଧାନେ ରାଇ
ଯୁଧିଷ୍ଠିରଙ୍କ ଅଗ୍ରତେ କହ ବେଗେ ଯାଇ ।

ନାରଦ କହିଲେ ଯୁଧିଷ୍ଠିରଙ୍କ ଅଗ୍ରତେ
ପାତକ ଧ୍ୱଂସନ ଯଜ୍ଞ କର ମହୀମତେ ।
ଆହେ ନୃପତି ଯଜ୍ଞର କରିବା ସମ୍ଭାର
ଆଜ୍ଞା ଦେଲେ ମୋତେ ଚତୁର୍ମୁଖ ବେଦବର ।
ବିଷ୍ଣୁଙ୍କୁ ବିନୟ କହି ବଦନ୍ତି ଯୁଧିଷ୍ଠି
ତୋହର ଖଣ୍ଡନ ହେବ ମୋହର ଅରିଷ୍ଟି ।
ଯଜ୍ଞର ସମ୍ଭାର ଏଥି ପାଇବି ମୁଁ କାହିଁ
ତୁହି ସିନା ଭିଆଇବୁ ଜଗତ ଗୋସାଇଁ ।
ନାରଦଙ୍କୁ ରାଇ ଆଜ୍ଞା ଦେଲେ ଦେବ ହରି
ରତ୍ନାକର ଭୁବନୁ ତୁ ଆଣ ସଂଖ୍ୟା କରି ।
ମାୟାଧର ନାଥ ତହିଁ ମାୟା ଭିଆଇଲା
ରତ୍ନାକର ଭୁବନରୁ ସମସ୍ତ ଆଣିଲା ।
ବିଶ୍ୱକର୍ମାକୁ ବୋଲନ୍ତି ଦେବ ନରହରି
ଯଜ୍ଞଶାଳାର ଭିଆଣ କରୁ ବେଗକରି ।
ଜଗନ୍ନାଥଙ୍କ ଆଜ୍ଞାରେ ଶିଳ୍ପୀ ବେଗେ ଗଲା
ନିମିଷକ ମଧ୍ୟେ ଯଜ୍ଞଶାଳା ଭିଆଇଲା ।
ଦେବରଷି ରାଜରଷି ବ୍ରହ୍ମରଷି ଶାଳେ
ଆଚାର୍ଯ୍ୟ ବ୍ରହ୍ମା ବରଣ କଲେ ଶୁଭବେଳେ ।
ସାମ ଋକ୍ ଯଜୁଃ ଅଥର୍ବବେଦୀ ଚାରିଦ୍ୱିଜ
ଲକ୍ଷେକ ବରିଲେ ସେହି ଯଜ୍ଞେ ଦେବରାଜ ।
ପର୍ବ ପ୍ରାର୍ଥନା ସମସ୍ତ ସ୍ତବ ସ୍ତୋତ୍ର ପଢ଼ି
କୁଣ୍ଡେ ଦାବାନଳ ଅଗ୍ନି ଆରୋପଣ କରି ।
ଗୁଆଘୃତ ସିମଧ ଯେ ଯବତିଳ ଭରି
ଆହୂତି ଦିଅନ୍ତି ଯଜ୍ଞେ ସୁଜ୍ଞ ବ୍ରହ୍ମଚାରୀ ।
ସୁକୃତ ଘଟ ଯେ ଯଜ୍ଞେ ଏକ ଆରୋପିଲେ
ଆସନାଦି ଦେଇ ମନ୍ତ୍ରେ କୁମ୍ଭ ପୂଜା କଲେ ।
ପୁଷ୍କରକୁ ହୃଦେ ଚିନ୍ତି ଦେବ ଦେବ ହରି
କୋଟିଏ ତୀର୍ଥ ଘେନି ସେ ଘଟେ ବିଜେ କରି ।
ପୂର୍ଣ୍ଣ ଆହୁତିଯେ ଦେଲେ ଋଷି ବେଦବ୍ୟାସ
ଆପଦ ଶାନ୍ତି କରନ୍ତି ଭରଦ୍ୱାଜ ଶିଷ୍ୟ ।
ଅଗସ୍ତି ମୁନି ଜପନ୍ତି ମନ୍ତ୍ର ଗାୟତିରୀ
ସର୍ବ ବ୍ରହ୍ମରଷି ଅଜପାକୁ ଲୟ କରି ।
ଅର୍ଜ୍ଜୁନକୁ ଆଣି ଯଜ୍ଞସ୍ଥାନେ ବସାଇଲେ
ମୁକତି ଘଟରେ ତାକୁ ସ୍ନାନ କରାଇଲେ ।
ଅଜପା ଗାୟତ୍ରୀ ମନ୍ତ୍ର ପଢ଼ିଲେ ବ୍ରହ୍ମର୍ଷି
ଆପେ ବେଦପତି ପାର୍ଥ ହତ୍ୟା ଦୋଷ ଧ୍ୱଂସି ।
ସକଳ ଦେବତା ଜୟ ଜୟ ଧ୍ୱନି କଲେ
ପାର୍ଥ ଦେହେ ପାଞ୍ଚମୃତ ସ୍ନାନ କରାଇଲେ ।
କୋଟିଏ ତୀର୍ଥ ଘେନିଣ ଅଇଲେ ପୁଷ୍କର
ଅଭିଷେକ କଲେ ପାର୍ଥ ଶିରର ଉପର ।
ଅପସରାଗଣ କଲେ ସୁମଙ୍ଗଳ ଧ୍ୱନି
ହୁଳହୁଳି ଦିଅନ୍ତି ଯେ ସକଳ କାମିନୀ ।
ଗଣିକାଗଣ କରନ୍ତି ନୃତ୍ୟ ରସ ଗୀତ
ପଢ଼ନ୍ତି ମଙ୍ଗଳାଷ୍ଟକ ମିଳି ଚଣ୍ଡ ପୁତ୍ର ।
ସ୍ନାନ କରାଇଣ ଦିବ୍ୟ ବସନ ପିନ୍ଧାଇ
ଅର୍ଜ୍ଜୁନକୁ ଦେବସଭା ମଧ୍ୟରେ ବସାଇ ।
ଯେବଣଠାରେ ଅର୍ଜ୍ଜୁନ ମୁକତ ହୋଇଲା
ମୁକତେଶ୍ୱର ବୋଲିଣ ଲିଙ୍ଗେକ ହୋଇଲା ।
ଅର୍ଜ୍ଜୁନ ବୋଇଲେ ଦେବ କଲି ମୁଁ ଗୋ ଘାତ
ଏଥୁ କେସନକ ମୁହିଁ ହୋଇବି ମୁକତ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ବୋଇଲେ ସେ କାହିଁ
ଅର୍ଜ୍ଜୁନ ବୋଇଲେ ଶବ ଥୋଇଛି ଲୁଚାଇ ।
ବ୍ରହ୍ମା ବୋଇଲେ ସେ ଶବ କାହିଁ ଅଛ ଥୋଇ
ମାଳତୀ ଲତା ଭିତରେ ଲୁଚାଇ ଅଛଇ ।
ଦେଖିଲେ ଲତାକୁ ଆଡ଼ିଆଇ କୃଷ୍ଣହର
ଲିଙ୍ଗେକ ସମ୍ଭୂତ ହୋଇଅଛି ତା ଭିତର ।
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ଏଥେ ନାହିଁ ଶବ
ମାଳତୀ ମହେଶ୍ୱର ଏ ଲିଙ୍ଗ ବୋଲାଇବ ।
ବଦନ୍ତି ବ୍ରହ୍ମା ଥୋଇଲୁ କହ କାହିଁ ଏବେ
ତାହା ଶୁଣି ଫାଲଗୁନୀ କହିଲା ସଦ୍‌ଭାବେ ।
ପର୍ବତ ତଳରେ ଥୋଇଅଛି ଦେବ ମୁହିଁ
ଗୁପତେ ଥୋଇଲି ଦେବ ଲତାରେ ଘୋଡ଼ାଇ ।
ଦେଖିଲେ ଦେବତା ଆଦି ଯେତେ ଦେବ ଗୋଷ୍ଠି
ଲିଙ୍ଗ ସମ୍ଭୂତ ହୋଇଛି ପାତାଳକୁ ଫୁଟି ।
ପାତାଳ ଭୁବନ କଣ୍ଟି ବିଜେ ପୁର ହର
ଗୋ ମୁଣ୍ଡକୁ ନ ପାଇଲେ ଅମର ନିକର ।
ବ୍ରହ୍ମା ବିଷ୍ଣୁ ହର ଆଦି ସର୍ବ ଦେବେ ମିଳି
ସାନନ୍ଦ ଚିତ୍ତେ ପୁଚ୍ଛିଲେ ଦେବ ଦେବ ଶୂଳୀ ।
ପାଣ୍ଡବ ପାପ ମୁକତ କରିବା ନିମନ୍ତେ
ହରକ୍ଷେଣ ବିଜେ କଲେ ଦେବ ତ୍ରିପୁରାନ୍ତେ ।
ତେତିଶ କୋଟି ଦେବତା ବସିଣ ଭିଆଇ
ପାପ ହରଣ ନିମନ୍ତେ ମଧ୍ୟପୁରେ ଥୋଇ ।
ଦେବେ ବୋଇଲେ ଅଟଇ ଏହି ସ୍ୱର୍ଗଦ୍ୱାର
ଦର୍ଶନ ମାତ୍ରେ ହରିବେ ପାପତାପ ଘୋର ।
ପାପ ପୁଣ୍ୟ ଏ ଠାବରେ ସକଳେ କହିବେ
ଏ ସିଦ୍ଧ ଦ୍ୱାରକୁ ଚାହିଁ ଦୁରିତ ହରିବେ ।
ଇନ୍ଦ୍ର ବୋଇଲେ ଏ ଅଟେ ପାପ ପୁଣ୍ୟଦ୍ୱାର
ପରୀକ୍ଷା କରନ୍ତୁ ଏଥେ ଏହି ପାଞ୍ଚବୀର ।
ଶୂନ୍ୟେ ଯାହା ଭିଆଇଲେ ମିଳି ଦେବଗଣ
ତେତିଶକୋଟି ସମ୍ମୁଖେ ଦେବ ନାରାୟଣ ।

ଶୂନ୍ୟରେ ଏ ଦ୍ୱାରଗୋଟି ସୂର୍ଯ୍ୟ ଜ୍ୟୋତିର୍ମୟ
ପାପୀଏ ଦେଖି ଦୁରିତ କରନ୍ତି ଯେ କ୍ଷୟ ।
ଶ୍ରୀକୃଷ୍ଣ ଯେ ଆଜ୍ଞା ଦେଲେ ଯୁଧିଷ୍ଠିରଙ୍କୁ ଚାହିଁ
ତୁମ୍ଭର ପାପ ଶରୀର ଦଗ୍ଧ ହେଉ ତହିଁ ।
ପାପ ପୁଣ୍ୟ କହି ଚାଲିଯାଅ ପାଞ୍ଚଭାଇ
ଶରୀର ନିର୍ମଳ କର ଦେବଗଣେ ଚାହିଁ ।
ନାରାୟଣଙ୍କ ବଚନେ ଗଲେ ପାଞ୍ଚଜଣ
ପାପ ପୁଣ୍ୟ କହିଗଲେ ଚାହିଁ ନାରାୟଣ ।
ଶ୍ରୀକୃଷ୍ଣ ବୋଇଲେ ଦେହେ ଶାପ ଯେବେ ଥାନ୍ତା
ତୁମ୍ଭର କଟୀ ଭାଗରେ ଏ କଣ୍ଟା ଲାଗନ୍ତା ।
ଏବେ ନିଷ୍କଳଙ୍କ ହେଲା ଏ ତୁମ୍ଭର ଦେହୀ
ମୁହିଁ ହରଷ ହୋଇଲି ତୁମ୍ଭ ମୁଖ ଚାହିଁ ।
ଏବେ ସେ ନିର୍ମଳ ଦେହ ହେଲା ଧନଞ୍ଜୟ
ଏହା ଘେନି ଭାରାଭର କରିବି ମୁଁ କ୍ଷୟ ।
ଭୋ ଧର୍ମ ନନ୍ଦନ ମୋତେ ଦୟା କରିଥିବା
ତୋହର ଚରଣେ ଥାଉ ନିତ୍ୟ ମୋର ସେବା ।
ଯୁଧିଷ୍ଠି ବୋଇଲେ କୃଷ୍ଣ ତୋହର ଆଶ୍ରିତେ
ଆମ୍ଭେ ଯେ ପାଣ୍ଡବ ପଞ୍ଚଭ୍ରାତା ବର୍ତ୍ତୁ ସତ୍ୟେ ।
ଭୋ ହରି ଯେମନ୍ତେ କୃତ୍ୟ କଲେ କଉରବେ
ଦୁସ୍ତରୁ ତରିଲୁ ତୋହ୍ନ ଯୋଗୁ ବାସୁଦେବେ ।
ଭୀମଙ୍କୁ କୌରବେ ବିଷଲଡୁ କୂଟେ ଦେଲେ
ନାଗୁଣୀ ଖାଉ ଯମୁନା ଜଳରେ ମେଲିଲେ ।
ଏ ଦୁଃସହ ପାପ ଭାରୁ ତରିଲୁ ସୋଦରେ
ତୋ ଦୟା ହେଲେ ଦୁଷ୍ଟଙ୍କୁ ମାରିବୁ ପୃଥ୍ୱୀରେ ।
ତୋହର ଆଜ୍ଞାରେ ଦେବ ଉଦିତ ହୋଇବୁ
ଶତ୍ରୁ ମାରି ରାଜ୍ୟ ପଞ୍ଚ କଟକେ କରିବୁ ।
କୃଷ୍ଣଙ୍କୁ ଅନେକ ସ୍ତୁତି କଲେ ଧର୍ମ ସୁତ
ଶୁଣି କୃତକୃତ୍ୟ ହେଲେ ପ୍ରଭୁ ଜଗନ୍ନାଥ ।
ଶ୍ରୀକୃଷ୍ଣ ବୋଇଲେ ଆମ୍ଭେ ଭାରାନାଶ ଅର୍ଥେ
ତୁମ୍ଭଙ୍କୁ ଘେନିଣ ଜାତ ହୋଇଅଛୁ ଏଥେ ।
ଇନ୍ଦ୍ର କୁବେର ବରୁଣ ଆବର ପୁଷ୍କର
ପବନକୁ ଆଦି କରି ଅଶ୍ୱିନୀ କୁମାର ।
ବ୍ରହ୍ମା ବିଷ୍ଣୁ ପୂଜା କଲୁ ସର୍ବ ଦେବଗଣ
ହରନାଥଙ୍କୁ ପୂଜନ୍ତି ତହିଁ ପୁଣ ପୁଣ ।
ମୋହ ସ୍ୱରୂପେ ସମ୍ଭୁତ ହେଲେ ଉମାକାନ୍ତ
ପୂଜା କରନ୍ତି ତାହାଙ୍କୁ ଦେବତା ସମସ୍ତ ।
ହରଷ ମୁଖେ ବୋଲନ୍ତି ଧାତା ବେଦବର
ମହେନ୍ଦ୍ର ମାଳା ନାମରେ ଶ୍ରୀ କନକେଶ୍ୱର ।
ଶବରୀ ହାତରୁ ପୂଜା ଘେନ ତୁହି ନିତ୍ୟ
ଦୁଃସହ ପାପୁ ତରିବେ ପାତକୀ ସମସ୍ତ ।
ଗୋ ହତ୍ୟା ସ୍ତ୍ରୀ ହତ୍ୟା ବ୍ରହ୍ମହତ୍ୟା ସୁରାପାନ
ତୋର ଦର୍ଶନେ ସକଳ ପାତକ ବହନ ।
ସଦା ଦୟାବନ୍ତ ହେବୁ ଦେବକାଶୀ ବାସୀ
ଅନବରତେ ହୋଇବୁ ଲୋକଙ୍କ ବିଶ୍ୱାସୀ ।
ଯେହ୍ନେ ତୋତେ ଏକବାର ନୟନେ ଦେଖିବ
ସହସ୍ର ଜନ୍ମର ପାପ ଦୁଃସହ ହରିବ ।
କିଞ୍ଚିତ ପାପ ନ ଥିବ ତାହାର ଶରୀରେ
ତୋହର ରୂପ ଦେଖିଲେ ଯିବ ସ୍ୱର୍ଗପୁରେ ।
ପ୍ରତ୍ୟକ୍ଷେ ତୁ ଉଭାହେଲୁ ମୂର୍ତ୍ତିମନ୍ତ ହୋଇ
ଅର୍ଜ୍ଜୁନ ପାପ ଧ୍ୱଂସିଲୁ ଦେବ ଉମାସାଇଁ ।
ଅର୍ଜ୍ଜୁନ ପାପ ଧ୍ୱଂସନ କରି ଶଚୀ ନାଥ
ସ୍ୱର୍ଗପୁଷ୍ପ ବୃଷ୍ଟି କଲେ ଦେବେ ତାଙ୍କ ମାଥ ।
ପଞ୍ଚ ପାଣ୍ଡବ ତହିଁରେ ପାଞ୍ଚ ଲିଙ୍ଗ ପୂଜି
ମହେନ୍ଦ୍ର ମାଳ ଗୋକର୍ଣ୍ଣେଶ୍ୱର ଲିଙ୍ଗ ହେଜି ।
ସ୍ୱକୀୟା ଘେନିଣ ବିଜେ ଦେବ ଶୂଳୀ ଲିଙ୍ଗେ
ପଞ୍ଚପାଣ୍ଡବ ପୂଜିଲେ ମାତା ଘେନି ସଙ୍ଗେ ।
ବ୍ୟାସ ବୋଇଲେ ପାତକ ମୁକତ ଏ ତୀର୍ଥ
ବ୍ରହ୍ମାଣ ଶାସନ ଯେବେ ବସାଅ ନୃନାଥ ।
ଡାହାଣାବର୍ତ୍ତକ ଶଙ୍ଖେ ଜଳ ତିଳ ଭରି
ଲକ୍ଷେ ଦ୍ୱିଜଙ୍କୁ ଶାସନ ଦିଏ ଦଣ୍ଡଧାରୀ ।
ଅର୍ଜ୍ଜୁନ ପ୍ରଦତ୍ତ କଲ ଇନ୍ଦ୍ର ସନମତେ
ଲକ୍ଷେ ବ୍ରାହ୍ମଣ ଶାସନ ବସାଇବି ଏଥେ ।
କୃଷ୍ଣ ଆଜ୍ଞା ଦେଲେ ଭୀମସେନକୁ ଯେ ରାଇ
ସୁଜ୍ଞ ବିପ୍ର ଆଣି ଏଥେ ଶାସନ ବସାଇ ।
ଦେବଙ୍କର ଆଜ୍ଞାରେ ଯେ ମିଳିଲା ମାରୁତି
ପର୍ବତ ଡିଙ୍ଗର ଝିଲ ଲୋଡ଼େ ଚଉକତି ।
ହିଡ଼ିମ୍ବକ ବନ ଆଦି ସମସ୍ତ ବୁଲିଲା
ମନୁଷ୍ୟ ଜଣେ କାହାକୁ ତହିଁ ନ ଦେଖିଲା ।
ନଦୀର ତଟେ ବାଉରୀ ଅଛି ଯେ କ୍ରମିଳା
ବନସ୍ତେ ବୁଲନ୍ତି ସେହୁ ଶୂଦ୍ରତପୀ ବଳା ।
ତାହାକୁ ଘେନି ବିରସ ଭାବରେ ପ୍ରବେଶ
ଦେଖି ସର୍ବଦେବ କଲେ ତାକୁ ଉପହାସ ।
ସହଦେବ ବଦନକୁ ଚାହିଁ ଦେବ ହରି
ଏ କେବଣ ଜାତି ବାବୁ କହ ତଥ୍ୟ କରି ।
ସହଦେବ ବୋଇଲା ଏ ଜାତି ତପଚାରୀ
କନ୍ଦମ୍ବ ରସ ପାନରେ ଜୀବନ ଏହାରି ।
ଶ୍ରୀକୃଷ୍ଣ ବୋଇଲେ ଦେବ ସଭାକୁ ଅଇଲା
ଏହା ଜନ୍ମର ପାତକ ସବୁ ନାଶ ଗଲା ।
ବ୍ରହ୍ମା ବୋଇଲେ ଏହାକୁ ଦେବା ଯେ ପଇତା
ଯୁଗେ ଯୁଗେ ପୁରାଣରେ ରହୁ ଏହା କଥା ।

କୋଇଲି ସୂତାକୁ ଆପେ ବେଦବ୍ୟାସ ଘେନି
କ୍ରମିଳା ଗଳାରେ ନେଇ ଲମ୍ବାଇଲେ ମୁନି ।
ତୀର୍ଥଜଳ ସିଞ୍ଚିଲେକ ନେଇ ବେଦବର
ଆଜହୁଁ ହୋଇଲା କାଳଜୀବୀ ବିପ୍ରବର ।
ବାଉରୀ ଶାସନ ବୋଲି ଏହାଂ ନାମ ହେଉ
ଆମ୍ଭର ଏ କଥା ଯୁଗେ ଯୁଗେ ରହିଥାଉ ।
କ୍ରମିଳା ବାଉରୀ ବିପ୍ର ବସାଇ ଶାସନେ
ବାଉରୀ ଶାସନ ନାମ ଦେଇ ତପୋଧନେ ।
ଅର୍ଜୁନ ପ୍ରଦତ୍ତ ସ୍ଥାନେ ଇନ୍ଦ୍ର ସନମତ
ଏହି କଥା ଗୋଟି ରହୁ ପୁରାଣ ସଙ୍ଗତ ।
ଆହେ କଳିଯୁଗ ରାଜା ହେବେ ବଡ଼ ଲୋଭୀ
ଦେବ ବିପ୍ର ବୋଲି ନାହିଁ ନ ସ୍ଥାପିବେ ଭୁବି ।
ତମ୍ବା ପଟାରେ ସମସ୍ତ କଥା ଲେଖି କରି
ହତ୍ୟା ବିମୋଚନ ଅର୍ଥେ କୃଷ୍ଣ ବଜ୍ରଧାରୀ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବେ ରୁଣ୍ଡହୋଇ
ଯେଉଁ ରାଜା ହରଇ ଏ ହତ୍ୟା ଦୋଷ ଯାଇ ।
ଅର୍ଜୁନ ପ୍ରଦତ୍ତ ସ୍ଥାନେ ଇନ୍ଦ୍ର ସନମତ
ରାଜା ହୋଇ ନ କରିବେ ଅନୀତି କେ ଏଥେ ।
ଏସନକ ତମ୍ବାପାତ୍ର ଗ୍ରାମଜନେ ଥୋଇ
ହତ୍ୟା ବିମୋଚନ କରି ଦେବ ତହୁଁ ଯାଇ ।
ରହିଲେ ପାଣ୍ଡବେ ଯାଇ ହିଡ଼ିମ୍ବକ ବନେ
ମହେନ୍ଦ୍ର ପର୍ବତେ ଗଲେ ପୁଣ ଆଉ ଦିନେ ।
ଯୁଧିଷ୍ଠି ନକୁଳ ଭୀମାର୍ଜୁନ ସହଦେବ
ଦେଖନ୍ତି ପଞ୍ଚାଳେଶ୍ୱରୀ ଦେବତା ପାଣ୍ଡବ ।
ପାପ ବିନାଶନ କୁଣ୍ଡେ ସ୍ନାନ ଦାନ କରି
ଦେଖନ୍ତି ସଦାନନ୍ଦଙ୍କୁ ବିଜେ ମହାଗିରି ।
ନିଜ ରୂପ ଧରି ବିଶ୍ୱନାଥ ତହିଁ ଉଭା
ଧରିଅଛନ୍ତି ସେ ଚନ୍ଦ୍ରକିରଣର ପ୍ରଭା ।
ପଞ୍ଚରତ୍ନେ ପୂଜା କଲେ ପଣ୍ଡୁର ନନ୍ଦନ
ସ୍ୱର୍ଗ ପୁଷ୍ପ ବୃଷ୍ଟି କଲେ ଦେବ ମଘବାନ ।
ପୂଜନ୍ତି ଏକ ମନରେ ଦେବ ବିଶ୍ୱବାସୀ
ଯୋଗ ଲୟେ କରଯୋଡ଼ି ସ୍ତୁତି କଲେ ବସି ।
ଜୟ ଜୟ ତ୍ରିଅମ୍ବକ ଆଦି ଶୂଳହସ୍ତ
ଜୟ ଜୟ ବିଶ୍ୱହନ୍ତା ଆଦି ବିଶ୍ୱନାଥ ।
ଜୟ ଜୟ ସଦାଶିବ ସୁରଦର୍ପ ଧ୍ୱଂସି
ଜୟ ଜୟ ସଦାନନ୍ଦ କଇଳାସ ବାସୀ ।
ଜୟ ଶିବ ଆନନ୍ଦେ ତୋ ମତି ସଦାଭୋଳା
ଜୟ ଜୟ ସଦାଶିବ ସର୍ବଦା ଲଙ୍ଗଳା ।
ଜୟ ଜୟ ସଦାନନ୍ଦ ଦକ୍ଷ ଯଜ୍ଞ ଭଞ୍ଜା
ଜୟ ଜୟ ସଦାନନ୍ଦ ଯୋଗୀ ମନରଞ୍ଜା ।
ଜୟ ଜୟ ସଦାନନ୍ଦ କାଶୀ କ୍ଷେତ୍ର ବାସୀ
ଜୟ ଜୟ ସଦାନନ୍ଦ ଅନ୍ଧକ ବିଧ୍ୱଂସୀ ।
ଜୟ ଜୟ ସଦାନନ୍ଦ ଆଦି ନିରଞ୍ଜନ
ଜୟ ଜୟ ସଦାନନ୍ଦ ଅନାଦି ଈଶାନ ।
ଜୟ ଜୟ ସଦାନନ୍ଦ ଜଗଦ୍ ବରଦାତା
ଜୟ ଜୟ ସଦାନନ୍ଦ ପଞ୍ଚବକ୍ତ୍ର ତ୍ରାତା ।
ଜୟ ଜୟ ସଦାନନ୍ଦ ତୁ ତତ୍ତ୍ୱ ପୁରୁଷ
ଜୟ ଜୟ ସଦାନନ୍ଦ ଅଖିଳ ମହେଶ ।
ଜୟ ଜୟ ସଦାନନ୍ଦ ଭକତ ବତ୍ସଳ
ଜୟ ଜୟ ମହାଦେବ ରୂପ କାଳାନଳ ।
ଜୟ ଜୟ ମହାଦେବ ସଦା ମହାଯୋଗୀ
ଜୟ ଜୟ ମହାଦେବ ସର୍ବ ସୁଖ ଭୋଗୀ ।
ଜୟ ଜୟ ମହାଦେବ ପାର୍ବତୀ ବଲ୍ଲଭ
ଜୟ ଜୟ ମହାଦେବ ବର୍ଣ୍ଣ ତୋର ଶୁଭ୍ର ।
ଜୟ ଜୟ ମହାଦେବ ମାନ ଉଦ୍ଧାରଣ
ଜୟ ଜୟ ମହାଦେବ ପାତକ ହରଣ ।
ଜୟ ଜୟ ମହାଦେବ ଦେବେ ଦେବରାଜ
ସର୍ବ ଭୂତନାଥ ତୁହି ଅନାଦି ଆତ୍ମଜ ।
ଜୟ ଜୟ ମହାଦେବ ସୁରେଶ ଅରେଖ
ଜୟ ଜୟ ଗଙ୍ଗାଧର ଜୟ ଶଶିରେଖ ।
ଜୟ ଜୟ ଗଙ୍ଗାଧର ବୃଷଭ ବାହନ
ଜୟ ଜୟ ଗଙ୍ଗାଧର ଜଗତ ପାଳନ ।
ଜୟ ଜୟ ଗଙ୍ଗାଧର ସର୍ବଦା ଉଦାସି
ଜୟ ଜୟ ଗଙ୍ଗାଧର କାମ ଦର୍ପ ଧ୍ୱଂସି ।
ଜୟ ଜୟ ମହାଦେବ କାଳକୂଟ ଭକ୍ଷ
ଜୟ ଜୟ ମହାଦେବ ସମ ସୁଖ ଦୁଃଖ ।
ଜୟ ଜୟ ମହାଦେବ ନିରାକାର ଦେହି
ଜୟ ଜୟ ମହାଦେବ ଜଟା ଅଛୁ ବହି ।
ଜୟ ଜୟ ମହାଦେବ ଭୈରବ ମୂରତି
ଜୟ ଜୟ ମହାଦେବ ଅର୍ଦ୍ଧାଙ୍ଗ ପାର୍ବତୀ ।
ଜୟ ଜୟ ମହାଦେବ ଆଦିମୂଳ ଲିଙ୍ଗ
ଜୟ ଜୟ ମହାଦେବ ଶିରେ ଶୋହେ ଲିଙ୍ଗ ।
ନୟନର ଡୋଳା ତୋର ସୋମ ସୂର୍ଯ୍ୟାନଳ
ଲଲାଟ ଚନ୍ଦ୍ର ଅଙ୍ଗରେ ବିଭୂତି ସୁଢ଼ଳ ।
ଚମ୍ପା କେତକୀ ଅରଖ ନୀଳୋତ୍ପଳ ପୁଷ୍ପ
ତରାଟ ଦୁଦୁରା ନାଗକେଶର ଗଈଶ ।
ଆନନ୍ଦରେ ବିଭୂଷିତ ହେଉ ଶୂଳପାଣି
ଜୟ ଜୟ ମହାଦେବ ଦେବ ଶିରୋମଣି ।
ଜୟ ଜୟ ମହାଦେବ ଉମା ପ୍ରାଣନାଥ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତବ ଭକ୍ତ ।

ଏମନ୍ତେ ଅନେକ ସ୍ତୁତି କଲେକ ଯୁଧିଷ୍ଠି
ନିଜ ରୂପ ଧରି ଉଭା ପ୍ରସନ୍ନ ଧୂର୍ଜଟି ।
ଶୁକ୍ଳାମ୍ବର ଶିଖି ଶୁଦ୍ଧ ସ୍ଫଟିକ ଶରୀର
ନିଜ ରୂପେ ଦୃଶ୍ୟ ଦେଲେ ପ୍ରତ୍ୟକ୍ଷ ଈଶ୍ୱର ।
ଭୟରେ ଯୁଧିଷ୍ଠି ଶତବାର ଯେ ପ୍ରଣମି
ତୋର ପ୍ରସନ୍ନେ ମୁକତି ହେଲି ଦେବ ସ୍ୱାମୀ ।
ବୃଷଭ ପିଠିରେ ଥାଇ ବର ଦେଲେ ହର
ଏହି ଦେହେ ଯୁଧିଷ୍ଠିର ବସ ସ୍ୱର୍ଗପୁର ।
ସମସ୍ତ ଜନ୍ମ ଦୁଷ୍କୃତ ତୋର କ୍ଷୟ ଯାଉ
ସମସ୍ତ ଅରିଷ୍ଟି ଖଣ୍ଡ ରାଜ୍ୟ ପ୍ରାପ୍ତ ହେଉ ।
ସୁପ୍ରସନ୍ନେ ବର ଦେଲେ ଦେବ ଦେବରାଜ
ଦର ହର୍ଷିତ ବଚନେ ପ୍ରଭୁ ବୃଷଧ୍ୱଜ ।
ବରଦେଇ ଅନ୍ତରୀକ୍ଷେ ଗଲେ ତ୍ରିପୁରାନ୍ତ
ରହିଲେ ମହେନ୍ଦ୍ର ଗିରି ଶିଖେ ପଣ୍ଡୁସୁତ ।

—୦—

## ମହେନ୍ଦ୍ର ଗିରିର ବିବରଣ

ଏଥୁ ଅନନ୍ତରେ ଶୁଣ କେତେ ଦିନ ଅନ୍ତେ
ପଞ୍ଚ ନନ୍ଦନଙ୍କ ତୁଲେ କୁନ୍ତୀଦେବୀ ଯାନ୍ତେ ।
ପର୍ବତ ଶିଖେ ଦେଖିଲେ ବିବର ପଲକେ
ପଚାରନ୍ତି ସହଦେବ ଚାହିଁ ଏକେ ଏକେ ।
ଶଇଳ ମଧ୍ୟେ ଏମନ୍ତ ସ୍ଥାନ ଅଛି ପୁଣି
ଜାଣିଥିଲେ କହ ବାବୁ ମନ୍ତ୍ରୀ ଚୂଡ଼ାମଣି ।
କର ଯୋଡ଼ି ବିନୟରେ କହେ ସହଦେବ
ଶୁଣିମା ଏହି ବିଦୂର କଥା ଆହେ ଦେବ ।
କରତଳ ଚାହିଁ କହେ ମନ୍ତ୍ରୀ ଚୂଡ଼ାମଣି
ତ୍ରେତାଯୁଗର ଚରିତ ଶୁଣ ପାଟରାଣୀ ।
ଅଯୋଧ୍ୟା କଟକେ ଦଶରଥ ବୋଲି ରାୟ
ଅପୁତ୍ରିକ ମାଗୋ ନାହିଁ ତାହାର ତନୟ ।
ମହାବ୍ୟାକୁଳ ଚିତ୍ତରେ ଭାଳେ ନୃପମଣି
ସନ୍ତତି ବିନେ ନିଷ୍ଫଳ ଜୀବନ ପରାଣୀ ।
ବଶିଷ୍ଠ ବୋଲନ୍ତି ନୁହ ବିସ୍ମିତ ନୃନାଥ
କେମନ୍ତେ ଆସିବ ଏଥେ ବିଭାଣ୍ଡକ ସୁତ ।
ଲୋମପାଦ ଦଶରଥ ମଇତ୍ର ସଙ୍ଗତି
ବେଶ୍ୟା ପଠାଇ ଆଣିଲେ ଋଷଶୃଙ୍ଗ ଯତି ।
ଶାନ୍ତା ନାମେ ଦଶରଥ ନୃପତି ନନ୍ଦିନୀ
ତାହାଙ୍କୁ ବିଭା ହୋଇଲେ ଋଷ୍ୟଶୃଙ୍ଗ ମୁନି ।
ଜାମାତା ରାଜା ବିକଳ ଦେଖି ଯୋଗ କଲା
ରତ୍ନଭାଣ୍ଡେ ବସାଇଣ ଚରୁ ଫୁଟାଇଲା ।
କୌଶଲ୍ୟା କୈକେୟୀ ଆଉ ସୁମିତ୍ରା ଏ ତିନି
ଅଟନ୍ତି ଯେ ଦଶରଥ ରାଜ ପାଟରାଣୀ ।

ଚରୁ ଗ୍ରାସ କଲେ ସୁଖେ ସେ ତିନି ଯୁବତୀ
ତିନିଙ୍କ ଠାରୁ ଯେ ଚାରି ପୁତ୍ର ଉତପତ୍ତି ।
କ୍ରମେଣ ରାଜା ପାଇଲା ଚାରୋଟି ଦାନବ
ଯାହାର ହୋଇବ ପୃଥ୍ୱୀ ଭାରଭର କ୍ଷୟ ।
ଶ୍ରୀରାମ ଲକ୍ଷ୍ମଣ ଆଉ ଭରତ ଶତ୍ରୁଘ୍ନ
ଏକଦା ମିଳିଲେ ବିଶ୍ୱାମିତ୍ର ତପୋଧନ ।
ଯାଗ ରକ୍ଷାଅର୍ଥେ ରାମ ଲକ୍ଷ୍ମଣ ସେ ନେଲେ
ମନ୍ତ୍ରସହ ଅସ୍ତ୍ର ଶସ୍ତ୍ର ସବୁ ତାଙ୍କୁ ଦେଲେ ।
ପଥେ ଯାନ୍ତେ ତାଡ଼କାକୁ କଲେ ସେ ନିଧନ
ଅମୋକ୍ଷକୁ ମୋକ୍ଷ କଲେ ଶ୍ରୀରାମ ଲକ୍ଷ୍ମଣ ।
ତହୁଁ ପ୍ରବେଶ ହୋଇଲେ ମୁନିଙ୍କ ଆଶ୍ରମ
ଶ୍ରୀରାମ ଲକ୍ଷ୍ମଣ କଲେ ଋଷିଙ୍କୁ ପ୍ରଣାମ ।
ମୁନିମାନଙ୍କର ଯଜ୍ଞ ରଖି ବାହୁବଳେ
ସୁଖ୍ୟାତ ଅର୍ଜିଲେ ରାମ ତ୍ରୈଲୋକ୍ୟ ମଣ୍ଡଳେ ।
ମୁନିମାନଙ୍କର ଶୁଭ ଆଶୀର୍ବାଦ ପାଇ
ବିଶ୍ୱାମିତ୍ର ମୁନି ତୁଲେ ତହୁଁ ବେନି ଭାଇ ।
ବିଦେହ ମଣ୍ଡଳେ ଯାଇ ହୋଇଲେ ପ୍ରବେଶ
ରାମ ଚରଣେ ଶରଣ ଶ୍ରୀ ଶାରଳା ଦାସ ।
ବିଦେହ ମଣ୍ଡଳେ ହୁଏ ସୀତା ସ୍ୱୟମ୍ବର
ଅନେକ ଦେଶୁ ମିଳିଲେ ଆସି ଦଣ୍ଡଧର ।
ଦେଖନ୍ତି ସେ ପୁରଗୋଟି ଦିଶେ ଅତି ଶୋଭା
କି ଜାଣି ସେ ଗୁରୁ ଚନ୍ଦ୍ର କିରଣର ଆଭା ।
ଶ୍ରୀରାମ ପ୍ରବେଶ ହେବା ବିଦେହ ଶୁଣିଲେ
ପଟହ ଧ୍ୱନି ଉତ୍ସବେ ପୁର ମଣ୍ଡାଇଲେ ।
ବାଟକୁ ଅଇଲେ ନେବାପାଇଁ ମୁନିବର
ରାମ ଲକ୍ଷ୍ମଣ ପ୍ରବେଶ ଉତ୍ସବ ନବରେ ।
ରାମଙ୍କୁ ଦେଖି ସନ୍ତୋଷ ହେଲେ ତପୋଧନ
ପ୍ରତ୍ୟକ୍ଷ ବିଷ୍ଣୁ କରିବେ ଦାନବ ନିଧନ ।
ଏହି ଶ୍ରୀରାମ ମାନବ ରୂପେ ଅବତାର
ଏହି ଉଶ୍ୱାସ କରିବେ ସିନା ମହୀଭାର ।
ମୁନିଙ୍କୁ ଦେଖିଣ ରାମ ପ୍ରଣିପାତ କଲେ
ଅକଳିତ ବଳ ଧନୁ ନେଇ ଦେଖାଇଲେ ।
ଶ୍ରୀଭୁଜେ ସେ ଧନୁ କଲେ ରାମ ଆମଞ୍ଚନ
ବେନିଖଣ୍ଡ ହୋଇ ଧନୁ ଗୋଟି ହେଲା ଭଗ୍ନ ।
ଶବଦରେ କମ୍ପିଲାକ ସପତ ବ୍ରହ୍ମାଣ୍ଡ
ଦଲଦଲ ହୋଇଲା ସେ ପୃଥ୍ୱୀ ନବଖଣ୍ଡ ।
ଧନୁ ଭଗ୍ନ ହେବା ଦେଖି ଜନକ କୁମାରୀ
ରାମକଣ୍ଠେ ଲମ୍ବାଇଲେ ନେଇ ପୁଷ୍ପମାଳି ।
ଜନକ ବୋଇଲେ ଦେବି ତୋତେ ମୋ କୁମାରୀ
ବ୍ରତ ମୋହର ପୂରିଲା ହେ କୋଦଣ୍ଡଧାରୀ ।

ଶୁଣିଣ ସମସ୍ୟା ଦେଲେ ରାମ ଚାପଧାରୀ
ଅଯୋଧ୍ୟାକୁ ଦୂତ ପଠିଆଅ ବେଗ କରି ।
ମକର କୃଷ୍ଣ ଉତ୍ତମ ଦିନ ଦେଖି ତହିଁ
ଅଇଲେକ ପିତା ଦଶରଥ ଥାଟ ବାହି ।
ବିଦେହ ମଣ୍ଡଳେ ଯାଇ ତ୍ୱରିତେ ମିଳନ୍ତି
ବିବାହ ବିଧି ସ୍ୱୀକାର ବରଣ କରନ୍ତି ।
ଛାୟା ମଣ୍ଡପ ବେଦୀରେ ବସି ମୁନିଗଣ
ସତ୍ୟବାକ୍ୟ ଉଚ୍ଚାରିଣ କରିଲେ ବରଣ ।
ଶ୍ରୀରାମଚନ୍ଦ୍ରଙ୍କୁ କଲେ ସୀତାଙ୍କୁ ପ୍ରଦାନ
ଭରତକୁ ମାଣ୍ଡବୀ ସେ ଜନକ ରାଜନ ।
ଲକ୍ଷ୍ମଣେ ଊର୍ମିଳା ଶତ୍ରୁ ଘନେ ଶ୍ରୁତକୀର୍ତ୍ତି
ଚାରିପୁତ୍ରେ ଚାରିକନ୍ୟା ଦେଲେ ମନେ ଚିନ୍ତି ।
ବିଭାହୋଇ ରାମଚନ୍ଦ୍ର ଅଯୋଧ୍ୟା ଆସନ୍ତେ
ଓଗାଳିଲେ ତାଙ୍କୁ ଯମଦଗ୍ନି ସୁତ ପଥେ ।
ପରଶୁରାମର ଦର୍ପ ମର୍ଦ୍ଦି ରଘୁବୀର
ପ୍ରବେଶିଲେ ଦାଶରଥି ଅଯୋଧ୍ୟା ନଗର ।
ମୁନି ଯଜ୍ଞରେ ଦୈତ୍ୟକୁ ରାମଚନ୍ଦ୍ର ମାରି
ନିଶ୍ଚିନ୍ତେ ଅଯୋଧ୍ୟାପୁରେ ଥିଲେ ଚାପଧାରୀ ।
ଶ୍ରୀରାମ ଶଉର୍ଯ୍ୟ ବଳ ଦେଖି ଅଜ ସୁତ
ମନେ ମନେ ଭାଳନ୍ତି ଯେ ରାଜା ଦଶରଥ ।
ପୁତ୍ର ଶ୍ରୀରାମ ମୋହର ଜଗତ ବିଖ୍ୟାତ
ତାହାକୁ ରାଜ୍ୟ ଦେଇଣ ହେବି ସ୍ୱର୍ଗ ପ୍ରାପ୍ତ ।
ବଶିଷ୍ଠଙ୍କୁ ଘେନି ସଙ୍ଗେ ଭାଳେ ନୃପବର
କରିବି ରାମେ ଅଯୋଧ୍ୟା ରାଜ୍ୟେ ଦଣ୍ଡଧର ।
ମକର କୃଷ୍ଣ ଦଶମୀ ତିଥି ଗୁରୁବାରେ
ରୋହିଣୀ ନକ୍ଷତ୍ର ଭୋଗ ଅଟେ ସେ ଦିନରେ ।
ଶୁଭ ନାମେ ଯୋଗ ବବ ନାମରେ କରଣ
ନରପତି ହେବାରେ ସେ ଅଟେ ଶୁଭଦିନ ।
ଶ୍ରୀରାମଙ୍କ ଅଭିଷେକ ଶୁଣିଣ ମନ୍ଥରୀ
କୈକେୟୀ ଆଗେ କହଇ ତାର ହିତ କରି ।
ଆଗୋ ରଜନୀ ପ୍ରଭାତେ ରାମ ହେବେ ରାଜା
ତୋହର ପୁତ୍ର କରିବ ତାର ପାଦପୂଜା ।
ଅନେକ ପ୍ରକାରେ ତାକୁ କହିଲା ମଣାଇ
ଶୁଣିଣ କୈକେୟୀ ରାଣୀ ରାଜାଙ୍କୁ କହଇ ।
ପୂର୍ବବର ଦେବା ସତ୍ୟ ସତ୍ୟ କରି ରାୟ
ଶ୍ରୀରାମଙ୍କୁ ବନ ରାଜ୍ୟ ଭରତକୁ ଦିଅ ।
ଶ୍ରୀରାମ ଲକ୍ଷ୍ମଣ ତହିଁ ଗଲେ ବନବାସେ
ସଙ୍ଗତେ ଜାନକୀ ଶୋଭା ପାଉ ତାଙ୍କ ପାଶେ ।
ହରଷ ହୋଇଣ ତିନିଜଣ ଚଳିଗଲେ
ରାମ ନ ଦେଖିଣ ରାଜା ମରଣ ଲଭିଲେ ।
ମୃତ ଶବକୁ ସଂସ୍କାର ଭରତ ଶତ୍ରୁଘ୍ନ
ବଶିଷ୍ଠ ମୁନି ସହିତେ ଗଲେ ଘୋର ବନ ।
ରାମଙ୍କୁ କହିଲେ ଯାଇ ଶତ୍ରୁଘ୍ନ ଭରତ
ଚାଲନ୍ତୁ ଅଯୋଧ୍ୟାପୁରେ ହେବ ନରନାଥ ।
ଯେତେ କହିଲେ ଶ୍ରୀରାମ ନ ଆସିଲେ ଫେରି
ବାହୁଡ଼ି ଅଇଲେ ଦୁହେଁ ଅଯୋଧ୍ୟା ନଗରୀ ।
ତହୁଁ ଗମନ୍ତି ବିପିନ ମଧ୍ୟେ ଦାଶରଥି
ରହିଲେକ ପଞ୍ଚବଟୀ ବନେ ସୀତାପତି ।
ପୂର୍ବୁ ସୁର୍ପଣଖା ତହିଁ ବାସ କରିଥିଲା
ଏହି ସମୟେ ଆସିଣ ଉପସ୍ଥିତ ହେଲା ।
ହାବ ଭାବ ଦେଖାଇ ସେ ରାମଙ୍କ ଅଗ୍ରତେ
ବୋଲଇ ବିହର ତୁମ୍ଭେ ମୋହର ସଙ୍ଗତେ ।
ତଦନ୍ତେ ରାମ ବୋଇଲେ ଲକ୍ଷ୍ମଣଙ୍କୁ ଚାହିଁ
ଯଥୋଚିତ ଦଣ୍ଡ ଦିଅ ଏ ମୋଢ଼ୀ କି ତୁହି ।
ତହୁଁ ସେ ତାହାର ନାକକାନ ଦେଲେ ଛେଦି
ଡରେ ଅସୁରୀ ପଳାଇଗଲା କାନ୍ଦି କାନ୍ଦି ।
ରାବଣେଶ୍ୱର ଅଗ୍ରତେ କହିଲା ସମସ୍ତ
ଯତି ବେନି ଭାଇ କଲେ ଏସନକ କୃତ୍ୟ ।
ଖର ଦୂଷଣ ତ୍ରିଶିରା ମୂଳେ ସେନାପତି
ସେ ବେନି ତପସ୍ୱୀ କଲେ ସର୍ବ ବିନଶ୍ୟତି ।
ଶୁଣିଣ ରାବଣେଶ୍ୱର କୋପେଣ ପ୍ରଚଣ୍ଡ
ଆଜି କଟିବଇଁ ବେନି ଯତିଙ୍କର ମୁଣ୍ଡ ।
ପୁଷ୍ପକ ରଥ ଆରୋହି ଚଳେ ଦଶାନନ
ଶ୍ରୀରାମର ତେଜ ଦେଖି ବିଷଣ୍ଣ ବଦନ ।
ଏହି ତ ଅଟଇ ସ୍ୱୟଂ ବିଷ୍ଣୁ ଅବତାର
ଏହା ହସ୍ତେ ନାଶଯିବେ ସକଳ ଅସୁର ।
ମୋହର ମରଣ ଜାଣ ହୋଇବ ନିକଟେ
ଏହି ଜନକ ଦୁହିତା ସ୍ୱୟଂ ଲକ୍ଷ୍ମୀ ଅଟେ ।
ମାୟା ମୃଗେକ ତକ୍ଷଣେ ଭିଆଇଲା ତହିଁ
ଆପେ କପଟୀ ତପସ୍ୱୀ ରୂପ ଗୋଟି ବହି ।
କନକ କୁରଙ୍ଗୀ ଦେଖି ଲୋଭେ ମହାସତୀ
ଶ୍ରଦ୍ଧା କରି ଶ୍ରୀରାମଙ୍କୁ ଯାଇଣ ମାଗନ୍ତି ।
ମୃଗ ମାରିବାକୁ ରାମଚନ୍ଦ୍ର ତହୁଁ ଗଲେ
ଲକ୍ଷ୍ମଣଙ୍କୁ ସେ ମଢ଼ିଆ ଗୋଟି ଜଗାଇଲେ ।
ନାରାଚ ପୂରାଇ ଧାଇଁଛନ୍ତି ରଘୁବୀର
ଅନ୍ତରୀକ୍ଷ ମାର୍ଗେ ମୃଗ ଯାଏ ଖରତର ।
ପଡ଼ନ୍ତେ ଯାଇ ତା ଅଙ୍ଗେ ଶ୍ରୀରାମଙ୍କ ବାଣ
ରାବେଣ ଦେଲା ଶରଣ ରଖ ହୋ ଲକ୍ଷ୍ମଣ ।
ରଖ ହୋ ଲକ୍ଷ୍ମଣ ବୋଲି ଶୁଭେ ଯେଣୁ ବାଣୀ
ଶୁଣିଣ ବିଷାଦ ପାଇ ଜନକ ଦୁଲଣୀ ।

ବିସ୍ମୟ ଚିତ୍ତରେ ଦେବୀ ଲକ୍ଷ୍ମଣେ ନିରୀକ୍ଷି
ବୋଲନ୍ତି ଯେ ଗଦଗଦ ବାଣୀ ଚନ୍ଦ୍ରମୁଖୀ ।
ନିଶ୍ଚେ ପଡ଼ିଲା ସ୍ୱାମୀଙ୍କୁ ବନେ ଅପଚୟ
ତ୍ରାହି ଶବଦ ଶୁଭଇ ତେଣୁ ମନେ ଭୟ ।
ସୀତାର ବଚନେ ବୀର ଲକ୍ଷ୍ମଣ ଯେ ଗଲା
ତପସ୍ୱୀ ରୂପେ ରାବଣ ସୀତା ହରିନେଲା ।
ଅଶୋକ ବନେ ଥୋଇଲା ଲଙ୍କାଗଡ଼େ ନେଇ
ଅଇଲେ ସେ ମୃଗଭାର ଘେନି ବେନିଭାଇ ।
ସୀତା ନ ଦେଖି ବ୍ୟାକୁଳ ହେଲା ପଞ୍ଚମନ
ଖୋଜିଲେ ରାମ ଲକ୍ଷ୍ମଣ ଗହନ ବିପିନ ।
ଭ୍ରମି ଭ୍ରମି କିଷ୍କିନ୍ଧ୍ୟାରେ ପ୍ରବେଶ ହୋଇଲେ
ସୁଗ୍ରୀବର ସଙ୍ଗେ ତହିଁ ମଇତ୍ର ହୋଇଲେ ।
ଭେଟିଲେ ବୀର ହନୁକୁ ଦାଶରଥି ତହିଁ
ବଜ୍ର କୌପୀନ ଅମୃତ କୁଣ୍ଡଳ ଅଛଇ ।
ରାମ ଅବତାରେ ହନୁମନ୍ତ ନିଜ ଭୃତ୍ୟ
ସୁଗ୍ରୀବର ହିତେ କଲେ ବାଳିକୁ ନିପାତ ।
ସୀତା ଖୋଜିବାକୁ ରାମ ହନୁକୁ ପେଷିଲେ
ଚାରି ଯୂଥପତି ଚଉକତିରେ ଲୋଡ଼ିଲେ ।
ଯମଦଗ୍ନି ପବର୍ତରେ ଉଠେ ହନୁମନ୍ତ
ଉଠନ୍ତେ ପର୍ବତ ଗୋଟି ହେଲା ରସାଗତ ।
ତହୁଁ ବିକ୍ରମିଣ ହନୁ ଏ ମହୀନ୍ଦ୍ର ଉଠି
ଲଙ୍କାଗଡ଼କୁ ପବନ ସୁତ ଦେଲା ଦୃଷ୍ଟି ।
ବିକ୍ରମିଣ ତହୁଁ ଗଲା ଅଞ୍ଜନାର ସୁତ
ପାଦଭରେ ଥୋଇଲା ଏ ଗିରି ରସାଗତ ।
ଶୁଣ ସାବଧାନେ କୁନ୍ତଭୋଜର ଦୁହିତେ
ଏକ ବିବର ହୋଇଲା ହନୁ ପଦାଘାରେ ।
ମହୀନ୍ଦ୍ର ଗିରି ଏହାର ନାମ ଆଗୋ ମାତ
ଅମୋକ୍ଷ ଜନ ଏଠାରେ ହୁଅନ୍ତି ମୁକତ ।
ପାପ ନାଶିନୀରେ ସ୍ନାନ କଲେ ଶୁଦ୍ଧକାୟ
ନ ପାରଇ ପାପୀ ଜନେ ଦେଇ ଯମରାୟ ।
ଶତ ଶତ ଜନ୍ମର ଗୋ ପାପ ଯାଇ କ୍ଷୟ
ମୁକତି ଗତି ଦିଅନ୍ତି ପ୍ରଭୁ ଦେବରାୟ ।
ଶୁଣିଲଟି ସାବଧାନେ ପଚାରିଲ ଯାହା
ରାମାବତାରେ ହନୁର ପାଦେ ହେଲା ଏହା ।
ଏ ମହାଭାରତ ଜନେ ଶୁଣ ମନଦେଇ
ଶ୍ରୀହରି ଭଜି ଶାରଳା ଦାସ ଯେ ଲେଖଇ ।

—୦—

## ହିଡ଼ିମ୍ବକ ବନେ ଘଟୋତ୍କଚର ଅଭିଷେକ

ଏମନ୍ତେ ଯେ କେତେକାଳ ତହିଁ କଟାଇଲେ
ତଦନ୍ତେ କି ହେଲା ବୈବସ୍ୱତ ପଚାରିଲେ ।
ବଦନ୍ତି ଅଗସ୍ତି ଶୁଣ ହେ ମନୁ ପୁରୁଷ
ପୁତ୍ର ଦେଖି ଧର୍ମ ରାଜା ଅନେକ ହରଷ ।
ବିଛା ଶୁକ୍ଳ ତ୍ରୟୋଦଶୀ ତିଥି ବୁଧବାର
ଅନୁରାଧା ନକ୍ଷତ୍ର ଯେ ଅଟେ ସେ ଦିନର ।
ଶୁଭନାମେ ଯୋଗ ପୁଣି ବାଳବ କରଣ
ବ୍ୟାସଙ୍କୁ ସେ ସୁମରିଲେ ଧର୍ମଙ୍କ ନନ୍ଦନ ।
ବିଜେ ବ୍ରହ୍ମାବେତ୍ତା ସଙ୍ଗେ ଘେନି ମୁନିଗଣ
ପ୍ରବେଶ ହୋଇଲେ ଆସି ହିଡ଼ିମ୍ବକ ବନ ।
ଦଣ୍ଡ କମଣ୍ଡଳୁ କଷା କୌପୀନ କାଛଟି
ଦେଖି ପୂଜା କଲେ ଧର୍ମ ରାଜନ ଯୁଧିଷ୍ଠି ।
ସପତ ଋଷି ସହିତେ ବଶିଷ୍ଠ ପୌଲସ୍ତି
ସୁଦେବ କୌଣ୍ଡନ୍ୟ ମାର୍କଣ୍ଡେୟ ବ୍ରହ୍ମଯତି ।
ଯମଦଗ୍ନି ଅଙ୍ଗିରା ଯେ ମରୀଚି ଲୋମଶ
ହିଡ଼ିମ୍ବକ ବନେ ସର୍ବ ମୁନିଏ ପ୍ରବେଶ ।
ମୁନିମାନଙ୍କୁ ଯୁଧିଷ୍ଠି ଦେବ ପୂଜା କରି
ଏସନକ ଦେଲେ ପାଦ ପ୍ରକ୍ଷାଳି ତାଙ୍କରି ।
ଭୋ ଦେବ ଏବନେ ହେବ ଘଟୋତ୍କଚ ରାଜା
ଅଭିଷିକ୍ତ କର ତୀର୍ଥ ଜଳେ ପାଉ ପୂଜା ।
ଯୁଧିଷ୍ଠିରଙ୍କ ବଚନେ ବେଦ ବ୍ୟାସ ଯତି
କୁଣ୍ଡେ ଅଗ୍ନି ଆରୋପିଣ ପାତିଲେ ଆହୁତି ।
ଆର୍ଯ୍ୟମା ଅନଳ ମଧ୍ୟେ ଶାସ୍ତ୍ରର ଯୁକତେ
ସକଳ ଋଷିଏ ମିଳି ଆହୁତି ଦିଅନ୍ତେ ।
ପୁଷ୍କରକୁ ଧ୍ୟାନ କଲେ ଏକାନ୍ତେ ଯୁଧିଷ୍ଠି
କୋଟି ତୀର୍ଥ ଘେନି ବିଜେ ତହିଁ ମୁନି ଗୋଷ୍ଠୀ ।
ବସାଇଲେ ଯୁଧିଷ୍ଠିର କୋଳେ ଘଟୋତ୍କଚ
ସାନନ୍ଦ ପୁତ୍ରଙ୍କୁ କଲେ ମୂର୍ଦ୍ଧା ଅଭିଷିକ୍ତ ।
ପୁଷ୍କର ମେଘକୁ ରାଇ କହିଲେ ସୁରେଶ
ଘଟୋତ୍କଚ ଶିରେ ତୁହି କୁସୁମ ବରଷ ।
ଯହିଁ ବିଜୟ ପାଣ୍ଡବେ ଘେନି ମୁନି ଗୋଷ୍ଠୀ
ଦେବ ଇନ୍ଦ୍ର କରାଇଲେ ତହିଁ ପୁଷ୍ପ ବୃଷ୍ଟି ।
ଯହୁଁ ଗଗନେ ଶୁଭିଲା ଦୁନ୍ଦୁଭି ଶବଦ
ଦ୍ୱାରକାପୁରେ ଜାଣିଲେ ପ୍ରଭୁ ଯେ ଗୋବିନ୍ଦ ।
ଆଶିଷ ପାଞ୍ଚିଲେ ଦେବରାଜା ଚକ୍ରଧର
ବୋଇଲେ ଭୀମ କୁମର ସୁଖେ ରାଜ୍ୟ କର ।

ଋଷିମାନେ ଆଶୀର୍ବାଦ ଅର୍ଘ୍ୟ ପୁଣି ଦେଲେ
ଘଟୋତ୍କଚକୁ ହିଡ଼ିମ୍ବ ବନେ ରାଜା କଲେ ।
ଋଷିଏ ଗମନ କଲେ ଯେ ଯାହାର ସ୍ଥାନେ
ରହିଲେ ପାଣ୍ଡବ ସୁଖେ ହିଡ଼ିମ୍ବକ ବନେ ।
ଯେବଣ ଜନ ଶୁଣନ୍ତି ଏହା ସାବଧାନେ
ଶରୀର ନିର୍ମଳ ଯେହ୍ନେ ପୁଷ୍କରାଦି ସ୍ନାନେ ।
ବଂଶରୁ ସମସ୍ତ ହତ୍ୟା ଦୋଷ ପାଇ କ୍ଷୟେ
ଏଥିରେ ସନ୍ଦେହ ନାହିଁ ଆନେ ନରରାୟେ ।
ଜୟ ଶ୍ରୀରାମ କୋଦଣ୍ଡ ଦୀକ୍ଷା ଶିକ୍ଷା ଗୁରୁ
ପୃଥ୍ୱୀର ହିତ ଅର୍ଥେ ତୁ ଦଇତ୍ୟ ନିବାରୁ ।
ମୁନିଜନ ରଞ୍ଜନ ତୁ ମାନ ଉଦ୍ଧାରଣ
ଭୃଗୁ ସୁତ ଦର୍ପ ଧ୍ୱଂସି ଦୈତ୍ୟ ନିବାରଣ ।
ଜୟ ତୁ ରାମ ଧନୁଷ୍କ ଜନ ଚୂଡ଼ାମଣି
ଜୟ ତୁ ରାମ ବଇରୀ କାଳଯମ ଜାଣି ।
ଜୟ ତୁ ରାମ ଅମୋକ୍ଷ ଜନ ମୋକ୍ଷଦାତା
ଜୟ ତୁ ରାମ ସକଳ ମହୀ ପରିତ୍ରାତା ।
ଜୟ ତୁ ରାମ ବୈକୁଣ୍ଠପୁର ଅଧିବାସୀ
ଜୟ ତୁ ଶ୍ରୀରାମ ମହୀ ଭାରାଭର ନାଶି ।
ଜୟ ତୁ ଶ୍ରୀରାମ ସୀତା ଦେବୀଙ୍କର ପତି
ଜୟ ତୁ ଶ୍ରୀରାମ ମୁନି ଜନ ତୋତେ ଚିନ୍ତି ।
ଜୟ ତୁ ଶ୍ରୀରାମ କଉଶଲ୍ୟାର ନନ୍ଦନ
ପିତା ସତ୍ୟେ ରାଜା ତେଜି ବିପିନେ ଗମନ ।
ଜୟ ତୁ ଶ୍ରୀରାମ ଭକ୍ତି ମୁକ୍ତି ଫଳଦାତା
ଜୟ ତୁ ରାମ ନରକୁ ଉଦ୍ଧାର କରତା ।
ଜୟ ତୁ ରାମ ଅହଲ୍ୟା ଶାପ ବିମୋଚନ
ଜୟ ତୁ ରାମ ସାକାର ବିଷ୍ଣୁ ସନାତନ ।
ଜୟ ତୁ ଶ୍ରୀରାମ ବାଳି ବୀର ପ୍ରାଣଦ୍ୱାର
ଜୟ ତୁ ରାମ ସୁଗ୍ରୀବେ ଦେଲୁ ରାଜ୍ୟଭାର ।
ଜୟ ତୁ ଶ୍ରୀରାମ ଦଶଶିରଠାରେ କୋପି
ଜୟ ତୁ ଶ୍ରୀରାମ ରାଜ୍ୟ ବିଭୀଷଣ ସ୍ଥାପି ।
ଜୟ ତୁ ଶ୍ରୀରାମ ରଣେ ଅସୁର ସଂହାରି
ଜୟ ତୁ ରାମ ସଂସାର ଜନଙ୍କୁ ଉଦ୍ଧାରି ।
ଜୟ ତୁ ରାମ ଜଗତଜନ ତାତ ମାତ
ଜୟ ତୁ ରାମ ଅଯୋଧ୍ୟା ଦେଶ ନରନାଥ ।
ଜୟ ତୁ ଶ୍ରୀରାମ ଅଟୁ ଆଦି ନିରଞ୍ଜନ
ଜୟ ତୁ ଶ୍ରୀରାମ ମିତ୍ର ଦୁଃଖ ବିମୋଚନ ।
ଜୟ ତୁ ରାମ ତୋ ଯୋଗୁଁ ଚରାଚରବର୍ତ୍ତୀ
ଜୟ ତୁ ଶ୍ରୀରାମ ନବ ଦୁର୍ବାଦଳ କାନ୍ତି ।
ଶୂଦ୍ରମୁନି ଶ୍ରୀ ଶାରଳା ଦାସକୁ ଉଦ୍ଧର
ଜନ୍ମେ ଜନ୍ମେ ଦାଶରଥି ପାଦର କିଙ୍କର ।
ନମଇଁ ଯେ ସୁରପତି ବ୍ରହ୍ମାର ନନ୍ଦିନୀ
କରେ ତୋର କରତାଳ ଶୋହେ ବୀଣାପାଣି ।
ଶ୍ରୀବାକ୍ୟ ଦେବୀ ଚରଣ ତଳେ ମୋର ସେବା
ଶୂଦ୍ରମୁନି ଶ୍ରୀ ଶାରଦା ଦାସେ ଗତି ଦେବା ।
ଏହି ଯେ ମହାଭାରତ ଆଦ୍ୟପର୍ବ କଥା
ଶୁଣନ୍ତେ ଛାଡ଼େ ଦୁଷ୍କୃତ ସର୍ବ ମନୋବ୍ୟଥା ।

—o—

## ପାଞ୍ଚ ପାଣ୍ଡବଙ୍କର କ୍ଷୀର ପାନ

ଅଗସ୍ତି ମୁନି କହନ୍ତି ପଞ୍ଚ ଯେ ପାଣ୍ଡବେ
ବନେ ଭ୍ରମନ୍ତେ ଦେଖିଲେ ଶମ୍ଭୁଙ୍କୁ ସେ ଠାବେ ।
ମୁନିଙ୍କୁ ଆଶ୍ରମେ ଦେଖି କଲେ ନମସ୍କାର
ସେ ବୋଇଲେ ତୁମ୍ଭେ ପରା ପଣ୍ଡୁଙ୍କ କୁମର ।
ଜତୁ ଘରୁ ପାର ହେଲେ କେହ୍ନେ ପାଞ୍ଚଜଣ
ଦୁର୍ଯ୍ୟୋଧନ ରାଜା ଆଗ କରିଥିଲା ପୁଣ ।
ବଦନ୍ତି ଯୁଧିଷ୍ଠି ଦେବ ଶୁଣ ମୁନିବର
ଦୁର୍ଯ୍ୟୋଧନର କପଟେ ବହୁ ସୁଖ ମୋର ।
ତାର ପୁଣ୍ୟରୁ ଦେଖିଲି ସିନା ବନ ଘୋର
ଅନେକ ତୀର୍ଥ ବୁଡ଼ିଲା ଏ ମୋହର ଶିର ।
ତା ଯୋଗୁଁ ପାଇଲି ସିନା ତୁମ୍ଭର ଦର୍ଶନ
ତୁମ୍ଭଙ୍କୁ ଦେଖିଣ ହେଲା ପାତକ ଦହନ ।
ଆଜ୍ଞା ମାଗନ୍ତୁ ତାହାଙ୍କୁ ସେ ଚାରି କୁମର
ବନେ ଅଛନ୍ତି ଦୁହିତା କୁନ୍ତଭୋଜଙ୍କର ।
ମୁନି ବୋଇଲେ ଯେ ରାଜା କ୍ଷୀର ଖାଇ ଯାଅ
ଅଡ଼ାଇ ଆଣିଲେ ଗାଈ ତିଳୋତ୍ତମା ଝିଅ ।
ବାଛୁରୀ ପିଟାଇ ଦେଇ ବସି ତପଚାରୀ
ଦୁଇ ଭାର ଦୁହିଁଲେ ସେ ବ୍ୟଗ୍ର ବ୍ୟଗ୍ର କରି ।
ପଚାରନ୍ତି ଯୁଧିଷ୍ଠିର ଶୁଣ ତପଚାରୀ
ଏ ଗାଈ ସନ୍ଦେଶ ମୋତେ କହିବା ବିସ୍ତାରି ।
ବଦନ୍ତି ଯତି କପିଳା ଝିଅ ସେ ସୁରଭୀ
ସୁରଭୀର ନନ୍ଦିନୀ ଯେ ଅଟଇ ଜାହ୍ନବୀ ।
ଜାହ୍ନବୀର ନନ୍ଦିନୀ ଯେ ଅଟଇ ବଉଳା
ବଉଳାର ନନ୍ଦିନୀ ଯେ ଅଟଇ ଚଞ୍ଚଳା ।
ବଉଳାଏ ଯାଏ କୁଶଦ୍ୱୀପକୁ ଚରିଣ
ଏ ପାରିଲେ ଥାଇ ତାର ଦୁହିତା ଯେ ପୁଣ ।
ପ୍ରତିଦିନ ଗାଈ ଗୋଟି ଯାଇଣ ଆସଇ
ଏ ପାରିରେ ଝିଅକୁ ସେ କ୍ଷୀର ପାନ ଦେଇ ।
ଏକ ଦିନକରେ ବଡ଼ ଉଛୁର ହୋଇଲା
ଚିର ଟାଣିବାରୁ ତଦୁତ୍ତାରେ ଯେ ଅଇଲା ।
ବୋଇଲା ଦୁହିତା ତାର ଶୁଣସି ଗୋ ମାତ
ଆଜି କ୍ଷୀର ସ୍ୱାଦୁ ମୋତେ ଲାଗେ ଅପ୍ରମିତ ।

ସେ ବୋଲେ ସ୍ତନରେ ଶୁଣ ପାଣି ଲାଗିଥିଲା
ତେଣୁ କରି ବଡ଼ ସ୍ୱାଦୁ ତୁଣ୍ଡକୁ ଲାଗିଲା ।
ବୋଲଇ ବାଛୁରୀ ମାତା ନିଅ ମୋତେ ସଙ୍ଗେ
ଦେଖିବି ସାଗର ପାଣି କେମନ୍ତେ ସଞ୍ଜୋଗେ ।
ଆରଦିନ ସେ ଝିଅକୁ ସଙ୍ଗରେ ଘେନିଲା
କୂଳେ ରଖି ସେ ପାରିକୁ ପୁଣି ଚରିଗଲା ।
ମାତାର ଯାଆନ୍ତେ କ୍ଷୁଧା ଯହୁଁ କଟାଳିଲା
ଲୋଭେଣ ବାଛୁରୀ ପାଣିଯାକ ପିଇଦେଲା ।
ସମୁଦ୍ରରେ ପାଣି ନାହିଁ ପଡ଼ିଲା ଶୁଖିଲା
ଅନେକ ଜୀବଜନ୍ତୁଙ୍କ ପ୍ରାଣ ନାଶ ହେଲା ।
ବିଧାତାକୁ ଜଣାଇଲେ ତହୁଁ ଦେବଗଣ
ମତ୍ସ୍ୟ କଚ୍ଛପ ବିନାଶ ହେଲେ ପଦ୍ମାସନ ।
ବ୍ରହ୍ମା ତହିଁ କହିଲେକ ଯାଇ ଗୋ ମାତାକୁ
ତୋର ଝିଅ ପିଇଦେଲା ସମୁଦ୍ର ପାଣିକୁ ।
ବ୍ରହ୍ମା ବଚନେ ସୁରଭୀ ଚିତ୍ତ ହେଲା ଦ୍ରବ
କ୍ଷୀର ପ୍ରସରୁ ପୂରିଲା ସମୁଦ୍ରର ଗର୍ଭ ।
ସତ୍ୟଯୁଗେ ହରି କ୍ଷୀର ସମୁଦ୍ର ମନ୍ଥିଲେ
ଅନେକ ଦ୍ରବ୍ୟ ପାଇଣ ବାଣ୍ଟି ଘେନିଗଲେ ।
ସେହି ଅଂଶରେ ନାତୁଣୀ ଅଟେ ତିଳୋତ୍ତମା
ଏହାର ବହିଣୀ ନାମ ଅଟଇ ପୃଥୁନା ।
ଶୁଣିଣ ଯୁଧିଷ୍ଠି ଦେବ ହରଷ ହୋଇଲେ
ସ୍ନାନ ତର୍ପଣ ସାରିଣ କ୍ଷୀରପାନ କଲେ ।
ବୋଲଇ ଯେ ଭୀମସେନ ଶୁଣ ମୁନିବର
ରାଜ୍ୟ ଗଲାଦିନୁ ନାହିଁ ସମ୍ପୂର୍ଣ୍ଣ ଆହାର ।
ଏହା ଶୁଣି ମୁନି କାମଧେନୁକୁ ଯେ ରାଇ
ପୁଣି ତିନିବାର ଦୁହିଁଦେଲେ ତପୀ ସାଇଁ ।
ଚାରିଜଣ ବସି ସୁଖେ କ୍ଷୀର ପାନ କର
ଭୀମସେନ ଯେ ବିଚାର କରଇ ମନର ।
ତିନିଜଣ ଖାଇଲେଣି କ୍ଷୀର ଏହି ମତି
ତିନି ଭାଇ ଖାଇଲେ ମୁଁ ହୋଇବି ତୃପତି ।
ଯୁଧିଷ୍ଠି ବୋଇଲେ ଯେବେ ହୋଇବି ରାଜନ
କନକମୟ ପାତ୍ରରେ ଧୋଇବି ଚରଣ ।
ସମ୍ପୂର୍ଣ୍ଣ ଆହାର ରାଜ୍ୟ ଗଲାଦିନୁ ନାହିଁ
ତୁମ୍ଭେ ଥୋକାଏ ଦେଇଣ ଶାନ୍ତି କି କରାଇ ।
ତିନିକୁ ଆଜ୍ଞା ମାଗିଣ ଅଇଲେ ଯୁଧିଷ୍ଠି
ଫଳ ଭାର କନ୍ଧେ ଘେନି ଅଛଇ କିରୀଟି ।
ତତ୍‌କ୍ଷଣେ ମାତାଙ୍କୁ କଲେ ନମସ୍କାର ସେହି
ଏତେ ବିଳମ୍ବ କିମ୍ପାଇଁ କଲ ବନେ ଯାଇ ।
ବହୁତ ଦୂର ପଥ ଗୋ ଯାଇଥିଲୁ ମାତ
ଫଳ କିଛି ନ ପାଇଲୁ ଏହି ଯେ ବନସ୍ତ ।
ପତ୍ର କୁଟୀର ଆଶ୍ରମ ଭିଆଇ ସେ ବନେ
ଭ୍ରମନ୍ତି ଯେ କୁତୂହଳେ ପଣ୍ଡୁର ନନ୍ଦନେ ।
ଶ୍ରୀହରି ଚରଣ ବନ୍ଦି ଶ୍ରୀ ଶାରଳା ଦାସ
ଲେଖଇ ମହାଭାରତ ସାଗର ସଦୃଶ ।

—୦—

## ଦୁର୍ଯ୍ୟୋଧନର ଅଭିଷେକ ଓ କର୍ଣ୍ଣ ମହିମା ବର୍ଣ୍ଣନ

ଶୁଣ ଆହେ ଯୁଗପତି ଆଦ୍ୟପର୍ବ କଥା
ହୃଦରୁ ଛାଡ଼ିବ କଷ୍ଟ ଦୁଃସହ ଯେ ବ୍ୟଥା ।
ଶୁଣି ମନୁ କରଯୋଡ଼ି ବୋଇଲେ ବିନୟେ
ଆପଣା ତା ନ କହିଲେ କହିବ ବା କିଏ ।
ତବ ପ୍ରସନ୍ନେ ଶୁଣିବି ସକଳ ଚରିତ
ଯାହା ଶୁଣିଲେ ମୋ ଅଙ୍ଗ ହୋଇବ ପବିତ୍ର ।
ନୃପତିର ବଚନକୁ ଶୁଣିଣ ଏପରି
କହନ୍ତି ଅଗସ୍ତି ସବୁ ଆଦ୍ୟ ପ୍ରାନ୍ତ କରି ।
ପାଣ୍ଡବଙ୍କ ନିଧନରେ ନୃପ ଧୃତରାଷ୍ଟ୍ର
ବେନି ବର୍ଷ ପରିଯନ୍ତେ ପାଇ ମହାକଷ୍ଟ ।
ପାସୋରିଲେ ପୁତ୍ରଙ୍କୁ ସେ ଉପେକ୍ଷିଲେ ଭ୍ରାନ୍ତି
ନିଶ୍ଚିନ୍ତେ ହୃଦୟ ମଧ୍ୟେ ଏହି କଥା ଚିନ୍ତି ।
ଭୀଷ୍ମ ଭୁରିଶ୍ରବା ଘେନି ଭାଳେ କୁରୁପତି
ଦ୍ରୋଣ କୃପାଚାର୍ଯ୍ୟ ଶଲ୍ୟ ଶକୁନି ଯେ ମନ୍ତ୍ରୀ ।
ସଞ୍ଜୟ ବିଦୂର ଘେନି କରଇ ଭାଳେଣି
ପାଣ୍ଡବେ ତ ଜତୁ ଗୃହେ ପୋଡ଼ିଗଲେ ପୁଣି ।
ନାରାୟଣ ପୁରୁଷ ତ କହିଲେ ଆବର
ସୋଦର ବାନ୍ଧବ ପୁଣି ସମସ୍ତେ ତ ମୋର ।
ମୁହିଁ ହେଲି ଚକ୍ଷୁହୀନ ଅଯୋଗ୍ୟ ରାଜ୍ୟକୁ
ବିଚାରଇ ଦୁର୍ଯ୍ୟୋଧନ ଦେବି ମୁଁ ରାଜ୍ୟକୁ ।
ଭୀଷ୍ମ ବୋଲନ୍ତି ଯେ ଦୁର୍ଯ୍ୟୋଧନ ଭାଗ୍ୟବନ୍ତ
ଜ୍ଞାନବନ୍ତ ସୁରବନ୍ତ ମହାବଳବନ୍ତ ।
ହସ୍ତେ ଶଙ୍ଖ ପାଦେ ପଦ୍ମ ଚିହ୍ନ ଯାର ଅଛି
ଅବିରତେ ତା କନ୍ଧରୁ ନ ଛାଡ଼ଇ ଲକ୍ଷ୍ମୀ ।
ଗୁଣଦେବ ନାମେ ଥିଲା ଏକ ଗ୍ରହ ପୁତ୍ର
ତାହାକୁ ରାଇ କହିଲେ ଅମ୍ବିକାର ସୁତ ।
ଶୁଭ ଦେଇ ଶୁଭ ଅନୁକୂଳକୁ ଧଇଲେ
ଯେଉଁ ଶୁଭ ଯୋଗେ ରାମ ଅଭିଷେକ ହେଲେ ।
ଧନୁ ମାସ ଶେଷଦିନ ପୂର୍ଣ୍ଣିମା ଯେ ତିଥି
ପୁଷ୍ୟା ନକ୍ଷତ୍ର ଆବର ବାବୁ ବୃହସ୍ପତି ।
ତୈତିଳ ନାମେ କରଣ ଶୁଭ ନାମେ ଯୋଗ
କକଡ଼ା ଘରେ ଚନ୍ଦ୍ରମା କରୁଅଛି ଭୋଗ ।

ଶ୍ରୀରାମଙ୍କ ଅଭିଷେକ ଏଦିନ ହୋଇଛି
ସେଦିନ ଅଭିଷେକରେ ଦୋଷ ନାହିଁ କିଛି ।
ଧଇଲେ ସେ ଅନୁକୂଳ ଶୁଭଯୋଗ ଲଗ୍ନେ
ଗୁରୁ ପୁଷ୍ୟା ଯେ ଅମୃତଯୋଗ ଏହି ଦିନେ ।
ଅଭିଷେକର ଯୋଗାଡ଼ କରାଇ ସମସ୍ତ
ରାଜ୍ୟରେ ଉତ୍ସବ କରାଇଲେ ନରନାଥ ।
ବ୍ରାହ୍ମଣଙ୍କୁ ବରିଆଣି ଧନ ଦାନ ଦେଇ
ଆପଣ ଶାନ୍ତି ନିମନ୍ତେ ସ୍ତୋତ୍ର ଯେ ପଢ଼ାଇ ।
ପଞ୍ଚଶାଖା ପଲ୍ଲବ ଯେ ଜନକର ଦଣ୍ଡ
ଦେବ ବରଣ ପ୍ରତିମା ହିରଣ୍ୟର ଖଣ୍ଡ ।
ଏ ସମସ୍ତ ସମ୍ପାଦନ କଲାକ ଶକୁନି
ଶୀତଳ ଦ୍ରବ୍ୟ ଯୋଗାଡ଼ ପୂଜ ଦ୍ରବ୍ୟ ଘେନି ।
ଶ୍ୱେତ ହସ୍ତୀ କି ସାଜିଲେ ଦେବାଙ୍ଗ ବସନେ
ବିଶ୍ୱାମିତ୍ର ବାମଦେବ ବଶିଷ୍ଠ ଏମାନେ ।
ଋତ୍ୱିଜ ଆଦି ଯେତେକ କୁଳ ପୁରୋହିତେ
ମାର୍କଣ୍ଡେୟ ବିଶ୍ୱାମିତ୍ର ବାଲ୍ମୀକି ସହିତେ ।
ଅଗସ୍ତି ଜନକ ଆଦି ଯେତେ ଚପଚାରୀ
ସମସ୍ତ ଋଷି ପ୍ରବେଶ ହସ୍ତିନା ନଗରୀ ।
ପଞ୍ଚ କଟକରେ ଦୁର୍ଯ୍ୟୋଧନ ଦଣ୍ଡଧାରୀ
ସମସ୍ତ ବିଶ୍ୱବିଧାନେ ଅଭିଷେକ କରି ।
କୋଟି ତୀର୍ଥ ଅଧିକାରୀ ପୁଷ୍କର ଦେବତା
ଅଭିଷେକ କଲା ନେଇ ଦୁର୍ଯ୍ୟୋଧନ ମଥା ।
ଭାନୁମତୀ କୋଳେ ଦୁର୍ଯ୍ୟୋଧନ ବସାଇଲେ
ଶଚୀର କୋଳେ କି ଦେବ ଇନ୍ଦ୍ର ବିଜେ କଲେ ।
କୋଳେ ଧରିଛନ୍ତି ଭାନୁମତୀ ପାଟରାଣୀ
ପଞ୍ଚାମୃତର ପଦାର୍ଥ ପୁରୋହିତ ଆଣି ।
ଡାହାଣ ପାଖେ କନକ ଦଣ୍ଡକୁ ଧରନ୍ତି
ମଙ୍ଗଳ ସ୍ୱୀକାର କରେ ଶକୁନି ଯେ ମନ୍ତ୍ରୀ ।
ବାମ ପାଖେ ଅଶ୍ୱତ୍ଥାମା କୃପାଚାର୍ଯ୍ୟ କର୍ଣ୍ଣ
ଦ୍ରୋଣ ଭୁରିଶ୍ରବା ଶଲ୍ୟ ବାହ୍ଲିକ ରାଜନ ।
ଏମାନେ ଶ୍ୱେତ ଚାମର ଘେନିଣ ଢାଳନ୍ତି
ସକଳ ବାଳୀ ମଙ୍ଗଳ ହୁଳହୁଳି ଦ୍ୟନ୍ତି ।
ଲକ୍ଷେ ପାଟଛତ୍ର ରହିଅଛି ଚଉକତି
ଆଳମ୍ବ ଲକ୍ଷେ ଉଦ୍ଦଣ୍ଡ ଲକ୍ଷେ ବିରାଜନ୍ତି ।
ବଜାନ୍ତି ଯେ ବୀର ତୁର ସଜାନ୍ତି ଯେ ଦଣ୍ଡ
କୁତୂହଳେ ବାଦ୍ୟନାଦେ କମ୍ପଇ ଭୂଖଣ୍ଡ ।
ସୁବର୍ଣ୍ଣ ବନ୍ଧା ଯେ ଶଙ୍ଖ କୋଟିଏକ ସ୍ଫୁରି
ଛାମୁରେ ନିତ୍ୟ କରନ୍ତି ମିଳି ଅପସରୀ ।
ଅଭିଷେକ ଉତ୍ତାରୁ ଯେ ରାଜା କୁରୁପତି
ପଞ୍ଚ କଟକେ ଭ୍ରମଇ ଘେନି ଭାନୁମତୀ ।
ଶଚୀକି ଘେନିଣ ଯେହ୍ନେ ବିଜୟ ମଘବା
ସେ ସଦୃଶେ ଦୁର୍ଯ୍ୟୋଧନ ପାଏ ମହାଶୋଭା ।
ଅନେକ ରାଜ୍ୟରୁ ଆସିଥିଲେ ମହାରାୟେ
ଲୋକ ଗହଳ ରାଜାଙ୍କ ଗହଣ ପରାୟେ ।
ଅନେକ ଭଣ୍ଡାର ବିଧ୍ୱଂସିଲେ ଅଧିକାରୀ
ପାତ୍ର ଅମାତ୍ୟ ଯୋଦ୍ଧାଙ୍କୁ ବାଛି ଦେଲା ଶାଢ଼ୀ ।
ଅନେକ ଯେ ଅଳଙ୍କାର ଆଭରଣ କାୟେ
ଦିଶନ୍ତି ଅଳକାନାଥ ପ୍ରାୟେ କୁରୁରାୟେ ।
ଆସ୍ଥାନରେ ବିଜେ କଲେ ଯାଇ ମହୀପତି
ସମସ୍ତ ନିଯୋଗ ଅଧିକାରୀଙ୍କି ଭିଆନ୍ତି ।
ପାରିଦଣ୍ଡ ଲେଖା ଦଣ୍ଡ କରିଣ ଭିଆଣ
ଅମାତ୍ୟମାନଙ୍କ ତୁଲେ ଦେଲେ ତତକ୍ଷଣ ।
ପୃଥିବୀରେ ଯେତେ ଶସ୍ୟ ଉପୁଜାନ୍ତି ପ୍ରଜା
ବାଟିକରେ ବିଂଶଭାଗ ଦେଉଥାନ୍ତି ପ୍ରଜା ।
ବାଟିକେ ରାମଚନ୍ଦ୍ର ଯା ନେଉଥିଲେ କର
ତେସନେ କରି ବିହିଲେ କୁରୁ ନୃପବର ।
ଆପଣା କର ପ୍ରମାଣେ କାଠି ଦେଲେ କାଟି
ପଞ୍ଚବିଂଶ ହାତେ ଭିଆଇଲେ ନଳକାଠି ।
ଗୋଚର ଗୋଦାଣ୍ଡି ଛାଡ଼ି ଉଠିଆ ଯେ ଭୂମି
ତହିଁରୁ କର ଆଦାୟ କଲେ ଦେବ ସ୍ୱାମୀ ।
ଥାନି ଜାଗିରିର କର ଛାଡ଼ି ପରଜାଙ୍କୁ
ବିହନ ଭିଆଣ କଲା ଭଣ୍ଡାରୁ ଦେବାକୁ ।
ଏ ବିଧି ଭିଆଣ କଲେ ଛତିଶ ମଣ୍ଡଳେ
ଦେବ ବ୍ରାହ୍ମଣଙ୍କୁ କର ଛାଡ଼ ସର୍ବକାଳେ ।
ନିଯୋଗ ଭୂମିକୁ ଛାଡ଼ି ଦେଲେ ଦେବତାଙ୍କୁ
ଯଯାତି ପାଞ୍ଜି ପ୍ରମାଣେ ପାତିଲେ ପ୍ରଜାଙ୍କୁ ।
ତହୁଁ ବିଜେ କଲେ ଯାଇଁ ଆପଣା ଭୁବନେ
ଶିରେ ଅର୍ଘ୍ୟ ଦେଲେ ନେଇ ବିପ୍ର ଭାର୍ଯ୍ୟାମାନେ ।
ଯେ ବିଧି ସ୍ନାନ ସାରିଣ ମଣୋହିରେ ବିଜେ
ଦୋହରା ଅଗ୍ନି ଦେବଙ୍କୁ ତୋଷ ବଳରାଜ୍ୟେ ।
ଆପଣା ପିତୃଲୋକଙ୍କୁ ଦେଲେ ଶାଳି ଅନ୍ନ
ତହିଁ ଉତ୍ତାରୁ ସେ କଲେ ମଣୋହି ସମ୍ପୂର୍ଣ୍ଣ ।
କର୍ଣ୍ଣକୁ ରାବଣ ଶାଢ଼ୀ ଦେଲେ କୁରୁରାୟେ
ଦୁଷ୍ଟ ନିବାରିବା ଅର୍ଥେ କର ଦିଗ୍‌ବିଜୟେ ।
ମୁହିଁ ପାଟେ ତୁମ୍ଭେ ହେଲ ଥାଟେ ଅଧିପତି
ତୋତେ ସମର୍ପିଲି ପଞ୍ଚ କଟକ ସମ୍ପତ୍ତି ।
ରାଜାଙ୍କର ଆଜ୍ଞା ପାଇ କର୍ଣ୍ଣ ମହାବୀର
ମହାବଳବନ୍ତ ଅଟେ ପୃଥ୍ୱୀ କି ସେ ଭାର ।
ବାରୁଣାବନ୍ତେ ଉଠି ସେ ବିକ୍ରମିବ ପାଦେ
ପଞ୍ଚ କଟକକୁ ଡେଇଁ ଯାଇ ପାଞ୍ଚ ପାଦେ ।

ଯେଉଁଠାରେ ପାଦେ ଡେଇଁ ପଡ଼ଇ ଭୂମିରେ
ବସୁଧା ମୁଖୁ ରୁଧିର ବହେ ଧୀରେ ଧୀରେ ।
ଭୟେ କର୍ଣ୍ଣକୁ ଯେ ପୃଥ୍ୱୀ ଦେବୀ କରି ସ୍ତୁତି
ଧୀରେ ବିକ୍ରମିବୁ ବାବୁ ବୋଲେ ବସୁମତୀ ।
କର୍ଣ୍ଣ ବୋଲେ ନ କରିବି ଯେତେ ପଦାଘାତ
ପ୍ରତିଦିନ ଦିଅ ମୋତେ ସ୍ୱର୍ଣ୍ଣ ଭାର ଶତ ।
ଭୟ ପାଇ ସନମତ କଲା ପୃଥ୍ୱୀ ଦେବୀ
ଧୀରେ ଧୀରେ ଚାଲ ଶତ ଭାର ସ୍ୱର୍ଣ୍ଣ ଦେବି ।
ବସୁଧା ଦେବୀ କଲାକ ଯହୁଁ ସନମତ
ଧୀରେ ଧୀରେ ବିକ୍ରମଇ କର୍ଣ୍ଣ ମହାରଥ ।
ବସୁଧା ମୁଖେ ଅଛଇ ଯେଉଁ ମହାରସ
ତାହାଙ୍କୁ କରନ୍ତେ ନେଇ ପାଷାଣେ ସ୍ପରଶ ।
ପରଶୁ ପାଷାଣ ହୁଏ ତାହାକୁ ଯେ ନେଇ
ପଥରେ ଲଗାଇ ଦ୍ୟନ୍ତେ ସୁବର୍ଣ୍ଣ ହୁଅଇ ।
ସେ ଦେଶେ ଚୁହାଣବଂଶୀ ତରକ୍ଷ ନୃପତି
ଶତଭାର ସୁବର୍ଣ୍ଣ ସେ ବହିନିଏ ନିତି ।
ମିଥିଳା ଦେଶର ମଧ୍ୟେ କର୍ଣ୍ଣ ନିଜବାସ
ଦୁର୍ଯ୍ୟୋଧନ ସ୍ନେହେ ଦେଇଥିଲେ ଅଙ୍ଗଦେଶ ।
ତହିଁରେ ଯାଇ ପ୍ରବେଶ ଶତଭାର ସ୍ୱର୍ଣ୍ଣ
ରାଜାଙ୍କୁ ଯେ ପଞ୍ଚବିଂଶ ଭାର ଦିଏ କର୍ଣ୍ଣ ।
ଭାରେ ଧୃତରାଷ୍ଟ୍ରକୁ ଯେ ବିଦୂରକୁ ଭାରେ
ସଞ୍ଜୟକୁ ଭାରେ ଭୁରିଶ୍ରବାକୁ ଯେ ଭାରେ ।
ଭୀଷ୍ମଙ୍କୁ ଭାରେ ଦ୍ରୋଣଙ୍କୁ ଦିଏ ଭାର ବେନି
ଭାନୁମତୀ ରାଣୀ କି ଯେ ଦିଏ ଭାର ତିନି ।
ରାଜାଙ୍କ ସ୍ନେହ ତାହାଙ୍କ ଭଗିନୀ ଦୁଶୀଳା
ତାହାଙ୍କୁ ହିଁ ପୁଣ କର୍ଣ୍ଣ ଭାରେ ସ୍ୱର୍ଣ୍ଣ ଦେଲା ।
ଅଶ୍ୱଥାମାକୁ ଯେ ଭାରେ କୃପାଚାର୍ଯ୍ୟ ଭାରେ
ନିତ୍ୟ ଗାନ୍ଧାରୀ ଯେ ପାନ୍ତି ସ୍ୱର୍ଣ୍ଣ ଦୁଇଭାରେ ।
ଶତସଂଖ୍ୟକ କନିଷ୍ଠ ରାଜାଙ୍କର ଭ୍ରାତ
ଏହାଙ୍କୁ ଦିଏ ପଚିଶି ଭାର ସ୍ୱର୍ଣ୍ଣ ନିତ୍ୟ ।
ଧୃତରାଷ୍ଟ୍ରଙ୍କ ଧାର୍ମିକ ମନ୍ତ୍ରୀ ଯେ ସଞ୍ଜୟେ
ପ୍ରତିଦିନ ତାଙ୍କୁ ସ୍ୱର୍ଣ୍ଣ ତିନିଭାର ଦିଏ ।
ଦୁର୍ଯ୍ୟୋଧନର ଯେତେକ ସେବକ ଅଛନ୍ତି
ସମସ୍ତଙ୍କୁ ପାଞ୍ଚଭାର ଦିଅଇ ସେ ନିତି ।
କିରାତମାନେ ଆଣନ୍ତି ସ୍ୱର୍ଣ୍ଣଭାର ବହି
ତାହାଙ୍କୁ ଭାରେକ ସ୍ୱର୍ଣ୍ଣ ନିତ୍ୟ ସେ ଦିଅଇ ।
ନିତ୍ୟକର୍ମ ସ୍ନାନବେଳେ କର୍ଣ୍ଣ ମହାବଳୀ
ଗଙ୍ଗାକୁ ଦିଏ କନକ ତିନି ଯେ ଅଞ୍ଜଳି ।
ଆର ଅଙ୍ଗାକ ଆକାଶେ ରଖି କରେ ଦୃଷ୍ଟି
ଯେ ଯାହା ପାରଇ ସୁଖେ ନିଅଇ ସାଉଁଟି ।
ପୃଥ୍ୱୀ ଉପରକୁ ବେନି ଭାର ସେ ବିଞ୍ଚଇ
କୁଟୁମ୍ବ ମାଗନ୍ତି ବେନି ଭାର ତାଙ୍କୁ ଦେଇ ।
ବ୍ୟୟ ଯାଇ ରହେ ସ୍ୱର୍ଣ୍ଣ ଏକୋଇଶ ଭାର
ଭାଗକେ ପେଷଇ ନିତ୍ୟ ଆପଣା ଭଣ୍ଡାର ।
କୋଡ଼ିଏ ଭାର ଘେନିଣ ବସେ ମହାକ୍ଷତ୍ରୀ
ସାତଘଡ଼ି ପରିଯନ୍ତେ ଦାନ ଦିଏ ନିତି ।
ବଦନ୍ତି ଅଗସ୍ତି ମୁନି ବୈବସ୍ୱତ ଆଗେ
କର୍ଣ୍ଣ ମହିମା ଏମନ୍ତ ବିଦିତ ଯେ ଯୁଗେ ।
କର୍ଣ୍ଣ ମହିମା ପାଇଲା ଜଗତେ ବିଖ୍ୟାତି
କାଞ୍ଚନ ଦେଶେ ଅନଙ୍ଗସେନ ଚକ୍ରବର୍ତ୍ତୀ ।
ତାହାର ଭାରିଯା ନାମ ଅଟଇ ତୁଳସୀ
ପତିବ୍ରତା ସ୍ତିରୀ ସେହି ତା ପାଟ ମହିଷୀ ।
ତାହାର ଦୁହିତା ନାମ ଅଟେ ରତ୍ନବତୀ
କର୍ଣ୍ଣକୁ ପ୍ରଦାନ କଲା ଅନଙ୍ଗ ନୃପତି ।
ରତ୍ନମତୀର ବଲ୍ଲଭ ଅଙ୍ଗଦେଶ ରାଜ
ଅଙ୍ଗଦେଶ ଅଧିପତି କୁନ୍ତୀଙ୍କ ଆତ୍ମଜ ।

—o—

## ଦୁଃଶାସନ ପ୍ରଭୃତି ଭ୍ରାତାମାନଙ୍କର ବିବାହ

ଅଗସ୍ତିଙ୍କି ପଚାରିଲେ ବୈବସ୍ୱତ ମନୁ
ଭାନୁମତୀ ହେଲା ଦୁର୍ଯ୍ୟୋଧନ ଅର୍ଦ୍ଧତନୁ ।
ଆବର ଶତ ଭ୍ରାତାଙ୍କୁ କେ ହେଲା ବିବାହ
ସଂକ୍ଷେପି ମହାତ୍ମା ମୋତେ ସେହି କଥା କହ ।
ବଦନ୍ତି ଅଗସ୍ତି ମନୁ ବୈବସ୍ୱତ ଶୁଣ
ଆବର ଶତ ଭାଇଙ୍କ ବିଭାର ବିଧାନ ।
ବୃନ୍ଦାରକ ଦେଶ ବୀରବାହୁ ଦଣ୍ଡଧାରୀ
ଦୁଃଶାସନକୁ ଯେ ଦେଲା ତାହାର କୁମାରୀ ।
ସେହି କୁମାରୀର ନାମ ଅଟେ ହିଂସାବଳୀ
ହଇହୟବଂଶୀ ରାଜା ଅଟେ ଶୁଦ୍ଧଶାଳୀ ।
କୃପାଣ ଦେଶର ରାଜା ଅଟେ ସୂର୍ଯ୍ୟସେନ
ରେବତୀ କନ୍ୟାକୁ କଲା ଦୁର୍ଜୟକୁ ଦାନ ।
କର୍ଣ୍ଣାଟ ଦେଶର ରାଜା ଅଟେ ସୂର୍ଯ୍ୟସେନ
ରେବତୀ କନ୍ୟାକୁ କଲା ଦୁର୍ଜୟକୁ ଦାନ ।
କର୍ଣ୍ଣାଟ ଦେଶର ରାଜା ଅନ୍ତର ଅଟଇ
ଅନନ୍ତା କନ୍ୟାକୁ ଦୁର୍ବିଦକୁ ବିଭା ଦେଇ ।
ମାନଭଙ୍ଗ ଦେଶ ରାଜା କେଶବ ଶବରୀ
ଦୁର୍ମନାକୁ ଦେଲା କେଶବତୀ ଯେ କୁମାରୀ ।
ମଳୟଦେଶ ବସନ୍ତସେନ ମହାରାୟେ
ବସନ୍ତା କନ୍ୟାକୁ ଦୂରନ୍ତକୁ ବିଭା ଦିଏ ।
ପଦ୍ମଦଳଦେଶ ଚକ୍ରବର୍ତ୍ତୀ ପଦ୍ମସେନ
ଦୁରାସନକୁ ସେ ଦେଲା ନୀଳା କନ୍ୟା ଦାନ ।

ବଜ୍ରଗିରି ରାଜା ଦେଶ ଅଟେ ବାମଦେବ
ଦୁଷ୍ପଦକୁ ଘେନିଗଲା କରିଣ ସଦ୍ଭାବ ।
ମୋହିନୀ ନାମରେ ଥିଲା ଦୁହିତା ତାହାର
ବିଭା କରିଦେଲା ନେଇ ଅନେକ ସମ୍ଭାର ।
ଚଣ୍ଡୀ ହର ଦେଶ ରାଜା ଅଟେ କୃତକେଶୀ
ଦୁର୍ଗତକୁ ଦେଲା ତାର ଦୁହିତା ଉଦାସୀ ।
ମଗଧ ଦେଶ ଦୁନ୍ଦୁଭିସେନ ଦେବରାୟେ
ଦୁର୍ଦ୍ଦଶକୁ ଦେଲା ଶ୍ୟାମା ନାମେ ଦୁହିତାଏ ।
ତରଙ୍ଗ ଦେଶର ରାଜା ଅନନ୍ତ କେଶରୀ
ଦୁର୍ଦ୍ଦଣ୍ଡକୁ ଦେଲା ସତ୍ୟା ନାମରେ କୁମାରୀ ।
ଅନୁଭବ ଦେଶ ରାଜା ସୁରସେନ ରାୟେ
ଜରତା କନ୍ୟାକୁ ତାର ଦୁର୍ମଦକୁ ଦିଏ ।
ସୁରେଣ ଦେଶର ରାଜା ଅଟେ ସୁରପତି
ଦୁର୍ବସକୁ ଦେଲା ତାର କନ୍ୟା ହୀରାବତୀ ।
ମଧୁବନ ଦେଶ ରାଜା ମାଧବ କେଶରୀ
ଦୁଷ୍କେଶକୁ ଦେଲା ଜାୟା ନାମେଣ କୁମାରୀ ।
ନିର୍ଝର ଦେଶର ରାଜା ଅଟେ ଗଣପତି
ଦୁଷ୍କମକୁ ଦେଲା ତାର ସୁତା ଚନ୍ଦ୍ରକାନ୍ତି ।
ବିନ୍ଧ୍ୟ ପର୍ବତର ରାଜା ଅଟେ ବିନ୍ଧ୍ୟମାଳୀ
ଦୁଃଶେକକୁ ଦେଲା ତାର ବିନ୍ଧ୍ୟନାମେ ବାଳୀ ।
ମଣ୍ଡଳ ଦେଶର ରାଜା ମଣ୍ଡଳ ନୃପତି
ଦୁର୍ଗମକୁ ଦେଲା ତାର କନ୍ୟା ତାରାବତୀ ।
ବେଲାଳ ଦେଶର ରାଜା ବେଲାଳ କେଶରୀ
ଦୁର୍ଭେଦକୁ ଦେଲା ତାର ଜୟନ୍ତୀ କୁମାରୀ ।
ଭଟ୍ଟ ଦେଶର ନୃପତି ଅଟେ ଭାନୁମାନ
ମାଳିନୀ କନ୍ୟାକୁ କଲା ଦୁଷ୍କନ୍ଦକୁ ଦାନ ।
ମାଳତୀ ଦେଶର ମାନକେତୁ ନରପତି
ଦୁରାଶୟକୁ ସେ ଦେଲା ଦୁହିତା ମାଳତୀ ।
ପ୍ରଚଣ୍ଡ ମଲ୍ଲ ଅରଣୀ ଦେଶ ଦଣ୍ଡଧାରୀ
ଦୁଃସଭକୁ ଦେଲା ହେରା ନାମରେ କୁମାରୀ ।
ତାରଣ ଦେଶର ରାଜା ତରଣି ନୃପତି
ଦୁର୍ଜୟକୁ ଦେଲା ତାର କନ୍ୟା ଇଚ୍ଛାବତୀ ।
ମନ୍ଦାର ଦେଶର ରାଜା ଅଟଇ ମନ୍ଦାର
ଦୁର୍ଜନକୁ ଦେଲା ଦୁଷ୍ଟା ନାମେ କନ୍ୟା ତାର ।
ମେରୁ ଦେଶର ନୃପତି ଅଟେ ମେରୁଶୃଙ୍ଗ
ତା ସୁତା ଚଞ୍ଚଳା ବିଭା ହୋଇଲା ଦୁର୍ବାଳ ।
ଅନଳ ଦେଶେ ଅନଳସେନ ନରପତି
ଦୁଷ୍ପାଦକୁ ଦେଲା ତାର କନ୍ୟା ମୁଦ୍ରାବତୀ ।
ମାଳବସେନ ମରୁତସେନ ନରବର
ଦୁର୍ଦ୍ଦାନ୍ତକୁ ବିଭା ହେଲେ ମାଧବୀ ତାହାର ।

ଭୂପାଳ ଦେଶର ରାଜା ଅଟେ ଦୃଢ଼କେଶୀ
ଦୁଷ୍କରକୁ ଦେଲା ହାରା ନାମେ ଚାରୁହାସୀ ।
କାଉଁରୀ ଦେଶର ରାଜା ନାମ କାମପାଳ
ଦୁର୍ଦ୍ଧାଷକୁ ଦେଲା ବାଳାବତୀ କନ୍ୟା ତାର ।
ସ୍କନ୍ଦ ଦେଶର ନୃପତି ଅଟଇ ତ୍ରିଗର୍ତ୍ତ
ଦୁର୍ଦ୍ଧର ହସ୍ତରେ ନେଲା ଧୀର କନ୍ୟା ହସ୍ତ ।
କନ୍ୟାକୁବ୍ଜ ଦେଶ ରାଜା ଅଟେ ବନମାଳୀ
ଦୁର୍ଧ୍ୱଂସନକୁ ସେ ଦେଲା କନ୍ୟା ପୁଷ୍ପମାଳୀ ।
ବଙ୍ଗ ଦେଶର ନୃପତି ଅଟେ ସଦାଶିବ
ତା ମଦନୀବତୀ ହସ୍ତ ଧଇଲା ଦୁସ୍ସ୍ବଭ ।
ଶାକଲ୍ୟ ଦେଶର ରାଜା ଅଟେ ଶାଲ୍ୱସେନ
ଦୁଃଶୀଳକୁ କଲା ଶାଲ୍ୱମତି କନ୍ୟା ଦାନ ।
ନିର୍ଭର ଦେଶର ରାଜାମାନ ନରପତି
ଦୁର୍ଧରକୁ ଦେଲା ତାର କନ୍ୟା ମାନବତୀ ।
ବିରଞ୍ଚି ଦେଶର ରାଜା ଅଟେ ଊର୍ଦ୍ଧ୍ୱବାହୁ
ଦୁର୍ମତି କନ୍ୟାକୁ ଦେଲା ଦୁର୍ବାଦକୁ ସେହୁ ।
ଚୁଡ଼ଙ୍ଗ ଦେଶର ରାଜା କେତୁ ବୀର୍ଯ୍ୟସେନ
ବିଶାଖା କନ୍ୟାକୁ କଲା ଦୁଃସହକୁ ଦାନ ।
ମାଳବ ଦେଶର ରାଜା ମାଳବ ନୃପତି
ଦୁହୃଦକୁ ଦେଲା ତାର କନ୍ୟା ମାଳାବତୀ ।
ଶରଣ ଦେଶର ରାଜା ଅଟେ ସୁରସେନ
ମାଳିନୀ କନ୍ୟାକୁ କଲା ଦୁର୍ଭାଗକୁ ଦାନ ।
ସୌରାଷ୍ଟ୍ର ଦେଶ ରାଜା ଅଟେ ସୁମନ୍ତକ
ତା କନ୍ୟା ସୁମାଳୀ ବିଭା ହୋଇଲା ଦୁଃଶଙ୍କ ।
ବୀରବର ଦେଶ ରାଜା ଅଟେ ଦୀର୍ଘବାହୁ
ବୀର କନ୍ୟା ଦାନ କଲା ଦୁଷ୍କର୍ଣ୍ଣକୁ ସେହୁ ।
ମନ୍ଦର ଦେଶର ରାଜା ଅଟେ ମାନଧାତା
ଦୁର୍ବଳକୁ ବିଭା ଦେଲା ଅଳକା ଦୁହିତା ।
ସମଦୀର୍ଘ ଦେଶ ରାଜା ସାମନ୍ତ ନୃପତି
ଦୁର୍ମଦକୁ ବିଭା ଦେଲା ଶାନ୍ତ ରୂପବତୀ ।
ବହୁ କ୍ଷୀର ଦେଶ ରାଜା ଅଟେ ସୋମଦତ୍ତ
ଗୋପାଳୀକୁ ବିଭା ଦେଲା ଦୁର୍ଦ୍ଦମ ସହିତ ।
ସୁରରାଷ୍ଟ୍ର ଦେଶ ରାଜା ଅଟଇ ଶବର
ଶାକମ୍ଭରୀକୁ ସେ ଦେଲା ଦୁର୍ଜର ଦୁସ୍ତର ।
ତ୍ରିକୂଟ ଦେଶର ରାଜା ଅଟେ କୂଟଶାଳୀ
ଦୁର୍ଦ୍ଦାନ୍ତକୁ ବିଭା ଦେଲେ ନୀରା ନାମେ ବାଳୀ ।
କାଶୀ ଦେଶର ନୃପତି ଅଟେ କାଶୀଶ୍ୱର
ତା କନ୍ୟା କାମାକ୍ଷା ବିଭା ହୋଇଲା ଦୁର୍ବୀର ।
କୁଶଳ ଦେଶର ରାଜା କୌଶିକ ଅଟଇ
କୁଶଳା ନାମେ କନ୍ୟାକୁ ଦୁର୍ବାରକୁ ଦେଇ ।

ଛତ୍ରଦେଶ ନରପତି ଅଟେ ବୀରଭଙ୍ଗ
ଟା ଛତ୍ରାବତୀକୁ ବିଭା ହୋଇଲା ଦୁର୍ଜଘ ।
ନୀଳସେଜ ରାଜକନ୍ୟା ନାମ ଲୀଳାବତୀ
ଦୁର୍ମରକୁ ତାକୁ ବିଭା ଦେଲା ମହୀପତି ।
ସମସ୍ତେ ଏ ଦୁଷ୍ଟଜନ ସର୍ବେ ଯିବେ କ୍ଷୟ
ଦୁର୍ଦ୍ଧଷକୁ ରଖିସେ ସେ ଯୁଧିଷ୍ଠିର ରାୟ ।
ମହାଜ୍ଞାନବନ୍ତ ଅଟେ କୁମର ଦୁର୍ଦ୍ଧଷ
ଦୁର୍ବାସା ମୁନି ଅଟନ୍ତି ମୁନିଙ୍କର ମୁଖ୍ୟ ।
ସନ୍ତୋଷ ମନେ ଏ ନାମ ଦେଲେ ମହାମୁନି
ତେଣୁ ସେ କୁମର ଗୋଟି ଅଟେ ମହାଜ୍ଞାନୀ ।
ଅସଂଖ୍ୟ ମହାଭାରତ ଅକଳିତ ପାର
ତାକୁ କହିବାକୁ ଶକ୍ତି ଅଛଇ କାହାର ।
ଖଡ଼ିରେ ଲେଖି କି ଗଣି ହୁଏ ଗଙ୍ଗା ବାଲି
ପଙ୍ଗୁ ଗୋଡ଼ରେ ବା କେତେଦୂର ପାରେ ଚାଲି ।
ଲେଖି ନ ପାରିଲେ ମାରକଣ୍ଡ କଳ୍ପମୁଖେ
ଅଗାଧ ସମୁଦ୍ରେ ନେଇ ମେଲିଲେ ବିମୁଖେ ।
ଧର୍ମ ଅର୍ଥ କାମ ମୋକ୍ଷ କେବଣ ହିଁ ନଦୀ
ଉତ୍ପତ୍ତି ପ୍ରଳୟ କାଳ ବ୍ରହ୍ମକୁ ସମ୍ପାଦି ।
ମାନବେ ଜନ୍ମିଲେ ପୂର୍ବ ଦୋଷରୁ କିଞ୍ଚିତେ
ମୁଁ ହୀନଜନ ସତ୍ୟ କି ଅଟଇ ଜଗତେ ।
ଅନିତ୍ୟ ସଂସାର ଏହୁ ନ ହୁଅଇ କଳି
କିସ ଅନ୍ତ କରିବା ବା ଲୋକ ମୋହ ଭଳି ।
ଝଙ୍କଡ଼ପୁର ବାସିନୀ ଦେବୀ ସରସ୍ୱତୀ
ଅଭୟା ହିଙ୍ଗୁଳା ନାମ ଶ୍ରୀ ଶାରଳା ମୂର୍ତ୍ତି ।
କଳିକାଳକୁ ବିଚାର ରୂପ କଲେ ଗୋପ୍ୟ
ଏ ଦେବୀ ଖଣ୍ଡିଲା ମୋତେ ଗତ ଦୋଷ ପାପ ।
ସ୍ୱରୂପକୁ ଦେଖାଇଲା ଶ୍ରୀ ନୀଳସୁନ୍ଦରେ
ସିଦ୍ଧି ବୁଦ୍ଧି ଦେଇ ଆଜ୍ଞା ଦେଲାକ ମୋହରେ ।
ତାହାଙ୍କ ଆଜ୍ଞାରେ କହିଗଲି ଏତେ କଥା
ଚଣ୍ଡୀ ଶାରଳା ପ୍ରସନ୍ନେ ଅତ୍ୟନ୍ତ ବକତା ।
ସଂସାର ହିତରେ ସିନା ବିକଶିଲି ମୁହିଁ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ଗତି ପାଇଁ ।

—o—

## ଦ୍ରୁପଦର ବର ଲାଭ

ବିଲଙ୍କ ଦେଶର ରାଜା ମନୁ ବୈବସ୍ୱତ
ଅଗସ୍ତିଙ୍କ ପାଦତଳେ ପୂଜିଲେ ବହୁତ ।
ପରମବ୍ରହ୍ମ ସାଧକ କୁମ୍ଭ ଋଷି ସୁନୁ
କଥାଏ ମୁଁ ପଚାରିବି କହ ବ୍ରହ୍ମଜ୍ଞାନୁ ।
ଅଭିମାନେ ଦ୍ରୁପଦ ଯେ ପୁରକୁ ନ ଗଲା
ବୋଇଲା ସେ ଈଶ୍ୱରଙ୍କୁ ବହୁତ ସେବିଲା ।
ପ୍ରସନ୍ନ ହୋଇଲେଟିକି ଦେବ ପଶୁପତି
କିସ ବର ମାଗିଲେ ସେ ପାଞ୍ଚାଳ ନୃପତି ।
ତୁହି ସେ ମହାତ୍ମା ଅଟୁ ପରଂବ୍ରହ୍ମ ରୂପୀ
ଏ କଥାମାନ ମୋ ଆଗେ କହିବା ସଂକ୍ଷେପି ।
ବଦନ୍ତି ଯେ କୁମ୍ଭ ଋଷି ସୁତ ମହାବ୍ରହ୍ମ
ଭୂତ ଭବିଷ୍ୟତ ଜ୍ଞାତା ଋଷିଙ୍କ ଉତ୍ତମ ।
ଶୁଣ ତୁ ହୋ ସାବଧାନେ ବିଲଙ୍କ ନୃପତି
ରୁଦ୍ରଙ୍କୁ ଯେ ଲୟ କଲା ଦ୍ରୁପଦ ଭୂପତି ।
ଅଠର ବରଷ ତପ କଲା ସେ ନିରାଶେ
ପବନ ପାଣି ଖାଇଣ ରହି ଉପବାସେ ।
ଛାଡ଼ିଲାକ ମାୟା ଯେଣୁ ପଡ଼ିଲା ଓଲଟି
କଠୋର ଦେଖିଣ ବିଜେ କଲେ ସେ ଧୂର୍ଜଟି ।
ଦେଖିଲେ ଦ୍ରୁପଦ ରାଜା ଅତି ଅଶକତ
ମନ୍ତ୍ର ଜଳ ସିଞ୍ଚିଦେଲେ ପ୍ରଭୁ ବିଶ୍ୱନାଥ ।
ଚେତନା ପାଇଣ ଉଠି ବସି ସେ ଦ୍ରୁପଦ
ଦେଖିଲେ ବିଜୟ ଦେବ ଦେବ ମହାଦେବ ।
ଏକେ ସେ ତ ମହାଗୁରୁ ପୁଣି ମହଯୋଗୀ
ଶିରେ ଜଟା କଣ୍ଠେ ନୀଳାହାର ମହାଭୋଗୀ ।
ଦ୍ରୁପଦ ବୋଇଲେ ତୁମ୍ଭେ ଯେଉଁ ମହାମନା
ଦୁଃଖରେ ମୋର ଅର୍ଜିତ ତପକୁ ଭାଙ୍ଗନା ।
ବିଶ୍ୱନାଥ ବୋଇଲେ ଯେ କିମ୍ପା କରୁ ତପ
ଯାହାକୁ ଭାବୁଛୁ ତୁହି ମୁହିଁ ସେହି ରୂପ ।
ରାଜା ବୋଲେ ତୁହି ଯେବେ ସାକ୍ଷାତ ଈଶାନ
କାହିଁ ତୋର ପଞ୍ଚମୁଖ ବୃଷଭ ବାହାନ ।
ଦ୍ରୁପଦ ବାକ୍ୟେ ସେଠାରେ ପ୍ରଭୁ କଲେ ମାୟା
ନିଜ ରୂପ ଦେଖାଇଲେ ତାକୁ କରି ଦୟା ।
ଦେଖି ସାନନ୍ଦ ହୋଇଲା ଯେ ଦ୍ରୁପଦରାୟେ
ତେଜ ବିରାଜେ ତାଙ୍କର ଦିନକର ପ୍ରାୟେ ।
ପଞ୍ଚ ଲଲାଟରେ ଶଶି ରେଖା ଦିଶେ ଫିଟି
କନ୍ଦର୍ପକୁ ଦଗଧ କଲା ଯା କିଞ୍ଚିତ ଦୃଷ୍ଟି ।
ପଙ୍କଜରେ ବିଭୂଷଣ ଶରୀର ପ୍ରଚଣ୍ଡ
ବୃନ୍ଦାରକ ବୃନ୍ଦ ତହିଁ ହୋଇଛନ୍ତି ରୁଣ୍ଡ ।
ଦିଗମ୍ବରନାଥ ଚନ୍ଦ୍ର ବିରାଜେ ମଉଳି
ତ୍ରିଦଣ୍ଡ ଶୋଭା ଅପୂର୍ବ ବିଜୟ କପାଳୀ ।
ବସନ ବିହୀନେ ଶୋହେ କଟୀରେ ଚିର୍କୁଟି
ଭୁଜରେ ଶୋଭା ଦିଶିଲା ଭୁଜଙ୍ଗ ବାହୁଟି ।
ଉତ୍ତର ଦକ୍ଷିଣାୟନ ମୃତ୍ୟୁକାଳ ବେନି
ବାମ ଡାହାଣେ ବିଜୟ ଶାଳ ଶକ୍ତି ଘେନି ।
ହୃଦୟରେ ଶୋଭା ପାଏ ଯାର ମୁଣ୍ଡମାଳ
ସକଳ ବାରିଧି ଖଟେ ଯାର ପାଦତଳ ।

ଡିବି ଡିବି ଡମ୍ବରୁ ଯେ ବାଜଇ ବିନୋଦେ
ଚଳନ୍ତେ ଭୃକୁଟିଗଣ ଭୋଳେ ମହାମଦେ ।
ତ୍ରିଲୋଚନଧାରୀ ପୁଣି ଚଞ୍ଚଳ ବଦନ
ଏ ତିନିଲୋକ ଯା କାୟା ବୃଷଭ ବାହନ ।
ମସ୍ତକରେ ଗଙ୍ଗାଜଳ ଦିଶେ ଢଳ ଢଳ
ଶିର ଲାଗିଅଛି ତାର ଆକାଶମଣ୍ଡଳ ।
ରୂପ ବର୍ଣ୍ଣ ଦେଖିଣ ସେ ପାଞ୍ଚାଳର ସ୍ୱାମୀ
ପୁଣ ପୁଣ ପାଦେ ଶତସହସ୍ର ପ୍ରଣମି ।
ଏ ମୋ ଭକତି ବିଚାର ପ୍ରଭୁ ଦେବ ଦେବ
ବୋଇଲେ ରାଜଦ୍ରୁପଦ ଏବେ ବର ମାଗ ।
ଦ୍ରୁପଦ ବୋଇଲେ ଦେବ ସାବଧାନେ ଶୁଣ
ମୁହିଁ ସଂଗ୍ରାମେ ଜିଣିବି ବୀର ଗୁରୁ ଦ୍ରୋଣ ।
ତହିଁ ମନେ ହେଲା କହିବାକ ମୋତେ ସିଦ୍ଧି
ଅନ୍ଧକ ବିନାଶି ନାଥ ଅଭୟ ବାରିଧି ।
ଈଶ୍ୱର ହସ୍ତେ ପିନାକ ଧନୁକୁ ସେ ଦେଖି
ଭକତ ଭାବେ ଦ୍ରୁପଦ ମାଗିଲା ପିନାକୀ ।
କୋଟିଏ ବଳ ଯେବଣ ପିନାକ ଧନୁର
ସେ ଧନୁ ବହନ୍ତା ନାହିଁ ତିନି ଭୁବନର ।
ଅଜେୟ ପିନାକ ବହେ ସହସ୍ରେକ ବଳ
ଦ୍ରୁପଦରାଜା ହାତରେ ଦେଲେକ ସୁଢ଼ଳ ।
ରୁଦ୍ରଦେବ ପାଶୁପତ ଯେହୁ ତୀକ୍ଷ୍ଣ ମୁନା
ଖଟ୍ୱାଙ୍ଗ ତ୍ରିଶୂଳ ଯେ ନ ଭେଦେ ବ୍ରଜସ୍ନେହ୍ନା ।
ଦ୍ରୋଣକୁ ଜିଣ ବୋଲି ବୋଇଲେ ପଶୁପତି
ଲଭିବେ ତୋଠାରୁ ମହା ମହାବୀର ଭୀତି ।
ଏହା ଶୁଣି ଦ୍ରୁପଦ ଯେ କରଇ ଉତ୍ତର
ଅର୍ଜ୍ଜୁନ ଜିଣିବା ପାଇଁ ଦିଅ ମୋତେ ବର ।
କର୍ଣ୍ଣ ଶଲ୍ୟ ଦୁଃଶାସନ କୃପ କୁରୁପତି
ଅଦୋଷେ ଏମାନେ ମୋତେ ଦେଲ ଏଡ଼େ ଶାସ୍ତି ।
ଆଜ୍ଞା ଦିଅ ଏମାନଙ୍କୁ ଜିଣିବି ମୁଁ ରଣେ
ଏବେ କ୍ଷତ୍ରିଙ୍କର ଗୁରୁ ଅଟନ୍ତି ସେ ଦ୍ରୋଣେ ।
ଈଶ୍ୱର ବୋଇଲେ ଅଶ୍ୱଥାମା ଆଉ ଭୀଷ୍ମ
ମୋହରେ କ୍ଷୟ ନ ଯାନ୍ତି କ୍ଷତ୍ରିବର ଯଶ ।
ଭୋଳାରେ ତୋତେ ଏ ବର କାହିଁ ପାଇଁ ଦେବା
ପଛେ ମୋତେ ନିନ୍ଦା କିମ୍ବା ଦେବୁ ଆରେ ବାବା ।
ଏମାନଙ୍କୁ ଜିଣି ନ ପାରିବୁ କଦାଚିତେ
ଅର୍ଜ୍ଜୁନର ସୋଦର ଯେ ଅଟନ୍ତି ଯୁକତେ ।
ତୁହି ଯୁଦ୍ଧ କଲେ ସେହି ପାର୍ଥ ଆବୋରିବ
ମୋର ବର ଜାଣ ତେବେ ସିଦ୍ଧି ଯେ ନୋହିବ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଚାରିଦିଗପାଳେ
ଏକା ଅର୍ଜ୍ଜୁନ ଉପୁତି ଏ ମଞ୍ଚମଣ୍ଡଳେ ।
ଆମ୍ଭେ ଯୁଦ୍ଧ କଲେ ନୋହୁ ଅର୍ଜ୍ଜୁନକୁ ସରି
ତାକୁ କେହ୍ନେ ଜିଣିବୁ ତୁ ବୋଲେ ତ୍ରିପୁରାରି ।
ସଦାଶିବ ବୋଇଲେ ତୁ ଶୁଣ ନରନାଥ
ଏ ବଚନ ତୋହର ଯେ ଅଟଇ ନିତାନ୍ତ ।
ଯାଅ ତୋର କୋଳେ ଯାଜ୍ଞସେନୀ ହେବ ଜାତ
ତାହାଯୋଗୁ ଭାରାଭର ହୋଇବ ଯେ ଶାନ୍ତ ।
ଇନ୍ଦ୍ର ଯେ ବିନାଶ କଲା ତ୍ୱଷ୍ଟଋଷି କୋପେ
ସ୍ୱାମୀର ଅଭାବେ ଶଚୀ ବସେ ଘୋର ତପେ ।
ମୁଁ ତାକୁ ପ୍ରସନ୍ନ ହେଲି ଆବର ପାର୍ବତୀ
ସତ୍ୟ ଦ୍ରଉପଦୀ ଦେବୀ ମାଗେ ପଞ୍ଚପତି ।
ଆମ୍ଭେ ବୋଇଲୁ ଏ ବର ମାଗିଲୁରେ ସତୀ
ରେ ସୁନ୍ଦରୀ ତୋର ହେଉ ପାଞ୍ଚଗୋଟି ପତି ।
ଇନ୍ଦ୍ରଦେବତା ଯେ ଯାଇ ଜନମିଲା ପୃଥ୍ୱୀ
ପଞ୍ଚପାଣ୍ଡବଙ୍କୁ ସେହି ଦ୍ରଉପଦୀ ସତୀ ।
ଈଶ୍ୱର ଆଜ୍ଞା ଦେଲେ ହେ ଦୁର୍ବାସା ବଶିଷ୍ଠ
ଦ୍ରୁପଦ ରାଜ୍ୟେ ଆରମ୍ଭ ଯଜ୍ଞ ମନ୍ତ୍ରଘଟ ।
ସେ ଯଜ୍ଞରୁ ଜାତ କର ଦୁହିତା ଗୋଟିଏ
ଦ୍ରୁପଦ ତାହାକୁ ଦେଉ ବୀର ଧନଞ୍ଜୟେ ।
ଏହାର ଯେ ମନୋବାଞ୍ଛା ହେଉ ପରାପତ
ଅନେକ ଭକ୍ତିରେ ତପ କଲାକ ବହୁତ ।
ବର ଦେଇଣ ବିଜୟ କଲେ ସଦାଶିବ
ପୁଷ୍ପକ ଯାନ ଦ୍ରୁପଦେ ଦେଲେ ମହାଦେବ ।
ତକ୍ଷଣେ ରଥ ଉପରେ ବସିଲା ଦ୍ରୁପଦ
ଦିଶିଲା ତେମନ୍ତ ଶୋଭା ଯେହ୍ନେ କାମଦେବ ।
ରତ୍ନ ଆଭରଣ କଲେ ଆଣି ତାର ଗାତ୍ରେ
ରୁଦ୍ରଙ୍କର ଶର ସବୁ ଧରୁଅଛି ହସ୍ତେ ।
ଅମର ବିଳାସିନୀଏ ଚାମର ଢାଳନ୍ତି
ଦେଖ ଈଶ୍ୱର ସେବାରେ ଏଡ଼େ ଫଳ ଶ୍ରୁତି ।
ବର ଦେଇ ଅନ୍ତର୍ଦ୍ଧାନେ ଗଲେ ଦେବହର
ଆପଣା ରାଜ୍ୟକୁ ଆସେ ପଞ୍ଚାଳ ଈଶ୍ୱର ।
ଯେତେବେଳେ ଦ୍ରୁପଦକୁ ଅର୍ଜ୍ଜୁନ ବାନ୍ଧିଲା
କିରାତ ଈଶ୍ୱର ରାଜ୍ୟ ମାଡ଼ିଣ ବସିଲା ।
ଦ୍ରୁପଦର ସୈନ୍ୟ ସବୁ ମାଇଲାକ ଖେଦି
ପୁତ୍ର ନାହାନ୍ତି ପାରିବ ରାଜ୍ୟ କେ ସମ୍ପାଦି ।
ଦ୍ରୁପଦ ରାଜା ଭାରିଯା ନାମ ପଦ୍ମାବତୀ
ପଦ୍ମକେଶରୀ ଦୁହିତା ରୂପ ଗୁଣବତୀ ।
ରାତ୍ରକାଳେ ମହାଦେଈ ପଳାଇଣ ଗଲା
ବିନ୍ଧ୍ୟାଧର ଶବରର ଗୃହରେ ରହିଲା ।
ରାଣୀଙ୍କୁ ସେ ସଙ୍ଗେ ଘେନିଗଲା ରାତ୍ରକାଳେ
ପଦ୍ମଦଳ ଦେଶେ ଦେଲା ନୃପତିର କୋଳେ ।

ଦୁହିତାକୁ ସମ୍ଭାଳିଲା ସେ ପଦ୍ମକେଶରୀ
ଭିନ୍ନ ନବରେ ଥୋଇଲା ଅତି ଯତ୍ନ କରି ।
ବିଶ୍ୱନାଥ ପରସନେ ନୃପତି ଦ୍ରୁପଦ
ପଞ୍ଚାଳେ ଆସି ମିଳିଲା ହୋଇଣ ସାନନ୍ଦ ।
ଆକାଶ ମଣ୍ଡଳେ ଦେବ ବିମାନ ଉଡ଼ାଇ
ଜଗତୀ ଉପରେ ରାଜା ବିଜେ କଲେ ଯାଇଁ ।
କୋପେ କିରାତ ଖଡ଼ଗ ଘେନିଆସେ ଧାଇଁ
ରାଜାର ଅଗ୍ରତେ ବେଗେ ମିଳିଲାକ ଯାଇଁ ।
କୋପେ କିରାତ ଈଶ୍ୱର ଧାଏଁ ଜଗତୀକୁ
ଯୋଦ୍ଧା ଅମାତ୍ୟେ ଗୋଡ଼ାଇ ନ ପାରିଲେ ତାକୁ ।
ଜଗତି ଉପରେ ଥାଇ ଦ୍ରୁପଦ ଈଶ୍ୱର
ହରଦତ୍ତ ଶରାସନ ଧରିଅଛି କର ।
କିରାତ ଉଠି ଆସନ୍ତେ ବିନ୍ଧିଲାକ ଶରେ
ରୁଦ୍ରଶର ପଡ଼ିଲା ସେ କିରାତ ଉପରେ ।
ଶର ତେଜେ ଦଗ୍ଧ ହେଲା କିରାତର କାୟ
ଦିଶିଲା ସେ କୋପାନଳ କାମ ଦଗ୍ଧ ପ୍ରାୟ ।
ପାତ୍ର ଅମାତ୍ୟ ଯେତେକ ଥିଲେ ତା ସଙ୍ଗତେ
ସେହି ଶରାନଳେ ପୋଡ଼ିଗଲେ ସେ ସମସ୍ତେ ।
ପଳାଇଲେ ସୈନ୍ୟ ସବୁ ରାଜ୍ୟ ଆଶା ତେଜି
ବିନ୍ଧିଇ ଦ୍ରୁପଦ ରାଜା ନାରାଚ ଗରଜି ।
ନାରାଚ ଅନଳେ ଦଗ୍ଧ ହୋଇଲେ ସମସ୍ତେ
ରଥ ଗଜ ଅଶ୍ୱ ଆଦି ଥିଲା ତହିଁ ଯେତେ ।
ଦଶକୋଟି ଅଶ୍ୱ ହସ୍ତୀ ଦଶକୋଟି ରଥ
ତିରିଶ କୋଟି ଯେ ସୈନ୍ୟ ରଥି ଅପ୍ରମିତ ।
ମହାସମ୍ଭାରେ କିରାତ ରାଜ୍ୟ କରୁଥିଲା
ସେହି ସମ୍ପଦ ଦ୍ରୁପଦ ମାଡ଼ିଣ ବସିଲା ।
ରାଜାଙ୍କର ପାରିଦଣ୍ଡ ପଳାଇ ଯେ ଥିଲେ
ସେ ସମସ୍ତେ ଦ୍ରୁପଦକୁ ଦରଶନ କଲେ ।
ବାରତା ପାଇଣ ପଦ୍ମକେଶରୀ ନୃପତି
ସଙ୍ଗତେ ଘେନି ଅଇଲେ ରାଣୀ ପଦ୍ମାବତୀ ।
ଆବର ଅଛନ୍ତି ସାତ ଅକ୍ଷୌହିଣୀ ସୈନ୍ୟ
ରଥ ଗଜ ଅଶ୍ୱ ଆଉ ବହୁତର ଧନ ।
ଦ୍ରୁପଦ ନରପତିକୁ ଦରଶନ କଲେ
ଅନ୍ତଃପୁର ଭିତରକୁ ମହାଦେଈ ଗଲେ ।
ଭେଟିଲେ ଆସି ଅନେକ ଦେଶ ରାଜାମାନେ
ବହୁ ସମ୍ପଦ ଅର୍ଜିଲା ଈଶ୍ୱର ପ୍ରସନ୍ନେ ।
ଅଳକାପୁରକୁ ଜିଣି ଭୁବନ ତାହାର
ତିନିଯୋଜନ ମାଡ଼ିଣ ବସେ ତହିଁ ଘର ।
ସୁବର୍ଣ୍ଣ କଳସ ଦେଖି ପ୍ରଶଂସା କରନ୍ତି
ପ୍ରଜାଏ ତାର ରାଜ୍ୟରେ ସୁଖେ ରହିଥାନ୍ତି ।
ତା ରାଜ୍ୟରେ ଦେବତାଏ ଆନନ୍ଦେ ବିରାଜି
ପୁଣ୍ୟବନ୍ତ ଜନଙ୍କୁ ଯେ ପୁଣ୍ୟବନ୍ତ ଭଜି ।
ପୁଣ୍ୟବନ୍ତ ଲୋକେ ପୁଣ୍ୟସ୍ଥାନକୁ ଆସନ୍ତି
ଉତ୍ସବ ଭୁବନେ ଯାଇ ଉତ୍ସବ କରନ୍ତି ।
ପୁଣ୍ୟକୁ ପୁଣ୍ୟ ବିଧାତା କରିଛି ଘଟଣା
ପାପୀଲୋକକୁ ପାଖରେ କରୁଥାଇ ବଣା ।
ଯେବଣ ରାଜା ରାଜ୍ୟକୁ ପାଳେ ସୁବିଧାନେ
ତାହାକୁ ପାଳନ୍ତି ସିନା ଦିଗପାଳମାନେ ।
ପୁଣ୍ୟ ଭୁବନରେ ଦେବେ ପୁଣ୍ୟ ଥାନ୍ତି ସ୍ଥାପି
ପାପାଚାରୀ ଭୁବନକୁ ନ ଯାନ୍ତି କଦାପି ।
ପୃଥ୍ୱୀ ଫଳ ଦାନ ପାଇ ପାଳେ ଦେବରାଜା
ଦେବେ ବଢ଼ାଇ ଦିଅନ୍ତି ତାର ରାଜ୍ୟ ପ୍ରଜା ।
ଈଶ୍ୱରଙ୍କୁ ସେବା ଯହୁଁ କଲାକ ଦ୍ରୁପଦ
ଧର୍ମ ଅର୍ଥ କାମ ଆଦି ମିଳିଲା ସମ୍ପଦ ।
ଘରେ ଘରେ ପୁରାଣ ଯେ ହରିହରି ବାଣୀ
ଯେ ଅବା ପାତକ ଥାଇ ଛାଡ଼େ କର୍ଣ୍ଣେ ଶୁଣି ।
ପୁଣ୍ୟଭୁବନେ କରନ୍ତି ପୁଣ୍ୟକୁ ଥିରକ୍ଷେ
ଭୟେ ପାପୀ ଆର୍ତ୍ତ ହୁନ୍ତି ନ ପଶନ୍ତି ପାଶେ ।
ଅନିତ୍ୟ ସଂସାର ମାୟା ପଟଳ ଏ ଜାଣ
ପାପ ଆଚାର ଧର୍ମ ଏ ନ ପଶେ ପ୍ରମାଣ ।
ପାପାଚାର ଛାଡ଼ି ଧର୍ମ କରଇ ଯେ ଇଚ୍ଛା
ଅବଶ୍ୟ ପୂର୍ଣ୍ଣ ହୁଅଇ ତାର ମନୋବାଞ୍ଛା ।
ଶ୍ରୀ ସିଦ୍ଧ ଶାରଳା ଦାସ ଲେଖେ ଏ ପୁରାଣ
ଅନୁକ୍ଷଣେ ପଢ଼ ନରେ ହୋଇ ଦୃଢ଼ମନ ।

—o—

## ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀ ଜନ୍ମ

ଏଥୁ ଅନନ୍ତରେ ଶୁଣ ହେ ମନୁ ପୁରୁଷ
ଦେଶେ ଦେଶେ ଦ୍ରୁପଦର ଖ୍ୟାତ ହେଲା ଯଶ ।
ଦ୍ରୁପଦ ରାଜାର ଏହା ଦେଶ ଧର୍ମ କଥା
ସୁବିଧାନେ ପାଳେ ତହିଁ ଇନ୍ଦ୍ର ଯେ ଦେବତା ।
ଦିବସେ ଖରା କରାଇ ରାତ୍ରେ କରେ ବୃଷ୍ଟି
ଏମନ୍ତେ ଫଳଦାୟକ ଦ୍ୱିଗୁଣ ତା ସୃଷ୍ଟି ।
ଦ୍ରୁପଦ ରାଜାର ଧର୍ମ ଶୁଣିମା ଧାର୍ମିକେ
ବଶିଷ୍ଠ କଶ୍ୟପ ଆଦି ଦୁର୍ବାସା ବାଲ୍ମୀକେ ।
ବ୍ୟାସଦେବ ମାର୍କଣ୍ଡେୟ ମୁନି ଶୁକବ୍ରହ୍ମା
ଜୈମିନୀ ବିଶ୍ୱାମିତ୍ର ହେ ଗୌତମ ମହାତ୍ମା ।
ପବିତ୍ର ଉତ୍ତରୀ ଛତା ମନ୍ତ୍ରପୋଥି ଘେନି
ଦ୍ରୁପଦରାଜ୍ୟେ ବିଜୟ କଲେ ସର୍ବମୁନି ।
ଆସ୍ଥାନରେ ବିଜେ କରି ଅଛନ୍ତି ଦ୍ରୁପଦ
କୁବେର ସମାନ ତାର ସୌଭାଗ୍ୟ ସମ୍ପଦ ।

ମୁନିମାନଙ୍କୁ ଦେଖିଣ ଉଠି ମହାରାଜା
ଜଳେ ଚରଣ ପଖାଳି କଲା ଦିବ୍ୟପୂଜା ।
ସୁବର୍ଣ୍ଣ ପିଢ଼ା ଉପରେ କୃଷ୍ଣାଜିନ ଥୋଇ
ପୂଜା ପାଇଣ ବସିଲେ ସର୍ବତପୀ ତହିଁ ।
ବେଦାଧ୍ୟୟନ କରନ୍ତି ମିଳି ସର୍ବଋଷି
ଆଶୀର୍ବାଦ କଲେ ରାଜା ଜଳପୀ ହୁଅସି ।
ଦ୍ରୁପଦ ଯେ ସମସ୍ତଙ୍କୁ ପାଦ ପଖାଳିଲେ
ଭାରିଯା ସହିତେ ପାଦ ଉଦକ ଘେନିଲେ ।
ଶତ ସହସ୍ର ପ୍ରଣାମ କରି ନରସାଇଁ
ରାଣୀ ସହିତେ ଶୋଇଲେ ଦଣ୍ଡପ୍ରାୟ ଭୂଇଁ ।
ସମସ୍ତ ଦ୍ୱିଜ ତାହାଙ୍କୁ କଲ୍ୟାଣ ଯେ କରି
ବୋଇଲେ ଚିର ଆୟୁଷ ପାଅ ଦଣ୍ଡଧାରୀ ।
ବସ ହୋ ରାଜନ ବୋଲି ବୋଇଲେ ଋଷିଏ
ରାଜାର କୁଶଳ ବାର୍ତ୍ତା କହନି ହୋ ରାଏ ।
ହବିର୍ଭାବ ପାଉଛନ୍ତି କିନା ଦେବଲୋକେ
ବୃଷ୍ଟି କରୁଅଛନ୍ତି ତ ରାଜ୍ୟେ ବଳାହକେ ।
ଦେବତା ବ୍ରାହ୍ମଣେ କରୁଅଛୁ ନା ଭକତି
ଶୁଭେ ଶସ୍ୟ ପ୍ରସବୁ କି ଅଛି ବସୁମତୀ ।
ଶୁଣୁଅଛୁ ନା ପରଜାମାନଙ୍କ ଗୁହାରି
ଆରୋଗ୍ୟରେ ଅଛନ୍ତି ନା ପୁର ନରନାରୀ ।
ଗଜ ଅଶ୍ୱଙ୍କର ଭଲ କରୁଛ ନା ଚିନ୍ତା
ରସମୂଳକୁ ପରଖି ହେଉଛୁ ନା ଭୋକ୍ତା ।
ଖଣ୍ଡମଣ୍ଡଳ ସମସ୍ତ ଦଣ୍ଡ ପାରିଦଣ୍ଡ
ଭଣ୍ଡାରୁ ମଣ୍ଡ ମଣ୍ଡନ ଦେଉ କି ନା ମୁଣ୍ଡ ।
ଅଶ୍ୱ ଗଜ ପାଉଛନ୍ତି କି ନା ଚରାପାଣି
ମଣୋହି କରୁଅଛୁ ନା ସୂର୍ଯ୍ୟବେଳ ଜାଣି ।
ଦେବାର୍ଚ୍ଚନ ନିଯୋଗରେ କରୁଛୁ ନା ଚିନ୍ତା
ଦେଶାଉରେ ଦିଅନ୍ତି ନା ପରରାଷ୍ଟ୍ର ବାର୍ତ୍ତା ।
ଆରୋଗ୍ୟରେ ଅଛୁ କି ନା ତୁହୋ ନରପତି
ଅପରାଧୀ ଲୋକଙ୍କୁ ତୁ ଦେଉକି ନା ଶାସ୍ତି ।
ପରଜାଙ୍କ ଚିନ୍ତା ବାବୁ ଅଛି ନା ହୃଦୟେ
କୃଷିଭାଗର ସୁବିଧା କରୁଛୁ ନା ରାୟେ ।
ସଦାବ୍ରତ କରୁଛନ୍ତିଟି କି ପାଟରାଣୀ
ପୁତ୍ରପୁତ୍ରିଙ୍କ କୁଶଳ କହ ନୃପମଣି ।
ଦ୍ରୁପଦ ବୋଇଲେ ମୋର ଶୁଭ ସବୁକଥା
ଭୋ ବ୍ୟାସ ନାହିଁ ମୋହର ପୁତ୍ର ଯେ ଦୁହିତା ।
ବଶିଷ୍ଠ ଦୁର୍ବାସା ରାଇ ଈଶ୍ୱରେ ବୋଇଲେ
ବିପାକେ କର୍ମକୁ ମୋର ତାହା ପାସୋରିଲେ ।
ବଶିଷ୍ଠ ବୋଇଲେ ରାଜା କ୍ରୋଧରେ ଶାନ୍ତ
ଆମ୍ଭେ ସର୍ବେ ଆସିଅଛୁ ତହିଁର ନିମିତ୍ତ ।

କାଶୀ ନଦୀ କୂଳ ସ୍ଥାନ ପବିତ୍ର ଯେ ଅଟେ
ଯଜ୍ଞ ତୁ ଆରମ୍ଭ କର ସେ ନଦୀ ନିକଟେ ।
ପୂର୍ବେ ନନ୍ଦ ଭୂପାଳ ଯେ ଏଥି ଯଜ୍ଞ କଲା
ବୃହଧ୍ୱଜ ନାମେ ତାର ପୁତ୍ର ଉପୁଜିଲା ।
କନ୍ୟା ଶୁକ୍ଳ ତ୍ରୟୋଦଶୀ ତିଥି ସୋମବାର
ଉତ୍ତର ଭାଦ୍ର ନକ୍ଷତ୍ର ଭୋଗ ସ୍ୱେ ଦିନର ।
ବାଣିଜ୍ୟ ନାମେ କରଣ ବିଷ୍କୁମ୍ଭ ଯେ ଯୋଗ
ତୁଳ ସଂକ୍ରାନ୍ତିର ପୁଣ ତିନିଦିନ ଭୋଗ ।
ଶରତ ଋତୁ ଅଟଇ ଅନୁକୂଳ କାଳ
ଦଶଦଣ୍ଡ ଉତ୍ତାରେ ଯେ ବୃହସ୍ପତି ବେଳ ।
ତାର ବାର ନକ୍ଷତ୍ରର ଶୁଭ ଅନୁକୂଳେ
ଯାଗଶାଳା ତୋଳ ଏହି ଶୁଭଲଗ୍ନ ବେଳେ ।
ଉଦୁମ୍ବର ଯଜ୍ଞସାର ବରୁଣ କର୍ପଟୀ
ଏ ଚାରିବୃକ୍ଷ ପ୍ରଳୟ ଉତ୍ତାରେ ହୋଇଛଟି ।
ଏ ଚାରିଗଛର କାଠ କଲେ ଚାରିଦ୍ୱାର
ବରୁଣ ସାମଗ୍ରୀମାନ କଲେ ସର୍ବ ଠୁଳ ।
ଈଶାନେ ଈଶାନେ ଦେବ ପଶ୍ଚିମେ ବରୁଣ
ଦକ୍ଷିଣେ ଯମ ଉତ୍ତରଦିଗେ ବୈଶ୍ରବଣ ।
ବ୍ରହ୍ମାଙ୍କୁ ବରଣ କଲେ ନାହିଁ ମହାମନ୍ତ୍ରେ
ଯଜ୍ଞ ଯାଜ୍ଞିକ ବଶିଷ୍ଠ ଋଷି ପୁରୋହିତେ ।
ଦୁର୍ବାସା ମାର୍କଣ୍ଡ ବ୍ୟାସ ଋଷି ଗଉତମେ
ଏ ଚାରିଜଣେ ବରଣ ହେଲେ ହୋମ କର୍ମେ ।
ଅଷ୍ଟାଦଶ ସମିଧ ଯେ ଦୁର୍ବାକ୍ଷତ ଘେନି
ଯବ ମକର ତିଳ ଯେ କାମ୍ୟ କାବ୍ୟ ଦାନୀ ।
କୃଷ୍ଣ ଗୋମଳ ଆବର ଅଗ୍ନିକୁ ସମିଧ
ନବତୀର୍ଥ ଅଖଣ୍ଡିତ ତଣ୍ଡୁଳ ପରାର୍ଦ୍ଧ ।
ପାପମୋଚନ ଶାନ୍ତିକ ନାମ ବୈଶ୍ୱାନର
ସ୍ୱାହା ସ୍ୱଧାମନ୍ତ୍ରେ ତାଙ୍କୁ କଲେକ ଉଚ୍ଚାର ।
ଶତନଳ ଆୟତନ ଖୋଳି ଯଜ୍ଞକୁଣ୍ଡ
ଆଗେଣ ଉତାରିଲେ ସେ ମେଦାସୁର ପିଣ୍ଡ ।
ଅଗ୍ନି ଦେବତାଙ୍କୁ ତହିଁ କଲେକ ବରଣ
ଦ୍ରୁପଦ ରାଜା ବିନୟେ କରେ ପ୍ରଦକ୍ଷିଣ ।
ଅଟନ୍ତି ଦ୍ୱିତୀୟ ବ୍ରହ୍ମା ଯେବଣ ବ୍ରାହ୍ମଣେ
ମୁଁ କିସ କହିବି ତାଙ୍କ ମହିମା କି ଜାଣେ ।
ଅନ୍ନପ୍ରସୁ ମଧୁମନ୍ତ୍ରେ ପ୍ରଥମ ଆହୁତି
ବାର ତାର ପଞ୍ଚବିଂଶ ସହସ୍ର ମୂରତି ।
ପ୍ରଥମ ଆହୁତି ଶେଷେ ସପତମ ଦିନେ
ଚରୁ ଫୁଟାଇଲେ ଘୃତ ସମ୍ପାଦି ଦହନେ ।
ସପ୍ତମ ଦିନରେ ଚରୁ ସିଦ୍ଧ ହିଁ ଯୁକତେ
ମୁନିଏ ବୋଇଲେ ଦିଅ ରାଣୀକୁ ତୁରିତେ ।

ଚରୁ ଘେନି ତହୁଁ ରାଜା ଚଳେ ଅନ୍ତଃପୁରେ
ସ୍ନାନ କରି ମହାଦେଈ ଅଇଲେ ଉଚ୍ଛୁରେ ।
ଚରୁତେଜ ଦେଖି ଭଗ୍ନ ହୋଇଲାକ ଯହୁଁ
ମହାମନ୍ତ୍ରେ ଚରୁ ଗ୍ରାସ କଲେକ ସେ ତହୁଁ ।
ଋଷିଙ୍କ ବଚନେ ରାଣୀ ଚରୁ ଗ୍ରାସ କଲା
ମହାମନ୍ତ୍ର ପ୍ରସାଦେ ସେ ଗର୍ଭବତୀ ହେଲା ।
ତୁଳା ବିଛା ଧନୁ ମାଘ କୁମ୍ଭ ମୀନ ମେଷ
ବୃଷ ମିଥୁନ କକଡ଼ା ହେଲା ଦଶମାସ ।
କକଡ଼ା ଶୁକ୍ଳଦ୍ୱାଦଶୀ ତିଥି ଗୁରୁବାର
ଅନୁରାଧା ନକ୍ଷତ୍ର ଯେ ଅଢ଼ାଇ ପ୍ରହର ।
ଶୁଭେଣ ପ୍ରସବ କଲା ରାଣୀ ଏକ ପୁତ୍ର
ଦେଖଇ ଜନନୀ ଏ ତ ଅଟେ ବିପରୀତ ।
ସ୍ତିରୀ କି ପୁରୁଷ ଏହି ନାହିଁ ଦୁଇ ଚିହ୍ନ
ଦେଖିଣ ରାଣୀ ବିଷଣ୍ଣ କଲା ତାର ମନ ।
ପୁତ୍ରେକ ହୋଇଲା ବୋଲି ଶବଦ ଉଛୁଳି
ରାଜାଙ୍କୁ ଗୁପ୍ତେ କହିଲା ଆସି ମୃଦୁସୁଲୀ ।
ସ୍ତିରୀକି ପୁରୁଷ ବେନି ଅଙ୍ଗ ନ ଦେଖିଲୁ
ନପୁଂସକ ହେବ ତବ ପୁତ୍ର ହିଁ ଜାଣିଲୁ ।
ବିସ୍ମୟ ହୋଇଣ ରାଜା ବ୍ୟାସଙ୍କୁ ସୁମରି
ତହିଁ ଆସି ବେଗେ ବିଜେ କରି ତପଚାରୀ ।
ବଇକୁଲ୍ୟ ହୋଇ କରି କହେ ନରନାଥ
ତୁମ୍ଭରବଚନେ ଦେବ ହେଲା ବିପରୀତ ।
ମୁହିଁ କାମ୍ୟଯଜ୍ଞ କଲି ଦୁହିତା ନିମନ୍ତେ
ଈଶ୍ୱର ହିଁ ଆଜ୍ଞା ଦେଲେ ସର୍ବ ତପୋବନ୍ତେ ।
ସ୍ତିରୀ ପୁରୁଷ ଲକ୍ଷଣେ ନୋହିଲାକ ବେନି
ନୀଚ ସ୍ତ୍ରୀ ନୀଚ ପୁରୁଷ ମଧ୍ୟ ଭାରା ବେନି ।
ୟା କହି ଖଡ଼ଗ ଘେନି ଉଠେ ନୃପବର
ଶିର ଛେଦି ପକାଇବି ତୁମ୍ଭର ଛାମୁର ।
ବ୍ୟାସଦେବ ବୋଇଲେ ହୋ ଶୁଣ ନୃପବର
ପାତକ ହେବ ବାଳକ ନ କର ପ୍ରହାର ।
ଏହାର ଜନମ ଅନ୍ତେ କରିବା ବିଚାର
ନ ଜାଣି ରାଜା ଏହାକୁ ତୁମ୍ଭେ ରକ୍ଷା କର ।
ଭୀଷ୍ମ ନାଶ ଗଲେ ନାଶଯିବେ କଉରବେ
ଏହାର ଦର୍ଶନେ ଶସ୍ତ୍ର ଗାଙ୍ଗେୟ ଛାଡ଼ିବେ ।
ଅମ୍ବାଳିକା କନ୍ୟା ଏହି ଅଟଇ ହୋ ପୂର୍ବେ
ଏହାକୁ କୋପ ନ କର ବାବୁ ତୁହି ଏବେ ।
ଭୀଷ୍ମଙ୍କ ଉପରେଏହି ଆମ୍ବା ଆରୋପିଲା
ଭୀଷ୍ମକୁ ସାଧିବି ବୋଲି ଜଳେ ଝାସ ଦେଲା ।
ଏହାକୁ ଦେଖିଲେ ନିଶ୍ଚେ ଭୀଷ୍ମ ନାଶ ଯିବେ
ସେ ମଲେ ମରିବେ ଦ୍ରୋଣ କର୍ଣ୍ଣ କଉରବେ ।
ଶିର ଖଣ୍ଡିବୁ ଏହାର ଅଇଲୁ ତୁ ଏବେ
ଶିଖଣ୍ଡୀ ନାମ ଏହାର ଦିଅ ରାଜ ଦେବେ ।
ବ୍ୟାସ କହିଲେକ ଯହୁଁ ଏସନକ କଥା
ନପୁଂସକକୁ ପୋଷିଲା ଛାଡ଼ି ମନୁ ବ୍ୟଥା ।
ତୋହର ବଚନ ବ୍ୟାସ ହେବ ଯେବେ ସତ୍ୟ
କାହାବଳେ ଭାଙ୍ଗି ହୁଏ ମହତଙ୍କ କୃତ୍ୟ ।
ଦୁହିତା ଗୋଟିଏ ମୋତେ ଜାତ କରିଦେବୁ
ଆପେ ଥାଇ ଅର୍ଜୁନକୁ ବିଭା କରାଇବୁ ।
ରାଜାର ବଚନେ ସେହି ଶୁକମୁନି ନାତି
ପୁଣି ହିଁ ସ୍ଥାପିଲେ ଯଜ୍ଞେ ସନ୍ତାନ ଆହୁତି ।
ମକର କୃଷ୍ଣ ଦ୍ୱିତୀୟା ତିଥି ବୁଧବାର
ମଘା ନକ୍ଷତ୍ରର ଭୋଗ ଅଟେ ସେ ଦିନର ।
ଅନଳରେ ବ୍ୟାସଦେବ ଦେଲେକ ଆହୁତି
ଯଜ୍ଞ ଅଗ୍ନି ବିକଶିଲା ଧୂମ୍ରମୟ ଜ୍ୟୋତି ।
ଧୂମ୍ର ଦେଖି ବ୍ୟାସଦେବ ତହିଁ ଦୃଷ୍ଟି ଦେଲେ
ଅଗ୍ନି ବିଦାରିଣ ପୁତ୍ର ଏକ ଉପୁଜିଲେ ।
ଦୃଷ୍ଟି ଦେଲୁ ରାଜା ଆମ୍ଭ ଅଧର୍ମ ଧର୍ଷଣେ
ପୁତ୍ର ନାମ ଧୃଷ୍ଟଦ୍ୟୁମ୍ନ ହେଉ ଏ କାରଣେ ।
ଦ୍ରୁପଦ ବୋଇଲେ ମୋର ପୁତ୍ରେ କିସ କାର୍ଯ୍ୟ
ଦୁହିତା ଜନ୍ମିଲେ ନାଶଯିବ କୁରୁରାଜ ।
ଅର୍ଜୁନକୁ ମୁଁ ପ୍ରଦାନ କରିବି କୁମାରୀ
ସେ ମୋ ମାନ ଉଦ୍ଧାରିବ କୁରୁବଳ ମାରି ।
ବ୍ୟାସ ବୋଇଲେ ଏହାକୁ କର ତୁ ଯତନ
ଦ୍ରୋଣର ଶିର ଛେଦିବ ଏ ତୋର ନନ୍ଦନ ।
ଦ୍ରୋଣ ନାଶଗଲେ ନାଶଯିବେ କୁରୁଥାଟ
ଦ୍ରୁପଦ ବୋଇଲେ ଏହି ପୁତ୍ର ମୋର ଶ୍ରେଷ୍ଠ ।
ଦ୍ରୋଣ ଯେବେ ନାଶଯିବେ ଏ ପୁତ୍ରର ହସ୍ତେ
ଏ ପୁତ୍ରକୁ ଯତନ ନ କରିବି କେମନ୍ତେ ।
ଭୋ ବ୍ୟାସ ମୋହର ଶତ ସହସ୍ର ପ୍ରଣତ
ଦୁହିତା ଗୋଟିଏ ମୋତେ କରିଦେବା ଜାତ ।
ଦ୍ରୁପଦର ଉତ୍ତରେ ସେ ପୁରୁଷ ଉତ୍ତମ
ପାତିଲେକ ମହାଯଜ୍ଞ ବ୍ୟାସ ବ୍ରହ୍ମସମ ।
ବ୍ରହ୍ମଅନଳୁଁ ବାହାର ହେଲା କାଳାନଳ
ଜାତ ଅନଳ ପିଙ୍ଗଳ ବଡ଼ବା ଅନଳ ।
ପଞ୍ଚ ଅଗ୍ନି ଏକ କରି ଦେଲେକ ଆହୁତି
ବ୍ରହ୍ମାଣ୍ଡ କମ୍ପିଲା ଯାଇ ସେ ବ୍ରହ୍ମର ଜ୍ୟୋତି ।
ଶୂନ୍ୟ ପୁରୁଷମାନେ ଯେ ନ ପାରିଲେ ରହି
ମହାଜ୍ୱଳା ବହ୍ନିତେଜ ଦେବ କି ବା ବହି ।
ଶୁଣ ବୈବସ୍ୱତ ମନୁ ମହାବ୍ରହ୍ମ ମନ୍ତ୍ର
ଏହି ଅଗ୍ନିରୁ ଭିଆଇଅଛୁ ଯେ ସମସ୍ତ ।।

ଦକ୍ଷିଣାବର୍ତ୍ତକ ହୋଇ ବୁଲିଲାକ ବହ୍ନି
ଜୀବନ୍ୟାସ କଲେ ତହୁଁ ବ୍ୟାସ ମହାମୁନି ।
ଆହୁତିମାନ ଦକ୍ଷିଣାବର୍ତ୍ତ କରିଦେଲେ
ପୁତ୍ରେକ ଉତ୍ପତ୍ତି ହେବ ଭାଗ ସେ ପାଇଲେ ।
ତହୁଁ ତ ଦେଖିଲେ ଅଗ୍ନି ବାମାବର୍ତ୍ତ ମୂର୍ତ୍ତି
ଜଟାଏ କାଟି ପକାଇ ଦେଲେକ ଆହୁତି ।
ତଥାପି ଅନଳ ବାମାବର୍ତ୍ତନ ବିକଶି
କପାଳରୁ ମାଂସ କାଟି ପକାଇଲେ ଋଷି ।
ମହାକଠୋର ଦେଖିଣ ଦେବ ବୈଶ୍ୱାନର
ବାମାବରତ ମୂରତି ହୋଇ ଖରତର ।
ବ୍ୟାସଙ୍କର ତେଜ ତହିଁ କହିତ କେ ପାରି
ଅଗ୍ନି ଦେବତା ଦେଖିଣ ମହାଭୟ କରି ।
ମକର ଶୁକ୍ଳ ସପ୍ତମୀ ତିଥି ଗୁରୁବାର
ହସ୍ତା ନକ୍ଷତ୍ରର ପୂର୍ଣ୍ଣ ଭୋଗ ସେ ଦିନର ।
ତୈତିଳ ନାମେ କରଣ ପ୍ରୀତି ନାମେ ଯୋଗ
କନ୍ୟା ନାମେ ଚନ୍ଦ୍ର ସେହି ଦିନଯାକ ଭୋଗ ।
ପଞ୍ଚଅଗ୍ନି ବିଦାରିଣ ବିକଶିଲା ଜ୍ୟୋତି
ଜ୍ୟୋତିମୂର୍ତ୍ତି ଅଗ୍ନିରୁ ଯେ କନ୍ୟା ଉତପତ୍ତି ।
ନକ ମୁଖ ନାସା ହସ୍ତ ଚରଣ ବିକଶି
ତାହାର ତେଜରେ ଅଗ୍ନି ମଳିନତା ଦିଶି ।
ରାହୁ ତେଜରେ ଯେସନେ ଚନ୍ଦ୍ର ଥାଏ ଡରି
ତେସନ ସଦୃଶ ଅଗ୍ନି ମଧ୍ୟରେ ପ୍ରଜ୍ୱଳି ।
ଯଜ୍ଞ ସମାପତ କଲେ ବ୍ୟାସ ମହାମୁନି
ଅନଳ ମୂରତି କି ସେ କନ୍ୟା ଯାଜ୍ଞସେନୀ ।
ଶୂନ୍ୟର ଦେବତା କି ସେ ଅନାଦି ଅପର୍ଣ୍ଣା
ତ୍ରୈଲୋକ୍ୟ ମୋହିନୀ ତାରା ନିବାରିଣୀ ସିନା ।
ଅଗ୍ନି ବିଦାରି ଯେବଣ ଦେବୀ ସମ୍ଭବିଲା
ପୁରହର ମୋହିନୀ ଯେ ଆଦିସିଦ୍ଧ ବାଳା ।
ବ୍ୟାସ କହିଲେ ତୁ ଏବେ ଶୁଣ ହୋ ଦ୍ରୁପଦ
ଏ ଦ୍ୱାପର ଯୁଗରେ ତୋ ବଚନ ସୁସିଦ୍ଧ ।
ଦ୍ରୁପଦକୁ ସମର୍ପିଣ ଗଲେ ବ୍ରହ୍ମଋଷି
ବିଚାରେ ଦ୍ରୁପଦ ରାଜା ପାଳେ ଶୁଭ୍ରକେଶୀ ।
ଉତ୍ସବ କରିଣ ଦିନେ ବୋଲଇ ନୃପତି
ଦୁହିତାର ନାମ ଦିଅ ମିଳି ବିପ୍ର ଯତି ।
ଅନଳ କର୍ଷଣ କରି ହେଲା ଏହି ଜାତ
ବିପ୍ରେ ବୋଇଲେ ହେଲା ଏ କୃଷ୍ଣାନାମେ ଖ୍ୟାତ ।
ଦ୍ରୁପଦର ନାମାନ୍ତର ଅଟେ ଯାଜ୍ଞସେନ
ଏଣୁ ଯାଜ୍ଞସେନୀ ହେଲା ଏ କନ୍ୟାର ନାମ ।
ଦ୍ରୁପଦ ଦୁହିତା ଏହା ନାମ ଯେ ଦ୍ରୌପଦୀ
ଆବର ଯେତେକ ଥିଲେ ତହିଁ ସାମବେଦୀ ।
ସେ ବୋଇଲ ଏହା ନାମ ପାଞ୍ଚାଳୀ ହୋଇଲା
ପାଞ୍ଚାଳ ଦେଶରେ ଯହୁଁ ଜନମ ଲଭିଲା ।
ନାମଦେଇ ବିପ୍ରମାନେ ଗଲେ ଯେଝାଘରେ
ନମଇଁ ଶାରଳା ଦାସ ଶାରଳା ପୟରେ ।



## ଜୟଦ୍ରଥ ସହିତ ଦୁଃଶୀଳାର ବିବାହ

ଏଥୁଅନନ୍ତରେ ଶୁଣ ମନୁ ବୈବସ୍ୱତ
ମହାଭାରତ ଏ ଆଦ୍ୟପର୍ବର ଚରିତ ।
ସିନ୍ଧୁଦେଶର ନୃପତି ନାମ ମନମଥ
ତାହାର ପୁତ୍ରର ନାମ ଅଟଇ ସୁରଥ ।
ସୁରଥ ଦୂତ ପଠାଏ ପାଞ୍ଚାଳ ଦେଶକୁ
ଦୁହିତା ଗୋଟି ଦେବ କି ଆମ୍ଭର ପୁତ୍ରକୁ ।
ମହାସମାରୋହେ ସଜ ହୋଇଗଲା ଦୂତ
ଦ୍ରୁପଦ ଦେଶେ ପ୍ରବେଶ ହୋଇଲା ତ୍ୱରିତ ।
ବିଜୟସେନ ବୋଲିଣ ଅଟଇ ତା ମନ୍ତ୍ରୀ
ସେହି ଦୂତ ହୋଇଗଲା ପାଞ୍ଚାଳେଶ କ୍ଷିତି ।
ଦ୍ରୁପଦ ରାଜା ମନ୍ତ୍ରୀର ସଦାନନ୍ଦ ନାମ
ବିଜୟସେନ ମିଳିଲା ତାହାର ଆଶ୍ରମ ।
ସଦାନନ୍ଦ ମନ୍ତ୍ରୀଠାରୁ ଗଉରବ ପାଇ
ସ୍ନାନ ଭୋଜନ ଯେ ଆଚମନକୁ ସାରଇ ।
କର୍ପୂର ତାମ୍ବୁଳ ଭୁଞ୍ଜିସାରି ବେନି ମନ୍ତ୍ରୀ
ବିଜୟସେନ ପୁଚ୍ଛଇ ସଦାନନ୍ଦ ପ୍ରତି ।
ସିନ୍ଧୁଦେଶର ନୃପତି ଅଟଇ ସୁରଥ
ତାହାର କୁମର ନାମ ଅଟେ ଜୟଦ୍ରଥ ।
ରାଜାର ଆଗେ ବାରତା ଦେଇ ଅବଧାରୀ
ଜୟଦ୍ରଥେ ଦିଆଇଲେ ଦ୍ରୁପଦ କୁମାରୀ ।
ସଦାନନ୍ଦ ମନ୍ତ୍ରୀ ବୋଲେ ନୁହଇ ଏମନ୍ତ
ଦ୍ରୁପଦ କିମ୍ପାଇଁ ଏଥେ ହୋଇବ ସମ୍ମତ ।
ଅଗ୍ନିରୁ ଜାତ ହୋଇଲା ଯେବଣ କୁମାରୀ
ତାହାକୁ କି ବରପଣେ ଜୟଦ୍ରଥ ସାରି ।
ଇହଲୋକ ରାଜାଙ୍କୁ କି କରିବି ପ୍ରଦାନ
ମାନବ କାହିଁ ଲୋଡ଼ିବ ବିଚାର ବିଧାନ ।
ସଦାନନ୍ଦ ବାକ୍ୟେ ବୋଲେ ସୁରଥର ମନ୍ତ୍ରୀ
ମୋତେ ଯେ ପଠାଇଥିଲା ସିନ୍ଧୁ ଦେଶ ପତି ।
ରାଜା ଛାମୁରେ ଜଣାଇ କହ ମୋତେ ତାହା
କିସ ବଚନ ବୋଲଇ ତୁମ୍ଭ ନରନାହା ।
ସଦାନନ୍ଦ ବୋଲଇ ମୁଁ ନ ପାରେ ଜଣାଇ
ବିଜୟ ବେଳେ ଦର୍ଶନ କର ତୁମ୍ଭେ ଯାଇ ।

ବେନି ମନ୍ତ୍ରୀ ତହିଁ ଏକ ସଂଯୋଗ ହୋଇଲେ
ତୁ ଯେ ପୁରାଣ ଗାଇବୁ ମୋ କଥା ପଡ଼ିଲେ ।
ଦରଶନ କଲା ଯାଇ ସଦାନନ୍ଦ ମନ୍ତ୍ରୀ
ଅବକାଶ ଆସ୍ଥାନରେ ବିଜେ ଭୂମିପତି ।
ସିନ୍ଧୁଦେଶର ଏ ମନ୍ତ୍ରୀ ବାରତା ଜଣାଇ
ରାଜାଙ୍କୁ ଦର୍ଶନ କଲା ମନ୍ତ୍ରୀ ବେଗେ ଯାଇ ।
ଦ୍ରୁପଦ ବୋଇଲେ କେଉଁ ଦେଶୁ ଆସିଛନ୍ତି
ସଦାନନ୍ଦ ବୋଇଲେ ଏ ସିନ୍ଧୁଦେଶ ମନ୍ତ୍ରୀ ।
ଏଥକୁ ଅକଲ ତୁମ୍ଭେ କେବଣ ବିଧାନେ
ନିଉଛାଳି କରୁ ବୋଲେ ରାଜା ବିଦ୍ୟମାନେ ।
ଦେବ ସିନ୍ଧୁଦେଶ ରାଜା ଅଟଇ ମନ୍ମଥ
ତାହାଙ୍କ ନନ୍ଦନ ନାମ ଅଟଇ ସୁରଥ ।
ଧାର୍ମିକ ବିବେକୀ ସେହି ଅଟେ ଜ୍ଞାନବନ୍ତ
ସୂର୍ଯ୍ୟବଂଶୀୟ ନୃପତି ସଂଗ୍ରାମେ ଶକତ ।
ତାହାର ନନ୍ଦନ ଦେବ ଅଟେ ଜୟଦ୍ରଥ
ତୁମ୍ଭର ଦୁହିତା ଦିଅ ତାକୁ ନରନାଥ ।
ଅନେକ ସମ୍ବୋଧି ଦେବ ପଠାଇଲେ ମୋତେ
ମୁହିଁ ଅଇଲି ଭୋ ଦେବ ତହିଁର ନିମନ୍ତେ ।
ଶୁଣି ମହାକୋପ କଲା ନୃପତି ଦ୍ରୁପଦ
ନଗର ବାହାରେ ନେଇ ଯାର ଶିରଚ୍ଛେଦ ।
ଉଚ୍ଚ କାଷ୍ଠରେ ବସାଅ ଏହାକୁରେ ନେଇ
ଆବରବେଳେ ଦୂତ ନ ପଠାଇବା କେହି ।
ଅର୍ଜ୍ଜୁନଙ୍କୁହିଁ ପ୍ରଦାନ କରିବି କୁମାରୀ
ସେ ନୋହିଲେ ଦେବକନ୍ୟା ଇନ୍ଦ୍ର ହରହରି ।
ଶିଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନ ରାଜାର ନନ୍ଦନେ
ସିନ୍ଧୁଦେଶ ମନ୍ତ୍ରୀ କିସେ ନେଲେ କୋପ ମନେ ।
ନଗର ବାହାରେ ନେଇ ଛେଦିଲେ ତା ଶିର
ବସାଇଲେ ତାଙ୍କୁ ଉଚ୍ଚ କାଷ୍ଠର ଉପର ।
ମନ୍ତ୍ରୀଙ୍କ ସଙ୍ଗରେ ପୁଣି ଆସିଥିଲେ ଲୋକେ
ସିନ୍ଧୁଦେଶକୁ ପଳାଇଗଲେ ଅତି ଶୋକେ ।
ବାରତା କହିଲେ ଯାଇ ରାଜାର ଅଗ୍ରତେ
ମନ୍ତ୍ରୀକି ବିନାଶ କଲେ ଦ୍ରୁପଦର ସୁତେ ।
ବୋଇଲା ମୁଁ ଅର୍ଜ୍ଜୁନକୁ ଦେବି ମୋ କୁମାରୀ
ଆନ କେହି ଆସି ଦେଖି ଯିବେ ଅପସରି ।
ଶୁଣିଣ କୋପ କଲାକ ସିନ୍ଧୁଦେଶ ରାୟେ
ଦ୍ରୁପଦର ଉପରକୁ ଆପେ ଦଣ୍ଡ ବାହେ ।
ଯାଆନ୍ତେ ଦେଖିଲା ତାକୁ ସୁବାହୁ ନୃପତି
ସୁରଥ ରାଜାର ତାର ଅନେକ ପୀରତି ।
ଦ୍ରୁପଦର ତୁଲେ ତୁମ୍ଭେ ନ କର ହେ ଦ୍ୱନ୍ଦ
ବର ଦେଇଣ ଅଛନ୍ତି ତାକୁ ସଦାନନ୍ଦ ।

ଯେବଣ କିରାତ ନୃପ ସହସ୍ର ଜିଣିଲା
ଏକ ନାରାଚେ ଦ୍ରୁପଦ ତାହାକୁ ନାଶିଲା ।
ମୁହିଁ କିରାତର ଅଟେ ସହୋଦର ଭାଇ
ଦ୍ରୁପଦର ଭୟେ ଲୁଚି ଏଠାରେ ଅଛଇ ।
ମଞ୍ଚରେ କେହି ନାହାନ୍ତି ଦ୍ରୁପଦର ବାଜୀ
ତାହା ତୁଲେ ତୁ କିମ୍ପାଇଁ ହୋଇବୁ ବିବାଦୀ ।
ଦ୍ରୁପଦ ହେଲାଣି ଜାଣ ଆମ୍ଭର ବଇରୀ
ପାଣ୍ଡବଙ୍କ ପାଇଁ ରଖିଅଛି ତା କୁମାରୀ ।
ପାଣ୍ଡବମାନେ ଗଲେଣି ଜତୁଘରେ ଜଳି
ଆବର କାହାକୁ ଦେବ ଦ୍ରୁପଦ ଦୁଲାଳୀ ।
ବନ୍ଧୁ ଆମ୍ଭେ ହେବା ଚାଲ ଦୁର୍ଯ୍ୟୋଧନ ତୁଲେ
ଦ୍ରୁପଦକୁ ମରାଇବା ଦ୍ରୋଣ ବାହୁବଳେ ।
ସୁବାହୁ ବାକ୍ୟେ ବାହୁଡ଼ି ସିନ୍ଧୁଦେଶ ରାୟେ
ହସ୍ତିନା ପୁରକୁ ତହୁଁ ଆପେ ଚଳିଯାଏ ।
ଅନେକ ରଥ ଯୋଗାଡ଼ ଘେନିଣ ସେ ଗଲା
କର୍ଣ୍ଣ ତୁଲେ ଜୟଦ୍ରଥ ମିତ୍ର କରାଇଲା ।
ଅନେକ ବିନୟ ହୋଇ କହିଲା କର୍ଣ୍ଣକୁ
ଜୟଦ୍ରଥକୁ ଦିଆଅ ଦୁଃଶୀଳା କନ୍ୟାକୁ ।
କର୍ଣ୍ଣ ବୋଇଲା ଯଦ୍ୟପି ବୋଲଇ ଏମନ୍ତ
ଦୁଃଶୀଳା ବିଭା କରାଇ ଦେବା ଜୟଦ୍ରଥ ।
ଜୟଦ୍ରଥକୁ ଘେନିଣ କର୍ଣ୍ଣ ଗଲା ବେଗେ
କୁମର ଘେନି ପ୍ରବେଶ ଦୁର୍ଯ୍ୟୋଧନ ଆଗେ ।
ଭୋ କୁରୁନାଥ ଏହାର ବଚନ କରିବା
ଜୟଦ୍ରଥକୁ ଦୁଃଶୀଳା କନ୍ୟା ବିଭା ଦେବା ।
ନ ଭାଙ୍ଗଇ କର୍ଣ୍ଣର ଯେ ବାକ୍ୟ କୁରୁନାଥ
ତାହାର ଦର୍ପେ ଧଇଲା ଭାନୁମତୀ ହାତ ।
ଦୁର୍ଯ୍ୟୋଧନ ଦ୍ୱୟେ ତହୁଁ ଚଳିଗଲେ ବେଗେ
ଯାଇ ଜଣାଇଲେ ରାଜା ଧୃତରାଷ୍ଟ୍ର ଆଗେ ।
ସିନ୍ଧୁଦେଶର ନୃପତି ଅଟଇ ସୁରଥ
ତାହାର ନନ୍ଦନ ନାମ ଅଟେ ଜୟଦ୍ରଥ ।
ଧାର୍ମିକ ବିବେକୀ କ୍ଷତ୍ରିବନ୍ତ ରଣଜିତା
ଦୁଃଶୀଳାକୁ ତାହାସଙ୍ଗେ ବିଭାଦିଅ ପିତା ।
ଦୁର୍ଯ୍ୟୋଧନର ବଚନେ କହେ ଧୃତରାଷ୍ଟ୍ର
ମୋହର ମନକୁ ଆସେ ଯେହୁ ଜୟଦ୍ରଥ ।
ଗାନ୍ଧାରୀ ବିଦୁର ତହୁଁ କଲେ ସନମତ
ଭୂରିଶ୍ରବା ଦ୍ରୋଣ କୃପ ଶକୁନି ସହିତ ।
ବିଭାକୁ ସମ୍ଭାର କଲେ କରି ସନମାନ
ଅନୁକୂଳ ଶୁଭଲଗ୍ନ କରିଲେ ବିଧାନ ।
ବୈଶାଖ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା
ରୋହିଣୀ ନକ୍ଷତ୍ର ଶୁଭଯୋଗେ ବିଭାକ୍ରିୟା ।

ବାରତା ପାଇଲେ ତହୁଁ ସିନ୍ଧୁଦେଶ ରାୟେ
ନଗର ମଣ୍ଡନ କରି ଉତ୍ସବ କରାଏ ।
ଅନେକ ସମ୍ଭାର ପୁଣି ବାଜେ ବାଦ୍ୟମାନ
ବରବେଶ କରାଇଲେ ସୁରଥ ନନ୍ଦନ ।
ପିତାର କୋଳରେ ବସେ ଜୟଦ୍ରଥ ଯାଇଁ
ଦୁଃଶୀଳାକୁ ଧୃତରାଷ୍ଟ୍ର କୋଳରେ ବସାଇ ।
ବିଧିବାକ୍ୟ ଉଚ୍ଚାରିଲେ ଉଦ୍ଦାଳକ ମୁନି
ଛାୟା ମଣ୍ଡପରେ ବସିଅଛନ୍ତି ସେ ବେନି ।
ଅଛନ୍ତି ତହିଁ ଅନେକ ଦେଶ ମହୀପାଳ
କରନ୍ତି ବିଧି ବିଧାନେ ଉତ୍ସବ ମଙ୍ଗଳ ।
ସିନ୍ଧୁ ଦେଶ ରାଜା ଅଟେ କଉଶିକ ଗୋତ୍ରୀ
ଜଳଦ ଗୋତ୍ରୀ ଅଟଇ ରାଜା କୁରୁପତି ।
ବେନି କୁଳ ଗୋତ୍ର କହି ପ୍ରଦାନ କରନ୍ତି
ତିନି ପୁରୁଷର ନାମ ବିପ୍ରେ ଉଚ୍ଚାରନ୍ତି ।
ଜୟଦ୍ରଥ ଦୁଃଶୀଳାର ହସ୍ତ ଦୁଇଗୋଟି
ମହାମନ୍ତ୍ରେ ପକାଇଲେ ବିପ୍ରେ କୁଶ ଗଣ୍ଠି ।
ଅନେକ ଯେ ଯଉତୁକ କଉରବେ ଦେଲେ
ରଥଗଜ ଅଶ୍ୱ ଦାସଦାସୀ ଗୋରୁ ତୁଲେ ।
କନ୍ୟା ବିଭା କରାଇଣ ଗଲେ ଧୃତରାଷ୍ଟ୍ର
ହୋମ କଲେ ପୁରୋହିତେ ବସାଇ ନିକଟ ।
ଘୃତ ପ୍ରାଶନ କଲେକ ବରକନ୍ୟା ବେନି
ଅନ୍ତଃପୁରେ ଜୟଦ୍ରଥ ଦୁଃଶୀଳାକୁ ଘେନି ।
ଏକ ଆସନେ ଭୋଜନ କରନ୍ତି ସେ ଦୁଇ
ମଙ୍ଗଳ ଗୀତ ଗାଇଣ ହୁଳହୁଳି ଦେଇ ।
ଆପଣା ମନ୍ଦିରେ ବିଜେ ଆଚମନ ସାରି
ତାମ୍ବୁଳ ମଣୋହି କରି ବସାଇ କୁମାରୀ ।
ମଧୁଶଯ୍ୟାରେ ସଙ୍ଗତେ ସୁରସ ବିନୋଦେ
ପାହିଲା ରଜନୀ ତହୁଁ ଅତ୍ୟନ୍ତ ଆନନ୍ଦେ ।
ଚତୁର୍ଥ ଦିବସେ କଲେ ଚଉଠି ବିଧାନ
ପଞ୍ଚମ ଦିବସେ କଲେ ଉତ୍ସବ ରଚନ ।
ଅଷ୍ଟମ ଦିନେ ମଙ୍ଗଳ ବିଧି ଶେଷ କରି
କନ୍ୟା ଘେନି ଜୟଦ୍ରଥ ବିଜେ ସିନ୍ଧୁପୁରୀ ।
ସୁରଥ ରାଣୀ ବଧୂକୁ ଦେଖିଣ ଆନନ୍ଦ
ଭାବଇ ଶାରଳା ଦାସ ଶ୍ରୀ ଶାରଳା ପାଦ ।

—o—

## ଶ୍ରୀଖଣ୍ଡୀ ବିବାହ

ବୈବସ୍ୱତ ମନୁ ବନ୍ଦି ଅଗସ୍ତିଙ୍କ ପାଦ
ବୋଲେ ପୁତ୍ରକନ୍ୟାହ୍ନେନ୍ତେ କି କଲେ ଦ୍ରୁପଦ ।
ବଦନ୍ତି ଅଗସ୍ତି ଶୁଣ ହେ ମନୁ ପୁରୁଷ
ଜ୍ୟେଷ୍ଠପୁତ୍ର ଯେ ଶିଖଣ୍ଡୀ ନାମରେ ପ୍ରକାଶ ।
ଅଶ୍ୱେକ ଆରୋହୀ ସେହି ପଶି ବନମାର୍ଗେ
ଅନବରତ ଖେଳଇ ବନଗିରି ଲାଗେ ।
ମାରଇ ବିଷ୍ଣୁ ଦାନବମାନଙ୍କୁ ସେ ଖେଦି
ରଖଇ ତପୀମାନଙ୍କୁ ଜଗତେ ପ୍ରସିଦ୍ଧି ।
କୁମ୍ଭୀମାସ କୃଷ୍ଣପକ୍ଷ ସପତମୀ ଦିନ
ଭୃଗୁବାର ଅନୁରାଧା ନକ୍ଷତ୍ର ବିଧାନ ।
ଲକ୍ଷେ ଯୋଦ୍ଧା ଘେନି ଦିଗ୍‌ବିଜୟ କୁତୂହଳେ
ଶମ୍ବର ମୃଗାଦି ଗଣ୍ଡା ମାରିଣ ଶଇଳେ ।
ଉଡ଼ଙ୍ଗ ଦେଶର ମଧୁକିଶୋର ନୃପତି
ଦଣ୍ଡ ଘେନି ଆସଇ ସେ ଚଢ଼ି ଏକ ହସ୍ତୀ ।
ତ୍ରିବେଣୀ କୂଳରେ ହେଲେ ଥାଟ ଭେଟାଭେଟି
ନୃପତି ପଚ଼ରେ ଏହି କାହା ପୁତ୍ର ଗୋଟି ।
ଅମାତ୍ୟେ ତହୁଁ ବୋଇଲେ ପାଞ୍ଚାଳାଧିପତି
ଦ୍ରୁପଦ ରାଜାର ଅଟେ ଏ ଜ୍ୟେଷ୍ଠ ସନ୍ତତି ।
ଶୁଣିଣ ମଧୁକିଶୋର ସାନନ୍ଦ ହୋଇଲା
ଆପଣା ରାଜ୍ୟେ ଗୌରବ କରି ଘେନିଗଲା ।
ଅନଙ୍ଗ ସଦୃଶ ଅଟେ ସୁନ୍ଦର ଶିଖଣ୍ଡୀ
ବରବେଶ ଅଳଙ୍କାରେ ସର୍ବାଙ୍ଗକୁ ମଣ୍ଡି ।
ଶିଖଣ୍ଡୀ କି ଜଗତୀର ଉପରେ ବସାଇ
ଅନେକ ଯୋଗାଡ଼ ସମାରୋହରେ କରାଇ ।
ମଦନାବତୀ ବୋଲିଣ ତାହା ପାଟରାଣୀ
ତାହାକୁ ଘେନି ଭାଳଇ ବସି ନୃପମଣି ।
ଆଗୋ ମହାଦେଈ ଆମ୍ଭେ କଥାଏ କରିବା
ମଧୁମତୀକି ଆମ୍ଭର ଶ୍ରୀଖଣ୍ଡୀ କି ଦେବା ।
ଯାର ସୁସଞ୍ଚ ସୁନ୍ଦର ରୂପ ଗୋଟି ଚାହିଁ
ରାଜ୍ୟଯାକ ସମସ୍ତେ ତ ହେଉଛନ୍ତି ମୋହି ।
ବିଶେଷରେ ଦେଖି ବୀର ପୁରୁଷର ବେଶ
ବିଦ୍ୟାଧର ପ୍ରାୟ ହୁଏ ରୂପ ଯାର ଦୃଶ୍ୟ ।
ସର୍ବ ପୁରଜନେ ତାକୁ ବଦନ୍ତି ବଚନ
ଆମ୍ଭର ପୁରକୁ ଆସୁଥିବ ପ୍ରତିଦିନ ।
ପୂର୍ଣ୍ଣିମା ବନ୍ଦାପନାରେ ଆସିବ ପୁରକୁ
ପ୍ରତିମାସେ ଦେଖୁଥିବେ ଏହା ବଦନକୁ ।
ସମସ୍ତେ କହିଲେ ଯହୁଁ ଏସନକ ବାଣୀ
ଶିଖଣ୍ଡୀ କି ବରଣ ଯେ କଲା ନୃପମଣି ।
ଶୁଭଯୋଗେ ରାଜକନ୍ୟା ବିଭାଘର କଲା
ଦାସଦାସୀ ଯେ ଅନେକ ଯଉତୁକ ଦେଲା ।
ସହସ୍ରେକ ରଥ ପଞ୍ଚ ସହସ୍ର ଯେ ହସ୍ତୀ
ପାଞ୍ଚ ସହସ୍ର ଯେ ଅଶ୍ୱ ଦେଲା ନରପତି ।
ଲକ୍ଷେ ରତ୍ନ ଦେଲା ଲକ୍ଷେ ଦୁହାଁଳିଆ ଗାଈ
ମଧୁମତୀ ସମର୍ପିଲା ବିବାହ କରାଇ ।

କନ୍ୟାକୁ ଘେନିଣ ସେହୁ କୁମାର ଶିଖଣ୍ଡୀ
ଦଣ୍ଡ ସାଜି ଆପଣାର ରଥଗୋଟି ମଣ୍ଡି ।
ସହସ୍ରେକ ପାଟଛତ୍ର ସହସ୍ର ଆଲମ୍ବ
ଥାଟ ଘେନି ବାହାରିଲେ କରିଣ ଆରମ୍ଭ ।
ଟମକ ନିଶାଣ ବୀର କାହାଳୀ ଯେ ଭେରୀ
ସହସ୍ରେକ ଶଙ୍ଖ ବାଜେ ସହସ୍ର ମହୁରୀ ।
ଛାମୁରେ ନୃତ୍ୟ କରନ୍ତି ସହସ୍ରେ ସୁନ୍ଦରୀ
ସୁବର୍ଣ୍ଣ ରଥରେ ବିଜେ କୁମାର କୁମାରୀ ।
କନ୍ୟା ଘେନିଣ ଶ୍ରୀଖଣ୍ଡୀ ଗଲେ ନିଜପୁରୀ
କମ୍ପୁଅଛି ବାଦ୍ୟନାଦ ଘାତେ ବସୁନ୍ଧରୀ ।
ଆସୁଅଛି ଯଉତୁକମାନ ପଛେ ପଛେ
ଅଶ୍ୱ ଗଜ ରଥ ଗୋରୁ ଧନ ଲକ୍ଷେ ଲକ୍ଷେ ।
ଅଷ୍ଟରତ୍ନ ପାଣି ଦ୍ରବ୍ୟ ସୁବର୍ଣ୍ଣର ଦ୍ୱାର
ଏମାନ ଆସୁଅଛଇ ପାଞ୍ଚ ପାଞ୍ଚ ଭାର ।
ମଧୁକିଶୋର ପଠାଇ ଦେଇଛି ସମ୍ଭାର
ଶ୍ରୀଚଣ୍ଡୀ ଯେ ବିଜେ କଲେ ଆପଣା ରାଜ୍ୟର ।
ରତିକୁ ଘେନି ଯେସନେ ବିଜେ କାମଦେବ
ପଞ୍ଚାଳ ଲୋକ ଦେଖନ୍ତି ତେସନେକ ଭାବ ।
ଦ୍ରୁପଦ ରାଜା ଦେଖିଲେ ଜଗତୀରେ ଥାଇ
ଚିତ୍ରରଥ ଗନ୍ଧର୍ବ କି ଆସଇ ଓହ୍ଲାଇ ।
ମାନବ ରଥ ଗୋଟି ତ ଏମନ୍ତ ନ ମଣ୍ଡି
ଦେଶାଉରେ ଜଣାଇଲେ କୁମାର ଶିଖଣ୍ଡୀ ।
ଦେଖି ନୃପତି ଆନନ୍ଦ ବିଷାଦ ପାଇଲା
ଭୋ ଦଇବ ବୋଲି କର କପାଳରେ ଦେଲା ।
ବିଭାକାଳେ ପାଲଟାଇ ଥିବେ ତ ବସନ
କେହି ନ ଦେଖିଲେ ନପୁଂସକର ଲକ୍ଷଣ ।
ସଂସାର ଜନକ ଶୁଭ ଅସ୍ତୁକର ବାଣୀ
ଧର୍ମ ଉଦିତ ଈଶ୍ୱର ସାଧୁବାକ୍ୟ ଶୁଣି ।
ଏସନ ବିଚାରେ ରାଜା ବଇକୁଳ୍ୟ ମତି
ବଧୂର ମୁଖକୁ ଚାହିଁ ଭାଳେ ପଦ୍ମାବତୀ ।
ମଧୁମତୀ ଶିଖଣ୍ଡୀକୁ କରେ ଅର୍ଘ୍ୟ ଘେନି
ବନ୍ଦାପନା କରନ୍ତେ ସେ ପ୍ରଣମିଲେ ବେନି ।
ମାତା ସ୍ନେହଭରେ ତାଙ୍କୁ କରନ୍ତି କଲ୍ୟାଣ
ଧର୍ମେ ପ୍ରାପ୍ତ ହେଉ ତୋତେ ପୁରୁଷ ଲକ୍ଷଣ ।
ଦାନ ଅର୍ଘ୍ୟ ଧନ ଦେଲେ ଅନେକ ବଧାଇ
ସୁଲକ୍ଷଣୀମାନେ ଅର୍ଘ୍ୟ ଘେନିଣ ବନ୍ଦାଇ ।
ନପୁଂସକ ହୋଇ ମାତାଗର୍ଭୁ ଜନ୍ମିଥିଲା
ନୃପତି ଘୋଷଣା ଦେଲା ପୁତ୍ର ଜାତ ହେଲା ।
କେହି ନ ଜାଣନ୍ତି ସେହି ଅଟେ ନପୁଂସକ
ମୃଦୁସୁଲୀ ରାଣୀ ଗୋପ୍ୟ କଲେ ସେହି ବାକ୍ୟ ।
ବ୍ୟାସଙ୍କୁ ଘେନି ଜାଣନ୍ତି ଏହି ଚାରିଜଣ
ଅନ୍ୟ କେହି ନ ଜାଣନ୍ତି ତାହାର ଲକ୍ଷଣ ।
ପରରାଷ୍ଟ୍ରରେ ପ୍ରତାପୀ ହୋଇଲା ଶିଖଣ୍ଡୀ
ମୋହିନୀ କନ୍ୟାକୁ ଘେନି ଅଇଲାକ ଭଣ୍ଡି ।
ଯେତେ ସ୍ତ୍ରୀ ପୁରୁଷ ଆସିଥିଲେ ତା ସଙ୍ଗର
ତାହାଙ୍କୁ ନୃପତି ଦେଲେ ଅନେକ ସମ୍ଭାର ।
ବହୁତ ଉତ୍ସବ କଲେ ନୃପତି ଦ୍ରୁପଦ
ରାଜାର ସମ୍ପଦ ଦେଖି ହେଲେ ସେ ସାନନ୍ଦ ।
ପାଞ୍ଚାଳେ ସେ ପଞ୍ଚଦଶ ଦିବସ ରହିଲେ
ଆଜ୍ଞା ମାଗିଣ ଉଡ଼ଙ୍ଗ ଦେଶେ ଚଳିଗଲେ ।
ମଧୁକିଶୋର ଆଗରେ କହିଲେ ବାରତା
ସମ୍ପଦେ ପଞ୍ଚାଳ ନାଥ ଧନପତି ଯଥା ।
ବରର ମାତାର ନାମ ଅଟେ ପଦ୍ମାବତୀ
ପତିବ୍ରତା ସ୍ତିରୀ ସେହି ଲକ୍ଷ୍ମୀ ପ୍ରତିମୂର୍ତ୍ତି ।
ଜନଙ୍କ ମୁଖୁଁ ଏସନ ଶୁଭବାକ୍ୟ ଶୁଣି
ତୋଷିଲା ସମ୍ଭାରେ ମଧୁକିଶୋର ନୃମଣି ।
ଅଳିଅଳ ହୋଇ ତହୁଁ ବଢ଼େ ମଧୁବତୀ
ତିନି ବରଷେ ସୁନ୍ଦରୀ ହେଲା ପୁଷ୍ପବତୀ ।
ମଧୁମତୀକୁ ଯୁବତୀ ଦେଖି ପିତା ମାତା
ଭାଳନ୍ତି ରାତ୍ର ଦିବସେ ସୁମରିଣ ଧାତା ।
ସପତମ ଦିନେ ସେହୁ କଲା ଶୁଦ୍ଧସ୍ନାନ
ଅଷ୍ଟରତ୍ନ ପଦ୍ମଫୁଲ ଲକ୍ଷେ ଦେଲା ଦାନ ।
ଯୋଗଲଗ୍ନ ଗ୍ରହ ବାଛି ଶୁଭ ଅନୁକୂଳେ
ମଧୁମତୀ ମଧୁଶଯ୍ୟା ଶିଖଣ୍ଡୀର କୋଳେ ।
ପଲ୍ୟଙ୍କରେ ପହୁଡ଼ିଲେ ରାତ୍ର ଏକଯୋଗେ
ପୁରୁଷ ଲକ୍ଷଣ ନାହିଁ କି ହେବ ସଂଯୋଗେ ।
ବାଳୁତ କୁମାରୀ ସେହି ନ ଜାଣଇ ରସ
ହାସ୍ୟ ପ୍ରେମଭରେ ଗଲା ବେନି ଯେ ବରଷ ।
ସ୍ତିରୀ ପୁରୁଷ ସଂଯୋଗ ଶୁଣିଣ କୁମାରୀ
ଦିନୁ ଦିନ କାମଶରେ ତନୁ ହେଲା ଘାରି ।
ଲଜ୍ଜା ଉପେକ୍ଷି ସ୍ୱାମୀକି ବୋଲେ ଧରି କୋଳେ
କିମ୍ପା ବୟସ ବିଫଳ କରୁଛ ଏ କାଳେ ।
ଶିଖଣ୍ଡୀ ବୋଲେ ବାଳୁତ ବୟସ ନିଷେଧ
ଆୟୁ କ୍ଷୟ ଯାଇ ଅଳ୍ପ ଦିନ ଛିଡ଼େ ବନ୍ଧ ।
ମଧୁମତୀ ବୋଲେ ରାଜ କୁମାର ସମ୍ଭୋଗୀ
ଏମାନେ ଯେ ବିଚାରନ୍ତି ସେ ହୁଅନ୍ତି ଯୋଗୀ ।
ଦେଖ ମୋର ସମକକ୍ଷ ଯେତେକ କୁମାରୀ
ହେଲାଣି ଯେ ତାହାଙ୍କର ପୁତ୍ର ଚାରି ଚାରି ।
କ୍ରମେ ମୋହର ବୟସ ହୋଇଯାଏ ଗତ
ରାଜାର କୁମାରୀ ହୋଇ କଲି କି ଦୁଷ୍କୃତ ।

ଶିଖଣ୍ଡୀ ଯେ ନିଦ୍ରାଗଲା ଅଚେତନ ହୋଇ
କାମ କଷ୍ଟେ ସୁନ୍ଦରୀର ନେତ୍ରେ ନିଦ୍ରା ନାହିଁ ।
ଅଚେତନ ନିଦ୍ରା ଯହୁଁ ଗଲାକ ଶିଖଣ୍ଡୀ
ମଧୁମତୀ ଉଠି ବସ୍ତ୍ର ଫେଡ଼ିଣ ଦରାଣ୍ଡି ।
ଉଠିଣ ସୁନ୍ଦରୀ କରେ ଧରି ଦୀପାବଳି
ନିରୀକ୍ଷି ଚାହିଁଲା ଦେହେ ନାହିଁ ଲୋମାବଳୀ ।
ଦେଖିଲା ସ୍ତିରୀ ପୁରୁଷ ଲକ୍ଷଣ ହିଁ ନାହିଁ
ମୂର୍ଚ୍ଛାଗତ ହୋଇ ବାଳୀ ସ୍ୱାମୀ ମୁଖ ଚାହିଁ ।
ଆହାରେ ଦଇବ ତୁହି ମୋତେ ଏହା କଲୁ
ହସ୍ତର ନିଧିକୁ ମୋର ଅନ୍ତରେ ରଖିଲୁ ।
ସ୍ତ୍ରୀ ପୁରୁଷ ନୁହେଁ ନପୁଂସକର ଲକ୍ଷଣ
ବଂଶ ଉଦ୍ଧାରଣେ ପୁଣି ଅତି ବିଚକ୍ଷଣ ।
ପୂର୍ବେ ସେବା ନ କଲି ମୁଁ ହର ଯେ ପାର୍ବତୀ
ଏସନକ ବିଲକ୍ଷଣ ପାଇଲି ମୁଁ ପତି ।
ସମୁଦ୍ର ପ୍ରାୟେକ ମଣି ହରିଥିଲି ଆଶ
ସୁନ୍ଦରୀ ସ୍ତିରୀ ମୁହିଁ ଏ ସୁନ୍ଦର ପୁରୁଷ ।
ଧନ ରତ୍ନକୁ ଯୁବତୀ ନ କରଇ ଇଚ୍ଛା
ସୁନ୍ଦର ପୁରୁଷକୁ ସେ କରୁଥାଇ ବାଞ୍ଛା ।
ସୁନ୍ଦର ପୁରୁଷ ଦେଖି ମୋ ପିତା ବରିଲା
ବିପାକ କର୍ମରୁ ମୋର ଏମନ୍ତ ଘଟିଲା ।
ଏସନ ବିସ୍ମୟ ଚିତ୍ତେ ଭାଳି ସେ ଯୁବତୀ
କପାଳରେ କର ମାରି ପାହିଲା ସେ ରାତି ।
ବେଶ ବସନ ଭୂଷଣେ ତା ଚିତ୍ତ ନ ମଜ୍ଜି
ହସ୍ତ ଅଳଙ୍କାର ମାନ ଦୂରେ ପରିତ୍ୟଜି ।
ଅନ୍ନ ଆହାର ସହିତେ କଲାକ ଉପେକ୍ଷା
ଛାଡ଼ିବି ନିଶ୍ଚୟ ପ୍ରାଣ କଲି ବ୍ରତ ଦୀକ୍ଷା ।
ପିତା ଘରୁ ଆସିଥିଲା ଯେଉଁ ମୁଦ୍ରସୁଲୀ
କହେ ପିତାଙ୍କୁ କହ ଲୋ ନିରାଶ ମୁଁ ହେଲି ।
ଯାହାକୁ ମୋତେ ପ୍ରଦାନ କଲା ମୋର ତାତ
ସ୍ତିରୀ ପୁରୁଷୁଁ ବାହାର ନପୁଂସକ ଜାତ ।
ମୁହିଁ ଦେହ ଛାଡୁଅଛି ଦ୍ରୁପଦର ପୁରେ
କହଲୋ ଯାଇ ମୋହର ପିତାର ଆଗରେ ।
ଏସନକ ବଚନ ଯେ ଶୁଣି ମୁଦ୍ରସୁଲୀ
ପଞ୍ଚଦଶ ଦିବସରେ ଗଲା ଚାଲି ଚାଲି ।
ପ୍ରବେଶ ହୋଇଲା ଯାଇ ଆପଣାର ଦେଶେ
ବାରତା କହିଲା ମଧୁ କିଶୋର ପାରୁଶେ ।
ଭବିଷ୍ୟ ବାରତା ଦେବ ଶୁଣ ରାଜେଶ୍ୱର
ଶିଖଣ୍ଡୀ ବୋଲିଣ ଯେଉଁ ଦ୍ରୁପଦ କୁମର ।
ଅତି ଅଲକ୍ଷଣ ଦେବ ତାହାର ଶରୀର
ସ୍ତିରୀ ପୁରୁଷ ଲକ୍ଷଣ ନାହିଁ ନା ତାହାର ।
ମଧୁମତୀ କଷ୍ଟ ଦେବ କହି ତ ନ ପାରି
ଅଗ୍ନି ଜାଳିଣ ମାରିବ ତୋହର କୁମାରୀ ।
କୋପେ ଦଣ୍ଡଧାରୀ ବୋଲେ ମଲେ ମୋ କୁମାରୀ
ଦ୍ରୁପଦ ରାଜାର ନିଶ୍ଚେ ହରି ରାଜଶିରୀ ।
ସେ ଅଗ୍ନିରେ ଶିଖଣ୍ଡୀକୁ ପକାଇବି ମାରି
ଏହା ନିଶ୍ଚେ କରିବଇଁ ଏ ସତ୍ୟ ମୋହରି ।
ମୋହର ବିଚାରେ ଯେବେ ଦୁହିତା ମରିବ
ସେହି ନଂପୁଷକ କିମ୍ପା ବଞ୍ଚି ରହିଥିବ ।
ଏତେକ ବୋଲିଣ ରାଜା କୋପେଣ ପ୍ରଚଣ୍ଡ
ଦ୍ରୁପଦର ଉପରକୁ ସାଜିଲାକ ଦଣ୍ଡ ।
ଅର୍ବୁଦେକୁ ରଥ ବେନି ଅର୍ବୁଦେ ଯେ ହାତୀ
ଦଶଲକ୍ଷ ଅଶ୍ୱ ତେର କ୍ଷଉଣୀ ପଦାତି ।
ଆବର ମୁକୁଟ ବନ୍ଧା ଅର୍ବୁଦେକ ଦଣ୍ଡ
ଘୋର ବାଦ୍ୟ ଶବଦରେ କମ୍ପଇ ଭୂଖଣ୍ଡ ।
ଦ୍ରୁପଦ ଆସ୍ଥାନେ ଚାରେ କହିଲେ ବାରତା
ତୋତେ ମାରିବାକୁ ଆସେ ମଧୁମତୀ ପିତା ।
ଦଣ୍ଡ ସାଜ ଦେବ ବୋଲି ବୋଇଲା ଦ୍ରୁପଦ
ଅବଶ୍ୟ ମଧୁକିଶୋରେ କରିବାକୁ ଦ୍ୱନ୍ଦ୍ୱ ।
ଦୁହିତାର ଅପମାନ ବାଧିଲା ସମ୍ରାଟ
ଦ୍ରୁପଦ ବୋଇଲେ କିମ୍ପା ସାଜିବ ମୋ ଥାଟ ।
ତାହାର ମୋହର ସଙ୍ଗେ ଅଛି ବନ୍ଧୁପଣ
ଅଭିନ୍ନ ଆତ୍ମାକୁ କେବା କରିବ ବାରଣ ।
ହସ୍ତୀ ଏକ ଆରୋହିଲା ଦ୍ରୁପଦ ନୃପତି
ସଙ୍ଗରେ ଅଛଇ ତାର ସଦାନନ୍ଦ ମନ୍ତ୍ରୀ ।
ବାମ ପାଖରେ ଅଛଇ ପୁତ୍ର ଧୃଷ୍ଟଦ୍ୟୁମ୍ନ
ମଧୁ କିଶୋର ଛାମୁକୁ କରଇ ଗମନ ।
ଉଡ଼ଙ୍ଗେଶ୍ୱର ରହିଛି ପୁରାନ୍ତକ ଘାଟେ
ପାଞ୍ଚାଳ ଈଶ୍ୱର ଯାଇ ଭେଟିଲା ନିକଟେ ।
ମଧୁକିଶୋର ଆଗରେ କହିଲେ ମୂନେ ହିଁ
ତୋର ସନ୍ନିଧିକୁ ଦେବ ଦ୍ରୁପଦ ଆସଇ ।
କୋପେ ଆଜ୍ଞା ଦେଲା ରାଜା ସେ ମଧୁ କିଶୋର
ଯୋଦ୍ଧାଙ୍କୁ ବୋଇଲା ଯାଇ ଦ୍ରୁପଦକୁ ଧର ।
ଦ୍ରୁପଦ ରାଜା ବୋଇଲେ ଶୁଣ ହୋ ସମୁଧି
ମୋହର କି ଦୋଷ କହ ତୋହର ଏ ବୁଦ୍ଧି ।
ମୋତେ କିଛି ନ ବିଚାରି କଲୁ କିମ୍ପା ଏହା
ନ ଜାଣି କିମ୍ପାଇଁ କଲୁ ଧାତିକାରେ ବିଭା ।
ଆପଣା ଦୋଷ କିମ୍ପାଇଁ ଆପେ ନ ବିଚାରୁ
ତୋହର ଏ କଲା କୃତ୍ୟ ମୋତେ କୋପ କରୁ ।
ମଧୁକିଶୋର ବୋଇଲା ମୋର ଦୋଷ ନାହିଁ
ସୁନ୍ଦର ସୁବିଚକ୍ଷଣ ଦେଖି ବରିଲଇଁ ।

କିମ୍ପାଇଁ ମୋତେ ଏହା ନ କହିଲା ଶିଖଣ୍ଡୀ
ଦୁହିତାକୁ ବିଭା ହେଲା ମୋତେ ପୁଣି ଭଣ୍ଡି ।
ଏବେ ଯେବେ ଦୁହିତାଟି ମୋର ନାଶ ଯିବ
ସେ ନପୁଂସକ ପୁରୁଷ ବଞ୍ଚି କି କରିବ ।
ମୋତେ ତୁମ୍ଭେ ଦ୍ରୁପଦ ହୋ ଦିଅ ଶିଖଣ୍ଡୀକି
ଅଗ୍ନି ଭିତରେ ପକାଇ ଦେବଇଁ ଦୁହିଁଙ୍କି ।
ଏହା କହି ଦ୍ରୁପଦଙ୍କୁ ଧଇଲାକ ବଳେ
ପଳାଇଲା ଧୃଷ୍ଟଦ୍ୟୁମ୍ନ ସେଠାରୁ ବିକଳେ ।
କ୍ରୋଧଭରେ ସମଦଣ୍ଡ ଘେନି ଧୃଷ୍ଟଦ୍ୟୁମ୍ନ
ବାଟେ ଓଗାଳିଲେ ମଧୁକିଶୋର ସଇନ୍ୟ ।
ଉଭୟ ଥାଟ ହୋଇଲେ ତହିଁ ଉଚ୍ଚବାଚ
ଉଭାରି ଧନୁଆମଞ୍ଚ ଖୋଜିଲେ ନାରାଚ ।
ଏମନ୍ତ ସମୟେ ଆସି ହୋଇଲା ରଜନୀ
ମହାଦେଈ ପଳାଇଲା ଶିଖଣ୍ଡୀକୁ ଘେନି ।
ପ୍ରବେଶିଲେ ଯାଇ ଗନ୍ଧମାଦନ ପର୍ବତେ
ଉଚ୍ଚସ୍ୱରେ ରୋଦନ୍ତି ସେ ବସି ନିଶାରାତ୍ରେ ।
ମହାନିଶାକାଳ ବନ ନିଶବ୍ଦ ପୁଣି
କାନ୍ଦନ୍ତେ ଶୁଭଇ ଯେହ୍ନେ କୋକିଳର ବାଣୀ ।
ବାହୁନି କାନ୍ଦେ ଶିଖଣ୍ଡୀ ଗୁଣକୁ ସୁମରି
ଆରେ ଦୁଃଖୀର ସଙ୍ଖାଳି ଅନ୍ଧର ଲଉଡ଼ି ।
ଦଶମାସ ତୋତେ ଗର୍ଭେ ଧଇଲିରେ ବାଳ
ସର୍ବଗୁଣ ସୁଲକ୍ଷଣ ଲକ୍ଷଣ କପାଳ ।
ଦାନେ ସୁରମାନେ ସୁର ସଂଗ୍ରାମରେ ସୁର
କନ୍ଦର୍ପ ନୋହିବ ତୋର ସମାନ ସୁନ୍ଦର ।
କେବଣ ଶିବଲିଙ୍ଗ ତୁ ଉପାଡ଼ିଲୁ ପୂର୍ବେ
ତେଣୁ ନପୁଂସକ ବାବୁ ହୋଇଲୁ ତୁ ଏବେ ।
ଏମନ୍ତ ପୁତ୍ରକୁ ଧରି ରାଣୀ କାନ୍ଦେ ବସି
ଅନ୍ଧକାରେ ବିଜେ କରି ତୁଳାକର୍ଣ୍ଣ ଆସି ।
ଗନ୍ଧମାଦନ ପର୍ବତେ ଶୁଭେ ଶୋକ ବାଣୀ
ଅନ୍ଧାରି ବିଜୟ କାଳେ ସେ ଶବଦ ଶୁଣି ।
ବାହୁନି କାନ୍ଦନ୍ତେ ଦୟା କଲେ ବୀରମଣି
ବନେ ଏକା ରହି କାନ୍ଦୁ ତୁ କାହା ତରୁଣୀ ।
ତୁ କାହାର ଭାରିଯା ଗୋ କେ ତୋହର ପତି
ଏ ଘୋର ଅରଣ୍ୟେ ଶୋକ କରୁ ନିଶାରାତି ।
ରାଣୀ ବୋଲେ ତୁମ୍ଭେ ଅଟ କେବଣ ଦେବତା
ମୁଁ ବଡ଼ ଦୁଃଖିନୀ କହି ନ ସରେ ମୋ କଥା ।
ବଦନ୍ତି ଗନ୍ଧର୍ବ ବୀର ଶୁଣ ଗୋ ଯୁବତୀ
ମୋର ନାମ ତୁଳାକର୍ଣ୍ଣ ମୁଁ ଅଳକାପତି ।
ଅମରାଧିନାଥର ମୁଁ ଅଟଇ ଭଣ୍ଡାରୀ
ମୋର ମାତା ପଦ୍ମାବତୀ ନାମେ ଅପସରୀ ।

ନଳ କୁବେର ମୋହର ତୁଲେ ପ୍ରୀତି କଲେ
ମୁହିଁ ନ ଜାଣେ ଭଣ୍ଡାରୁ ଧନ ବହିନେଲେ ।
ଅଭିଷେକର ଯୋଗାଡ଼ ନେଲେକ ଚୋରାଇ
ଦେଖିଲି ଭଣ୍ଡାରେ ଧନ ରତ୍ନ କିଛି ନାହିଁ ।
ବାସବ ଦେବତା ଦେଖ ମୋତେ କୋପ କଲେ
ଦେବ ଭନ୍ଦାରୁ ବାହାର କରି ମୋତେ ଦେଲେ ।
ପଦ୍ମାବତୀ ବୋଇଲେ ମୁଁ ଦ୍ରୁପଦ ଭାରିଜା
ମୋହର ପିଅର ପଦ୍ମକେଶରୀ ଯେ ରାଜା ।
ମୋହର ନାମ ଅଟଇ ଜାଣ ପଦ୍ମାବତୀ
ଏକା ଏ ପୁତ୍ରଗୋଟି ମୋ ହୋଇଲା ଉପୃତ୍ତି ।
ବନେ ଏକଦିନେ ଦିଗ ବିଜେ କରି ଗଲା
ମଧୁକିଶୋର ଏହାକୁ କନ୍ୟା ଦାନ କଲା ।
ଦେଖି ପୁରୁଷ ଲକ୍ଷଣ ଏ ପୁତ୍ରର ନାହିଁ
ଅଗ୍ନିରେ ପଶିବି ବୋଲେ ମଧୁମତୀ ମୁହିଁ ।
ମଧୁକିଶୋର ବାହିଲା ଦଣ୍ଡ ମୋ ଦେଶକୁ
ଶିଖଣ୍ଡୀ ନିମନ୍ତେ ବନ୍ଦୀ କରିଛି ରାଜାକୁ ।
ଶିଖଣ୍ଡୀକୁ ଲୋଡୁଅଛି ରାଜା ଚଉକତି
ବିକଳେ ଘେନି ପଳାଇ ଅଇଲି ଏ ରାତି ।
ଗନ୍ଧର୍ବ ବୋଇଲା ମୋର ମାତା ପଦ୍ମାବତୀ
ତୁ ମୋହର ମାଉସୀ ଯେ ହୋଇଲୁ ଯୁକତି ।
ଏହି ଶିଖଣ୍ଡୀ ମୋହର ଅଟେ ଜ୍ୟେଷ୍ଠ ଭ୍ରାତ
ଏହାର ପ୍ରତିକାର ମୁଁ କରିବି ଗୋ ମାତ ।
ଶିଖଣ୍ଡୀ ଘେନି ଗନ୍ଧର୍ବ ଅନ୍ତର ହୋଇଲା
ଆପଣାର ପୁରୁଷତ୍ୱ ତାକୁ ଦାନ କଲା ।
ସଞ୍ଜିବନୀ ମହୋଷଧି ଦେଲା ପୁଣି ତାକୁ
ପୁରୁଷ ହୋଇଲା ତୁଳକର୍ଣ୍ଣ ଦେଖୁ ଦେଖୁ ।
ପଚାରିଲେ ବୈବସ୍ୱତ ମନୁ ଯେ ପ୍ରସ୍ତାବେ
ତୁଳାକର୍ଣ୍ଣର ମହିମା ଅସମ୍ଭବ ଭାବେ ।
ଏ ଲକ୍ଷଣ ପ୍ରାପ୍ତ ହେଲା କି ବା ମୁନି ଶାପେ
ଛାଡ଼ିଲା ପୁରୁଷ ଚିହ୍ନ କହ କେଉଁ ରୂପେ ।
ଅଗସ୍ତି ବୋଇଲେ ଯାହା ପଚାରିଲୁ ସତ
ସାବଧାନେ ଶୁଣ ତୁହି ଏଥିର ତଦନ୍ତ ।
ସ୍ୱର୍ଗେ ଏହାକୁ ପ୍ରଶଂସା କଲେ ସହସ୍ରାକ୍ଷ
ଅମରପୁରେ ଏହାକୁ କଲେ ନୃତ୍ୟମୁଖ୍ୟ ।
ବାସବଠାରୁ ସୁନ୍ଦର ଅଟେ ତୁଳକାର୍ଣ୍ଣ
ନୋହିଲା ଏ ବିଦ୍ୟାଧରମାନଙ୍କର ମନ ।
ଅପସରାଏ ରହିଲେ ଏ ପୁରୁଷ ବଶେ
ଏହାକୁ ଛାଡ଼ି ନ ଗଲେ କେହି ଇନ୍ଦ୍ରପାଶେ ।
ଏହାର ମାତାଙ୍କ ନାମ ଅଟେ ପଦ୍ମାବତୀ
ଅପସରା ମଧ୍ୟେ ସେହି ଅଟେ ରୂପବତୀ ।

ମାତାଙ୍କୁ ଦେଖି ମଦନେ ଆରତ ହୋଇଲା
ଦିନେ ପଦ୍ମାବତୀକୁ ସେ ବଳାତ୍କାର କଲା ।
ଅମରପୁରେ ସକଳେ କଲେ ଛିଛିକାର
ଏହାକୁ ବାହାର କରିଦେଲେ ପୁରନ୍ଦର ।
କେହି ନ ଚାହାନ୍ତି ଏହି ତୁଳାକର୍ଣ୍ଣ ମୁଖ
ପାଇଲା ଏ ବନଗାମୀ ହୋଇ ବଡ଼ ଦୁଃଖ ।
ସେହି ମହାପାପ ଭୟେ ଇନ୍ଦ୍ରିୟ ଛେଦିଲା
ଆପେ ପୁଣି ନପୁଂସକ ଲକ୍ଷଣ ବହିଲା ।
ମନରେ ବିଚାର କର ଆହେ ବୁଧିଜନେ
କାରଣ ପାଇଲା ରାଣୀ ମହତ ଦର୍ଶନେ ।
ଉଦ୍ଧାର ପାଇଲା ଦେଖ ଦ୍ରୁପଦ ଆତ୍ମଜ
ତୁଳାକର୍ଣ୍ଣ ପ୍ରସାଦରୁ ଲଭି ତେଜବୀର୍ଯ୍ୟ ।
ପୁଷ୍କର ବିମାନ ତାକୁ ଦେଲା ତୁଳାକର୍ଣ୍ଣ
ଏଥିରେ ଆରୋହୀ ମାଗୋ କର ତୁ ଗମନ ।
ଆପଣା ଶରୀରେ ଯେତେ ଅଳଙ୍କାର ଥିଲା
ଶିଖଣ୍ଡୀ ଅଙ୍ଗରେ ତାହା ଆଭରଣ କଲା ।
ଦେବାଙ୍ଗ ବସନେ ଅଙ୍ଗ ଆଭରଣ କରି
ବିମାନେ ଶିଖଣ୍ଡୀ ବିଜେ ଅସ୍ତ୍ର ଶସ୍ତ୍ର ଧରି ।
ସୁପ୍ରସନ୍ନେ ଅସ୍ତ୍ରବିଦ୍ୟା ଦେଲା ତୁଳାକର୍ଣ୍ଣ
ମୋହର ପ୍ରସାଦ ହେତୁ ସଂଗ୍ରାମେ ନିପୁଣ ।
ପୁତ୍ରକୁ ଘେନିଣ ତହୁଁ ଗଲା ପଦ୍ମାବତୀ
ଦଣ୍ଡ ଘେନି ଯହୁଁ ଅଛି ଉଡ଼ଙ୍ଗ ନୃପତି ।
ତ୍ରିପୁର ଅନ୍ତକ ଘାଟେ ବସିଛି ଆସ୍ଥାନେ
ଧାଡିକାରେ ପ୍ରବେଶିଲା ପୁଷ୍ପକ ବିମାନେ ।
ଦ୍ରୁପଦ ପୁତ୍ର ବିମାନୁ ଉତୁରିଲା ଆସି
ଦେଖିଣ ଆସ୍ଥାନୁ ରାୟେ ଉଠଇ ତରାସି ।
ଇନ୍ଦ୍ରଦେବତା କି ବିଜେ ହୋଇଲା ଅମ୍ବରୁ
ଯୋଦ୍ଧା ଅମାତ୍ୟ ତ୍ରାସିଲେ ଦେଖି ତାଙ୍କୁ ଦୂରୁ ।
ଶସ୍ତ୍ର ପକାଇ ସମସ୍ତେ ରହିଲେ ପ୍ରଣମି
ପ୍ରଣିପାତ କର ବୋଲି ଭୋ ଉଡ଼ଙ୍ଗ ସ୍ୱାମୀ ।
ଆସ୍ଥାନେ ବିଜୟ ଆସି ହୋଇଲେ କୁମ୍ପର
ଦେଖି କୋଳରେ ଧଇଲେ ପଞ୍ଚାଳ ଈଶ୍ୱର ।
ଶିଖଣ୍ଡୀ ବୋଇଲେ ତୁମ୍ଭେ ଶୁଣ ହେ ଶ୍ୱଶୁର
କାହାର ନିମନ୍ତେ କୁହ ଭିଆଅ ସମର ।
ମଧୁକିଶୋର ବୋଇଲେ ତୁ ବାସବ ପ୍ରାୟ
କେଉଁ ପାପୁ ନପୁଂସକ ଲକ୍ଷଣ ତୋ କାୟ ।
ଶିଖଣ୍ଡୀ ବୋଇଲା ତୋର ଝିଅ କୁଭାଷିଣୀ
ସାଧକ ପୁରୁଷ ମୁହିଁ ଯୋଗସିଦ୍ଧ ପୁଣି ।
ନ ମାନିଲା ତୁମ୍ଭ ଝିଅ ଯେଣୁ ମୋର କଥା
ଇଚ୍ଛିଲା ସୁରତି ସେହି ନିତ୍ୟ ଯଥା ତଥା ।
ଇଚ୍ଛାରେ ବିରତି ମୋର ଇଚ୍ଛାରେ ପୀରତି
ତହିଁ ସେ ମନ ବିରସ କଲା ମଧୁମତୀ ।
ତେଣୁ ପ୍ରୀତିରସ ଯୋଗ ଅଯୋଗ୍ୟ ହୋଇଲେ
ନପୁଂସକ ବୋଲି ମୋତେ ଅପବାଦ ଦେଲେ ।
ଏମନ୍ତ ଶୁଣିଣ ମଧୁକେଶରୀ ରାଜନ
ଆଶ୍ଚର୍ଯ୍ୟ ହୋଇ ବିଚାର କଲେ ନିଜ ମନ ।
ବୋଇଲେ ମୃଦୁସୁଲୀକୁ ରାଇ ଗୁପତରେ
ପରୀକ୍ଷା କର କ୍ୱାଇଁକି କୌତୁକ ଭାବରେ ।
ମୃଦୁସୁଲୀ ଗଲା ତ୍ୱରା ପରୀକ୍ଷା ନିମନ୍ତେ
ତକ୍ଷଣେ କହିଲା ଯାଇ ନୃପତି ଅଗ୍ରତେ ।
ଶୁଣିଣ ରାଜନ ତହୁଁ ମନରେ ହରଷ
ସୈନ୍ୟ ଘେନିଣ ପଞ୍ଚାଳ ଦେଶରେ ପ୍ରବେଶ ।
ଶିଖଣ୍ଡୀର ହସ୍ତ ଧରି ନେଲା ମଧୁମତୀ
ଇଚ୍ଛାରେ ସୁନ୍ଦରୀ ତୁଲେ ବଢ଼ିଲା ପୀରତି ।
ଅନେକ ଶୃଙ୍ଗାର ହୋଇଲାକ ମନଇଚ୍ଛା
ପୂରାଇଲା ଶିଖଣ୍ଡୀ ଯେ ତାର ମନୋବାଞ୍ଛା ।
ଶିଖଣ୍ଡୀ ନିମନ୍ତେ ରାଜା ବିରସରେ ଥିଲା
ଉଭୟ କୂଳେ ଅନେକ ହର୍ଷ ଉପୁଜିଲା ।
ମଧୁକିଶୋର କହଇ ପଡ଼ି ପାଦତଳେ
ଉପେକ୍ଷା କରନ୍ତୁ ମମଦୋଷ ମହୀପାଳେ ।
ଦ୍ରୁପଦଙ୍କୁ ସୁସମ୍ମାନ କରି ନୃପନାଥ
ଉଡ଼ଙ୍ଗ ଦେଶେ ପ୍ରବେଶ ହୋଇଲା ତୁରିତ ।
ମହାଦେଈର ଅଗ୍ରତେ କହିଲା ଏ କଥା
ଶୁଣିଣ ରାଣୀର ଦୂର ହେଲା ମନୋବ୍ୟଥା ।
ଭାରତ ଖଣ୍ଡେ କର୍ଣ୍ଣାଟେ ମାଧବ ନୃପତି
ତାହାର ଭାରିଯା ନାମ ଅଟଇ ସୁମତୀ ।
ତାହାର ଗର୍ଭରୁ ଏକ ଦୁହିତା ଉପ୍ତତି
ତାହାର ନାମ ରାଜନ ଦେଲା ହୀରାବତୀ ।
ଦ୍ରୁପଦର ନନ୍ଦନ ଯେ ଅଟେ ଧୃଷ୍ଟଦ୍ୟୁମ୍ନ
ହୀରାବତୀକୁ ସେ କଲା ତାହାକୁ ପ୍ରଦାନ ।
ବୈବସ୍ୱତ ମନୁଙ୍କୁ ଯେ ବଦନ୍ତି ଅଗସ୍ତି
ଶିଖଣ୍ଡୀର ହେଲା ବେନିପୁତ୍ର ଉତପତି ।
ଅନଙ୍ଗ ମକରଧ୍ୱଜ ଦୁହିଁଙ୍କର ନାମ
ଅନଙ୍ଗ ସୁନ୍ଦର ସେ କି ସାକ୍ଷାତରେ କାମ ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଦାସ ଶୂଦ୍ରମୁନି
ସର୍ବଦା ଚିନ୍ତଇ ତାଙ୍କ ପାଦପଦ୍ମ ବେନି ।

—0—

## କୁନ୍ତୀସହ ପାଣ୍ଡବାଦିଙ୍କର ଭିକ୍ଷା ଚରଣ

ଏଥୁ ଉତ୍ତାରେ ବିଳଙ୍କଦେଶ ମନୁରାଜା
ଅଗସ୍ତିଙ୍କ ପାଦପଦ୍ମେ କଲେ ଦିବ୍ୟ ପୂଜା ।
ପାଣ୍ଡବେ ରହିଥିଲେ ଯେ ହିଡ଼ିମ୍ବକ ବନେ
କେବଣ କୃତ୍ୟ କଲେ ସେ ପଣ୍ଡୁର ନନ୍ଦନେ ।
ମୁନି ବୋଇଲେ ସେ ଘଟୋତ୍କଚ ହେଲେ ରାଜ
ଦ୍ୱାଦଶ ବର୍ଷର ସେହି ଅଟଇ ଆତ୍ମଜ ।
ପୁତ୍ର ଘେନି ହିଡ଼ିମ୍ବା ଗୋ ଥାଅ ଏହି ବନେ
ଆମ୍ଭେ ସମୟେକ ଫେରି ଆସିବୁ ଏ ସ୍ଥାନେ ।
ରାଜ୍ୟ ତେଜିଣ ହୋଇଲୁ ଆମ୍ଭେ ବନବାସୀ
ପାଦ ଶ୍ରମେଣ ମିଳିଲୁ ସିନା ଧର୍ମେ ଆସି ।
ଭୀମ ବୋଲେ ରାଜ୍ୟ ଛାଡ଼ି ହେଲା ବନଗାମୀ
ଦୁର୍ଯ୍ୟୋଧନ ହିଁ ସଫଳକାମ ହେଲା ସ୍ୱାମୀ ।
ଯୁଧିଷ୍ଠି ବୋଇଲେ ଶୁଣ ପୂର୍ବର ବୃତ୍ତାନ୍ତ
ଏ ବଂଶେ ଥିଲେ ଦୁଷ୍ମନ୍ତ ନାମେ ମହାରଥ ।
ଏହି ବଂଶର ସମ୍ପତ୍ତି ଶୁଣ ଭୀମସେନ
ଚତୁର୍ଦ୍ଦିଗ ଜୟ କରି ପାଳଇ ରାଜନ ।
ସମୟେକ ଇନ୍ଦ୍ରପଦେ ବସିଲେ ଦୁଷ୍ମନ୍ତ
ଶଚୀ ତୁଲେ ବିଦ୍ୟାଧାରୀ ହେଲେ ପ୍ରଣମିତ ।
ସ୍ୱର୍ଗ ମର୍ତ୍ତ୍ୟ ଏକ କରି ପାଳଇ ରାଜନ
କର୍ଣ୍ଣ ମୁନିଙ୍କ ଦୁହିତା ଶକୁନ୍ତଳା ନାମ ।
ତାହାଙ୍କୁ ବନେ ବିବାହ ହୋଇଲେ ରାଜନ
ଆଶ୍ରମେ ନ ଥିଲେ କର୍ଣ୍ଣ ମୁନି ତପୋଧନ ।
ଶକୁନ୍ତଳା ବିଭାହୋଇ ରାଜା ଦୁଷମନ୍ତ
ଇନ୍ଦ୍ରପଦ ରାଜ୍ୟପାଳେ ଇନ୍ଦ୍ରର ସମେତ ।
ଋଷି ଅଭିଶାପେ ବିଭା କଥା ପାସୋରିଲା
ଶକୁନ୍ତଳା କନ୍ୟାକୁ ସେ ଗୃହକୁ ନ ନେଲା ।
ଗର୍ଭବତୀ ହୋଇଅଛି ସେହି ମୁନିବାଳା
ଅରଣ୍ୟରେ ବାସ କରି ପୁତ୍ର ପ୍ରସବିଲା ।
ସେହି ଅପରାଧେ ରାଜା ହେଲା ରାଜ୍ୟଚ୍ୟୁତ
ସମୟେକ ହେଲା ପୁଣି ଶାପରୁ ମୁକତ ।
ଶକୁନ୍ତଳାକୁ ଘେନିଣ ରାଜ୍ୟ କଲା ପୁଣି
ସମୟେ ତା ପୁତ୍ର ହେଲା ରାଜ୍ୟେ ନୃପମଣି ।
ନହୁଷ ନାମେ ନୃପତି ଥିଲେ ଏହି ବଂଶେ
ସ୍ୱର୍ଗେ ଇନ୍ଦ୍ର ହୋଇଥିଲେ ପୁଣି କର୍ମଦୋଷେ ।
ଦୁଷ୍ଟପଣେ ଋଷିଙ୍କୁ ସେ ମହାକୋପ କଲେ
ଋଷିଙ୍କ କାନ୍ଧେ ହାନ୍ଦୋଳାମାନ ବୁହାଇଲେ ।
ଋଷିମାନଙ୍କର ଏହି କୃତ୍ୟ କି ଅଟଇ
ଅର୍ଦ୍ଧପାଦେ ଫୁଟନ୍ତି ସେ ତପୋନିଷ୍ଠ ହୋଇ ।
ବୋଲଇ ରାଜନ ମୁନି ବେଗେହୋଇ ଯାଅ
କୋପେ ମୁନି ଶାପ ଦେଲେ ସର୍ପ ହୋଇଯାଅ ।
ଋଷିବାକ୍ୟେ ରାଜା ସର୍ପ ଗୋଟାଏ ହୋଇଲା
ତତକ୍ଷଣେ ସ୍ୱର୍ଗ ତେଜି ବନସ୍ତେ ପଶିଲା ।
ହାନ୍ଦୋଳା ପକାଇ ତହୁଁ ଗଲେ ଋଷିଗଣେ
କେଡ଼େ ସମ୍ପତ୍ତି ତାହାର ଗଲା ଅକାରଣେ ।
ଦୁର୍ଯ୍ୟୋଧନର ସମ୍ପତ୍ତି ଭଲ ନ ମଣଇ
ଏ ମୋତେ ଭଲ ଅଟଇ ଶୁଣ ଆରେ ଭାଇ ।
ସେ ମୋହର ଅଟେ ବଡ଼ ଉପକାରୀ ଭ୍ରାତା
ତା ପୁଣ୍ୟେ ଅନେକ ତୀର୍ଥେ ବୁଡ଼ିଲା ମୋ ମଥା ।
ଅନେକ ମୁନିଙ୍କର ମୁଁ ପାଇଲି ଦର୍ଶନ
ତାଙ୍କୁ ଦେଖି ଗଲା ମୋର ଗତ ପାପମାନ ।
ଏ ସମ୍ପତିମାନ ବାବୁ ନୁହେଁ ଚିରନ୍ତନ
ଶୁଣିଣ ଭୀମସେନ ଯେ ହୋଇଲା ମଉନ ।
ବୃଶ୍ଚିକ ଶୁକ୍ଳ ଚତୁର୍ଥୀ ତିଥି ଭୃଗୁବାର
ହିଡ଼ିମ୍ବକ ବନୁ ଚଳିଗଲେ ପାଞ୍ଚବୀର ।
ବନ ତେଜିଣ ଗମନ୍ତେ କାଶୀନଦୀ କୂଳ
ନଗରେକ ଦେଖିଲେ ଯେ ଅତି ପରିମଳ ।
ଯୁଧିଷ୍ଠି ବୋଇଲେ ଭଲ ନଗରେ ଗୋଟାଏ
ବ୍ରାହ୍ମଣ ରୂପ ଧରିବା ମାଗିବା ମୁଠାଏ ।
ଦିନ ବଞ୍ଚିବା ନିମନ୍ତେ ମାଗିବାକୁ ଭିକ୍ଷା
ଅନ୍ନ ଭୋଜନରେ ଏହି ପ୍ରାଣ ପାଉ ରକ୍ଷା ।
ବ୍ରାହ୍ମଣର ରୂପ ସର୍ବେ ହୋ ଗୁପତେ
ଯେ ଯାହାର ଅନୁରୂପ ଭିକ୍ଷାପାତ୍ର ହସ୍ତେ ।
ଲମ୍ବିତ ଜଡ଼ା ଆବର ତ୍ରିକଚ୍ଛ ବସନ
ଉତ୍ତରୀ ପଇତା ବିପ୍ର ଶ୍ରୀବତ୍ସ ଲକ୍ଷଣ ।
ହସ୍ତରେ ତ୍ରିଦଣ୍ଡି କାଖେ ଘେନି ବେଦକାଣ୍ଡି
ଗୋ ବର୍ଣ୍ଣ ପାତ୍ରି ଯେ କୁଶବଟୁ କୁଶବିଡ଼ି ।
କାନ୍ଧେ ଥିବ ଛତା କାଖେ ଥିବ ବେଦପୋଥି
ପୟରେ ପାଣ୍ଡୋଇ ଥିବ କରେ ଗଡୁପାତ୍ରି ।
ଏସନ ବିଧାନ ଜାଣ ବିପ୍ରଙ୍କ ସ୍ୱରୂପ
ବିପ୍ରରୂପ ଧରି କଲେ ନିଜ କାୟ ଗୋପ୍ୟ ।
ଯୁଧିଷ୍ଠି ବୋଇଲେ ଯେବେ ମାଗିବାକ ଭିକ୍ଷା
କେ କେଉଁ ପାତ୍ର ଘେନିବ ବହି ବିପ୍ରଦୀକ୍ଷା ।
ଯୁଧିଷ୍ଠି ଘେନିଲେ ସୌରପାତ୍ର ଗୋଟିକରେ
ମୁଣି ଗୋଟାଏ ଅର୍ଜ୍ଜୁନ ଘେନିଲେ କନ୍ଧରେ ।
ଧରିବିନି ଆନାନାମ ନ ଆସେ ମୋ ମନେ
ହରି ଗୋବିନ୍ଦ ମୁଁ ବୋଲୁଥିବି ପ୍ରତିଦିନେ ।
ଅର୍ଜ୍ଜୁନ ଇଚ୍ଛା କରିଣ ଦେବ ଚକ୍ରପାଣି
ଘେନିଣ ହରି ଗୋବିନ୍ଦ ନାମେ ମହାମୁନି ।

ଘେନିଲେ ନକୁଳ ସହଦେବ ତମ୍ବାପାତ୍ର
କୁନ୍ତୀ ଘେନିଲେ ଠୋଲାଏ ସିଇ କାଠପତ୍ର ।
ଯୁଧିଷ୍ଠିର ଦେବ ପୁଚ୍ଛାକଲେ ଅର୍ଜୁନକୁ
କି ବୋଲେ ଭିକ୍ଷା ମାଗିବ ପଚାର ଭୀମକୁ ।
ବାବୁ ଚାରି କର୍ମରେ ଯେ ହୀନ କର୍ମ ଭିକ୍ଷା
ବଳବପୁ ଥାଉଁ ଥାଉଁ ଘେନିବା ଏ ଦୀକ୍ଷା ।
ବିନୟ କରି କହିବ ପୁଣି ତୁମ୍ଭେ କଥା
ଭିକ୍ଷାଶୀ ଜନଙ୍କର ଯେ ଏସନ ବ୍ୟବସ୍ଥା ।
କୋପ ଶାନ୍ତି କରି ପୁଣି ଶାନ୍ତିକୁ ସେ ଭଜି
ବହୁତ ସମ୍ପଦ ନୁହେଁ ଅଳପ ଅରଜି ।
ସନ୍ତପ୍ତ ନୋହିବ ଶୁଣି କଷ୍ଟନା ବଚନ
ଏମାନ ପାଳି ପାରିବଟି କି ଭୀମସେନ ।
ଜନମୁଖ ଚାହିଁକରି ସୁଖେ ନେବା ଦିନ
ଏତେ କଷ୍ଟ ପାଇ ରହିଥିବା କେତେଦିନ ।
ଭୀମ ବୋଲେ ଦେବ ଦଶବରଷ ପର୍ଯ୍ୟନ୍ତେ
ଜନ ମନୁଷ୍ୟ ନ ଦେଖି ପଶିଲୁ ବନସ୍ତେ ।
ଅନ୍ନ ନ ପାଇଣ ବନ ଫଳମୂଳ ଭକ୍ଷି
ଆଉ ବଳ ବପୁ ରାଗ ଯାହାର ଯେ ଅଛି ।
ଶାନ୍ତିକୁ ଭଜିବ ଏବେ ହେବୁ ଧନହୀନ
ତଣ୍ଡୁଳକଣା ଭିକ୍ଷାରେ ବଞ୍ଚିବା ନା ଦିନ ।
ଜନମୁଖ ଚାହୁଁଥିବା ସମୟେ ସମୟେ
ପୁଣି ବିଚାରି ବୋଇଲେ କୁନ୍ତୀଦେବୀ ମାଏ ।
ବାବୁ ଭିକ୍ଷା ବୋଲି କରି ଅଟେ ଯେଉଁ କର୍ମ
କଳପଣା କରିଣ ସେ ଦ୍ୟନ୍ତି ସର୍ବଜନ ।
ବହୁତ ନ ଦେଲେ ତହୁଁ ନ ଦିଶେ ନୟନେ
ଯାଅ ବୋଲି ବାହୁଡ଼ାଇ ଦ୍ୟନ୍ତି ସ୍ତିରୀମାନେ ।
ନ ପାଇଲା ଦ୍ୱାରମାନ ନ ପୁଣ ତୁ ପୋଛୁ
ରାଗେ ନ ପୁଣ ସମସ୍ତ ଧରିଣ କଚାଡୁ ।
ବାବୁ ଏଥକୁ ଯେ ଭୀତି ଲାଗଇ ମୋ ମନ
ମାତାର ବଚନେ ବୋଲେ ବୀର ଭୀମସେନ ।
କେବଣ ଭିକ୍ଷାରେ ଭିକ୍ଷୁ ବାହୁଡ଼ନ୍ତି ନାହିଁ
ସେହି ପାତ୍ର କରେ ମାଗୋ ଘେନିବଇଁ ମୁହିଁ ।
କୁନ୍ତୀ ବୋଇଲେ ଯେ ଚକ୍ର ବୋଲି ଏକ ଭିକ୍ଷା
ଦ୍ୱାରକୁ ନ ଯିବୁ ଦାଣ୍ଡେ ବୁଲି ମନଇଚ୍ଛା ।
ଧନ ଚାଉଳ ଯେ ବିରି ଆବର ପରିବା
ହିରଣ୍ୟ ପାତ୍ର ବସ୍ତ୍ର ହିଁ ଥିବଇଁ ଯେ ଅବା ।
ତାକୁ ଦେଖି ଦିନକର ପାତକ ହରଇ
କାହାର ଘରୁ ସେ ବିପ୍ର କେବେ ନ ଫେରଇ ।
ଚକ୍ର ବ୍ରାହ୍ମଣକୁ ଯେବେ ନମସ୍କାର କରି
ଅଷ୍ଟୋତ୍ତର ଶତ ବିପ୍ର ଭୋଜନର ସରି ।
ବେନି ଚକ୍ରକୁ ପୂରାଇ ଦିଅନ୍ତି ଯେ ଅନ୍ନ
ପୂର୍ବଜନ୍ମେ ଅନ୍ନ କଷ୍ଟ ନ ପାଇ ସେ ଜନ ।
ଭୀମ କହିଲା ତ ଭଲ କହିଲ ଗୋ ମାଏ
ସେହି ଚକ୍ରଭିକ୍ଷା ମାଗୋ ମୋତେ ନ ଯୋଗାଏ ।
ଚକ୍ରଭିକ୍ଷା ମାଗିଲେ ଯେ ତହିଁ ନାହିଁ ଦୋଷ
ଦୋହରା ଅଗ୍ନି ଥାନ୍ତି ଯେ ତାହାଙ୍କର ପାଶ ।
ଯେତେକ ଭିକ୍ଷା କରିଣ ଆମ୍ଭେ ମାଗିନେବା
ଦୁଇଭାଗ କରି ଅଧେ ଦୋହରାକୁ ଦେବା ।
ଚକ୍ର ଭିକ୍ଷାରେ ବହୁତ କଲ୍ୟାଣ ହୋଇବ
ମାତ୍ର ସାମାନ୍ୟ ଜନେ ଏ କଥା ନ କହିବ ।
ଚକ୍ରଭିକ୍ଷାରେ ହେ ବାବୁ ବହୁ ଅବିଗୁଣ
ମିଥ୍ୟା କହିଲେ ଗୌରବେ ପଡ଼ଇ ବ୍ରାହ୍ମଣ ।
ଭୀମ ବୋଇଲେ ପାଇବି ଯହୁଁ ଭିକ୍ଷା ଯଥା
ତହିଁ କିମ୍ପାଇ ମାତା ଗୋ କହିବଇଁ ମିଥ୍ୟା ।
ବନସ୍ତୁ କାଟି ଆଣିଲେ ସରୁ ବେତମାନ
ଚିରିଣ ଚକ୍ର ତାହାକୁ କଲାକ ଅର୍ଜୁନ ।
ବାଉଁଶ ଖଣ୍ଡିଏ କାଟି କଲା ତାହା ଯଷ୍ଟି
ଲାଇବେ ତେ ଗୁଛି କନ୍ଧେ ଦେଲେ ଭାର ଗୋଟି ।
ଚିତା ଉତ୍ତରୀୟ କୁଶବଟୁ ଘେନି କରେ
ଗମନ୍ତି ପାଣ୍ଡବେ ଉଡ୍ରୁ ଦେଶେ ଶିବପୁରେ ।
ଦେଖନ୍ତି ଉଆସ ଏକ ନଗର ବାହାରେ
ଅନ୍ତଚାରୀ ହୋଇ ରହିଛନ୍ତି ଦ୍ୱିଜବରେ ।
ଭୀମ ବାଟ କଢ଼ାଇଲା ତାହାର ଘରକୁ
କୁନ୍ତୀ ବୋଇଲେ ରେ ବାବୁ ନ ଯାଅ ସେଠାକୁ ।
ନିୟତ ନାମ ଲୁଚାଇ ଗୋପ୍ୟ ନାମ କର
ଜଣା ପଡ଼ିବଟି ନିଜ ନାମକୁ ନ ଧର ।
ଯୁଧିଷ୍ଠିର ନାମ ତହିଁ ବହିଲେ ଜୟନ୍ତ
ଭୀମସେନ ବହିଲେ ଯେ ନାମ ଅଜୟନ୍ତ ।
ସେଠାରେ ଅର୍ଜୁନ ନାମ ବହିଲେ ଅଜେୟ
ଜୟସେନ ନାମ ହେଲେ ମାଦ୍ରୀର ତନୟ ।
ଜୟରାଷ୍ଟ୍ର ନାମ ବହି ସହଦେବ ମନ୍ତ୍ରୀ
ଏମନ୍ତେ ଗୁପତ ନାମ ବହି ପଞ୍ଚ କ୍ଷତ୍ରୀ ।
ଜୟନ୍ତ ବୋଇଲେ ତହିଁ ରହ ରହ ଭାଇ
ଅଛୁଆଁ ଲୋକ ନଗର ବାହାରେଟି ଥାଇ ।
ଅଜୟନ୍ତ ବୋଲେ ଦେବ ନିର୍ମଳ ଭବନ
ବାହ୍ୟବଳ ଦେଲା ଏହି ଅଟେ ବିପ୍ରଜନ ।
ପଚାରିଲେ ପଥିକକୁ ସନ୍ନିଧିକି ରାଇ
ଏ କି ଘର ବାବୁ ଗ୍ରାମ ଅନ୍ତରେ ଅଛଇ ।
ପଥିକ ବୋଇଲେ ଏହି ବିପ୍ରଙ୍କର ଘର
ଅଜୟ ହୋଇଲେ ଅଟେ ନଗରୁ ବାହାର ।

ଗୋସାଇଁ ସେ ଉଦ୍ଧାଳକ ନାମେ ଦ୍ୱିଜବର
ବ୍ରାହ୍ମଣୀ ଶୂଦ୍ରା ଏ ବେନି ଭାରିଯା ତାଙ୍କର ।
ବେନି ଭାର୍ଯ୍ୟା ଉପୁଜାଇ ବେନି ବେନି ପୁତ୍ର
ଦୁଇଭାଗ କଲା ଏହା ପକାଇଣ ପୁତ୍ର ।
ଶିବପୁରର ଈଶାନ ଭାଗ ଏକ କତି
ଅଛଇ ଲକ୍ଷେ ସହସ୍ର ବ୍ରାହ୍ମଣ ବସତି ।
ଉତ୍ତରଦେଶ ଶିବପୁର ପଶ୍ଚିମ ଭାଗର
ଦୁଇଲକ୍ଷେ ପଞ୍ଚାଶତ ସହସ୍ର ଯେ ଘର ।
ଏହି ଶିବପୁରେ ଏତେ ବ୍ରାହ୍ମଣ ବସତି
ଅପୁତ୍ରିକକୁ ନଗର ବାହାରେ ରଖନ୍ତି ।
ନଗର ଲୋକ ମିଳିଣ ଦିନେ ସଭା କଲେ
କାହାର ଯେ କେତେ ପୁତ୍ର ବୋଲି ସଙ୍ଖୁଳିଲେ ।
ବିଷ୍ଣୁଙ୍କର ବିପ୍ରଙ୍କର ପୁତ୍ର କନ୍ୟା ନାହିଁ
ଅପୁତ୍ରିକ ବୋଲି ଦେଲେ ନଗରୁ ଉଠାଇ ।
ବିଷ୍ଣୁଙ୍କର ଏ ନଗର ବାହାରେ ଯେ ଥାନ୍ତି
ଜପ ତପ କଲେ ବହୁ ନୋହିଲା ସନ୍ତତି ।
ବିଷ୍ଣୁକର ପଣ୍ଡାଙ୍କର ଅଟଇ ଏ ବାସ
ସନ୍ତାନ ଅଭାବେ ଛାଡ଼ିଦେଇ ନିଜ ଦେଶ ।
ଯୁଧିଷ୍ଠି ବୋଇଲେ ମାଗୋ ଏହା ହିଁ ଯୋଗାଇ
ଗୁପ୍ତ କାଳକୁ ଏ ରହିବାର ପୁରୀ ହୋଇ ।
ପ୍ରଥମେ ଭିକ୍ଷା କରିବା ଏହାଙ୍କର ଘରେ
ବାସ ଖଣ୍ଡିଏ ମାଗିଣ ରହିବା ଏଠାରେ ।
ବିଚାରିଣ ବିଜେ କଲେ ତହିଁ ପଞ୍ଚପ୍ରାଣୀ
ତୁଲେ ଗୋଡ଼ାନ୍ତି ଯେ କୁନ୍ତୀ ପଣ୍ଡୁ ପାଟରାଣୀ ।
ପୁତ୍ର ଘେନି ଭିକ୍ଷା କଲେ ବିଷ୍ଣୁକର ଘରେ
ବ୍ରାହ୍ମଣ ବ୍ରାହ୍ମଣୀ ପାକ କରନ୍ତି ଗୃହରେ ।
ଆରମ୍ଭି ବାକ୍ୟେ ପ୍ରଥମେ ଅଧ୍ୟାବେଦ କାଣ୍ଡି
ପିଣ୍ଡାରେ ବସି ବୋଇଲେ ବୁଭୁକ୍ଷତ ଦଣ୍ଡି ।
ଭିତରେ ଥାଇ ଶୁଣିଲେ ତାହା ବିଷ୍ଣୁକର
ନିର୍ଧୂମ ଅନଳ ଜାଣି ଶରୀର ତାଙ୍କର ।
ବ୍ରାହ୍ମଣ ବିଚାରେ ଯାଙ୍କୁ ନାରାୟଣୀ ଦୀକ୍ଷା
ଦଇବ ପୁରୁଷ ଏ ଯେ ମାଗୁଛନ୍ତି ଭିକ୍ଷା ।
ଭାର୍ଯ୍ୟାକୁ ବୋଲେ ସଫଳ ଅଟେ ଆଜ ଦିନ
ବ୍ରହ୍ମା ବିଷ୍ଣୁ ଶିବ ଇନ୍ଦ୍ର କୁବେର ଏ ଜନ ।
ତାଙ୍କ ତୁଳେ ସ୍ତିରୀ ଏକ ଅନାଦି ଶକତି
ଦ୍ୱାରେ ଉଭାହେଲେ ମୋର ଭାଗ୍ୟ ଆଜ ଅତି ।
ତୁ ଦେବୀ ଗୋ ଦରଶନ କର ଯାଇ ଆଗେ
କିସ ଆଜ୍ଞା ଦିଅନ୍ତି ସେ ବୁଝିଆସ ବେଗେ ।
ଅନେକ ବେଶ ଭୂଷଣ ହୋଇଣ ବ୍ରାହ୍ମଣୀ
ଅତି ସୁନ୍ଦର ଦିଶିଲା ଦେବ ସ୍ତିରୀ ଜାଣି ।
ପାଟେକ ପିନ୍ଧି ପାଟେକ କଲା ଉପରାଣ
ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଦ୍ରବ୍ୟ ପୂରାଇଣ ।
ଭିତରୁ ବାହାରହେଲେ ବ୍ରାହ୍ମଣ ବନିତା
ପାଦ୍ୟ ଅର୍ଘ୍ୟ ଦେଇଣ ସେ ହୋଇଣ ପ୍ରଣତା ।
କୁନ୍ତୀ ଆଶିଷ ପ୍ରଦାନ କଲେ ତାଙ୍କୁ ଧୀରେ
ମୋ ପ୍ରାଏ ପାଞ୍ଚଟି ପୁତ୍ର ହେଉ ତୋ କୋଳରେ ।
ଭାଗ୍ୟବନ୍ତ ବୁଦ୍ଧିବନ୍ତ ଶ୍ରେଷ୍ଠ ଯେ ହେଉନ୍ତୁ
ମାନନୀୟ ସୁରବନ୍ତ ପଣ୍ଡିତ ବୋଲାନ୍ତୁ ।
ଏତେକ ବଚନ ତହୁଁ ଶୁଣିଲା ବ୍ରାହ୍ମଣ
ଭିତର ଘରୁ ବାହାର ହୋଇ ତତକ୍ଷଣ ।
ପ୍ରଣାମ କଲେକ ଯାଇଁ କୁନ୍ତୀଙ୍କର ପାୟେ
ପରମା ମାହେଶ୍ୱରୀ ତୁ ଅଟୁ ମହାମାୟେ ।
ପ୍ରସନ୍ନ ମତି ତୁ କରୁ ପର ଦୁଃଖ ଚିନ୍ତା
ମୋତେ ଅପୁତ୍ରିକ ଦେଖି ଅଇଲୁ କି ମାତା ।
ତୁ ଯେହ୍ନେ ଦିତି ତୋହର ଆଜ୍ଞା ସତ୍ୟବ୍ରତ
ନିଶ୍ଚୟ ହୋଇବ ମୋର ପାଞ୍ଚଗୋଟି ସୁତ ।
ଯେବେ ସେହି ସୁରବନ୍ତ ପଣ୍ଡିତ ନୋହିବେ
ସେହି ଛାର ପୁତ୍ର ହୋଇ କି କର୍ମ କରିବେ ।
କୁନ୍ତୀ ପ୍ରତିବାକ୍ୟ ତୁମ୍ଭେ ଶୁଣ ଦ୍ୱିଜବର
ସୁରବନ୍ତ ଅଟନ୍ତି ଯେ ପାଞ୍ଚପୁତ୍ର ମୋର ।
ଭିକ୍ଷା ପାତ୍ର ଏକ ଏକ ଘେନି କରପତ୍ରେ
ମାଗିଣ କରି ସେ ଭିକ୍ଷା ବର୍ତ୍ତନ୍ତି ଏମନ୍ତେ ।
ଅସତ୍ୟ ଅଶୁଚି ନୀଚ ଅକ୍ରିୟା ଅଜାତି
ତାହାଙ୍କର ଘରେ ଏହି ଭିକ୍ଷା ମାଗୁଛନ୍ତି ।
ହେ କର୍ମ ପୁରୁଷ ତୋତେ ମୋର ନମସ୍କାର
ଶତ ଶତ ଦଣ୍ଡବତ ପୟରେ ତୋହର ।
ତୁହି ଯାହା ଭିଆଇଲୁ ତାକୁ କର୍ମ ବୋଲି
ତୋ ବୃଦ୍ଧି ଶିକ୍ଷାରେ ଏବେ ଦୂରକୁ ଅଇଲି ।
ହସ୍ତେ ଭିକ୍ଷା ପାଏ ଦେଇ ହରିଲୁ ସମ୍ପତ୍ତି
ଆଉ କିମ୍ପାଇଁ ବିଷାଦ କରିଦେଉ ଶାସ୍ତି ।
ତୁ ଯେ ଉଶ୍ୱାସ କରିବୁ ଏହି ମହାଭାର
ଏ ମାନବ ଜନ୍ମକୁ ଗୋ ନିନ୍ଦା ତୁ ନ କର ।
ସକଳ ନିଶ୍ଚଳ ଚଳ ଚଞ୍ଚଳ ଯେ ତୁହି
ଭାବ ଅଭାବ ସ୍ୱାମୀ ତୋ ତହୁଁ ଆନ ନାହିଁ ।
ହେ ସଂସାରଜନ ମାନେ କେହି ନୁହଁ ବଣା
କର୍ମ ପୁରୁଷ ଗୋଟିଏ ଜୀବର ଧାରଣା ।
ଭୋ କର୍ମ ପୁରୁଷ ତୋର ଚରଣରେ ଭାବେ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ନିତ୍ୟ ସେବେ ।

—୦—

## ସଞ୍ଜୟ, ଶକୁନି, ବିଦୂର ଓ କୃଷ୍ଣଙ୍କର ପରାମର୍ଶ

ମନୁ ବୋଇଲେ କରିଣ ମୁନି ପାଦପୂଜା
ପାଣ୍ଡବ ନିଧନେ ହେଲା ଦୁର୍ଯ୍ୟୋଧନ ରାଜା ।
ପାଣ୍ଡବ ନାଶନ କିମ୍ବା ନ ଭାଳେ ଶକୁନି
ଧୃତରାଷ୍ଟ୍ର ନ ଭାଳଇ ସଞ୍ଜୟକୁ ଘେନି ।
ବଦନ୍ତି ଅଗସ୍ତି ଶୁଣ ମନୁ ରାଜଦେବ
ଦ୍ୱାରକାରୁ ଆସିଥିଲେ ଦିନେ ବାସୁଦେବ ।
ସଞ୍ଜୟ ଶକୁନିକି ସେ ରାଇ ଏକଠାବେ
ବୋଇଲେ ନିଶ୍ଚିନ୍ତ ଏବେ ହୋଇଲେ କୌରବେ ।
ଆହେ ମନ୍ତ୍ରିବର ଏବେ ଶୁଣ ଏକମନେ
ପାଣ୍ଡବେ ତ ନାଶଗଲେ ଜତୁ ନିକେତନେ ।
ହସିଣ ଶକୁନି କହେ ଶ୍ରୀ ବାସୁଦେବଙ୍କୁ
ତୋହର ଭକ୍ତର ଭୟ କି ଜତୁ ଗୃହକୁ ।
ଯାହାଙ୍କୁ ତୁ ବାସୁଦେବ ରଖିବୁ ଏ ଭବେ
ତାହାର କୌରବ ଛାର କି କରିପାରିବେ ।
ଜୟନ୍ତୀ ଶବରୀ ମଲା ପାଞ୍ଚପୁତ୍ର ଘେନି
ଦୁଷ୍ଟ ପୁରୋଚନକୁ ଯେ ମାଇଲା ବହନି ।
ମାୟା ବିବର ଭିତରେ ଗଲେ ପାଞ୍ଚ ଭାଇ
ମୋତେ କି ପଚାରୁ ତୁହି ଅନ୍ତର୍ଯ୍ୟାମୀ ହୋଇ ।
ସଞ୍ଜୟ ବୋଇଲେ ପ୍ରଭୁ ମୋତେ କିପଚାର
ପାଣ୍ଡବ ବିହୁନେ କାହିଁ ପ୍ରଭୁ ଚକ୍ରଧର ।
ଜୀବ ପରମକୁ ଛାଡ଼ି ରହି ପାରଇ କି
ଶିବ ଛାଡ଼ି ପାରନ୍ତି କି ଦେବୀ ପାର୍ବତୀଙ୍କି ।
ବିଷ୍ଣୁ କାହୁଁ ଭକତକୁ ଛାଡ଼ିବେ ହେ ହରି
ଲୋକ ଜାଣିବାକୁ ସିନା ଦେବ ଗଲେ ମରି ।
ବାସୁଦେବ ବୋଇଲେ ଯେ ସଞ୍ଜୟ ଶକୁନି
ଜାଣଇ ସର୍ବଜ୍ଞ ଅଟ ତୁମ୍ଭେ ମନ୍ତ୍ରୀ ବେନି ।
ଏହା କହି କଲେ ତାଙ୍କୁ କୋଳ ସମ୍ଭାଷଣ
ଯେମନ୍ତ ଏହା ନ ଜାଣେ ରାଜା ଦୁର୍ଯ୍ୟୋଧନ ।
ଯେବେ ହେ ଶକୁନି ପିତୃ ବଇରୀ ସାଧିବୁ
ତେବେ ପାଣ୍ଡବଙ୍କ କଥା କାହିଁ ନ କହିବୁ ।
ଯେବେ ଆମ୍ଭ ପ୍ରୀତି ବାଞ୍ଛା କରୁ ମନ୍ତ୍ରୀବର
ଦୁର୍ଯ୍ୟୋଧନ ନ ଜାଣିବ ଏସବୁ ବିଚାର ।
ଆମ୍ଭ କଥା ଆନ କଲେ ହେବ ନର୍କ ପ୍ରାପ୍ତ
ନ କହିବି ବୋଇଲା ଯେ କାନ୍ଧାରୀର ଭ୍ରାତ ।
ଭୋ ବାସୁଦେବ ତୋ ବୋଲେ ଏହା ହୁଏ କରି
ଅନ୍ୟ କେ ଅଛି ତା ଆନ କରିବ ହେ ହରି ।
ଯେମନ୍ତ ମୋହର ପିତୃକାର୍ଯ୍ୟ ହୁଏ ସାଧି
ସେ କଥା ଲାଗିଲା ତୋତେ ପ୍ରଭୁ ଦୟାନିଧି ।
ସଞ୍ଜୟ କହିଲେ ପ୍ରଭୁ ଦୟା କଲେ ତୁହି
ମହାପାତକୀ ଜନକୁ କରିପାରୁ ତ୍ରାହି ।
ମୁହିଁ ତୋହର ସେବକ ଜନ୍ମେ ଜନ୍ମେ ପୁଣି
ମୋହ ପ୍ରତି ଦୟା ରଖିଥିବୁ ଚକ୍ରପାଣି ।
ସଞ୍ଜୟକୁ ପଠିଆଇ ବିଦୂରକୁ ଆଣି
ଚାରିଜନେ ଭାଳନ୍ତି ଯେ କୃଷ୍ଣା ଜନ୍ମ ଶୁଣି ।
ବିଦୂର ବୋଇଲେ ଶୁଣ ଆହେ ବାସୁଦେବ
ଏବେ କାହିଁ ରହିଛନ୍ତି ସେ ପଞ୍ଚପାଣ୍ଡବ ।
ଓଡ୍ରଦେଶେ ଶିବ ପୁରେ ବୋଇଲେ ସଞ୍ଜୟ
ବେନି ବରଷେ ଲୋଡ଼ିବ ପାଞ୍ଚାଳେଶ ରାୟ ।
ଚାରିଜଣ ବସି ଏକ କଥା ବିଚାରିଲେ
କାହିଁ ନ କହିବ ଶିର ଛୁଆଁ ଛୁଇଁଦେଲେ ।
ନିୟମ ବାଣୀ ବୋଲନ୍ତେ ପ୍ରଭୁ ବାସୁଦେବ
ଏ ତିନିଜଣ ଉଠିଣ ଗଲେ ଯେଝା ଠାବ ।
ରାତ୍ର ପ୍ରହରେକ ଥାଉଁ ଦୁର୍ଯ୍ୟୋଧନ ଉଠି
ନିତ୍ୟକର୍ମ ସାରି ହୁଏ ସ୍ତୁତି ମନ୍ତ୍ରପାଠୀ ।
ବେଳ ପ୍ରହରେକ ଯାଏ ଶୁଣଇ ପୁରାଣ
ବେନି ପ୍ରହର ମଣୋହି ଘରେ ବିଜେ ପୁଣ ।
ମଣୋହି ସାରି ତାମ୍ବୁଳ ଲାଗି ହୁଏ ଯାଇ
ପ୍ରତିଦିନ ଏହି ମତେ କରେ ରାଜ ସାଇଁ ।
ମନ୍ତ୍ରୀ ଶକୁନି ତାହାର ସନ୍ନିଧିରେ ଥାଇ
ରାଜ୍ୟ ଭଲ ମନ୍ଦ ବୁଝେ ଦୂତ ପଠିଆଇ ।
ଜୟ ତୁ ଜୟ ତୁ ଦେବ ମାୟାଧର ହରି
ଜୟ ତୁ ଜୟ ତୁ ଦେବ ବୈକୁଣ୍ଠ ବିହାରୀ ।
ଯୁଗେ ଯୁଗେ ତୋ ଜନମ ଭକତଙ୍କ ହିତେ
ଶାରଳା ଦାସ ମୁଁ ଭୃତ୍ୟ ତବ ପାଦେ ନିତ୍ୟେ ।

—୦—

## ଶିବପୁରେ ଚଣ୍ଡାଳ ବଧ ଓ ଭୀମଙ୍କର ରାଜ୍ୟାଭିଷେକ

ଅଗସ୍ତିଙ୍କୁ ପଚାରିଲେ ମନୁ ବୈବସ୍ୱତ
ତହୁଁ ଉତ୍ତାରୁ ପାଣ୍ଡବେ କଲେ କି କି କୃତ୍ୟ ।
ବିଷ୍ଣୁଙ୍କର ବ୍ରାହ୍ମଣ ହିଁ କି କଥା ବୋଇଲା
ତାହାଙ୍କୁ ସେ ପୁଣି କାହିଁ ନେଇ ଠାବ କଲା ।
କୁନ୍ତୀ ପ୍ରତିବାକ୍ୟେ ତୁମ୍ଭେ ଶୁଣ ଦ୍ୱିଜବର
ରାଗ୍ୟବନ୍ତ ଜ୍ୟେଷ୍ଠ ପୁତ୍ର ହୋଇବ ତୁମ୍ଭର ।
କୁନ୍ତୀଦେବୀଙ୍କ ବଚନେ ସାନନ୍ଦ ବ୍ରାହ୍ମଣ
ବ୍ରାହ୍ମଣୀକୁ ବୋଲେ ପାକ କର ଏହିକ୍ଷଣ ।
କୁନ୍ତୀ ପ୍ରତିବାକ୍ୟ ପତି ବିଯୋଗରୁ ତୁମ୍ଭେ
ପର ଅନ୍ନଭୋଗ ନୋହୁ ଜାଣ ଏବେ ଆମ୍ଭେ ।

ବାବୁ ପୁତ୍ର ଘେନି ପାକ ସମ୍ପାଦିବୁ ଆମ୍ଭେ
ତୁମ୍ଭସହ ପାକ ଅନ୍ନ ନ ଭୁଞ୍ଜିବୁ କେବେ ।
ବ୍ରାହ୍ମଣ ବ୍ରାହ୍ମଣୀ ନେଲେ କୁନ୍ତୀଙ୍କୁ ଘରକୁ
ପୁରର ଈଶାନ ଭାଗ ଛାଡ଼ିଦେଲେ ତାଙ୍କୁ ।
ଧାନ ଚାଉଳ ସେ ମୁଗ ବିରି ଆଦି କରି
ଯେତେ ଶସ୍ୟଭାଗ ଥିଲା ସେ ପୁରରେ ପୂରି ।
ଗୁପତ ଧନ ଆବର ଯେତେ ତହିଁ ଥିଲା
ବିପୁଳ ଗୃହ ପ୍ରାୟେ ସେ ତାକୁ ଛାଡ଼ିଦେଲା ।
ପୁଅଙ୍କୁ ଘେନି ଚଳିଲେ ଭୋଜର କୁମାରୀ
ନିଶ୍ଚିନ୍ତ ହୋଇ ରହିଲେ ବିଷ୍ଣୁଙ୍କର ପୁରୀ ।
ଅନେକ ଭକ୍ତି କରନ୍ତି ବ୍ରାହ୍ମଣ ବ୍ରାହ୍ମଣୀ
ପାଦ୍ୟ ଅର୍ଘ୍ୟ ଦେଇ ଇଷ୍ଟଦେବ ସମ ଜାଣି ।
କୁତୁହଳେ ଭିକ୍ଷାପାତ୍ର କରେ ଯାନ୍ତି ଘେନି
ପାଞ୍ଚ ପାଞ୍ଚଘରେ ଭିକ୍ଷା ନିତି କରି ଆଣି ।
ପରିମଳ କରନ୍ତି ଯେ ଭ୍ରମି ଶିବପୁରେ
ଦେଖି ଭକତି କରନ୍ତି ସେ ନଗର ନରେ ।
କେବଣ ଦେଶୀ ପୁଛନ୍ତେ କେହି ସାବଧାନେ
ବୁଝାଇ କହଇ ତାଙ୍କୁ ଏସନ ବିଧାନେ ।
ପଶ୍ଚିମରେ ସୋମରାଷ୍ଟ୍ର ହସ୍ତିନା ନଗରୀ
ଜନନୀ ଜନମ ଭୂମି ଅଛଇ ଆମ୍ଭରି ।
ଅନେକ ପୁରୁଷ ଆମେ ଅଟୁ ତୀର୍ଥବାସୀ
ବିଷ୍ଣୁଙ୍କର ପଣ୍ଡା ଘରେ ବସା କଲୁ ଆସି ।
ଗ୍ରାମଲୋକ କହିଲେ ଯେ ତୁମ୍ଭେ ଦେବଅଂଶୀ
ମନ ବିଢ଼ିବା ନିମନ୍ତେ କହୁଛି ଭିକ୍ଷାଶୀ ।
ବିଷ୍ଣୁ ଆଶ୍ରିତେ ପବିତ୍ର ତୁମ୍ଭେ ସୋମବଂଶୀ
ଭାରା ନିବାରଣ ଅର୍ଥେ ହୋଇଛ ବିଦେଶୀ ।
ଯାକୁ ଭୟ କରୁଛନ୍ତି ପ୍ରଭୁ ବାସୁଦେବ
କେ ଅବା ସଂସାରେ ବଶ ତାଙ୍କର ନୋହିବ ।
ନେତ୍ର ଗାତ୍ର ଅଧର ହେ ବତିଶ ଲକ୍ଷଣ
ବିବେକୀ ଧାର୍ମିକ ପୁଣି ପଣ୍ଡିତ ସୁଗୁଣ ।
ସୁଲକ୍ଷଣ ପୁରୁଷକୁ ନ ଛାଡ଼ଇ ଶିରୀ
ଭାରା ନିବାରଣ ଅର୍ଥେ ମର୍ତ୍ତ୍ୟେ ଅବତରି ।
ଅନେକ ଗୌରବ ପାଇ ସେହି ଶିବ ପୁରେ
ଭିକ୍ଷା ମାଗନ୍ତି ପ୍ରଥମ ପ୍ରହର ନଗରେ ।
ରାତ୍ର ପ୍ରହରେକ ଥାଉଁ ଯାଇଥାନ୍ତି ମାଗି
ନିତ୍ୟକର୍ମ ସାରି ଗୋପ୍ୟ ହୁଅନ୍ତି ସେ ବେଗି ।
ଦିବସରେ ପଶିଯାନ୍ତି ବନସ୍ତ ଭିତରେ
କୁନ୍ତୀଦେବୀ ମାତ୍ର ଥାନ୍ତି ବ୍ରାହ୍ମଣର ଘରେ ।
କନ୍ଦମୂଳ ଭକ୍ଷନ୍ତି ସେ ଗଣ୍ଡାମୃଗ ମାରି
ଭୋଜନ ବେଳେ ଆସନ୍ତି ନିତ୍ୟକର୍ମ ସାରି ।

ରାତ୍ରରେ ଭିକ୍ଷା ମାଗନ୍ତି ଗ୍ରାମେ ପାଞ୍ଚଜଣ
ଯେ ତଣ୍ଡୁଳ ମିଳେ କୁନ୍ତୀ କରନ୍ତି ରନ୍ଧନ ।
ଅର୍ଦ୍ଧେକ ଅନ୍ନ ନେଇ ସେ ଭୀମକୁ ଦିଅନ୍ତି
ଆଉ ଅର୍ଦ୍ଧେ ପାଞ୍ଚଜଣ ଭୋଜନ କରନ୍ତି ।
ବହୁତ କୁତୂହଳେ ସେ ବଞ୍ଚୁଥାନ୍ତି ଦିନ
ଯୁଧିଷ୍ଠି ବୋଇଲେ ନୁହେଁ ଏ ରାଜବିଧାନ ।
ତୁଳା ବିଛା ଧନୁ ମାସ କୁମ୍ଭ ମୀନ ମେଷ
ବୃଷକୁ ଘେନି ରହିଲେ ତହିଁ ଆଠମାସ ।
ମଘା ସିଂହ ଗୁରୁ ରହିବାରୁ ସେ ବର୍ଷରେ
ସିଂହ ବୃହସ୍ପତି ଯୋଗ ଗୌତମୀ ତୀର୍ଥରେ ।
ସିଂହମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିନରେ
ଦ୍ୱିତୀୟା ଦିବସେ ଯୋଗ ରହିବ ତୀର୍ଥରେ ।
ସ୍ୱର୍ଗରୁ ଅଇଲେ ତହୁଁ ପିତୃଗଣମାନେ
ଦେବତା ବ୍ରାହ୍ମଣ ମୁନି ହସିଲେ ସେ ସ୍ଥାନ ।
ସେଦିନ ଦିବସମଧ୍ୟେ ସ୍ନାନ ଯେ କରନ୍ତି
ଜନ୍ମଜନ୍ମାନ୍ତର ସ୍ନାନଫଳ ସେ ଲଭନ୍ତି ।
ଏକବାର ସେ ତୀର୍ଥେ ଯେ ମଥାକୁ ବୁଡ଼ାଇ
ଅନେକ ସ୍ନାନଫଳ ଯେ ଲେଖାଇ ନ ଯାଇ ।
ଜାତି ଛାଡ଼ି ଯଦି କେହି ବରେ ଅନ୍ୟ ଜାତି
ସେ ପାତକ ଶରୀରକୁ ଆବୋରିଣ ଥାନ୍ତି ।
ମହୋଦଧି ସ୍ନାନ କଲେ ବ୍ୟତିପାତ ଯୋଗେ
ଏ ପାପମାନ ଖଣ୍ଡନ ହୁଅଇ ତା ଭାଗ୍ୟେ ।
କାର୍ତ୍ତିକରେ ଅର୍କତୀର୍ଥେ କରଇ ଯେ ସ୍ନାନ
ତେବେ ହୁଅଇ ସକଳ ପାତକ ଖଣ୍ଡନ ।
ବୃହସ୍ପତି ରହିଥାନ୍ତି ସିଂହରେ ଯେ ବେଳେ
ମଥା ବୁଡ଼ାଇବ ଗଉତମୀ ତୀର୍ଥଜଳେ ।
ତହିଁରେ ଛାଡ଼ଇ ଜାଣ ସେ ପାତକମାନ
ସେ ତୀର୍ଥ ଉଦକେ ଲୋକ କରନ୍ତି ଯେ ସ୍ନାନ ।
ସିଂହରାଶି ଛାଡ଼ି ଯେବେ ବସନ୍ତି କନ୍ୟାରେ
କନ୍ୟା ବୃହସ୍ପତି ଯୋଗ କୃଷ୍ଣବେଣୀ ତୀରେ ।
କୋଟିଏ ତୀର୍ଥ ଘେନିଣ ବିଜୟ ପୁଷ୍କର
କୃଷ୍ଣବେଣୀ ସ୍ନାନ କଲେ ଦୋଷ ହୁଏ ପାର ।
ପ୍ରୟାଗେ ସ୍ନାନ କରଇ ଯେ ମକରମାସେ
ତହିଁରେ ଛାଡ଼ିବ ଅତି ପାତକ ନିଃଶେଷେ ।
ମଣିକର୍ଣ୍ଣିକାରେ ସ୍ନାନ କଲେ ଏକବାର
ସମସ୍ତ ମହାପାତକ ହରଇ ସେ ନୀର ।
ତ୍ରିବେଣୀରେ ବେଳେ ଯେବେ ବୁଡ଼ାଇବ ମଥା
ନାଶ କରେ ଦଣ୍ଡେ ସେହି ନ ପାଇବ ବ୍ୟଥା ।
ଏସନକ ବାକ୍ୟ ଲେଖା ଥିବାରୁ ପୁରାଣେ
ତୀର୍ଥକୁ ଯିବାକୁ ସଜହେଲେ ଜଣେ ଜଣେ ।

ବିଷ୍ଣୁକର ପଣ୍ଡା ତହିଁ ଅପୁତ୍ରିକ ଥିଲା
ପାଣ୍ଡବ ଦର୍ଶନେ ଭାର୍ଯ୍ୟା ଗର୍ଭବତୀ ହେଲା ।
ବ୍ରାହ୍ମଣୀର ଗର୍ଭ ଯହୁଁ ହେଲା ପାଞ୍ଚମାସ
ଲୋକେ ବୋଇଲେ ଏହାର ଗଲା ସର୍ବଦୋଷ ।
ନଗର ଭିତରୁ ଯାଇଥିଲେ ସେ ବାହାରେ
ବସାଇଲେ ଗଉରବ କରିଣ ସଭାରେ ।
ଏକାନ୍ତରେ ବସାଇଣ ମାତାଙ୍କୁ ପାଖର
ଗଉରବେ କହୁଛନ୍ତି ପଣ୍ଡୁଙ୍କ କୁମର ।
କୁନ୍ତୀଙ୍କୁ ବୋଇଲେ ମାଗୋ ତୁମ୍ଭେ ଥାଅ ଏଥେ
ଆମ୍ଭ ପଞ୍ଚ ଭ୍ରାତା ଯିବୁ ଗଉତମୀ ତୀର୍ଥେ ।
କୁନ୍ତୀଦେବୀ ବୋଇଲେ ନ ଯାଉ ଭୀମସେନ
ଦୁର୍ଯ୍ୟୋଧନକୁ ଦେଖିଲେ କରିବ ନିଧନ ।
ବନସ୍ତରେ ଅଛି ଏ ଯେ ମହାଦୁଃଖ ପାଇ
ସେ ରାଗେ କରିବ ଭୀମ ସଂଗ୍ରାମ ହିଁ ଯାଇଁ ।
ଯୁଧିଷ୍ଠି କହିଲେ ପୁଣି ଡାକ ସେ ପଣ୍ଡାଙ୍କୁ
ଆମ୍ଭେ ଚାରିଭାଇ ଯିବୁ ଗୌତମୀ ତୀର୍ଥକୁ ।
ଅଜୟନ୍ତା ମାତା ଏଥେ ଥିବେ ଦୁଇଜଣ
ଆମ୍ଭେ ଆସିବା ଯାଏ ତ ସମ୍ଭାଳ ଆପଣ ।
ଶୁଣି ବିଷ୍ଣୁକର ପଣ୍ଡା ମନରେ ତ୍ରପତ
ଯେତେକ ନିଯୋଗ ଲାଗେ ତୁଲାଇ ସମସ୍ତ ।
ଭୋଜନେ ତାହାଙ୍କୁ କରୁଥିବ ହିଁ ତୃପତି
ତୁମ୍ଭ ସକାଶେ ଲଭିଲି ପୁତ୍ର ଆଉ ଗତି ।
ଭୀମକୁ ତିଆରି ପଣ୍ଡୁ ରାଜାର ତନୟେ
ଚଳନ୍ତି ସେ ଚାରିଭାଇ ଗଉତମୀ ଯାଏ ।
ବ୍ରାହ୍ମଣ ରୂପରେ ସେହି କରନ୍ତି ଗମନ
ତୀର୍ଥେ ପ୍ରବେଶ ହୋଇଲେ ସପ୍ତତ୍ରିଂଶ ଦିନ ।
କକଡ଼ା ମାସ ଶୁକଳପକ୍ଷ ପୂର୍ଣ୍ଣ ଦିନେ
ସେହି ନଗରେ ସଂଗ୍ରାମ କରନ୍ତି ଅନ୍ୟାନ୍ୟେ ।
ପାଞ୍ଚଦିନ ଥାଉଁ ଦେଲେ ନଗରେ ଘୋଷଣ
ଯୁଦ୍ଧକୁ ଯେ ସଜ ହୁଏ ଘେନି ଧନୁ ତୃଣ ।
ଘୋଷଣା ବାରତା ଶୁଣି ଲୋକେ ଉଛବାଛ
ରଥ ଗଜ ବାଜୀ ନାହିଁ ପାଦ ଯୁଦ୍ଧ ସଞ୍ଚ ।
ସାଜନ୍ତି ଶସ୍ତ୍ରମାନେ କେ ଖଡ଼ଗ ଆଦାନେ
ଗର୍ଜନ୍ତି ଦୁର୍ଜନ ଯେହ୍ନେ ଇନ୍ଦୁର ଲୋକନେ ।
ତ୍ରିକଚ୍ଛ ଛାଡ଼ି ପିନ୍ଧନ୍ତି ବସ୍ତ୍ର ମାଲକାଛେ
ଲମ୍ବିତ କୁଡ଼ା ବାନ୍ଧନ୍ତି ତ୍ରିବେଣୀ ସୁସଞ୍ଚେ ।
ହସ୍ତରେ ଯଷ୍ଟି ଗଳାରେ ମନ୍ଦାରର ମାଳା
କେହୁ ଧୂଳିରେ ଭୂଷିତ ବିଲେପିତ କଳା ।
କର୍ଣ୍ଣରେ ଦୁଦୁରା ପୁଷ୍ପ ଚୂଳେ ରଙ୍ଗଝୁମା
ଭୀମ ପଚାରେ ପଣ୍ଡା ହୋ ଏହିରୂପ କିମ୍ପା ।

ବିଷ୍ଣୁ କର ବୋଲେ ତୁମ୍ଭେ ଶୁଣ ଅଜୟନ୍ତ
ଆମ୍ଭର ଉପର ବଂଶେ ଉଦ୍ଧାଳକ ତାତ ।
ଯଶୋବନ୍ତୀ ନାମେ ଥିଲା ତାହାଙ୍କ ବ୍ରାହ୍ମଣୀ
ଦୁଇପୁତ୍ର ଜାତ କଲେ ମନମଥ ଜାଣି ।
ଭାଗ୍ୟବର ବସୁବର ଦୁହିଙ୍କର ନାମ
ରୂପରେ ତାହାଙ୍କୁ କେହି ନୋହିବ ଯେ ସମ ।
ମକରମାସେ ସେ ଗଲେ ବୈତରଣୀ ସ୍ନାନେ
ଏକାକୀ ମହାତ୍ମା ଚାଲିଯାନ୍ତି ଘୋର ବନେ ।
ବଧିକୂଟ ନାମେ ଅଛି ଏକଇ ପର୍ବତ
ଶାନ୍ତିକ ନାମେ ଚଣ୍ଡାଳ ଏକ ତହିଁ ସ୍ଥିତ ।
ତାହାର ଦୁହିତା ନାମ ଅଟଇ ଯେ ଶ୍ରୀୟା
ବନେ ପୁରୋହିତଙ୍କୁ ଯେ ଦେଖିଲା ସୁଦେହା ।
ଭୟ ଦେଖାଇ ତାହାଙ୍କୁ ଧଇଲାକ ବଳେ
ବିଭା କରାଇଲେ ସେହି ପର୍ବତର ତଳେ ।
ଚଣ୍ଡାଳୀର ଗର୍ଭେ ମୁନି ଛାଡ଼ିଲେକ ରେତ
ସଦ୍ୟ ପୁତ୍ରେକ ତା ଗର୍ଭୁ ହୋଇଲାକ ଜାତ ।
ଏମନ୍ତେ ମୁନି ସ୍ନାନକୁ ଗମନ୍ତେ ଯେ ନିତି
ଚଣ୍ଡାଳୀ ପର୍ବତ ତଳେ ବଳେ ଧରି ଯତି ।
ଜାତ କରାଇଲା ଗର୍ଭୁ ଦଶଗୋଟି ପୁତ୍ର
ଦୁଷ୍ଟ ଆଚରଣେ ସେହୁ ହୋଇଲେ ସମର୍ଥ ।
ବ୍ରାହ୍ମଣ ବୀର୍ଯ୍ୟେ ଉତ୍ପତ୍ତି ହୋଇଲେ ସନ୍ତତି
ଡରେ ବେନି ଭାଗ କରିଦେଲେ ବ୍ରହ୍ମପତି ।
ବ୍ରାହ୍ମଣର ବେନି ପୁତ୍ର ନେଲେ ଓଡ୍ରଦେଶ
ଶିବପୁରେ ହେଲା ଦଶ ଚଣ୍ଡାଳଙ୍କ ବାସ ।
ବରଷେକ ଦ୍ୱନ୍ଦ ହୁଏ ଏ ଶ୍ରାବଣ ମାସେ
ଚଣ୍ଡାଳ ବ୍ରାହ୍ମଣଙ୍କର ପୂର୍ଣ୍ଣିମା ଦିବସେ ।
କାଲି ସଂଗ୍ରାମ ହୋଇବ ଜରା ସେ ନଗରେ
ତୁମ୍ଭେ ମଧ୍ୟ ଯିବ କାଲି ଆମ୍ଭ ସଙ୍ଗତରେ ।
କୁନ୍ତୀ ବୋଇଲେ ମୋହର ଏ ଦୁଷ୍ଟ ତନୟ
ଏହାକୁ ଯେ ଉଦବେଗ ତୁମ୍ଭେ ନ କରାଅ ।
ଅହି ନକୁଳ ନୃପତି ବ୍ୟାଘ୍ର କରୀବର
ଶ୍ୱାନ ମୁଖ ଋଷି ସିଂହ ମର୍କଟ ଆବର ।
ମହାଯୋଗୀ ମହାଦେବ ଖଳବୀର ଚଣ୍ଡ
ଏହାଙ୍କୁ ଚାଳିଲେ ନିଶ୍ଚେଁ ଉପୁଜେ ବିଖଣ୍ଡ ।
ବ୍ରାହ୍ମଣ ବୋଇଲେ ତୁମ୍ଭେ ଶୁଣ ମହାମାଈ
ପୁରୁଷ ହୋଇ ସେଦିନ ରହି ନ ପାରଇ ।
ଭୀମ କୁନ୍ତୀଙ୍କୁ ବୋଇଲେ କିଛି ହିଁ ନ କୁହ
ସଂଗ୍ରାମକୁ ଯିବାବେଳେ ମୋତେ ନ ରୁହାଅ ।
ଡରେ କୁନ୍ତଭୋଜ ସୁତା ହୋଇଲେକ ତୁନି
ଏସନକ ସମୟେ ଯେ ପାହିଲା ରଜନୀ ।

ଭୀମସେନଙ୍କୁ ଘେନିଣ ଗଲେ ବିଷ୍ଣୁ କରେ
ନେଇ ଉଭା କଲେ ବିପ୍ରସଭାର ଭିତରେ ।
ବ୍ରାହ୍ମଣେ ଦେଖିଲେ ତାର ମହାତେଜ ମୂର୍ତ୍ତି
ଚତୁଃସମ କପାଳରେ ଲେପିଲେ ଝଟତି ।
ଶତସରି ରତ୍ନମାଳା ନେଇ ଦେଲେ ହୃଦେ
ଆମ୍ଭେ ମୁକତ ହୋଇବୁ ତୁମ୍ଭ ପରସାଦେ ।
ବେଦାଙ୍ଗ ବସ୍ତ୍ର ଆବର ନେତର ପତନୀ
ଗଉରବେ ଆଭରଣ ହେଲେ ଭୀମ ଘେନି ।
ସେହି ଶିବପୁରରେ ଯେ ରାଜା କେହି ନାହିଁ
ଘରେ ଘରେ ଠାକୁର ସେ ବୋଲନ୍ତି ସବୁ ହିଁ ।
ଭୀମକୁ ପୂଜା କଲେ ଯେ ଅନେକ ଗୌରବେ
ଦୁଷ୍ଟ ପ୍ରକୃତି ସନ୍ତୋଷ ବରଣ ଉତ୍ସବେ ।
ଓଡ୍ର ଦେଶରୁ ବାହାର ହୋଇଲେ ଚଣ୍ଡାଳେ
ମାରି ଜିତୁ ଅଛନ୍ତି ସେ ରଖେ ସର୍ବକାଳେ ।
ଖାଙ୍ଗର କେଶ ତାଙ୍କର ବଦନ ବିକଟ
ପ୍ରଳୟ ଶରୀରେ ଦିଶେ ଯେହ୍ନେ ନୀଳକଣ୍ଠ ।
ଧୁସୁରା ଧୁସୁରା କଟୀ ତଟେ କାଛ ଖଞ୍ଜି
ରେ ରେ କାର ମହାନାଦେ ଆସନ୍ତି ଗରଜି ।
କୁନ୍ତ ଯଷ୍ଟି ଅସିବର ଛେଲ ଚକ୍ର କାତି
ଗଦା ମୁଦ୍‌ଗର ହସ୍ତରେ ଧରି ଓଗାଳନ୍ତି ।
ପ୍ରବଳ ଚଣ୍ଡାଳ ବଳ ବିପ୍ରମାନେ ଦେଖି
ପ୍ରହାରନ୍ତି ଶସ୍ତ୍ର ଧରି ଧର୍ମକୁ ଉପେକ୍ଷି ।
ବ୍ରାହ୍ମଣବଳ ଦେଖିଣ ଧାଇଁଲେ ଚଣ୍ଡାଳେ
ଶସ୍ତ୍ରେ ନିର୍ଜିତ ମଦିରାରସ ପାନ ଭୋଳେ ।
କଡ଼ା ମର୍ଦ୍ଦଳ ଘୁମୁରା ନିଶାଣ ଦାଉଣ୍ଡୀ
ହୁଳହୁଳି ନାଦେ ନାଟ ଖେମଟାର ମଣ୍ଡି ।
ଯଷ୍ଟି ବୁଲାଇ ଧାମନ୍ତି ସମସ୍ତ ପ୍ରଚଣ୍ଡା
କୁରୁଳି ବୋବାଳି ଦେଇ ବୁଲାଏ କେ ଖଣ୍ଡା ।
ମାର ମାର ବୋଲିଣ ସେ ଉଠିଲେ ଗରଜି
ତ୍ରାସେ ସମସ୍ତ ବ୍ରାହ୍ମଣ ପଳାଇଲେ ଭାଜି ।
ଗୋଡ଼ାଇ ପିଟନ୍ତେ ତାଙ୍କୁ କଚାଡ଼ନ୍ତି ଧରି
ରୁଧିରେ ସ୍ନାନ କରନ୍ତି ବିପ୍ର ମୁଣ୍ଡ ମୋଡ଼ି ।
ରକତେ ମଣ୍ଡିତ ଯେହ୍ନେ ଭଇରବ କାଳେ
ସେହି ପ୍ରକାରେ ଦିଶନ୍ତି ପ୍ରମତ୍ତ ଚଣ୍ଡାଳେ ।
ଅନେକ ଦ୍ୱିଜ ମାଇଲେ ବିକଟ ଦୂରାକେ
ଅଜୟନ୍ତ ତୁନି ହୋଇ ରହିଛି ତରକେ ।
ବିଷ୍ଣୁକର ଭୁଜ ଧରିଛନ୍ତି ବାମ କରେ
ବିଷ୍ଣୁ କରକୁ ବୋଇଲେ ନ ପଳାଅ ଦୂରେ ।
କଟାଳ ବେଳରେ ରହି ଆମ୍ଭେ କି କରିବା
ଚାଲ ଏଥୁ ଆମ୍ଭେ ଦୁହେଁ ପଳାଇଣ ଯିବା ।

ସଂଗ୍ରାମକୁ ଯେ ବହୁତ ମନୁଷ୍ୟ ଅଇଲେ
କୃତାନ୍ତକ ଶାସ୍ତି ଦେଖି ଭାଙ୍ଗି ପଳାଇଲେ ।
ଜିଣିଲେ ଉତ୍ସବ ରଣେ ମଲେ ସ୍ୱର୍ଗେ ବାସ
କ୍ଷତ୍ରିୟ କୁଳକୁ ବଡ଼ ଦୁର୍ଲ୍ଲଭ ଏ ରସ ।
ଭୀମ ବୋଇଲେ ସୁସ୍ଥିରେ ବସ ହୋ ପଣ୍ଡାଏ
ଆସନ୍ତୁ ଚଣ୍ଡାଳବଳ ଆମ୍ଭ ପାଖ ଯାଏ ।
ବିଷ୍ଣୁକର ବୋଇଲେ ଯେ ଆମ୍ଭେ ପ୍ରତିବର୍ଷ
ଭାଙ୍ଗି ପଳାଉ ସମସ୍ତ କରନ୍ତି ସେ ଧ୍ୱଂସ ।
ଥୋକାଏ ନାରୀ ନିଅନ୍ତି ଥୋକାଏ ସେ ଧରି
ଛାଡ଼ି ଦିଅନ୍ତି ଥୋକାଏ ସାତବେଣ୍ଟି କରି ।
ନଗର ପୋଡ଼ନ୍ତି ଧନ ନିଅନ୍ତି ସେ ହରି
ସୁନ୍ଦରୀ ବ୍ରାହ୍ମଣୀ ଦେଖି ବଳେ ନ୍ୟନ୍ତି ଧରି ।
ଏମନ୍ତ ପ୍ରକାରେ ହେଉଅଛି ସର୍ବକାଳେ
ତାହାଙ୍କ ସମରେ ସରି ନୋହୁ ଆମ୍ଭ ବଳେ ।
ଅଜୟନ୍ତ ବୋଇଲେ ହେ ଧୀର ହୋଇ ରହ
ମୋର ଦେହ କମ୍ପୁଅଛି ଏମନ୍ତ ନ କହ ।
ଯହୁଁ ବଳେ କଟାଳିଲେ ପ୍ରବଳ ଚଣ୍ଡାଳେ
ବିଷ୍ଣୁକରଙ୍କ ଦୟିନୀ ଭୀମ ପାଦ ତଳେ ।
ଚାଲ ଏଥୁ ପଳାଇବା ହେ ଦ୍ୱିଜ ଗୋସାଇଁ
ତୁମ୍ଭେ ଏଥେ ଆପେ ନାଶଯିବ ହୋ କିମ୍ପାଇଁ ।
ମୋତେ ସମର୍ପଣ କରି ଭାଇମାନେ ଗଲେ
ମାତା ମଧ୍ୟ ଆସିବାର ବେଳେ ନିରୋଧିଲେ ।
ଭୀମସେନ ବୋଇଲେ ହେ ଥାଅ ସ୍ଥିରହୋଇ
ଏହିକ୍ଷଣି ମାରିବି ମୁଁ ଆଜ ଯିବେ କାହିଁ ।
ବିଷ୍ଣୁ କର ଭାଳେ ଜଣାଗଲା ଏହା ମନ
ଧୁମୁସା ଶରୀର ଅଟେ ପର୍ବତ ସମାନ ।
ଡରେ କେହି ନ ଆସିବେ ଏହାଙ୍କ କତିକି
ମୋତେ ପେଲିଦେଇ ଯିବ କଟାଳ ଏ ଦେଖି ।
ମୋତେ ସେ ମାରିବେ ଏତ ପଳାଇଣ ଯିବ
ମୋହର ବାଡ଼ି ବୃତ୍ତି ଏ ମାଡ଼ିଣ ବସିବ ।
ନିଶ୍ଚୟ ଏ ଅଜୟନ୍ତ କଲା ପାପମତି
ଖଳଲୋକ ସଙ୍ଗେ ମୁହିଁ କଲଇଁ ପୀରତି ।
ଦନ୍ତରେ ତିରଣ ଘେନି ହୁଅଇ ଦଇନି
ଛାଡ଼ ଛାଡ଼ ପଣ୍ଡା ଆହେ ଆମ୍ଭ କର ବେନି ।
ଏହା ବିଚାରୁ ଚଣ୍ଡାଳେ କଟାଳିଲେ ଆସି
ଅନେକ କୁନ୍ତ ମୁଦ୍‌ଗର ନାରାଚ ବରଷି ।
ସହସ୍ରେକ ବାଣ ଭୀମ ଶିରରେ ନିମଜ୍ଜି
ରାଗେ ଭୀମସେନ ତହୁଁ ଉଠିଲା ଗରଜି ।
ଯେସନେ ବିଶାଳ ଦିଶେ ବିନ୍ଧ୍ୟ ମହାଗିରି
ରାଗେ ବୃକୋଦର ବୃକ୍ଷ ଉପାଡ଼େ ସେପରି ।

ବୁଲାଇଣ ତମ୍ବା ପାତ୍ର ପ୍ରାୟ ବେନି ତୋଳା
କୋପେ ଗରଜି ଉଠିଲା ପବନର ବଳା ।
ବ୍ରହ୍ମାଣ୍ଡ କମ୍ପଇ ତାର ପାଦ ନାଦଘାତେ
ତରସ୍ତ ହୋଇ ରହିଲେ ଶୁଣିଣ ପୁରନ୍ତେ ।
ବୃକ୍ଷ ବୁଲାଇ ବୁଲାଇ ପିଟିଲା ପାବନି
ଭୟେ ଭାଙ୍ଗି ପଳାଇଲେ ଚଣ୍ଡାଳ ବାହିନୀ ।
ଗୋଡ଼ାଇ ମାଇଲା ତାଙ୍କୁ ବୀର ଭୀମସେନ
ଯେସନେ ଲୋଟନ୍ତେ ମହାବାତେ ରମ୍ଭାବନ ।
ପାଦତଳେ କଲା ରକ୍ତମଡ଼ାକୁ କର୍ଦ୍ଦମ
ସମରେ କି ବିଜେ କଲା କାଳାନ୍ତକ ଯମ ।
ପିଟଇ ସେ ବୃକୋଦର ବଜ୍ର ଜାଣି ଗୋଡ୍ରେ
ପୁର ଛାଡ଼ି ପଳାଇଲେ ସର୍ବେ ଛିନ୍ନଛତ୍ରେ ।
କାହାକୁ ମୁଥେ କାହାକୁ ଚାପୁଡ଼େକ ମାରି
ମୁଥାଘାତେ ପଡ଼ନ୍ତି କେ ଭୂମିର ଉପରି ।
ଜନ୍ମକାଳେ ଭାଙ୍ଗିଲା ଯେ ଶତଶୃଙ୍ଗ ଗିରି
ମାନବ ମାତ୍ରେ ହୋଇବେ କାହିଁ ତାକୁ ସରି ।
ଦଣ୍ଡଭଗ୍ନ ହେବା ଦେଖି ଧାଇଁଲେ ବ୍ରାହ୍ମଣେ
ଗୋଡ଼ାଇ ମାରିଲେ ତହିଁ ନ ଧଇଲେ ଜଣେ ।
ସମସ୍ତ ନାଶିଲେ ଯେତେ ବାଳବୃଦ୍ଧ ସ୍ତିରୀ
ଅନେକ ଧନବସନ ଆଣିଲେକ ହରି ।
ବାଳକଙ୍କୁ କଚାଡ଼ିଲେ ଧରି ଦ୍ୱିଜବରେ
ଜଣେ ନ ରଖିଲେ ସେହି ଓଡ୍ରଦେଶ ପୁରେ ।
ଆସ୍ଥାନେ କରି ବସିଲେ ଗନ୍ଧନଦୀ କୂଳେ
ମେଳା ହୋଇଲା ଅନନ୍ତ ବଟବୃକ୍ଷ ତଳେ ।
ଦନ୍ତରେ ତିରଣ ଘେନି ସର୍ବ ଦ୍ୱିଜବରେ
ତ୍ରାହି ତ୍ରାହି ବୋଲି ପଡ଼ି ଭୀମଙ୍କ ପୟରେ ।
ଅନେକ କାଳର ଏହି ଅଟେ ମହାବଳ
ବ୍ରାହ୍ମଣଙ୍କୁ ଉଦ୍ଧାରିଲୁ କରିଣ ନିର୍ମୂଳ ।
ପ୍ରତିଦିନ ଅବନୀରେ ବ୍ରାହ୍ମଣ ଚଣ୍ଡାଳ
ବସିଥିଲୁ ଆମ୍ଭେମାନେ ହୋଇ ଏକ ମେଳ ।
ଆମ୍ଭଙ୍କୁ ତୁ ରକ୍ଷାକଲୁ ଦୁଷ୍ଟଜନ ନାଶି
ଏ ରାଜ୍ୟେ ସ୍ୱାମୀ ତୁ ଅଭିଷିକ୍ତ ହୁଅ ବସି ।
ଆମ୍ଭର ଏ ରାଜ୍ୟେ ସ୍ୱାମୀ ହେଲୁ ତୋତେ ପାଟ
ଏ ବେନି ନଗରେ ତୁହି ହେଲୁ ସମରାଟ ।
ଏହି ଗନ୍ଧନଦୀ ନାମେ ଅଟଇ ପ୍ରସିଦ୍ଧି
ଅନନ୍ତ ବଟ ଏ ଅଛି ବଇକୁଣ୍ଠ ଭେଦି ।
ସମସ୍ତ ବ୍ରାହ୍ମଣେ ବେଦ ଅଧ୍ୟୟନ କଲେ
ମୂର୍ଦ୍ଧାଭିଷେକ କରିଣ ପାଟେକ ବାନ୍ଧିଲେ ।
ଓଡ୍ରଦେଶେ ଶିବପୁରେ ଭୀମ ଅଧିକାରୀ
ବିଷ୍ଣୁକରଙ୍କୁ ଅମାତ୍ୟପଣେ ଦେଲେ ଶାଢ଼ୀ ।
ଅଜୟନ୍ତ ନାମେ ଭୀମ ହେଲେ ନୃପବର
ରାଜବିଧି ଯେ ନିଯୋଗ ଆଦି ସୂପକାର ।
ପାତ୍ର ଅମାତ୍ୟ ମନ୍ତ୍ରୀ ଯେ ମହାପାତ୍ର ଜେନା
ପଦମାନ ଦେଇ ଭୀମ ଦେଲେ ଶାଢ଼ୀ ବାନା ।
ବାସ ସମାର୍ଜ୍ଜନ କଲେ ବିଷ୍ଣୁକର ପାତ୍ରେ
ନଗରେକ ଭିଆଇଲେ ଲାଗି ଦିବା ରାତ୍ରେ ।
ନଗର ପଡ଼ିଶା ସେହି ବିଷ୍ଣୁ କର ଘରେ
କୁନ୍ତୀଦେବୀ ରହିଛନ୍ତି ସେହି ଉଆସରେ ।
ସହସ୍ରେକ ସୂପକାର ସହସ୍ରେକ ଚୂଲ୍ଲୀ
ଭୀମସେନ ବିଚାରନ୍ତି ଏବେ ସୁସ୍ଥ ହେଲି ।
ଗଡ଼ ନଗର ଗ୍ରାମକୁ ଦେଖନ୍ତି ସେ ନିତି
ଆଣନ୍ତି ଧନରତନ ପରସୀମା ଜିତି ।
କକଡ଼ା ଆବର ସିଂହ କନ୍ୟା ତୁଳା ବିଛା
ନାନାଦି ସମ୍ଭାରେ ରାଜ୍ୟେ ହୋଇଲେ ସୁରକ୍ଷା ।
ବନୁଯାଇ ଆଣନ୍ତିସେ ଗଜବର ଧରି
ଶାର୍ଦ୍ଦୁଳ ଓଟ ହରିଣ ଆବର ମୃଗାରି ।
ନିଶାଣ ଟମକ ବୀରତୁରୀ ନିତି ବାଜେ
ପଞ୍ଚ ଅକ୍ଷୌହିଣୀ ବଳ ସମାରୋହେ ସାଜେ ।
ଅନେକ ସାଧିଲେ ବନଗିରି ଭୂମିଖଣ୍ଡ
ଆସ୍ଥାନେ ଖଟନ୍ତି ଆସି ନିତ୍ୟ ପାରିଦଣ୍ଡ ।
ଅନେକ ବିପ୍ର କରନ୍ତି ଆସି ପାଦପୂଜା
ବନ ନଗର ଦେଶେ ସେ ହେଲା ମହାରାଜା ।
ମହାସମାରୋହ କରି ସାଜଇ ବାହିନୀ
ଭାଳେ ହସ୍ତିନା ବାହିବ ଅଙ୍ଗବଳ ଘେନି ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ମନୁରାୟ
ଏ ମହାଭାରତ ଶୁଣି ପାପ କର କ୍ଷୟ ।
ସଂକଳ୍ପ କରି ଶୁଣିବେ ଯେବେ ନର ନାରୀ
ପୁତ୍ର ପୁତ୍ରୀ ଉପୁଜିବେ ହେବ ସୁଖଶିରୀ ।
ମଲେ ବୈକୁଣ୍ଠରେ ବାସ ଜୀବିତେ ସମ୍ପଦ
ଭୋ ସାଧୁଜନେ ଶୁଣିବା ପୁରାଣ ସମ୍ପଦ ।
ଜୟ ଶାରଳା ଝଙ୍କଡ଼ପୁରେ ବାସ ତୋର
ଜୟ ମାଗୋ କାତ୍ୟାୟିନୀ ବିନାଶି ଅସୁର ।
ଜଗତେ ମହାକୀରତି ସ୍ଥାପିଅଛୁ ତୁହି
ତୋହର ପାଦେ ଶରଣ ସର୍ବଦା ପଶଇ ।
ତୋ କୃପା ହେତୁ ଲେଖୁଛି ଏ ମହାଭାରତ
ଶାରଳା ଦାସ ମୋ ନାମ ଲୋକରେ ବିଖ୍ୟାତ ।

—୦—

## ବିଷ୍ଣୁକର ପଣ୍ଡାଙ୍କର ଶିବପୁରେ ରାଜ୍ୟଲାଭ

ଅଗସ୍ତି ବୋଇଲେ ଆହୋ ମନୁ ଦଣ୍ଡଧର
ଏ ମହାଭାରତ ଶୁଣି ପାପ କ୍ଷୟ କର ।
ଗଉତମୀ ତୀର୍ଥେ ଗଲେ ପଣ୍ଡୁର ନନ୍ଦନେ
ରାତ୍ରେ ରହନ୍ତେ ଦିବସେ ରହୁଥାନ୍ତି ବନେ ।
ସିଂହମାସ ଶୁକ୍ଳପକ୍ଷ ଅଷ୍ଟମୀର ଦିନେ
ରାତ୍ର ପ୍ରହରକେ ଥାଉଁ ମିଳି ତୀର୍ଥସ୍ଥାନେ ।
ରାଜାମାନେ ବିଜେ କରିଅଛନ୍ତି ସମସ୍ତେ
ଜରା ନାରକା ଯେ କାଳଦମନ ସହିତେ ।
ବାଣାସୁର ବକ୍ର ନାଭି ଶମ୍ବର ନୃପତି
କାଶୀ ନୃପତି ନିର୍ଝର ଦେଶ ଗଣପତି ।
ମାଳବୀ ବିରାଟ କାଞ୍ଚି ରାଜା ଭଇରବ
ଭୀଷ୍ମ ଦ୍ରୋଣ ଅଶ୍ୱଥାମା କର୍ଣ୍ଣ କଉରବ ।
ରାତ୍ରକାଳେ ଏ ସମସ୍ତେ ରାଜାଙ୍କୁ ଦେଖିଲେ
ରାତ୍ର ଥାଉଁ ସ୍ନାନ କରି ପିଣ୍ଡ ଦାନ ଦେଲେ ।
ବ୍ରାହ୍ମଣ ତୋଷି ଗୁପତ ହୋଇଣ ରହିଲେ
ଦିବସରେ ଆଉ ସେହି ତୀର୍ଥେ ନ ରହିଲେ ।
ଏମନ୍ତ ରହିଲେ ପାଞ୍ଚଦିନ ପାଞ୍ଚ ରାତି
ସ୍ନାନ ତରପଣ ତହିଁ କରନ୍ତି ପାହାନ୍ତି ।
ଦିବସରେ ରହିଥାନ୍ତି ଗହନ କାନନେ
ଅନେକ ଯେ ଦାନ ପୁଣ୍ୟ କଲେ ରାଜାମାନେ ।
ଚାରି ଊଣା ଲକ୍ଷେ ରାଜା ଅଛନ୍ତି ସମସ୍ତେ
କରେ ଅକ୍ଷତ ଶ୍ରୀ ଫଳ ଘେନି ପୁରୋହିତେ ।
ସମାହିତ ସ୍ଥାନେ ମିଳିକରି ପ୍ରଣିପାତ
କରପତ୍ର ଯୋଡ଼ି କହେ ଦ୍ରୁପଦ ନୃନାଥ ।
ସାବଧାନ ହୋଇ ଏବେ ଶୁଣ ସର୍ବରାୟେ
ମୋହର ଘରେ ଅଛଇ ଦୁହିତା ଗୋଟିଏ ।
ମହାମନ୍ତ୍ରେ ଅନଳରୁ ଜାତ ଯାଜ୍ଞସେନୀ ।
ସ୍ୱୟମ୍ବର କରିବି ମୁଁ ରାଜାଗଣ ଘେନି
ଅପୂର୍ବ ଲାଖ ଏକ ମୁଁ କରିବି ପ୍ରଦାନ ।
ମକର ଶୁକଳପକ୍ଷ ଦ୍ୱିତୀୟାର ଦିନେ
ପ୍ରବେଶ ହୋଇବ ଯାଇ ମୋହର ଭୁବନେ ।
ସମସ୍ତଙ୍କୁ ଏ ଅକ୍ଷତ ଦେଇ ମୁହିଁ ବରି
ସ୍ୱରୂପ ଆଜ୍ଞା ଯେ ମୋତେ ଦେବ ନିରୀଧାରୀ ।
ରାଜାଏ ବୋଇଲେ ଏହି ଅଟେ ମହାତୀର୍ଥ
ଧର୍ମ ନିମନ୍ତେ ସମସ୍ତେ ଆସିଅଛୁ ଏଥ ।
ଏଥେ ସତ୍ୟକରି କେହ୍ନେ ସଭାକୁ ନ ଯିବୁ
ଯେ ନ ଯିବ ଅବରଣ ତାହାକୁ କରିବୁଁ ।
ଅଲଙ୍ଘିତ ଅଟଇ ଯେ ଏ ଆମ୍ଭ ନିୟମ
ଏହା ଯେ ଲଙ୍ଘିତ ନାଶ ଯିବ ତୀର୍ଥ ଧର୍ମ ।
ନିମନ୍ତ୍ରଣ ବରଣରେ ଏହି ଧର୍ମ ଅଛି
ନ ଗଲେ ତ ରହିବ କି ତାର କାର୍ଯ୍ୟ କିଛି ।
ଭୂରିଶ୍ରବାଙ୍କ ଛାମୁରେ ଦ୍ରୁପଦ ଭୂପତି
ବୋଲେ ପାଣ୍ଡବେ କେଣିକି ଗଲେ ବୃଦ୍ଧକ୍ଷତ୍ରୀ ।
ଭୂରିଶ୍ରବା ପ୍ରତି ବାକ୍ୟ ଦୁର୍ଯ୍ୟୋଧନ କୁଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।
ପୁରୋଚନ ପଣ୍ଡା ଯାଇ ନିର୍ମାଣିଲା ପୁର
ସେ ପୁରେ ଦହନ ହେଲେ ପଣ୍ଡୁର କୁମର ।
ନିଷ୍ଠୁର ବଚନ ଶୁଣି ଭୂରିଶ୍ରବା ତହୁଁ
ପ୍ରାଣ ଉତ୍ସର୍ଗ ହେଲା କି ନୃପତିର ଦେହୁଁ ।
ରାଜାମାନଙ୍କୁ ନିମନ୍ତ୍ରି ଦ୍ରୁପଦ ରାଜନ
ପାଞ୍ଚାଳ ଦେଶକୁ ଆସେ ଘେନି ନିଜ ସୈନ୍ୟ ।
ବ୍ୟାସଙ୍କୁ ଦେଖିଲା ସେହି ଗଉତମୀ କୂଳ
ପୂଜା ବିଧିକର ବୋଲେ ଦ୍ରୁପଦ ଭୂପାଳ ।
ଭୋ ବ୍ୟାସ ଦ୍ରୌପଦୀ ଜାତ ଅର୍ଜୁନ ନିମନ୍ତେ
ପାଣ୍ଡବେ କାହିଁ ଅଛନ୍ତି କହିବାକ ମୋତେ ।
ମୁହିଁ ଯେ ପୁଚ୍ଛିଲି ଭୂରିଶ୍ରବା ମହାତ୍ମାଙ୍କୁ
ସମସ୍ତେ ଅଛ ନ ଦେଖେ ଏଥେ ପାଣ୍ଡବଙ୍କୁ ।
ବୋଇଲେ ବାରୁଣାବନ୍ତେ ପାଣ୍ଡବେ ଯେ ଥିଲେ
ଜତୁ ଗୃହ ଦାହ ସଙ୍ଗେ ସର୍ବେ ନାଶଗଲେ ।
ଚଉଦ ବରଷ ହେଲା ପାଣ୍ଡବେ ମରିବା
ବୋଇଲେ ଏମନ୍ତ ବାକ୍ୟ ମୋତେ ଭୂରିଶ୍ରବା ।
ବ୍ୟାସ ବୋଇଲେ ରାଜା ତୁ ଶୁଣିଲୁ ଏମନ୍ତ
ଦ୍ରୌପଦୀଙ୍କୁ ଏବେ କହ କରିବୁ କେମନ୍ତ ।
ମୁହିଁ ବୋଇଲି ଏବେ ତୁ ସ୍ୱୟମ୍ବର କର
ଆମ୍ଭେ ଲାଖ ପାତିଦେବା ସଭାରେତୋହର ।
ଅର୍ଜୁନ ଥିଲେ ଆସିବ କରିବ ତ ବିଦ୍ଧ
ଶୁଣି ସାନନ୍ଦ ହୋଇଲେ ନୃପତି ଦ୍ରୁପଦ ।
ଆବର ବୋଇଲେ ଏବେ ଶୁଣିବା ଗୋସାଇଁ
ରାଜାଙ୍କୁ ଯେ ନିମନ୍ତ୍ରଣ କରି ଗଲି ମୁହିଁ ।
ମକର ଶୁକଳ ପକ୍ଷେ ଯିବ ତୁମ୍ଭେ ତହିଁ
ତୁମ୍ଭର ଯିବାକୁ ମୁହିଁ ବାଟ ଥିବି ଚାହିଁ ।
ତୁମ୍ଭେ ଥାଇଣ ଭିଆଇ ଦେବଟି ସମସ୍ତ
ତୁମ୍ଭେ ପ୍ରଦାନ କରିବ ତୁମ୍ଭେ କଲ ଜାତ ।
ବାହୁଡ଼ଇ ଦ୍ରୁପଦ ଯେ ସମଦଣ୍ଡ ଘେନି
ଯୁଧିଷ୍ଠିର ପଛେ ଗଲେ ଘେନି ଭାଇ ତିନି ।
ଦ୍ରୁପଦ ମିଳିଲେ ଯାଇ ଆପଣା ଭୁବନେ
ଯେ ଯାହାର ଦେଶ ଗଲେ ତହୁଁ ରାଜାମାନେ ।

ପାଣ୍ଡବେ ମିଳିଲେ ଓଡ୍ରଦେଶେ ଶିବପୁରେ
ଦେଖିଲେ ରାଜ୍ୟେ ପୂରିଛି ବହୁତ ସମ୍ଭାରେ ।
ରଥ ଗଜ ଅଶ୍ୱ ସୈନ୍ୟ ଅନେକ ପଦାତି
କେଉଁ ରାଜା ଅବା ମାଡ଼ି ବସିଲେ ଏ ପୃଥ୍ୱୀ ।
ଏତେ ବିଚାରି ରହିଲେ ସେହି ବନବାସେ
ରାଜ୍ୟ ଭିତରକୁ ଭୟେ ନ ଗଲେ ଦିବସେ ।
କଟକ ଭିତରକୁ ସେ ଗଲେ ନିଶାରାତି
ଶୂନ୍ୟ ମନ୍ଦିରେ ଅଛନ୍ତି ଏକା ଦେବୀ କୁନ୍ତୀ ।
ବାହାରେ ରହି ନୃପତି ନ ଗଲେ ଭିତରେ
ଅଜୟନ୍ତ ଅଜୟନ୍ତ ଡାକନ୍ତି ଦୁଆରେ ।
ଭିତରେ ଥାଇ ଶୁଣିଲେ କୁନ୍ତୀପୁତ୍ର ତୁଣ୍ଡ
ବାହାରିଲେ ଦେବୀ କରେ ଘେନି ପାଣିଭାଣ୍ଡ ।
ମାତାଙ୍କ ଚରଣେ ପ୍ରଣିପାତ ଚାରି ଭାଇ
ଯୁଧିଷ୍ଠି ପୁଚ୍ଛିଲେ ମାଗୋ ଭୀମ ଅଛି କାହିଁ ।
ମାତାଏ ବୋଇଲେ ବାବୁ ଆସ ଭିତରକୁ
ସୁସ୍ଥହୋଇ ବସ ବାବୁ କହଇ ତୁମ୍ଭକୁ ।
ସ୍ନାନ ଶୌଚବନ୍ତ ହୋଇ ପଶିଲେ ଭିତରେ
ରନ୍ଧନ କଲେକ ଦେବୀ ଯାଇଣ ସତ୍ୱରେ ।
ଭୋଜନ ସାରିଣ ସେହି ଆଚମନ କଲେ
ସୁସ୍ଥ ହୋଇଣ ବସନ୍ତେ ଜନନୀ କହିଲେ ।
ବିଷ୍ଣୁକର ପଣ୍ଡା ଏହି ରାଜ୍ୟେ ମହାମନ୍ତ୍ରୀ
ଭୀମସେନ କାଳବେର ନାମେ ଚକ୍ରବର୍ତ୍ତୀ ।
ଅନେକ ବନ ନଗର ମାରିଣ ଘେନିଲା
ରଥ ଗଜ ଅଶ୍ୱ ପାଞ୍ଚ ଅକ୍ଷୌହିଣୀ କଲା ।
ଯୁଧିଷ୍ଠି ମଣିଲେ ଆମ୍ଭେ ଗଲୁ ସେ ବୃଷଭେ
ମିଥୁନ କର୍କଟ ସିଂହ କନ୍ୟା ତୁଳା ଏବେ ।
ପାଞ୍ଚମାସ ହୋଇଲାକ ଏସନ ଚରିତ
ଦୁର୍ଯ୍ୟୋଧନ ତୁଲେ ଯୁଦ୍ଧ କରନ୍ତା ଯଥାର୍ଥ ।
ତୁ ଯେ ଏକା ଏଥେ ଗୋ ରହିଅଛ ମାତା
ତୁମ୍ଭଙ୍କୁ ନ କଲା ଦୟା ମନେ ନାହିଁ ଚିନ୍ତା ।
କୁନ୍ତୀଦେବୀ ବୋଇଲେ ମୁଁ କେବଣ ଲକ୍ଷଣେ
ଜାତ କଲି ଶତ୍ରୁ ପ୍ରାୟ ମଣେ ଅନୁକ୍ଷଣେ ।
ଯୁଧିଷ୍ଠି ବୋଇଲେ ଏବେ କେମନ୍ତ କରିବା
ଦ୍ୱାରେ ଯାଇ ଚାଲ ଏବେ କଥାନ୍ତ ହୋଇବା ।
ପୁତ୍ର ଘେନି ବୋଲେ କୁନ୍ତଭୋଜର କୁମାରୀ
ଦ୍ୱାର ନାୟକମାନଙ୍କୁ କଲ୍ୟାଣ ଯେ କରି ।
ତୀର୍ଥବାସୀ ବ୍ରାହ୍ମଣ ଯେ ଆମ୍ଭେ ଜଣ ଚାରି
ଆମ୍ଭଙ୍କୁ ଦର୍ଶନ କରାଇବ ପ୍ରତିହାରୀ ।
ଦ୍ୱାରପାଳ ବୋଲେ ଏଥେ ଦଣ୍ଡେ ରହିଥିବା
ଦେବାର୍ଚ୍ଚନ ବେଳେ ଦରଶନ କରାଇବା ।

ଏତେ ବୋଲି ରୁହାଇଣ ଗଲେ ଦୂତ ଖରେ
କରଯୋଡ଼ି କହନ୍ତି ଯେ ରାଜାଙ୍କ ଛାମୁରେ ।
ଆହେ ଦେବ କାଳବର ବୀର ଚକ୍ରବର୍ତ୍ତୀ
ପଶ୍ଚିମ ସୋମ ରାଷ୍ଟ୍ରର ବିପ୍ର ଆସିଛନ୍ତି ।
ଚାରିଜଣ ତାହାଙ୍କର ମାତା ତାଙ୍କ ତୁଲେ
ନାମ ଆଦ୍ୟେ ଜୟଦେବ ଚାରିହେଁ କହିଲେ ।
ସେହି ପୁଣି ଯାଇଥିଲେ ଗୌତମୀ ତୀର୍ଥକୁ
ଦର୍ଶନ କରି ଲୋଡ଼ନ୍ତି ଆସିବେ ଛାମୁକୁ ।
ମହାମନ୍ତ୍ରୀ ବିଷ୍ଣୁ କର କହିଲେ କର୍ଣ୍ଣରେ
ତୁମ୍ଭର ସେ ଭାଇମାନେ ଆସନ୍ତୁ ବେଗରେ ।
ଯୁକତେ ସେ ସହୋଦର ପୁଣି ତୀର୍ଥବାସୀ
ବଦନ ଚାହିଁଲେ ନାଶଯିବ ପାପରାଶି ।
ଭୀମସେନ ବିଚାରଇ ମନେ ମନେ ଗୁଣି
ବନେ କନ୍ଦମୂଳ ନେଇ ଖୁଆଇବେ ପୁଣି ।
ଭୋ ସ୍ୱାମୀ କେମନ୍ତେ ଆଜ୍ଞା ପୁଚ୍ଛ ତଥ୍ୟ କରି
ରାଗେଣ ଚାହିଁଣ କାଳଚକ୍ର ଦଣ୍ଡଧାରୀ ।
ଭୟ ପାଇ ପଳାଇଲେ ଦ୍ୱାରପାଳମାନେ
ପ୍ରବେଶ ହେଲେ ଯୁଧିଷ୍ଠି ଦେବ ସନ୍ନିଧାନେ ।
ପଣ୍ଡାଏ ଠାକୁରଙ୍କର କୋପ ଯେ ତୁମ୍ଭଙ୍କୁ
ଆଜ୍ଞା ନୋହିଲା ତୁମ୍ଭଙ୍କୁ ଛାମୁକୁ ନେବାକୁ ।
ଆବର ଆମକୁ କୋପ କଲେ ସେ ବହୁତ
ତୁମ୍ଭେ ଯାଇଥିଲେ ପରାଭବ ପାଇଥାନ୍ତ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣରେ ଅର୍ଜ୍ଜୁନ
ଦୁଷ୍ଟଜନ ହୁଡ଼େ ବାବୁ ସାଧୁର ବଚନ ।
ଆମ୍ଭ ତୁଲେ ପାଉଥିଲା ସେହି ବଡ଼ ଦୁଃଖ
ରାଜା ହୋଇଅଛି ରାଜ୍ୟେ ପାଇ ବଡ଼ ସୁଖ ।
ଏତେକ ବିଚାରି ଘୁଞ୍ଚିଗଲେ ଦେବ ଧର୍ମେ
ବାହୁଡ଼ି ବନସ୍ତେ ଯାଇ ପଶିଲେ ସ୍ୱକର୍ମେ ।
ଉତ୍ତରୀ ପଇତା ଘେନି ସୁମନ୍ତ ପ୍ରୋହିତ
ଭୀମସେନଙ୍କ ତହିଁ କି ଯାନ୍ତି ନିତ୍ୟ ନିତ୍ୟ ।
ଦିନେ ମିଶି ମିଳିଲେ ଯେ ଯୁଧିଷ୍ଠି ଛାମୁର
ଭୀମସେନ ନାହିଁ ବାବୁ ତୁମ୍ଭ ସଙ୍ଗତର ।
ଯୁଧିଷ୍ଠି ବୋଇଲେ ସେହି ଆମକୁ ଉପେକ୍ଷି
ଏହି ଶିବପୁରେ ଭୀମ ରାଜା ହୋଇଅଛି ।
ଆମ୍ଭର ଏ ବେଶ ଦେଖି ନ ଆସିଲା କତି
ଶୁଣି ହସିଲେ ସୁମନ୍ତ ମହା ବ୍ରହ୍ମଯତି ।
ତୁମ୍ଭେମାନେ ବସିଥାଅ ଏହିଠାରେ ପୁଣ
ଭୀମକୁ ଘେନିଣ ଆମ୍ଭେ ଆସିବୁ ଏକ୍ଷଣ ।
ଯୁଧିଷ୍ଠିଙ୍କୁ ସମ୍ବୋଧିଣ ଗଲେ ପୁରୋହିତେ
ପଇତା ଉତ୍ତରୀ ନେଇ ଲଗାଇଲେ ଗାତ୍ରେ ।

ପୁରୋହିତ ବୋଇଲେ ତୁ ଅଟୁ ଏଡ଼େ ମୂର୍ଖ
ଯୁଧିଷ୍ଠିଙ୍କୁ ଉପେକ୍ଷିଣ କରଭୋଗ ସୁଖ ।
ଭୀମସେନ ବୋଲେ ତୁହି ରହିଥାଅ ସିନା
ହସ୍ତିନା ଭୁବନୁ ମୁହିଁ ଥରେ ଆସେ କି ନା ।
ଧୃତରାଷ୍ଟ୍ର ପୁଅକୁ ମୁଁ ମାରିଆସେ ରଣେ
ତେବେ ମୁଁ ହେବି ଯୁଧିଷ୍ଠି ସଙ୍ଗେ ସିନା ଜଣେ ।
ସୁମନ୍ତ ବୋଇଲେ ସେହି ହସ୍ତିନାରେ ନାହିଁ
ଦ୍ରୁପଦର ଭୁବନକୁ ଗଲେ ଥାଟ ନାହି
ଦ୍ରୁପଦ ରାଜନ କରିଅଛି ସ୍ୱୟମ୍ବର
ଲକ୍ଷେକ ନୃପତି ରୁଣ୍ଡ ହୋଇବେ ତା ପୁର ।
ରାଧା ଚକ୍ର ମହାଲାଖ ବିନ୍ଧିବ ଫାଲଗୁନି
ତୁମ୍ଭକୁ ପ୍ରାପତ ହେବ କନ୍ୟା ଯାଜ୍ଞସେନୀ ।
ଅନେକ କୌତୁକ ଚାହିଁ ଦେବ ରଣରଙ୍ଗ
ତୁ ଏବେ ଯାଅରେ ବାବୁ ଯୁଧିଷ୍ଠିଙ୍କ ସଙ୍ଗ ।
ଶୁଣିଣ ସାନନ୍ଦ ହେଲା ଭୀମ ନରପତି
ପାଞ୍ଚାଳଦେଶେ ଭେଟିବା ଆମ୍ଭେ କୁରୁପତି ।
ଭୀମ ବୋଇଲାକ ରାଜ୍ୟ ଲୋକଙ୍କୁ ଯେ ରାଇ
ରାଜା ହୋଇ ପୁତ୍ର ଭାର୍ଯ୍ୟା ମୋର କିଛି ନାହିଁ ।
ମୁହିଁ ପୁଣି ଯିବି ଏବେ ପ୍ରୟାଗ ତୀର୍ଥକୁ
ବିଷ୍ଣୁ କର ପଣ୍ଡାରାଜା ହୋଇବେ ରାଜ୍ୟକୁ ।
ଏ ସୁମନ୍ତ ପୁରୋହିତ ଆଜ୍ଞା ଅବଧାରୀ
ସୁମନ୍ତ ବୋଇଲେ ବିଷ୍ଣୁକର ଦଣ୍ଡଧାରୀ ।
ଶୁଣ ହେ ପଣ୍ଡିତମାନେ ଚିତ୍ତେ ସାବଧାନେ
ସମସ୍ତ ଫଳ ମିଳଇ ମହତ ଦର୍ଶନେ ।
ବିଷ୍ଣୁକର ପଣ୍ଡା ରାଜା ହୋଇବେ ରାଜ୍ୟକୁ
ସାଧୁ ଦରଶନେ ଏତେ ସୁଫଳ ଦ୍ୱିଜକୁ ।
ଅପୁତ୍ରିକ ହୋଇ ନଗ୍ର ବାହାରେ ସେ ଥିଲା
କୁନ୍ତୀ ଦେବୀଙ୍କ କଲ୍ୟାଣେ ପୁତ୍ର ହିଁ ପାଇଲା ।
ସଭାରୁ ବାହାର କରି ପନ୍ତିରେ ନ ଗଣି
ଅନ୍ତେ ହୋଇଲା ସବୁରି ପରେ ନୃପମଣି ।
ମହତଜନ ସେବାରେ ଏମନ୍ତ ଯେ ବିଧି
ପାଣ୍ଡବଙ୍କ ଦରଶନେ ହେଲା ନୃପନିଧି ।
ଭୀମକୁ ଘେନିଣ ତହୁଁ ଗଲେ ମୁନିବର
ଦରଶନ କରାଇଲେ ଯୁଧିଷ୍ଠି ଛାମୁର ।
ଭୀମସେନ ଯୁଧିଷ୍ଠିଙ୍କ ଚରଣେ ପ୍ରଣମି
ଭୀମ ଶରୀର ଆଉଁଷି ଦେଲେ ଦେବସ୍ୱାମୀ ।
ପାଣ୍ଡବମାନେ ମନରେ ହୋଇଲେ ଉଷତ
ତହୁଁ ବିଜେ କରିଗଲେ ସୁମନ୍ତ ପ୍ରୋହିତ ।
ଜୟ ତୁ ଜୟ ତୁ ମାଗୋ ଶ୍ରୀଚଣ୍ଡୀ ଶାରଳା
ଜୟ ତୁ ଜୟ ତୁ ମାଗୋ ତୁ ସର୍ବମଙ୍ଗଳା ।
ଜୟ ତୁ ଜୟ ତୁ ମାଗୋ ମହିଷାମର୍ଦ୍ଦିନୀ
ଜୟ ତୁ ଜୟ ତୁ ମାଗୋ ଦେବୀ କାତ୍ୟାୟିନୀ ।
ଜୟ ତୁ ଜୟ ତୁ ମାଗୋ ଚାମଣ୍ଡ ଭୈରବୀ
ଜୟ ତୁ ଜୟ ତୁ ମାଗୋ ଶଙ୍କର ବଲ୍ଲଭୀ ।
ଜୟ ମା ସିଂହବାହିନୀ ଦେବୀ ଖଡ଼୍ଗହସ୍ତା
ଜୟ ମା ଭକ୍ତତାରିଣୀ ଜୟ ଛିନ୍ନମସ୍ତା ।
ଝଙ୍କଡ଼ପୁରରେ ତୁହି ରହିବାରୁ ମୋତେ
ଲେଖନ ପତର ଆଣିଦେଲୁ ନିଶାରାତ୍ରେ ।
ତୁହି ଯାହା କହିଦେଉ ମୁହିଁ ତା ଲେଖଇ
ସର୍ବଦା ଶାରଳା ଦାସ ମୂରୁଖ ଅଟଇ ।
ତୋହର ପ୍ରସାଦେ ମୁହିଁ ଲେଖଇ ଭାରତ
ଏ ଶୂଦ୍ରମୁନି ଶାରଳା ଦାସ ତବ ଭୃତ୍ୟ ।

—୦—

## ବକାସୁର ବଧ

ପୁନରପି ବୈବସ୍ୱତ ମନୁ ଦଣ୍ଡଧାରୀ
ଅଗସ୍ତିଙ୍କ ପାଦପଦ୍ମେ ନମସ୍କାର କରି ।
ଉଠି କରଯୋଡ଼ି ବୋଲେ ହେ ମୁନି ପ୍ରବର
ଭାରତ କହିଣ ମୋତେ ଭବରୁ ଉଦ୍ଧାର ।
ତୁମ୍ଭ ବିନା ଏହୁ ଗ୍ରନ୍ଥ କେହୁ କହିପାରେ
ବିସ୍ତାର କରିଣ କୁହ ମୋହର ଆଗରେ ।
ମହାଭାରତର କଥା ଅତି ଆଚମ୍ବିତ
ଷାଠିଏ ପଉଟି ଅନ୍ନ ଭୀମ ଭୁଞ୍ଜେ ନିତ୍ୟ ।
ବନବାସରେ କେମନ୍ତେ ସେହିଦିନ ନେଲେ
ଏଥିର ଚରିତ ମୋତେ କହ ଋଷି ଭଲେ ।
ଦହନ୍ତି ଅଗସ୍ତି ଶୁଣି ବୈବସ୍ୱତ ମନୁ
ଶିବପୁରେ ପାଇଲେ ସେ ଅନ୍ନ ବ୍ରହ୍ମଜ୍ଞାନୁ ।
ଦଶବରଷ ବନସ୍ତେ ନ ପାଇଲେ ଅନ୍ନ
ଶିବପୁରେ ରହି ସୁଖେ କରନ୍ତି ଭୋଜନ ।
ଶିବପୁରେ ବିଷ୍ଣୁକର ପଣ୍ଡାଙ୍କର ଘର
ଆଠମାସ ସୁଖେ ତହିଁ ନେଲେ ଦିନ କାଳ ।
ଚଣ୍ଡାଳ ମାରିବା ଅର୍ଥେ ଯାନ୍ତେ ଭୀମସେନ
ମାତାଙ୍କୁ ଚାହିଁ ବୋଲଇ ଏମନ୍ତ ବଚନ ।
ଅନ୍ନ ହୋଇଲାଣି ନିକି ବୋଲେ କୋପଭରେ
କୁଟି ନ ପାରିଲି ମାତା ବୋଇଲେ ସଧୀରେ ।
ନିତି ଷାଠିଏ ପଉଟି କୁଟିବି ଯେ ଏକା
ତୁଲେ ମୋର ବାବୁ କେହି ଜଣେ ନାହିଁ ଶାଖା ।
କୋପଭରେ ଭୀମ ଧାନ ବାହାରେ କୁଢ଼ାଇ
ମୁଠେ ମୁଠେ ମାରିଦିଏ ତସୁକୁ ଛଡ଼ାଇ ।
ନିଃଶ୍ୱାସର ଘାତେ ତସୁଯାକ ଉଡ଼ିଯାଉ
ଥୋକାଏ ଥୋକାଏ କରି ଚାଉଳ କାଣ୍ଡଇ ।

ଦୁଇ ଚାରି ହାଣ୍ଡି ଭାତ ଆପେ ଯେ ରାନ୍ଧିଲା
ସିଝାଇଣ ଥୋକାଏ ସେ ଧାନ କୁଢ଼ାଇଲା ।
ପାଟ ମୁଗୁନି ପଥର କଚାଡ଼ିଲା ଆଣି
ମୁଥମାରି ଚୂନା କରିଦେଲା ବୀରମଣି ।
ପେଜେ ପକାଇଲା ସେହୁ ତିଉଣ ହୋଇଲା
ପାକ ସମ୍ପାଦିଣ ବୀର ସ୍ନାନ କରି ଗଲା ।
ଗଣ୍ଡୁକୀ ନଦୀରେ ପଶି ବେଗେ ସ୍ନାନ ସାରି
ତତକ୍ଷଣେ ମିଳିଲା ସେ ବିଷ୍ଣୁକର ପୁରୀ ।
ଏକାହୋଇ ଏକ ଠାବେ ବସି ଭୀମସେନ
ସମସ୍ତ ଗ୍ରାସ କରଇ ଆପେ ତାର ପୁଣ ।
ଘରେ ଥାଇ ବିଷ୍ଣୁ କର ଚାହେଁ ଆଚମ୍ୱିତେ
ଏ ତ ମନୁଷ୍ୟ ନୁହଇ ରାକ୍ଷସ କି ଭୂତେ ।
ଭୀମସେନକୁ ଚାହାନ୍ତି ବେନି ପ୍ରାଣୀ ଖରେ
ଏହା ପରା ଜଣେ କେହି ନ ଦେଖି ସଂସାରେ ।
ଭାତରୁ ଗୁଣ୍ଡାଏ ସେହି ପେଜ ସୁଡ଼୍‌କାଏ
ହରଷ ମନେ ଭୋଜନ କରଇ ପଣ୍ଡାଏ ।
ଅନ୍ନ ସରନ୍ତେ ଉଷୁନା ଧାନ ଗ୍ରାସେ ଖାଇ
ପାଟମୁଗୁନି ପେଜରୁ ସୁଡୁକା କ୍ଷେପଇ ।
ଦେଖିଣ ତାଟକା ହେଲେ ସେହି ବେନି ପ୍ରାଣୀ
ଏହ୍ନେ ଭୀମ ଯୁଧିଷ୍ଠିର ସାନଭାଇ ପୁଣି ।
ସେହି ଭୀମସେନର ହୋ ଏମନ୍ତ ମହିମା
ଆଗେ ପଛେ ଚଳନ୍ତି ସେ ପାଣ୍ଡବ ପଞ୍ଚମା ।
ଗମ୍ୟ ଅଗମ୍ୟ ନ ମାନି ଯାନ୍ତି ପଞ୍ଚଭ୍ରାତେ
ଶିବପୁରର ଉତ୍ତର ଭାଗ କୋଟି ପଥେ ।
ତିରିଶଯୋଜନ ଗଲେ ମଧୁନଦୀ ତୀରେ
ସ୍ନାନ ତରପଣ ତହିଁ ସାରି ପାଞ୍ଚବୀରେ ।
ଗଲେ ଯହିଁ ସିନା ନାମେ ଅଛି ଏକ ନଦୀ
ଆକାଶ-ଗଙ୍ଗାରୁ ସେହି ମହୋଦଧି ଭେଦି ।
ସେହି ନଦୀକୂଳେ ଅଛି ନଗରୀ ଗୋଟିଏ
ଏକଛତ୍ରୀ ବୋଲି ତାକୁ ବୋଲନ୍ତି ସଭିଏଁ ।
ବିଳ ଆଦି ସେ ଛତିଶ ପାଟକଙ୍କ ମେଳେ
ନିଗମ ସୁଗମ ଦେଖି ବସନ୍ତି ସକଳେ ।
ନଦୀର କୂଳେ ସେ ଗ୍ରାମ ସୁସଞ୍ଚଯେ ଭୂମି
ବହେ ତହିଁ ମାହେଶ୍ୱରୀ ଉତ୍ତର ବାହିନୀ ।
ଅନେକ ବନଗହନ ତେଜି ପାଞ୍ଚବୀରେ
ଭିକ୍ଷା କୁତୁହଳେ ଯାଇ ପଶିଲେ ସେ ପୁରେ ।
ଯୁଧିଷ୍ଠିର ସାତ ପାତ୍ର ଭୀମ ଚକ୍ରଭାର
ହରିଗୋବିନ୍ଦ ମୁଣି ଯେ ଅର୍ଜୁନ ହସ୍ତର ।
ନକୁଳ ତମ୍ବା କପରା ସହଦେବ ପାତ୍ରୀ
ସଉରା ପାସ ଘେନିଣ କୁନ୍ତଭୋଜ ପୁତ୍ରୀ ।

ଦେଖନ୍ତି ଜନଗହନ ନଗ୍ର ହାଟବାଟ
ଧନବନ୍ତ ଭାଗ୍ୟବନ୍ତ ଦେହ ହୃଷ୍ଟ ପୁଷ୍ଟ ।
ଭ୍ରମନ୍ତେ ଭ୍ରମନ୍ତେ ହେଲା ଦିବା ଶେଷଭାଗ
କାହିଁ ରହିବା ଭାଳନ୍ତି ହୋଇ ଉଦବେଗ ।
ବେଦଶ୍ରବା ବୋଲି ତହିଁ ଏକ ଦ୍ୱିଜବରେ
ମିଳିଲା ସେ ଭିକ୍ଷାପାତ୍ର ଘେନି ତାଙ୍କ ଦ୍ୱାରେ ।
ସେହି ବେଦଶ୍ରବା ପଣ୍ଡା ଅଟଇ ଭିକ୍ଷାଷୀ
ତାହାଙ୍କର ଦ୍ୱାରେ ବେଦ ଗାନ କଲେ ବସି ।
ବିସ୍ମୟେ ବ୍ରାହ୍ମଣୀ ବୋଲେ ତାହାଙ୍କୁ ଯେ ଚାହିଁ
ଦୁର୍ବଅକ୍ଷତ ଦେବାକୁ ତଣ୍ଡୁଳ ତ ନାହିଁ ।
ମୋହର ସ୍ୱାମୀ ଏ ରୂପେ ଅଟନ୍ତି ଭିକ୍ଷାଷୀ
ଫେରିଯିବା ବନ ମୋ ମୁଖରେ ନ ଆସି ।
ହୋଇଥାନ୍ତି ଯେ ମହତଜନ ଦୟାବନ୍ତ
ମଧୁର ବଚନ କହି ବୋଧନ୍ତି ଅତୀତ ।
ଭିକ୍ଷାରୁ ଆସିବାଯାଏ ଦ୍ୱାରେ ରଖାଇବି
ଅଧେକ ତଣ୍ଡୁଳ ଦେଇ ଅତିଥି ତୋଷିବି ।
ବ୍ରାହ୍ମଣୀ ବୋଇଲା ଅଟେ ଅନ୍ଧକାର ନିଶି
ଆଜକ ମୋହର ଘରେ ରହନ୍ତୁ ଯେ ଆସି ।
ଦଇବେ ଭିକ୍ଷାଷୀ ସ୍ୱାମୀ ଘରେ ନାହିଁ କିଛି
ଉଆସ ଅର୍ଦ୍ଧେକ ମୋର ତୁଚ୍ଛା ପଡ଼ି ଅଛି ।
ତହିଁର ଭିତରେ ତାଙ୍କୁ ଗୁହାଇଲା ନେଇ
ରହିଲେ ପାଣ୍ଡବେ ତହିଁ ଅତି ସୁଖ ପାଇ ।
ସନ୍ନିଧେ ବସି ବ୍ରାହ୍ମଣୀ ସମସ୍ତ ପଚାରି
ମିଳିଲେକ ବେଦଶ୍ରବା ପଣ୍ଡା ଯେ ଭିକାରୀ ।
ବ୍ରାହ୍ମଣୀ ତାର ସନ୍ନିଧେ ମିଳିଲାକ ବେଗେ
ସମସ୍ତ କଥା କହିଲା ବ୍ରାହ୍ମଣର ଆଗେ ।
ସେ ବ୍ରାହ୍ମଣ ଭିକ୍ଷା କରି ଯାହା ଆଣିଥିଲା
ଅଳପ ଥୋଇଣ ଆଉ ମାନ ସବୁ ଦେଲା ।
ହାଣ୍ଡିକାଠ ମୁଗଜାଇ ନାନାଦି ପରିବା
ଛାମୁରେ ସମର୍ପିଦେଇ କଲା ତାଙ୍କୁ ସେବା ।
ଏ ନଗରେ ତୁମ୍ଭେ ରହିଥିବ ଯେତେ ଦିନ
ମୋହର ଭିକ୍ଷାରୁ ଦେଉଥିବି ଅଧେ ଅନ୍ନ ।
ଉଆସରୁ ଅଧେ ଦେଲେ ସେ ବେଦ ଶ୍ରବଣ
ରହିଲେ ନିଶ୍ଚିନ୍ତେ ମାତା ପୁତ୍ର ଷଡ଼ଜଣ ।
ଦିବସେ ଭିକ୍ଷାକୁ ସଜହୁନ୍ତି ଚାରିଭାଇ
କୁନ୍ତୀ ବୋଇଲେ ଭୀମକୁ ନ ନିଅ କିମ୍ପାଇଁ ।
ଯୁଧିଷ୍ଠି ବୋଇଲେ ଭିକ୍ଷା ନ କରୁ ଗୋ ଏହି
ବହୁତ ଦେଲେ ଏହାକୁ ଅଳପ ଦିଶଇ ।
ଯାଅ ଯାଅ ବୋଲି ଅବା ଯେ ଜନ ବୋଲିବ
କୁଡ଼ିଆ ଉପାଡ଼ି ତାର ସବୁଙ୍କୁ ମାରିବ ।

ମାତା ଭୀମ ଏ ଦୁହିଙ୍କୁ ଘରେ ଗଲେ ଛାଡ଼ି
ଭିକ୍ଷା କଲେ ଏକମାତ୍ର ନଗ୍ରେ ପାତ୍ର ପାଡ଼ି ।
ଯାହା ଅବା ଭିକ୍ଷାରୁ ସେ ନ୍ୟନ୍ତି ଉପୁଜାଇ
ଆପଣେ ମାତା କୋଇନ୍ତା ପରକ୍ଷିଣ ଦେଇ ।
ଦୁଇଭାଗ କରି ଅଧେ ଦିଅନ୍ତି ଭୀମକୁ
ତହୁଁ ଅର୍ଦ୍ଧେକ ଦିଅନ୍ତି ଦେବ ବ୍ରାହ୍ମଣଙ୍କୁ ।
ଅଧେକ ସେ ପାଞ୍ଚଜଣ ବାଣ୍ଟିଣ ଭୁଞ୍ଜନ୍ତି
ପ୍ରତିଦିନ ଏହିରୂପେ କାଳ କାଟୁଥାନ୍ତି ।
ଭାତରନ୍ଧା ବେଳେ ଯେତେ ପେଜ ଗଳା ଥାଏ
ତାହା ଭୀମକୁ ଦିଅନ୍ତି କୁନ୍ତୀଦେବୀ ମାଏ ।
ଏ ରୂପେ କଷ୍ଟରେ ଥାଏ ତହିଁ ଭୀମସେନ
ଅହର୍ନିଶି କୋପମାନ ନ କହେ ବଚନ ।
ରହିଲେ ଯେ ତହିଁ ତୁଳା ବିଛାମାସ ବେନି
ଧନୁମାସର ଯେ ଭୋଗ ହେଲା ଦିନ ତିନି ।
ଧନୁମାସ କୃଷ୍ଣପକ୍ଷ ତୃତୀୟା ଯେ ଦିନ
ବେଦଶ୍ରବା ବ୍ରାହ୍ମଣୀକୁ ପୁଚ୍ଛଇ ବଚନ ।
ଶରୀର କପାଳ ଆଜ ମୋହର ବଥାଇ
ଆଜି ମୁହିଁ ଭିକ୍ଷାକୁ ଯେ ଯାଇ ନ ପାରଇ ।
ବ୍ରାହ୍ମଣୀ ବୋଲେ ଅଳସ ଯେବେ ତୁମ୍ଭ କାୟେ
ଆଜକ ଭିକ୍ଷାକୁ ତୁମ୍ଭେ ନ ଯାଅ ପଣ୍ଡାଏ ।
ତଣ୍ଡୁଳରୁ ଗୋଟିଏ ତ ଘରେ ନାହିଁ କିଛି
ସ୍ୱାମୀର ଦେହ ଅଳସ କେହ୍ନେ ଦିନ ବଞ୍ଚି ।
ବ୍ରାହ୍ମଣୀ ଭାଳଇ ଯେବେ ପଠାଇବ ବଳେ
ଘରଣୀ ପଣ ଦୁଷଣ ହେବ କାଳେ କାଳେ ।
ବୋଲିବେ ଏ ନ ପାରିଲା ଦିନକ ଚଳାଇ
ଆଳସ୍ୟ ହୋଇଲା ରକ୍ତ ମାଂସ ଦେହ ବହି ।
ରୋଗ ଶୋକ ବ୍ୟାଧି ଜରା ଅବସ୍ଥା ହୋଇଲେ
ସମସ୍ତେ ମରିବା କାଳେ ଭିକ୍ଷାକୁ ନ ଗଲେ ।
ଏମନ୍ତେ ଘରଣୀ ପଣ ହୋଇବ ଦୂଷିତ
ନ ଯାଉ ଏ ଦ୍ୱିଜବର ଆଜ ହେଉ ସୁସ୍ଥ ।
ପୁତ୍ର ଦୁହିତା ଏ ବେନି ଘେନି ପଞ୍ଚପତ୍ନୀ
ତଣ୍ଡୁଳ ଉଧାର କରି ଆଣେ ମାଣ ନିତି ।
ବ୍ରାହ୍ମଣୀ ବ୍ରାହ୍ମଣ ଦୁହେଁ ବସି ଏକସ୍ଥାନେ
ଦୁଃଖ ସୁଖ କଥା ବସି ଭାଳନ୍ତି ନିର୍ଜ୍ଜନେ ।
ବ୍ରାହ୍ମଣର ନାମ ବେଦଶ୍ରବା ଅଟେ ପୁଣ
ବ୍ରାହ୍ମଣୀର ନାମ ଅଟେ ଉମା ଦେଇ ଜାଣ ।
ପୁତ୍ର ଗୋଟିକର ନାମ ଅଟେ ବିଦ୍ୟାଧର
ଭାନୁମତୀ ନାମ ଅଟେ ଦୁହିତା ଗୋଟିର ।
ଖେଳୁଥିଲେ ମିଳିଲେ ସେ ଆସି ନିଜ ବାସେ
ଅନ୍ନ ଆଣି ମାଏ ତାଙ୍କୁ ଦିଅନ୍ତି ଆଶ୍ୱାସେ ।

ଏମନ୍ତ ସମୟେ ଆସି ଅମ୍ବିକା ଚଣ୍ଡାଳେ
ସେ ନଗ୍ରେ ଘୋଷଣା ସେହି ଦିଏ କାଳ କାଳେ ।
ସାଚୋ ସାଚୋ ବୋଲି ହସ୍ତେ ଚୋପକାଠ ଜାଳି
ବେଦଶ୍ରବା ପଣ୍ଡା ଘରେ ଠାକୁରଙ୍କ ପାଳି ।
ନାରାଚ ଶବଦ ଶୁଣି ବ୍ରାହ୍ମଣୀ ବୋଇଲା
କାଲି ପୁଣି କାହାଘରେ ପାଳି ଯେ ପଡ଼ିଲା ।
ରହ ରହ ପଣ୍ଡା ବୋଲି ଘୋଷଣା ଶୁଣିଲା
ସାଚୋ ସାଚୋ ବୋଲି ଡାକଚଣ୍ଡାଳ ତ ଦେଲା ।
ବେଦଶ୍ରବା ଘରେ କାଲି ଠାକୁରଙ୍କ ପାଳି
ଚଣ୍ଡାଳ ଡାକ ଦିଅଇ ସାଚୋ ସାଚୋ ବୋଲି ।
ବ୍ରାହ୍ମଣୀ ବୋଇଲା ପଣ୍ଡା ମୁଣ୍ଡ ତ ପୋଡ଼ିଲା
କାଲି ଆମ୍ଭ ଘରେ ଆସି ପାଳି ତ ପଡ଼ିଲା ।
ବ୍ରାହ୍ମଣୀ ବୋଇଲା ତୁହି ମିଛେ ନୁହ ବାଇ
କେତେ ବେଦଶ୍ରବା ଏହି ପୁରେ ଅବା ନାହିଁ ।
ବ୍ରାହ୍ମଣ ବୋଇଲା ଦେଖି ଲେଖନି ପଣ୍ଡାଏ
ଆମ୍ଭ ଘରେ ପାଳି ଆସି କେତେକାଳ ହୋଏ ।
ଖଡ଼ିଗାର କାଟି ତହିଁ ବୁଝେ ଦ୍ୱିଜବର
ଏଗାର ସହସ୍ର ନବ ଲକ୍ଷ ଷାଠି ଘର ।
ଘରେକ ପାଳି ଏସନ ନେଉଅଛି ଲେଖି
ପୁଣ ପୁଣ ପୁଚ୍ଛଇ ସେ ଭ୍ରାନ୍ତି କି ଉପେକ୍ଷି ।
ଏଗାର ସହସ୍ର ନବ ଲକ୍ଷ ଷାଠି ଘରେ
ତେତିଶ ବର୍ଷ ଦ୍ୱିମାସ କୋଡ଼ିଏ ଦିନରେ ।
ପାଳିଏ ପଡ଼ଇ ଲେଖି ବୁଝି ଦ୍ୱିଜବର
ରାତ୍ର ପାହିଲେ ହୋଇବ ପାଳି ଯେ ଆମ୍ଭର ।
ଜାଣି ଅସାଷ୍ଟମ ହେଲେ ବ୍ରାହ୍ମଣ ବ୍ରାହ୍ମଣୀ
ଦୁହେଁ ମୋହେ ପଡ଼ିଗଲେ ବଜ୍ରାଘାତ ଜାଣି ।
ପିତା ମାତାଙ୍କର କଷ୍ଟ ଅବସ୍ଥାକୁ ଦେଖି
ପୁତ୍ର ଦୁହିତା କାନ୍ଦନ୍ତି ହୋଇ ନିରିମାଖି ।
ବ୍ରାହ୍ମଣ ଘର ଚହଳ କାନ୍ଦଗୋଳ ଶୁଣି
ଚାହାନ୍ତେ ଜଳା କବାଟେ ଭୋଜର ଦୁଳଣୀ ।
ବ୍ରାହ୍ମଣୀ ବୋଲେ ଅଳସ ସ୍ୱାମୀ ତୁମେ କଲ
ଘରେ କିଛି ନାହିଁ ଯୁଣି ଭିକ୍ଷାକୁ ନ ଗଲ ।
ଉଧାର କରି ଏ ଦିନ ବଞ୍ଚାଇଲି ମୁହିଁ
ଦୁର୍ବାଅକ୍ଷତ ଦେବାକୁ ତଣ୍ଡୁଳ ତ ନାହିଁ ।
କାନ୍ଦନ୍ତି ଗଡ଼ନ୍ତି ପଡ଼ି ଲୋଟନ୍ତି ବିକଳେ
ପଡ଼ିଲା ତ ବକାସୁର ପାଳି ଏତେ କାଳେ ।
ଦ୍ୱିଶଗଡ଼ ଭାତ ପିଠା ବଳଦ ଦିହଲେ
ନରବଳି ଜଣେ କାହୁଁ ପାଇବି ସେ ଭାଳେ ।
ବ୍ରାହ୍ମଣୀ ବୋଇଲା ବାପ ଘରକୁ ମୁଁ ଯିବି
ମାଗି ପୋରୁଅ ବଳଦ ଶଗଡ଼ ଆଣିବି ।

ବ୍ରାହ୍ମଣ ବୋଇଲା ମୁହିଁ ଅତିଥି ହୋଇବି
ଭାତ ପିଠା ଥାଳି ଥାଳି ମାଗିଣ ଆଣିବି ।
ଯେକୌଣସି ବାଗେ ଏହା ଆମ୍ଭେ ପୂରାଇବା
ନରବଳି ଜଣେ ଆମ୍ଭେ କାହୁଁ ଭିଆଇବା ।
ବ୍ରାହ୍ମଣୀ ବୋଇଲା ନାଥ ବୁଦ୍ଧି ଏ କରିବ
ଦୁହିତା ପୁତ୍ର ବେନିକି ତୁମ୍ଭେ ପାଳୁଥିବ ।
ମୁହିଁ କାଲି ପ୍ରଭାତରେ ତୋଷିବି ଦୈତ୍ୟଙ୍କୁ
ତୁମ୍ଭେ ଥିଲେ ଭାରିଯା ତ ମିଳିବ ତୁମ୍ଭଙ୍କୁ ।
ଧର୍ମେ ଧର୍ମେ ଅର୍ଜିଲେ ତ କାଲି ହେବ ବିଭା
ଏ କଥା ସ୍ୱାମୀ ଗୋ ତୁମ୍ଭେ ଆନ ନ କରିବା ।
ପୁତ୍ର ଦୁହିତା ଏ ବେନି ଅଟନ୍ତି ବାଳୁତ
ବ୍ରାହ୍ମଣ ବୋଲଇ ଏହା ନୁହଇ ସଙ୍ଗତ ।
ବାଳକଙ୍କୁ ଛାଡ଼ି ଯେବେ ଜନନୀ ମରଇ
ତାହାଙ୍କ ବିକଳେ ପିତା ଦେହ କି ଧରଇ ।
ଦେଖ ଦେଖ ଅଟନ୍ତି ତ ଏ ବାଳୁତ ବେନି
ଏହାଙ୍କ ବିକଳେ କେହୁ ରହେ ଦେହ ଘେନି ।
ଏ ପୁତ୍ର ଦୁହିତା ତୁମ୍ଭେ ଥାଅସି ସମ୍ଭାଳି
ମୁହିଁ କାଲି ବଳି ଦେବି ବକାସୁର ପାଳି ।
ବ୍ରାହ୍ମଣୀ ବୋଇଲା ନାଥ ତୁମ୍ଭେ ନାଶ ଗଲେ
ମରଣୁ ଅଧିକ ଦଶା ବିଧବା ହୋଇଲେ ।
ସ୍ୱାମୀ ଅଭାବେ ବଞ୍ଚନ୍ତି ଯେବଣ ହିଁ ନାରୀ
ଦୁଃଖୀ ହୋଇ ସେହି ସ୍ତିରୀ ହୁଅନ୍ତି ଦୋଚାରୀ ।
ବ୍ରାହ୍ମଣ ବୋଇଲେ ସଖୀ ମୋହର ଥାଆନ୍ତେ
ବକାସୁର କାହିଁପାଇଁ ଭକ୍ଷିବ ଗୋ ତୋତେ ।
ପିତାମାତାଙ୍କ ବିକଳ ଦେଖି ବୋଲେ ବଳା
ଆମ ଘରେ ଯେବେ ପାଳି ଦୈତ୍ୟର ପଡ଼ିଲା ।
ପିତାମାତା ବର୍ତ୍ତିଥିଲେ ପୁତ୍ର ଉପୁଜିବ
ତୁମ୍ଭେ ନାଶ ଗଲେ କାହୁଁ ସନ୍ତାନ ହୋଇବ ।
ପୁତ୍ର ଥାଉଁ ଗୋସାଇଁ କି ଆପଦ ପଡ଼ଇ
କାଲି ପାଳି ଶୁଝ ତାତ ମୋତେ ବଳି ଦେଇ ।
ପୁତ୍ର ଥାଉଁ କାହିଁପାଇଁ ପିତା ମାତା କଷ୍ଟ
ମୋତେ ଯେ ଭକ୍ଷଣ କରୁ ସେ ଦୈତ୍ୟ ଦର୍ପିଷ୍ଟ ।
ଦଶବରଷ ପୁତ୍ରର ବଚନକୁ ଶୁଣି
କୋଳରେ ଧରି ରୋଦନ୍ତି ବ୍ରାହ୍ମଣ ବ୍ରାହ୍ମଣୀ ।
ତୋ ମୁଖର ବାକ୍ୟେ ମୋର ଆପଦ ନ ରହି
ତୋତେ ଦେଇ କେହ୍ନେ ପ୍ରାଣ ଧରିବିରେ ମୁହିଁ ।
ନିରାଶ ବଚନ ଗୋଟି ତୋ ମୁଖରୁ ଶୁଣି
ଶରୀର ଦହନ କିମ୍ପା ନୁହେଁ ଏହିକ୍ଷଣି ।
ଦୁହିତା ବୋଲେ ରୋଦନ ଛାଡ଼ ତାତ ମୋତେ
ବକାସୁର ଆଗେ ନେଇ କାଲି ମେଲ ମତେ ।
ମୁଁ ତ ପରପ୍ରିୟା ତୁମ୍ଭେ ଆନ ହିଁ ନ ବୁଝ
ମୋତେ ବଳିଦେଇ ତାର ତୁମ୍ଭ ପାଳି ଶୁଝ ।
ବ୍ରାହ୍ମଣ ବୋଇଲା ତୁହି ଅଟୁ ଶିଶୁ ଅତି
ତୋତେ ଭକ୍ଷି ସେ ରାକ୍ଷସ ନୋହିବ ତୃପତି ।
ଏସନ ବାକ୍ୟ ତାହାର କୁନ୍ତୀଦେବୀ ଶୁଣି
ମିଳିଲେ ଯହିଁ କାନ୍ଦନ୍ତି ବ୍ରାହ୍ମଣ ବ୍ରାହ୍ମଣୀ ।
ବୋଲନ୍ତି ତୁମ୍ଭ ବିକଳ କାହିଁର ନିମନ୍ତେ
କହ କିନା ପଣ୍ଡା ତାହା ମୋହର ଅଗ୍ରତେ ।
ବ୍ରାହ୍ମଣ ବୋଇଲା ମାଗୋ ଦୁଃସହ ଏକଥା
ହରିଣ୍ୟ କବଚ ନାମେ ଦୈତ୍ୟ ମହାରଥା ।
ତାହାର ନନ୍ଦନ ନାମ ନିର୍ବାତ କବଚ
ତାହାର ହୋଇଲା ଏକ ସୁତା ଚାରି ବତ୍ସ ।
କୁମ୍ଭୀର କିନ୍ନର ଆଉ ହିଡ଼ିମ୍ବକ ବକ
ହିଡ଼ିମ୍ବକୀ ନାମେ ହେଲା ଦୁହିତା ଯେ ଏକ ।
କୁମ୍ଭୀର ଦଇତ୍ୟ ଥାଇ ସୁରନଦୀ ତୀରେ
କିନ୍ନର ଦଇତ୍ୟ ଥାଇ ମଧୁ କାନନରେ ।
ହିଡ଼ିମ୍ବକ ବନେ ଥାଇ ହିଡ଼ିମ୍ବକ ଦୈତ୍ୟ
ଏହି ବକଦୈତ୍ୟ ଏକଚକ୍ରୀ ନଗ୍ରେ ସ୍ଥିତ ।
ପୋରୁହରୁ ହଳେ ଆଉ ବଳଦରୁ ହଳେ
ଭାରରୁ ଶଗଡ଼େ ପୁଣି ପିଠାରୁ ଶଗଡ଼େ ।
ପାଳି ତାହାର ପଡ଼ଇ ଏକ ଏକ ଘରେ
ତେତିଶ ବର୍ଷ ଦ୍ୱି ମାସ କୋଡ଼ିଏ ଦିନରେ ।
ଜଣେ ନରବଳି ପୁଣି ତାର ସଙ୍ଗେ ଖାଇ
ଏତେକ ଦେଲେଟି ଯମ ପଶି ନ ପାରଇ ।
ଡରେ ମେଘ ବେଳ ଜାଣି କରୁଥାଇ ବୃଷ୍ଟି
ପଚିଶ ଭରଣ ଧାନ ଫଳେ ଏକବାଟି ।
ଆନ ଉପଦ୍ରବ ନାହିଁ ନାହିଁ ରୋଗ ବ୍ୟାଧି
ଏକାଳେ ସେ ପାରେ ତିନିଭୁବନକୁ ସାଧି ।
ମୋହର ଘରେ ପଡ଼ିବ କାଲି ତାର ପାଳି
ସବୁ ଭିଆଇ ପାରିବା କାହୁଁ ନରବଳି ।
କୁନ୍ତୀ ବୋଇଲେ ରହିଲି ମୁହିଁ ତୁମ୍ଭ ଘରେ
ପାପ ପୁଣ୍ୟରେ ପଶିଲି ମୁଁ ତୁମ୍ଭ କର୍ମରେ ।
କରିଥାଅ ତୁମ୍ଭେ ଏହି ଯୋଗାଡ଼ ସମ୍ଭାର
ନରବଳି ପାଳି ଜାଣ ହେଲା ମୋ କୁମର ।
ଭୂଇଁ ଛୁଇଁ ସେ ବ୍ରାହ୍ମଣ କର୍ଣ୍ଣେ ଦେଲା ହସ୍ତ
ତୁମ୍ଭେ ଠାକୁରାଣୀ କିମ୍ପା କହିଲ ଏମନ୍ତ ।
ମୋ ଘରେ ରହିଲ ତୁମ୍ଭେ ତିନିମାସ ସର୍ବେ
ମୁଁ ପାପିଷ୍ଠ ବଳି ଦେବି ତୋ ପୁତ୍ରକୁ ଏବେ ।
ମୁହିଁ ଯାଉଅଛି ନିଜେ ଅସୁର ତହିଁକି
ପୁତ୍ର ଦୁହିତା ଭାରଯା ଏ ତିନିଙ୍କି ରଖି ।

କୁନ୍ତୀ ବୋଇଲେ ମୋହର ଏହି କଥା ସତ୍ୟ
ତୋହର ନିମନ୍ତେ ଦେବି ମୋର ଏକ ସୁତ ।
ତୁମ୍ଭେ ଯେ ବିସ୍ମୟ ଆଉ ନ ହୁଅ ପଣ୍ଡାଏ
ମୋର ବଡ଼ ଦୁଷ୍ଟ ପୁତ୍ର ଅଛଇ ଗୋଟିଏ ।
ଭିକ୍ଷା ମାଗି ନ ଯାଇ ସେ ଅଧେ ଅନ୍ନ ଖାଇ
କଥା ନ କହଇ ଥାଏ ମୁହଁକୁ ଫୁଲାଇ ।
ତାହାର ମରିବା ମୁହିଁ ଖୋଜଇ ଯୁକତେ
ଆମ୍ଭେ ଯାହା ମାରିବୁ ସେ ମରୁ ଏହି ମତେ ।
ଦୁଷ୍ଟ ପୁରୁଷ ଆବର ଦୁଷ୍ଟ ନଷ୍ଟା ଭାର୍ଯ୍ୟା
ଛେଦକାରୀ ପିତା ଭେଦକାରୀ ମିତ୍ର ଦ୍ୱିଜା ।
କୁସ୍ଥାନ କୁଭୂମି ଆଉ ଅସୁରଙ୍କ ତୀର୍ଥ
ଏମାନଙ୍କୁ ଉପେକ୍ଷନ୍ତି ଧାର୍ମିକ ପଣ୍ଡିତ ।
ଦ୍ୱିଜବରଙ୍କୁ ବୁଝାଇ ତହୁଁ ଗଲେ କୁନ୍ତୀ
ଭୀମସେନର ଅଗ୍ରତେ ପ୍ରବେଶ ଝଟତି ।
ଭୀମସେନ ବୋଇଲେ ଯେ ମାତା ମୁଖ ଚାହିଁ
ଦ୍ୱିଶଗଡ଼ ଭାତ ପିଠା ବୋଲୁଥିଲ କାହିଁ ।
କୁନ୍ତୀ ବୋଇଲେ ଆପଦ ତୋର ଘେନିଯାଇ
କେତେ ଅନ୍ନ କଷ୍ଟ ତୋର ଦେଖିଲଇଁ ମୁହିଁ ।
ବାବୁ ବେଦଶ୍ରବା ଘରେ ବକାସୁରେ ପାଳି
ଭାତ ପିଠା ଦ୍ୱିଶଗଡ଼ ବଳଦ ଦ୍ୱିହଳି ।
ଏତେକ ସେଠାରୁ ଯୋଚି ନିଅ ତୁ ଅଡ଼ାଇ
ଭାଲୁକୀ ନଦୀର ତୀରେ ଆସ ଏହା ଦେଇ ।
ଭାତ ପିଠା ଭିଆଇ ସେ ନ ଦିଅଇ ଡରେ
ମୁହିଁ ସତ୍ୟକଲି ଦେବି ପୁଅକୁ ସଙ୍ଗରେ ।
ଭୀମ ବୋଇଲା ମାୟେ ଗୋ ମୁହିଁ ଯିବିଟି କି
କେମନ୍ତ ରାକ୍ଷସ ସେହି ଆସେ କି ନା ଦେଖି ।
ଭୀମ ମନେ ସୁମରଇ ଅନାଦି ଶକତି
ସୁଖେ ପଠାଇ ଦିଅନ୍ତି ମାତା ଦେବୀ କୁନ୍ତୀ ।
ଏସନ ସମୟେ ତହୁଁ ଗଲେ ଦେବୀ ମାଏ
ବେଳ ଅବସାନେ ଆସି ମିଳିଲେ ତନୟେ ।
ଉଭା ହୋଇ ଅଛନ୍ତି ସେ ଚାରି ବୀରମଣି
ପାଦ ଶଉଚ କରିବା ଦିଅ ମାଗୋ ପାଣି ।
କୁନ୍ତୀ ଯେ ବିସ୍ମୟ ମନେ ବାହାର ନୋହିଲେ
ଭିକ୍ଷାଶୀ ତଣ୍ଡୁଳ ଘେନି ଭିତରକୁ ଗଲେ ।
ମାତାଙ୍କ ଚରଣେ ପୋଏ ହୋଇଲେ ବିନୟୀ
ଭୀମ ଗାଳିଦେଲା ମାଗୋ ବିସ୍ମୟ କିମ୍ପାଇଁ ।
ଶୁଣ ବାବୁ କହନ୍ତି ଯେ ଭୋଜର ଦୁଲାଳୀ
ବେଦଶ୍ରବା ଘରେ କାଲି ବକାସୁର ପାଳି ।
ସମସ୍ତ ସମ୍ଭାର ଦ୍ୱିଜବର ଭିଆଇଲା
ନରବଳି ଜଣେକ ସେ କାହୁଁ ନ ପାଇଲା ।
ପୁତ୍ର ଦୁହିତା ଘେନି ସେ ବ୍ରାହ୍ମଣ ବ୍ରାହ୍ମଣୀ
ରୋଦନ କରନ୍ତି ଘରେ ବସି ଚାରି ପ୍ରାଣୀ ।
ତାହାଙ୍କର ବଇକୂଲ୍ୟ ସହି ନ ପାରିଲି
ମୁହିଁ ନରବଳି ଜଣେ ଦେବି ସତ୍ୟ କଲି ।
ଏହା ଶୁଣି ସ୍ତମ୍ଭୀଭୂତ ହେଲେ ଯୁଧିଷ୍ଠିର
ସର୍ବେ ଆମ୍ଭେ ପାଞ୍ଚଗୋଟି କୁମର ତୋହର ।
ଶତ ଶତ ପୁତ୍ର ମାଗୋ ଯାହାର ଅଛନ୍ତି
ସଂସାରେ କାହାର ମାତା ଏମନ୍ତ ନୁହନ୍ତି ।
ଭୀମକୁ ତୁ ଦେଇଥିଲୁ କୁମ୍ଭୀର ଦୈତ୍ୟକୁ
ଧର୍ମ ବଳେ ସେ ଉଭାରି ଅଇଲା ଅଙ୍ଗକୁ ।
କିନ୍ନର ଦଇତ୍ୟ ମଧୁବନେ ମାରୁଥିଲା
ହିଡ଼ିମ୍ବକ ଦୈତ୍ୟ ଯେତେ କଷ୍ଟ ବନେ ଦେଲା ।
ଭୀମର ବାହୁବଳକୁ କରିଅଛୁ ଆଶ
ଅନ୍ୟ ଜଣେ ଦିଅ ଖାଉ ସେ ବକ ରାକ୍ଷସ ।
ନକୁଳ ସହଦେବ ତ ବଇମାତୃ ଭାଇ
ମୋହର ଏ ଦେହ ଥାନ୍ତେ ତାଙ୍କୁ ଭୟ ନାହିଁ ।
ଆମ୍ଭେ ସର୍ବେ ତୋହର ଗୋ ଅଟୁ ତିନିପୁତ୍ର
ଭୀମସେନ ଅଟଇ ତ ସଂଗ୍ରାମେ ସମର୍ଥ ।
ଅର୍ଜୁନ ଅଟଇ କ୍ଷତ୍ରିବର ଧନୁର୍ଦ୍ଧାରୀ
ଦ୍ୱିତୀୟ ଶ୍ରୀକୃଷ୍ଣ ତାକୁ ଦେଇ ତ ନ ପାରି ।
ମୁହିଁ ତ ଅଯୋଗ୍ୟ ମାଗୋ ନ ପାରେ ତହିଁକି
ମୋତେ ପେଷିଦିଅ ବକ ରାକ୍ଷସ ମୁହେଁକି ।
କୁନ୍ତୀ ବୋଇଲେ ପଠାଇ ଦେବା ଯେ ଭୀମକୁ
ଅବଶ୍ୟ ମାରିବ ସେହୁ ବକ ରାକ୍ଷସକୁ ।
ବାବୁ ମୁହିଁ ଜାଣଇ ତ ତାର ବଳବୀର୍ଯ୍ୟ
ଦୁର୍ଦ୍ଦଣ୍ଡ ପବନର ଏ ଅଟଇ ଆତ୍ମଜ ।
ଜନ୍ମକାଳେ ଏହାକୁ ମୁଁ କୋଳେ ଥିଲି ଧରି
ବ୍ୟାଘ୍ର ଆସି ରାତ୍ରକାଳେ ଦେଲା ଘୋର ରଡ଼ି ।
କୋଳରୁ ପୁତ୍ରକୁ ମୁହିଁ ପକାଇଲି ଡରେ
ଶତଶୃଙ୍ଗ ଗିରି ପଶିଗଲା ପାତାଳରେ ।
ପକାଇ ପୁତ୍ରକୁ ମୁହିଁ ଡରେ ପଳାଇଲି
ବୃକ୍ଷର ଉପରେ ଯାଇଁ ଭୟରେ ଉଠିଲି ।
ପାଦ ଦୁଇ ହଲାଇଣ କାନ୍ଦେ ବାଳଶିଶୁ
ଗିଳିବ ବୋଲି ସେ ବ୍ୟାଘ୍ର କୋପେ ଧାଇଁ ଆସୁ ।
ଭୀମ ପାଦଘାତ ଲାଗି ବ୍ୟାଘ୍ରର ମୂର୍ଦ୍ଧନା
ଭାଙ୍ଗି ଧୂଳିପ୍ରାୟ ହୋଇଗଲା ଶତଚୂନା ।
ଡାହାଣ ପାଦରେ କାଣି ଆଙ୍ଗୁଠିଟି ଲାଗି
ଶତଯୋଜନ ଆୟତ ଶୃଙ୍ଗ ଗଲା ଭାଙ୍ଗି ।
କୋପେ ଅଭିଶାପ ତାକୁ ଦେଲା ଗିରିବର
ପ୍ରଥମେ ଚଣ୍ଡାଳ ମୋତେ କଲୁରେ ପ୍ରହାର ।

ପ୍ରଥମ ଯୁଦ୍ଧରେ ମୋର ଶାପେ ହେଉ ହାର
ଦ୍ୱିତୀୟବାର ସମରେ ଜୟ ହେଉ ତୋର ।
ଏହା ଶୁଣି ଓହ୍ଲାଇଲି ମୁହିଁ ସେ ବୃକ୍ଷରୁ
ପର୍ବତକୁ ବୋଇଲଇଁ କିମ୍ପା କୋପ କରୁ ।
ଏଡ଼େ କୋପ କଲୁ ମୋର ବାଳ ପୁଅକୁ ହିଁ
ମହାଗିରିବର ତିନି ଭୁବନରେ ତୁହି ।
ନିଷ୍କଳଙ୍କ କରି ମୁହିଁ ପୁତ୍ର କଲି ଜାତ
ଶତଶୃଙ୍ଗ ବୋଲେ କୋପ ନ କର ଗୋ ମାତ ।
ପ୍ରଥମ ଯୁଦ୍ଧରେ ଏ ଗୋ ହାରିବ ଯୁକତେ
ଦ୍ୱିତୀୟ ଯୁଦ୍ଧେ ବସିବି ମୁଁ ଏହାର ଗାତ୍ରେ ।
ଯଦ୍ୟପି ଇନ୍ଦ୍ର କୁବେର ବ୍ରହ୍ମା ବିଷ୍ଣୁ ହର
ବୃକୋଦର ମୂରତି କି କରିବେ ପ୍ରହାର ।
ଜିଣି ନ ପାରିବେ ରଣେ କହିଲି ମୁଁ ସତ
ଡରିବେ ଏହାକୁ ଦେଖି ଲୋକ ତ୍ରିଜଗତ ।
ଏସନକ ସମାଚାର ପାଇଛି ମୁଁ ପୂର୍ବେ
ତେଣୁ ଭୀମସେନକୁ ଯେ ପେଷଇ ପ୍ରସ୍ତାବେ ।
ତୁମ୍ଭେ ଯେ ଚିନ୍ତା ନ କର ଏହାର କଥାକୁ
ଅବଶ୍ୟ ମାରିବ ଭୀମ ବକ ରାକ୍ଷସକୁ ।
ବାବୁ ଆମ୍ଭେ ରହିଥିଲେ ଏହାର ଭବନେ
କାଳେନ ସ୍ମରଣ ନ କରିଥିବେ ଜନେ ।
ଯୁଧିଷ୍ଠି ଚାହିଁଲେ ସହଦେବର ବଦନ
ମାରିବ କି ସେ ବକକୁ ନିଶ୍ଚେ ଭୀମସେନ ।
ସହଦେବ ବୋଲେ ଦେବ ଶୁଣ ସାବଧାନେ
ହିଡ଼ିମ୍ବକ ଭାଇ ଏହି ରହିଛି ଏ ବନେ ।
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ଚାରି
ଏକ ଉଦରୁ ଜନମ ମହାବଳଧାରୀ ।
ଭଗିନୀ ଗୋଟିଏ ମାତ୍ର ଜାଣ ଏହାଙ୍କର
ମାଇଲେଣି ସେ ତିନିଙ୍କୁ ଯୁଦ୍ଧରେ ଠାକୁର ।
ଏହି ଚାରିଙ୍କର ଭାରା ନ ସହିଲା ମହୀ
ଆକାଶରେ ଦିଗପାଳ ନ ପାରିଲେ ରହି ।
ଏମାନେ ସ୍ୱର୍ଗରୁ ଘେନି ଅଇଲେ ଅପ୍‌ସରୀ
ଦେବଙ୍କ ଭଣ୍ଡାରମାନ ସବୁ ଯୁର କରି ।
ଇନ୍ଦ୍ରଦେବ ପଳାଇଲେ ଅସୁରଙ୍କ ଡରେ
ଯମ ରହି ନ ପାରିଲେ ସଂଯମନୀ ପୁରେ ।
ଅସୁର କୁବେର ଘେନି ବହୁ ଯୁଦ୍ଧ କଲେ
ଏହି ତିନିଭାଇଙ୍କି ସେ ସଂଗ୍ରାମେ ହାରିଲେ ।
ଦେବ ଯୁଦ୍ଧେ ବଧ ଯହୁଁ ନୋହିଲେ କୌଣପ
ଆମ୍ଭେ ଉଦିତ ହେଲେ ହେଁ ମାନବ ସ୍ୱରୂପେ ।
ଏମାନଙ୍କୁ ବନେ ବଧ କରିବା ନିମନ୍ତେ
ବନବାସ କରାଇଲେ ଆମ୍ଭଙ୍କୁ ଗୁପତେ ।
ଯୁଧିଷ୍ଠିରଙ୍କୁ କହିଣ ପୁଣି କୁନ୍ତୀମାଏ
ସମ୍ଭାର ଯୋଗାଡ଼ ବେଗେ କର ହୋ ପଣ୍ଡାଏ ।
ଯେଉଁ ଅର୍ଥେ ବସି ଚିନ୍ତା କରୁଥିଲ ଭାଳି
ମୁହିଁ ଏବେ ସଞ୍ଚିଲଇଁ ତୁମ୍ଭ ନରବଳି ।
ଏହା ଶୁଣିଣ ସାନନ୍ଦ ହେଲା ଦ୍ୱିଜବର
କରଇ ଯୋଗାଡ଼ ସେହି ଅନେକ ପ୍ରକାର ।
ବ୍ରାହ୍ମଣୀ ଯେ ଗଲା ତାର ପିତାର ଘରକୁ
ଭାତ ପିଠା ଦ୍ୱିଶଗଡ଼ ମାଗଇ ପିତାକୁ ।
ଭଲ ଭଲ ଲୋକ ସଞ୍ଚିଥାନ୍ତି ସର୍ବକାଳେ
ସମ୍ପଦବିହୀନ ଲୋକ ମାଗେ ଯେତେବେଳେ ।
ସଞ୍ଚିତ ଲୋକର ଘରୁ ଖାଏ ଯାଇ ମାଗି
ଦ୍ୱିଶଗଡ଼ ଯୋଚିଆଣେ ଦୁଇହଳେ ବେଗି ।
ଆଣି ଉତାରିଲା ସେହି ଆପଣାର ଦ୍ୱାର
କୁନ୍ତୀ ବୋଇଲେ ଯେ ଯାଅ ଏବେ ବୃକୋଦର ।
ଯୁଧିଷ୍ଠି ବୋଇଲେ ବାବୁ ଗୁପତରେ ମାର
କେହି ନ ଜାଣିବେ ହୋଇଯିବଟି ବାହାର ।
ଶଗଡ଼ ଅଡ଼ାଇ ତହୁଁ ଚଳେ ଭୀମସେନ
କୁନ୍ତୀ ଗୋଡ଼ାଇ ଅଛନ୍ତି ତାହାର ପଛେଣ ।
ନଗରର ସ୍ତିରୀମାନେ ପଚାରନ୍ତି ଦେଖି
ଏହା ପରା ପୁତ୍ରକୁ ଗୋ ପଠାଅ କାହିଁକି ।
ଯୋଗାଡ଼ ଦେଇ ଆସିବ ପ୍ରାୟ ତୁ କି ମଣୁ
ଯୋଜନଯାଏ ସେ ବଳି ହୁଏ କି ନ ଜାଣୁ ।
ଶରଦ ଚନ୍ଦ୍ରମା ଜିଣି ଏହାର ବଦନ
କାମଦେବ କି ଏ ଚିତ୍ରସେନର ନନ୍ଦନ ।
କି ଅବା ଏହାକୁ ତୁହି ନ ପାରିଲୁ ତୋଷି
ଏହାକୁ ନାଶ ନ କର ଆମ୍ଭଙ୍କୁ ଦିଅସି ।
କୁନ୍ତୀ ବୋଇଲେ ରହିଲି ମୁହିଁ ଏହା ପୁରୀ
ପାପ ପୁଣ୍ୟେ ଭାଗୀଦାର ଅର୍ଦ୍ଧେକ ଆଚରି ।
ମୋହର କର୍ମରେ ଯେଣୁ ହୋଇଲା ଏମନ୍ତ
ଧର୍ମ କି ସହିବ ଯେବେ ହୋଇବି ନିଶତ ।
ତେତିଶ ବରଷ ଦୁଇମାସ ବିଂଶଦିନ
ପାଳିଏ ପଡ଼ଇ ମାଗେ ଦାନବ ଭୋଜନ ।
ସର୍ବେ ରହିଲ ଏଠାରେ ତୁମ୍ଭେ ତିନିମାସ
ତୁ କେମନ୍ତେ ବଳିଦେବୁ ଖାଇବ ରାକ୍ଷସ ।
କୁନ୍ତୀ ବୋଇଲେ ଗୋ ମୋତେ ନ ବୋଲିବ ଏହା
କାହାକୁ କହିବି ନିଜେ ଅର୍ଜିଅଛି ଯାହା ।
ସମସ୍ତ ଜନ ବୋଲନ୍ତି ବଇକୁଲ୍ୟ ବାଣୀ
ପୁତ୍ର ନୁହେଁ କି ତୋହର ଶତ୍ରୁ ମହାପ୍ରାଣୀ ।
ପଣ୍ଡିତଜନେ ବୋଲନ୍ତି ତାହାକୁ ମହତ
ପର ଦୁଃଖେ କାତର ଯେ ପରଦୁଃଖ ରତ ।

ନଗ୍ର ପାର ହୁଅନ୍ତେ ଯେ ବାହୁଡ଼ିଲେ ମାଏ
ଶଗଡ଼ ଅଡ଼ାଇ ନିଏ ପବନ ତନୟେ ।
ଘୋର ଗହନ ବିପିନେ ଚଳଇ ମାରୁତି
ନଗ୍ର ଛାଡ଼ିଗଲା ତିନି ଯୁଣ ଦୀର୍ଘ ପ୍ରତି ।
ପୋରୁହ ବଳଦ ଦୁଇହଳ ଫେଡ଼ିଦେଲା
ସ୍ନାନ ସାରି ଆସି ଓଦରକୁ ଓହ୍ଲାଇଲା ।
ଡାହାଣ ଅଙ୍ଗ ଆଡ଼କୁ ରଖି ଭାତଗୁଣ୍ଡା
ବାମଅଙ୍ଗ ଆଡ଼େ ରଖି ପିଠାଆଦି ମଣ୍ଡା ।
ଡାହାଣ ହସ୍ତରେ ଭାତ ହତାଏ ସେ ଖାଇ
ବାମ କରେ ପିଠା ପାଞ୍ଚ ସାତ ଯେ କ୍ଷେପଇ ।
ମହାକ୍ଷୁଧାର୍ତ୍ତୀ ହୋଇଣ ବୀର ଭୀମସେନ
ପବନ ହୁଁ ବେଗେ ବେଗେ କରଇ ଭୋଜନ ।
ଯହୁଁ ଆସି ହେଲା ବେଳ ପ୍ରହରକେ ବେନି
ରାକ୍ଷସ ମିଳିଲା ଦୁଇଗୋଟି ଶୂଳ ଘେନି ।
ଦେଖିଲା ଭୀମସେନକୁ ବୃକୋଦର କାୟେ
ଭୋଜନ କରନ୍ତେ ଦିଶେ ରାହୁ ତେଜ ପ୍ରାୟେ ।
ଆରେ ଆରେ ବୋଲି ଧାଇଁ ଆସ ଦୈତ୍ୟଶ୍ୱର
ଉଚ୍ଛିଷ୍ଟ କରୁ କିମ୍ପାଇଁ ମଣୋହି ମୋହର ।
ଏମନ୍ତେ ଦୁଷ୍ଟ ରାକ୍ଷସ ଭାଷେ ଯେତେ ରୋଷେ
ବୃକୋଦର ନ ଶୁଣଇ ଭୁଞ୍ଜିବା ଲାଳସେ ।
ଡାକନ୍ତେ ନ ଶୁଣେ ଯହୁଁ ପବନ ତନୟ
ଗର୍ଜ୍ଜେ ବକାସୁର ମହାମତ୍ତ ନାଗପ୍ରାୟ ।
ଦୈତ୍ୟ ଗର୍ଜ୍ଜନେ କମ୍ପିଲା ସପତ ବ୍ରହ୍ମାଣ୍ଡ
ବେନି କରେ ଭୁଞ୍ଜେ ଭୀମ ବିସ୍ତାରିଣ ତୁଣ୍ଡ ।
ଡାକିଣ ବିମୁଖ ହେଲା ଦୈତ୍ୟ ଶିରୋମଣି
ନ ଶୁଣେ ମାରୁତି ଜଡ଼ା ବଧିର କି ଜାଣି ।
କୋପେ ବେନିଶୂଳ କରେ ବୁଲାଇ ଅସୁର
ପିଟିଲାକ ନେଇ ଭୀମସେନର ଉପର ।
ବାମଅଙ୍ଗେ ଶୂଳ ବାଜି ହେଲା ଗୁଣ ତ୍ରାସେ
ତାହା ନ ମାନିଲା ଭୀମ ଖାଇବା ଲାଳସେ ।
ପ୍ରଜ୍ୱଳିତ ସେ ଦାନବ ରାଗେ ଶିର ଝୁଣି
ଦୁଇବୃକ୍ଷ ଉପାଡ଼ିଣ ପ୍ରହାରିଲା ପୁଣି ।
ବାଜି ଭାଙ୍ଗି ବେନି ବୃକ୍ଷ ହେଲା ମଶିଗୁଣ୍ଡା
ତାହା ହିଁ ନ ଜାଣିଲା ସେ ମାରୁତି ପ୍ରଚଣ୍ଡା ।
ରାଗେଣ ଦାନବ ଏକ ପର୍ବତ ଉପାଡ଼ି
ଭୀମର ଉପରେ ଉର୍ଦ୍ଧ୍ୱ ବାହୁରେ କଚାଡ଼ି ।
ବୃକୋଦର ମୁଣ୍ଡେ ପଡ଼ି ଗୁଣ୍ଡା ଗିରିବର
ତା ଦେଖି ବିଷାଦ ପ୍ରାପ୍ତ ହୋଇଲା ଅସୁର ।
ତାହା ନ ମାନିଲା ଭୀମ ଖାଇଲା ଲାଳସେ
ଦେଖିଣ ରାକ୍ଷସମଣି କମ୍ପେ ମହାରୋଷେ ।
ଭୁଞ୍ଜିସାରି ଆତ୍ମା ଯହୁଁ ଲଭିଲାକ ତୁଷ୍ଟି
ରାକ୍ଷସକୁ ବୃକୋଦର ଚାହିଁଲା ଲେଉଟି ।
ଦରାଣ୍ଡି ଧଇଲା ଭୁଜେ ଦୈତ୍ୟ ବେନି ଭୁଜ
ବୋଇଲା ଜାଣିଲି ମୂଢ଼ ତୁ ମୂର୍ଖ ଦନୁଜ ।
ଅଜ୍ଞାନ ପାମର ତୋର ନାହିଁ ବିବେଚନା
ଶମନର ଭବନ କି କରୁଛୁ କାମନା ।
ଭୋଜନକାଳେ ଶତ୍ରୁକୁ ମାରି ନ ଯୋଗାଇ
ଏଡ଼େ ମୂର୍ଖ ପାମର ତୋ ଦେହେ ଜ୍ଞାନ ନାହିଁ ।
ଦେଖିଣ ବିଷାଦ ମନେ ରାକ୍ଷସ ଭାଳିଲା
ଜାଣିଲଇଁ ଏହି ମୂଢ଼ ମୋ ତହୁଁ ବଳିଲା ।
ଦାନବ ବୋଇଲା ତୁରେ କାହିଁର ବ୍ରାହ୍ମଣ
ମୋର ମଣୋହି ଉଚ୍ଛିଷ୍ଟ କଲୁ କି କାରଣ ।
ଭୀମ ବୋଇଲା ଆବର ଜୀବନ ତୋ କହି
ସୁମର ଇଷ୍ଟଦେବତା ମରିବୁ ଯେ ତୁହି ।
ରାଗେ ନିଶାଚର ଦିଏ ଭୀମକୁ ଯେ ପେଲି
ହସ୍ତ ଛାଡ଼ ହୋ ବ୍ରାହ୍ମଣ ଅସୁରେଣ ବୋଲି ।
ବେନିକର ଧରିଅଛି ଭୀମ ବାମଭୁଜେ
ଡାହାଣ କରେ ମାଇଲା ମୁଥେ ମହାତେଜେ ।
ପଡ଼ିଲା ସେ ବଜ୍ରମୁଥ ଅସୁରର ମୁଣ୍ଡେ
ଶୋଣିତ ଉଦଗାର ହୋଇ ପଡ଼ିଲା ତା ତୁଣ୍ଡେ ।
ଦେଖି ସେହି ଦାନବର ପରାକ୍ରମ ବଳ
ଭୀମକୁ ପେଲି ପକାଇ ଦେଲା ଭୂମିତଳ ।
ମାଡ଼ି ବସିଲା ଅସୁର ତା ଛାତି ଉପରେ
ପବନର ସୁତ ହରେ ପ୍ରଥମ ଯୁଦ୍ଧରେ ।
ବକକୁ ଯେସନ ମାଡ଼ି ବସଇ ଶୃଗାଳ
ପ୍ରତିଜ୍ଞା କରଇ କୋପେ ଦୈତ୍ୟ ଅନର୍ଗଳ ।
ତୁ ମୋର ମଣୋହି ନଷ୍ଟ କରିଲୁ ପାମର
ବିକର୍ତ୍ତି ତୋ ମାଂସ ଆଜି କରିବି ଆହାର ।
ଭୀମସେନ ବୋଇଲା ତୁ ଅସୁରଙ୍କ ଶ୍ରେଷ୍ଠ
ଧର୍ମଯୁଦ୍ଧ ତୋର ମୋର ହୋଇଲା କିରଟ ।
ନାହିଁ ନାହିଁ କହି ତାକୁ ଦୈତ୍ୟ ଯେ ନ ଛାଡ଼ି
ଲେଉଟାଇ ଭୀମ ତାକୁ ବସିଲାକ ମାଡ଼ି ।
ପର୍ବତ ସମାନ ବସି ଦୈତ୍ୟ ବକ୍ଷସ୍ଥଳେ
ବିକଶିଲା ବୃକୋଦର ରୂପ ମହାବଳେ ।
ଯେସନେ ମନ୍ଦର ମାଡ଼ିବସେ ଆଗଗିରି
ମାଡ଼ିବସି ବୃକୋଦର ଗର୍ଜ୍ଜେ ସିଂହପରି ।
ମାଇଲା ତକ୍ଷିରେ ମାଡ଼ିବସି ବଜ୍ରମୁଥ
ଲଲାଟ ପାଟିରୁ ବହି ପଡ଼ିଲା ଶୋଣିତ ।
ଅସୁର ବୋଇଲା ସତ୍ୟ ସତ୍ୟ ଏ ମୋହର
ଧର୍ମକୁ ପାଳନ କର କରିବା ସମର ।

ଭୀମ ବୋଲେ ଦାନବରେ ତୋର ଜ୍ଞାନ ନାହିଁ
ବ୍ରାହ୍ମଣ ଯୁଦ୍ଧରେ ତୁହି ଧର୍ମ ଲୋଡୁ କାହିଁ ।
ଦାନବ ବୋଇଲା ମଲ ଯୁଦ୍ଧର ଏ ବାଟ
ମରଣ ସମାନ ଯେହୁ ବୋଲଇ କିରଟ ।
ଭୀମ ବୋଲେ ସେ କିରଟ ମୋର ତୋହର କି
ମରିବା ବେଳେ ନିସତ ହେଉ ତୁ କାହିଁକି ।
ଚାରିପୁତ୍ର ଉପୁଜିଲା ବ୍ରଜ କବଚର
ସମସ୍ତେ ମଲେ ମୋ ହସ୍ତେ ମରଣ ତୋହର ।
କିନ୍ନରକୁ ମାଇଲି ମୁଁ ମଧୁକାନନରେ
କୁମ୍ଭୀରକୁ ମାଇଲି ମୁଁ ସୁରନଦୀ ତୀରେ ।
ହିଡ଼ିମ୍ବକ ମାଇଲି ମୁଁ ହିଡ଼ିମ୍ବକ ବନେ
ତୁ ଥିଲୁ ଭେଟ ପଡ଼ିଲୁ ଆସି ଏତେ ଦିନେ ।
ଏତେ ବୋଲି ଭୀମ ମାଡ଼ିବସିଲା ତା ତଣ୍ଟି
ଅସୁର ପ୍ରାଣ ଛାଡ଼ିଲା ଚକ୍ଷୁ ଗଲା ଫୁଟି ।
ଜିହ୍ୱା ବାହାରିଲା ବେନି ହାତ ପରିଯନ୍ତେ
ପ୍ରାଣ ଛାଡ଼ି ଅସୁରର ଗଲା ଯମପଥେ ।
ଏ ସମୟେ ଚନ୍ଦ୍ର ଆସି ଅର୍ଦ୍ଧ ଯେ ଆକାଶେ
ସାଧୁ ସାଧୁ ପାବନି ତୁ ବୋଲନ୍ତି ତ୍ରିଦଶେ ।
ଅସୁରର କେଶ ଧରି ରାତ୍ରକାଳେ ନେଲା
ନଗର ବାହାରେ ମୂର୍ତ୍ତି କରିଣ ସ୍ଥାପିଲା ।
ଶାଳବୃକ୍ଷେ ପର୍ବତେ କି ଦେଲା ଆଉଜାଇ
ମହାମୂର୍ତ୍ତି ରହିଲା ସେ ନଗ୍ରକୁ ଅନାଇ ।
ରାତ୍ର ତହିଁ ହୋଇଅଛି ଅଡ଼ାଇ ପ୍ରହର
ବାଟ ଚାହିଁଛନ୍ତି ଦ୍ୱାରେ ମାତ ସହୋଦର ।
ତୃତୀୟ ପ୍ରହର ଯହୁଁ ହୋଇଲାକ ନିଶି
ଯୁଧିଷ୍ଠି ସନ୍ନିଧେ ଭୀମା ପ୍ରବେଶିଲା ଆସି ।
ଯୁଧିଷ୍ଠି ବୋଇଲେ ଚାଲ ମାତ ଉଠିଯିବା
ରାତ୍ର ପାହିଲେ ଜାଣିବେ ଗୋପନେ ରହିବା ।
ଏ ନଗ୍ରଲୋକେ ସମସ୍ତେ କରିବେଟି ପୂଜା
ଏ ନଗ୍ରେ ଭୀମକୁ ପୁଣି କରିବେଟି ରାଜା ।
ଏତେ ବୋଲି ବାହାରିଲେ ଘୋର ନିଶାରାତି
ନଗର ଛାଡ଼ି ବନରେ ପଶିଲେ ଝଟତି ।
ବୃକୋଦର ବୋଲେ ଚାଲ ବେଗେ ଯିବା ସ୍ୱାମୀ
ବାଟ ନାହିଁ ଏ ବିକଟ କଣ୍ଟାବନ ଭୂମି ।
ଦୂରକୁ ହୋ ଯିବା ଆମ୍ଭେ ଏ ନଗ୍ର ଉପେକ୍ଷି
ଯେହ୍ନେ ନଗ୍ରଲୋକେ ଲୋଡ଼ି ନ ପାରନ୍ତି ଦେଖି ।
ଭୀମସେନ ବୋଲେ ମାତ ବସ ମୋର ଶିରେ
କୁନ୍ତୀ ବସିଲାକ ଭୀମସେନ ମଥାପରେ ।
ଡାହାଣ କନ୍ଧେ ଯୁଧିଷ୍ଠି ବାମରେ କିରୀଟି
ଦୁଇକାଖେ ସାନ ସାନ ଭାଇ ଦୁଇଗୋଟି ।
ପବନହୁଁ ବେଗେ ବେଗେ ଯାଏ ବୃକୋଦର
ଝୁଣ୍ଟନ୍ତେ ପଥର ସବୁ ହେଉଛନ୍ତି ଚୂର ।
ନଗ୍ରୁ ଯିବାବେଳେ ରାତ୍ର ପ୍ରହରେକ ଥିଲା
ଭୀମସେନ ବିଶାଶଏ ଯୋଜନ ଗମିଲା ।
ରାମନଦୀ ନାମେ ଏକ ନଦୀ ବହିଯାଏ
ତାହାର କୂଳେ ମିଳନ୍ତି ରାତ୍ର ଶେଷଯାଏ ।
ଲକ୍ଷ୍ମଣ ଜପାସୁରକୁ ମାଇଲେ ସେ ସ୍ଥାନେ
ସତ୍ୟବାନ ବୋଲି ନାମ ଦେଇଗଲେ ବନେ ।
ପ୍ରଭାତେ କରନ୍ତି ସେହି ନଦୀଜଳେ ସ୍ନାନ
ରଣସୁନ୍ଦର ପର୍ବତ ତହିଁ ବିଦ୍ୟମାନ ।
ଚରନ୍ତି ଗଣ୍ଡା ହରିଣ ହୋଇ ପଲପଲ
ଯୁଧିଷ୍ଠି ବୋଇଲେ ଏହି ସ୍ଥାନଗୋଟି ଭଲ ।
ଗହନ କାନନେ ପଣ୍ଡୁ ନନ୍ଦନେ ରହନ୍ତି
ସୁନ୍ଦରବନ ପାଣ୍ଡବେ ସୁଖେ ବିହରନ୍ତି ।
ପବିତ୍ର କାର୍ତ୍ତିକ ମାସ ପଉର୍ଣ୍ଣମୀ ଦିନ
ରୋହିଣୀ ନକ୍ଷତ୍ର ଗୁରୁବାର ବିଦ୍ୟମାନ ।
ଦ୍ୱାରକାକୁ ଗଲେ ରାମ କୃଷ୍ଣ ବେନି ଭ୍ରାତେ
ହସ୍ତିନାରୁ ଧୃତରାଷ୍ଟ୍ର ଦେଖିବା ନିମନ୍ତେ ।
ଦେଖି ଧୃତରାଷ୍ଟ୍ର କଲେ ରାମକୃଷ୍ଣେ ପୂଜା
ଆସ୍ଥାନରେ ବିଜେ କଲେ ସ୍ୱାମୀ ଦେବରାଜା ।
ଗୋବିନ୍ଦ ବିଦୁର ଘେନି ବସିଲେ ଏକାନ୍ତେ
କୁଶଳ ବାରତାମାନ ତାହାଙ୍କୁ ପୁଚ୍ଛନ୍ତେ ।
ବିଦୁର ବୋଇଲେ ସ୍ୱାମୀ ଗଲେ ଯେଉଁ ବନେ
ବାରତା କି ପାଇଅଛ ସେହି ଷଡ଼ ଜଣେ ।
ଅଗସ୍ତିଙ୍କୁ ପଚାରିଲେ ବୈବସ୍ୱତ ମନୁ
ବକାସୁର ହତ ହେଲା ଯୁଧିଷ୍ଠିର ତନୁ ।
ଭୀମସେନ ରାକ୍ଷସକୁ ଆଣି କେଶ ଧରି
ନଗ୍ର ବାହାରେ ଛାଡ଼ିଲା ପ୍ରେତ ରୂପ କରି ।
ପାଣ୍ଡବେ ବାହାର ହୋଇଗଲେ ନିଶାକାଳେ
ରହିଲେ ମହା ଅରଣ୍ୟ ଯାଇଁ ନଦୀ କୂଳେ ।
ଯୋଗେଶ୍ୱର ପୁଚ୍ଛନ୍ତେ ଯେ କହିଲେ ଅଗସ୍ତି
ତିମିର ବିଦାର ସ୍ୱାମୀ ପ୍ରକାଶିଲେ ଜ୍ୟୋତି ।
ପ୍ରକୃତି ଅର୍ଥେ ବାହାରେ ଗଲେ ପୂରଜନେ
ଦେଖିଲେ ସେ ଉଗ୍ରରୂପ ଚାହୁଁଛି ବଦନେ ।
ବିକଟାଳ ମୁଖ ଜିହ୍ୱା ହୃଦ ଲୋମାବଳି
ଦଶନଖ ବିରାଜିତ ଯେସନେ ବିଜୁଳି ।
ବିସ୍ତାର ତୁଣ୍ଡ ତାହାର ହୃଦେ ଲୁଳେ ଜିଭ
ଦେଖିଲେକ ପୁରଜନ ମୂରତି ଦୁର୍ଲଭ ।
ନଗ୍ର ଆକର୍ଷିଲା ପ୍ରାୟ ମହା ଉଗ୍ରମୂର୍ତ୍ତି
ମହାମେଘ ପ୍ରାୟ ଦିଶେ ତାହାର ଆକୃତି ।

ଅମ୍ବିକା ଘୋଷଣାକାରୀ ଆଣ ହେ ହକାରି
କାହା ଘରେ ହୋଇଥିଲା ଠାକୁରଙ୍କ ପାଳି ।
ଶୁଣିଣ ଘୋଷଣାକାରୀ ବେଗେ ଗଲା ଧାଇଁ
ବେଦଶ୍ରବା ପଣ୍ଡାକୁ ସେ ଆଣିଲାକ ଯାଇ ।
ପୁରଜନେ ପଚାରନ୍ତି ଡାକି ସେ ବିପ୍ରକୁ
ତୃପ୍ତ କରି ନ ପାରିଲେ କିମ୍ପା ଠାକୁରଙ୍କୁ ।
କିସ କିସ ଯୋଗାଡ଼ ହୋ ଦେଲ ତୁମ୍ଭେ କାଲି
ବେଦଶ୍ରବା ବୋଲେ ଶୁଣ ଯାହା ଦେଇଥିଲି ।
ଭାତରୁ ଶଗଡ଼େ ଆଉ ପିଠାରୁ ଶଗଡ଼େ
ପୋରୁହରୁ ହଳେ ପୁଣି ବଦଳରୁ ହଳେ ।
ନରବଳି ଜଣେକ ମୁଁ ଦେଲି ହୋ ଆବର
ବେଦଶ୍ରବା କହେ ନଗ୍ର ଜନଙ୍କ ଆଗର ।
ତୁମ୍ଭ ଘର ଜନ ସବୁ ଅଛ ତ ସକଳ
ନରବଳି ପାଇଁ ତୁମ୍ଭେ କାହାକୁ ପେଷିଲ ।
ମୋ ଘରେ ରହିଲେ ମାତା ଘେନି ପାଞ୍ଚବୀର
ସେହି ମହାମ୍ବାଣୀ ଦେଲା ପୁତ୍ରେକ ତାହାର ।
ଲୋକେ ବୋଇଲେ ପଣ୍ଡାଏ ମନ୍ଦକୃତ୍ୟ କଲ
ଆପେ ନ ଯାଇଁ କିମ୍ପାଇଁ ପରକୁ ପେଷିଲ ।
ଯାହାକୁ ପେଶିଲ ତାକୁ ଦେଖ ନିଜ ଘରେ
ତକ୍ଷଣେ ଦେଖନ୍ତି ଧାଇଁଯାଇଁ ଅନ୍ତଃପୁରେ ।
ଦେଖିଲେ ସେ ଘରେ ଜନ ମନୁଷ୍ୟ ହିଁ ନାହିଁ
ବେଦଶ୍ରବା ବ୍ରାହ୍ମଣଙ୍କ ଆଗେ ଯାଇ କହି ।
ଆହେ ମଣୋହି ଖାଇଲା ସେ ଦୁଷ୍ଟ ବ୍ରାହ୍ମଣ
ତେଣୁ ଲୁଚି ପଳାଇଲେ ରାତେ ଷଡ଼ଜଣ ।
ବେଢ଼ି ପୁରଜନେ ତେଜେ କହନ୍ତି ହୋ ଦ୍ୱିଜ
ପର କି କରଇ ନାହିଁ ଆପଣାର କାର୍ଯ୍ୟ ।
ଠାକୁରଙ୍କ କୋପ ହେଲା ତୋହର ପ୍ରସାଦେ
ଏହିକ୍ଷଣି ଏହି ନଗ୍ରେ ପଡ଼ିବ ପ୍ରମାଦେ ।
ଆହେ ବେଦଶ୍ରବା ତୁମ୍ଭେ ଏହି ନଗ୍ର ରଖ
ଏହିକ୍ଷଣି ଠାକୁରଙ୍କ ହେବୁ ବଳି ଭକ୍ଷ୍ୟ ।
ଶୀତଳ ଯୋଗାଡ଼ମାନ ଘେନି ପୁରଜନେ
ମଣୋହି ନିମନ୍ତେ ତହୁଁ ଯାଆନ୍ତି ଗହଣେ ।
ଅନେକ ଯୋଗାଡ଼ ଆଣି ଶଗଡ଼ରେ ଭରି
ତଳେ ବେଦଶ୍ରବା ଚିତ୍ତେ ଶ୍ରୀହରି ସୁମରି ।
ଭାତ ପିଠା ଭରି ନିଜେ ଶଗଡ଼ ଅଡ଼ାଇ
ବକାସୁର ଛାମୁରେ ସେ ପ୍ରବେଶିଲା ଯାଇଁ ।
ଦୂରୁ ଦେଖି ବିପ୍ରବର ଶିରେ ଯୋଡ଼ି ହସ୍ତ
ବିନୟ ଭାବରେ ପୁଣି କହଇ ବହୁତ ।
ପହଣ୍ଡକେ ନିଉଛାଳି କରିଣ ପ୍ରଣମି
ବୋଲେ ପୁରଜନେ କୋପ ନ କର ଭୋ ସ୍ୱାମୀ ।
ମୋହଘରେ ଦେବ କାଲି ହୋଇଥିଲା ପାଳି
ବ୍ୟାକୁଳେ ମୁଁ ଅନ୍ୟ ଜଣେ ଦେଲି ନରବଳି ।
କୋପ ଶାନ୍ତ କରି ଦେବ ଏ ଭୁବନ ରଖ
ମୋର ପାଳି ହୋଇଥିଲା ମୋତେ ଦେବ ଭକ୍ଷ ।
ଅନେକ ସ୍ତୁତି କରିଣ ବିପ୍ର ଯାଏ କାନ୍ଦି
ପ୍ରଣିପାତ କରି ଯାଇ ମିଳଇ ସନ୍ନିଧି ।
ଦେଖଇ ସେ ଅଲକ୍ଷଣ ରାକ୍ଷସର କାୟ
ଜୀବନ ନ ଦେଖି ବିପ୍ର ହୋଇଲା ନିର୍ଭୟ ।
ଧଇଲା ଅସୁର ଭୁଜ ବେନି ଦ୍ୱିଜବର
ସ୍ୱାମୀ ଏ ନଗର ଗୋଟି ସଞ୍ଚିତ ତୋହର ।
ପୁରଜନମାନେ ଆମ୍ଭେ ଅଛୁ ତୋର ଗର୍ଭେ
ଅନେକ ଦୋଷୀ ଯେ ଆମ୍ଭେ ତାହାର ଅଭାବେ ।
ଏତେ ବୋଲି ବିପ୍ର ଟାଣେ ଦୈତ୍ୟହସ୍ତ ଧରି
ସ୍ୱାମୀ ମୋତେ ଭୁଞ୍ଜ ବୋଲି ଭୁଜକୁ ଘୋଷାରି ।
ଅସୁରକୁ ଆଉଜାଇ ବୃକ୍ଷେ ଥିଲା ସ୍ଥାପି
ଗଡ଼ିଣ ପଡ଼ିଲା ତଳେ ସେହି କାମରୂପୀ ।
ଦେଖି ନିରୁପଇ ବେଦଶ୍ରବା ଯେ ବ୍ରାହ୍ମଣ
ଭାଳଇ ରାକ୍ଷସ ଦେହେ ନାହିଁ ଆଉ ପ୍ରାଣ ।
ସେ ନଗର ଲୋକମାନେ ରହିଥିଲେ ଦୂରେ
ତହୁଁ ଧାଇଁଯାଇ ସର୍ବେ ମିଳିଲେ କତିରେ ।
ଧନ୍ୟ ଧନ୍ୟ ବେଦଶ୍ରବା ନାହିଁ ତୋହପରି
ତୋହର ପ୍ରସାଦେ ଏହି କଷ୍ଟୁ ହେଲୁ ପାରି ।
ମହତ ଭେଟିଲୁ ହେଲୁ ଆମ୍ଭର ତାରଣ
ଚଉକତି ଲୋଡ଼ନ୍ତି ସେ ଭିକ୍ଷୁକ ବ୍ରାହ୍ମଣ ।
ସେ ଅଦ୍ଭୁତ ପୁରୁଷ ହିଁ ପାଇବାକୁ କାହିଁ
ଏହି ରାଜ୍ୟର ଠାକୁର ଅଟୁ ଏବେ ତୁହି ।
ସମସ୍ତ ଲୋକ ଭିକ୍ଷୁର ପାଦ କଲେ ପୂଜା
ଏକାଚକ୍ର ନଗ୍ରେ ବେଦଶ୍ରବା ହେଲେ ରାଜା ।
ଡଙ୍କେ ଅଗସ୍ତି ଦେଖ ମନୁ ନରନାଥ
ମହତ ଆଶ୍ରିତ ପ୍ରାଣୀ ହୁଅନ୍ତି ଏମନ୍ତ ।
ସେ ନଗରେ ବେଦଶ୍ରବା ଭିକ୍ଷା କରୁଥିଲା
ବଡ଼ ପ୍ରାଣୀ ଆଶ୍ରାକରି ନୃପତି ହୋଇଲା ।
ବେଦଶ୍ରବା ଭାରିଯା ଯେ ଭିକ୍ଷୁକ ବ୍ରାହ୍ମଣୀ
ପୁଣ୍ୟ ପ୍ରସାଦୁ ସେ ନଗ୍ରେ ହେଲା ଠାକୁରାଣୀ ।
ବନସ୍ତେ ବକର ଥିଲା ଅନେକ ଭଣ୍ଡାର
ପୁରଜନ ମିଳି ତାହା ସବୁ କଲେ ଯୁର ।
ଆଜ ଅଭିଷେକୀ ହେଲା ଭିକ୍ଷୁକ ବ୍ରାହ୍ମଣ
ପାତ୍ର ଅମାତ୍ୟ ତହିଁରୁ କଲେକ ଭିଆଣ ।
ଅନେକ ସୁଖ ପାଇଲେ ସେ ନଗର ଜନ
ଅସୁର ଭୟ ମନରୁ କଲେ ବରଜନ ।

ଇନ୍ଦ୍ରଦେବତା ମନରେ ଲଭିଲାକ ତୁଷ୍ଟି
ଅସୁର ବିନାଶ ଗଲା ସରିଲା ଅରିଷ୍ଟି ।
ସୋଦର ଅନେକ ନାଶ କଲାକ ରାକ୍ଷସ
ପାଶୋରିଲା ସବୁ କଷ୍ଟ ତୁଟିଗଲା ତ୍ରାସ ।
ପୃଥିବୀର ଭାରାଭର ଉଶ୍ୱାସ ପାଇଲା
ଦୁର୍ଭାର ପୁଣ୍ୟରେ ଏହି ଦୈତ୍ୟ ନାଶଗଲା ।
ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ଆପେ ଦୁଃଖ ପାଇ ସିନା ଫେଡ଼ନ୍ତି ଦୁର୍ଗତି ।
କୁମ୍ଭୀର କିନ୍ନର ହିଡ଼ିମ୍ବକ ବକାସୁର
ମନୁଷ୍ୟ ବଧ ନୁହଁନ୍ତି ପୃଥ୍ୱୀର ଏ ଭାର ।
ଅନେକ ଅବସ୍ଥା ତହୁଁ ପାଇଲେ ତ୍ରିଦଶେ
ବସୁଧା ବ୍ୟାକୁଳ ହେଲା ଅସୁରଙ୍କ ତ୍ରାସେ ।
ଋଷିଗଣ ତପସ୍ୟାକୁ କଲେକ ଉପେକ୍ଷା
ଦୁରାପଦୁ କେହି କରି ନ ପାରିଲେ ରକ୍ଷା ।
ତ୍ରିଦଶ ଦେବତା ବସି ଭାଳିଲେ ଆକାଶେ
ତେଣୁ ପାଣ୍ଡବଙ୍କୁ ପେଷିଦେଲେ ବନବାସେ ।
ଏହି ଚାରି ଅସୁରଙ୍କ ବଧର ନିମନ୍ତେ
ପାଣ୍ଡବେ ଯେ ବନବାସୀ ହୋଇଲେ ଗୁପତେ ।
ବନ ଭୁବନ ରଖିଲେ ଦୁଷ୍ଟଙ୍କୁ ନିବାରି
ମଧୁବନେ ଘଟୋତ୍କଚ ହେଲା ଅଧିକାରୀ ।
ଚଣ୍ଡାଳ ବକ ସମସ୍ତ ଶିବ ପୁର ଧ୍ୱଂସୀ
ଧର୍ମ କଲେ ଯେ ଗୁପତେ ହୋଇ ବନବାସୀ ।
ବିଷ୍ଣୁକର ବିପ୍ରଙ୍କର ଆଶ୍ରମରେ ଥିଲେ
ତାହାଙ୍କୁ ଠାକୁରସେହି ଶିବପୁରେ କଲେ ।
ଏକଚକ୍ରୀ ନଗ୍ରେ ଥିଲେ ବେଦଶ୍ରବା ଘରେ
ଏବେ ସେ ଠାକୁର ଦେଖି ହେଲେ ସେ ନଗ୍ରରେ ।
ଜୟ ତୁ ଶାରଳା ମାଗୋ ବିଷ୍ଣୁର ବଲ୍ଲଭ
ଜୟ ତୁ ଶାରଳା ମାଗୋ ପରମ ବୈଷ୍ଣବ ।
ଜୟ ତୁ ଶାରଳା ମାଗୋ ଜଗତ ଜନନୀ
ଜୟ ତୁ ଶାରଳା ବନ୍ଦେ ତୋର ପାଦ ବେନି ।
ଝଙ୍କଡ଼ ପୁରରେ ମୁହିଁ ରହି ପ୍ରତିଦିନ
ଭାବିବାରୁ ମୋତେ ତୁମ୍ଭେ ହେଲ ସୁପ୍ରସନ୍ନ ।
ତୋହର ପ୍ରସାଦେ ମୁହିଁ ଲେଖିଛି ଏ ଗ୍ରନ୍ଥ
ଶୂଦ୍ରମୁନି ମୁଁ ଶାରଳା ଦାସ ତବ ଭୃତ୍ୟ ।

—o—

## ଦ୍ରୌପଦୀ ସ୍ୱୟମ୍ବରେ ଲାଖ ନିର୍ମାଣ

ଏଥୁଅନ୍ତେ ଯେ ବିଲଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ପାଦପଦ୍ମେ କରି ଦିବ୍ୟ ପୂଜା ।
ସୁଗନ୍ଧ ଧୂପ ଦୀପ ଅର୍ଘ୍ୟେ ନଇବେଦ୍ୟ ଦେଇ
ମସ୍ତକରେ କର ଯୋଡ଼ି ବିନୟେ ପୁଚ୍ଛଇ ।
ହେ ମହାତ୍ମା କୁହ ମୋତେ ଭାରତ ଚରିତ
ତବ ମୁଖରୁ ଶୁଣିଣ ହୋଇବି ପବିତ୍ର ।
କେଉଁପରି ଦ୍ରୌପଦୀକୁ ଲଭିବେ ପାଣ୍ଡବେ
କହିବା ହେଉ ତା ବିସ୍ତାରିଣ ମୋତେ ଏବେ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ଦଣ୍ଡଧର
ଜାଣିଲଇଁ ଅଟ ମହାଭାଗ୍ୟବନ୍ତ ନର ।
ଯେଉଁ ଭାରତ ଶ୍ରବଣେ ତୁମ୍ଭର ଉତ୍ସାହ
ତେଣୁ କହୁଛି ମୁଁ ତାହା ଶୁଣ ନରରାୟ ।
କାର୍ତ୍ତିକ ଶୁକଳପକ୍ଷ ପୌର୍ଣ୍ଣମୀର ଦିନ
ଗୁରୁବାର ଯେ ରୋହିଣୀ ଋକ୍ଷ ବିଦ୍ୟାମାନ ।
ଦ୍ୱାରକାରୁ ବିଜେ ରାମ କୃଷ୍ଣ ବେନି ଭାଇ
ହସ୍ତିନାକୁ ଗଲେ ଧୃତରାଷ୍ଟ୍ର ଦେଖା ପାଇଁ ।
ଦେଖି ଧୃତରାଷ୍ଟ୍ର କଲେ ଗଉରବେ ପୂଜା
ଆସ୍ଥାନରେ ବିଜେ କଲେ ଦେବଙ୍କର ରାଜା ।
ବିଦୂର ପୁରେ ଶ୍ରୀକୃଷ୍ଣ ବିଜୟେ ଏକାନ୍ତେ
କୁଶଳ ବାରତା ପଚାରନ୍ତି ଜଗନ୍ନାଥେ ।
ଶ୍ରୀ ବାସୁଦେବଙ୍କ ପାଦେ ବିଦୂର ପ୍ରଣମି
ଆୟୁ ଭୁକ୍ତି ମୁକ୍ତି ଦେଲେ ପ୍ରଭୁ ଦେବସ୍ୱାମୀ ।
ବିଦୂରଙ୍କ ପ୍ରତିବାକ୍ୟ ଶୁଣି ଦାମୋଦର
କାହିଁ ରହିଛନ୍ତି ମାତା ଘେନି ପାଞ୍ଚବୀର ।
ସ୍ୱାମୀ ପୋଏ ଯେମନ୍ତେ ଏ ବାରତା ପାଆନ୍ତୁ
ପାଞ୍ଚାଳା ଦେଶକୁ ତହିଁ ତ୍ୱରା ହୋଇଯାନ୍ତୁ ।
ଅର୍ଜୁନେ ପ୍ରାପତ ହେବ ଦ୍ରୁପଦ ଦୁହିତି
ରାଜାକୁ ନିମନ୍ତ୍ରି ଅଛି ପାଞ୍ଚାଳ ନୃପତି ।
ବଡ଼ ସମାରୋହେ କରିଅଛି ସ୍ୱୟମ୍ବର
ଦୁର୍ଯ୍ୟୋଧନ ଯିବ ଆଜ ମଧ୍ୟମ ପ୍ରହର ।
ସମସ୍ତ ଦେଶରୁ ପୁଣି ଯିବେକ ନୃପତି
ଅର୍ଜୁନଙ୍କୁ ଦେବାପାଇଁ ଦ୍ରୁପଦର ମତି ।
ଖୋଜି ଭେଟ ନ ପାଇବେ ଟୀରେଛନ୍ତି କାହିଁ
ଏ ଚିନ୍ତା ଲାଗିଲା ତୋତେ ପ୍ରଭୁ ଯଦୁସାଇଁ ।
ପାଣ୍ଡବେ ବର୍ତ୍ତନ୍ତି ସିନା ବିଷ୍ଣୁର ଆଶ୍ରୟେ
ତୁ ଚିନ୍ତା ନ କଲେ ରାଜ୍ୟ ପାଇବେ କି ପୋଏ ।
ବିଦୂର ସଙ୍ଗତେ କଥା କହୁ ନାରାୟଣ
ଯୋଗଧ୍ୟାନ ଲୟ କଲେ ବ୍ୟାସଙ୍କୁ ଶରଣ ।
ଦଣ୍ଡ କମଣ୍ଡଳୁ କଷା କୌପୀନ ବିଭୂତି
ଘେନି ପରାଶର ସୁତ ବିଜେ ତାଙ୍କ କତି ।
ବିଦୂର କଲେକ ଶତ ସହସ୍ର ପ୍ରଣାମ
ବ୍ୟାସଦେବ ପୁଚ୍ଛାକଲେ ଶ୍ରୀ ପୁରୁଷୋତ୍ତମ ।
ଗୋବିନ୍ଦ ବୋଇଲେ ପୁଣି ବ୍ୟାସ ମୁଖ ଚାହିଁ
ପାଣ୍ଡବେ ଅଛନ୍ତି କହ ଏତେ ବେଳେ କାହିଁ ।

ଯୋଗଧ୍ୟାନେ ଚିନ୍ତା କଲେ ସତ୍ୟବତୀ ଶିଷ୍ୟ
ଜାଣିଲେ ଯେ ପଞ୍ଚବଟୀ ପାଣ୍ଡବଙ୍କ ବାସ ।
ବ୍ୟାସ ବୋଇଲେ ଶୁଣିମା ହେଉ ଦାମୋଦର
ପାଣ୍ଡବେ ରହିଅଛନ୍ତି ରାମବେଣୀ ତୀର ।
ସୁର ନଦୀରେ ମାଇଲେ କୁମ୍ଭୀର ଦୈତ୍ୟକୁ
ମଧୁବନେ ନାଶ କଲେ ଦୈତ୍ୟ କିନ୍ନରକୁ ।
ହିଡ଼ିମ୍ବକ ବନେ ଦୈତ୍ୟ ହିଡ଼ିମ୍ବକ ମାରି
ଏକଚକ୍ରୀ ନଗ୍ରେ ବକ ଦୈତ୍ୟକୁ ସଂହାରି ।
ହିଡ଼ିମ୍ବିକ ବିଭା ହୋଇ ବୀର ଭୀମସେନ
ଘଟୋତ୍କଚ ନାମେ ପୁତ୍ର କରି ଉତପନ୍ନ ।
ସର୍ବ କୁଶଳେ ପାଣ୍ଡବେ ଅଛନ୍ତି ନା କ୍ଷମେ
ତାହାଙ୍କୁ ଚିନ୍ତା କରନ୍ତି ପୁରୁଷ ଉତ୍ତମେ ।
ବ୍ୟାସ ବୋଇଲେ ବିଦୂର ଥିବାରୁ ତୋ ଦୟା
ପାଣ୍ଡବେ କାଟିଲେ ସିନା ଦୁର୍ଯ୍ୟୋଧନ ମାୟା ।
ଶ୍ରୀହରି ବୋଇଲେ ତୁମ୍ଭେ ପାଞ୍ଚାଳକୁ ଯିବ
ବ୍ୟାସ ଲାଖ ବୋଲି ମହାଲାଖେକ ପାତିବ ।
କହିଲେ ଏସନ ବାଣୀ ଶୁଣି ବାସୁଦେବ
ତ୍ରୈଲୋକ୍ୟକୁ ସେ ଅଦୃଷ୍ଟ ଅଶ୍ରୁତି ହୋଇବ ।
ମନଭେଦୀ ନାରାଚେ ସେ ଲାଖ ଜୟ ହେବ
ଆନ ନାରାଚରେ କେହି ବିନ୍ଧି ନ ପାରିବ ।
ଏମନ୍ତ କରି ପାତିବା ତହିଁ ମହଲାଖ
ତଳେ ଧନୁ ଏକ ଥିବ ବଳ ଏକଲକ୍ଷ ।
ଦ୍ରୁପଦ ଦେଶରେ ତୁମ୍ଭେ ଏମନ୍ତ ସଞ୍ଚିବ
ଏମନ୍ତ ବୋଇଲେ ଶୁଣି ପ୍ରଭୁ ବାସୁଦେବ ।
ଦୁର୍ଯ୍ୟୋଧନ ଶକୁନିର ଭାଙ୍ଗିବ ଗାରିମା
ଲକ୍ଷେ ରାଜା ଦେଖିବେ ସେ ଅର୍ଜୁନ ମହିମା ।
ଦ୍ରୁପଦ ଆମ୍ଭଙ୍କୁ କରିଅଛି ନିମନ୍ତ୍ରଣ
ଆମ୍ଭେ ଯାଉଅଛୁ ଉଗ୍ରସେନ ସହିତେଣ ।
ନାରାୟଣ ଆଜ୍ଞା ପାଇ ଗଲେ ମୁନିବରେ
ମନଭେଦୀ ଶର ଦେଲେ ବ୍ୟାସଙ୍କ ହସ୍ତରେ ।
ଏ ନାରାଚ ଗୋଟି ତୁମ୍ଭେ ଅର୍ଜୁନକୁ ଦେବ
ଏଥିରେ ବାସବୀ ରାଧାଚକ୍ରକୁ ବିନ୍ଧିବ ।
ଏହି ରାଧାଚକ୍ର ନିଅ ପାତିବ ସଭାରେ
ଅନ୍ତରୀକ୍ଷେ ବୁଲୁଥିବ ଶୂନ୍ୟେ ନିରନ୍ତରେ ।
ରାଧାଚକ୍ର ମନଭେଦୀ ଶର ହସ୍ତେ ଘେନି
ତହୁଁ ପୁଣି ଚଳିଗଲେ ବ୍ୟାସ ମହାମୁନି ।
ପ୍ରବେଶ ହୋଇଲେ ଯାଇଁ ସେ ପାଞ୍ଚାଳଦେଶେ
ମନ୍ତ୍ରୀ ଜଣାଇଲେ ବିଜେ କଲେ ମୁନି ବ୍ୟାସେ ।
ବ୍ୟାସ ପ୍ରବେଶ ଆସନ ଛାଡ଼ିଣ ଦ୍ରୁପଦେ
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲେ ବ୍ୟାସପଦେ ।

ପରମ କଲ୍ୟାଣ ପ୍ରାପ୍ତ ହେଉ ରାଜା ତୋତେ
ସ୍ୱୟମ୍ବର ବିଧାନ ତୁ ପାତିଲୁ କେମନ୍ତେ ।
ଗଙ୍ଗାର କୂଳେ ଉଠିଛି ଦେଖ ଘରମାନ
ପାଞ୍ଚ ଅର୍ବୁଦ ଘଟନାକାରୀ ମହାଜନ ।
ପାଞ୍ଚ ନଳରେ ନିର୍ମାଣ କଲେ ଦଣ୍ଡକାଠି
ତିନି ନଳ ଭିଆଇଲେ ତହିଁ ବଖରାଟି ।
ବାଆକ୍ଷଠି ବଖରାରେ ଘରେକ ନିର୍ମିତ
ଛତ୍ର ଘରମାନ ହେଲା ଚବିଶ ଆୟତ ।
ରାଜାଙ୍କ ନଗର ପାଞ୍ଚଲକ୍ଷ ଶଙ୍ଖ ଘର
ଅଶ୍ୱଶାଳମାନ ହେଲା ହଜାର ହଜାର ।
ରାଜାମାନଙ୍କ ନବରବର ଆୟତନ
ଦଶଅୟୁତେ କନକ ପ୍ରତିମା ଲିଖନ ।
ଖମ୍ବର ଉପରଯାକ କନକ ଛାଉଣୀ
ରୁଅ ଘର ପଟ ସବୁ ସୁବର୍ଣ୍ଣରେ ପୁଣି ।
ତହିଁର ଉପରେ ଯାଇଅଛି ରୂପୀ ଶ୍ରେଣୀ
ବସିଛି କଳସ ଯେତେ ଢଳା ରତ୍ନମଣି ।
ଲକ୍ଷେ ଜଗତୀ ଆସ୍ଥାନ ତହିଁ ବସିବାକୁ
କନକ ଯୋଗାଡ଼ ତହିଁ ଅଛି ମଣୋହିକୁ ।
ଅନେକ ଗଠନ ସବୁ ସ୍ନାନର ଯୋଗାଡ଼
ଲକ୍ଷେକ ଯୋଗାଡ଼ ଲକ୍ଷେ ରାଜାଙ୍କ ସମ୍ଭାର ।
ସ୍ୱୟମ୍ବର ପାଇଁ ଛାୟା ମଣ୍ଡପ ନିର୍ମାଣି
ପାଞ୍ଚଯୋଜନ ଅୟୁତ କନକ ଛାଉଣୀ ।
ଲକ୍ଷେକ ଆସନ ଅଛି ଛାୟା ମଣ୍ଡପରେ
ଅଷ୍ଟରତ୍ନେ ନିର୍ମିତ ସେ ସୁବର୍ଣ୍ଣ ଖମ୍ବରେ ।
ରାଜାଙ୍କର ବସିବାକୁ ସ୍ୱର୍ଣ୍ଣ ସିଂହାସନ
ସେ ଖମ୍ବରେ ଆଉଯିବ ଆଠହାତ ଜାଣ ।
ନେତର ସୁପାତି ନେତ୍ର ଚନ୍ଦ୍ରାତପ ଜାଣି
ଲମ୍ବନ୍ତି ମୁକୁତାପନ୍ତି ଅଷ୍ଟରତ୍ନ ପୁଣି ।
ଆଠଲକ୍ଷ ସୂପକାର ସେ ଚନ୍ଦ୍ରଶାଳାକୁ
ଜଣକେ ଚାରି ଚାରି ଯେ ଯୋଗାଡ଼ ଦେବାକୁ ।
ଅଶ୍ୱ ରାଜାମାନଙ୍କର ଖାଦ୍ୟ ଘାସ ବିରି
ଏ ସମସ୍ତେ ସମ୍ପାଦିଲେ ଅତି ଯତ୍ନ କରି ।
ବ୍ୟାସ ହିଁ ପ୍ରଶଂସା କଲେ ଦ୍ରୁପଦ ରାଜାକୁ
ସାଧୁ ସମ୍ପାଦିଲୁ ରାଜା ଦ୍ୱାପର ଯୁଗକୁ ।
ଦ୍ରୁପଦ ବୋଇଲେ ଦେବ ପାର୍ଥ ଯେବେ ଥାନ୍ତା
ପ୍ରଦାନ କରନ୍ତି ନେଇ ମୋହର ଦୁହିତା ।
ଏହି ଯାଜ୍ଞସେନୀ ମୋର ଅଗ୍ନିରୁ ଉତ୍ପତ୍ତି
ତାହାର ନିମନ୍ତେ ମୁହିଁ ସମସ୍ତ ନିମନ୍ତ୍ରି ।
ବ୍ୟାସ ବୋଇଲେ ନୃପତି ଆମ୍ଭ ବୋଲ କର
ଲାଖ ଗୋଟିଏ ପୋତିବା ଏଠାରେ ତୁମ୍ଭର ।

ପାଣ୍ଡବେ ମଲେଣି ବୋଲି ସର୍ବେ ବାର୍ତ୍ତା ପାଉଁ
ଆମ୍ଭେ କେବେ ଏ କଥାରେ ପ୍ରତୀତ ନ ଯାଉଁ ।
ବାସବ ପବନ ଧର୍ମ ଅଶ୍ୱିନୀ କୁମାର
ଅଟନ୍ତି ଏମାନଙ୍କର ପୁତ୍ର ପଞ୍ଚବୀର ।
ଅର୍ଜୁନର ଅଟନ୍ତି ଯେ ଆତ୍ମା ଜଗନ୍ନାଥେ
କୋଳେ ଧରି କୃଷ୍ଣା ନାମ ଦେଲେ ଯଥା ଅର୍ଥେ ।
ବିଦୁର ସର୍ବଦା ରକ୍ଷା କରେ ପାଣ୍ଡବଙ୍କୁ
ଧର୍ମେ ବାସୁଦେବଙ୍କର ଅନୁଗ୍ରହ ତାଙ୍କୁ ।
ଆବର ସମସ୍ତ ଜାଣେ ମନ୍ତ୍ରୀ ସହଦେବ
ଏମାନେ ଥାଇ କେମନ୍ତେ ପ୍ରମାଦ ପଡ଼ିବ ।
ମହାଯଜ୍ଞୁ ଜାତ ହେଲେ ତୋର ଯାଜ୍ଞସେନୀ
ମାନବ ଭାରିଜା କାହୁଁ ହେବ ନା ନନ୍ଦିନୀ ।
ଲାଖ ଗୋଟିଏ ଯେ ଆମ୍ଭେ କରିଛୁ ନିର୍ମାଣ
ସେ ଲାଖ ଯେ ବିନ୍ଧିବ ତୋ କନ୍ୟା ତାର ଜାଣ ।
କୂଟ ଲାଖ ପୋତିଲେକ ମୁନି ବେଦବ୍ୟାସ
ଦେବତାଙ୍କୁ ଅଗୋଚର ମାନବେ ଅଦୃଶ୍ୟ ।
ମାନବ ସାନ ତାଳକୁ ଏକ ତାଳ ବୋଲେ
ଦେବତାଳ ସାତ ତାଳେ ଚକ୍ରକୁ ସ୍ଥାପିଲେ ।
ମାନବ ତାଳେ ଉତ୍ସର୍ଗ ତାକୁ ଅଣଚାଶ
ଆକାଶରୁ ଚାହିଁଲେ ସେ ହୁଅଇ ଅଦୃଶ୍ୟ ।
ସେହି ରାଧା ଚକ୍ରରେ ଯେ ସହସ୍ରେକ ଧାର
ଗୁପ୍ତେ ବୁଲୁଛି କୁରାଳ ଚକ୍ରର ଆକାର ।
ତା ଉପରେ ବସାଇଲେ ସୁବର୍ଣ୍ଣର ମାଛ
ତଳେ ଧନୁ ଥୋଇଲେ ତା ଲବ ଏକଲକ୍ଷ ।
ତାଳେକ ଉପରେ ସ୍ୱର୍ଣ୍ଣପଟାଏ ନିର୍ମାଣି
ତହିଁ ତଳେ ବସାଇଲେ ତୀର୍ଥ ଘଟ ପାଣି ।
ବ୍ୟାସଦେବ ପ୍ରତି ବାକ୍ୟ ଶୁଣ ହେ ନୃନାଥ
ଏ ଧନୁ ଧରିବାକୁ ଯେ ହେବ ସାମରଥ ।
ତଳକୁ ଦୃଷ୍ଟି ହୋଇବ ଉପରକୁ ମୁଷ୍ଟି
ଚକ୍ରଭେଦୀ ମାଛର ଯେ ବାମଚକ୍ଷୁ ଫୁଟି ।
ଏସନ ସ୍ୱରୂପ ସେହୁ ଏହି ଲାଖ ବିନ୍ଧେ
ତାହାକୁ ଦୁହିତା ଦେବୁ ନୃପତି ସାନନ୍ଦେ ।
ଏମନ୍ତେ କହିଲେ ପୁଣ୍ୟ ବ୍ୟାସ ମହାମୁନି
ଯେ ତାକୁ ବିନ୍ଧିବ ସେହୁ ଅଟେ ଫାଲଗୁନି ।
ଏହା ତୁ ତଦନ୍ତ କରି ଜାଣିଥାଅ ମନେ
ଏହା କହି ସେ ମହାତ୍ମା ଗଲେ ଅନ୍ତର୍ଦ୍ଧାନେ ।
ପାଣ୍ଡବେ ରହିଅଛନ୍ତି ରାମବେଣୀ କୂଳେ
କୁରୂପ ଧଇଲେ ବ୍ୟାସମୁନି କୁତୂହଳେ ।
ପଛକୁ ଲମ୍ବିତ ଜଟାଭାର କାଛ କାଟି
ପଞ୍ଚବକ୍ରେ ଚାଲନ୍ତି ଯେ ପ୍ରପଞ୍ଚ ଲାଙ୍ଗଟି ।
ଲୋହିତେ ବଚନ ଜଟାଜୁଟ ତାଙ୍କ ଶିରେ
ଧବଳ ଚିହ୍ନ ମାତ୍ରକ ଅଛଇ ଶରୀରେ ।
ଭ୍ରୁକୁଟି କୁଟିଳ ପୁତ ଗଳିତ ଦ୍ୱିଆଖି
ଭୀମସେନ କରତାଳି ମାରେ ହସି ଦେଖି ।
ମନୁଷ୍ୟ ଲାଙ୍ଗଟି ରୂପ ପରପଞ୍ଚ କାୟେ
କି ବା ମାଏ ଅଳଙ୍କାର ଏ ଜନ୍ତୁ ଗୋଟାଏ ।
ଯୁଧିଷ୍ଠି ବୋଇଲେ ସହଦେବ ମୁଖ ଚାହିଁ
ଏତେ କାଳ ବନେ ଏହା ଦେଖି ନାହିଁ ମୁହିଁ ।
ମନ୍ତ୍ରୀ ବୋଲେ ନ କରନ୍ତୁ ଦେବ ଉପହାସ
ଆମ୍ଭ କଷଣ ନିମନ୍ତେ ବିଜେ କଲେ ବ୍ୟାସ ।
ବିଦୁର ଶ୍ରୀ ବାସୁଦେବ ଦେଲେ ପଠିଆଇ
ଆମ୍ଭଙ୍କୁ ବିଡୁଅଛନ୍ତି କୁରୂପ ଯେ ହୋଇ ।
ପୁତ୍ରକୁ ଘେନିଣ ଉଠି କୁନ୍ତୀ ମହାଦେଈ
ଶତସହସ୍ର ପ୍ରଣାମି କହେ ପାଦେ ଯାଇ ।
ବ୍ୟାସ ବୋଇଲେ ଆମ୍ଭଙ୍କୁ ଚିହ୍ନିଲ କେମନ୍ତେ
ନ ଚିହ୍ନିବ ବୋଲି ଆମ୍ଭେ ଅଇଲୁ ଏମନ୍ତେ ।
ପରପଞ୍ଚ ରୂପ ତହିଁ ଛାଡ଼ି ମୁନିବରେ
ବସିଲେ ସେ ନିଜରୂପ ଧରି ଆସନରେ ।
ପୁଣି ପ୍ରଣିପାତ କରି ପଣ୍ଡୁର ତନୟେ
ଆଣିଦେଲେ କୃଷ୍ଣାଜିନ ଛାଲରୁ ଗୋଟିଏ ।
କୁନ୍ତୀ କାନ୍ଦି ବୋଇଲେ ଯେ ବ୍ୟାସ ମୁଖ ଚାହିଁ
ତୁମ୍ଭେ ଥାନ୍ତେ ମୋର ପୋଏ ବନବାସୀ ହୋଇ ।
ହୀନଜନ ପ୍ରାୟ ହୋଇ ନଗ୍ରେ ମାଗୁଁ ଭିକ
ଗାନ୍ଧାରୀ ପୋଏ ସମ୍ପଦ ପାଇ କଲେ ସୁଖ ।
କୁନ୍ତଭୋଜ ନନ୍ଦିନୀ ମୁଁ ସୋମବଂଶ ବଧୂ
ଏଡ଼େ ଲୋକ ହୋଇ ମୋର ଜୀବନ ଅସାଧୁ ।
କ୍ଷତ୍ରୀୟ କୁଳେ ଜନମ ହେଲେ ମୋର ପୋଏ
ଅପୁତ୍ରିକ ପ୍ରାୟେ ମୁହିଁ ବହୁକଷ୍ଟ ପାଏ ।
କହୁ କହୁ କୁନ୍ତୀଙ୍କର ଶୋକ ଯେ ଅପାର
ବ୍ୟାସ ବୋଇଲେ ମାତା ଗୋ ଶୋକ ଶାନ୍ତ କର ।
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ଚାରି
ବଳେ ଯହୁଁ ନାଶ କଲେ ଅମର ନଗରୀ ।
ନ ସହିଲା ତାହାଙ୍କର ଭାରା ଏ ମେଦିନୀ
ସେ କାରଣୁ ଏହା ଆଜ୍ଞା ଦେଲେ ପଦ୍ମଯୋନି ।
ଅସୁରଙ୍କୁ ବଧ କଲେ ତୋର ପୁତ୍ର ବନେ
ଅନେକ ସାନନ୍ଦ ଏବେ ହେଲେ ଦେବଗଣେ ।
ପୁତ୍ର ଘେନି ସୁଖ ଭୋଗ କର ଏବେ ମାଏ
ନିଷ୍କଣ୍ଟକ ରାଜ୍ୟ ଭୋଗ କରନ୍ତୁ ତୋ ପୋଏ ।
ଭାରା ନିବାରିବା ଅର୍ଥେ ହୋଇଛି ଜନମ
ଆପଦ ଅନ୍ତେ ଗୋ ପୁଣି ଉଦେ ହୁଏ ଧର୍ମ ।

ଧର୍ମ କର୍ମ ଫଳ ସିନା ପାରଇ ବିନାଶି
ରହି ଶରୀରରେ ଭୋଗ କରେ ଚାରିରାଶି ।
ଜନ୍ମ ନକ୍ଷତ୍ର ପଡ଼ନ୍ତେ ପାଇଲେ ଏ ଦୁଃଖ
କର୍ମ ନକ୍ଷତ୍ର ଭୁଞ୍ଜିବେ ପୁଣି ରାଜ୍ୟ ସୁଖ ।
ଆପଦ ପାର ଗଲାଣି ଅଳ୍ପଦିନ ସହ
ରାତ୍ର ଦିବସେ ଚଳଗୋ କ୍ଷଣେ ହେ ନ ରହ ।
ଦ୍ରୁପଦ ନୃପତି କରିଅଛି ସ୍ୱୟମ୍ବର
ଲକ୍ଷେକ ନୃପତି ବିଜେ କରିବେ ତୋ ପୁର ।
ବିନ୍ଧିବ ଯେ ରାଧାଚକ୍ର ଲାଖ ଫାଲଗୁନି
ତୁମ୍ଭଙ୍କୁ ପ୍ରାପତ ସିନା ହେବ ଯାଜ୍ଞସେନୀ ।
ସେ କନ୍ୟା ନିମନ୍ତେ ଗୋଳ ହୋଇବ ସଂଗ୍ରାମ
କୌରବଙ୍କ ବଳ ଦର୍ପ ହରିବ ଏ ଭୀମ ।
ଆସୁଛନ୍ତି ହରି ବଳରାମ ବେନି ଭାଇ
ତହିଁ ଭେଟ ହେବ ତୁମ୍ଭେ ସମସ୍ତେ ହେଁ ଯାଇ ।
ସ୍ୱୟମ୍ବର ହୋଇବାକୁ ଅଛି ଷୋଳଦିନ
ଏଥକୁ ଯେ ତିନିଶତ ପଞ୍ଚାଶ ଯୋଜନ ।
ବାବୁ ଅର୍ଜୁନରେ ତୁହି ପାରୁ ଲାଖ ବିନ୍ଧି
କୃଷ୍ଣ ତୋତେ ଦେଇଛନ୍ତି ଶର ମନଭେଦୀ ।
ଏ ମନ ଭେଦୀ ଶରକୁ ରଖ ଅତି ଯତ୍ନେ
ଭେଟିବ ଏ ଲକ୍ଷ ଯୁଣେ ପେଷ ଯହିଁ ମନ ।
ଆମ୍ଭେ ଯାଉଅଛୁ ସେହି ସ୍ୱୟମ୍ବର କାଲି
ପବନ ହୁଁ ବେଗେ ହୋଇଯିବ ବାବୁ ଚାଲି ।
ଏତେକ ବୋଲି ପାଦୁକା ମନ୍ତ୍ର ମୁନି ଦେଲେ
ନିମିଷକେ ଲକ୍ଷ ଯୁଣ ଗମିବ ଯା ବଳେ ।
ସମସ୍ତ ମନ୍ତ୍ର ଦେଇଣ ଚଳନ୍ତେ ସେ ବ୍ୟାସ
ପଚାରିଲେ ଯୁଧିଷ୍ଠିର ବସି ତାଙ୍କ ପାଶ ।
ଦ୍ରୌପଦୀ ପ୍ରାପତ ମୁନି ହୋଇବ କି ମୋତେ
କନ୍ୟା ପାଇବାର ହେଲେ ଯିବୁନା ତୁରିତେ ।
ଯେବେ ପ୍ରାପତ ନୋହିବ ଦ୍ରୁପଦ କୁମାରୀ
ନ ପାଇଲେ ଅପମାନ ହୋଇବ ଆମ୍ଭରି ।
ବ୍ୟାସଦେବ ବୋଇଲେ ହୋ ଶୁଣ ଯୁଧିଷ୍ଠିର
ଅର୍ଜୁନ ପାଇଁ ଦ୍ରୁପଦ କନ୍ୟା ସ୍ୱୟମ୍ବର ।
ଯୁଧିଷ୍ଠିର ପ୍ରତି ବାକ୍ୟ କହିଲ ତା ମିଥ୍ୟା
ଆମ୍ଭେ ଶୁଣିଲୁ ଦ୍ରୌପଦୀ ସ୍ୱୟମ୍ବର ବାର୍ତ୍ତା ।
ତୁମ୍ଭେ ବୋଇଲ ଅର୍ଜୁନ ଅଟେ ତାର ବର
ଶୁଣିବାକୁ ତୁମ୍ଭର ଏ କଥା ଅଗୋଚର ।
ପାଣ୍ଡବେ ମଲେ ବାରୁଣାବନ୍ତ ଜତୁ ଘରେ
ଏ ବାରତା ଗୋଟି ବୁଲିଗଲା ତିନିପୁରେ ।
ଏଡ଼େକ ସୁଜ୍ଞାନୀ କାହିଁ ହୋଇବ ଦ୍ରୁପଦ
କେମନ୍ତ ପାଇବ ଅବା ଅର୍ଜୁନ ସମ୍ବାଦ ।
ବ୍ୟାସ ପ୍ରତିବାକ୍ୟ ତୁମ୍ଭେ ଶୁଣ ଆଦ୍ୟ କଥା
ଆମ୍ଭେ ସିନା ଜାଣିଅଛୁ ତହିଁର ବାରତା ।
ଦ୍ରୋଣ ଦ୍ରୁପଦ ଏ ଦୁହେଁ ହୋଇଲେ ବିବାଦୀ
ଅର୍ଜୁନ ହାତରେ ନେଲେ ଦ୍ରୁପଦକୁ ବାନ୍ଧି ।
ଦୁର୍ଯ୍ୟୋଧନ ଅପରାଧ କଲା ଦ୍ରୁପଦର
ମଇତ୍ରକୁ ଛାଡ଼ିଦେଲେ ଝିଙ୍ଗାସୁ ଅପାର ।
ଲାଜେ ଦ୍ରୁପଦ ତାହାର ରାଜ୍ୟକୁ ନ ଗଲା
କୌରବ ଜିଣିବା ପାଇଁ ହର ସେବା କଲା ।
କଠୋର ସେବାରେ ବିଜେ କଲେ ତ୍ରିଲୋଚନ
କୌରବଙ୍କୁ ନପାରିବୁ ଜିଣି ତୁ ରାଜନ ।
ପୃଥ୍ୱୀଭାରା ଉଶ୍ୱାସିବ ବୀର ଧନଞ୍ଜୟ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ସର୍ବେ ଯିବେ କ୍ଷୟ ।
ପୀରତି ତୁ ବଢ଼ାଇବୁ ଅର୍ଜୁନର ତୁଲେ
କଉରବେ ନାଶଯିବେ ଧନଞ୍ଜୟ ବଳେ ।
ବିଶ୍ୱନାଥ ଆଜ୍ଞା ପାଇ ପାଞ୍ଚାଳେଶ ଗଲା
ଆମ୍ଭଙ୍କୁ ବରି ସନ୍ତତି ଯଜ୍ଞ ରାଜ୍ୟେ କଲା ।
ଆମ୍ଭଙ୍କୁ ବୋଇଲେ ତହିଁ ସେ ଦ୍ରୁପଦ ରାଏ
ଯଜ୍ଞୁ ଜାତ କରାଇବ ଦୁହିତା ଗୋଟିଏ ।
ସେ କନ୍ୟା ରତ୍ନକୁ ମୁହିଁ ଅର୍ଜୁନକୁ ଦେବି
ତା ହସ୍ତେ କୌରବ ବଂଶ ନାଶ କରାଇବି ।
ତାହାର ବୋଲେ ଯେ ଆମ୍ଭେମାନେ ଯଜ୍ଞ କଲୁ
ଆହୁତି ଅଗ୍ନିରେ ଦେଇ ଚରୁ ଭିଆଇଲୁ ।
ତହୁଁ ଜାତ ହେଲେ ଧୃଷ୍ଟଦ୍ୟୁମନ ଦ୍ରୌପଦୀ
କନ୍ୟା ରୂପ ଦେଖି ମୋହ ଯିବେ ଜମ୍ବୁଭେଦୀ ।
ଶବଦ ଶୁଭିଲା ପଞ୍ଚପାଣ୍ଡବେ ଯେ ମଲେ
ବାରୁଣାବନ୍ତରେ ଜତୁ ଘରେ ଦଗ୍ଧ ହେଲେ ।
ବିଚକ୍ଷଣ ରାଜା ସେହି ଦ୍ରୁପଦ ନୃପତି
କୁମ୍ଭ ନାଶ ଗଲା କଲା ନ କର ପ୍ରତୀତି ।
ତେଣୁ ଏକ ମହାଲାଖ ପାତିଲା ଦ୍ରୁପଦ
ଅର୍ଜୁନର କିଛି ମାତ୍ର ନ ପାଇ ସମ୍ବାଦ ।
ଲୋକେ ଜାଣିବାକୁ ସିନା କୃଷ୍ଣା ସ୍ୱୟମ୍ବର
ଅର୍ଜୁନକୁ କନ୍ୟା ଦେବ ପାଞ୍ଚାଳ ଈଶ୍ୱର ।
ମିଳିବେ ତହିଁ ଅନେକ ଦେଖି ନର ଦେବ
ଅର୍ଜୁନ ଗଲେ ସିନା ଏ ସ୍ୱୟମ୍ବର ହେବ ।
ସ୍ୱୟମ୍ବର କଥା ତୁମ୍ଭେ ଶୁଣିଥିଲ କାହିଁ
ଯୁଧିଷ୍ଠି ବୋଇଲେ ଗଲେ ସୁମନ୍ତକ କହି ।
ବ୍ୟାସଙ୍କ ମୁଖୁଁ ଏସନ ବାକ୍ୟ ତହିଁ ଶୁଣି
ସାନନ୍ଦ ହୋଇଲେ କୁନ୍ତିଭୋଜର ଦୁଲଣୀ ।
ଏତେ କହି ସେ ମହାତ୍ମା ଗଲେ ଅନ୍ତର୍ଦ୍ଧାନେ
ଚଳନ୍ତି ପାଣ୍ଡବମାନେ ଆନନ୍ଦିତ ମନେ ।

ଝଙ୍କଡ଼ପୁର ବାସିନୀ ଦେବୀ ଗୋ ଶାରଳା
ଦୁର୍ଗା ରୂପେ ଜନ୍ମି ବିନାଶିଲୁ ମହୀଭାରା ।
କାତ୍ୟାୟିନୀ ରୂପେ କଲୁ ଚଣ୍ଡ ମୁଣ୍ଡ ବଧ
କଉଶିକ ରୂପେ ଆଶ୍ରେ କରି ଗିରି ବିନ୍ଧ୍ୟ ।
ଶୁମ୍ଭ ନିଶୁମ୍ଭକୁ ମାରି ରଖିଲୁ ତ୍ରୈଲୋକ୍ୟ
ରକ୍ତବୀର୍ଯ୍ୟ ଦନୁଜର ରକ୍ତ ହେଲା ଭକ୍ଷ ।
ମୁହିଁ କି ବର୍ଣ୍ଣିବି ତୋର ମହିମା ଅନନ୍ତ
ଶାରଳା ଦାସ ମୁଁ ତବ ପାଦତଳ ଭୃତ୍ୟ ।
କେବଳ ସୁଦୟା ମାତ ମୋଠାରେ ରଖିଥା
ଗାଉଥିବି ଜନ୍ମେ ଜନ୍ମେ ତୋର ଗୁଣଗାଥା ।
ନ ଜାଣଇ ପାଠ ଶାଠ ଆଜନ୍ମୁ ମୁରୁଖ
ଶାରଦା ଶାରଦା ରଟୁ ସଦା ମୋର ମୁଖ ।

—o—

## ଅଙ୍ଗାର ପନ୍ନଗ ଯୁଦ୍ଧ

ଅଗସ୍ତି ବୋଇଲେ ଶୁଣ ମନୁ ନରସାଇଁ
ପାଞ୍ଚାଳ ଦେଶକୁ ଚଳିଯାନ୍ତି ପାଞ୍ଚଭାଇ ।
ଶତେକ ଯୋଜନ ଯାନ୍ତି ଏକଇ ଦିବସେ
କେତୁମାଳୀ ବନେ ଯାଇ ରହନ୍ତି ହରଷେ ।
ଗନ୍ଧର୍ବୀ ନଦୀ ଦକ୍ଷିଣଗାମୀ ତହୁଁ ବହେ
ଗନ୍ଧମାର୍ଦ୍ଦନ ପର୍ବତ ସନ୍ନିଧିରେ ରହେ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ହୋ ଅର୍ଜ୍ଜୁନ
ଏ ନଦୀ ଜଳେ କରିବା ଆଜ ପ୍ରାତଃ ସ୍ନାନ ।
ପ୍ରଶସ୍ତ ନଦୀ ଏ ବାବୁ ଦେଖ ପାଣି ଘାଟ
ପ୍ରକୃତି ନ କଲେ ହେବ ଏ ଶରୀର ନଷ୍ଟ ।
କରେ ଶୋଭା ପାଏ ଧନୁ ସୁନ୍ଦର ମୁରତି
ଯାଇ ସେହି ନଦୀଜଳେ ପ୍ରବେଶ ଝଟତି ।
ସେ ନଦୀ କୂଳେ ଦେଖଇ ଏକଇ ଉଦ୍ୟାନ
ଝଡ଼ି ପଡ଼ିଛନ୍ତି ତହିଁ ପାଚି ଫଳମାନ ।
ଅବସନ୍ତରେ ବହଇ ତହିଁରେ ବସନ୍ତ
ତୋଟାକୁ ଦେଖି ପ୍ରଶଂସା କରେ ବୀର ପାର୍ଥ ।
ସହସ୍ରେକ ବିଳାସିନୀ ଅତି ସୁକୁମାରୀ
ଜଗଜ୍ଜନ ମୋହିନୀ ଯେ ଅପୂର୍ବ ସୁନ୍ଦରୀ ।
ସର୍ବ ଅଳଙ୍କାର ପିନ୍ଧି ଅଛନ୍ତି କାମିନୀ
ଅଙ୍ଗେ ଆଭରଣ ରଙ୍ଗ ସୁଝୀନ ପତନୀ ।
ଜଳକ୍ରୀଡ଼ା ରଙ୍ଗେ ମାତିଥିଲେ ସେ ଯୁବତୀ
ସ୍ତନ ଯଉବନ ସବୁ ଫୁଟି ବିକଶନ୍ତି ।
ଅମୂଲ୍ୟ ବିଳାସିନୀ ସେ ମଞ୍ଜୁ ବିମ୍ବ ଓଷ୍ଠୀ
ପୁଷ୍ପ ତୋଳନ୍ତି ସେ ବାଳୀ ବନପ୍ରିୟ କଣ୍ଠୀ ।
ଅର୍ଜ୍ଜୁନକୁ ଦେଖିଲେ ସେ ତୋଟାର ଭିତରେ
ଅତି ସୁନ୍ଦର ଦେଖିଣ ଘାରି କାମଜ୍ୱରେ ।
ଭୟେ ସଂକୋଚେ ଚଳିଲେ ତହୁଁ ବଡ଼ ବେଗେ
ଯାଇ ପଡ଼ିଲେ ଅଙ୍ଗାର ପନ୍ନଗର ଆଗେ ।
ଗନ୍ଧର୍ବ ବୋଇଲା ହେଲା ଏ କଥା କେମନ୍ତ
କାହାକୁ ଦେଖି ତୁମ୍ଭର ଏଡ଼େ ଭୀତ ଚିତ୍ତ ।
ସେ ବୋଇଲେ ଦେବ ଏକ ପୁରୁଷ ଦେଖିଲୁ
ସୁନ୍ଦର ଦେଖି ତାହାକୁ ମୋହେ ବଶ ଗଲୁ ।
ପଳାଇ ଅଇଲୁ ଦେବ ତାହାଙ୍କର ଭୟେ
କିବା ସେ ମକରଧ୍ୱଜ ବିଷ୍ଣୁର ତନୟେ ।
ଏସନ ସମସ୍ୟା ଶୁଣି ଅଙ୍ଗାର ପନ୍ନଗ
କଦଳୀପତ୍ର ପରାୟେ କମ୍ପଇ ତା ଅଙ୍ଗ ।
ମୁହିଁ ସୁନ୍ଦର ପୁରୁଷ ଏ ତିନି ଭୁବନ
ମୋଠାରୁ ସୁନ୍ଦର ପୁଣି ଅଇଲା କେ ଆନ ।
କୁତୁହଳେ ତେଜିଲି ମୁଁ ପୁର ବାରସ୍ୱତୀ
ସହସ୍ରେ ଯୁବତୀ ଘେନି କ୍ରୀଡ଼ା କରେ ନିତି ।
ଶ୍ରୀ ହସ୍ତରେ ଘେନିଅଛି ଏକ ମହାଧନୁ
ରେ ରେ କାର କରି ଆସେ ବାସବର ସୁନୁ ।
ଦେଖଇ ସେ ପକ୍ୱଫଳ ତୋଳଇ ଫାଲଗୁନି
ବିଦ୍ୟାଧର ଧାଏଁ ତୀକ୍ଷ୍ଣ ମୁନା ଶର ଘେନି ।
ଗୁଣ ଟଙ୍କାର ଶବଦ ଶୁଣି ସବ୍ୟସାଚୀ
ଭୟେ କରେ ଫାଲ୍‌ଗୁନି ନାରାଚ ଆମଞ୍ଚି ।
ବିଦ୍ୟାଧର ବିନ୍ଧିଲାକ ପୁଣି ପାଞ୍ଚ ଶର
ନାରାଚ ଚୁମ୍ବନ ଦିଏ ପାର୍ଥ ବଦନର ।
ପୁଣି ଶର ବିନ୍ଧିଲା ସେ ସଚୀ ଦେବୀ ବାଳ
ରାଗେ ଫାଲ୍‌ଗୁନିର ଯେ ତେଜ ଅନର୍ଗଳ ।
ଆପେ ଶ୍ରୀ ହସ୍ତରେ ପାର୍ଥ ଘେନିଗଲେ ଧନୁ
ଅଙ୍ଗାରପନ୍ନଗ ଶର ଆଧାନ ସନ୍ଧାନୁ ।
ସହସ୍ରେ ଶର ବିନ୍ଧିଲା ବୀର ସବ୍ୟସାଚୀ
ଅଙ୍ଗାର ପନ୍ନଗ ପାଦତଳେ ଯାଇ ଲୁଚି ।
ନ ଚିହ୍ନି ଯେ ବେନିଭ୍ରାତେ କରନ୍ତି ସଂଗ୍ରାମ
ନାରାଚମାନ ତହିଁରେ ନ ଛାଡ଼ନ୍ତି ଧର୍ମ ।
ଯେବଣ ନାରାଚମାନ ବିନ୍ଧେ ବିଦ୍ୟାଧର
ଅର୍ଜ୍ଜୁନ ବଦନ ଚୁମ୍ବି ପଡ଼ନ୍ତି ଭୂଧର ।
ଅର୍ଜ୍ଜୁନ ଯେତେ ନାରାଚ ବିନ୍ଧେ କୁତୁହଳେ
ସେମାନେ ଯାଇ ପଡ଼ନ୍ତି ତାର ପାଦତଳେ ।
ଅନେକ ସଂଗ୍ରାମ ତହିଁ ହେଲା ଅନିମିତ୍ତେ
ଜିଣି ନ ପାରି ଗନ୍ଧର୍ବ ଲଘୁ ଅସ୍ତ୍ର ଶସ୍ତ୍ରେ ।
ବେଲୁବେଲ କୋପ କରି ବାସବର ବାଳ
ଦେବଶର ପ୍ରହାରିଲା ତେଜ ଅନର୍ଗଳ ।
ଦେଖି ପାର୍ଥ ବଜ୍ରଶର କଲାକ ସନ୍ଧାନ
ନ ବିନ୍ଧୁ ଛେଦିଲା ତାହା ବାସବ ନନ୍ଦନ ।

ଗନ୍ଧର୍ବ ଶର ବିନ୍ଧିଲା ପୁଣି କୋପଭରେ
ବଜ୍ରମୂନା ମୁଦ୍ଗରରେ ଅର୍ଜୁନ ନିବାରେ ।
ଅଗ୍ନିଶର ବିନ୍ଧିଲା ସେ ବାସବ ତନୟ
ଜଳଶରେ ନିବାରିଲେ ତାହା ଧନଞ୍ଜୟ ।
ବିନ୍ଧିଲା ପର୍ବତ ଶର ଜମ୍ଭୁଭେଦୀ ସୁତ
ବଜ୍ରଶରେ ଛେଦିଲା ତା ବୀରବର ପାର୍ଥ ।
ପନ୍ନଗ ଶର ଅଙ୍ଗାର ପନ୍ନଗ ପ୍ରହାରେ
ଗରୁଡ଼େ ଶରେ ଅର୍ଜୁନ ସେ ଶସ୍ତ୍ର ନିବାରେ ।
ବେଳୁବେଳ ଅର୍ଜୁନର ବଢ଼େ ମହାକୋପ
ରାଗେ ପେଷିଲା ଅମୋଘ ଶରେ ଧରି ଚାପ ।
ବୋଇଲା ଏବେରେ ମୋର ଶରକୁ ସମ୍ଭାଳ
ବିନ୍ଧିଲୁଣି ତୁ ଅନେକ ଶରରେ ଚଣ୍ଡାଳ ।
ବିଦ୍ୟାଧର ବୋଲେ ମୁଁ ଏ ଦେଶ ଅଧିକାରୀ
ପଶିଲୁ ତୁ ମୋ ତୋଟାରେ ମୋତେ ନ ପଚାରି ।
ଆରେ ନିର୍ଲ୍ଲଜ ତୋ ବଂଶେ ଲଗାଇଲୁ କାଳି
ଅସ୍ଥି ମାଂସ କାଟି ତୋତେ ଦେବି ଏଥେ ବଳି ।
ଅର୍ଜୁନ ବୋଇଲା ତୁ ତ ଅଟୁ ବାଟପଡ଼ା
ନିସଂଶୟେ ପ୍ରାଣ ତ୍ୟାଗ ହେବୁରେ ବାପୁଡ଼ା ।
ସହସ୍ରେ ଯୁବତୀ ତୋତେ କରିଛନ୍ତି ଆଶ
ତାହାଙ୍କ ବ୍ୟାକୁଳେ ତୋତେ ନ କରି ବିନାଶ ।
ଗନ୍ଧର୍ବ ଯେ କୋପ କଲା ଏ ବଚନ ଶୁଣି
ବେନି ଗଦା ବୁଲାଇଣ ଆସେ ଶିର ଝୁଣି ।
ମୋହନା ଶର ମାଇଲା ବୀର ଧନଞ୍ଜୟ
ଅଙ୍ଗାର ପନ୍ନଗ ତଳେ ପଡ଼ିଗଲା ମୋହ ।
ଧାଇଁଗଲା ସବ୍ୟସାଚୀ ହୋଇ କୋପାନଳ
ବାମକରେ ଧଇଲା ସେ ଗନ୍ଧର୍ବର ବାଳ ।
ବାମକରେ ବାଳ ଧରି ମହାକୋପ କରି
ଡାହାଣ କରେ ଧଇଲା ବିଜୟ କଟାରି ।
ତାର ବଦନକୁ ନିରୂପଇ ଫାଲଗୁନି
କାହାର ପୁତ୍ର ତୁ କିଏ ତୋହର ଜନନୀ ।
ବିଦ୍ୟାଧର ପ୍ରାୟେ ତୁହି ଦିଶୁଛୁ ସୁନ୍ଦର
ତୋତେ ମାରିବାକୁ ସତ ନ ବଳେ ମୋହର ।
ସହସ୍ରେ ଯୁବତୀ ଜଳୁ ବାହାର ହୋଇଲେ
ଲାଜ ଅଭିମାନ ତେଜି କାନ୍ଦି କାନ୍ଦି ଗଲେ ।
ଯୁଧିଷ୍ଠି ଆସୁଅଛନ୍ତି ନଦୀ କୂଳେ କୂଳେ
ସହସ୍ର କନ୍ୟା ପଡ଼ିଲେ ତାଙ୍କ ପାଦତଳେ ।
କାହାର ନନ୍ଦନ ଅତି ସୁନ୍ଦର ପୁରୁଷ
ଆମ୍ଭ ସ୍ୱାମୀକୁ ଅଭୁତେ ଆସି କରେ ନାଶ ।
ଏକା ପୁରୁଷକୁ ଯେବେ ଏ ନାଶ କରିବ
ସହସ୍ରେ ଯୁବତୀ ଆମ୍ଭେ ଲଭିବୁ ବୈଧବ୍ୟ ।

ପତି ଦୁଃଖ ଦେଖି ସବେ ଦନ୍ତେ ତୃଣ ଦେଇ
ଯୁଧିଷ୍ଠି ଚରଣେ ପଡ଼ି ପ୍ରଣମିତ ହୋଇ ।
କାମ ଅର୍ଥେ କରିଅଛୁ ତୋ ଚରଣ ସେବା
ଶରଣ ପଞ୍ଜର ପ୍ରଭୁ ସ୍ୱାମୀ ଦାନ ଦେବା ।
ଧାଆଁରେ ମାରୁତି ବେଗେ ବୋଇଲେ ଯୁଧିଷ୍ଠି
ମାରି ପକାନ୍ତିଟି ପୁଣ କକ୍ଷା ଜଗଜ୍ଜେଠୀ ।
ବାବୁ ଆମ୍ଭ ରାଣ କହି ରୁହ ଅର୍ଜୁନକୁ
ସ୍ୱାମୀ ଦାନ ଦେବା ଆମ୍ଭେ ଏକ କନ୍ୟାମାନଙ୍କୁ ।
ଆଜ୍ଞା ପ୍ରମାଣେ ଧାମଇଁ ବୀର ବୃକୋଦର
ପାର୍ଥ ସନ୍ନିଧରେ ଯାଇ ପ୍ରବେଶ ସତ୍ୱର ।
ଯୁଧିଷ୍ଠି ଭାଳିଲେ ଆମ୍ଭେ ମନ୍ଦକୃତ୍ୟ କଲୁ
ତାହାଠାରୁ ଦୁଷ୍ଟ ଏହି ଭୀମକୁ ପେଶିଲୁ ।
ଅର୍ଜୁନକୁ କହି ପୁଣ ନ କରଇ ନାଶ
ଧାମନ୍ତି ଯୁଧିଷ୍ଠି ମନେ ପାଇଣ ବିରସ ।
ଆପେ ଧାମନ୍ତି ମନରେ ଧର୍ମକୁ ସୁମରି
ଆମ୍ଭେ ଯିବାଯାଏ ପାର୍ଥ ପ୍ରାଣରକ୍ଷା କରି ।
ଧାମନ୍ତି ଡାକିଣ ଉଚ୍ଚେ ଦୂରୁ ଯୁଧିଷ୍ଠିର
ରକ୍ଷା କର ପାର୍ଥ ଡାକ ଛାଡ଼ନ୍ତି ଠାକୁର ।
ସହଦେବ ଆବୋରିଲେ ଯାଇ ଗନ୍ଧର୍ବକୁ
ଠାକୁରଙ୍କ ଆଜ୍ଞା ପ୍ରଭୁ ନ ମାର ଏହାକୁ ।
ଯୁଧିଷ୍ଠିର ଆଜ୍ଞା ଦେଲେ ରହ ରହ ପାର୍ଥ
ନ ମାର ତାହାକୁ ତୋତେ ମୋହର ଶପଥ ।
ନାରୀଗଣ ମାଗନ୍ତିରେ ଦେବା ପ୍ରତିଦିନ
ଅନାଥ ନାଶ କରିବା ନାହିଁ ପ୍ରୟୋଜନ ।
ଏକା ପୁରୁଷକୁ ମିଶି ସହସ୍ରେକ କନ୍ୟା
ଅପୂର୍ବ ଯୁବତୀ ଦେଖ ଏହି ଅସମାନ୍ୟା ।
ଅର୍ଜୁନ ବୋଇଲେ ସ୍ୱାମୀ ଅଟେ ବାଟପଡ଼ା
ଏହାକୁ ମାଇଲେ ନାଶଯିବ ପୃଥ୍ୱୀଭାରା ।
ଅର୍ଜୁନର ହସ୍ତୁ ଖଡ୍ଗ ଧଇଲେ ଯୁଧିଷ୍ଠି
ପ୍ରତିଜ୍ଞା ସାର୍ଥକ କଲ ଛାଡ଼ କେଶ ମୁଷ୍ଟି ।
ସ୍ୱାମୀର ବଚନେ ଛାଡ଼ିଦେଲା ତାର ବାଳ
ବିଦ୍ୟାଧର ବନ୍ଦି ଯୁଧିଷ୍ଠିର ପାଦତଳ ।
ସାଧୁ ମହିମା ତୁମ୍ଭର ନରଦେହ ବହି
ତିନିପୁରେ ତିନିଜଣ ଜିଣନ୍ତା କେ ନାହିଁ ।
ଅଙ୍ଗାର ପନ୍ନଗ ବାଣୀ ଧନଞ୍ଜୟ ଶୁଣି
ତ୍ରିଇଲୋକ୍ୟେ ତିନିଜଣ ତୋତେ ପାରେ ଜିଣି ।
ଆକାଶେ ଜିଣିପାରନ୍ତି ବାସବ ଦେବତା
ପାତାଳେ ବାସୁକୀ ଜିଣିପାରେ ନୋହେ ମିଥ୍ୟା ।
ମର୍ତ୍ତ୍ୟପୁରେ ଜିଣିପାରେ ମୋତେ ଫାଲଗୁନି
ଆନକେ ସମାନ ମୋର ନାହିଁ ପୁର ତିନି ।

ଇନ୍ଦ୍ର ଜିଣିବାକୁ ମୋତେ କେମନ୍ତେ ସମର୍ଥ
ଅଙ୍ଗାର ପନ୍ନଗ ମୁହିଁ ବାସବର ସୁତ ।
ପୁରନ୍ଦର ଅଟଇ ଯେ ମୋର ନିଜ ପିତା
ତେଣୁ ଜିଣି ପାରଇ ସେ ବାସବ ଦେବତା ।
ମଞ୍ଚରେ ଅର୍ଜ୍ଜୁନ ଜିଣି ପାରଇ ସେ ମୋତେ
ସେ ମୋହର ସହୋଦର କନିଷ୍ଠ ସାକ୍ଷାତେ ।
ଯୁଧିଷ୍ଠି ବୋଇଲେ ବାବୁ କିସ ତୋର ନାମ
ଅଙ୍ଗାର ପନ୍ନଗ ବିଦ୍ୟାଧରଙ୍କ ଉତ୍ତମ ।
ଏସନ ବଚନ ଶୁଣି ଅର୍ଜ୍ଜୁନ ପ୍ରଣମି
ଦାସ ଦୋଷ ବାରେ କ୍ଷମା କର ଦେବସ୍ୱାମୀ ।
ମୋହର ନାମ ଅଟଇ ବୀର ଫାଲଗୁନୀ
ଅଜ୍ଞାନେ ଦେବ ତୁମ୍ଭଙ୍କୁ ନ ପାରିଲି ଚିହ୍ନି ।
ଅଜ୍ଞାନେ ଦୋଷ କଲଇଁ ମୁଁ ତୁମ୍ଭ ଦୋରେହା
ଛେଦି ପକାଇବା ଦେବ ମୋର ବାମ ବାହା ।
ଏ ଭୁଜରେ ଧରିଲି ମୁଁ ତୋହର ଯେ ବାଳ
ଆବର ବର୍ତ୍ତୀ ମୁଁ କିସ କରିବି ଚଣ୍ଡାଳ ।
ବିଦ୍ୟାଧର ତୋଷ ଲଭି ଅର୍ଜ୍ଜୁନ ବଚନେ
ଏ ମୋହର ଭାଗ୍ୟ ଗଞ୍ଜି ନୋହିଲି ମୁଁ ଆନେ ।
ମୋର ଭ୍ରାତା ମୋତେ ସିନା କଲା ହୀନିମାନ
ତହିଁ କି ଶୋଚନା ମୋର ନାହିଁରେ ଅର୍ଜ୍ଜୁନ ।
କହି କୋଳରେ ବସାଇ ଅଙ୍ଗାର ପନ୍ନଗ
ମୁଖେ ଚୁମ୍ବଦେଇ କରେ ଆଉଁଷି ସର୍ବାଙ୍ଗ ।
ତୋତେ ଜିଣି ନ ପାରିଲି ସମର ପ୍ରସ୍ତାବେ
ତୋହର କ୍ଷତ୍ରିୟ ପଣ ଜାଣିଲି ମୁଁ ଏବେ ।
ଆଦ୍ୟରୁ ପୃଥ୍ୱୀ ଉଦ୍ଧାର କରି ସୋମବଂଶ
ଚନ୍ଦ୍ରର ବୀର୍ଯ୍ୟରୁ ହେଲେ ବୁଧ ଯେ ପ୍ରକାଶ ।
ବୁଧଙ୍କର ନନ୍ଦନ ଯେ ହେଲେ ପୁରୋରବା
ଅମରାଧିନାଥ ସେହି ସ୍ୱର୍ଗର ମଘବା ।
ତ୍ରୈଲୋକ୍ୟର ନାଥ ସେହି ଅମର ଭୁବନୁ
ଏକସ୍ତରୀ ଗଣ୍ଡା ଭୋଗ କଲେ ଆଦି ମନୁ ।
ପୁରୋରବାର ନନ୍ଦନ ଆୟ ନରପତି
ସମୟେକ ଭୋଗ କଲେ ପୁର ବାରସ୍ୱତୀ ।
ଆୟୁର ନନ୍ଦନ ଜାଣ ହୋଇଲା ନହୁଷ
ତାହାଙ୍କର ଇନ୍ଦ୍ରପଦ ପାଞ୍ଚଯୁଗେ ଶେଷ ।
ଋଷିଙ୍କି ସେ କଷ୍ଟ ଦେଲେ ମହା ଉଗ୍ରତାପେ
ଶାପ ପାଇ ରହିଲେ ସେ ବନେ ସର୍ପରୂପେ ।
ନହୁଷର ନନ୍ଦନ ଯେ ହୋଇଲା ଯଯାତି
ନବକନ୍ୟା ବିଭା ହେଲେ ସେହି ନବଜାତି ।
ନବକନ୍ୟାଙ୍କର ନବ ପୁତ୍ର ଜାତ ହେଲା
ନବଖଣ୍ଡ କରିଣ ଏ ପୃଥ୍ୱୀ ବାଣ୍ଟିଦେଲା ।
ତେଣୁ ନବଖଣ୍ଡ ନାମ ବହିଲା ମେଦିନୀ
ଅଙ୍ଗାର ପନ୍ନଗ କହେ ଶୁଣ ଫାଲଗୁନି ।
ଦେବଯାନୀ ନାମେ ଜାଣ ଶୁକ୍ରଙ୍କ ଦୁହିତା
ତାହାକୁ ବିବାହ କରିଥିଲେ ଜଗହିତା ।
ଦେବଯାନୀ ଗର୍ଭୁ ହେଲା ପୁରୋରବା ଜାତ
କୁବେର ପଦ ଏ ଘେନି ବସେ ମନୁ ସାତ ।
ପୁରୋରବାଙ୍କର ପୁତ୍ର ହୋଇଲା ପ୍ରବୀର
ଯମଦଣ୍ଡ ଘେନିଲେ ଏ କରି ବଳାତ୍କାର ।
ନବଯୁଗ ପରିଯନ୍ତେ ଯମପୁର ନେଲା
ମର୍ତ୍ତ୍ୟମଣ୍ଡଳରେ କେହି ବିନାଶ ନୋହିଲା ।
ମନୁଷ୍ୟମାନଙ୍କ ମନସାନନ୍ଦ ହୋଇଲା
ପୁତ୍ର ଏକ ଉପୁଜିଲା ମନୁ ନାମ ଦେଲା ।
ଏହାର ପୁତ୍ର ହୋଇଲା ଇନ୍ଦ୍ରସେନ ବୀର
ଦୁଷ୍ମନ୍ତ ନାମରେ ପୁତ୍ର ଉପୁଜିଲା ତାର ।
କହି ତ ନୁହଁଇ ସେହୁ ଦୁଷ୍ମନ୍ତ ମହିମା
ସପ୍ତଦ୍ୱୀପେ ଏକେଶ୍ୱର ହୋଇଲା ମହାତ୍ମା ।
ସେହି ଦୁଷ୍ମନ୍ତର ପୁତ୍ର ଭରତ ହୋଇଲା
ଭାରତ ଖଣ୍ଡ ମହୀ କି ସେହି ଭୋଗ କଲା ।
ଭରତର ନନ୍ଦନ ଯେ ହୋଇଲା ଭୁମନ୍ୟୁ
ଏ ଭୁମନ୍ୟୁ ରାଜ୍ୟ କଲା ବସି ଏକମନୁ ।
ବିରଥ ନାମେ ଏହାର ପୁତ୍ର ଉପୁଜିଲା
ମହାରଥ ହୋଇସବୁ ସେ ବିରସ କଲା ।
ଏହାର ନନ୍ଦନ ହେଲା ଶମ୍ଭୁ ନରପତି
ସୂର୍ଯ୍ୟର ନନ୍ଦିନୀ ବିଭା ହୋଇଲା ତପତୀ ।
କୁରୁ ନାମେ ତହୁଁ ଏକ ପୁତ୍ର ଉପୁଜିଲା
ତେଣୁ ତୁମ୍ଭ କୁରୁବଂଶ ବିଖ୍ୟାତ ହୋଇଲା ।
ବାବୁ ଏସନ ମହିମା ବଂଶରେ ତୁମ୍ଭର
ମୁହିଁ ଇନ୍ଦ୍ର ଦେବତାର ଜ୍ୟେଷ୍ଠ ଯେ କୁମର ।
ମୋହର ମାତାର ନାମ ମନୁ ମହାସତୀ
ବୈଶ୍ୱାନର ବଂଶେ ସେହି ହେଲା ଉତପତ୍ତି ।
ଯେତେବେଳେ ବାସବଙ୍କୁ ପଡ଼େ ଅପଚୟ
ଇନ୍ଦ୍ରପଦ ମୋତେ ଦ୍ୟନ୍ତି ଅମର ନିଚୟ ।
ସୁଖେ ଭୋଗ କରଇ ମୁଁ ପାଳି ପୂର ସ୍ୱର୍ଗ
ପିତା ମୋର ନାମ ଦେଲେ ଅଙ୍ଗାର ପନ୍ନଗ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଲୋକ ରକ୍ଷା କର
ପ୍ରତ୍ୟକ୍ଷେ ଅନଙ୍ଗ ନାମ ବହିଲ ଅଙ୍ଗାର ।
ପନ୍ନଗ ନାମ ଭୋ ସ୍ୱାମୀ ବହିଲୁ କେମନ୍ତେ
ସ୍ୱରୂପ ଜାଣିବା ସ୍ୱାମୀ କହିବା ନା ମୋତେ ।
କହଇ ସେ ବିଦ୍ୟାଧର ଶୁଣ ଅରଜୁନ
ଖଗେଶ୍ୱର ନାଶ କଲା ସର୍ବ ସର୍ପମାନ ।

ପଳାଇଲେ ଗରୁଡ଼ର ଭୟରେ ଉରଗେ
ଶରଣ ପଶିଲେ ଯାଇ ମୋ ପାଦରେ ସ୍ୱର୍ଗେ ।
ସଂଗ୍ରାମରେ ନ ପାରଇ ମୁହିଁ ଗରୁଡ଼କୁ
ଶରଣ ବୋଲନ୍ତେ ପାଶେ ରଖିଲି ସର୍ପକୁ ।
ଯହୁଁ ଶୁଭିଲା ଗରୁଡ଼ ରଡ଼ି ଭୟଙ୍କର
ଲାଗିଲେ ମୋ ଦେହେ ସର୍ପେ ହୋଇଣ କିଙ୍କର ।
ସର୍ପଙ୍କ ବ୍ୟାକୁଳ ଦେଖି ମୁହିଁ ଉଠି ଜବେ
ସମସ୍ତ ସର୍ପକୁ ଆଣି ପୂରାଇଲି ଗର୍ଭେ ।
ତେଣୁ ସର୍ପମୟ ହେଲା ଏ ମୋହର ଅଙ୍ଗ
ସେ କାରଣୁ ମୋର ନାମ ଅଙ୍ଗାର ପନ୍ନଗ ।
ଅର୍ଜ୍ଜୁନ ଦେଖିଲା ଦେହେ ପାତାଳ ଯେ ସ୍ୱର୍ଗ
ଦେଖଇ ପାର୍ଥିବ ତହିଁ ସାଧି ମହାଯୋଗ ।
ବିହରନ୍ତି ଖେଳନ୍ତି ଯେ ସର୍ପେ କୁତୂହଳେ
ବିସ୍ତୀର୍ଣ୍ଣ ଅନେକ ଯୁଣ ଦେଖି ବେନି ଡୋଳେ ।
ଦେଖିଣ ଅର୍ଜ୍ଜୁନ ଶତ ସହସ୍ର ପ୍ରଣମି
ବୋଲେ ନିଜ ରୂପ ଏବେ ଧର ଦେବସ୍ୱାମୀ ।
ଅଙ୍ଗାର ପନ୍ନଗ ବୋଲେ ମୁହିଁ ବିଶ୍ୱରୂପୀ
ତୋତେ ମୁହିଁ ସଂଗ୍ରାମରେ ହାରିଲି ଯଦ୍ୟପି ।
ବର ମାଗ ଅରଜୁନ ଦେବି ତୋତେ ମୁହିଁ
ପାର୍ଥ ବୋଲେ ମାଗିବାକୁ ସମର୍ଥ ନୁହଁଇ ।
ଅଭକତେ କିସ ବର ମାଗିବି ଭୋ ସ୍ୱାମୀ
ଅନୁଗ୍ରହ କରି ଦିଅ ଯାହା ମୋର କାମୀ ।
ତାହା ଶୁଣି ଅନୁଗ୍ରହ କଲେ ବିଦ୍ୟାଧର
ଗନ୍ଧର୍ବ ଶରକୁ ଦେଲେ କରେ ଅର୍ଜ୍ଜୁନର ।
ଅରୁଣ କିରଣ ଜିଣି ସେହି ତେଜସ୍କର
ସେ ମହାଶସ୍ତ୍ର ପାଇଲା ପାର୍ଥ ଧନୁର୍ଦ୍ଧର ।
ଗନ୍ଧର୍ବ ବୋଲେ ମୋଠାରେ ଥିବ ଅବିରତେ
ସୁମରନ୍ତେ ପରାପତ ହେବେ ତୋର ହସ୍ତେ ।
ପାଞ୍ଚାଳ ଦେଶରେ ଲାଖ ବିନ୍ଧିବୁ ହୋ ପାର୍ଥ
ଯାଜ୍ଞସେନୀ ତୋତେ ନିଶ୍ଚେ ହୋଇବ ପ୍ରାପତ ।
ଅଭିଷେକ କାଳେ ଜାଣୁ ପୁରୋହିତ ଲୋଡ଼ା
ଧୌମ୍ୟ ପୁରୋହିତଙ୍କୁ ଯେ କର ଆଗମଡ଼ା ।
ପାଞ୍ଚାଳ ଦେଶକୁ ସେହି ଆମ୍ଭ ତୁଲେ ଯାନ୍ତୁ
ଦ୍ରୌପଦୀଙ୍କି ତୁମ୍ଭଙ୍କୁ ଏ ପ୍ରାପତ କରାନ୍ତୁ ।
ଅଙ୍ଗାର ପନ୍ନଗ ଯହୁଁ ମନେ ସୁମରିଲେ
ଧୌମ୍ୟ ପୁରୋହିତ ସ୍ୱର୍ଗୁ ମଞ୍ଚକୁ ଅଇଲେ ।
ଗନ୍ଧର୍ବ ବୋଇଲେ ତୁମ୍ଭେ ହେଲେ ପୁରୋହିତ
ସୁମରିଲେ ସନ୍ନିଧିରେ ମିଳିବ ତ୍ୱରିତ ।
ଏବେ ଆମ୍ଭେ ଯାଉଅଛୁ ବୃନ୍ଦାରକ ବନେ
ପାଞ୍ଚାଳ ମଣ୍ଡପେ ଥିବେ ଦେବଗଣମାନେ ।
ଏତେ କହି ଅନ୍ତରୀକ୍ଷେ ଗଲା ବିଦ୍ୟାଦର
ବନସ୍ତରେ ପଶିଗଲେ ତହୁଁ ପାଞ୍ଚବୀର ।
ଜୟ ତୁ ଜୟ ତୁ ଦଧିବାମନ ମୂରତି
ଜୟ ତୁ ଜୟ ତୁ ଦେବ ଜଗତର ପତି ।
ଜୟ ତୁ ଜୟ ତୁ ଦେବ କରୁଣା ନିଧାନ
ଜୟ ତୁ ଜୟ ତୁ ଦେବ ପତିତପାବନ ।
ଜୟ ତୁ ଜୟ ତୁ ଦେବ ବୈକୁଣ୍ଠବିହାରୀ
ଜୟ ତୁ ଜୟ ତୁ ଦେବ ଦୁଷ୍ଟ ଦର୍ପହାରୀ ।
ଜୟ ତୁ ଜୟ ତୁ ଦେବ କମଳା ବିଳାସ
ଜୟ ତୁ ଜୟ ତୁ ଦେବ ପ୍ରଭୁ ପୀତବାସ ।
ଜୟ ତୁ ଜୟ ତୁ ଦେବ କଉସ୍ତୁଭ ଧାରୀ
ଜୟ ତୁ ଜୟ ତୁ ଦେବ ପାପ ତାପହାରୀ ।
ଜୟ ତୁ ଜୟ ତୁ ଦେବ ଶ୍ରୀବତ୍ସ ଲାଞ୍ଛନ
ଜୟ ତୁ ଜୟ ତୁ ଦେବ ଗରୁଡ଼ ଆସନ ।
ଜୟ ତୁ ଜୟ ତୁ ଦେବ ପ୍ରଭୁ ନାରାୟଣ
ଜୟ ତୁ ଜୟ ତୁ ଦେବ ଦାସ ଯେ ଶରଣ ।
ହେ କରୁଣା ସନ୍ଧୁ କର କରୁଣା ମୋଠାରେ
ମୋର ମନୋରଥ ପୂର୍ଣ୍ଣ ହେଉ ଅବିଘ୍ନରେ ।

—o—

## ପାଣ୍ଡବଙ୍କର କୁରାଳ ଶାଳେ ପ୍ରବେଶ

ଅଗସ୍ତି କହନ୍ତି ଶୁଣ ମନୁ ଯୁଗପତି
ପଞ୍ଚ କୁମରଙ୍କୁ ସଙ୍ଗେ ଘେନିଯାନ୍ତି କୁନ୍ତୀ ।
ଯୁଧିଷ୍ଠିର ଅଗ୍ରତରେ କହିଗଲେ ବ୍ୟାସେ
ପବନ ନନ୍ଦନ ତେଣୁ ଚାଲେ ମହାରୋଷେ ।
ଗହନ ବନ କନ୍ଦରେ ଚାଲେ ବୀର ପେଲି
ଖାଲ ଡିଙ୍ଗରେ ଯେ କୁନ୍ତୀ ନ ପାରଇ ଚାଲି ।
ଥୋକାଏକ ଦୂର ଯାଇ ରହଇ ମାରୁତି
ନିକଟ ହୋଇଲା ଆସି ଯିବା ନା ତଡ଼ତି ।
ଯୁଧିଷ୍ଠି ବୋଇଲେ ବ୍ୟାସେ ମନ୍ଦକୃତ୍ୟ କଲେ
ସ୍ୱୟମ୍ବର ବାର୍ତ୍ତା କିମ୍ପା ଆମ୍ଭଙ୍କୁ କହିଲେ ।
ଅନେକ ସମ୍ପାରେ ଆସିଥିବ କୁରୁପତି
ନ ଦେଖନ୍ତା ଏହାର ଯେ ଏ ଉଗ୍ର ମୂରତି ।
ବନ[illegible] ଅନେକ କଷ୍ଟ ଅଛଇ ଏ ପାଇ
ଭାଇଙ୍କୁ ମାରିବା ଏହା ଚିତ୍ତେ ଦୟା ନାହିଁ ।
ଏଣିକି [illegible] ଦୁର୍ଯ୍ୟୋଧନ ନାଶ ଯିବ
ଅନ୍ଧରାଜା ଗୋଟି ଆମ୍ଭ ଅନାଥ ହୋଇବ ।
ଧୀର ଧୀର ହୋଇ ଆମ୍ଭେ ଯାଉଥିବା ବନେ
ସ୍ୱୟମ୍ବରେ ବରି ନେଉ ଦ୍ରୌପଦୀକୁ ଆନେ ।
କନ୍ୟା ଗୋଟି ସିନା ଆମ୍ଭେ ଯୁକତ ହୋଇବା
ସ୍ତିରୀ ଅର୍ଥେ ସୋଦରଙ୍କୁ କିମ୍ପା ହରାଇବା ।

ଏତେ ବିଚାରି ଚାଲନ୍ତି ହୋଇ ଧୀର ଧୀର
ଆସ ଆସ ବୋଲି ଉଚ୍ଚେ ଡାକେ ବୃକୋଦର ।
ଯୁଧିଷ୍ଠି ବୋଇଲେ ଯାଉ ପବନ୍ନ ତୁ ବଳି
ତେଡ଼େ ବେଗେ ଆମ୍ଭେମାନେ ପାରିବୁକି ଚାଲି ।
ଭୀମ ବୋଇଲା ଗୋଡ଼ାଇ ନ ପାରିବ ଯେବେ
ଘୋଡ଼ାଇବି ପଛରେ ମୁଁ ଆଗ ହୁଅ ତେବେ ।
ଆଗରେ ଯୁଧିଷ୍ଠି ଗଲେ ପଛରେ ମାରୁତି
ଭୀମ ତାହାଙ୍କର ପାଦ ମାଡ଼ି ଚାଲେ ଧାଡି ।
ଭୀମସେନ ବୋଇଲା ଏ କେବଣ ବିଚାର
ପଛରେ ଚାଲି ନ ପାରେ ଆଗେ ଧୀର ଧୀର ।
ଭୀମ ବୋଇଲେ ଆସ ଗୋ ମାଏ ମୋ ପାଶକୁ
ତାଳିଦେଇ ବସାଇବି ମଥାରେ ତୁମ୍ଭଙ୍କୁ ।
ଡାହାଣେ ଯୁଧିଷ୍ଠି ବାମକନ୍ଧେ ଫାଲଗୁନି
ନକୁଳ ସହଦେବଙ୍କୁ ବେନି କାଖେ ଘେନି ।
ଚଳଇ ସେ ଭୀମସେନ ପବନ୍ନ ତୁରିତେ
ପଥର ଚୂର୍ଣ୍ଣ ହୁଅନ୍ତି ତାର ପାଦାଘାତେ ।
ବୃକୋଦର ମୂର୍ତ୍ତି ଧରି ଚାଲେ ଭୀମସେନ
ଏକ ରାତ୍ରରେ ସେ ଗଲା ସତୁରି ଯୋଜନ ।
ଦ୍ରୁପଦ ରାଜା ଆସ୍ଥାନ ପଞ୍ଚାଶ ଯୋଜନନେ
ଗଙ୍ଗାଧାର କହୁଅଛି ସାଗର ସଙ୍ଗମେ ।
ଭୀମ ଅଙ୍ଗୁ ଓହ୍ଲାଇଲେ ସେହି ନଦୀକୂଳେ
ବସିଲେ ପାଣ୍ଡବେ ମଣିକର୍ଣ୍ଣିକାରେ ତୀରେ ।
ତହୁଁ କୁନ୍ତୀଦେବୀ ଗଲେ ଭୀମର ପାଶକୁ
ଭୀମସେନ ମଥାପରେ ବସାଇଲେ ତାଙ୍କୁ ।
ସ୍ନାନାଦି କ୍ରିୟା ସାରିଲେ ସେହି ନଦୀତୀରେ
ଉଠିଲେ ଅରଣ୍ୟ ନାମେ ପର୍ବତ ଉପରେ ।
ଦେଖିଲେ ଆସୁଅଛନ୍ତି ନୃପତି ବହୁତ
ରଥ ଗଜ ଅଶ୍ୱ ପୁଣି ପଦାତି ସହିତ ।
ଚଉଦିଗୁଁ କାଣ୍ଡ ପଡ଼ିଅଛଇ ରାଜ୍ୟକୁ
ଚାଲନ୍ତି ସମସ୍ତ ରାଜା ଲଭି ଆନନ୍ଦକୁ ।
ତାହା ଏବେ ସଂଖ୍ୟା କରି କହୁଛି ସମ୍ପ୍ରତି
ଚାଳିଶ ସହସ୍ର ନୃପ ଉତ୍ତରୁ ଆସନ୍ତି ।
ପଶ୍ଚିମରୁ ଆସନ୍ତି ଯେ ସହସ୍ର ପଚାଶ
ପୂର୍ବରୁ ସାତ ସହସ୍ର ଆସନ୍ତି ନରେଶ ।
ଦକ୍ଷିଣୁ ଆସନ୍ତି ତିନି ସହସ୍ର ନୃପତି
ଚାରି ଉଣା ଲକ୍ଷେ ରାଜା ମାଡ଼ି ଆସୁଛନ୍ତି ।
ପଞ୍ଚସ୍ତରୀ ଯୁଣ ମାଡ଼ି ଆସୁଛନ୍ତି ଥାଟ
ପଚାଶ ଯୋଜନଠାରୁ ନାହିଁ ଆଉ ଥାଟ ।
ଭୀମ ହୋଇଲା ଭୋ ସ୍ୱାମୀ ଯିବଇଁ କି ଆଗେ
ମୋତେ ଡ଼କାଇଣ ତୁମ୍ଭେ ଆସୁଥାଅ ବେଗେ ।
ଚାଲଇ ହଲାଇ ଭୁଜ ବେନିକୁ ପାବନି
ହାବୋଡାଇ ଘାତେ ପଡୁଅଛନ୍ତି ସଇନି ।
ହବୋଡ଼ାଇ ଘାତେ ରଥେ ହେଉଛନ୍ତି ଧୁନି
ଦ୍ରୁପଦ ପୁରକୁ ଭୀମ ବେଗେ ଯାଏ ଚାଲି ।
ଯୁଧିଷ୍ଠି ବୋଇଲେ ରହ ରହ ଭୀମସେନ
ଏହି ଠାବରେ ରହିବା ଆମ୍ଭେ ଆଜ ଦିନ ।
ଦିବସ ବଞ୍ଚିବା କାହୁଁ ବନ ବାଟ ଛାଡ଼ି
ରାତ୍ର ହୋଇଲେ ଯେ ଆମ୍ଭେ ଯିବା ଆଗ ବଢ଼ି ।
ଯୁଧିଷ୍ଠି ବୋଇଲେ ଭୀମ ଯାଉ ପଛେ ଏକା
ଆମ୍ଭେ ତ ଆଶ୍ରା କରିବା ଏ ଜମ୍ବୁ ବନିକା ।
ଠାବ ଗୋଟିଏକ ଖୋଜି ଆସୁ ବେଗେ ଯାଇ
ଶଉଚ ନିର୍ଜନ ସ୍ଥାନ ହୋଇଥିବ ଭୂଇଁ ।
ଆଜ୍ଞା ପ୍ରମାଣେ ଚଳଇ ବୀର ବୃକୋଦର
ସନ୍ଧ୍ୟାକାଳେ ପ୍ରବେଶିଲା ଦ୍ରୁପଦ ନଗର ।
ମଧ୍ୟେ ରାଜାମାନଙ୍କର ସର୍ବ୍ବ ଆସନ
ସୈନ୍ୟ ମାଡ଼ି ବସିଛନ୍ତି ପଚାଶ ଯୋଜନ ।
ବାଲି ପକାଇଲେ ବାଲି ନ ପଡ଼େ ଭୂଇଁରେ
ଘଞ୍ଚା ଘଞ୍ଚି ହୋଇ ରହି ଅଛନ୍ତି ତହିଁରେ ।
ଦ୍ୱାଦଶ ଯୋଜନ ଯାଏ ତିଳେ ସ୍ଥାନ ନାହିଁ
ଯମୁନା ନଦୀ ନଗର ପଶ୍ଚିମରେ ରହି ।
ନଗର ପଶ୍ଚିମ ଭାଗେ ଯମୁନାର କୂଳେ
ତହିଁ ଦେଖିଲା ସେ ତୁଚ୍ଛା କୁରାଳର ଶାଳେ ।
ଦ୍ରୁପଦ ରାଜାର ସେହି ମଧ୍ୟେ ସେ ସଭାରେ
ବେଦୀ ଗୋଟିଏ ଯେ କରିଛନ୍ତି ନୃପବରେ ।
ଭୀମସେନ ପଚାରଇ ଖଣ୍ଡେ ଦୂରେ ଥାଇ
ରାଜାମାନେ ଏ ବନ୍ଦୀରେ ନାହାନ୍ତି ତ କେହି ।
ବିଚାରେ ପାବନୀ ମନେ ସେହି ବେଦୀ ଦେଖି
ଏଥେ ଆଣି ବସାଇବି ଦେବ ଯୁଧିଷ୍ଠିଙ୍କି ।
ଅତ୍ୟନ୍ତ ଆନନ୍ଦେ ଭୀମ ଧାମଇଁ ହରଷେ
କରଯୋଡ଼ି ଜଣାଏ ସେ ଯୁଧିଷ୍ଠିଙ୍କ ପାଶେ ।
ସଭାର ମଧ୍ୟରେ ଦେବ ମେଢ଼େକ ନିର୍ମିତ
ଆମ୍ଭେ ତ ରହିବା ତହିଁ ବିଚାର ଭୋ ନାଥ ।
ଯୁଧିଷ୍ଠି ହସିଲେ ଭୀମସେନ କଥା ଶୁଣି
ମୂର୍ଖଜନ କହନ୍ତି କି ପଣ୍ଡିତଙ୍କ ବାଣୀ ।
ଆରେ ଆମ୍ଭେ ନାଶଯିବା ବାରତା ଶୁଭିଲା
ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ ଜୌଘରେ ପୋଡ଼ିଲା ।
ଏମନ୍ତ ବାରତା ସର୍ବେ ଜାଣନ୍ତି ଜଗତେ
ସ୍ଥାନ କିମ୍ପା ରଖନ୍ତା ସେ ଆମ୍ଭର ନିମନ୍ତେ ।
ତୋତେ କି ବୋଲିବା ବାବୁ ପ୍ରକୃତିରେ ମନ୍ଦ
ଭଲେ ତୁ ଅଇଲୁ ଯାହା ନ କଲୁରେ ଦ୍ୱନ୍ଦ୍ୱ ।

ଆମ୍ଭର ଅଟଇ ସିନା ଏ ପରମ ଭାଗ୍ୟ
ରାଜାମାନଙ୍କ ଉପରେ ନ କରୁ ଯା ରାଗ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣରେ ଅର୍ଜ୍ଜୁନ
ବ୍ରାହ୍ମଣ ରୂପରେ କରେ ଭିକ୍ଷା ପାତ୍ର ଘେନ ।
ପାଣ୍ଡବଙ୍କ ବଚନରେ ଗଲେ ଫାଲଗୁନି
ସଙ୍ଗେ ଘେନି ଛତା ହରି ଗୋବିନ୍ଦର ମୁଣି ।
ପାଞ୍ଚାଳ ଦେଶେ ରାଜାର ସ୍ୱୟମ୍ବର ଦେଖି
ସାଧୁରେ ଦ୍ରୁପଦ ବୋଲି ପ୍ରଶଂସେ ତହିଁକି ।
ଠାବ ନ ପାଇଣ ତହିଁ ଦ୍ୱାଦଶ ଯୋଜନ
କୁରାଳ ଶାଳ ଖଣ୍ଡିଏ ଦେଖିଲେ ଅର୍ଜ୍ଜୁନ ।
ବନସ୍ତକୁ ଛାଡ଼ି ଏବେ ପର୍ବତର ତଳେ
ବହଇ ଯମୁନା ନଦୀ ଜାହ୍ନବୀର କୂଳେ ।
ଅର୍ଜ୍ଜୁନ ବିଚାରେ ସଞ୍ଚିଛନ୍ତି ବାସୁଦେବ
ଆନକୁ କାହୁଁ ହୋଇବ ପ୍ରାପତ ଏ ଠାବ ।
ଏମନ୍ତ ବୋଲିଣ ପାର୍ଥ ମନେ ବିଚାରିଲା
ବନକୁ ଠାବ କରିଣ ଲେଉଟି ଅଇଲା ।
ଯୁଧିଷ୍ଠିଙ୍କ ପାଶେ ଯାଇ କହଇ ସନ୍ଦେଶ
କାହିଁ ଠାବ ନ ଦେଖିଲି ନଗ୍ର ଚଉପାଶ ।
ଦ୍ୱାଦଶ ଯୁଣ ଯେ ନଗ୍ର ନ ପାଇଲି ଠାବ
କୁରାଳ ଶାଳେକ ଅଛି ରହିବା ହେ ଦେବ ।
ଶୁଣିଣ ଯୁଧିଷ୍ଠି ଦେବ ସନ୍ତୁଷ୍ଟ ହୋଇଲେ
କୁରାଳ ଶାଳ ଠାବକୁ ଯିବାକୁ ଉଠିଲେ ।
ଏତେ ଭଲ ସ୍ଥାନ ପାର୍ଥ ଖୋଜିଣ ଅଇଲୁ
ଭୀମସେନ ବୋଇଲା ତୁ ଭଲସ୍ଥାନ କଲୁ ।
ବନଖୁଣ୍ଟା କଣ୍ଟା ଖାଇ ଅସଜଡ଼ା ଭୂମି
ସେଠାରେ କି ରହିବେରେ ଯୁଧିଷ୍ଠିର ସ୍ୱାମୀ ।
ଯୁଧିଷ୍ଠି ବୋଇଲେ ବାବୁ ନୁହନ୍ତି ପଣ୍ଡିତ
ସେ ସ୍ଥାନ ଗୋଟି ଅଟଇ ଅତ୍ୟନ୍ତ ପବିତ୍ର ।
ଗୋରୁ ଗୁହାଳେ ଅଥବା କୁରାଳର ଶାଳ
ଏଥି ଯେ ରହେ ତା ପାପ ଖଣ୍ଡଇ ସକଳ ।
ଦିବସେକ ଯେବେ ତହିଁ ରହେ ନରଦେହୀ
ଛମାସର ପାପ ତାର ଦେହରେ ନ ରହି ।
ନଗର ବାହାରେ ସେହି ଗଲେ ରାତ୍ରକାଳେ
ପ୍ରବେଶିଲେ ଷଡ଼ଜଣ କୁରାଳର ଶାଳେ ।
ସୁମରନ୍ତି ଆହେ ପ୍ରଭୁ ଦେବ ଦାମୋଦର
ଏହି କଷ୍ଟ ଅବସ୍ଥାରୁ ବେଗେ ପାରି କର ।
ହେ ମାହେନ୍ଦ୍ର ପୁରୁଷ ତୋ ଚରଣେ ନମାମି
ତବ ଚରଣକୁ ଶତ ସହସ୍ର ପ୍ରଣମି ।
ଦେଶ କାଳ ପରିମାଣେ ବର୍ତ୍ତନ୍ତି ପାଣ୍ଡବେ
ତେଣୁ ଶ୍ରୀହରିଙ୍କୁ ଧରିବାକୁ ହୃଦେ ଭାବେ ।
ନୀଳୋତ୍ପଳ ଦଳ ଉତ୍ପଳ ଯା ମୁଖମଣ୍ଡଳ
ଶ୍ରୀବତ୍ସ ରାଜିତ ହୃଦେ କଉସ୍ତୁଭମାଳ ।
ଭାବଗ୍ରାହୀ ପୁରୁଷ ଯେ ସର୍ବଜନ ପିତା
ଜନାର୍ଦ୍ଦନ ନାମ ଧାରୀ ସୃଷ୍ଟିର କରତା ।
ଯାବତ କାଳ ଚନ୍ଦ୍ରମା ଦିବାକର ଥିବ
ଜଗନ୍ନାଥ ନାମ ଗୋଟି ହୃଦେ କରି ଠାବ ।
ଗଭୀର ମହାଜଳରେ ପଡ଼ିଗଲୁ ଭାସି
ଧର୍ମ ତହିଁରେ ହେ ନାବ ହୋଇଲାକ ଆସି ।
ସେ ନାବରେ ବସି ତର ଏ ଅଗାଧଜଳ
ସେ ନାବରେ ବସି ପାରି ହେବ ବେନିକୂଳ ।
ଅନୁଭବି ନାଥ ସଦାନନ୍ଦ ଜଗବନ୍ଧୁ
ସଂସାର ଜନ ଅନ୍ଧାରେ ନାରାୟଣ ଇନ୍ଦୁ ।
ଶରଣ ତାରଣ ନାମ ଦୀନଜନ ଧାମ
ଜନ୍ମେ ଜନ୍ମେ ଭାବଇ ମୁଁ ଶ୍ରୀରାମଙ୍କ ନାମ ।
ତୁଳସୀ ବଲ୍ଲଭ ଲକ୍ଷ୍ମୀ ଦେବୀ ପ୍ରାଣନାଥ
ଶୂଦ୍ରମୁନି ଯେ ଶାରଳା ଦାସ ତବ ଭୃତ୍ୟ ।

—୦—

## ଦ୍ରୌପଦୀ ସ୍ୱୟମ୍ବର

ବଦନ୍ତି ଅଗସ୍ତି କୁମ୍ଭ ଋଷିଙ୍କର ସୂନୁ
ନାରାୟଣ ସୁମରନ୍ତେ ପାପ ଯାଏ ମନୁ ।
ନିର୍ଜ୍ଜନ ସ୍ଥାନ ଯେ ଭୂମି କୁରାଳର ଶାଳେ
ରହିଲେ ପାଣ୍ଡବେ ଶୁଭବେଳେ ଅନୁକୂଳେ ।
କୁନ୍ତୀ ବୋଇଲେ କୁରାଳ ଶାଳ ଗୋଟା ଦେଖି
ମୋହର ବିଚାର ଏହି ସ୍ଥାନେ ହେବା ସୁଖୀ ।
କାଠ ଲୋଡ଼ି ନ ଯିବା ଯେ ଅଗ୍ନି ନ ଲୋଡ଼ିବ
ସର୍ବଦା ଲୋଡ଼ିଲେ ନୂଆହାଣ୍ଡି ତ ପାଇବ ।
ମାଘ ମାସ ଶୀତବସ୍ତ୍ର ନାହିଁ ତ ଆମ୍ଭର
ପାଉଁଶେ ଶୋଇଲେ ହେବ ଉଷୁମ ଶରୀର ।
ପଞ୍ଚ କଟକର ମଧ୍ୟେ ତୁମ୍ଭେ ନରନାଥ
ଜଗନ୍ନାଥଙ୍କର ପୁଣି ଅଟ ପଞ୍ଚଭୂତ ।
ଧର୍ମ ପବନ ଅଶ୍ୱିନୀ ଇନ୍ଦ୍ର ବୀର୍ଯ୍ୟେ ଜାତ
ମନ୍ଦ କର୍ମ ଯୋଗେ ସିନା ହୋଇଲା ଏମନ୍ତ ।
ହଂସୁଲୀ ତୂଳୀ ଉପରେ ନେତର ସୁପାତି
ଏ ଛାର ପାଉଁଶ ଦେଖି ଭଜିଲେ ନୃପତି ।
ବିପତ୍ତି କାଳେ ବିଚାର କରଇ ଯେ ପ୍ରାଣୀ
ଦୁଃଖ ସୁଖ ସହିବା ହେ ସୁଚରିତ୍ର ଶୁଣି ।
କଷ୍ଟ ସହିଲେ ସଂସାର ତାରିବା ନିମନ୍ତେ
ତାହାଙ୍କ ଚରିତ ଲୋକେ ଘୋଷନ୍ତି ପ୍ରଭାତେ ।
ଇତି ମହାଭାରତର ଆଦ୍ୟପର୍ବ କଥା
ବାଞ୍ଛା ପୂର୍ଣ୍ଣକାରୀ ମହାପାପ ଦଣ୍ଡକର୍ତ୍ତା ।

ସମ୍ପତ୍ତି ବିପତ୍ତି ଜନ ଭୋଗିବ ଅବଶ୍ୟ
ଶ୍ରୀ ମହାଭାରତ ଶୁଣି ପାପ ହେବ ଧ୍ୱଂସ ।
କୁନ୍ତୀଦେବୀ ବୋଇଲେକ ପାଞ୍ଚପୁତ୍ରେ ରାଇ
ବ୍ରାହ୍ମଣ ସଭାକୁ ଯାଅ ଦ୍ୱିଜବେଶ ହୋଇ ।
ଦ୍ରୁପଦ ନୃପତି ଦାନ ଦେଉଥିବା ବେଳେ
ତୁମ୍ଭେମାନେ ଥିବ ବାବୁ ବ୍ରାହ୍ମଣଙ୍କ ମେଳେ ।
ଯୁଧିଷ୍ଠି ବୋଇଲେ ମାଗୋ ଯାଇ ମୁଁ ପାରଇ
କେବଳ ତୋ ପୁଅ ଭୀମା କୋପକୁ ଡରଇ ।
ମାନଗୋବିନ୍ଦର ଦେଖି ଅନେକ ସମ୍ପଦ
ନ ପୂଣ ତା ସଙ୍ଗେ ଭୀମ କରେ ଯାଇ ଦ୍ୱନ୍ଦ୍ୱ ।
କୁନ୍ତୀ ବୋଇଲେ ଭୀମାରେ ମୋହର ଶପଥ
ଯୁଧିଷ୍ଠି ଆଜ୍ଞା ଅବଜ୍ଞା ନ କରିବୁ ପୁତ୍ର ।
ବ୍ରାହ୍ମଣ ରୂପ ଧଇଲେ ତହିଁ ପାଞ୍ଚବୀରେ
ତ୍ରିକଚ୍ଛ କରି ବସନ ପିନ୍ଧିଲେ କଟିରେ ।
ନବଗୁଣର ପଇତା କନ୍ଧରେ ଉତ୍ତରୀ
କାଖରେ ଜାକିଲେ ମନ୍ତ୍ର ପୋଥି ବାନ୍ଧି କରି ।
ଦ୍ୱାଦଶ ଲକ୍ଷଣ ଚିତା ଶ୍ରୀବତ୍ସର ଚିହ୍ନ
ମୁଖେ ବେଦକାଣ୍ଡି ଘୋଷି ସ୍ୱରୂପ ବ୍ରାହ୍ମଣ ।
କନ୍ଧେ ତାଳପତ୍ର ଛତା ହସ୍ତରେ ପ୍ରୋକ୍ଷଣି
ସମସ୍ତଙ୍କ କାୟା ଦିଶେ ତାମ୍ରବର୍ଣ୍ଣ ଜିଣି ।
ଗୋପନ ଦୋହରା ଅଗ୍ନିହସ୍ତେ କୁଶବିଡ଼ି
ଅଣ୍ଟାରେ ବାନ୍ଧିଅଛନ୍ତି ମେଖଳା ଦଉଡ଼ି ।
କ୍ଷତ୍ରିୟ ବୃତ୍ତି ଛାଡ଼ିଣ ବ୍ରାହ୍ମଣ ସ୍ୱରୂପେ
ସଭାକୁ ପାଣ୍ଡବେ ଯାନ୍ତି ଅଗ୍ନି ଅନୁରୂପେ ।
ଗଡୁ ପିତା ତମ୍ବା ପାତ୍ର କରେ ଜପାମାଳ
କଣ୍ଠରେ ରୁଦ୍ରାକ୍ଷମାଳା ପଡ଼ିଛି କେବଳ ।
ଯଦ୍ୟପି ଗୋପନ ରୂପେ ଲୁଚାଇଲେ କାୟ
ରୂପ ବିକାଶନ୍ତି ଧୂମହୀନ ଅଗ୍ନି ପ୍ରାୟ ।
ଛାୟା ମଣ୍ଡପ ଦକ୍ଷିଣେ ବ୍ରାହ୍ମଣଙ୍କ ସଭା
ଜ୍ୟୋତି ବିରାଜଇ ଯେହ୍ନେ ଆଦିତ୍ୟର ପ୍ରଭା ।
ବ୍ରାହ୍ମଣ ସଭାରେ ବିଜେ କଲେ ପାଞ୍ଚବୀରେ
ପ୍ରତ୍ୟକ୍ଷେ କି ବ୍ରହ୍ମା ଇନ୍ଦ୍ର ସୂର୍ଯ୍ୟ ହରିହରେ ।
ସୁବେଦୀ ନାମରେ ତହିଁ ଏକ ଦ୍ୱିଜବର
ବୈତରଣୀ ନଦୀ କୂଳ ଈଶାନେ ତା ଘର ।
ବଡ଼ ବିବେକୀ ଧାର୍ମିକ ସେ ଅଥର୍ବ ବେଦୀ
ମନ୍ତ୍ର ଯନ୍ତ୍ର ତନ୍ତ୍ରରେ ସେ ଲଭିଛି ପ୍ରସିଦ୍ଧି ।
ସୁଜ୍ଞାନୀ ବିପ୍ର ପାଣ୍ଡବ ବଦନକୁ ଚାହିଁ
ବ୍ରାହ୍ମଣ କୁଳେ ଏମନ୍ତ ରୂପ ଦେଖା ନାହିଁ ।
ଆକାଶୁ କି ବିଜେ କଲେ ପଞ୍ଚ ଦିଗପାଳେ
କନ୍ୟା ଲୋଭେ ଏ ବେଶରେ ଅଇଲେ ପାଞ୍ଚାଳେ ।
ସାକ୍ଷାତରେ ଦିଗପାଳ ତେଜ ଏହାଙ୍କର
ଅଟନ୍ତେ ଜାଣିବା ନା ବଳବୀର୍ଯ୍ୟ ପାଞ୍ଚଙ୍କର ।
ଲକ୍ଷଣ ଶ୍ରୀମନ୍ତ ଦେଖି ଦେଲେ ତାଙ୍କୁ ଠାବ
ବ୍ରାହ୍ମଣ ମେଳେ ବସିଲେ ସେ ପଞ୍ଚୁପାଣ୍ଡବ ।
ଭୀମସେନ ବିଚାରଇ ନରପତିଗଣ
ପାଇଲେ ମହାସଭାରେ କନକ ଆସନ ।
ଇଙ୍ଗିତରେ ମୋତେ ଆଜ୍ଞା ଦିଅନ୍ତେ ଯୁଧିଷ୍ଠି
ନିମିଷକେ ମୁଖ ମୋଡ଼ି କରନ୍ତି ଏକାଠି ।
ଚଉଦିଗୁ ଆସିଛନ୍ତି ରାଜାଏ ସଭାରେ
ପୂଜା କରି ବସାଇଲେ ଦ୍ରୁପଦ ସଭାରେ ।
ଗଙ୍ଗାରେ ସ୍ନାନ କରିଣ ମଣୋହି କରନ୍ତି
ଆଚମନ କରି ଯାଇ ଆସ୍ଥାନେ ବସନ୍ତି ।
କର୍ପୂର ତାମ୍ବୁଳ ଦେଇ ଅକ୍ଷତେ ଆମନ୍ତି
ଜଣେ ଜଣେ ପ୍ରବୋଧଇ ସଦାନନ୍ଦ ମନ୍ତ୍ରୀ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଏ ଚାରି
ଯେ ଯାହାର ଆସନରେ ବସନ୍ତି ଆବୋରି ।
ଅନେକ ଉତ୍ସବ ହୁଏ ଦ୍ରୁପଦ ଭୁବନେ
ରାଜାମାନେ ପହଞ୍ଚିଲେ ପଞ୍ଚଦଶ ଦିନେ ।
ହସ୍ତେ ଅର୍ଘ୍ୟ ଘେନି ଧୃଷ୍ଟଦ୍ୟୁମନ କୁମର
ସବୁ ଦେଶ ନୃପତିଙ୍କୁ କରନ୍ତି ଆଦର ।
ଶିରରେ ମଣିମୁକୁଟ ହୃଦେ ରତ୍ନମାଳା
କର୍ଣ୍ଣେ କର୍ଣ୍ଣାଞ୍ଚଳ ହାତେ ପାଦେ ସ୍ୱର୍ଣ୍ଣବଳା ।
ଭୁଜେ ସୁବର୍ଣ୍ଣ ବାହୁଟି ଚରଣେ ନୂପୁର
ହାର କୁଣ୍ଡଳ ଯେ ମଣି ରତ୍ନ ଦିବ୍ୟସାର ।
ମୃଗନାଭି ଚତୁଃସମ ସର୍ବାଙ୍ଗେ ଲେପନ
ଶିର ଆଭରଣ ପୁଷ୍ପ ନାନା ଜାତି ବର୍ଣ୍ଣ ।
ଲେପିଲେ ଶତେକ ପଳ ସୁଗନ୍ଧ ଚନ୍ଦନ
ଏ ବିଧିରେ ପୂଜା କରେ ଦ୍ରୁପଦ ରାଜନ ।
ଏକ ନୃପତିକେ ଦେଲେ ଶତ ଶତ ଖଦି
ଲକ୍ଷେ ରାଜାଙ୍କୁ ଦ୍ରୁପଦ ଏସନ ସମ୍ପାଦି ।
ସବୁ ରାଜାଙ୍କୁ ବରଣ କଲା ତା କୁମର
ଅର୍ଘ୍ୟ ଘେନ ଦ୍ରୁପଦ ଯେ ଅଛଇ ସଭାର ।
ଅର୍ଘ୍ୟ ଥାଳି ଥୋଇଦେଲେ ସଭା ମଧ୍ୟସ୍ଥାନେ
ଶତ ଶତ ଦଣ୍ଡବତ ପ୍ରଣମି ବିଧାନେ ।
ଜରାସନ୍ଧ ବୋଇଲେକ ଉଠ ହୋ ଦ୍ରୁପଦ
କେବଣ କାର୍ଯ୍ୟ ତୋହର କହ ସେ ସମ୍ବାଦ ।
ଦ୍ରୁପଦ ବୋଇଲେ ଦେବ ଶୁଣ ସାବଧାନେ
ଅଗ୍ନିରୁ ଜାତ ଦ୍ରୌପଦୀ ମୋର ଯଜ୍ଞସ୍ଥାନେ ।
ଷାଠିଏ ଋଷିଙ୍କୁ ଘେନି ନିଜେ ବେଦବ୍ୟାସ
ଯଜ୍ଞ କରୁ ଅଗ୍ନି ମଧ୍ୟୁ ହୋଇଲେ ପ୍ରକାଶ ।

ମୋହର ମନକାମନା କରି ଯାହା ଅଥେ
ଦଇବ ବିପାକେ ନାଶ ଗଲେ ଅନିମିତ୍ତେ ।
ପାଇଲେ ତଥ୍ୟ ବଚନ ଯହୁଁ ମଧୁବନେ
ସ୍ୱୟମ୍ବର ଭିଆଇଲେ ନବ ବିଦ୍ୟମାନେ ।
ପୂର୍ବଭାଗ୍ୟେ ଦୁହିତା ଏ ମୁହିଁ ଉପୁଜାଇ
ଦେବନାରୀ ଦେଲେ ସିନା ମୋର ହିତପାଇଁ ।
ସମସ୍ତେ ତ ପୁଣ୍ୟବନ୍ତ ଲକ୍ଷେକ ନୃପତି
ସମସ୍ତ ବରଣ କରି ଆଣିଲି ନିମନ୍ତି ।
କାହାକୁ କରିବି ଆସ୍ତି କାହାକୁ ବା ନାସ୍ତି
ମୋହର ବ୍ରତ ନିମନ୍ତେ ମହାଲାଖ ପାତି ।
ଇଚ୍ଛାବରେ ନୁହଇ ମୋ କନ୍ୟାକୁ ଯୁକତ
ଯେ ଲାଖ ବିନ୍ଧିବ କନ୍ୟା ଦେବଇ ନିୟତ ।
ଏ ଲାଖକୁ ତୁମ୍ଭେ ଯେବେ ବିନ୍ଧିବ ଗୋସାଇଁ
ଲାଖର ଚରିତ ଶୁଣ ସାବଧାନ ହୋଇ ।
ରାଧା ଚକ୍ର ବୁଲାଇ ଯେ ସହସ୍ରେକ ଧାର
କନକର ମତ୍ସ୍ୟ ଅଛି ଉପରେ ତାହାର ।
କୁରାଳର ଚକ୍ର ଜାଣି ବୁଲେ ଅନ୍ତରାଳେ
ଲକ୍ଷେ ବଳଧାରୀ ଧନୁ ଅଛି ଭୂମିତଳେ ।
ରାଧା ଚକ୍ର ସାତ ତାଳ ଉଚ୍ଚେ ବୁଲୁଅଛି
ତା ଉପରେ ସାତତାଳ ମତ୍ସ୍ୟ ରହିଅଛି ।
ଲକ୍ଷେ ବଳ ଧନୁ ଧରି ପଟାରେ ଉଠିବ
ସୁବର୍ଣ୍ଣ କଳସ ଏକ ସେଠାରେ ଦେଖିବ ।
ଧନୁ ଧରି ଚାହିଁବ ସେ ଜଳଘଟ ଗୋଟି
ତଳକୁ ଥିବ ଯେ ଦୃଷ୍ଟି ଉପରକୁ ମୁଷ୍ଟି ।
ନାରାଚରେ ମାଛ ବାମ ଚକ୍ଷୁ ଫୁଟିଯିବ
ଏମନ୍ତ ପ୍ରକାରେ ଏହି ଲାଖ ବିନ୍ଧା ହେବ ।
ଏସନ ସ୍ୱରୂପ ଯେହୁ ଏ ଲାଖ ବିନ୍ଧିବ
ମୋହର ଦୁହିତା ତାକୁ ଦେବି ଏକା ଧ୍ରୁବ ।
ସେ ଲାଖ ବିନ୍ଧିବ ସେହି ନେବ ମୋ କୁମାରୀ
ତୁମ୍ଭେ କେହି ନ ହୋଇବ ତାର ଦ୍ୱନ୍ଦ୍ୱକାରୀ ।
ଅଛ ମହାରଥି ମହାବୀର ମହାବଳ
କନ୍ୟାର ନିମନ୍ତେ କେହି ନ କରିବ ଗୋଳ ।
ଏକଥାକୁ ରାଜାମାନେ ଦୃଢ଼ କରି ଘେନ
ତେଣୁ ସଭାକୁ ମୋ କନ୍ୟା ନ ଆଣଇ ଜାଣ ।
ସମସ୍ତେ ବୋଇଲେ ଏହି କଥା ସତ୍ୟ ସତ୍ୟ
ଯାହାର ସୁଭାଗ୍ୟ ତାକୁ ସେ କନ୍ୟା ପ୍ରାପତ ।
ଯାହାକୁ ନ ସହି ଯେଉଁ ଲୋଡ଼ି କରେ ଦ୍ୱନ୍ଦ୍ୱ
କରିବା ସମସ୍ତେ ନୃପ ମିଶି ଶିର ଛେଦ ।
ସ୍ୱୟମ୍ବର ସ୍ଥାନେ ଲାଖ କଥା ନିରୂପନ୍ତି
ନିଜ ଭୁବନକୁ ଯାଇ ପାଞ୍ଚାଳ ନୃପତି ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଏ ଦୁଇ ପୁତ୍ର ରାଇ
ଦ୍ରୌପଦୀକୁ ଆଣ ବେଗେ ସୁବେଶ କରାଇ ।
କେଶିନୀ ନାମରେ ତାର ଏକ ମୁଦୁସୁଲୀ
ସର୍ବ ଅଳଙ୍କାର ପିନ୍ଧି ସହସ୍ର ପୋଇଲୀ ।
କନ୍ୟାକୁ ସ୍ନାନ କରାନ୍ତି ଏ ସକଳେ ମିଳି
ନାନା ସୁଗନ୍ଧେ କବରୀ ବାଳକୁ ପଖାଳି ।
କୁଙ୍କୁମ କସ୍ତୁରୀ ନେଇ ଲେପନ୍ତି ଶରୀରେ
ମୃଗନାଭି ସଉରଭ ସମୂହ ବିସ୍ତାରେ ।
ଆକଛ ଢାଳି ଶୁଖାନ୍ତି ଚିରନ୍ତି ତା କେଶ
ପରିଧାନ କରାନ୍ତି ସେ ସରୁ ଝୀନବାସ ।
ଯୁଇଯାଇ ମଲ୍ଲୀମାଳ ସେବତୀ ପାଖୁଡ଼ା
ମାଳତୀ କୁସୁମ ଦେଇ ବାନ୍ଧନ୍ତି ତା ଜୁଡ଼ା ।
ସୁଗନ୍ଧ ଗନ୍ଧ ଲଗାଇ ସାଜିଲେ କବରୀ
ମୁକୁତା ଜାଲି ଖୋଷା ଖୋଷି ଯତ୍ନ କରି ।
ନାନାଦି କୁସୁମ ଖଞ୍ଜି ବାନ୍ଧିସାରି କେଶ
ଗନ୍ଧ ଲୋଭରେ ଭ୍ରମରେ ନ ଛାଡ଼ନ୍ତି ପାଶ ।
ମୁକୁତା ଜାଲି ଉପରେ ସୀମନ୍ତିନୀ ମଣି
ଲଲାଟ ପଟରେ ହୀରା ରତନ ଖଞ୍ଜାଣି ।
ପଦ୍ମରାଗରେ ତାଟଙ୍କା ରତ୍ନବେଣ୍ଟ କର୍ଣ୍ଣେ
ବାଳ ଆଦିତ୍ୟ କି ଗଣ୍ଡସ୍ଥଳେ ନାନାବର୍ଣ୍ଣେ ।
ନାସାରେ ଅଷ୍ଟରତ୍ନର ଫୁଲି ସେ ବସଣି
ସୂର୍ଯ୍ୟ ପାଖରେ ଚନ୍ଦ୍ରମା ଉଇଁଲା କି ଶୁଣି ।
ହୃଦରେ ମୁକୁତା ହାର ଶତେ ଶତେ ସରି
ଗଗନେ ତାରକା ପନ୍ତି ଉଦେ ହେଲା ପରି ।
ଭୁଜରେ କଙ୍କଣ ଦିବ୍ୟରତ୍ନ ବେନି ଚୂଡ଼ି
ଅଷ୍ଟ ରତନ ଖଚିତ ବିଦ ମୁଦି ଯୋଡ଼ି ।
ପାଦରେ ନୂପୁର ତହିଁ ଝଟକୁଛି ହୀରା
ନ ସହଇ ସେ ସୁନ୍ଦରୀ ଅଳଙ୍କାର ଭାରା ।
ମିଳି ନାରୀଏ କରନ୍ତି ଅଲେଖ ତିଳକ
ବେଶ ଭୂଷଣକୁ ଦେବୀ ମଣଇ ବିମୁଖ ।
ଉପରେ ପରିଧାପନ ବାସ ନେତ ଗୋଟି
ଅନଳ ତେଜକୁ ଜିଣି ଦିଶଇ ତନୁଟି ।
ତୁଲେ ଅଛନ୍ତି ସହସ୍ର ଦାସୀ ପରିବାରି
ସମାନ ବୟସୀ ଯୁବା ନହୁଲୀ କୁମାରୀ ।
ସୁଲକ୍ଷଣୀ ସୁକୁମାରୀ ଅପୂର୍ବ ସୁନ୍ଦରୀ
ତାହାଙ୍କ ବେଶ ଭୂଷଣ କେବା କହିପାରି ।
ଷୋଡ଼ଶ ବୟସୀ ସେହି ଅଟନ୍ତି ଯୁବତୀ
କନ୍ୟା କନକ ରତନ କାନ୍ତି ଗୁଣବତୀ ।
ଅମର ବିଳାସିନୀ କି ଉତପତ୍ତି ଆସି
ଇନ୍ଦ୍ରିୟ ନାୟିକା ସେ କି ଶ୍ରୀକୃଷ୍ଣ ଦାସୀ ।

ବିବିଧ ରତ୍ନମଣ୍ଡନା ସହସ୍ରେ ଯୁବତୀ
ସ୍ତିରୀ ରତ୍ନମଣି ତିନି ଜଗତ ମୋହନ୍ତି ।
ସହସ୍ର ଚାମର ଚଉକତିରେ ଢାଳନ୍ତି
ସହସ୍ର ଆଲମ୍ୱେ ସ୍ୱର୍ଣ୍ଣପାଟ ଝଟକନ୍ତି ।
ଉଭାରିଲେ ଚଉକତି ସସ୍ତ୍ରେ ପାଟଛତି
ଛାମୁରେ ନୃତ୍ୟ କରନ୍ତି ସହସ୍ର ଯୁବତୀ ।
ମଧୁର ସ୍ୱରେ ଗାଇଲେ ସୁଧାରସ ବାଣୀ
କୋକିଳ ଧ୍ୱନି କି ନିନ୍ଦା କଲେ ବିଳାସିନୀ ।
ସୁବର୍ଣ୍ଣ ଯୋଗାଡ଼ ଘେନି ସହସ୍ର ସୁନ୍ଦରୀ
ସହସ୍ରେକ କନ୍ୟା ଆଗେ ପୁଷ୍ପ ବୃଷ୍ଟି କରି ।
ସୁବର୍ଣ୍ଣ ହାନ୍ଦୋଳ ମଧ୍ୟେ ବିଜୟ ପାଞ୍ଚାଳୀ
ଯୁବତୀମାନେ ଚାଲନ୍ତି ପାଶେ ଢାଳି ଢଳି ।
ନାନାଦି ବାଦ୍ୟ ନାଦରେ ପୂରିତ ଗହଳ
ଶବଦ ଉତ୍ସବେ ଯେହ୍ନେ ମାତଙ୍ଗିନୀ ମେଳ ।
ତେସନ ସ୍ୱରୂପ ଶୋଭାରାଶି କି ପ୍ରକାଶି
ଦେଖି ତାକୁ ରାଜାମାନେ ସମସ୍ତେ ପ୍ରଶଂସି ।
ଦ୍ରୌପଦୀ ବଦନ କେହି ନ ପାରନ୍ତି ଚାହିଁ
ଦାସୀକୁ ଦେଖିଣ ମୋହ ଗଲେ ନରସାଇଁ ।
ବୋଇଲେ ଅଛନ୍ତି ଏ ଯେ ଲକ୍ଷେକ ଯୁବତୀ
ଭାରିଯା ପଣେ ଏ ଲକ୍ଷେ ରାଜାଙ୍କୁ ଯୋଗାନ୍ତି ।
ସଭାର ମଧ୍ୟରେ ନେଇ ଉଭାରିଲେ ନାରୀ
ଗଣିକାମାନେ ମଙ୍ଗଳ ଗୀତ ଧ୍ୱନି କରି ।
ମେଢ଼ର ଉପରେ ବିଜେ କଲେ ମହାସତୀ
ପୂର୍ଣ୍ଣିମାର ଚନ୍ଦ୍ର ଜିଣି ବିକାଶିଲା ଜ୍ୟୋତି ।
ସଭା ମଧ୍ୟେ ଉଭା ହୋଇ ପୁତ୍ର ଧୃଷ୍ଟଦ୍ୟୁମ୍ନ
ରାଜାମାନଙ୍କୁ କହଇ କୋମଳ ବଚନ ।
ଲକ୍ଷେ ରାଜା ଆସି ଏଥେ ବସିଲେ ଆସ୍ଥାନେ
ସମସ୍ତଙ୍କୁ ବରିଲୁ ଯେ ବରଣ ବିଧାନେ ।
ସଭାକୁ ଯେ ଅଣାଇଲି ଭଗିନୀ ଦ୍ରୌପଦୀ
ବିଚାରିଣ ନିରୂପିବା ଏହା ରୂପ ଆଦି ।
ଯେ ପାଇବ ଯାଇ ଲାଖ ବିନ୍ଧ ହେ ଗୋସାଇଁ
ସ୍ୱୟମ୍ୱର କଲୁ ଆମ୍ଭେ ଦ୍ରୌପଦୀର ପାଇଁ ।
ରାଜାମାନେ ବସିଛନ୍ତି ହୋଇ ମୌନବ୍ରତ
ସମସ୍ୟା ଦେଲେ ମଗଧ ଦେଶ ନରନାଥ ।
ଜରାସନ୍ଧ ବୋଇଲେ ହେ ଶୁଣ ଧୃଷ୍ଟଦ୍ୟୁମ୍ନ
କେହି ନ କହନ୍ତି ତୋତେ ତଥ୍ୟ କଥା ମାନ ।
ହାନ୍ଦୋଳାରେ ବସାଇଲୁ ତୁ ଯେ ଦ୍ରୌପଦୀକି
କେହି ନ ଦେଖିଲେ ତାର ବଦନକାନ୍ତିକି ।
ମେଢ଼ରୁ ଓହ୍ଲାଇ ଆସୁ ସଭାକୁ ଯେ ବାଳୀ
ଦେଖନ୍ତୁ ଏ ରାଜାମାନେ ବଦନ ମଣ୍ଡଳୀ ।

ଜରାସନ୍ଧ ବଚନରେ ନୃପତି ଦ୍ରୁପଦ
ମେଢ଼ରୁ ଓହ୍ଲାଇ ଆଣି କଲେ ସଭା ମଧ୍ୟ ।
କେଶନୀ ଯେ ଯାଜ୍ଞସେନୀ ଧରିଛନ୍ତି ହସ୍ତ
ଦେଖିଲେ ଯାଜ୍ଞସେନୀର ମୁଖ ରୂପ ଗାତ୍ର ।
ବଦନ ଦେଖି କେବଣ ରାଜା ମତିଭ୍ରମ
ହୁଅନ୍ତି ସେ ସଭା ମଧ୍ୟେ କେହି ଅସାକ୍ଷମ ।
ନିର୍ଝର ଦେଶର ରାଜା ଅଟେ ଗଣପତି
ଦେଖି ଏହି ସୁନ୍ଦରୀର ବଦନ ମୂରତି ।
ସାଧୁ ସାଧୁ ଦ୍ରୁପଦ ଏ ତୋହର ଦୁଲଣୀ
ବଂଶ ତୋର ସାଧୁ ଯେଣୁ ପାଇଲୁ ତୁ ପୁଣି ।
କୁଞ୍ଚିତ କେଶ ଏହାର କେଡ଼େ ମନୋହର
ବିହରନ୍ତି ପୁଷ୍ପ ଗନ୍ଧ ପାଇ ମଧୁକର ।
ରସାଣିଲା ପାତ୍ର ପ୍ରାୟେ ଲଲାଟର ପାଟି
ବଧୁଲୀ ଡାଳିମ୍ୱ ବିପ୍ର ପ୍ରାୟେ ଓଷ୍ଠ ଫୁଟି ।
ଭ୍ରୂଲତା କନ୍ଦର୍ପ ଚାପ କଟାକ୍ଷ ତା ବାଣ
ନିମିଷକେ ନେବ ଯୁବାଜନଙ୍କର ପ୍ରାଣ ।
ସୁନ୍ଦର ରଞ୍ଜିତ କାମ ନମନୀୟ ଡୋଳା
ଲୋମାବଳୀ ରେଖାରେ ଏ ସାକ୍ଷାତ ଚପଳା ।
ଆରକ୍ତ ନୟନା କି ସେ ନୀଳ ଉତପଳ
କିଞ୍ଚିତ ମାତ୍ରେ ଚାହିଁବେ ଢଳିବେ ସକଳ ।
ଚାହାନ୍ତେ ବକ୍ର ନୟନେ ହୃଦ ଯିବ ଫୁଟି
ଜନହିତେ ପୃଥିବୀରେ ରହିଅଛି ବୃଷ୍ଟି ।
କିଞ୍ଚିତ ମାତ୍ରେ ଏ ଯେବେ ଚାହିଁବ ସଭାକୁ
ଅନେକ ପୁରୁଷ ହତ୍ୟା ଲାଗିବ ତାହାକୁ ।
ସ୍ତିରୀ ରତ୍ନମଣି ଏହି ସୁଜ୍ଞାନୀ କାମିନୀ
ପାପକୁ ସେ ଭୟ କରି ହୋଇଲା ମାନିନୀ ।
ଭୋ ଧର୍ମ ଦେବତା ଏହି ସଭାକୁ ନ ଚାହୁଁ
ଭଲେ ଅଇଲୁ ପ୍ରମାଦ ପଡ଼ିଣ ନ ଯାଉଁ ।
ଏସନକ ବିଚାରନ୍ତି ସଭାରେ ରାଜାଏ
ଅବୀର୍ଯ୍ୟ ଅଯୋନି ଜାତ ଅଗ୍ନିର ଏ ହୋଏ ।
ଯଦ୍ୟପି ପାଷାଣ ଲୁହା ବଜ୍ର ହୋଇଥିବ
ଅପାଙ୍ଗେ ଚାହିଁଲେ ସେହି ହୃଦ ଫୁଟିଯିବ ।
ଦେବାକାର୍ଯ୍ୟେ ଜନମ ଏ ଜଗତ ମୋହିନୀ
ଋଷି ତପୋଧନଙ୍କର ଏ ତପ ଭଙ୍ଗିନୀ ।
ନାସାରେ ତ ପଟାନ୍ତର ମୋହେ ତିନିଫୁଲ
ଦିନେକ ବିଳମ୍ୱେ ଝଡ଼ି ପଡ଼େ ଭୂମିତଳ ।
ଅତୁଟ ଶୋଭା କନକ ପତ୍ରକୁ ଏ ଜିଣି
ଶୀତଳ ପବନ କି ମଳୟ ନୀଳମଣି ।
ଏହା ନାସିକାରୁ ଯେବେ ବହିବ ପବନ
ନିମ୍ବ ସାହାଡ଼ାରେ ଲାଗି ହୋଇବ ଚନ୍ଦନ ।

ତାମ୍ବୁଳ ବିହୀନେ ନାଗ ଅଧର ପ୍ରକଟି
ବାଳଦିତ୍ୟ କି କୁସୁମ ଫୁଲ ଅଛି ଫୁଟି ।
ବିମ୍ବ ଫଳ ସରି ନୋହେ ବଧୁଲୀ ଅଧରେ
ସେ କାହୁଁ ତୁଲ୍ୟ ହୋଇବ ଝଡ଼େ ରସାତଳେ ।
ଯେସନେ ଘଟନ ଶୁଦ୍ଧ ହିଙ୍ଗୁଳାର ପାଟି
ତେସନେକ ପଟାନ୍ତର ଓଷ୍ଠ ଦୁଇ ଗୋଟି ।
ମୁକୁତା ନ ଗଛଇ ତ ଏହା ଦନ୍ତ ପନ୍ତି
ପଦ୍ମାସନେ ସେ ସ୍ୱରୂପମାନ ବିକଶନ୍ତି ।
ମରକତ କ୍ଷୁଦ୍ର ମୋତି ସୁନ୍ଦର କି ଜାଣି
ବତିଶକଳା ଘେନି କି ବିଜେ ନିଶାମଣି ।
ଜ୍ଞାନବତୀ ଏ ସୁନ୍ଦରୀ ନ କହଇ ବାଣୀ
ପିକ ବନ ଉପେକ୍ଷିବେ ଏହା ବାକ୍ୟ ଶୁଣି ।
ଯେବଣ ପୁରୁଷକୁ ଏ କହିବ ବଚନ
ଶରୀର ଧରିବାକୁ ସେ ନୋହିବ ଭାଜନ ।
ଶରତ ଚନ୍ଦ୍ର ବଦନ ବୋଲନ୍ତେ ତ ଭଲା
ରାହୁ ତେଜ ଲାଗି ସେହି କଳଙ୍କ ରହିଲା ।
ନିଷ୍କଳଙ୍କ ବଦନଟି ଏହାକୁ ନିର୍ଦ୍ଦୋଷୀ
ତେଣୁ ଏହା ପଟାନ୍ତର ନୁହେଁ ପୂର୍ଣ୍ଣଶଶୀ ।
ନ ଜାଣି କି ପଟାନ୍ତର କରିବ କେ ଜନ
ପ୍ରଜାପତି ଶାପେ ତାର ହେବ ଦେହ କ୍ଷୀଣ ।
ସୁବର୍ଣ୍ଣର ପଟରେ କି ଦିଶେ ବାଲଅର୍କ
କ୍ଷୁଦ୍ର ମୁକୁତା ତହିଁକି ଘଟିଲା ପ୍ରତ୍ୟକ୍ଷ ।
ନୀଳ କୁଞ୍ଚିତ କେଶର ବହନ ମଣ୍ଡଳୀ
କୃଷ୍ଣ ମେଘେ ସୌଦାମିନୀ ଦିଶଇ କି ଝଳି ।
ହୃଦୟ ବିସ୍ତାର ତହିଁ ନବ ଯଉବନ
କେଶରୀ ମଝାର ସେ କି ଅଟଇ ଉଦ୍ୟାନ ।
ଅନାଦି ଅପର୍ଣ୍ଣା ସ୍ୱୟଂ ସିଦ୍ଧଏ ସମ୍ଭବି
ଏହା ଶରୀର ବର୍ଣ୍ଣିବ କେ ମାନସ ଭାବି ।
ଅନଳୁ ଅବତରିଲା ଅନଳ ବିହାରି
କିସ କହିବି ମାନବ ଦେହ ମୁହିଁ ଧରି ।
ପୃଥୁଳ ଅତି ସୁନ୍ଦର ଯାର ଭୁଜ ବେନି
ସରଳ କମଳମାଳା ମୁକୁତା କି ଘେନି ।
ସଜସଜ ପଟାନ୍ତର ବେନି କରସ୍ଥଳି
ଚମ୍ପା କୁସୁମ କଢ଼ି ଯେ ତାହାର ଅଙ୍ଗୁଳି ।
ଛାତ କୁସୁମ ପାଖୁଡ଼ା ଜିଣି ନରରେଖ
ନୁହଇ ଶଶିରେଖ ଯେ ନୁହଇ ବାଳକ ।
ଉଲଟ ରାମ ରମ୍ଭାର ଜାନୁଜଙ୍ଘ ବଳି
ରକତ କୁମୁଦ ଜିଣି ଦିଶେ ପାଦତଳି ।
ପାଟ ପୋହଳାକୁ ଜିଣି ପାଦ ନଖରେଖ
ହୀରାର ଦର୍ପଣମାନ ହୋଇଲେ ନିରେଖ ।

ସଭାରେ ଥାଇ ବୋଲଇ ଦମନ ରାଜନ
କନ୍ୟାର ଶରୀର କିମ୍ବା ଅଳଙ୍କାର ଶୂନ୍ୟ ।
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ହୋଇଲ କି ବାଇ
ଶରୀରକୁ ଭାରା ହେବ ବୋଲି ଘେନି ନାହିଁ ।
କର୍ଣ୍ଣ ବୋଇଲା ବହିବ କିମ୍ପା ଅଳଙ୍କାର
ସୁବର୍ଣ୍ଣରୁ ଶତଗୁଣ ଅଧିକ ଶରୀର ।
ଅଗ୍ନିର ସ୍ୱରୂପ ତାର ଦିଶେ ତେଜ ଝଳି
କିସ ବିଚାର କନକ ଛାର କେତେ ଭଳି ।
ଯେସନେ ଗମନ୍ତି ଜଳ ମଧ୍ୟେ ହଂସପନ୍ତି
ଚାଲନ୍ତେ ସୁନ୍ଦର ତଥା ପାଦପଦ୍ମ ଗତି ।
କି ଜାଣି ଦ୍ରୁପଦ ରାଜା କଲା ସ୍ୱୟମ୍ବର
ଏଥି ନାହିଁ କେହି ବର ଯାର ପଟାନ୍ତର ।
ପୁଣି ଯେବେ ଜନମିବ ଆସି କାମଦେବ
ଏହାର ରୂପକୁ ଯୋଗ୍ୟ ସେ ବର ହୋଇବ ।
ଏସନକ ବିଚାରନ୍ତି ବସି ଦଣ୍ଡଧାରୀ
କେଶିନୀ ମୁଦୁସୁଲୀକୁ ଦ୍ରୌପଦୀ ପଚାରି ।
ଦ୍ରୌପଦୀ ବଚନେ ତୋଷ କେଶିନୀ ଯେ ହୋଇ
ଚିହ୍ନାଇଣ ମୁଦୁସୁଲୀ ସମସ୍ତ ଦେଖାଇ ।
ଦ୍ରୌପଦୀ ଦେବୀ ବୋଇଲେ ଶୁଣ ଲୋ କେଶିନୀ
ଏମାନେ କେବଣ ଦେଶୁଁ ଅଇଲେ କି ଘେନି ।
ଆମ୍ଭ ରାଜ୍ୟରେ ପଶିଲେ କହ କି ନିମନ୍ତେ
ତୋର ପିତା ସ୍ୱୟମ୍ବର କଲା ଜାଣ ତୋତେ ।
ତୁ ଦେବୀ ବାଳିକା କିଛି ନ ଜାଣିଛୁ ଏହା
ରାଜାଏ ମିଳିଲେ ତୋତେ ହୋଇବେ ଯେ ବିଭା ।
ମୁଦୁସୁଲୀ ବଚନରେ ବୋଲେ ମହାସତୀ
ଏ ସଭାର ମଧ୍ୟରେ ଲୋ କିଏ ମୋର ପତି ।
କେଶିନୀ ବୋଇଲା ଏହି ସ୍ୱୟମ୍ବର ତୋର
ଯେ ଲାଖ ବିନ୍ଧିବ ସେହି ହେବ ତୋର ବର ।
ଦ୍ରୌପଦୀ ବୋଇଲେ କେଉଁ ଦେଶ ଦଣ୍ଡଧାରୀ
ଧନ ଗୁଣମାନ ଜେଡ଼େ କହ ତଥ୍ୟ କରି ।
ସବୁ ରାଜାଙ୍କର ଗୁଣ ଜାଣିଥିଲେ କହ
ଏମାନଙ୍କ ଗୁଣ ବୁଝି ନାଶିବି ସନ୍ଦେହ ।
ଦ୍ରୌପଦୀ ଦେବୀ ବଚନେ କହଇ କେଶିନୀ
ରାଜାମାନଙ୍କର ଗୁଣ ଶୁଣ ଯାଜ୍ଞସେନୀ ।
କୁଞ୍ଜଗଳ ଦେଶର ଏ ଅଟେ ଅଧିପତି
ଧୃତରାଷ୍ଟ୍ର ନନ୍ଦନ ଯେ ମାନ ଚକ୍ରବର୍ତ୍ତୀ ।
କାଳକ ବଞ୍ଚିଲା ମନେ ଗୋବିନ୍ଦର ପଣେ
ସଦା କପଟ ବିଚାରେ ଦୟା ନାହିଁ ମନେ ।
ଗାନ୍ଧାର ବଂଶକୁ ବଳେ ନାଶ କଲା ଏହି
ପାଷାଣେ କର ଲାଗନ୍ତେ ପାଣିଦ୍ରବ୍ୟ ହୋଇ ।

ଶଙ୍ଖ ପଦ୍ମନିଧି ଯାର କରପତ୍ରେ ଥାଇ
ତାର ତୁଲେ ରାଜା ଏ ପୃଥୀରେ କେହି ନାହିଁ ।
ପଟ୍ଟାନ୍ତର ଦେବାକୁ ଯେ ନାହିଁ ଭୂମଣ୍ଡଳେ
ମାନେ ମାନଗୋବିନ୍ଦ ଏ ଅଟେ ରବିତଳେ ।
ନିରନ୍ତରେ କମଳା ଯେ ବିଜୟ କନ୍ଦର
ଅଇଶ୍ୱର୍ଯ୍ୟ ଅଚଳ ଯେ ହୋଇଛି ତାହାର ।
ଚାଲନ୍ତେ କନକପଦ୍ମ ପାଦରେ ଫୁଟାଇ
ମହୀରେ ପନ୍ନଗନାରାୟଣ ଏ ବୋଲାଇ ।
ଦେଖ ଏହି ଭୀଷ୍ମ ବୋଲି ଯେଉଁ ସେନାପତି
ଇଚ୍ଛାମୃତ୍ତି ଗଙ୍ଗାଗର୍ଭେ ଏହାର ଉତ୍ପତ୍ତି ।
ଶରୀର ନ ଛାଡ଼ଇ ଏ ବାଳକ ଯୁକତେ
ଦାର ସଂହରଣ କଲା ପିତାର ନିମନ୍ତେ ।
ଧାର୍ମିକ ବିବେକୀ ଜଣେ ନାହିଁ ଏହାପରି
ପରଶୁରାମ ଏହାକୁ ଯୁଦ୍ଧେ ଗଲା ହାରି ।
ପ୍ରତିଜ୍ଞା ସାର୍ଥକ କରେ ଏହି ମହାବୀର
କୁରୁବଳ ପିତାମହ ଶାନ୍ତନୁ କୁମର ।
ଭରଦ୍ୱାଜ ନନ୍ଦନ ଏ ଦେଖେ ଗୁରୁ ଦ୍ରୋଣ
ପରଶୁରାମ ବିଦ୍ୟାରେ ଅଟଇ ନିପୁଣ ।
ହସ୍ତରେ ଏ ଅସ୍ତ୍ର ଧରିଥିବ ଯେତେବେଳେ
ଜିଣି ନ ପାରିବେ କେହି ତ୍ରୈଲୋକ୍ୟ ମଣ୍ଡଳେ ।
ଏହାଙ୍କର ନନ୍ଦନ ଏ ଅଶ୍ୱତ୍ଥାମା ରଥି
ମୃତ୍ୟୁ ନାହିଁ ଚିରକାଳ ଥିବ ଏହୁ ବର୍ତ୍ତି ।
ଅଶ୍ୱତ୍ଥାମା ମାତୁଳ ଏ ଜାଣନ୍ତି ସଂଗ୍ରାମ
ଆଗୋ ଦେବୀ କୃପାଚାର୍ଯ୍ୟ ଏହାଙ୍କର ନାମ ।
ମଦ୍ରଦେଶ ନୃପତି ଏ ମହାରଥି ଶଲ୍ୟ
ଦୁର୍ଯ୍ୟୋଧନ ସେନାପତି ପାଣ୍ଡବ ମାତୁଳ ।
ସଖୀ ଏ ନିଶ୍ଚୟ ଯେବେ କରିବ ସଂଗ୍ରାମ
ଧନୁ ଧରନ୍ତେ କମ୍ପନ୍ତି ଶ୍ରୀପୁରୁଷୋତ୍ତମ ।
ଶକୁନି ମହାରାଜା ଏ ଗାନ୍ଧାର ଦେଶର
ପଥର ଘରେ ଭରିଲେ ବଂଶକୁ ଏହାର ।
ଦେଖ ଦେଖ ସଖୀ ତୁ ଗୋ ଭୂରିଶ୍ରବା ରଥି
ପ୍ରତ୍ୟକ୍ଷ ଏ ସୋମବଂଶୀ ଜ୍ଞାତି ମହାସତୀ ।
ଦୁଶୀଳବଲ୍ଲଭ ଏ ଗୋ ରାଜା ଜୟଦ୍ରଥ
ସିନ୍ଧୁଦେଶ ରାଜା ଏହି ସୁରଥର ସୁତ ।
ଏହାର ଅସଂଖ୍ୟ ଗୁଣ ଶୁଣ ମହାସତୀ
ତୋତେ ବିଭା ହୋଇବାକୁ ଥିଲା ମହାମତୀ ।
ଏହାର ଅନ୍ତେ ଦେଖ ଗୋ ଦ୍ରୁପଦର ଜେମା
ମଗଧେଶ୍ୱର ଏହାର ବହୁତ ଗାରିମା ।
ଛୟାଶୋଇ ସସ୍ର ରାଜା ଖଟନ୍ତି ଏହାକୁ
ତେଇଶ କ୍ଷଉଣୀ ଘେନି ଅଇଲା ଏଥକୁ ।

ଶତବଳ ଆୟତନ ନାମ ନଗ୍ରଟାଣି
ଲକ୍ଷେ ରାଜାଙ୍କ ଉପରେ ହେଲେ ଶିରୋମଣି ।
ଏହା ନାମ ଜରାସନ୍ଧ ଏ ରାଜାର ଡରେ
ମଥୁରା ଛାଡ଼ି ରହିଲେ କୃଷ୍ଣ ଦ୍ୱାରକାରେ ।
ବିଦର୍ଭ ଦେଶର ରାଜା ଅଟେ ଦମ ଘୋଷ
ସାତ ଅକ୍ଷୌହିଣୀ ବଳ ଘେନି ଏ ପ୍ରବେଶ ।
ଶିଶୁପାଳ କୁମର ଏ ଅଟଇ ସୁନ୍ଦର
ରୁକ୍ମିଣୀଙ୍କ ପାଇଁ ପୂର୍ବେ ହୋଇଥିଲା ବର ।
ବଳାତ୍କାରେ ଜଗନ୍ନାଥ ନେଲେ ତାକୁ ହରି
ଅହର୍ନିଶି ନାରାୟଣ ତୁଲେ ଦ୍ୱନ୍ଦ୍ୱକାରୀ ।
ଦ୍ରୌପଦୀ ବୋଇଲେ ଏଥେ ନାହିଁ ପ୍ରୟୋଜନ
ଦଣ୍ଡେ କ୍ଷଣେ ସିନା ଜାଣ ଏହାର ଜୀବନ ।
ଦେଖ ଦେଖ ସଖୀ ତୁ ଗୋ କୁଣ୍ଡୀନଗ୍ର ରାୟ
ରୁକ୍ମିଣୀ ବୋଲି ମାଳତୀ ରାଣୀର ତନୟ ।
ଦୁହିତା ନାମ ଏହାର ଅଟଇ ରୁକ୍ମିଣୀ
ନାରାୟଣ ବଲ୍ଲଭୀ ସେ ଜାତି କମଳିନୀ ।
ନିଷଧ ଦେଶର ରାଜା ଅଟେ ବନମାଳୀ
ବେନି ଅର୍ବୁଦ ଘେନି ଏ ଅନୁକ୍ଷଣେ ଚଳି ।
ଅତି ସୁକୁମାର ଅଟେ ଏହାର ଗୋ କାୟ
ଆକାଶେ ଚଳେ ଅଙ୍ଗାର ପନ୍ନଗ ପରାୟ ।
ମାଳବ ଦେଶରଃସଖୀ ରାଜା କୃତବର୍ମା
ଏହାର ହସ୍ତୀର ନାମ ଅଟେ ଅଶ୍ୱତ୍ଥାମା ।
ନବ ଅକ୍ଷୌହିଣୀ ବଳ ଖଟନ୍ତି ନିରତେ
କୁବେର ସମାନ ରାଜା ଅଟନ୍ତି ଏ ବିତ୍ତେ ।
କାଶିଦେଶ ରାଜା ଆଗୋ ଅଟେ କାଶିଶ୍ୱର
ଏକାଦଶ ଅକ୍ଷୌହିଣୀ ବଳ୍ ଏହାଙ୍କର ।
ଦେଖ ଦୁର୍ଯ୍ୟୋଧନ ମିତ୍ର କର୍ଣ୍ଣ ମହାବୀର
ଡରେ ପୃଥ୍ୱୀ ଲାଞ୍ଝଦିଏ ସ୍ୱର୍ଣ୍ଣ ଶତଭାର ।
ଅବିବାହୀ କାଳେ ଜାତ କଲେ କୁନ୍ତୀଦେବୀ
ପାଣ୍ଡବଙ୍କୁ ନ ଭଜି ଏ ଦୁର୍ଯ୍ୟୋଧନେ ସେବି ।
ପାଣ୍ଡବଙ୍କର ଅଟଇ ସେ ଯେ ଜ୍ୟେଷ୍ଠଭ୍ରାତା
ଆକାଶରେ ଦିବାକର ଏହାଙ୍କର ପିତା ।
ଧନେ ଗାରିମା ଦାନେ ଗୋ ଅନର୍ଗଳ ପଣ
ଦାନୀ କର୍ଣ୍ଣ ବୋଲି ମାନେ ରାଜା ଦୁର୍ଯ୍ୟୋଧନ ।
ନିର୍ଝର ଦେଶର ରାଜା ଅଟେ ଗଣପତି
ବଡ଼ ପ୍ରତାପୀ ଏହାର ଅତ୍ୟନ୍ତ ସୁଖ୍ୟାତି ।
ପାଞ୍ଚଲକ୍ଷ ହସ୍ତୀ ମାଗୋ ଆଠଲକ୍ଷ ରଥି
ପାଞ୍ଚଲକ୍ଷ ଅଶ୍ୱ ତେରକ୍ଷଉଣୀ ପଦାତି ।
କଳିଙ୍ଗ ଦେଶର ରାଜା ଏ କଳିଙ୍ଗ ସେନା
ସାତଅକ୍ଷଉଣୀ ବଳ ଘେନି ଏ ରାଜନ ।

ତୁଲେ ଘେନି ନବଲକ୍ଷ କୁଞ୍ଜର ଆବର
ତୋ ନିମନ୍ତେ ବିଜେ କଲା ଆସି ଆମ୍ଭ ପୁର ।
ଉଡ଼ଙ୍ଗ ଦେଶର ରାଜା ଏ ମଧୁକିଶୋର
ଶିଖଣ୍ଡୀ ଶ୍ୱଶୁର ଏହୁ ଅଟେ ମହାବୀର ।
ବୈଶ୍ୱାନର ଦେଶର ଏ ଧୂମକେତୁ ରାୟେ
ଦଶଲକ୍ଷ ଯୋଦ୍ଧା ଘେନି ଏଠାରେ ବିଜୟେ ।
କାନ୍ୟକୁବ୍ଜ ଦେଶ ରାଜା ଅଟେ କର୍ଣ୍ଣମାଳୀ
ଆଠ ଅକ୍ଷୌହିଣୀ ଥାଟ ଘେନି ଆଗେ ଚଳି ।
ଚୂହାଣ ଦେଶର ରାଜା ଅଟେ ଜନାର୍ଦ୍ଦନ
ଶ୍ୱେତ ଅଶ୍ୱ ପଦ୍ମେ ଘେନି ଆସିଛି ଏ ସ୍ଥାନ ।
ବଙ୍ଗଦେଶ ନୃପତି ଯେ ଅଟେ ବୀରବାହୁ
ମହାଭୀଷ୍ମ ରୂପୀ ରାଜା ସଂଗ୍ରାମରେ ରାହୁ ।
ଯୁଗଦେଶ ଶରା ଏଗୋ ଦାମୋଦର ସେନ
ରଥ ଗଜ ଅଶ୍ୱ ତୁଲେ ନବଲକ୍ଷ ସୈନ୍ୟ ।
କୁଞ୍ଜର ଦେଶର ଏ ଗୋ କୁମୁଟ ନୃପତି
ଏକାଦଶ ଅକ୍ଷୌହିଣୀ ଏହାର ପଦାତି ।
ମଘ ଦେଶର ନୃପତି ଅଟଇ ତ୍ରିଗର୍ତ୍ତ
ପଞ୍ଚ ଅକ୍ଷୌହିଣୀ ବଳ ତିନିକୋଟି ରଥ ।
କୀଚକ ଏହାର ରାଜ୍ୟ ଘେନିଗଲା ବଳେ
ହତଭାଗ୍ୟ ହୋଇ ଏବେ ଭ୍ରମେ ଭୂମଣ୍ଡଳେ ।
ମତ୍ସ୍ୟଦେଶ ଅଧିପତି ଏ ବିରାଟେଶ୍ୱର
ସାତ ଅକ୍ଷୌହିଣୀ ବଳ ସଙ୍ଗରେ ଏହାର ।
ବେନି ପଦ୍ମ ଦୁହାଁଳିଆ ଗାଈ ଏହା ଘରେ
ଅଣ୍ଡିରା ବାଛୁରୀ ବାରଲକ୍ଷ ସଙ୍ଗତରେ ।
ଆବର ଯେ ବାରଲକ୍ଷ ବରଡ଼ିଆ ଗାଈ
ବାଛୁରୀ ତିନିଶ ଲକ୍ଷ ଅଛନ୍ତି ଯେ ମାଈ ।
ବେନିପଦ୍ମ ଗୋପାଳ ଗୋ ଦୋହନ କରନ୍ତି
ପ୍ରଥମ ଚିରକୁ ଦୁହିଁ ପୃଥ୍ୱୀରେ ପକାନ୍ତି ।
ସାତଘଡ଼ି ଯାଏ ବହେ ତହିଁ କ୍ଷୀର ନଦୀ
ତାଳେକ ଉଚ୍ଚେ ଯାଉଛି ଉର୍ଦ୍ଧ୍ୱ ମୁଖେ ଭେଦୀ ।
ଆହାର କରନ୍ତି ବନେ ଜୀବ ଜନ୍ତୁମାନେ
ବଞ୍ଚନ୍ତି ସମସ୍ତ ଜୀବ ଏହି କ୍ଷୀରପାନେ ।
ଦୁଃଖୀ ଦରିଦ୍ର ହେ କେହି ଏହି ରାଜ୍ୟେ ନାହିଁ
ସମସ୍ତେ ବଞ୍ଚନ୍ତି ଏହା ରାଜ୍ୟେ କ୍ଷୀର ଖାଇ ।
ଶୁଣି ଦ୍ରୌପଦୀ ବୋଇଲେ ଧନ୍ୟ ତା ଜୀବନ
ସମସ୍ତ ଲୋକଙ୍କୁ କ୍ଷୀର କରାନ୍ତି ଭୋଜନ ।
ଦେଖ ସଖୀଏ ଶରଦ ଦେଶର ନୃପତି
କୀଚକ ନାମରେ ଏହି ଲଭିଛି ବିଖ୍ୟାତି ।
ରାଜୁତି କରଇ ଏହି ଶତଭ୍ରାତା ଘେନି
ପୁଣ୍ୟେ ତୋଷିଲା ଦୁର୍ବାସା ନାମେ ମହାମୁନି ।
ଶତସିଂହ ବଳ ଧରେ ଏହି ସେନାପାତି
ହିରଣ୍ୟଗିରି ଉଡ଼ିଲା ଶତଯୂଣ ପ୍ରତି ।
ଚରଦେଶର ରାଜା ଗୋ କାମଦେବ ବୀର
ରଥ ଗଜ ଅଶ୍ୱ ଅଟେ ଏଗାର ସାଗର ।
ବୀରଦେଶ ନୃପତି ଗୋ ଅଟଇ ସୁବାହୁ
ସ୍ୟମନ୍ତକ ମଣି ବଳେ ବହି ଧନୀ ସେହୁ ।
ଭଚ୍ଛଦେଶ ରାଜା କର୍ଣ୍ଣକେଶରୀ ଏ ବୀର
ରଥ ସୈନ୍ୟ ଆଣିଅଛି ତିନି ଯେ ସାଗର ।
ସବୁ ରଥ ଏହାର ଗୋ ଶୁଣ ସ୍ୱର୍ଣ୍ଣମୟ
ଇଚ୍ଛା ହେଲେ ବରରୂପେ କର ଛାଡ଼ି ଭୟ ।
ମହ୍ଲାର ଦେଶର ରାଜା ଅଟେ ହୃଷୀକେଶ
ବାସ୍ତରୀ କ୍ଷଉଣୀ ବଳ ଏହାଙ୍କର ପାଶ ।
କାଉଁରୀ ଦେଶର ରାଜା ଅଟେ କାମପାଳ
କାମଦେବ ଜିଣି ସଖୀ ସୁନ୍ଦର ଏ ମଲ୍ଲ ।
ଦଶଲକ୍ଷ ରଥ ଦଶଲକ୍ଷ ରଥି ହସ୍ତୀ
ଦଶଲକ୍ଷ ହୟ ଦଶଲକ୍ଷ ଯେ ପଦାତି ।
ବଙ୍ଗଳା ଦେଶର ରାଜା ଅଟେ ସଦାଶିବ
ପାଞ୍ଚକ୍ଷୌଣୀ ବଳ ଘେନି ବିଜେ ନରଦେବ ।
ଖଡ଼ଗ ଦେଶର ରାଜା ଅଟେ ମନୋହର
ଏହାର ତୁଲେ ସଇନ୍ୟ ଏଗାର ସାଗର ।
କୃଷ୍ଣରାଷ୍ଟ୍ର ରାଜ୍ୟ ରାଜା ମଦନ ମୋହନ
ଲକ୍ଷେକ ଯୁବତୀ ଘେନି ବିଳସେ ରାଜନ ।
କାମୁକ ନୃପତି ଏହି କାମର ପ୍ରସନ୍ନେ
ଜାଣଇ ଧାରଣ ବିଦ୍ୟା ନୃପ ବିଦ୍ୟମାନେ ।
ଏକରାତ୍ରେ ଏ ସମସ୍ତ ବାମାକୁ ବୋଧଇ
କାମିନୀମାନଙ୍କ ମନ ସର୍ବଦା ରଞ୍ଜଇ ।
କ୍ଷତ୍ରିୟ ଦେଶର ରାଜା ଅଟେ କର୍ଣ୍ଣବିଳ
ଅଶୀଲକ୍ଷ ଯୋଦ୍ଧା ଘେନି ସାଧେ ମହୀତଳ ।
ବିଚିତ୍ର ଦେଶର ରାଜା ଅଟେ ବୀରକର୍ଣ୍ଣ
ବାର ଅକ୍ଷୌହିଣୀ ଘେନି ବିଜୟ ରାଜନ ।
ନେପାଳ ଦେଶର ରାଜା ନରାନ୍ତକ ବୀର
ରଥ ଅଶ୍ୱ ଏହାର ଯେ ଅଟଇ ଅପାର ।
ବାରସ୍ୱତୀ ପୁର ରାଜା ବାମଦେବ ରାୟ
ତେତିଶ କୋଟି ଏହାର ଶ୍ୱେତବର୍ଣ୍ଣ ହୟ ।
ରଥ ଗଜ ଏହାର ଗୋ ପଦାତି ନାହାନ୍ତି
ଏହାର କନ୍ଦରୁ ଲକ୍ଷ୍ମୀଦେବୀ ନ ଛାଡ଼ନ୍ତି ।
ଅତି ପୁଣ୍ୟ ସଖୀ ପୂର୍ବେ କରିଥିବୁ ଯେବେ
ଏହି ରାଜାର ଭାରିଯା ହୋଇବୁ ତୁ ତେବେ ।
ପାରିଜାତ ଦେଶ ରାଜା ସୁମାଳି ସୁସଞ୍ଚ
ପର୍ଶୁରାମ ଆଜ୍ଞାରେ ଏ ଜିଣିପାରେ ମଞ୍ଚ ।

ଏହା ପିତା ସଖୀ ଜଳତରଙ୍ଗ ନୃପତି
ତ୍ରେତାଯୁଗେ ବରୁଣଙ୍କୁ ଦଣ୍ଡିଲା ତ୍ରିଘାନ୍ତି ।
ଭୋଜ ଦେଶ ନୃପତି ଗୋ ଏହି କୋନ୍ତ ଭୋଜ
ପୃଥ୍ୱୀର ମଧ୍ୟେ ଅଟଇ ଏହି ମହାରାଜ ।
ଏହାର ଦୁହିତା ନାମ ଅଟେ ଦେବୀ କୁନ୍ତୀ
ତାଙ୍କୁ ବିଭା ହୋଇଥିଲେ ପଣ୍ଡୁ ନରପତି ।
ଯୁଧିଷ୍ଠିର ଭୀମାର୍ଜ୍ଜୁନ ବଳବନ୍ତ ତିନି
ପୁତ୍ର ଜାତ କଲା କୁନ୍ତୀ ଭୋଜର ନନ୍ଦିନୀ ।
ମାଦ୍ରୀଦେବୀ ବୋଲି କୁନ୍ତୀଦେବୀ ସପତଣୀ
ନକୁଳ ସହଦେବ ଯେ ତାଙ୍କ ପୁତ୍ର ବେନି ।
ଅର୍ଜ୍ଜୁନର ପଞ୍ଚଆତ୍ମା ଦେବ ଚକ୍ରପାଣି
ଅଭିନ୍ନ ନ କରନ୍ତି ସେ ଦେବ କମ୍ବୁପାଣି ।
ପଞ୍ଚପାଣ୍ଡବେ ଅଟନ୍ତି ସେ ବଡ଼ ବଳିଷ୍ଠ
ପୃଥିବୀର ଭାର ସେହି କରିବେକ ନଷ୍ଟ ।
ଉପାୟେ ଏ ଦୁର୍ଯ୍ୟୋଧନ ତାଙ୍କୁ କଲା ହତ
ପଞ୍ଚପାଣ୍ଡବଙ୍କୁ ଦେଖି ମହାବଳବନ୍ତ ।
ଭୋଜକୂଟ-ଦେଶ ରାଜା ମନମଥ ବହ୍ନି
ଚାଳିଶକ୍ଷଉଣୀ ବଳ ସଙ୍ଗେ ଅଛି ଘେନି ।
ବିଡ଼ଙ୍ଗ ଦେଶର ରାଜା ଅଟେ ଯଦୁସେନ
ସଙ୍ଗତେ ଅଛଇ ସାତ ଅକ୍ଷୌହିଣୀ ସୈନ୍ୟ ।
ଅନୁଭବ ଦେଶ ରାଜା କୃତାନ୍ତକ ଦେବ
ଅଶ୍ୱ ଗଜ ସୈନ୍ୟ ତାର ଅଟେ ଏକ ଖର୍ବ ।
ଚଣ୍ଡୀଦ୍ୱାର ଦେଶ ରାଜା ଅଟଇ ଜୟନ୍ତ
ଅଛି ତାର ନବଲକ୍ଷ ହସ୍ତୀ ବଳବନ୍ତ ।
ଗିରିବର ଦେଶର ଗୋ ରାଜା ପୁଣ୍ଡରୀକ
କାଠ ଗରୁଡ଼ ଚଢ଼ି ସେ ବୁଲେ ସ୍ୱାଭାବିକ ।
ବେନି କରେ ଶଙ୍ଖ ଚକ୍ର ଗଦା ପଦ୍ମ ବହି
ଶ୍ରୀ ଜଗନ୍ନାଥଙ୍କୁ ନିନ୍ଦେ ମନ୍ଦକଥା କହି ।
ନ କହ ଗୋ ଏହା କଥା ବୋଲେ ଯାଜ୍ଞସେନୀ
ଜୀବନ ଅନ୍ତେ ବୁଝିବ ଦିନେ ସିନା ପୁଣି ।
ଏ ସଂସାରଯାକ ଅଟେ ଜାଣ ବିଷ୍ଣୁମୟ
ଅସୁରେ ଜଗନ୍ନାଥଙ୍କୁ ନ କରନ୍ତି ଭୟ ।
ଅନଙ୍ଗ ବାସୁଦେବ ଏ ଅରବିନ୍ଦ ଦେଶ
ଗୁଣବନ୍ତ ବିଦ୍ୟାବନ୍ତ ସଦା ପ୍ରିୟ ଭାଷ ।
ଶାକଲ୍ୟ ଦେଶର ରାଜା ଶାଲ୍ୱ ନରପତି
ଦଶସସ୍ର ରଥ ଘେନି କରେ ଶୂନ୍ୟଗତି ।
ଜ୍ୟୋତିଷପୁରର ରାଜା ଏ ଯେ ମନସିକ
ସାତ ଅକ୍ଷୌହିଣୀ ଘେନି ବିଜେ ମହାରାଜ ।
କାଶୀଶ୍ୱର ନଗ୍ର ରାଜା ଅଟେ ବିରୁପାକ୍ଷ
ଶାର୍ଦ୍ଦୁଳ ବାହନ ମହାଯୋଦ୍ଧା ଦଶଲକ୍ଷ ।
ଖିନିଖିନା ଦେଶ ରାଜା ଏ ଦରଦସେନ
ଅଶୀ ପରାର୍ଦ୍ଧ ଅଟଇ ଏହାର ସଇନ୍ୟ ।
ସଖୀ ଗୋ ହେ ବସିଛି ରାଜା ଜମାଗୋଷ୍ଠ
ଉଣେଇଶ ସହସ୍ର ଯେ ସେନା ସର୍ବଶ୍ରେଷ୍ଠ ।
ଏହାର ମହିମା ସଖୀ ଦେବଙ୍କୁ ଦୁର୍ଲ୍ଲଭ
ଦକ୍ଷିଣ କାଣିଅଙ୍ଗୁଳି କାଳରୁଦ୍ର ଠାବ ।
ନାମ ଧରି ଲିହି ପୋଛିଦେଲେ ବେନି ଖଣ୍ଡ
ଏହାକୁ ତୁଲ୍ୟ ନୁହଁଇ ଜାଣ ଯମଦଣ୍ଡ ।
ହିରଣ୍ୟପୁର ନୃପତି ଅଟେ ପଦ୍ମନାଭ
ମହାବଇଷ୍ଣବ ସେହୁ ସେବେ ବାସୁଦେବ ।
ଉତ୍ତମ ପୁରର ରାଜା ଅଟେ ବିଶ୍ୱନାଥ
ବିଭୂତି ଲେପନ ଅଙ୍ଗ ଜଟାଭାର ମାଥ ।
ଧର୍ମ କଥାରୁ ତାହାର ଅନ୍ୟେ ନାହିଁ ଇଚ୍ଛା
ଯୋଗଲୟେ ବିଶ୍ୱନାଥ ଦେବ କରେ ବାଞ୍ଛା ।
ତିନିଶତ ଯୋଜନର ଅଟଇ ନାୟକ
ସତ୍ୟ ଆଚାରେ ବର୍ତ୍ତନ୍ତି ତାରଦେଶ ଲୋକ ।
ଭଇରବ ଦେଶର ଏ ଭଇରବ ରାଜ
ଏକ ଚରଣ ସବୁରି ଚାରି ଚାରି ଭୁଜ ।
ଡମ୍ବରୁ ଶୂଳ ଖଟ୍ୱାଙ୍ଗ ପାଶୁପତ ହସ୍ତେ
ବଳଦେବ ଚଢ଼ିଥାଇ ଶ୍ୱେତବର୍ଣ୍ଣ ଗାତ୍ରେ ।
ସମସ୍ତ ଲୋକ ଚଳନ୍ତି ବଳଦ ବାହନେ
ନିମିଷକେ ଜିଣିପାରେ ଏ ମଧ୍ୟଭୁବନେ ।
ଜେନାବଳି ନଗ୍ରର ଏ ଗୋସିଂହ ନୃପତି
ଅଶୀକୋଟି ସୈନ୍ୟ ତାର ଆସେ ମହାରଥୀ ।
ବିଜୟ ରାଜ୍ୟର ରାଜା ଏହି ଋତୁପର୍ଣ୍ଣ
ଅମଳନ ସୂର୍ଯ୍ୟବଂଶ ଶ୍ରୀରାମ ନନ୍ଦନ ।
ପଞ୍ଚାଶ ସାଗର ସୈନ୍ୟ ସଙ୍ଗତରେ ଘେନି
ଅଇଲା ତୋ ପ୍ରତି ଆଶେ ଏହି ରାଜଧାନୀ ।
ଚିରାଳ ଦେଶର ରାଜା ଅଟେ ନରସିଂହ
ଶଙ୍ଖ ଚକ୍ର ଚିହ୍ନ ଦେଖ ରହିଛି ସର୍ବାଙ୍ଗ ।
କର୍ଣ୍ଣାଟ ଦେଶର ରାଜା ଏ ଯେ ଯଦୁନାଥ
ଅଶୀଲକ୍ଷ ଯୋଦ୍ଧା ଘେନି ଅଇଲା ଗୋ ଏଥ ।
ଯାଜପୁର ନଗ୍ର ରାଜା ଏ ଧରଣୀଧର
ସମଦଣ୍ଡ ଘେନି ବିଜେ କଲା ସେ ସଭାର ।
ଖଡ଼ଦପୁରର ରାଜା ଏ କାର୍ତ୍ତିକସେନ
ଏହାର ସଙ୍ଗତେ ଛନ୍ତି ବହୁତ ସଇନ୍ୟ ।
ଚେଦୀ ଦେଶର ନୃପତି ଅଟେ କୁଶକେତୁ
ପଞ୍ଚଦଶ ଲକ୍ଷ ସୈନ୍ୟ ଉଭାଇଛି କେତୁ ।
କାଞ୍ଚନଗ୍ର ନରପତି ଅଟେ ନୀଳସେନ
ଅଷ୍ଟାଦଶ ଅକ୍ଷୌହିଣୀ ତାହାର ସଇନ୍ୟ ।

କେଶରୀ ରାଜ୍ୟର ରାଜା ଏ ପଦ୍ମକେଶରୀ
ନବସାଗର ସୈନ୍ୟରେ ବିଜେ ଦଣ୍ଡଧାରୀ ।
କୁଶମଣ୍ଡଳ ନୃପତି ଏ ପ୍ରମାଦମଲ୍ଲ
ପାଞ୍ଚଲକ୍ଷ ସୈନ୍ୟ ଅଛି ଏହାଙ୍କର ତୁଲ ।
ମଧୁବନର ନୃପତି ଅଟେ ଉଗ୍ରସେନ
ସଙ୍ଗେ ଆଣିଅଛି ପାଞ୍ଚପରାର୍ଦ୍ଧ ସଇନ୍ୟ ।
ମରୁତ ଦେଶର ରାଜା ଏ ମାନ ଅର୍ଜ୍ଜୁନ
ପାଞ୍ଚଲକ୍ଷ ସୈନ୍ୟ ତୁଲେ ବସିଛି ରାଜନ ।
ସଉରାଷ୍ଟ୍ର ବୋଲି ରାଜା ପଶ୍ଚିମ ଦିକ ଭାଗେ
ବିନ୍ଧ୍ୟା ଚଳ ସଖୀ ତୁ ଗୋ ଦେଖିବୁ ସୌଭାଗ୍ୟେ ।
ବିଦ୍ୟମାନ ଦେଶ ରାଜା ଅଟଇ ସାଗର
ସଙ୍ଗତେ ଘେନି ଆସିଛି ସଇନ୍ୟ ଅପାର ।
ମହ୍ଲାର ଦେଶର ରାଜା ମହୀନ୍ଦ୍ର ନୃପତି
ଏହା ତୁଲେ ଅଛି ପାଞ୍ଚଲକ୍ଷ ମତ୍ତହସ୍ତୀ ।
ପଶ୍ଚିମ କୋଶଳ ରାଜା ଅଟେ ମୃଗସେନ
ମୁକୁଟ ବନ୍ଧା ଏହାର ସାଗର ସଇନ୍ୟ ।
ସୁରଭୀ ଦେଶର ରାଜା ଅଟେ ସୁରଜିତ
ଲକ୍ଷକେ ସୈନ୍ୟ ଏହାର ତୁରଙ୍ଗ ଅୟୁତ ।
ଉତ୍ତର କୋଶଳ ରାଜା ଅଟେ ଲଗ୍ନଜିତ
ସପତ ସାଗର ସୈନ୍ୟ କୁଞ୍ଜର ଅୟୁତ ।
ଦକ୍ଷିଣ କୋଶଳ ରାଜା ଅଟଇ ନାରକା
ସଂସାର ଦହି ପାରଇ ଏ ଅସୁର ଏକା ।
ଈଶାନ କୋଶଳ ରାଜା ଅଟେ ଯାବନିକ
ପାଞ୍ଚପଦ୍ମ ସୈନ୍ୟ ବିଜେ ହୋଇଣ ନିଃଶଙ୍କ ।
ପାଟଣା ରାଜ୍ୟର ଏହି ସୁଜାଣ ନୃପତି
ଲକ୍ଷେ ବଳ ଘେନି ବିଜେ କରିଅଛି ଏଥି ।
ମଳୟ ଦେଶ ରାଜାକୁ ଦେଖ ମହାସତୀ
ଋଇବତ ପାଟଣାର ରାଜା କନ୍ଦପତି ।
ନିରସ୍ତ ପାଟଣା ରାଜ୍ୟେ କର୍ଣ୍ଣାଟ ନୃପତି
ଗୋଟି ଏକ ନାବ ଘେନି ବିଜେ କଲା ଏଥି ।
କମଳା ପାଟଣା ରାଜ୍ୟେ ଏହି ନରବର
ବିଜେ କଲା ଲକ୍ଷବଳ ଘେନି ସଙ୍ଗତର ।
ଜମ୍ବୁଦ୍ୱୀପ ମଧ୍ୟେ ନବ ସହସ୍ର ପାଟଣା
ମନୁଷ୍ୟ ମାତ୍ରକେ କାହୁଁ କରିବ ଘଟଣା ।
ସମସ୍ତ ପାଟଣା ମଧ୍ୟେ ଯେତେକ ନୃପତି
ସଂକ୍ଷେପି କେଶିନୀ କହେ ଦ୍ରୌପଦୀଙ୍କ ପ୍ରତି ।
କେଶିନୀ କହିଲା ଶୁଣ ଦ୍ରୁପଦ ଦୁଲଣୀ
ଦାନବ ରାଜାଙ୍କ କଥା କହେ ପରିମାଣି ।
ଶଙ୍ଖପୁର ନଗ୍ରରେ ଗୋ ରାଜା ସଉନାଭ
ଦାନବ ଶ୍ରେଷ୍ଠ ତାହାର ଭାଇ ବଜ୍ରନାଭ ।
ଏହାଙ୍କ ସଂଗ୍ରାମେ ପୃଥ୍ୱୀ ତ ପାଇଲା ଠାବ
ଆକାଶେ ଥାଇ କମ୍ପନ୍ତି ସୁରପୁର ଦେବ ।
ବରୁଣ ଭୁବନ ଥାଏ ଅସୁରେ ଅମ୍ବର
ସତାଶୋଇକ୍ଷୌଣୀ ସୈନ୍ୟ ଶତେକ କୁମର ।
ଶୋଣିତ ନଗ୍ରରେ ବାଣାସୁର ଯେ ଦନୁଜ
ଚୌରାଶୀ କ୍ଷଉଣୀ ସୈନ୍ୟ ସହସ୍ରେକ ଭୁଜ ।
ନିରାମୟ ଭୁବନରେ କୁମ୍ଭ ଯେ ନିକୁମ୍ଭ
ମହାଦୁଷ୍ଟ ଅଟନ୍ତି ଯେ ଏ ଦୁଇ ଦାନବ ।
ବିଜୟା ଭୁବନ ରାଜା ଅଟଇ କଙ୍କଣ
ଅସଂଖ୍ୟ ଥାଟେ ଅଇଲା ତୁମ୍ବର ଭୁବନ ।
କୃତାନ୍ତକ ବଳ କେତେ କଳନା ନ ଯାଇ
ବସିଛନ୍ତି ଦନୁ ଯେ ଗୋ ଆସି ତୋହ ପାଇଁ ।
ବ୍ରହ୍ମଯୋଗେ ମୋହିନୀ ତୁ ଅଟୁ ମହାସତୀ
ସମସ୍ତେ ମୋହ ଗଲେଣି ଦେଖି ତୋର କାନ୍ତି ।
ଯେତେକ ନୃପତି ସଖୀ ଦେଖାଇଲି ତୋତେ
ସ୍ତମ୍ଭୀଭୂର୍ତ ହୋଇ ବସିଅଛନ୍ତି ଗୋ ଏଥେ ।
କଳିଙ୍ଗ ଉଡ଼ଙ୍ଗ ବଙ୍ଗ ତୈଲଙ୍ଗ ଆବର
ଚୂଡ଼ଙ୍ଗ ଉଡ଼ଙ୍ଗ ଅଙ୍ଗଦେଶ ନୃପବର ।
ଖଗଦେଶ ବୀର ଦେଶ ଭୋଜ କଟ ଦେଶ
ମୋଟ ଭୋଟ କର୍ଣ୍ଣାଟ ଏ ଦେଶ ହିଁ ବିଶେଷ ।
ମନ୍ଦାରଦେଶ ଡାହାଳଦେଶ କାକପାଣି
କ୍ଷୀରଦେଶ ପଦ୍ମଦେଶ ମାଳବ ଏ ପୁଣି ।
କୁଞ୍ଜର ଦେଶ ଆବର ଗୁଜରାଷ୍ଟ୍ର ଦେଶ
ମଘଦେଶ ମସ୍ୟଦେଶ ମଞ୍ଜେଶ୍ୱର ଦେଶ ।
ସଉରାଷ୍ଟ୍ର କାଶୀଦେଶ ଚୋଳ ଯେ ନିର୍ଝର
କଉଶିକ କାନ୍ୟକୁବ୍ଜ ଦେଶ ଯେ ଆବର ।
ଗାନ୍ଧାରୀ ମଗଧ ଦେଶ ନେପାଳ ଭୂପାଳ
ବାରସ୍ୱତ ବୃନ୍ଦାରକ କାଉଁରୀ ମଣ୍ଡଳ ।
କାମାକ୍ଷା କନ୍ଧ ଚୁହାଣ ବିନ୍ଧ୍ୟମାଳ ଦେଶ
ଏମନ୍ତେ ଏ ଦେଶ ନାମ କଲଇ ପ୍ରକାଶ ।
ଭରତଣ୍ଡ ମଣ୍ଡଳ ଯେ ବିକାଶ ମଣ୍ଡଳ
ଭାନୁ ସାନୁ ଭୀମ ସାନୁ ବ୍ରହ୍ମ ଭୂମଣ୍ଡଳ ।
ଶ୍ରୀଖଣ୍ଡ ମଣ୍ଡଳ ଆଦି ତୁରଙ୍ଗ ମଣ୍ଡଳ
ଏମନ୍ତେ କେଶିନୀ କହେ ଛତିଶ ମଣ୍ଡଳ ।
ଅଙ୍ଗରାଷ୍ଟ୍ର ଭୋଜରାଷ୍ଟ୍ର ଭଇରବ ରାଷ୍ଟ୍ର
କୁନ୍ତରାଷ୍ଟ୍ର ଓଡ଼ରାଷ୍ଟ୍ର ସାନୁମରରାଷ୍ଟ୍ର ।
ଜୟରାଷ୍ଟ୍ର ନୀଳରାଷ୍ଟ୍ର ଅନଙ୍ଗ ଯେ ରାଷ୍ଟ୍ର
ଏମନ୍ତେ କେଶିନୀ କହେ ଦ୍ୱାଦଶ ଯେ ରାଷ୍ଟ୍ର ।
ଅଙ୍କଖଣ୍ଡ କାଶୀଖଣ୍ଡ କଉସ୍ତୁଭ ଖଣ୍ଡ
ଉତ୍ତରଖଣ୍ଡ କୁହୁକଖଣ୍ଡ ଯେ ପ୍ରଚଣ୍ଡ ।

ଭରତଖଣ୍ଡ ଉଦଣ୍ଡଖଣ୍ଡ ଯେ ବ୍ରହ୍ମାଣ୍ଡ
ଏମନ୍ତେ କେଶିନୀ କହେ ଅଛି ଯେତେ ଖଣ୍ଡ ।
ବ୍ରାହ୍ମଣ କ୍ଷତ୍ରୀୟ ବୈଶ୍ୟ ଶୂଦ୍ର ଚାରି ଜାତି
ଦୈତ୍ୟ ଦାନବ ପିଶାଚ ବହୁତ ଅଛନ୍ତି ।
ଅସୁର ରାକ୍ଷସ ଯକ୍ଷ କିନ୍ନର ସହିତେ
ଯବନ ମାନବ ଆଦି କୃତାନ୍ତକ ଯେତେ ।
ସୋମବଂଶ ସୂର୍ଯ୍ୟବଂଶ ଭୋଜ କୁରୁବଂଶ
ଅନ୍ଧକ ଯାଦବ ବଂଶ ହଇହୟ ବଂଶ ।
ଚୁହାଣ କୁକକୁଟ ଜିଷ୍ଣୁ ଭୋଇ ଯେ ଗୋପାଳ
ଏମନ୍ତେ ହେ ଅଷ୍ଟାଦଶ ବଂଶ ମହୀପାଳ ।
ତବ ଆଶେ ଆସିଛନ୍ତି ଦେଖ ଗୋ ଦ୍ରୌପଦୀ
ତୋ ଲାଗି ତୋ ପିତା ଅଛି ଏହାଙ୍କୁ ସମ୍ପାଦି ।
ପୃଥ୍ୱୀ ମଧ୍ୟେ ଆସିଛନ୍ତି ନୃପତି ଯେତେକ
କହିଲି ସଂକ୍ଷେପ କରି ମୁହିଁ ଏକ ଏକ ।
ପ୍ରସ୍ତାବ ବାକ୍ୟରେ ମୁହିଁ କିଛି ବିସ୍ତାଲି
ଶ୍ରେଷ୍ଠ ରାଜାମାନଙ୍କର ନାମ ମୁଁ କହିଲି ।
କେଶିନୀ ବୋଇଲେ ତୁ ଗୋ ଶୁଣ ଠାକୁରାଣୀ
ଦ୍ରୁପଦ ରାଜା ତୋହର ଅର୍ଥେ ବରିଆଣି ।
ସମସ୍ତ ରାଜାଙ୍କୁ ଦେଇ ସୁବର୍ଣ୍ଣ ଯୋଗାଡ଼ି
ରାଜାକେ ସୁବର୍ଣ୍ଣ ଚାରି ପଞ୍ଚବିଂଶ ମାଢ଼ି ।
ମଣୋହି ଶେଷ କରନ୍ତି ଆଚମନ କାଳେ
ରତ୍ନ ପଦାର୍ଥ ପକାନ୍ତି ଅଗାଧ ସଲିଳେ ।
ପୁଣି ଆରଦିନେ ରତ୍ନ ଯୋଗାଡ଼ି ଦିଅନ୍ତି
ତେସନ ମଣୋହି ଶେଷେ ଜଳରେ ପକାନ୍ତି ।
ଲକ୍ଷେ ରାଜାଙ୍କ ନିମନ୍ତେ ଭିଆଇ ଏମନ୍ତେ
ଧନ ଭଣ୍ଡାର ଧ୍ୱଂସିଲା ରାଜା ତୋ ନିମନ୍ତେ ।
ମାନବଙ୍କୁ ଦୁର୍ଲ୍ଲଭ ଗୋ ଦେବେ ଅଗୋଚର
ଜାଣି ନାହିଁ ଏସନକ ହୁଏ ସ୍ୱୟମ୍ବର ।
ବାଆଷଠି ବଖରାରେ ଭିଆଣ ଗୃହେକ
ପଞ୍ଚବିଂଶ ବୃନ୍ଦରେ ଗୋ ଛତ୍ରଶାଳା ଏକ ।
ଗଜ ଅଶ୍ୱଶାଳ କେତେ ତୋ ଆଗେ କହିବି
ଅନ୍ନ ବସ୍ତ୍ର ଦାନ ନିତ୍ୟ ଦିଅନ୍ତି ଗୋ ଦେବୀ ।
ଦ୍ରୌପଦୀ ବୋଇଲେ ତୁଗୋ ଶୁଣ ମୃଦୁସୁଲୀ
କାହାକୁ କୋଟି ସାଗର ଅକ୍ଷୌହିଣୀ ବୋଲି ।
ପଦ୍ମ କେତେ ଅନ୍ତ୍ୟ କେତେ ସାଗର ହିଁ କେତେ
ସଂକ୍ଷେପ କରି ସମସ୍ତ କହ ସଖୀ ମୋତେ ।
ପାଦେ ପ୍ରଣିପାତ କରି କହେ ମୃଦୁସୁଲୀ
ଶୁଣ କେତେ ହେଲେ ତାକୁ ଅକ୍ଷୌହିଣୀ ବୋଲି ।
ରଥ ଗଜ ପଞ୍ଚଷଠି ସହସ୍ର ଲେଖାଏଁ
ପଞ୍ଚଷଠି ସହସ୍ର ଗୋ ଥିବେ ତହିଁ ହୟେ ।
ପଞ୍ଚଷଠି ସହସ୍ର ଯେ ଆଲମ୍ୱ ଉଦଣ୍ଡ
ସୁପକାର ପଞ୍ଚଷଠି ସହସ୍ର ଯେ ଦଣ୍ଡ ।
ବାଦ୍ୟକାର ପଞ୍ଚଷଠି ସହସ୍ର ଯେ ତହିଁ
ପଞ୍ଚଷଠି ସହସ୍ର ଯେ ଫୁଙ୍କ କାଢ଼ ରହି ।
ପଞ୍ଚଷଠି ସହସ୍ର ଯେ ପଲାଣ ବଳଦ
ଏତେକ ସୈନ୍ୟରେ ତୁମ୍ଭେ ଏକ ଏକ ଛନ୍ଦ ।
ଦଶ ପଟଳରେ ହୁଏ ଏକଇ ନିର୍ମାଣ
ଦଶ ପଟଳରେ ନଖ ମୁନ ହିଁ ଘଟଣ ।
ଦଶ ନଖ ମୁନେ ଜଳଧାର ମୁଖ ହୁଏ
ଦଶ ଜଳଧାର ମୁଖେ ବାରଣ ବୋଲାଏ ।
ଦଶ ବାରଣ ମୁଖରେ ନଳେକ ନିର୍ମାଣ
ଦଶ ଅନଳରେ ହୁଅଇ ଉର୍ଦ୍ଧେକ ପ୍ରମାଣ ।
ଦେଶ ଉର୍ଦ୍ଧରେ ହୁଅଇ ଜାଣ ବୃନ୍ଦାରକ
ଦଶ ବୃନ୍ଦାରେକ ହୁଏ ନକ୍ଷତ୍ରକ ମୁଖ ।
ଦଶ ନକ୍ଷତ୍ର ମୁଖରେ ମନୁମୁଖ ଭଣି
ଦଶ ମନମୁଖେ ହୁଏ ଏକ ଅକ୍ଷୌହିଣୀ ।
କେଶିନୀ ବୋଲେ ପରମ ମାହେଶ୍ୱର ତୁହି
ତୋ ଆଗେ ସଂକ୍ଷେପି କେତେ କହିବଇଁ ମୁହିଁ ।
ପଦ ଲେଖା ପଚାରିଲୁ କହୁଅଛି ଶୁଣ
ଦଶ ଦଶରେ ହୁଅଇ ଶତେକ ପ୍ରମାଣ ।
ଦଶ ଶତରେ ସହସ୍ର ପ୍ରମାଣ ହୁଅଇ
ଦଶ ସହସ୍ରକୁ ଏକ ଅୟୁତ ଗୋ କହି ।
ଦଶ ଅୟୁତରେ ହୁଏ ଏକଲକ୍ଷ ଜାଣ
ଦଶଲକ୍ଷରେ ହୁଅଇ ନିୟୁତ ପ୍ରମାଣ ।
ଦଶ ନିୟୁତକୁ କୋଟି ବୋଲନ୍ତି ସମସ୍ତେ
ଦଶକୋଟିରେ ଅର୍ବୁଦ ଗଣନା ଏମନ୍ତେ ।
ଦଶ ଅର୍ବୁଦରେ ଜାଣ ପଦ୍ମେକ ହୁଅଇ
ଦଶ ପଦ୍ମକୁ ଯେ ଏକ ଖର୍ବ ବୋଲି କହି ।
ଦଶ ଖର୍ବରେ ନିଖର୍ବ ଗଣନା ଏମନ୍ତ
ଦଶ ନିଖର୍ବରେ ମହାପଦ୍ମ ପରିମିତ ।
ଦଶ ମହାପଦ୍ମ ଏକ ଶଙ୍କୁ ହୁଏ ଜାଣ
ଦଶ ଶଙ୍କୁରେ ହୁଅଇ ସାଗର ପ୍ରମାଣ ।
ଦଶ ସାଗରରେ ଏକ ଅନ୍ତ୍ୟେ ଗୋ ହୁଅଇ
ଦଶ ଅନ୍ତ୍ୟ ହେଲେ ସେହି ପରାର୍ଦ୍ଧ ବୋଲାଇ ।
ଦଶ ପରାର୍ଦ୍ଧରେ ଏକ ଗୁଣ ହୁଏ ଜାଣ
କେଶିନୀ ସଂକ୍ଷେପି କହେ ଏସନ ବଚନ ।
ଶୁଣି ପାଞ୍ଚାଳୀ ଭାଳଇ ବସି ଏକ ମନେ
ମନ୍ଦ କର୍ମ କଲେ ମୋର ବାପ ଭାଇମାନେ ।
ଏତେ ଆଡ଼ମ୍ବରେ କଲେ କିମ୍ବା ସ୍ୱୟମ୍ବର
ସଭାମଧ୍ୟେ କେହୁ ବର ହୋଇବ ମୋହର ।

କେଶିନୀ ବୋଇଲା ସଖୀ କହିଲ ସ୍ୱରୂପ
କେ ତୋହର ବର ହେବ ନ ଜାଣେ ତୋ ବାପ ।
ଯେଣୁ ନିରାଧାର ବ୍ରତ ରାଜାର ଏ ଦେଖ
ଯେ ବିନ୍ଧିବ ରାଧାଚକ୍ର ନାମ ମହାଲାଖ ।
ଏଥକ ତୁ ଲୟ କରିଥିବୁ ଗୋ ପାଞ୍ଚାଳୀ
ଯେ ଲାଖ ବିନ୍ଧିବ ତାକୁ ବରିବୁ ତୁ ବାଳୀ ।
ରାଜାମାନଙ୍କୁ ଚିହ୍ନାଇ କହିଲା କେଶିନୀ
ମେଢ଼େ ବିଜେ କରାଇଲା ନେଇ ଯାଜ୍ଞସେନୀ ।
କରତାଳି ଦେଇ ତହିଁ ବୋଲେ ଧୃଷ୍ଟଦ୍ୟୁମ୍ନ
ସାବଧାନ ହୋଇ ତୁମ୍ଭେ ଶୁଣ ରାଜାଗଣ ।
ନ ରୂପିଲ କନ୍ୟା ରୂପ ଗୁଣ ହିଁ ସମସ୍ତ
ଯେ ଲାଖ ବିନ୍ଧିବ କନ୍ୟା ତାହାକୁ ପ୍ରାପତ ।
ଏମନ୍ତେ ସମୟେ ବିଜେ ରାମକୃଷ୍ଣ ବେନି
ଛପନ କୋଟି ଯାଦବ ବଳ ସଙ୍ଗେ ଘେନି ।
ଉଗ୍ରସେନ ନନ୍ଦ ଉପନନ୍ଦ ହିଁ ସହିତେ
ଜଗତନାଥ କୌତୁକ ଦେଖିବା ନିମନ୍ତେ ।
ତୀର୍ଥଯାତ୍ରା କାଳେ ଯେବେ ଭଲ ଭଲ ସ୍ଥାନେ
ବିଜେ କରନ୍ତି କୌତୁକେ ବୃନ୍ଦାରକ ଗଣେ ।
ପୃଥ୍ୱୀ ଅଳଙ୍କାର ସିନା ସେହି ନାରାୟଣ
ସଂସାରକୁ ଶୋଭା ସିନା ସଭାକୁ କାରଣ ।
ସଭା ମୋହିଲା ବିଜୟ ଯହୁଁ ପଦ୍ମନାଭ
ଦେଖି ତାଙ୍କୁ ତ୍ରାସ କଲେ ଯେତେକ ଦାନବ ।
ଶୂନ୍ୟେ ରୁହାଇଲେ ସ୍ୱାମୀ ନନ୍ଦିଘୋଷ ରଥ
ତାଳଧ୍ୱଜ ରଥେ ବିଜେ ପ୍ରଭୁ ହଳହସ୍ତ ।
ନାରାୟଣ ବିଜେ ଦେଖି ଘେନି ଅମରାଦି
ବିଦ୍ୟାଧର ସହିତରେ ବିଜେ ଜୟଭେଦୀ ।
ଶ୍ରୀଭୁଜରେ ବଜ୍ର ବିଜେ ଐରାବତ ପିଠି
ଆଗରେ ନୃତ୍ୟ କରନ୍ତି କନ୍ୟା ଗୋଟି ଗୋଟି ।
ଅନେକ ପତାକା ପାଟ ଛତ୍ର ଚଉପାଶେ
ଇନ୍ଦ୍ର ଗୋବିନ୍ଦ ଏକତ୍ର ହୋଇଲେ ଆକାଶେ ।
ଅମରାଧିନାଥ ଯହୁଁ ଅଇଲେକ ଚଳି
ରୁଦ୍ରଗଣ ସଙ୍ଗେ ଘେନି ବିଜୟ କପାଳୀ ।
ତ୍ରିଶୂଳ ହସ୍ତରେ ବିଜେ ବୃଷଭ ବାହନେ
ଗଣପତି କାର୍ତ୍ତିକେୟ ଘେନି ଶିବଗଣେ ।
ହୃଦୟରେ ଗଉରୀ ଯେ ମଉଳି ଧଉଳି
ଦେଖି ପ୍ରଣିପାତ କଲେ ଜଗନ୍ନାଥ ହଳୀ ।
ମରୁତ ବୈଶ୍ୟାନର ଯେ ଶୁକ୍ର ବୃହସ୍ପତି
ଭୃଗୁ କଶ୍ୟପ ଅଙ୍ଗିରା ଆଦି ବ୍ରହ୍ମପତି ।
ବାରୁଣ କୁବେର ଚନ୍ଦ୍ର ନଇରତ ସୂର୍ଯ୍ୟ
ଅନ୍ତରୀକ୍ଷେ ବିଜେ ତହୁଁ ଦ୍ରୁପଦର ରାଜ୍ୟ ।
ପ୍ରଶଂସନ୍ତି ସ୍ୱୟମ୍ବର ଦେଖି ନାରାୟଣ
ପୁରୁଷ ଉତ୍ତମ ଦେଖି ନରପତି ଗଣ ।
ପୁଷ୍ପ ବୃଷ୍ଟି କରାଇଲେ ଦ୍ୱାଦଶ ଯୋଜନ
କନକ ବୃଷ୍ଟି କରାନ୍ତି ସହସ୍ର ଲୋଚନ ।
ରାଜାମାନେ ପ୍ରଶଂସନ୍ତି ସାଧୁ ହୋ ଦ୍ରୁପଦ
ନିସ୍ତରିଲୁ ତୋ ପ୍ରସାଦେ ନରପତି ବୃନ୍ଦ ।
ବ୍ରହ୍ମପୁରୁଷ ବିଜୟ କଲେ ପଦ୍ମଯୋନି
ସ୍ୱୟମ୍ବର ସ୍ଥାନେ ବିଜେ ବଶିଷ୍ଠ ଯେ ମୁନି ।
ସଙ୍ଗେ ଅଛନ୍ତି ତାଙ୍କର ନବସସ୍ର ଶିଷ୍ୟ
ଆସ୍ଥାନ ତେଜି ଚରଣେ ନମିଲେ ନରେଶ ।
ଅୟୁତେକ ଶିଷ୍ୟ ଘେନି ଦୁର୍ବାସା ଅଇଲେ
ସଭାରେ ଆଦର ପାଇ ଆସନେ ବସିଲେ ।
ପୁଲସ୍ୟ ବିଶ୍ରବା ଋଷି ଅଗସ୍ତି ଏମାନେ
ଦେବଋଷି ବ୍ରହ୍ମଋଷି ବିଜୟ ଆସ୍ଥାନେ ।
ବିଶ୍ୱାମିତ୍ର ମାର୍କଣ୍ଡେୟ ଉଦ୍ଦାଳକ ମୁନି
ତୁରିତ ମିଳିଲେ ସଙ୍ଗେ ଶିଷ୍ୟମାନ ଘେନି ।
ଗୌତମ ଉତ୍ତମ ମୁନି ଭରଦ୍ୱାଜ ମେଳେ
ସହସ୍ର ସହସ୍ର ଶିଷ୍ୟ ଘେନିଣ ମିଳିଲେ ।
ଜନକ ସନକ ସନାତନ ଯେ ସନନ୍ଦ
ଅୟୁତେକ ଶିଷ୍ୟ ଘେନି ହେଲେ ସଭାସଦ ।
ବିଭାଣ୍ଡକ ଋଷ୍ୟଶୃଙ୍ଗ ପିତା ପୁତ୍ର ଘେନି
ବିଜେ କଲେ ଅୟୁତେକ ଶିଷ୍ୟ ସଙ୍ଗେ ଘେନି ।
ସୁମନ୍ତକ ବାଲମିକ କଶ୍ୟପ ଯେ ଋଷି
ତିନି ଅୟୁତ ଶିଷ୍ୟ ସେ ଘେନିଣ ପ୍ରବେଶି ।
ପରାଶର ତୁଲେ ଶିଷ୍ୟ ପନ୍ଦର ହଜାର
ଷାଠିଏ ସହସ୍ର ଘେନି ବ୍ୟାସ ମୁନିବର ।
ଜୈମିନି ଆଦି ସମସ୍ତେ ପାଶରେ ଅଛନ୍ତି
ଏମନ୍ତ ଋଷିଏ ଆସି ଆସନେ ବସନ୍ତି ।
ଲକ୍ଷ ଶିଷ୍ୟ ସଙ୍ଗେ ସୌଧ ଘେନି ପୁରୋହିତ
ଆକାଶୁ ଓହ୍ଲାଇ ତାହିଁ ମିଳିଲେ ତ୍ୱରିତ ।
ଋଷିମାନଙ୍କୁ ଦେଖିଣ ପଞ୍ଚାଳେଶ ରାଜା
ଚରଣ ଉଦକ ଘେନି କଲା ପାଦପୂଜା ।
କୃଷ୍ଣାଜିନ ତାଙ୍କୁ ଦେଲା ଗୋଟିଏ ଗୋଟିଏ
ପୂର୍ବରୁ ସମ୍ପାଦିଥିଲେ ପଞ୍ଚାଳେଶ ରାୟେ ।
ପ୍ରଣତି କରି ଉଠିଲା ଦ୍ରୁପଦ ନୃପତି
ଋଷିଏ ବୋଲନ୍ତି ବାଞ୍ଛା ପୂରୁ ତୋ ଝଟତି ।
କୁଶ ହସ୍ତ ହୋଇ ତହୁଁ ପାଞ୍ଚାଳେଶ ରାୟେ
ଚାରି ଭଣ୍ଡାର ଧନ ସେ ବ୍ରାହ୍ମଣଙ୍କୁ ଦିଏ ।
କରାଇଲେ ଈଶ୍ୱରଙ୍କ ଶିରେ ଗୋ ଦୋହନ
ଦେବଙ୍କୁ ବଳି ଭୋଜନ ଦିଅଇ ରାଜନ ।

ମନୁ ପୁଚ୍ଛା କଲେ ଆହେ ଅଗସ୍ତି ମହର୍ଷି
କେତେ ଗାଈ ଦୋହନରେ ତୋଷ କାଶିବାସୀ ।
ସହସ୍ରେ ଗାଈକି ଏକ ଗୋଷ୍ଠୀ ଯେ ବୋଲନ୍ତି
ସହସ୍ରେ ଗୋଷ୍ଠରେ ଜାଣ ଜିଅଇ ନଉତି ।
ସହସ୍ରେକ ନଉତିରେ ମହାଖୁଡ଼ ହୋଇ
ସହସ୍ରେକ ମହାଖୁଡ଼େ ହୁଏ ମହାଭୋଇ ।
ଦ୍ୱାଦଶ ମହାଭୋଇରେ ହୁଏ ଯେତେ ଗାଈ
ଆପଦ ଶାନ୍ତି ନିମନ୍ତେ ଦୋହନ କରାଇ ।
କ୍ଷୀର ନଦୀ ଗୋଟି ଏକ ରହଇ ସେ ବନେ
ଆନନ୍ଦେ ପାନ କରନ୍ତି ବନ ଜୀବମାନେ ।
ବଦନ୍ତି ଅଗସ୍ତି ଶୁଣ ମନୁ ମହାତମା
ଦ୍ରୌପଦୀ ସ୍ୱୟମ୍ବରର ଏମନ୍ତ ମହିମା ।
ଶତପଳ ପଞ୍ଚାମୃତେ କରାନ୍ତି ସେ ସ୍ନାନ
ଯେତେକ ଅଛନ୍ତି ତାର ରାଜ୍ୟେ ଶିବଗଣ ।
ତୋଷିଲେ ଶୀତଳ ବଳି ଭୋଗେ ଭଦ୍ରକାଳୀ
ପୋରୁହ ଛାଗ ଦିଅଇ ଲକ୍ଷ ଲକ୍ଷ ବଳି ।
ଋକ ଯଜୁ ସାମବେଦ ଯେ ଅଥର୍ବ ବେଦୀ
ଲକ୍ଷେ ବ୍ରାହ୍ମଣ ବରଣ ହୋଇଲେ ଏ ବିଧି ।
ଯଜ୍ଞରେ ଆହୁତି ଶେଷେ ଦେଲେ ଯଜ୍ଞାବଳି
ମହାମନ୍ତ୍ରେ ମହାବାକ୍ୟେ ପ୍ରୋକ୍ଷଣିରେ ତୋଳି ।
କରନ୍ତି ନୃତ୍ୟ ଅନେକ ବିଦ୍ୟାଧରୀ ନାରୀ
ପଢ଼ନ୍ତି ଯେ ପଣ୍ଡୁ ପୁତ୍ରେ ମଙ୍ଗଳ ଉଚ୍ଚାରି ।
ଆଦିତ୍ୟ ସୋମ ମଙ୍ଗଳ ବୁଧ ବୃହସ୍ପତି
ଶୁକ୍ର ଶନୈଶ୍ଚର ରାହୁ କେତୁ ଗ୍ରହସ୍ଥିତି ।
କହନ୍ତି ତିଥି ଯୋଗାଦି ବର ଗ୍ରହପୁତ୍ରେ
ମଙ୍ଗଳ ପାଠ କରନ୍ତି ଉଚ୍ଚେ ଋଷି ପୁତ୍ରେ ।
ଏସନକ ସମ୍ପଦ ସେ ଦ୍ରୁପଦ ଭୁବନେ
ବଞ୍ଚନ୍ତି ଚନ୍ଦନ ପୁଷ୍ପ ଗନ୍ଧ ଅନୁକ୍ଷଣେ ।
ଭିଆଇଲେ ଉପବନ ସଭା ଚଉକତି
ଧନଧାନ୍ୟ କୁଢ଼ କୁଢ଼ହୋଇ ରହିଛନ୍ତି ।
ଦେବାଙ୍ଗ ବସନ ଅଛି ରାଶି ରାଶି ହୋଇ
ରାଜାକେ ମାଣିକ୍ୟ ଶତ ଶତ ସେ ଦିଅଇ ।
ଦିହୁଡ଼ି ହୁଳା ଆଲମ୍ବେ ପୃଥିବୀ ଉଜ୍ଜଳ
ଧନୁ ଗୋଟିକ ତୂଣୀର ଶସ୍ତ୍ର ମାଳ ମାଳ ।
ହୀରା ଜଡ଼ିତ ପ୍ରଦୀପମୟ ବସୁମତୀ
କୁଢ଼ କୁଢ଼ ବାସତେନ ପନନ ଅଛନ୍ତି ।
ନାନା ଉପହାରେ କେତେ ନ ଯାଇ ତଦନ୍ତ
ଲାଙ୍କିଆ ଶାବେଳି ଗଦା କରବାଳ କୁନ୍ତ ।
ରତ୍ନ ଜଡ଼ିତ ହୋଇ ଏ ଅଛି କୁଢ଼ କୁଢ଼
ବିଚିତ୍ର ମାଣିକ୍ୟ ସ୍ତମ୍ଭେ ନେତଗୁଛ ଝାଡ଼ ।

ଏକ ଏକ ଫୁଲ ଝାଡ଼ ଦେଲେକ ରାଜାଙ୍କୁ
କୁବେର ଭୁବନ ତୁଲ୍ୟ ନୁହଇଁ ତାହାକୁ ।
ଅମର ଭୁବନ ଅବା କରନ୍ତି ଯେ ତୁଲ
ମାନବେ ନାହାନ୍ତି ତହିଁ ଏଣୁ ଏ ଅମୂଲ୍ୟ ।
ଜଗନ୍ନାଥେ ଇଚ୍ଛା କଲେ ପ୍ରଭୁ ବଳଦେବ
ଦୁର୍ଲ୍ଲଭ ଲାଖ ପାତିଲା ଦ୍ରୁପଦ ନୃଦେବ ।
ସଭାରେ ଆସିଅଛନ୍ତି ଲକ୍ଷେ ନରନାଥ
ଲାଖ ବିନ୍ଧିବାକୁ ଏଥେ କିସ ସାମରଥ ।
ବଳଦେବ ବୋଇଲେରେ ଶୁଣ ଜନାର୍ଦ୍ଦନ
ଦୃଷ୍ଟିଭେଦୀ ଅଟେ ରାଧାସୁତ ବୀରକର୍ଣ୍ଣ ।
ନିଶ୍ଚୟ କର୍ଣ୍ଣ ଏ ମହାଲାଖକୁ ବିନ୍ଧିବ
ଦ୍ରୌପଦୀ କନ୍ୟାକୁ ମାନଗୋ ବିନ୍ଧକୁ ଦେବ ।
ନୟନେ ଗୋଚର ଏହି ନୁହଇ ଆନକୁ
ଏସନ ଆସଇ ବାବୁ ଆମ୍ଭ ବିଚାରକୁ ।
ଏସନ କହିଲେ ଯହୁଁ ପ୍ରଭୁ ଶଙ୍କର୍ଷଣ
ଶୁଣି ମନେ ତ୍ରାସ କଲେ ଦେବ ଜନାର୍ଦ୍ଦନ ।
ଦ୍ରୁପଦ ଏ ବ୍ୟାସକୁଟେ ଲାଖକୁ ପାତିଲା
ତଳେ ତୀର୍ଥ ଜଳଘଟ ଗୋଟିଏ ଥୋଇଲା ।
ତଳକୁ ଦୃଷ୍ଟି ଦେଲେ ଯେ ଦିଶେ ଛାୟାମାନ
ଏସନକ ଦୃଷ୍ଟି ଭେଦୀ ଅଟେ ବୀରକର୍ଣ୍ଣ ।
ବଳରାମ ପ୍ରଭୁ ଭୂତ ଭବିଷ୍ୟତ ଜ୍ଞାତା
ନ ଜାଣି କି କହିଲେ ସେ ଏସନକ କଥା ।
ବଳରାମ ତୁଲେ କଥା ହୋଉ ନାରାୟଣ
ଦୃଢ଼େ ଚିନ୍ତା କଲା ସ୍ୱାମୀ ଚକ୍ର ସୁଦର୍ଶନ ।
ଆଜ୍ଞା ଦେଲେ ସେ ଚକ୍ରକୁ ଦେବ ଦାମୋଦର
ଅନ୍ତରୀକ୍ଷେ ଭ୍ରମୁଥିବୁ ତୁହି ନିରନ୍ତର ।
ଚାରିତାଳ ଉସ୍ୱର୍ଗରେ ରହିଥିବୁ ତୁହି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ସପ୍ତରଥି ତହିଁ ।
ଧନୁ ଧରି ଯେତେବେଳେ ବିନ୍ଧିବେକ ଶସ୍ତ୍ର
ତୋହର ତହୁଁ ହାବୋଡ଼ି ଆସିବେ ସମସ୍ତ ।
ବିଷ୍ଣୁ ଆଜ୍ଞା ଘେନି ଚକ୍ର ସୁଦର୍ଶ ନ ଗଲା
ଚାରିତାଳ ଉସ୍ୱର୍ଗରେ ଯାଇଣ ରହିଲା ।
ଦେବ ଦାନବ ମାନବ ଆଦି ଦଣ୍ଡଧାରୀ
କାହାକୁ ଦୃଶ୍ୟ ନୋହିଲା କୂଟ କଲେ ହରି ।
ଚକ୍ରକୁ ହରି ଯହୁଁ ଚକ୍ରକୂଟ କଲେ
ଚକ୍ରକୂଟ ବୋଲି ତହିଁ ବ୍ରହ୍ମା ନାମ ଦେଲେ ।
ଏସନକ ମାୟା ତହିଁ କଲେ ନାରାୟଣ
ବଳରାମ ଦେବତାଙ୍କୁ ନୋହିଲା ଗୋଚର ।
ଆକାଶେ ଦେଖିଲେ ବ୍ରହ୍ମା ଜଗତର ପିତା
ମଞ୍ଚରେ ଦେଖିଲେ ବ୍ୟାସ ଭବିଷ୍ୟତ ଜ୍ଞାତା ।

ଆପେ ଜାଣିଲେ ସେଠାରେ ଦେବ ଦାମୋଦର
ତିନିହିଁ ଚାରିଜନ୍ଦୁ ନୋହିଲା ଗୋଚର ।
ଜୟ ମାୟାଧର ଚକ୍ରକୂଟ ବନମାଳୀ
ଜୟ ତୁ ଶ୍ରୀ ଜଗନ୍ନାଥ ଦେବ ନରହରି ।
ଜୟ ତୁ ଶ୍ରୀ ମାୟାଧର ଜଗଜ୍ଜନ ବନ୍ଧୁ
ଜୟ ତୁ ଶ୍ରୀ ମାୟାଧର କୃପାଜଳ ସିନ୍ଧୁ ।
ଜୟ ତୁ ଶ୍ରୀ ମାୟାଧର କାଳାନ୍ତକ ରୂପୀ
ଜୟ ତୁ ଶ୍ରୀ ମାୟାଧର ତ୍ରିଜଗତ ବ୍ୟାପୀ ।
ଜୟ ତୁ ଶ୍ରୀ ମାୟାଧର ସର୍ବଜନ ଆତ୍ମା
ଜୟ ତୁ ଶ୍ରୀ ମାୟାଧର ତୁହି ପରମାତ୍ମା ।
ଜୟ ତୁ ଶ୍ରୀ ମାୟାଧର ଶରଣ ରକ୍ଷଣ
ଜୟ ତୁ ଶ୍ରୀ ମାୟାଧର ଶରଣ କାରଣ ।
ଜୟ ତୁ ଶ୍ରୀ ମାୟାଧର ମଧୁକର ବପୁ
ଜୟ ତୁ ଶ୍ରୀ ମାୟାଧର ଦୁଷ୍ଟଜନ ରିପୁ ।
ଜୟ ତୁ ଶ୍ରୀ ମାୟାଧର ତୋ ପାଦେ ଶରଣ
ଏ ଭବସାଗରୁ ଦେବ କର ପରିତ୍ରାଣ ।
ଜୟ ଜୟ ମାୟାଧର ଦାରିଦ୍ର୍ୟ ଭଞ୍ଜନ
ଜୟ ଜୟ ମାୟାଧର ଆତଙ୍କ ନାଶନ ।
ଗଜକୁ ଗ୍ରାହ ଧରନ୍ତେ ଶୁଣିଲୁ ଗୁହାରି
ଜଗଜ୍ଜନବନ୍ଧୁ କୃପାସିନ୍ଧୁ ଦଇତ୍ୟାରି ।
ମୁଁ ତୋର ଚରଣେ ନାଥ କରଇ ଦଇନୀ
ଏ ଭବସାଗରୁ ମୋତେ ଉଦ୍ଧାର ଭୋ ସ୍ୱାମୀ ।
ରାମ ନାମ ବେନି ଅଟେ ଯେ ତାରକ ମନ୍ତ୍ର
ଚଉବର୍ଗ କରଇ ସେ ଜନଙ୍କୁ ପ୍ରାପତ ।
ରାମଙ୍କ ନାମରେ ବ୍ରହ୍ମା ଦେହ ଶୁଦ୍ଧ କରି
ତ୍ରିପୁରାରି ଯେ ଅମର ଯେ ନାମ ସୁମରି ।
ଜାତିରେ ଶୂଦ୍ର ମୁହିଁ ଯେ ନୁହେଁ ବ୍ରହ୍ମଜାତି
ଶ୍ରୀ ଶାରଳା ଚଣ୍ଡୀପଦେ ରହୁ ମୋର ମତି ।
ସେ ଦେବୀ ପ୍ରସାଦେ ମୋର ବଳିଲାକ ଚିତ୍ତ
ତା ପ୍ରସନ୍ନେ କହିବଇଁ ଶ୍ରୀମହାଭାରତ ।
ସୁଜ୍ଞଜନମାନେ ମୋର ନ ଧରିବ ଦୋଷ
ଜୀବଜନ୍ତୁଠାରେ ଦୟା କରିବ ଆଶ୍ୱାସ ।
ଦୟା ଥିଲେ ପ୍ରାଣୀମାନେ ତରିବେ ନିଶ୍ଚୟ
କୀଟୁ ବ୍ରହ୍ମ ପରିଯନ୍ତେ ସବୁ ବିଷ୍ଣୁମୟ ।
ନିଜକୁ ନିଜେ ଚିହ୍ନିଲେ ଭୟ ଭ୍ରାନ୍ତ ନାହିଁ
ମାୟା ସଂସାର ଏହି ଯେ ଅନିତ୍ୟ ଅଟଇ ।
ଜୟ ଜୟ ଜଗନ୍ନାଥ ଚରଣେ ଶରଣ
ଶାରଳା ଦାସକୁ ମାଗୋ କର ପରିତ୍ରାଣ ।

—o—

## ଲାଖବିନ୍ଧା

ବୈବସ୍ୱତ ମନୁ ପୁଚ୍ଛା କଲେ ଅଗସ୍ତି ହେ
ଲାଖ ଚରିତ କହିବା ହେଉ ନିଃସନ୍ଦେହେ ।
ଅଗସ୍ତି ବୋଇଲେ ଶୁଣ ହେ ମନୁ ରାଜନ
ଅଗୋଚର ଏହି ଲାଖବିନ୍ଧାର ବିଧାନ ।
ଧୃଷ୍ଟଦ୍ୟୁମ୍ନ ଉଭାହୋଇ ସଭାରେ ବୋଇଲେ
ଯେ ପାରିବ ରାଜାଗଣ ଲାଖ ବିନ୍ଧ ଭଲେ ।
ଆହେ ରାଜାଧି ରାଜେଶ ମାନଚକ୍ରବର୍ତ୍ତୀ
ଗୁଣେ ଶକ୍ତା ପରାକ୍ରମେ ତୁମ୍ଭେ ସୁରପତି ।
ଧନରେ ଗରିବ ସର୍ବ ସୁଲକ୍ଷଣବନ୍ତ
ପୃଥିବୀ ମଧ୍ୟେ ତୁମ୍ଭର କୀରତି ଅନନ୍ତ ।
ବଂଶେ ନିଷ୍କଳଙ୍କ ଦେବେ ମନ୍ତ୍ରରେ ପ୍ରସିଦ୍ଧି
ପବିତ୍ର ନିଷ୍ପାପୀ ରୂପବନ୍ତ ମହାଯୋଦ୍ଧୀ ।
ଧୃଷ୍ଟଦ୍ୟୁମ୍ନର ଏ ରୂପ ଆହ୍ୱାନ ବଚନ
ଶୁଣି କର୍ଣ୍ଣ ବଦନକୁ ଚାହିଁ ଦୁର୍ଯ୍ୟୋଧନ ।
କାହିଁକି ହୋ ମିତ୍ର ବସିଅଛ ହୋଇ ତୁନି
ଏ ମହାଲାଖକୁ ବିନ୍ଧି ଲଭ ଯାଜ୍ଞସେନୀ ।
କର୍ଣ୍ଣ ବୋଇଲେ ମଇତ୍ର ସେ କଥା ନ କହ
ମାନଗୋବିନ୍ଦ ନାମ ଯେ ଅତିମନେ ବହ ।
କଳଙ୍କିତ ନ କରିଣ ନାମ ଟେକ ରଖ
ଦ୍ରୁପଦ ବୋଲନ୍ତି ରାଜାମାନେ ବିନ୍ଧି ଲାଖ ।
ରାଜାଙ୍କୁ ସେ ବରିଅଛି ଦ୍ରୌପଦୀ ନିମନ୍ତେ
ଅବରଣେ ମଧ୍ୟ ପାତ୍ରେ ପଶିବା କେମନ୍ତେ ।
ରାଜାମାନେ ଆଗେ ଲାଖ ବିନ୍ଧିବେ ପ୍ରତ୍ୟକ୍ଷେ
ନ ପାରିଲେ ରାଜାମାନେ ବିନ୍ଧିବି ମୁଁ ପଛେ ।
ପାରକି ନ ପାର ଲାଖ ବିନ୍ଧିବା ଯୁକତେ
ତୁମ୍ଭେ ବିନ୍ଧିଲେ ଆଗ କେ ବିନ୍ଧିବ ଏଥକେ ।
ସୋମବଂଶ ସୂର୍ଯ୍ୟବଂଶ ପୃଥ୍ୱୀରେ ଏ ମୂଳ
ଆଉ ରାଜାମାନେ ସିନା ତୁମ୍ଭ ଭୁଜବଳ ।
କର୍ଣ୍ଣର ବଚନ ଶୁଣି ରାଜା କୁରୁପତି
ଆସ୍ଥାନ ମଧ୍ୟରୁ ରାଜା ଓହ୍ଲାଇଲା ଧାତି ।
ସାଧୁ ମହିମା ଯେ ଧୃତରାଷ୍ଟ୍ରର ତନୟ
ପ୍ରତ୍ୟକ୍ଷେ ଦିଶୁଛି ଅମରାଧିନାଥ ପ୍ରାୟ ।
ଚାଲନ୍ତେ ଶୋଭା ଦିଶଇ ଯେହ୍ନେ ସିଂହ ଠାଣି
ଝଲକନ୍ତି ଗଜମୁଣ୍ଡା ଶୁଦ୍ଧସ୍ୱର୍ଣ୍ଣ ମଣି ।
ଶିରେ ମୁକୁଟ ଝଟକେ ଜିଣି ସୂର୍ଯ୍ୟ କୋଟି
ଚାଲନ୍ତେ କନକପଦ୍ମ ଚରଣରେ ଫୁଟି ।
ଧୃତରାଷ୍ଟ୍ର ସୁତ ଯୁକ୍ତ ଚୌରାଶି ଲକ୍ଷଣେ
ଏହାକୁ ସମାନ ନାହିଁ କେହି ତ୍ରିଭୁବନେ ।

ପ୍ରତ୍ୟକ୍ଷେ ପନ୍ନଗ ନାରାୟଣ ମୂର୍ତ୍ତିଧାରୀ
ମେଢ଼େ ଥାଇ କୌଶିକୀକି ଦ୍ରୌପଦୀ ପଚାରି ।
କେବଣ ଦେଶର ସଖୀ ଅଟଇ ଏ ରାଜା
ଅମରପୁର ତେଜି କି ବିଜୟ ବିଜୋଡ଼ା ।
କୁଙ୍କୁମ ଲେପନ ଅଙ୍ଗ ବରବେଶେ ଆସେ
ମଙ୍ଗଳ ସ୍ୱରୂପ ବିଭାଯୋଗ ପରି ଦିଶେ ।
କେଶିନୀ ବୋଇଲା ଏହା ଭାର୍ଯ୍ୟା ଭାନୁମତୀ
ଆଠଦିନେ ବିଭା ହେଉଥାଏ ସେ ଯୁବତୀ ।
ଏ ପନ୍ନଗ ନାରାୟଣ ରୂପ ଅବତାର
ପିତା ଆଦି ଗୁରୁଙ୍କୁ ନ କରେ ନମସ୍କାର ।
ଅତି ସୁକୁମାର ଅଟେ ଏହାର ଗୋ କାୟ
ସ୍ୱରୂପ ଦିଶଇ ତେଜେ ଆଦିତ୍ୟର ପ୍ରାୟ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା
ଜୟନ୍ତୀ ଘେନି ଏ ପଞ୍ଚରାଜ୍ୟକୁ ଧାରଣା ।
ପାଣ୍ଡବଙ୍କୁ ନାଶ କଲା ଜତୁଘରେ ଏହି
ଉପାୟ ଚକ୍ରବର୍ତ୍ତୀ ଯେ ଏହା ସମ ନାହିଁ ।
ଦ୍ରୌପଦୀ ବୋଲେ ଏହାର ପାପ ଯେ ଅଳପ
ଏ ବୟସେ ଅର୍ଜିଲା ସେ ହତ୍ୟା ମହାପାପ ।
ପଥର ଘରେ ନାଶିଲା ଏ ଗାନ୍ଧାର ବଂଶ
ଜତୁ ଘରେ ଭରି କଲା ଭାଇଙ୍କୁ ବିନାଶ ।
ଶତ୍ରୁ ବୁଦ୍ଧିରେ ଶତ୍ରୁଙ୍କୁ ମାରି ସିନା ରଣେ
ବିଶ୍ୱାସଘାତେ ମାଇଲା ଭ୍ରାତେ ଅକାରଣେ ।
ଏହାର ସମାନ ଆଉ ନାହିଁ ମହାଦୋଷୀ
ଏ ପାପୀ ବସିଲା ସଭା ମଧ୍ୟେ କେହ୍ନେ ଆସି ।
ବଂଶକୁ କୁମନ୍ତ୍ରେ ପୁଣି ଔଷଧ ଉପାୟେ
ନାଶ କରେ ଯେଉଁ ପ୍ରାଣୀ ଆପେ ନାଶଯାଏ ।
ଇହଲୋକେ ଏହାର ଗୋ ଜୀବନ ନ ଚାହିଁ
ରୌରବ ନର୍କେ ପଡ଼ିବ ପୁନର୍ଜନ୍ମ ନାହିଁ ।
ଏସନ ପାପିଷ୍ଠ ଯେବେ ଏ ଲାଖ ବିନ୍ଧିବ
ବେଦ ଶାସ୍ତ୍ର ସବୁ ଜାଣ ମିଛ ତ ହୋଇବ ।
ଏସନକ ବିଚାରନ୍ତେ ଦ୍ରୌପଦୀ କେଶିନୀ
ଲାଖ ତଳେ ପ୍ରବେଶିଲା ଶତେ ଭାଇ ଘେନି ।
ଦ୍ରୌପଦୀ ବଦନ ଚାହିଁ ସେ ମାନଗୋବିନ୍ଦ
ମଦନେ ବିହ୍ୱଳ ହୋଇ କାମେ ହେଲା ଅନ୍ଧ ।
ଦିବସରେ କିଛି ହିଁ ନ ଦିଶଇ ତାହାକୁ
ଲାଖର ତଳେ ଦରାଣ୍ଡୁ ଅଛଇ ଧନୁକୁ ।
ଧନୁ ତୋଳି ବସାଇଲା ନେଇ ଯହୁଁ କର
ସେ ହସ୍ତ ପଡ଼ିଲା ଜଳ ଘଟର ଉପର ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଉପହାସେ ବୋଲି
ପଳା ଯା ପଳା ଯା କହିଦେଲେ ତାକୁ ପେଲି ।
ପିତା ପ୍ରାୟ ହୋଇଲାକି ତୋର ବେନି ଚକ୍ଷୁ
ଚକ୍ଷୁ ଥାଉ ଥାଉ ତୁ ଯେ ଅନ୍ଧ ହେଉଅଛୁ ।
ଧନୁ ଘଟ ଯେବେ ତୁହି ନ ପାରିଲୁ ବାରି
ତୁହି କି ଲାଖ ବିନ୍ଧିବୁ ଯାଅ ଅପସରି ।
ବହୁତ ଝିଙ୍ଗାସୀ ବାଣୀ ବୋଇଲା ଶିଖଣ୍ଡୀ
ବରବେଶ ହୋଇ ତୁହି ସଂସାରକୁ ଭଣ୍ଡି ।
ଲାଜ ପାଇ ନ ରହିଲା ସେ ମାନଗୋବିନ୍ଦ
ଆଡ଼ ହୁଅ ଆଡ଼ ହୁଏ ବୋଲେ ଜରାସନ୍ଧ ।
ଲାଖ ତଳେ ପ୍ରବେଶିଣ ମଗଧ ଈଶ୍ୱର
ଲକ୍ଷେକ ବଳ ଧନୁ ଯେ ଧରି ବାମକର ।
କାର୍ମୁକ ତୋଳିଲା ନ ପାରିଲା ଗୁଣ ଦେଇ
ପଳାଇଗଲା ଲାଜରେ ମଗଧର ସାଇଁ ।
କରତାଳି ମାରି ତହିଁ ହସିଲେ ସଭିଏଁ
ଲାଜ ଭୟେ କଥା କେହୁ କାହାକୁ ନ କହେ ।
ଦେଖି ତାର ଅପମାନ ଏହି ପରକାରେ
ସଭାରୁ ଉଠିଲା ଶିଶୁପାଳ ଧାତିକାରେ ।
ଅପାର ପ୍ରତିଜ୍ଞା କରି ଦମଘୋଷ ସୁନୁ
ଆକର୍ଷି ଧଇଲା କରେ ସେ ଅପୂର୍ବ ଧନୁ ।
ଦୁଇହାତେ ଧରିଣ ସେ ଆକର୍ଷଇ ତୋଳି
ନାସିକା ବାଟେ ରୁଧିର ପଡ଼େ ତାର ଗଳି ।
କୋପରେ ଶିଖଣ୍ଡୀ ଧାଏଁ ତାର ପଛକତି
ଗଳଥା ଦେଇ ସଭାରେ ବସାଇଲା ଧାତି ।
ଶିଶୁପାଳ ଅପମାନ ଦେଖିଣ ରୁକ୍ମଣ
ରେ ରେ କାର କରି ସେହି ବାହାର ତକ୍ଷଣ ।
ଆକର୍ଷି ହାତରେ ଯାଇ ଧନକୁ ଧଇଲା
ଭୂମିପରୁ ଧନୁକୁ ସେ ତୋଳି ନ ପାରିଲା ।
ପଳା ଯାଯା ବୋଲି ପେଲି ଦେଲାକ ଶିଖଣ୍ଡୀ
ପୁଣି ଥୋକାଏ ଦୂରେ ସେ ପଡ଼େ ମୁଖ ମାଡ଼ି ।
ସଭାରେ ବସିଲେ ଆସି ଲାଜେ ମଥା ପୋତି
ଉଠିଲା ନିର୍ଝର ଦେଶ ରାଜା ଗଣପତି ।
ଲାଖର ତଳେ ସେ ଯାଇ ପ୍ରବେଶ ହୋଇଲା
ଧନୁକୁ ତୋଳିଣ ଗୁଣ ଦେଇ ନ ପାରିଲା ।
ଲାଖର ତଳେ ପାଇଲା ସେହି ମହାଲାଜ
ଆସି ନ ପାରଇ ସଭା ମଧ୍ୟେ ମହାରାଜ ।
ଶିଖଣ୍ଡୀ ତା ହସ୍ତ ଧରି ନେଲାକ କଢ଼ାଇ
ସଭାର ଭିତରେ ଛାଡ଼ି ଅଇଲାକ ନେଇ ।
କାଶୀଶ୍ୱର ଦେଶର ଯେ ରାଜା କାଶୀଶ୍ୱର
ପ୍ରତିଜ୍ଞା କରି ସଭାରୁ ହୋଇଲା ବାହାର ।
ମହାପ୍ରତାପୀ ନୃପତି ବଳେ ବଳବନ୍ତା
ଅସୁର ଈଶ୍ୱର ସେହି ସମରେ ଶକତା ।

ଲାଖର ତଳେ ସେ ଯାଇ କ୍ଷଣକେ ପ୍ରବେଶି
ପ୍ରତିଜ୍ଞା ସମର୍ଥେ ରାଜା ଧନୁକୁ ଆକର୍ଷି ।
ଅଟଇ ସେ ଶତସିଂହ ପରାକ୍ରମ ସରି
ବାମ କରେ ମହାବଳ ଧନୁକୁ ସେ ଧରି ।
ଗୁଣଦେବକୁ ଓଟାରି ଆଣନ୍ତେ ସେ ଟୋଳି
ମୁଖରୁ ରୁଧିର ଧାର ପଡ଼େ ତାର ଗଳି ।
ଲାଜେ ବସିଲାକ ଆସି ଅସୁର ନୃପତି
ସଭାରୁ ବାହାର ହେଲେ ବଜ୍ରନାଭ କ୍ଷତ୍ରି ।
ଲାଖ ସନ୍ନିଧେ ପ୍ରବେଶ ହେଲା ମହାଶୟେ
ଧନୁକୁ ସେ ଆକର୍ଷଇ ଚନ୍ଦ୍ରେ ରାହୁ ପ୍ରାୟେ ।
ଧନୁ ମାଡ଼ି ପଡ଼ିଲାକ ତାହାର ଉପରେ
ଉତ୍ତନଶାୟୀ ହୋଇ ସେ ପଡ଼ିଲା ତଳରେ ।
ଭୁଜ ଧରି ଉଠାଇଲା ଶିଖଣ୍ଡୀ ତାହାକୁ
ତଳକୁ ମୁଖ କରି ସେ ନ ଚାହେଁ କାହାକୁ ।
ବଜ୍ରନାଭ ପାଇଲାକ ଯହୁଁ ଅପମାନ
ସଭାରୁ ବାହାର କେହି ନୋହିଲେ ରାଜନ ।
ଅନେକ ଦେଶରୁ ପୁଣି ରାଜାମାନେ ଉଠି
କେହି ଟୋଳି ନ ପାରିଲେ ଶିବ ଧନୁ ଗୋଟି ।
ବସୁଧା ପୁତ୍ର ନାରକା ନାମେ ମହାବୀର
ରେ ରେ କାରେ ସଭାରୁ ସେ ଉଠେ ବୀରବର ।
ଲାଖ ପଟାତଳେ ଯାଇ ପ୍ରବେଶ ହୋଇଲା
ଅଧୋ ବାହୁ କରି ଧନୁ ହସ୍ତରେ ଟୋଳିଲା ।
ପାଦ ଦେଇ ହୃଦେ ମାଡ଼ି ବସିଲାକ ଧନୁ
ଗୁଣ ଦେଇ ନ ପାରିଲା ବସୁଧାର ସୁନୁ ।
ଲୋଭରେ ନାରକା ଧନୁ ନ ଛାଡ଼େ ହସ୍ତରୁ
ଶିଖଣ୍ଡୀ ବୋଇଲା ଆଉ କି ବିଚାର କରୁ ।
ପଳାଯା ବୋଲି ବୋଇଲା ଉଚ୍ଚେ ଧୃଷ୍ଟଦ୍ୟୁମ୍ନ
ଲାଜେ ବାହୁଡ଼େ ସଭାକୁ ବସୁଧା ନନ୍ଦନ ।
ବସିଲେ ସମସ୍ତ ରାଜାମାନେ ହେଠମାଥେ
ତାହା ଦେଖି ଦ୍ରୁପଦ ଯେ ବସେ ଦୁଃଖ ଚିତ୍ତେ ।
ପୁଣି ଦ୍ରୁପଦ ବୋଲେ ଏ କ୍ଷତ୍ରିଙ୍କ ବିଧାନ
ଏ କଥାକୁ ନ ମଣିବ କେହି ଅପମାନ ।
ଯେ ପାରିବ ଲାଖ ବିନ୍ଧ ବିଳମ୍ବ ନ କର
ଉଚ୍ଚକୁଳକୁ ଏ ଲଜ୍ଜା ହେଉଛି ଅପାର ।
ବସିଲେ ରାଜାଏ ଯହୁଁ ହୋଇ ମୌନବ୍ରତ
ଯୋଦ୍ଧା ଅମାତ୍ୟମାନଙ୍କୁ ବୋଲେ ନରନାଥ ।
କ୍ଷତ୍ରିୟ ହୋଇଣ କେହି ଅଛି ସାମରଥ
ଯେ ଲାଖ ବିନ୍ଧିବ ଦେବି କନ୍ୟାକୁ ଯଥାର୍ଥ ।
ଦ୍ରୁପଦ ବଚନ ଶୁଣି ମାନ ଚକ୍ରବର୍ତ୍ତୀ
କର୍ଣ୍ଣର ବଦନ ରାଜା ଚାହିଁଲା ତଡ଼ତି ।

ସଭାରୁ ବାହାର ହେଲା ବୀରବର କର୍ଣ୍ଣ
ଧାର୍ମିକ ବିବେକୀ ଅତି ସୁନ୍ଦର ତା ବର୍ଣ୍ଣ ।
ଅମୃତ କୁଣ୍ଡଳ ଦୁଇ ଶୋଭେ ବେନି କର୍ଣ୍ଣେ
ବାଳ ଅର୍କ ତେଜ ନିନ୍ଦେ ଏ ମଧ୍ୟ ଭୁବନେ ।
ଶିରରେ ରତ୍ନମୁକୁଟ ଚାଲେ ସିଂହ ଠାଣି
ଦ୍ରୌପଦୀ ବୋଲେ ଏ କେଉଁ ଦେଶ ନୃପମଣି ।
କେଶିନୀ ବୋଇଲା ମାଏ ଶୁଣ ଗୋ ପାଞ୍ଚାଳୀ
କୁନ୍ତୀକୁ ଦୁର୍ବାସା ଋଷି ଦେଲେ ଜପାମାଳି ।
ଅବିବାହୀ କାଳେ ବିଦ୍ୟା ପରୀକ୍ଷା ନିମନ୍ତେ
ସୂର୍ଯ୍ୟଦେବଙ୍କୁ ସ୍ମରଣ କଲେ କୁନ୍ତୀ ଚିତ୍ତେ ।
ତକ୍ଷଣେ ବିଜୟ କଲେ ଆସି ଅଂଶୁମାଳୀ
କୁନ୍ତୀଙ୍କ ଅଙ୍ଗ ସଙ୍ଗରେ ଗଲେ ବୀର୍ଯ୍ୟ ଢାଳି ।
ଲାଜେ ଗର୍ଭେ ନ ଧଇଲେ ଆଦିତ୍ୟର ବୀର୍ଯ୍ୟ
କର୍ଣ୍ଣ ବାଟେ ଉପୁଜିଲା ସଦ୍ୟ ଏ ଆତ୍ମଜ ।
ଯେଣୁ କର୍ଣ୍ଣବୀରେ ଜନ୍ମ ହେଲା ମହାଦ୍ୱାର
ତେଣୁ କରି କର୍ଣ୍ଣ ନାମ ହୋଇଲା ଏହାର ।
ଗାଢ଼େ ଚାଲନ୍ତେ ପୃଥ୍ୱୀରେ ଏହି ମହାବୀର
ବସୁମତୀର ମୁଖରୁ ବହଇ ରୁଧିର ।
ଏଣୁ ନିତି ଶତେ ଭାର ସ୍ୱର୍ଣ୍ଣ ଦିଏ ଲାଞ୍ଚ
ସୂର୍ଯ୍ୟ ରଖିଛନ୍ତି ଏହା ଅଙ୍ଗରେ କବଚ ।
ଦାନେ ସୁରପାନେ ଶୂର ବଳେ ବଳବନ୍ତ
ଦୁର୍ଯ୍ୟୋଧନ ମିତ୍ର ଏହି ସଂଗ୍ରାମେ ଶକତ ।
ଲାଖର ମୂଳେ ପ୍ରବେଶ ଯାଇ ବୀର କର୍ଣ୍ଣ
ବଳରାମ ବୋଇଲେରେ ବାବୁ ନାରାୟଣ ।
ଏହିକ୍ଷଣି କର୍ଣ୍ଣ ଏହି ଲାଖକୁ ବିନ୍ଧିବ
ଦ୍ରୌପଦୀକୁ ଘେନି ଏଥୁ ଦୁର୍ଯ୍ୟୋଧନ ଯିବ ।
ଜଗନ୍ନାଥ ବୋଇଲେ ଯେ ତୁମ୍ଭେ ମହାଜ୍ଞାନୀ
ତୁମ୍ଭ ବାକ୍ୟ କି ନିଷ୍ଫଳ ହେବ ଆହେ ସ୍ୱାମୀ ।
ଏମନ୍ତ ସମୟେ ସେହି କର୍ଣ୍ଣ ମହାରଥ
ବାମ କରେ ଧନୁ ଗୋଟି ଧଇଲା ତ୍ୱରିତ ।
ହୂଳରେ ପାଦ ଦେଇଣ ମାଇଲା ସେ ଧନୁ
ଅବହେଳେ ଗୁଣ ଦେଲା ଆଦିତ୍ୟର ସୁନୁ ।
ଗୁଣ ଦେଇ ଧନୁ ଗୋଟି ଆମଞ୍ଚନ କଲା
ସାଧୁକର୍ଣ୍ଣ ବୋଲି ଧ୍ୱନି ସଭାରେ ଶୁଭିଲା ।
ଧୃଷ୍ଟଦ୍ୟୁମ୍ନଙ୍କୁ ଚାହିଁ ପଚାରିଲେ କର୍ଣ୍ଣ
ଲାଖର ବୃତ୍ତାନ୍ତ ତୋର କେବଣ ବିଧାନ ।
ଧୃଷ୍ଟଦ୍ୟୁମ୍ନ କହେ ତୁମ୍ଭେ ଶୁଣ ମହାରଥି
ସାତତାଳ ଉଚ୍ଚ ଦିଶେ ଯେଉଁ ଦିବ୍ୟଜ୍ୟୋତି ।
ସେହି ରାଧାଚକ୍ର ତାର ସହସ୍ରେକ ଧାର
ଶୂନ୍ୟେ ଭ୍ରମଇ କୁରାଳ ଚକ୍ରର ଆକାର ।

ତହିଁର ଉପରେ ଅଛି ସୁବର୍ଣ୍ଣର ରୋହା
ତାତୁ ନିରୂପିବ ତଳେ ଜଳ ଘଟ ଚାହିଁ ।
ଛାଇ ନିରୂପନ୍ତେ ଜଳ ଘଟେ ଥିବ ଦୃଷ୍ଟି
ନାରାଚ ବିନ୍ଧିବ ଥିବ ଉପରକୁ ମୁଷ୍ଟି ।
ଚକ୍ର ନିକିଳି ଫୁଟିବ ମତ୍ସ୍ୟ ବାମ ଆଖି
ତେବେ ଲଭିବ ଆମ୍ଭର କୃଷ୍ଣା ଚନ୍ଦ୍ରମୁଖୀ ।
ଧୃଷ୍ଟଦ୍ୟୁମ୍ନ ବଚନେ କର୍ଣ୍ଣ ମହାରଥ
ପଟାର ଉପରେ ବିଜେ କଲାକ ତୁରିତ ।
ଧନୁକୁ ଆମଞ୍ଚି କଲା ଗୁଣର ଟଙ୍କାର
କମ୍ପିଲେ ଅମରପୁରେ ଥାଇ ବିଦ୍ୟାଧର ।
ତଳକୁ ଦୃଷ୍ଟି କରିଣ ଉପରକୁ ମୁଷ୍ଟି
କର୍ଣ୍ଣର ଉପରେ ଅଛି ସମସ୍ତଙ୍କ ଦୃଷ୍ଟି ।
ଆକର୍ଷି କର୍ଣ୍ଣ ନାରାଚ କୋପରେ ବିନ୍ଧିଲା
ଚାରିତାଳ ଉପରେ ସେ ଚକ୍ରରେ ବାଜିଲା ।
ବାହୁଡ଼ି ଭୂମିରେ ଆସି ପଡ଼ିଲା ତୁରିତେ
ନୋହିଲା ନୋହିଲା ବୋଲି ବୋଇଲେ ସମସ୍ତେ ।
ଲାଜ ପାଇ କର୍ଣ୍ଣବୀର ଲେଉଟେ ତଡ଼ତି
ସଭାରୁ ବାହାର ହେଲେ ଦ୍ରୋଣ ମହାରଥି ।
ଉଠିଲେ ପ୍ରତିଜ୍ଞା କରି ଭରଦ୍ୱାଜ ସୁନୂ
ଆକର୍ଷିଲେ ସେ ଦ୍ୱିତୀୟ ଅଜଗବ ଧନୁ ।
ନାରାଚ ପୂରାଇ ପଟା ଉପରକୁ ଉଠି
ତଳକୁ ଦୃଷ୍ଟି କରିବ ଉପରକୁ ମୁଷ୍ଟି ।
ଆକର୍ଷି ନାରାଚ ଗୋଟି ବିନ୍ଧିଲେ କୋପରେ
ସୁଦର୍ଶନ ଚକ୍ରେ ବାଜି ପଡ଼ିଲା ସେ ଦୂରେ ।
ସଭାରେ ଲଜ୍ଜା ପାଇଲେ ଗୁରୁ ମହାତମା
ପିତା ଅପମାନେ ଦେଖି ପୁତ୍ର ଅଶ୍ୱତ୍ଥାମା ।
ପ୍ରତିଜ୍ଞା କରି ଉଠିଲେ ଦ୍ରୋଣଙ୍କର ସୁନୁ
ଗୁଣ ଟଙ୍କାର କରିଣ ଘେନିଗଲା ଧନୁ ।
ପଟାର ଉପରେ ସେହି ଉଠିଲାକ କୋପେ
ଆକର୍ଷିଣ ନାରାଚକୁ ବିନ୍ଧେ ଗୁରୁତାପେ ।
ଚାରିତାଳ ଉତ୍ସର୍ଗରେ ଚକ୍ରେ ଯାଇ ବାଜି
ଭୂମିରେ ପଡ଼ିଲା ବେନି ଖଣ୍ଡ ହୋଇ ଭାଜି ।
ଲଜ୍ଜା ପାଇ ବସିଲେ ସେ ଅଶ୍ୱତ୍ଥାମା କ୍ଷତ୍ରି
ସଭାରୁ ବାହାର ହେଲେ ଭୀଷ୍ମ ମହାରଥି ।
ଲାଖର ତଳେ ମିଳିଲେ ଯାଇ ଗଙ୍ଗାସୁତ
ଆକର୍ଷି କରେ ଧଇଲେ ଧନୁକୁ ତୁରିତ ।
ଭୀଷ୍ମ ପଚାରିଲେ ଆହେ ଦ୍ରୁପଦର ବାଳେ
ଆମ୍ଭେ ଏ ଲାଖ ବିନ୍ଧିବୁ ଯେବେ ଧର୍ମ ବଳେ ।
ଦାର ସଂହାରଣ ଆମ୍ଭେ କରିଅଛୁ ବାବୁ
କନ୍ୟା ଗୋଟି ଦୁର୍ଯ୍ୟୋଧନ ନୃପତିଙ୍କୁ ଦେବୁ ।

ଶିଖଣ୍ଡୀ ବୋଇଲେ ଭୀଷ୍ମ ଯେ ତୋହର ଆଜ୍ଞା
ସେ କଥା ଗୋଟିକ କେହୁ କରିବ ଅବଜ୍ଞା ।
ଧନୁ ଧରିଣ ଗାରିମା ଭୀଷ୍ମ କରୁଥିଲେ
ଶିଖଣ୍ଡୀର ମୁଖ ଦେଖି ବାହୁଡ଼ି ଅଇଲେ ।
ଦୁର୍ଯ୍ୟୋଧନ ବୋଲେ ଫେରି ଅଇଲକି ଅର୍ଥେ
ଭୀଷ୍ମ ବୋଇଲେ କଷଣ ପଡ଼ିଲାକ ମୋତେ ।
ସଭାରେ ମଉନ ବ୍ରତେ ବସିଲେ ଗାଙ୍ଗେୟ
ସଭାରୁ ବାହାର ହେଲେ ରଥି ଶଲ୍ୟରାୟ ।
ଲାଖି ତଳେ ଯାଇଣ ସେ ହୋଇଲେ ପ୍ରବେଶ
ଧନୁ ବାମ କରେ ଧରି କଲେ ଗୁଣ ଘୋଷ ।
ପଟାର ଉପରେ ଉଠି ନାରାଚ ପୂରାଇ
ଉପରକୁ ମୁଷ୍ଟି କରି ତଳେ ଦୃଷ୍ଟି ଦେଇ ।
ନାରାଚ ବିନ୍ଧନ୍ତେ ଗଲା ତିନିତାଳ ଉଠି
ସୁଦର୍ଶନ ଚକ୍ରେ ବାଜି ପଡ଼ିଲା ଲେଉଟି ।
ରାଜାମାନେ ହସିଲେ ହେ କରତାଳି ଦେଇ
ଶଲ୍ୟ ରଥି ବସିଲେକ ଅପମାନ ପାଇ ।
ରାୟଗୁରୁ ଶଲ୍ୟ ଯହୁଁ ବସିଲେକ ଲାଜେ
ସଭାରୁ ବାହାର ହୋଇ କୃପ ସେ ଆଚାର୍ଯ୍ୟେ ।
ଆଡ଼ୋ ଆଡ଼ୋ କହି କରେ ଧନୁକୁ ଧଇଲେ
ପଟାରେ ଉଠି ନାରାଚ ଗୋଟିଏ ବିନ୍ଧିଲେ ।
ତେଣୁ ସେ ନାରାଚ ଗୋଟି ଗଲା ତାଳ ତିନି
ବାହୁଡ଼ି ଆସି ନାରାଚ ପଡ଼ିଲା ମେଦିନୀ ।
ଆସ୍ଥାନ ଡେଇଁ ପଡ଼ିଲା ବୀର ଜୟଦ୍ରଥ ।
ଲାଖ ତଳେ ମିଳିଲା ସେ ଦୁଃଶୀଳାର କାନ୍ତ ।
ଧନୁ ଧରିଣ ପଟାର ଉପରେ ଉଠିଲା
ତଳ ଆଡ଼କୁ ଚାହିଣ ଊର୍ଦ୍ଧ୍ୱ ମୁଷ୍ଟି କଲା ।
ଆକର୍ଷଣ କରି ଶର ପୂରାଇ ବିନ୍ଧିଲା
ବେକ ଉପରେ ସେ ଧନୁ ମାଡ଼ିଣ ପଡ଼ିଲା ।
ମୁହିଁ ମାଡ଼ି ତଳେ ପଡ଼ିଲାକ ଜୟଦ୍ରଥ
ତାହାର ନାସିକା ମୁଖୁଁ ବହଇ ଶୋଣିତ ।
ପଡ଼ି ଅଚେତନ ହୋଇଲାକ ନୃପରାଣ
କାଢ଼ିଲେକ ଧୃଷ୍ଟଦ୍ୟୁମ୍ନ ଧନୁ ତତକ୍ଷଣ ।
ପଳା ପଳା ବୋଲି ପେଲିଦେଲା ଯେ ଶିଖଣ୍ଡୀ
ଥୋକାଏ ଦୂରେ ପଡ଼ିଲା ପୁଣି ମୁହଁ ମାଡ଼ି ।
କର୍ଣ୍ଣାଟ ଦେଶର ରାଜା କନ୍ଦର୍ପ ନୃପତି
ଲାଖି ବିନ୍ଧିବାକୁ ଉଠି ଆସେ ମହାକ୍ଷତ୍ରୀ ।
ଆକର୍ଷଣ କରିଣ ସେ ଧନୁକୁ ଧଇଲା
ପଟାର ଉପରେ ଉଠି ଚାପ ଆମଞ୍ଚିଲା ।
ମାଡ଼ି ପଡ଼ିଲା ସେ ଧନୁ ତାହାର ହୃଦୟେ
ତାଳକ ଉପରୁ ପଡ଼ି ଅଚେତନ ରାୟେ ।

ଧାଇଁଯାଇ ସମ୍ଭାଳିଲା ତାହାକୁ ଶିଖଣ୍ଡୀ
ଦୁଇହସ୍ତେ ଧନୁ ଧରି ହୃଦୟରୁ କାଢ଼ି ।
ଏମନ୍ତେ ଅପାର ରାଜାମାନେ ବାହୁଡ଼ିଲେ
ଲାଖ ବିନ୍ଧି ନ ପାରିଣ ସଭାରେ ବସିଲେ ।
ସ୍ତବଧ ହୋଇ ବସିଲେ ସମସ୍ତ ନୃପତି
ଲାଖ ବିନ୍ଧିବାକୁ କାର ନ ବଳଇ ମତି ।
ସଭାରେ କହିଲେ ଯାଇ ପୁଣି ଧୃଷ୍ଟଦ୍ୟୁମ୍ନ
ଭୋ ନୃପଗଣ କିମ୍ପାଇଁ ହୋଇଲ ମଉନ ।
ଲାଖ ବିନ୍ଧିବାକୁ କେହି ନ ଆସ କିମ୍ପାଇଁ
କନ୍ୟାସହ ମହାଯଶ ନ ନିଅ କିମ୍ପାଇଁ ।
ଏଡ଼େ କାର୍ଯ୍ୟ ଆରମ୍ଭ କି ହୋଇବ ନିଷ୍ଫଳ
ତୁମ୍ଭଙ୍କୁ ଉପୁଜିବ ସେ ଲଜ୍ଜା ଚିରକାଳ ।
ପୁଣ ପୁଣ ପଚାରଇ ଦ୍ରୁପଦର ବତ୍ସ
ଲାଖ ବିନ୍ଧିବା କଥା ତ ମନରେ ନ ବାଞ୍ଛ ।
ଲାଖର ଉପରେ ନାହିଁ କାହାର ନୟନ
କନ୍ୟା ନେବାକୁ ବଳିଛି ସମସ୍ତଙ୍କ ମନ ।
ରାଜାଏ ବୋଇଲେ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ଦେବଙ୍କୁ ଦୁର୍ଲ୍ଲଭ ଜାଣ ତୁମ୍ଭ ଧନୁ ଖଣ୍ଡି ।
କାହିଁ ତୁମ୍ଭ ରାଧାଚକ୍ର କାହିଁ ତୁମ୍ଭ ମତ୍ସ୍ୟ
ଅପାର ଅସଂଖ୍ୟ ବଳ ଧନୁ ମହାଲାଖ ।
ଅଦୃଷ୍ଟ ଲାଖ କେମନ୍ତେ ବିନ୍ଧିବୁ ହୋ କହ
ଧରୁ ଧରୁ ଧରୁ ଯୋଦ୍ଧାମାନେ ହେଲେ ମୋହ ।
ଦ୍ରୌପଦୀ ବୋଇଲେ ସଖୀ ସରିଲା ଏଥର
ଲାଖ ବିନ୍ଧିବାକୁ କେହି ନୋହିଲେ ବାହାର ।
ଦୁଷ୍ଟ ଭାଇଙ୍କର ବୁଦ୍ଧି ଏଡ଼େ ପରପଞ୍ଚ
ମହାଲାଖ ଦେବତାଳ ସାତତାଳ ଉଚ୍ଚ ।
ମାନବ ତାଳରେ କାଳ ହୋଇବ ପଚାଶ
ନିରୀକ୍ଷି ଚାହିଁଲେ ଜାଣ ସେ ଅର୍ଦ୍ଧ ଆକାଶ ।
ସାତ ତାଳ ଉତ୍ସର୍ଗରେ ଚକ୍ରକୁ ଥୋଇଲା
ତା ଉପରେ ସାତତାଳ ମାଛକୁ ରଖିଲା ।
ସ୍ଥିର ନ ହୁଅଇ ସେହି ଚକ୍ର ନିରନ୍ତର
ଭ୍ରମୁଥାଇ କରାଳର ଚକ୍ର ପରକାର ।
ଆବର ବିପରୀତ ଗୋ କନକର ମତ୍ସ୍ୟ
ଚକ୍ରର ଉପରେ ଅଛି ନୁହଁଇ ପ୍ରତ୍ୟକ୍ଷ ।
ଚକ୍ରରେ ଲାଖ ନ କରି ମାଛ ଭିଆଇଲା
ମାଛର ଉପରେ ପୁଣି ଲାଖ ହିଁ ନ କଲା ।
ଲାଖ କଲା ସେ ମାଛର ପୁଣି ବାମ ଆଖି
ଏସନକ ବିପରୀତ ନ ବିଚାରି ସଖୀ ।
ଭୂମିରେ ଥାଇ ଯୋଦ୍ଧାଏ ବିନ୍ଧନ୍ତିନା ଶର
ତାଳେକ ଉପରେ ପଟା ଥୋଇଲା ଆବର ।
ତା ଉପରେ ଉଠିଯାଇ ଧନୁକୁ ଧଇଲେ
ମୁହଁ ମାଡ଼ିପଡ଼ିବ ତ ତଳକୁ ଚାହିଁଲେ ।
ଯେ ଯାହାର ଧନୁ ତାକୁ ହୁଅଇ ସେ ସଜ
ଲକ୍ଷବଳ ଶିବଧନୁ ହୁଅଇ ଅସଜ ।
ଏ କଥାମାନ ସଖୀ ଗୋ ନୁହେଁ କି ଅବାକ୍ୟ
ନାରାଚ ବିନ୍ଧିବ କେହୁ ତଳ କରି ମୁଖ ।
ଆବର ବିପରୀତ ଗୋ ତଳେ ଥିବ ଦୃଷ୍ଟି
ଚକ୍ରଭେଦୀ ଯିବ ମାଛ ବାମଚକ୍ଷୁ ଫୁଟି ।
ତହିଁରେ ପୁଣି ଗୋ ଜଳ ଘଟେ ଥିବ ଦୃଷ୍ଟି
ଉପରକୁ ରହିଥିବ ଯେ ଧନୁର ମୁଷ୍ଟି ।
ଏଡ଼େ ଅସମ୍ଭବ ଲାଖ ଅଛଇ ଗୋ କାହିଁ
ରହିଲେଣି ବିନ୍ଧିବାକୁ କାର ଶକ୍ୟ ନାହିଁ ।
ସରିଲା ତ ପିତାଙ୍କର ଏହି ସ୍ୱୟମ୍ବର
ଅକାରଣେ ବିଧ୍ୱଂସିଲେ ଏ ଧନ ଭଣ୍ଡାର ।
କେଶିନୀ କହିଲା ସଖୀ ବୁଦ୍ଧି ଏକ ଅଛି
ତୋହର ଇଚ୍ଛାରେ ତୁହି କରୁ କିନା ବାଛି ।
ପୂର୍ବେ ସ୍ୱୟମ୍ବର କଲା ଭୀମ ନରପତି
ତାହାର ଦୁହିତା ନାମ ଅଟେ ଦମୟନ୍ତୀ ।
ତା ଇଚ୍ଛାରେ ସେହି ସଭା ମଧ୍ୟରେ ବାଛିଲା
ଦେବତାଙ୍କୁ ଛାଡ଼ି ନଳରାଜାଙ୍କୁ ବରିଲା ।
ଚନ୍ଦ୍ରଧ୍ୱଜ ଦୁହିତା ଯେ ଅଟେ ଇନ୍ଦୁମତୀ
ସ୍ୱଇଚ୍ଛାରେ ବରିଲା ସେ ଅଜ ନରପତି ।
ଚନ୍ଦ୍ରମାଧବ ଦୁହିତା ବରିଲା ଇନ୍ଦ୍ରଙ୍କୁ
ସୁମିତ୍ରା ବରିଲା ଦଶରଥ ନୃପତିଙ୍କୁ ।
ସ୍ୱୟମ୍ବରେ ଆଦିତ୍ୟର ଦୁହିତା ତପତୀ
ଦେବଙ୍କୁ ଛାଡ଼ି ବରିଲା ଶମ୍ଭୁ ନରପତି ।
ଶିଶୁପାଳକୁ ରୁକ୍ମିଣୀ ବରି ଆଣିଥିଲେ
ନାରାୟଣଙ୍କୁ ରୁକ୍ମିଣୀ ଇଚ୍ଛାର ବରିଲେ ।
ତୋହର ଇଚ୍ଛାରେ ତୁ ଗୋ ରାଜା ଏକ ବର
ମୋହର ବଚନ ତୁହି କର ନିରାଧାର ।
ଦ୍ରୌପଦୀ ବୋଇଲେ ସଖୀ କହିଲୁ ତ ସତ
ଏଥିରେ କାହାକୁ ମୋର ନ ବଳଇ ଚିତ୍ତ ।
କି ଜାଣି କି ଭିଆଣ ଗୋ କରିଛନ୍ତି ହରି
ସେହି ସେ ଜାଣନ୍ତି ସଖୀ ଚିତ୍ତକୁ ମୋହରି ।
ଏହା କହି ଚିତ୍ତ ରଖି ଶ୍ରୀଦୁର୍ଗାଙ୍କୁ ପାଦେ
ମନେ ମନେ ସ୍ତବ କଲେ ଦ୍ରୌପଦୀ ବିଷାଦେ ।
ମାହେଶ୍ୱରୀ ଅଭୟା ଗୋ ଅନାଦି ଶକତି
ସହସ୍ର ଭୁଜ ତୋହର ଅଗ୍ନିରୁ ଉତ୍ପତ୍ତି ।
ଖଟ୍ୱାଙ୍ଗ ଡମ୍ବରୁ ଶୂଳ ପିନାକ ତୋ କରେ
ଆବର ତୁ ଶଙ୍ଖ ଚକ୍ର ଧରୁଛୁ ହସ୍ତରେ ।

ଶଲ୍ୟ କୁନ୍ତ ଗଦା ଅସି ଶକତି ମୁଦ୍‌ଗର
ଖର୍ପର କୁଠାର କାତି କରବାଳ କର ।
ହିମ ସୂର୍ଯ୍ୟଚନ୍ଦ୍ର ଅଗ୍ନିସମ ତେଜକାନ୍ତି
ନବଲକ୍ଷ ଡାକିନୀ ତୋ ଆଗରେ ନାଚନ୍ତି ।
କାତ୍ୟାୟିନୀ ବେତାଳୀ ତୁ ଚଣ୍ଡୀ ଉଗ୍ରଚଣ୍ଡୀ
ଚଣ୍ଡମୁଣ୍ଡ ଦାନବଙ୍କୁ ମାଇଲୁ ତୁ ଉଣ୍ଡି ।
ଶ୍ମଶାନରେ ଭୂତ ପ୍ରେତ ଘେନି କୁତୁହଳେ
ପ୍ରଚଣ୍ଡ ଚାମଣ୍ଡ ଘୋର ପିଶାଚୀଙ୍କ ମୂଳେ ।
ନୃତ୍ୟରଙ୍ଗେ କରୁ ମାଗୋ ତୁ ରୁଧିର ପାନ
ତୋହର ପ୍ରସାଦେ ହେବ ଆପଦ ଖଣ୍ଡନ ।
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ଜାଣୁ
ମହିଷାସୁରକୁ ରଣେ ମାଇଲୁ ତୁ ତେଣୁ ।
ପ୍ରସନ୍ନେ ଅଭୟ ବର ଦିଅ ଗୋ ହିଙ୍ଗୁଳା
ମୋହର କଷ୍ଟ ଫେଡ଼ ତୁ ମା ସର୍ବମଙ୍ଗଳା ।
କାଳେ କାଳେ ତୁ ପାତକମାନ ପାରୁ ଖଣ୍ଡି
ଶାରଳା ଦାସେ ପ୍ରସନ୍ନ ହୁଅ ଉଗ୍ରଚଣ୍ଡୀ ।
ଏସନକ ସ୍ତୁତି ଯହୁଁ କଲେକ ପାଞ୍ଚାଳୀ
ସଦୟେ ପ୍ରସନ୍ନ ତାଙ୍କୁ ହେଲେ ଭଦ୍ରକାଳୀ ।
ଧର୍ମ ଉଦିତ ହୋଇଲା ସ୍ଫୁରେ ବାମଆଖି
ଆଗରେ ପଡ଼ିଲା ଅସି ଶଙ୍ଖଚିଲ ପକ୍ଷୀ ।
ବାମ ଜାନୁ ବାମବାହୁ ସ୍ଫୁରେ ଘନ ଘନ
ଏସନ ଶୁଭ ଲକ୍ଷଣ ଦେଖି ହୃଷ୍ଟମନ ।
ଏସନ ବେଳେ କହନ୍ତି ସ୍ୱାମୀ ବଳରାମ
କଥାଏ ପୁଚ୍ଛିବା କହ ଶ୍ରୀପୁରୁଷୋତ୍ତମ ।
ଅତି ଅସମ୍ଭବ ଲାଗି କଲା ତ ଦ୍ରୁପଦ
ବିନ୍ଧି ନ ପାରିଲେ ତାହା ନରପତିବୃନ୍ଦ ।
ନାରାୟଣ ବୋଇଲେ ହେ ପ୍ରଭୁ ବଳଦେବ
ତୁମ୍ଭେ ଯେ ବୋଇଲ କର୍ଣ୍ଣ ଏ ଲାଖ ବିନ୍ଧିବ ।
ବଳରାମ ବୋଇଲେ ସେ ଅଟେ ଦୃଷ୍ଟିଭେଦୀ
ତେଣୁ ବିଚାରିଲୁ ଲାଖ ପାରିବ ସେ ବିନ୍ଧି ।
ଲାଖ ବିନ୍ଧିବାକୁ କେହି ଅଛି କି ସମର୍ଥ
ଜାଣିଥିଲେ ମୋ ଆଗରେ କହ ତୁ ଯଥାର୍ଥ ।
ଦୃଢ଼ କରି ପଚାରିଲେ ତହୁଁ ବଳରାମ
ମନମଧ୍ୟେ ବିଚାରିଣ ଶ୍ରୀପୁରୁଷୋତ୍ତମ ।
କହନ୍ତି ଯେ ସାବଧାନେ ଶୁଣ ଦେଇ ମନ
ଅଛନ୍ତି ଏ ତିନିପୁରେ ଜାଣ ତିନିଜଣ ।
ଆକାଶେ ବିନ୍ଧି ପାରଇ ଏକା ସୁରପତି
ପାତାଳେ ଏକା ବାସୁକୀ ନାଗ ଅଧିପତି ।
ମର୍ତ୍ତ୍ୟପୁରେ ଏକା ବିନ୍ଧି ପାରଇ ଅର୍ଜୁନ
ତ୍ରୈଲୋକ୍ୟ ମଧ୍ୟରେ ଜାଣ ଏହି ତିନିଜଣ ।

ଏହା ଶୁଣି ବୋଇଲେକ ପ୍ରଭୁ ବଳଦେବ
ଅମର ତେଜି କି ବିଜେ କରିବ ବାସବ ।
ଜଗନ୍ନାଥ ବୋଇଲେ ହେ ଶୁଣ ହଳଧାରୀ
ପୁରନ୍ଦରର ଅଯୋଗ୍ୟ ଦ୍ରୁପଦ କୁମାରୀ ।
ବୈବସ୍ୱତ ମନୁ ପୁଚ୍ଛାକଲେ ହେ ଅଗସ୍ତି
ପ୍ରତ୍ୟକ୍ଷେ ଦ୍ରୌପଦୀ ଦେବୀ ଅଟନ୍ତି ପାର୍ବତୀ ।
ବାସୁଦେବ କହିଲେ ଯେ ବଳଦେବ ଆଗେ
ବାସବ ଅଯୋଗ୍ୟ ବୋଲି କହ କେଉଁ ବାଗେ ।
ପ୍ରତ୍ୟକ୍ଷେ ବ୍ରାହ୍ମଣ ସମ ଦ୍ରୁପଦ ନୃପତି
ମହାଯଜ୍ଞ ଦେବ କନ୍ୟା ଅଗ୍ନିରୁ ଉତ୍ପତ୍ତି ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ନୃପଶିଷ୍ୟ
ଆସିବ କି ନାରାୟଣ ମୁଖେ ମିଥ୍ୟାଭାଷ୍ୟ ।
ଅର୍ଜୁନର ଭାରିଯା ଯେ ହୋଇବ ନିୟତ
ଇନ୍ଦ୍ର ଦେବତାର ବଧୂ ହେବ ଏହା ସତ୍ୟ ।
ବଳରାମଙ୍କୁ ବଞ୍ଚାଇ କହିଲେ ଶ୍ରୀହରି
ଇନ୍ଦ୍ରର ଅଯୋଗ୍ୟ ଏହି ଦ୍ରୁପଦ କୁମାରୀ ।
ବଳରାମ ପ୍ରଭୁ ତାହା ନ ପାରିବେ ଜାଣି
ନ ଆସିବେ ତ ଅଯୋଗ୍ୟ ହେଲେ ବଜ୍ରପାଣି ।
ତୁ ଯେବେ ଲାଖ ବିନ୍ଧିବୁ ଉଠ ବନମାଳୀ
ଦ୍ୱାରକାପୁର ମଣ୍ଡନୀ ହୋଇବ ପାଞ୍ଚାଳୀ ।
ଅଯୋନି ସମ୍ଭୂତା ଏହି ଦ୍ରୁପଦ ନନ୍ଦିନୀ
ପ୍ରତ୍ୟକ୍ଷରେ ଯଜ୍ଞୁ ଜାତ କଲା ବ୍ୟାସମୁନି ।
କହନ୍ତି ଯେ ନୀଳାମ୍ବର ଆଗେ ଜଗନ୍ନାଥ
ମୁଁ କାହିଁ ବିନ୍ଧିବି ମୋତେ ଦ୍ରୌପଦୀ ଅପ୍ରାପ୍ତ ।
ମନଭେଦୀ ନାରାଚ ତ ମୋର କରେ ନାହିଁ
ତେଣୁ ମୋତେ ଅପ୍ରାପତି ପ୍ରଭୁ ହଳସାଇଁ ।
ବାସୁକୀ ପାତାଳୁ ଏଥେ ଆସି ନ ପାରିବ
ସେ ଆସିଲେ ଏ ବସୁଧା ରସାତଳେ ଯିବ ।
ବଳରାମ ବୋଇଲେ ତୁ ଶୁଣ ମଧୁହାରୀ
ଇନ୍ଦ୍ରର ଅଯୋଗ୍ୟ ତୋତେ ଅପ୍ରାପ୍ତ କୁମାରୀ ।
ତାହାଙ୍କ ମାତା ସହିତ ଯେ ପଞ୍ଚପାଣ୍ଡବେ
ଜତୁ ଗୃହରେ ଦଗଧ ହୋଇଲେ ଏ ସର୍ବେ ।
ଆବର କିମ୍ପାଇଁ ଏଥେ ଥିବା ଦୁଃଖେ ରହି
ନିଶ୍ଚୟ ଦ୍ରୌପଦୀ କନ୍ୟା ରହେ ଅବିବାହୀ ।
ଉଠ ଉଠ ବାସୁଦେବ ଦ୍ୱାରକାକୁ ଯିବା
ଖରା କାକର କୁହୁଡ଼ି କିମ୍ପାଇଁ ସହିବା ।
ଜଗନ୍ନାଥ ବୋଇଲେ ଯେ ରହିବା ଆଜିକ
କାଲି ଯେ ଅବଶ୍ୟ ଜଣେ ବିନ୍ଧିବ ଏ ଲାଖ ।
ବଳରାମ ପଚାରନ୍ତି କହରେ କହ୍ନାଇ
ଆପେ ବିନ୍ଧିବୁ ନ କହୁ ଆମ୍ଭଙ୍କୁ କିମ୍ପାଇଁ ।

କରଯୋଡ଼ି ବୋଲନ୍ତି ଯେ ଦେବ ଜନାର୍ଦ୍ଦନ
ପ୍ରଭାବେ କାଲି ବିନ୍ଧିବ ଲାଖ ଅରଜୁନ ।
ନାରାୟଣଙ୍କ ମୁଖରୁ ଶୁଣି ଏହି ବାଣୀ
ଉପହାସେ କହିଲେ ସେ ଦେବ ହଳପାଣି ।
ଦିବସେ କି ନାରାୟଣ ଦେଖିଲୁ ସ୍ୱପନ
ଜତୁ ଗୃହରେ ପାଣ୍ଡବେ ହୋଇଲେ ଦହନ ।
ତେତେବେଳେ ଆମ୍ଭେ ପରା ଦେଖିବାକୁ ଗଲୁ
ଦଗ୍‌ଧ ହେଉଅଛନ୍ତି ପ୍ରତ୍ୟକ୍ଷ ଦେଖିଲୁ ।
ପଞ୍ଚପାଣ୍ଡବ ଆବର କୁନ୍ତୀ ପୁରୋଚନ
ଠାବେ ଠାବେ ଦେଖିଲି ଯେ ତାଙ୍କ ଚିହ୍ନବର୍ଣ୍ଣ ।
କହୁଛୁ ତୁ ଅଗୋଚର କଥା ବାସୁଦେବ
କେମନ୍ତେ କାହିଁ ବରତି ଅଛନ୍ତି ପାଣ୍ଡବ ।
ନାରାୟଣ ବୋଇଲେ ଭୋ ଦେବା ହଳହସ୍ତ
ଭାରା ନିବାରଣ ଅର୍ଥେ ପାଣ୍ଡବେ ସମ୍ଭୁତ ।
ଦେବକୁଳେ ଅଛନ୍ତି ଯେ ଦେବ ସୁରପତି
ଋଷିକୁଳେ ଅଛନ୍ତି ଯେ ବ୍ୟାସ ମହାଯତି ।
ରାଜକୁଳେ ଅଛଇ ଯେ ମହାତ୍ମା ବିଦୂର
ମନ୍ତ୍ରୀ ଚୂଡ଼ାମଣି ଅଛି ସହଦେବ ବୀର ।
ଏହାଙ୍କ ଥାଉଁ କି ହେବ ପାଣ୍ଡବଙ୍କ ମୃତ୍ୟୁ
ତଥ୍ୟ ନ ଜାଣିଲୁ ସ୍ୱାମୀ ମତିଭୋଳ ହେତୁ ।
ଯେବେ ହୋଇଥାନ୍ତା ଦେବ ପାଣ୍ଡବଙ୍କ ମୃତ୍ୟୁ
ମୋତେ ତୁ ସ୍ୱାମୀ ଆବର ପାଶେ କି ଦେଖନ୍ତୁ ।
ପାଣ୍ଡବେ ମୋ ପିଣ୍ଡ ମୁହିଁ ଥାଇ ତାଙ୍କ ହୃଦେ
ଉତପତ୍ତି ହୋଇଅଛୁ ଏ ଭୁବନ ମଧ୍ୟେ ।
ଜଗନ୍ନାଥଙ୍କର ଏହି ଦୃଢ଼ ବାକ୍ୟ ଶୁଣି
ବଳରାମ ବିସ୍ମୟ ଯେ ହେଲେ ମନେ ଗୁଣି ।
ମୁହିଁ ତୋର ଜ୍ୟେଷ୍ଠ ଭାଇ ମୋତେ ତୋର ମାୟା
ପାଣ୍ଡବଙ୍କ ପ୍ରତି ପୁଣି ଥାଇ ଏଡ଼େ ଦୟା ।
ପାଣ୍ଡବ ଦରଶନେ ଯେ ମୋତେ ଘେନିଗଲୁ
ମୃତପିଣ୍ଡ ଦେଖି ମୂର୍ଚ୍ଛାଗତ ତୁ ହୋଇଲୁ ।
ଭୂମିରେ ପଡ଼ି ରୋଦନ କରୁଥିଲୁ କାହ୍ନା
କରିଥିଲି ସେହି କାଳେ ମୁହିଁ ଆଶ୍ୱାସନା ।
ସେ କଥା ତୋହର ବାବୁ କେଉଁଆଡ଼େ ଗଲା
ଏତେ କାଳେ ଆସି ବାବୁ ଏମନ୍ତ ହୋଇଲା ।
ମୋ ପ୍ରତି ହୃଦରେ ତୋର ଏଡ଼େ ମାୟାକଥା
ତୋର ସଙ୍ଗେ ହରି ଆଉ ନ ଥିବି ସର୍ବଥା ।
ଏତେ ବୋଲି ବଳରାମ ରାଗେ ଉଠିଗଲେ
ମୁଁ ତା ମୁଖ ନ ଚାହିଁବି ବୋଲି ସେ ବୋଇଲେ ।
କାଦମ୍ବରୀପାନେ ସଦା ଭୋଳ ଯାର ମତି
ଥୋକାଏ ଦୂରକୁ ଯାଇ ମନରେ ଭାବନ୍ତି ।
ଆମ୍ଭେ ଯେବେ ଚାଲିଯିବୁ ରାଗେ ଏଥୁଁ ଆଜ
ବୋଲିବ ପାଣ୍ଡବେ ଦୟା ନାହିଁ ଦେବରାଜ ।
ଏତେକ ବିଚାରି ରାମ ତହୁଁ ବାହୁଡ଼ିଲେ
ବିମନ ହୋଇ ଶ୍ରୀକୃଷ୍ଣ ସନ୍ନିଧେ ମିଳିଲେ ।
ଶ୍ରୀହରିଙ୍କୁ କିଛିକ୍ଷଣ ପରେ ସେ କହନ୍ତି
ସତେ କି ପାଣ୍ଡବମାନେ ଅଛନ୍ତି ବରତି ।
କୁଶଳେ ଅଛନ୍ତି ଯେବେ ସେହି ପାଞ୍ଚଭାଇ
ଜଉ ଘରେ ଦଗ୍ଧ କିଏ ହେଲେରେ କହ୍ନାଇ ।
ଗୋବିନ୍ଦ ବୋଇଲେ ଶୁଣ ସ୍ୱାମୀ ନୀଳାମ୍ବର
ପାଣ୍ଡବଙ୍କୁ ମାରିବାକୁ କଲା ଜତୁ ଘର ।
କକଡ଼ା ଶୁକ୍ଳ ପଞ୍ଚମୀ ତିଥି ଭୌମବାର
ଘୋର ବରଷା ହୋଇଲା ଦେବ ସେ ଦିନର ।
ଅଜ ନାମେ ଥିଲା ଦେବ ଏକଇ କିରାତ
ସେ କିରାତ ନାଶଗଲା ପାଇ ବଜ୍ରାଘାତ ।
କିରାତୁଣୀ ପଳାଇଲା ଘେନି ପାଞ୍ଚ ପୁତ୍ର
ଆଉଜିଲେ ଜତୁ ଘରେ ଯାଇ ନିଶା ରାତ୍ର ।
ଜୟନ୍ତୀ ତା ନାମ ଶୁଣି କୁନ୍ତୀ କଲେ ପ୍ରୀତି
ଘର ଭିତରକୁ ନେଲେ ସେହି ନିଶାରାତି ।
ପାଞ୍ଚ ଗୋଟି ପୁତ୍ର ଘେନି ରହିଲା ସେ ଘରେ
ପୁରୋଚନ ପଣ୍ଡା ଆଗୁ ଥିଲା ସେହିଠାରେ ।
ଭୀମ ପୁର ଦଗ୍ଧ କଲେ ସେ ସମସ୍ତ ମଲେ
ପାଣ୍ଡବେ ବାହାର ହୋଇ ସେହିରାତ୍ରେ ଗଲେ ।
ସୁରନଦୀ ପାର ହୋଇ ଗଲେ ପାଞ୍ଚବୀରେ
କୁମ୍ଭୀର ଦୈତ୍ୟକୁ ଭୀମ ମାଇଲେ ଜଳରେ ।
ଶବରୁଣୀ ପଞ୍ଚପୁତ୍ର ପୁରୋଚନ ଏହି
ସାତଜଣ ପୋଡ଼ି ମଲେ ଜତୁ ଘରେ ରହି ।
ପୂର୍ବ କର୍ମ ଦୋଷେ ତାଙ୍କୁ ପଡ଼ିଲା ପ୍ରମାଦ
ପାଣ୍ଡବେ ବିନାଶ ଗଲେ ଶୁଭିଲା ଶବଦ ।
ପାଣ୍ଡବେ ସେଠାରୁ ଦେବ ଗୁପ୍ତ ହୋଇଗଲେ
ନାନା ଦୁଷ୍ଟ ଦାନବଙ୍କୁ ସେଠାରେ ନାଶିଲେ ।
ହିଡ଼ିମ୍ବକ ନାଶ କଲେ ହିଡ଼ିମ୍ବକ ବନେ
କିନ୍ନର ଦୈତ୍ୟକୁ ବଧ କଲେ ମଧୁବନେ ।
ଶିବପୁରେ ବିଷ୍ଣୁକର ଘରେ ବାସ କଲେ
ଚଣ୍ଡାଳ ବଳ ମାରିଣ ତାକୁ ରାଜ୍ୟ ଦେଲେ ।
ଏକଚକ୍ର ନଗ୍ରେ କଲେ ବକାସୁର ନାଶ
ଅଙ୍ଗାର ପନ୍ନଗ ଜିଣି ଅରଣ୍ୟେ ପ୍ରବେଶ ।
ବ୍ରାହ୍ମଣ ସଭାରେ ବିଜେ ଯୁଧିଷ୍ଠି ଠାକୁର
କହୁଛନ୍ତି ହଳଧର ଅଗ୍ରେ ଚକ୍ରଧର ।
ନାରାୟଣ ବଚନରେ ଦେବ ସଙ୍କର୍ଷଣ
ବୋଇଲେ କୁଶଳେ ଥାନ୍ତୁ ସେହି ଚାରିଜଣ ।

ଏକା ମରନ୍ତା ଯେବେ ସେ ଭୀମା ବଡ଼ ମନ୍ଦ
ଆମ୍ଭ ସଙ୍ଗତରେ ପୁଣି ଆରମ୍ଭଇ ଦ୍ୱନ୍ଦ୍ୱ ।
ଆମ୍ଭଙ୍କୁ ଦେଖିଲେ ସେହି ବସେ ପିଠି କରି
ତାହାଠାରେ ହରି ରାଗ ଅଛଇ ଆମ୍ଭରି ।
ଗୋବିନ୍ଦ ବୋଇଲେ ଯେବେ ଭୀମ ନାଶ ଯିବ
ପୃଥିବୀର ଭାରା କିଏ ଉଶ୍ୱାସ କରିବ ।
ଏମାନେ ସେ ବସିଛନ୍ତି ମହା ମହା ବୀର
ପୃଥ୍ୱୀ ନ ସହଇ ଦେବ ଏହାଙ୍କର ଭାର ।
ବଳରାମ ପଚାରିଲେ ଗୋବିନ୍ଦ ବଚନେ
ଧୃତରାଷ୍ଟ୍ର ପୁତ୍ରମାନେ ବଞ୍ଚିବେ କେସନେ ।
ପାଣ୍ଡବଙ୍କ ପ୍ରତି ଯେବେ ତୁ ଏଡ଼େ ସଦୟ
ନିଶ୍ଚୟ ବିନାଶ ଗଲେ ଗାନ୍ଧାରୀ ତନୟ ।
ବଳରାମ ପଚାରିଲେ ଶୁଣରେ କହ୍ନାଇ
ବିନ୍ଧିବାକୁ ନ ଆସଇ ଅର୍ଜୁନ କିମ୍ପାଇଁ ।
ଜଗନ୍ନାଥ କାମପାଳ ସ୍ୱାମୀଙ୍କୁ ବୁଝାଇ
ବିନ୍ଧିବାକୁ ଠାକୁରଙ୍କ ଆଜ୍ଞା ହୋଇ ନାହିଁ ।
କିମ୍ପା ଆଜ୍ଞା ନ ଦିଅନ୍ତି ତାକୁ ଧର୍ମ ସୁତ
ଦେଖିବାନା କୁତୂହଳେ ଲାଖ ବିନ୍ଧୁ ପାର୍ଥ ।
କାହୁଁ ଆଜ୍ଞା ଦେବେ ତାକୁ ଯୁଧିଷ୍ଠି ଠାକୁର
ରାଜା ଏ ବିନ୍ଧ ବୋଲିଛି ପାଞ୍ଚାଳ ଈଶ୍ୱର ।
ଯେ ବେଳ ବୋଲିବ ବିପ୍ରଚଣ୍ଡାଳ ପର୍ଯ୍ୟନ୍ତ
ଯେ ଲାଖ ବିନ୍ଧିବ ଦେବି ଦୁହିତା ଏ ସତ୍ୟ ।
ସେତେବେଳେ ଆଜ୍ଞା ଦେବେ ସେ ଧର୍ମଯୁଧିଷ୍ଠି
ନିମିଷକ ମାତ୍ରେ ଲାଖ ବିନ୍ଧିବ କିରୀଟି ।
ଏସନକ ବିଚାରନ୍ତେ ରାମକୃଷ୍ଣ ବେନି
ଧର୍ମ ଧର୍ମ ସୁମରନ୍ତି ମେଢ଼େ ଯାଜ୍ଞସେନୀ ।
ସଭାର ମଧ୍ୟରେ ଯାଇ ବିଜୟ ଦ୍ରୁପଦ
ଆଉ କେ ରାଜା ବିନ୍ଧିବ ଉଠ ଲାଖ ବିନ୍ଧ ।
ରାଜାମାନେ ନ ପାରିଲେ ଯେବେ ଲାଖ ବିନ୍ଧି
ପାତ୍ର ଅମାତ୍ୟ ଆବର ଅଛ ଯେତେ ଯୋଦ୍ଧୀ ।
ଯେ ଲାଖ ବିନ୍ଧିବ ମୁହିଁ ଦେବଇଁ କୁମାରୀ
ଏହା ସତ୍ୟ ସତ୍ୟ ସତ୍ୟ ବଚନ ଆମ୍ଭରି ।
ଦୈତ୍ୟ ଦାନବ ରାକ୍ଷସ ପିଶାଚ ସହିତେ
ଯେ ବିନ୍ଧିବ ପାଞ୍ଚାଳିକି ଦେବଇଁ ମୁଁ ସତ୍ୟେ ।
ସମସ୍ତେ ସନ୍ତୁଷ୍ଟ ହେଲେ ଏ ବଚନ ଶୁଣି
ପୁଣ ପୁଣ ପଚାରନ୍ତି ଦ୍ରୁପଦ ନୃମଣି ।
ବ୍ରାହ୍ମଣଠାରୁ ଚଣ୍ଡାଳଯାଏ ମୁହିଁ ବରି
ଯେ ଲାଖ ବିନ୍ଧିବ ଦେବି ମୋହର କୁମାରୀ ।
ଦ୍ରୁପଦ କହିଲେ ଯହୁଁ ଏମନ୍ତ ବଚନ
ଯୁଧିଷ୍ଠି ଦେବ ଚାହିଁଲେ ଅର୍ଜୁନ ବଦନ ।

ସ୍ୱାମୀଙ୍କ ସମ୍ମତ ଜାଣିପାରି ଯେ ଫାଲଗୁନି
ସଭା ମଧ୍ୟରୁ ଉଠିଲେ ତାଙ୍କ ଆଜ୍ଞା ଘେନି ।
ଅର୍ଜୁନ ଉଠନ୍ତେ ଦେଖି ସଭା ଦ୍ୱିଜ ଜନ
ସମସ୍ତେ ଘେରି କହିଲେ ପାର୍ଥଙ୍କୁ ଏସନ ।
ଆହେ ପଣ୍ଡା ତୁମ୍ଭେ ଏଥୁ ଉଠିଲ କାହିଁକି
ଲୋଭ କଲ କି ହେ ତୁମ୍ଭେ ରାଜକନ୍ୟା ଦେଖି ।
ମହାରାଜାମାନେ ଯହିଁ ପାଉଛନ୍ତି ଲାଜ
ତୋହର ସମାନେ ଆଉ ନାହିଁ କେ ନିର୍ଲଜ୍ଜ ।
ବିଶେଷ ବ୍ରାହ୍ମଣ ତୁମ୍ଭେ ସର୍ବଧନ କୁଶ
ରାଜାର କୁମାରୀ ତୋର ହେବ ଅବା କିସ ।
ଲାଖ ବିନ୍ଧିବୁ ଯେବେ ତୁ ନ ପାରିବୁ ବର୍ତ୍ତି
ବ୍ରାହ୍ମଣକୁ ମାର ବୋଲି ମାରିବେ ସବୃନ୍ତି ।
ଅନେକ ଦୂରରୁ ଆସି କରିଅଛୁ ଆଶା
ଜୀବନଯାକ ଆମ୍ଭର ଦାନ ହିଁ ଭରସା ।
ବ୍ରାହ୍ମଣ କୁଳକୁ ହେଲୁ କଣ୍ଟକ ତୁ ବାବୁ
ଦାନ ହିଁ ନ ପାଇବୁ ଯେ ପ୍ରାଣେ ନାଶ ଯିବୁ ।
ଦଦରା ଛତା ଆବର ଛିଣ୍ଡା ଯେ ପାଣ୍ଡୋଇ
ହରି ଗୋବିନ୍ଦ ମୁଣି ଏ ତିନିଙ୍କୁ ପକାଇ ।
ବ୍ରାହ୍ମଣମାନେ ପାର୍ଥକୁ ଧରି ବସାଇଲେ
ଏ ଚରିତ୍ରମାନ ରାଜା ଦ୍ରୁପଦ ଦେଖିଲେ ।
ବ୍ରାହ୍ମଣ ସଭାରୁ ଏକ ବିପ୍ର ଆସୁଥିଲେ
ସମସ୍ତ ବ୍ରାହ୍ମଣେ ମିଳି ତାଙ୍କୁ ନିରୋଧିଲେ ।
ଦୃଷ୍ଟଦ୍ୟୁମନକୁ ଚାହିଁ ଦ୍ରୁପଦ ବୋଇଲା
ଆଦ୍ୟହୁଁ କ୍ଷତ୍ରୀୟପଣ ବିପ୍ରଙ୍କର ଥିଲା ।
ବିପ୍ରକୁଳେ ପର୍ଶୁରାମ ହେଲେ ଉତପନ୍ନ
ଏକୋଇଶ ବାର କଲେ କ୍ଷତ୍ରୀୟେ ନିଧନ ।
କେବଣ ମହାତ୍ମା ଅବା ଗୁପତେ ଅଛଇ
ବ୍ରାହ୍ମଣ ସଭାକୁ ଚାହିଁ ଦ୍ରୁପଦ ବୋଲଇ ।
ଧନୁର୍ବିଦ୍ୟାରେ ପାରଗ ଅଟେ ଯେଉଁ ନର
ଲାଖ ବିନ୍ଧିଲେ କନ୍ୟାକୁ ଦେବି ତା ହସ୍ତର ।
ପୁଣି ଯୁଧିଷ୍ଠି ଚାହିଁଲେ ବିଭସ୍ତୁ ବଦନ
ବାହାନାଦ କରି ବେଗେ ଉଠିଲା ଅର୍ଜୁନ ।
ପୁଣି ହିଁ ବେଢ଼ିଲେ ତାଙ୍କୁ ଉଠି ବିପ୍ରମାନେ
ବୋଇଲେ ମନ୍ଦ ପ୍ରକୃତି ନିର୍ଲ୍ଲଜ ବଦନେ ।
ବ୍ରାହ୍ମଣ ହୋଇ କିମ୍ପାଇଁ ଏତେକ ସାହସ
ଇନ୍ଦ୍ରପଦକୁ ଲୋଭରେ କରୁଛୁ ମାନସ ।
ବ୍ରାହ୍ମଣମାନେ ସ୍ୱଭାବେ ଆମ୍ଭେ ତ ଭିକ୍ଷାଷୀ
ରାଜକୁମାରୀ କି ଦେଖି ଆଶା କରୁ ଆସି ।
ଅର୍ଜୁନର ହସ୍ତ ଧରି ସେ ବ୍ରାହ୍ମଣମାନେ
ପଚାରନ୍ତି ଯୁଧିଷ୍ଠିର ଦେଖି ସନ୍ନିଧାନେ ।

ଏ ପଣ୍ଡା ତୁମ୍ଭର କିସ ପଣ୍ଡା ହେ ହୁଅନ୍ତି
ଯୁଧିଷ୍ଠି ବୋଇଲେ ଭାଇ ଆମ୍ଭର ଅଟନ୍ତି ।
ଏ ଯେବେ ଭାଇ ହୁଅନ୍ତା ପଣ୍ଡାଏ ତୁମ୍ଭର
ଏଡ଼େ ଦୁଷ୍ଟକୁ କିପାଇଁ ଆଣିଛ ସଙ୍ଗର ।
ଅନେକ ଦୂର ଅଇଲୁ ଆମ୍ଭେ ଦାନ ଆଶେ
ଏହାଯୋଗେ ସମସ୍ତେ ତ ଯିବୁ ଯମପାଶେ ।
ଯୁଧିଷ୍ଠି ବୋଇଲେ ରହ ରହ ଦ୍ୱିଜବରେ
ଲାଖ ନ ବିନ୍ଧିଲେ ଲାଜ ପାଇବ ସଭାରେ ।
ବିନ୍ଧି ନ ପାରିଲେ ସେ କି ନ ପାଇବ ଲାଜ
ତୁମ୍ଭେ କିମ୍ପାଇଁ ନିଷେଧ କରୁଛ ହେ ଦ୍ୱିଜ ।
ଯାହାର ଶରୀରେ ଅଛି ବଳ ଗୁଣ ବିଦ୍ୟା
ସାଧି ନ ଥିଲେ କି କରେ ଯିବାପାଇଁ ଶ୍ରଦ୍ଧା ।
ଯୁଧିଷ୍ଠିର କର ଧରି ଦେଖନ୍ତି ଭୀମକୁ
ଏ ପଣ୍ଡା ନ ଗଲେ କିମ୍ପା ଲାଖ ବିନ୍ଧିବାକୁ ।
ଅର୍ଜୁନର କର ଧରି ଦେଖାନ୍ତି ଯୁଧିଷ୍ଠି
ଦେଖ ବେନି ଭୁଜେ ପଳି ଅଛଇ ଅଙ୍ଗୁଷ୍ଠି ।
ଆହେ ପଣ୍ଡା ତୁମ୍ଭେ ସୁଖେ ଯାଇ ଲାଖ ବିନ୍ଧ
ସମସ୍ତେ କଲ୍ୟାଣ କର ନ କର ନିଷେଧ ।
ଯେବେ ବ୍ରାହ୍ମଣ ଏ ଲାଖ ବିନ୍ଧିବ ହେ ଦ୍ୱିଜେ
ସାଧୁବାଣୀ ପାଇବ ବା ଏ ସାଧୁସମାଜେ ।
କ୍ଷତ୍ରୀୟମାନଙ୍କ ମୁଖେ ଲାଗିଯିବ କାଳି
ପାଇବା ଆମ୍ଭେ କ୍ଷତ୍ରୀୟ ଦୁହିତା ପାଞ୍ଚାଳୀ ।
ଦୁଷ୍ଟ ରାଜାଏ ଦେଖିଲେ ଆମ୍ଭଙ୍କୁ ଡରିବେ
ଲାଜ ପାଇ ଏ ସଭାରୁ ଉଠି ପଳାଇବେ ।
ସମସ୍ତ ବିପ୍ର କଲ୍ୟାଣ କଲେ ହସ୍ତ ଟେକି
ଲାଖ ବିନ୍ଧି ପ୍ରାପ୍ତ ତୋତେ ହେଉ ଶଶିମୁଖୀ ।
ଶୁଦ୍ଧଚିତ୍ତେ ଏହି ଆଜ୍ଞା ଦେଲେକ ଯୁଧିଷ୍ଠି
ଶତ୍ରୁ ମାରି ଉଭା ହୁଅ ତ ରହୁ ଅରିଷ୍ଟି ।
ସମସ୍ୟା କରନ୍ତି ହରି ଭାଇଙ୍କ ସଙ୍ଗରେ
ଚକ୍ଷୁ ରହିଅଛି ଏଣେ ବ୍ରାହ୍ମଣ ସଭାରେ ।
ଦେଖିଲେ ଅର୍ଜୁନ ପାଦ ଗତିର ବିକ୍ରମ
ଆସ୍ଥାନ ତେଜି ଉଠିଲେ ପୁରୁଷ ଉତ୍ତମ ।
ବଦନ୍ତି ମୁଁ ଆଜି ନିସ୍ତରିଲି ନିସ୍ତରିଲି
ପ୍ରାଣସଖା ଅର୍ଜୁନକୁ ମୋହର ଦେଖିଲି ।
ଯେତେକ ଦୁଷ୍କୃତ ମୋର ଶରୀରରେ ଥିଲା
ତୋର ମୁଖ ଦେଖି ବାବୁ ସବୁ ନାଶ ଗଲା ।
ଏପରି ହୁଅନ୍ତେ କୃତ୍ୟ କୃତ୍ୟ ମଧୁରିପୁ
ଦେଖି ବଳରାମଙ୍କର ଶୁଖିଗଲା ବପୁ ।
ପାଦ ଗତିରେ ଚଳଇ ବୀର ଫାଲଗୁନି
ଦେଖି ସାନନ୍ଦ ହୋଇଲେ ବ୍ୟାସ ମହାମୁନି ।

ବିଦୁର ବୋଇଲେ ମୁହିଁ ନିସ୍ତରିଲି ଆଜ
ଦେଖିଲି ମୁଁ ଅର୍ଜୁନକୁ ସଫଳ ମୋ କାର୍ଯ୍ୟ ।
କର୍ଣ୍ଣର ମୁଖକୁ ଚାହିଁ ବୋଲେ ଦୁଃଶାସନ
ଦେଖିଲ ତ ବ୍ରାହ୍ମଣଙ୍କ ଚରିତ ଏସନ ।
ପଠାଇଦେଲେ ବ୍ରାହ୍ମଣେ ବିଚାରିଣ ଜଣେ
ଉପହାସ ପାଇ ଏଥୁ ଯାନ୍ତୁ ରାଜଗଣେ ।
ଦୁର୍ଜ୍ଜୟ ବୋଇଲା ଅସ୍ତ୍ର ସମସ୍ତ ହୋ ଧର
ମାରିବା ସେଠାରେ ମରୁ ଦୃଷ୍ଟ ଦ୍ୱିଜବର ।
ଦୁଷ୍ଟ ବ୍ରାହ୍ମଣ ଆବର ଲମ୍ପଟ ବୈରାଗୀ
ମନ୍ଦ ଭ୍ରଷ୍ଟାକୁଳସ୍ତିରୀ ତପୀ ଧନ ଭୋଗୀ ।
ଶାସ୍ତ୍ର ଧର୍ମ ଏହି ମତେ ଜାଣ ଲେଖାଅଛି
ଏମନଙ୍କୁ ମାରିଲେ ଯେ ପାପ ନାହିଁ କିଛି ।
ଦୁର୍ଯ୍ୟୋଧନ ବୋଲେ ରହ ରହ ଦୁଃଶାସନ
ବ୍ରାହ୍ମଣ ପ୍ରତି ମନରେ ନ ଧର ତୁ ଆନ ।
ଏ ମହାଲାଖକୁ ବିନ୍ଧୁଯାଇ ଏ ବ୍ରାହ୍ମଣ
ରାଜକନ୍ୟା କି କରିବ ଏ ଭିକ୍ଷାର୍ଥୀ ଜନ ।
ଧନଗୁଡ଼ାଏ ଏହାକୁ ଆମ୍ଭେ ନେଇ ଦେବା
କନ୍ୟା ରତ୍ନକୁ ହସ୍ତିନାପୁରେ ଘେନିଯିବା ।
ଏସନ ବୋଇଲା ଯହୁଁ ଯେ ମାନଗୋବିନ୍ଦ
ସମସ୍ତେ ବୋଇଲେ ଆହେ ବିପ୍ର ଲାଖ ବିନ୍ଧ ।
ଭୀଷ୍ମ ପଚାରିଲେ ତହିଁ ଦ୍ରୋଣ ମୁଖ ଚାହିଁ
ଆହେ ଦ୍ରୋଣ ଏହାକୁ ମୁଁ ଦେଖିଅଛି କାହିଁ ।
ଚିହ୍ନିପାରୁଛ କି ତୁମ୍ଭେ ବ୍ରାହ୍ମଣ ଗୋଟିକି
ଚିତ୍ତରେ ମୋର ଆନନ୍ଦ ଉପୁଜେ କାହିଁକି ।
ଦ୍ରୋଣ ବୋଇଲେ ପ୍ରତ୍ୟକ୍ଷେ ଅର୍ଜୁନର ଚାଲି
ଭୀଷ୍ମ ବୋଇଲେ ସେ କଥା ଯାଇଥିଲି ଭୁଲି ।
କାହୁଁ ପାଇବା ସେ ପଞ୍ଚପାଣ୍ଡବଙ୍କୁ ଆଉ
ମଲାଲୋକ ଜୀଇ ଉଠି ଆସିବେ ବା କାହୁଁ ।
ଦ୍ରୋଣ ବୋଇଲେ ଆମ୍ଭେ ତ ଅଟୁ ବର ଜାତି
ଏତେବେଳେ ବର ଜାଣ ମିଳିଲାକ ଏଥି ।
ବିପ୍ର କି କ୍ଷତ୍ରିୟ ଏହା ଜାଣିବା କେସନେ
ଭୀଷ୍ମ ବୋଇଲେ ହେ ଦ୍ରୋଣ ଦେଖ ରହି କ୍ଷଣେ ।
ସାନନ୍ଦେ ବୋଇଲେ ପୁଣି ଦ୍ରୋଣ ମହାରଥି
ନିଶ୍ଚୟ ପାଣ୍ଡବମାନେ ଅଛନ୍ତି ହୋ ବର୍ତ୍ତି ।
ଅର୍ଜୁନର ପ୍ରତିଜ୍ଞା ହୋ ଏହିକ୍ଷଣେ ଦେଖ
ସଭା ମଣ୍ଡିଲାଣି ନିଶ୍ଚେ ବିନ୍ଧିବ ଏ ଲାଖ ।
ଭୀଷ୍ମ ବୋଇଲେ କହୁଛ ଏ ବଡ଼ ଦୁର୍ଲ୍ଲଭ
ଭସ୍ମ ଅଙ୍କୁରିବାକୁ କି କରିବା ସମ୍ଭବ ।
ଜତୁ ଘରେ ଦଗ୍ଧ ହେଲେ ଦେଖିଲୁ ସାକ୍ଷାତେ
ନ ଚିହ୍ନିବା ଯାଏ ତଥ୍ୟ ଜାଣିବା କେମନ୍ତେ ।

ଆମ୍ଭେ ତ ଏହାକୁ ଦ୍ରୋଣ ନ ପାରୁଛୁ ଚିହ୍ନି
ସତେ କି ହୋଇବ ଏହି ବୀର ଫାଲଗୁନି ।
ତାହାଙ୍କର ଗୁଣ ମନେ ପଡ଼େ ଯେତେବେଳେ
ହୃଦୟ କରତି ହୁଏ ତିନ୍ତି ଅଶ୍ରୁଜଳେ ।
ଦ୍ରୋଣ ବୋଇଲେ ହେ କ୍ଷଣେ ସ୍ଥିର ହୋଇଥିବ
ଘଡ଼ିକରେ ସତ ମିଛ ସମସ୍ତ ଜାଣିବ ।
ଦ୍ରୁପଦ ରାଜା ବାଢ଼ିଛି ଉପହାରମାନ
ଧନୁଶର ଗଦାବର ଖଡ଼ଗ ପୋଥି ଧନ ।
ଦରିଦ୍ର ଆସିବେ ଯେବେ ଲାଖ ବିନ୍ଧିବାକୁ
ସେ ରହି ଚାହିଁବ ଧନ ରତନ କୁଢ଼କୁ ।
ଲାଖ ବିନ୍ଧିବାକୁ ବୀର ଯେବେ କି ଆସିବ
ଗଦାବର ଖଡ଼ଗକୁ ଧରି ଆମୋଞ୍ଚିବ ।
କ୍ଷତ୍ରିୟ ହୋଇ ଆସିବ ଯେବେ ଲାଖ ବିନ୍ଧି
ଧନୁ ଧରି ଆମଞ୍ଚିବ ତହିଁ ଶର ସନ୍ଧି ।
ଯେବଣ ବୀର ଅଟଇ ନାରାୟଣ ଭକ୍ତ
ପୁରାଣ ପୁସ୍ତକ ଛୁଇଁ ଲଭୁ ଦେବ ଚିତ୍ତ ।
ଏସନ ସମ୍ଭାର ଯେ କରିଛି ନୃପନାଥ
କିଏ କିପରି ବୋଲିଣ ଜାଣିବାର ତଥ୍ୟ ।
ଏମନ୍ତେ ସେ ବୋଲା ବୋଲି ସଭାରେ ହୁଅନ୍ତେ
ଆଶିଷ ପ୍ରଦାନ କଲେ ବ୍ରାହ୍ମଣ ସମସ୍ତେ ।
ଅର୍ଜ୍ଜୁନ ସେଠାରେ ଯାଇ ହୋଇଲେ ପ୍ରବେଶ
ଧନୁକୁ ଦେଖି ବୋଇଲେ ପ୍ରୟୋଜନ କିସ ।
ଧନ କୁଢ଼ମାନ ଜିଣିଗଲା ବୀରପାର୍ଥ
ଧନୁକୁ ଦେଖି ବଢ଼ାଇ ଦେଲେ ବାମହସ୍ତ ।
ମାରି ଅମାଞ୍ଚି ଥୋଇଲେ ପୁଣି ସେ ଭୂମିରେ
ଭୀଷ୍ମକୁ କହିଲେ ଦ୍ରୋଣ ପୁଣି ସେ ସଭାରେ ।
ଆହେ ଭୀଷ୍ମ ଏଡ଼େ ଯେବେ ଭୀଷ୍ମକ ହୁଅନ୍ତା
ଧନ ଅଳଙ୍କାର ନେଇ ଅଙ୍ଗରେ ଭରନ୍ତା ।
ଧନୁ ବାହୁଡ଼ାଇ ଥୋଇ ଗଲା ଫାଲଗୁନି
ପୁସ୍ତକ ଧରି ଥୋଇଲା ଚିନ୍ତି ଚକ୍ରପାଣି ।
ବିଚିତ୍ର କଥାମାନ ଯେ ୟାର ଦେଖିଲଇଁ
ଗୁପତ ହୋଇ ବସିଛି କେଉଁ ରାଜା ଏହି ।
ଏସନକ ବିଚାର କରନ୍ତି ରାଜାଗଣ
ସ୍ତବଧ ହୋଇ ଦେଖୁଛି ରାଜା ଦୁର୍ଯ୍ୟୋଧନ ।
ଦ୍ରୁପଦ ବୋଇଲେ ନିଶ୍ଚେ ପାଇଲି ସନ୍ଦେଶ
ଏକାଳେ ଶୁଭ ଶକୁନ ଦେଖିଲି ଅବଶ୍ୟ ।
କେଶିନୀ ମୃଦୁସୁଲୀକୁ ଦ୍ରୌପଦୀ ବୋଲନ୍ତି
ବର ଏବେ ମାଳିଲା ଏମାନେ ବର ଜାତି ।
ଏ ବ୍ରାହ୍ମଣ ନିଶ୍ଚେ ମହାଲାଖକୁ ବିନ୍ଧିବେ
ଏ ନିଶ୍ଚୟ ମୋହର ଗୋ ବଲଭ ହୋଇବେ ।

କେଶିନୀ ବୋଇଲା ଏହା କର୍ମେ ଅଛି ଲେଖି
ଇଚ୍ଛା ନ ବଳିଲା ତୋର ଏ ରାଜାଙ୍କୁ ଦେଖି ।
ଭିକ୍ଷାକ୍ଷୀ ବ୍ରାହ୍ମଣ ତୋର ହେବ ମନୋହାରୀ
ରାଜାଙ୍କୁ ଛାଡ଼ି ହୋଇବୁ ତୁ ଏହାର ନାରୀ ।
ଦ୍ରୌପଦୀ ବୋଇଲେ ତୁ ଗୋ ଶୁଣ ମୃଦୁସୁଲୀ
ଯେତେବେଳେ ମୁଁ ଏହାର ବଦନ ଦେଖିଲି ।
ଫୁଲ ଶରାଘାତେ ମୋତେ ପୀଡ଼ିଲା ମଦନ
ସତେ କି କରିବେ ହରି ଦେବ ଜୀବଧନ ।
ଦୁର୍ଲ୍ଲଭ ଶକୁନମାନ ଆଗୋ ସଖୀ ଦେଖ
ଏହି ବ୍ରାହ୍ମଣ ନିଶ୍ଚୟ ବିନ୍ଧିବେ ଗୋ ଲାଖ ।
ପୂର୍ବ ଜନ୍ମେ ଥିବ ଯେବେ ତପସ୍ୟା ମୋହରି
ବ୍ରାହ୍ମଣର ଦୁହିତା ମୁଁ ହେବି ବିପ୍ରନାରୀ ।
ଏସନକ ବିଚାରି ସେ ମାହେଶ୍ୱରୀ ସତୀ
ସୁମରନ୍ତି କାମିନୀ ସେ ଅନାଦି ଶକତି ।
ଏହାଙ୍କର କରେ ଆଗୋ ଦେବୀ ବିଜେ କର
ମହାଲାଖକୁ ବିନ୍ଧନ୍ତୁ ଏହି ଦ୍ୱିଜବର ।
ଏମନ୍ତ ସମୟେ ଯାଇ ବୀର ଫାଲଗୁନି
ଲାଖ ତଳେ ଉଭା କେହି ନ ପାରିଲେ ଚିହ୍ନି ।
କ୍ଷୀଣ ହେତୁ ଉପହାସ କରନ୍ତି ସମସ୍ତେ
ଅର୍ଜ୍ଜୁନ ଧନୁ ଧଇଲେ ନେଇ ବାମହସ୍ତେ ।
ଉର୍ଦ୍ଧ୍ୱ ବାହୁ କରି ଧନୁ ତୋଳନ୍ତି ଫାଲଗୁନି
ସଭାମଧ୍ୟେ ଶୁଭିଲାକ ସାଧୁ ସାଧୁ ଧ୍ୱନି ।
ଆଗରେ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ବେନି ଭ୍ରାତ
ତାହାଙ୍କୁ ଚାହିଁ ପୁଛିଲେ ବୀରବର ପାର୍ଥ ।
ଲାଖ ବିନ୍ଧିବା ଚରିତ କହ ହେ ତୁରିତ
ଯେପରି କହିବ ବିନ୍ଧିବଇଁ ସେହି ମତ ।
ବ୍ରାହ୍ମଣର ଅଗ୍ରତରେ କହେ ଧୃଷ୍ଟଦ୍ୟୁମ୍ନ
ଶୁଣ ଆହେ ଦ୍ୱିଜବର ଲାଖର ବିଧାନ ।
ଆନ ରାଜାମାନଙ୍କୁ ଯା କରିଅଛୁ ଗୋପ୍ୟ
ତୋହର ଆଗରେ ତାହା କହୁଛୁ ସ୍ୱରୂପ ।
ଦେବତାଳ ସାତତାଳ ଅଟେ ଦେବ ଉଚ୍ଚ
ରାଧାଚକ୍ରେ ସ୍ୱର୍ଣ୍ଣମତ୍ସ୍ୟ ବୁଲଇ ସୁସଞ୍ଚ ।
ରାଧାଚକ୍ର ଅଟଇ ସେ ସହସ୍ରେକ ଧାର
ପବନୁ ବେଗେ ବୁଲଇ ଚିତ୍ରର ଆକାର ।
ତାହାର ଉପରେ ଅଛି କନକର ମାଛ
ଦ୍ୱିତୀୟ ପିନାକ ତଳେ ବଳ ଏକ ଲକ୍ଷ ।
ଉପରେ ରହିଛି ପଟା ତାଳେକ ତା କଣ୍ଟ
ତାହାର ଉପରେ ଅଛି ତୀର୍ଥ ଜଳ ଘଟ ।
ତାଳକୁ ଦେଇଣ ଦୃଷ୍ଟି ଉପରକୁ ମୁଷ୍ଟି
ଚକ୍ରଭେଦି ଯିବ ମାଛ ବାମଚକ୍ଷୁ ଫୁଟି ।

ଏସନ ପ୍ରକାରେ ଲାଖ ବିନ୍ଧିଲେ ତ ଦ୍ୱିଜ
କନ୍ୟା ରତ୍ନ ଆମ୍ଭ ଘରୁ ଘେନିଯିବ ଆଜ ।
ଅର୍ଜ୍ଜୁନ ବୋଇଲେ ବୋଲେ ଲାଖ ମୁଁ ବିନ୍ଧିବି
ବଳେ କନ୍ୟାକୁ ନେଲେ ମୁଁ କାହାକୁ କହିବି ।
ଅଛନ୍ତି ତ ରାଜାଙ୍କର ସୈନ୍ୟ ଅପ୍ରମିତ
ଗୋଳ କରନ୍ତି ସୈନିକ ମୋହର ସଙ୍ଗତ ।
ଶିଖଣ୍ଡୀ ବୋଇଲା ଦ୍ୱିଜ ନ ଭାଳ ତୁ ତାହା
ସାତ ଅକ୍ଷୌହିଣୀ ବଳ ଘେନି ହେବି ସାହା ।
ଏସନ ବଚନ ଶୁଣି ବୋଲଇ ଅର୍ଜ୍ଜୁନ
ତୁ ଏବେ ଶିଖଣ୍ଡୀ ଯାଅ ସଭାକୁ ବହନ ।
ରାଜାମାନଙ୍କୁ ଯାଇଣ ବେଗେ ତୁ ପଚାର
ଲାଖ ବିନ୍ଧିବାକୁ ମନ ଅଛିଟି ତାଙ୍କର ।
ଯେ ପାରନ୍ତୁ ଆସି ଲାଖ ବିନ୍ଧନ୍ତୁ ଯେ ଆଜ
ବ୍ରାହ୍ମଣ ବିନ୍ଧନ୍ତେ ଲାଖ ପାଇବେଟି ଲାଜ ।
ପଶ୍ଚାତେ କୋପ କରିବା ଏତ ନ ଯୋଗାଇ
ଅବରଣେ ମଧ୍ୟ ପାତ୍ର ହେଉଅଛି ମୁହିଁ ।
ଧନୁ ଧରି ମନେ ମନେ ଭୟରେ ଫାଲଗୁନି
ଏ ଧନୁରେ ଗୁଣ ଦେଇଅଛି କର୍ଣ୍ଣ ପୁଣି ।
ଗୁଣ ଦେଲା କ୍ଷତ୍ରୀୟର ଅଛି ଅଧେ ଭାଗ
କ୍ଷତ୍ରୀୟର ଧର୍ମ ଏ ଯୋଗର ଅନୁରାଗ ।
ବାମପାଦ ଦେଲେ ଲଦି ଡାହାଣ ପାଦରେ
କିଞ୍ଚିତେ ସେ ଧନୁ ପାର୍ଥ ଧରି ବାମ କରେ ।
ଗୁଣକୁ ଓହ୍ଲାଇ ପୁଣି ଧନୁ ସଳଖଇ
ଗୁଣ ଦିଏ ଧନୁ ଆଣ୍ଠୁ ଉପରେ ବସାଇ ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ସକଳ ନୃପତି
ମାନବେ ଗୋଚର ନୁହେଁ ଏ ତାର ପ୍ରକୃତି ।
ତହୁଁ ଓହ୍ଲାଇ ଭୂମିରେ ଧନୁ ପୁଣି ଥୋଇ
ଧନୁ ସଳଖିଲେ ବାମ ଆଣ୍ଠୁ ଭାରା ଦେଇ ।
ପୁଣି ବିଚାରି ଧଇଲେ ଭୈରବ ମୂରତି
ଏକ ଚରଣରେ ଉଭା ହୋଇଲେକ ପୃଥ୍ୱୀ ।
ବାମ ଆଣ୍ଠୁରେ ଡାହାଣ ପାଦ ଲଦିଦେଲେ
ଅବହେଳେ ବାସବୀ ଯେ ଗୁଣ ବସାଇଲେ ।
ଶୂନ୍ୟେ ଶୂନ୍ୟେ ଗୁଣ ଯହୁଁ ଦେଲେ ଫାଲ୍‌ଗୁନୀ
ସଭାରେ ଉଠିଲା ପୁଣି ସାଧୁ ସାଧୁ ବାଣୀ ।
ପଣ୍ଡିତଜନ ସଭାରେ ବିଚାରନ୍ତି ମନେ
ବିନ୍ଧି ନ ପାରିଲେ ଯହୁଁ ଏ ମଧ୍ୟ ଭୁବନେ ।
ଅଗ୍ନିରୁ ଜାତ ଅନଳ ସମାନ ପାଞ୍ଚାଳୀ
ଗୋପନରୂପେ ବିଜୟ ହେଲେ ଅଂଶୁମାଳୀ ।
ଆଦିତ୍ୟ ଦେବତା ଯେବେ ନେବେ ପ୍ରତିବାଦେ
ଅମରାଧି ଦେବତା କି ବିଜୟେ ଆନନ୍ଦେ ।
ବଡ଼ପଣେ ହରିବେ କି ସେ ମାନିନୀ ଯୋନି
ପୂର୍ବରେ ସେ ହରିଥିଲେ ଗଉତମ ପତ୍ନୀ ।
ବ୍ରାହ୍ମଣ ସ୍ୱରୂପ ଧରି କଲେ ଅବେଭାର
ଇନ୍ଦ୍ର ଆଦିତ୍ୟ ନୋହିଲେ ଅଟଇ କୁବେର ।
ଏସନକ ବିଚାରନ୍ତି ସଭାରେ ସେ ରାୟ
ଧନୁରେ ନାରାଚ ଯୋଚି ବୀର ଧନଞ୍ଜୟ ।
ଦ୍ରୋଣ ଗୁରୁ ଦୁର୍ଯ୍ୟୋଧନ ସଭାରେ ଅଛନ୍ତି
ରାଜାମାନେ ଅପଲକ ନେତ୍ରେ ଚାହିଁଛନ୍ତି ।
ନାରାଚ ପୁରାଇ ବୀର ଭୂମିକି ବିନ୍ଧିଲେ
ଦ୍ରୋଣ ନାମ ଧରି ହସ୍ତ ମଥାରେ ଯୋଚିଲେ ।
ସଭାମଧ୍ୟେ ଥାଇ ଦ୍ରୋଣ ଗୁରୁ ତା ଦେଖିଲେ
କର ଦୁଇକି ପ୍ରସାରି କଲ୍ୟାଣ ବାଞ୍ଛିଲେ ।
ବିଦ୍ୟା ଯଶ ହେଉ ତୋତେ କନ୍ୟା ଲାଭ ହେଉ
ଯେ ତୋହର ମନବାଞ୍ଛା କାର୍ଯ୍ୟ ସିଦ୍ଧି ହେଉ ।
ଆମ୍ଭର ଆୟୁଷ ଘେନି ଶତ୍ରୁକୁ ନିପାତ
ପଞ୍ଚକଟକ ମାରିଣ କର ଏକଛତ୍ର ।
ଅମର ସ୍ୱର୍ଗପୁରରେ ଛନ୍ତି ମଘବାନ
ତାଙ୍କୁ ନମସ୍କାର କଲେ କୁନ୍ତୀଙ୍କ ନନ୍ଦନ ।
ଦେଖିଣ କଲ୍ୟାଣ କଲେ ଦେବ ପୁରନ୍ଦର
ବିଦ୍ୟା ଲାଭ ହେଉ କନ୍ୟା ପ୍ରାପ୍ତ ହେଉ ତୋର ।
ଶତ୍ରୁ ମାରି ପଞ୍ଚରାଜ୍ୟେ ଏକଛତ୍ର କର
ସପତ ଦ୍ୱୀପରେ ହୁଅ ଏକ ଦଣ୍ଡଧର ।
ଦକ୍ଷିଣକୁ ମୁଖ କରି ବୀର ଫାଲଗୁନି
ଜଗନ୍ନାଥ ନାମ ଧରି କରଇ ଦଇନି ।
ଗୋବିନ୍ଦ ବୋଇଲେ ଦେବସ୍ୱାମୀ ନୀଳାମ୍ବର
ତୁମ୍ଭଙ୍କୁ ଯେ ନମସ୍କାର କରେ ଦ୍ୱିଜବର ।
ବେଗେ ଯେ ତୁମ୍ଭେ ତାହାକୁ ଏ କଲ୍ୟାଣ କର
ମନୋବାଞ୍ଛା ସିଦ୍ଧ ହେଉ ସେ ଦ୍ୱିଜବରର ।
କଲ୍ୟାଣ ବାଞ୍ଛା ନ ଆସେ ରାମଙ୍କର ଚିତ୍ତେ
ଅକଲ୍ୟାଣ ବାଞ୍ଛା ସଦା ଆସଇ ହୃଦଗତେ ।
କୃଷ୍ଣଙ୍କ ଡରେ ବୋଇଲେ ବାଞ୍ଛା ସିଦ୍ଧ ହେଉ
ତୋ ଲାଖବିନ୍ଧାରେ କନ୍ୟା ଦୁର୍ଯ୍ୟୋଧନ ହେଉ ।
ହସିଲେ ରାମଙ୍କ ମନ ଜାଣିଣ ମୋହନ
ଆପେ ଆଶିଷ ପ୍ରଦାନ କରନ୍ତି ସେକ୍ଷଣ ।
ବିଦ୍ୟା ଲାଭ ହେଉ ବାବୁ କନ୍ୟା ଲାଭ ହେଉ
ପଞ୍ଚରାଜ୍ୟେ ରାଜା ହୁଅ ଶତ୍ରୁ କ୍ଷୟ ଯାଉ ।
ପୃଥିବୀରେ ଭାରାଭର ନିପାତ ତୁ କର
ପଞ୍ଚକଟକ ମଧ୍ୟରେ ହୁଅ ନୃପବର ।
ବ୍ରାହ୍ମଣ ସଭାରେ ରହି ଅଛନ୍ତି ଯୁଧିଷ୍ଠି
ତାହାଙ୍କୁ ଯେ ନମସ୍କାର କରିଲା କିରୀଟି ।

ଯୁଧିଷ୍ଠି ବୋଇଲେ ଆହେ ବ୍ରାହ୍ମଣ ଗୋସାଇଁ
ସେ ଲାଖ ବିନ୍ଧାକୁ ଦେଖ ସାବଧାନ ହୋଇ ।
ନମସ୍କାର କରୁଅଛି ବ୍ରାହ୍ମଣ ସଭାକୁ
ସମସ୍ତେ ମିଳି କଲ୍ୟାଣ କରିବ ନା ତାକୁ ।
ଯୁଧିଷ୍ଠିଙ୍କ ମୁଖୁ ଶୁଣି ଏପରି ବଚନ
ମନେ ପୁଲକିତ ହେଲେ ସମସ୍ତ ବ୍ରାହ୍ମଣ ।
ସର୍ବ ସଭାଜନ ଉଠି ହସ୍ତ ପ୍ରସାରିଲେ
ତୋର ମନବାଞ୍ଛା ସିଦ୍ଧ ହେଉ ଯେ ବୋଇଲେ ।
ବିଦ୍ୟା ଲାଭ ହେଉ ତୋତେ କନ୍ୟା ହେଉ ପ୍ରାପ୍ତ
ଦୁଷ୍ଟ ରାଜାଙ୍କର ଦର୍ପ ହର ତୁ ତୁରିତ ।
ଏମନ୍ତ କଲ୍ୟାଣ ଯହୁଁ କଲେ ବିପ୍ରସଭା
ଜ୍ୟେଷ୍ଠ ତାତଙ୍କୁ ସେ କଲେ ମନେ ମନେ ସେବା ।
ଋଷିଙ୍କ ସଙ୍ଗେ ଅଛନ୍ତି ବ୍ୟାସ ମହାମୁନି
ତାହାଙ୍କୁ ଯେ ନମସ୍କାର କରଇ ଫାଲଗୁନି ।
ମାର୍କଣ୍ଡ ବୋଇଲେ ଲାଖ ବିନ୍ଧେ ଯେ ବ୍ରାହ୍ମଣ
ଏ କିଏ ତୁମ୍ଭେ ତାହାକୁ ଜାଣ କି ନ ଜାଣ ।
ବ୍ୟାସ ବୋଇଲେ ମୁଁ ତୁମ୍ଭ ଆଗେ କହିପାରେ
ଗୁପ୍ତ କରିବ ନ କହି ଲୋକଙ୍କ ଆଗରେ ।
ଯାହାକୁ କାମନା କଲା ଦ୍ରୁପଦ ନୃପତି
କାଳେ ପ୍ରାପତ ହୋଇଲା ଯେ ଆସି ସଂପ୍ରତି ।
ଏମନ୍ତେ ଭାଳନ୍ତି ବସି ତହୁଁ ଦୁଇ ମୁନି
ସୁକଲ୍ୟାଣ ହେଉ ତୋତେ ଶୁଭିଲା ଏ ଧ୍ୱନି ।
ଅର୍ଜୁନ ବୋଇଲେ ଲକ୍ଷେ ରାଜାଙ୍କୁ ଆବର
ଅଷ୍ଟାଦଶ ବ୍ରାହ୍ମଣ ସେ ସର୍ବେ ମୁନିବର ।
ଏ ସଭାଜନମାନଙ୍କୁ ମୋହର ଯେ ସେବା
ଏବେ କେ ପାରିଲେ ସ୍ୱାମୀ ଏ ଲାଖ ବିନ୍ଧିବା ।
ଦ୍ରୋଣ ବୋଇଲେ ପଣ୍ଡାଏ ବିନ୍ଧ ହେ ବହନ
ପୋଡ଼ିଲା ଘାଆରେ କେତେ ଦେଉଅଛ ଚୂନ ।
ସାଧୁ ଧନଞ୍ଜୟ ଲକ୍ଷେ ରାଜା ଅଭିମୁଖେ
ଅଦୃଷ୍ଟି ଲାଖକୁ ବିନ୍ଧୁଅଛଇ ପ୍ରତ୍ୟକ୍ଷେ ।
ଅପଲକ ନୟନରେ ରାଜା ଆଦି ଜନେ
ଏକ ଲୟେ ଚାହିଁଛନ୍ତି ଅର୍ଜୁନ ବଦନେ ।
ସବୁରି ସୀଉକାର ଯେ ଜାଣି ବୀର ପାର୍ଥ
ମନେ ମନେ ସୁମରଣ କରି ଜଗନ୍ନାଥ ।
ଏ ମହାସଭାକୁ ମୋର ନମସ୍କାର ସେବା
ବିନ୍ଧୁଛି ଗୋସାଇଁମାନେ ମୋତେ ଆଜ୍ଞା ଦେବା ।
ମହାସଭାର ମଧ୍ୟରେ ଉଠେ ସାଧୁ ଧ୍ୱନି
ସମସ୍ତେ କଲ୍ୟାଣ କଲେ ଲଭ ଯାଜ୍ଞସେନି ।
ପଣ୍ଡିତଜନମାନେ ଜଗନ୍ନାଥଙ୍କ ଦାସ
ତେଣୁ ସଦା କହନ୍ତି ଯେ ସୁମଙ୍ଗଳ ଭାଷ ।

ମହାସଭା ମଧ୍ୟେ ଦୁଷ୍ଟ ବିନ୍ଧ ବିନ୍ଧ ଭାଷି
ବିଚାରନ୍ତି ଧନ ଦେଇ ନେବା ଶୁଭ୍ରକେଶୀ ।
କେବଣ ଦୁଷ୍ଟେ ଭାଳନ୍ତି ଘେନିଯିବା ବଳେ
ବିନ୍ଧ ବିନ୍ଧ ଦ୍ୱିଜ ବୋଲି ବୋଲନ୍ତି ସକଳେ ।
ଦୁର୍ଜ୍ଜନ ସର୍ଜ୍ଜନ ଆଦି ସମସ୍ତଙ୍କ ମୁଖେ
ମଙ୍ଗଳ ଧ୍ୱନି ଶୁଭିଲା ସଭାରୁ ପ୍ରତ୍ୟକ୍ଷେ ।
ତାଳେକ ଉପରେ ପାର୍ଥ ପଟା ମଧ୍ୟେ ଉଠି
ଅନ୍ତରୀକ୍ଷେ ଜଗନ୍ନାଥ ନେଲେ ଛତ୍ର ଗୋଟି ।
ଧନୁ ଧରି ପୁଣି ପାର୍ଥ ଆମଞ୍ଜନ କଲେ
ଇନ୍ଦ୍ର ଦେବତାଙ୍କୁ ତହୁଁ ନାରାଚ ମାଗିଲେ ।
ଜୟ ଜୟ ସୁରନାଥ ଅସୁର ଅନ୍ତକ
ଜୟ ଜୟ ସୁରନାଥ ଅମର ନାୟକ ।
ଜୟ ଜୟ ସୁରନାଥ ଭକ୍ତଜନ ବନ୍ଧୁ
ଜୟ ଜୟ ସୁରନାଥ ସୁରପୁର ଇନ୍ଦୁ ।
ମୁଁ ତନୟ ପ୍ରଭୁ ତୁମ୍ଭେ ଅଟ ମୋର ତାତ
କୁନ୍ତୀ ଦେବୀ ଗର୍ଭରୁ ମୁଁ ହୋଇଅଛି ଜାତ ।
ଅସ୍ତ୍ର ନାହିଁ ମହାଲାଖ କେମନ୍ତେ ବିନ୍ଧିବି
ତୁ ଦେବ ସାହା ନୋହିଲେ ଲାଜ ମୁଁ ପାଇବି ।
ମନଭେଦି ନାରାଚକୁ ମୋତେ ଦିଅ ଆଣି
ବାରମ୍ବାର ନମସ୍କାର ଘେନ ବଜ୍ରପାଣି ।
ଏମନ୍ତେ ବାସବୀ ସ୍ତୁତି ଶୁଣିଣ ବାସବ
ମନେ ମନେ ସୁମରିଲେ ମୁନି ବ୍ୟାସଦେବ ।
ବ୍ୟାସ ଜାଣିପାରି ତହୁଁ ଗଲେ ଅନ୍ତରୀକ୍ଷେ
ଇନ୍ଦ୍ରଙ୍କ ନିକଟେ ଯାଇ ମିଳିଲେ ପ୍ରତ୍ୟକ୍ଷେ ।
ଇନ୍ଦ୍ର ବୋଇଲେ ହେ ବ୍ୟାସ ତୁମ୍ଭଙ୍କୁ ଶ୍ରୀହରି
ଦେଇଥିବା ନାରାଚକୁ ଦିଅ ତପଚାରୀ ।
ଅର୍ଜୁନ ମାଗୁଛି ମୁହିଁ ଦେବଇଁ ତାହାକୁ
ବ୍ୟାସ ଦେଲେ ମନଭେଦୀ ଇନ୍ଦ୍ରଦେବତାଙ୍କୁ ।
ମାତଳୀ ହସ୍ତରେ ଦେଇ ଇନ୍ଦ୍ର ସେ ନାରାଚ
ବୋଇଲେ ପାର୍ଥକୁ ଦେବୁ ନ କହିବୁ ବାଚ ।
ଅଦୃଶ୍ୟ ହୋଇ ତୁ ଦେବୁ ନ ଜାଣିବେ କେହି
ମାତଳୀ ଅର୍ଜୁନ ହସ୍ତେ ଗଲା ତାହା ଦେଇ ।
ଶ୍ରୀହରି ମାୟାରେ କେହି ନ ଜାଣିଲେ ତାହା
ସଭାରେ ବସିଲେ ଆସି ବ୍ୟାସ ତପୀ ନାହା ।
ଧନୁରେ ତା ବସାଇଲା ବାସବ ଆତ୍ମଜ
ବୋଲେ ମୋତେ ସାହା ହୁଅ ପ୍ରଭୁ ଦେବରାଜ ।
ନାରାଚ ପୂରାଇ ପାର୍ଥ ଠିଆ ଠାଣି ହୋଇ
ଦ୍ରୋଣ ବୋଲନ୍ତି ସେ ଭୀଷ୍ମ ଚିହ୍ନିଲେ କି ନାହିଁ ।
ଭଲ କରି ଦେଖ ଏଥେ ପାର୍ଥ ଠିଆଠାଣି
ଭୀଷ୍ମ ବୋଇଲେ ଉଦେ କି ହେବ ପୁନ୍ଦ୍ରମଣି ।

ଠାଣିମାଣିରେ ଯେ ଉଭା ହୋଇଲା ଅର୍ଜ୍ଜୁନ
ବାବୁ ମୋ ଆୟୁଷ ଘେନି ବଞ୍ଚ ବୋଲେ ଦ୍ରୋଣ ।
ଗୋବିନ୍ଦ ବୋଲନ୍ତି ଆହେ ସ୍ୱାମୀ ହଳପତି
ଶରବର ଅର୍ଜ୍ଜୁନର ଠିଆ ଠାଣି ମୂର୍ତ୍ତି ।
ପିଠି କଟି କି ବଦନ ଅଳପ ଲେଉଟି
ଡାହାଣକୁ ଅଙ୍ଗ ସାରି ତଳେ ଦେଲା ଦୃଷ୍ଟି ।
ଉପରକୁ ମୁଷ୍ଟି କରି ରହିଲେ ଫାଲଗୁନି
ସୁମଙ୍ଗଳ ହେଉ ବୋଲି ଭାଷେ ଯାଜ୍ଞସେନି ।
ଏ ସମୟେ ମଣ୍ଡଳଙ୍କୁ କଲେ ଦେବୀ ସ୍ତୁତି
ଜୟ ତୁ ସର୍ବମଙ୍ଗଳା ଅନାଦି ଶକତି ।
ଜୟ ତୁ ସର୍ବମଙ୍ଗଳା ଆଦି ବିଜେ କର
ବିନ୍ଧନ୍ତୁ ଏ ମହାଲାଖ ଏହି ଦ୍ୱିଜବର ।
ମନଭେଦି ନାରାଚକୁ ଗୁଣରେ ବସାଇ
ତିଆରଇ ବାସବୀ ଯେ ଲୟ ରଖି ତହିଁ ।
ଯେତେଦୂରେ ଫୁଟାଇବୁ ତା ବେନି ନୟନ
ଚକ୍ରଭେଦି ପୁଟାଇବୁ ତା ବେନି ନୟନ ।
କଲ୍ୟାଣ ଲାଭ ଆନନ୍ଦେ ଉତ୍ସବ ହରଷେ
ମହାସଭା ଦେଖି ଗାଢ଼ ପ୍ରତିଜ୍ଞାରେ ରୋଷେ ।
ଗୋବିନ୍ଦଙ୍କୁ ଲୟ କରି ସ୍ମରଇ ଫାଲ୍‌ଗୁନି
ଏ ସମୟେ ପଚାରନ୍ତି ଭୀଷ୍ମ ଦ୍ରୋଣ ବେନି ।
ଦ୍ରୋଣ ପ୍ରଶଂସା କରନ୍ତି ଦେଖିଣ ପାର୍ଥକୁ
କି ଲକ୍ଷଣେ ଜାତ ହେଲା କହିଲେ ଭୀଷ୍ମକୁ ।
ଅଟୁ ଆମ୍ଭେ ସାତୋତ୍ତର ଶତ ଶିଷ୍ୟ ଗୁରୁ
କାହାର ଶକତି ନାହିଁ ଏଥେ ଧନୁ ଧରୁ ।
ଆମ୍ଭ ପିତା ପୁତ୍ରଙ୍କର କମ୍ପେ ବେନି ଭୁଜ
ଧନୁକୁ ଛାଡ଼ି ନିଶବ୍ଦ ହେଉ ନିଶଉର୍ଯ୍ୟ ।
ଭୀଷ୍ମଙ୍କ ଶିର କମ୍ପଇଁ କର୍ଣ୍ଣର ହିଁ ହନୁ
ଦୁଃଶାସନର ହୃଦୟ ଦୁର୍ଯ୍ୟୋଧନ ଜାନୁ ।
ଯୁଧିଷ୍ଠି ଭୀମ ଶଲ୍ୟଙ୍କ କମ୍ପଇ ଅଙ୍ଗୁଷ୍ଠି
କୃପ ଭୁରିଶ୍ରବାଙ୍କର କମ୍ପଇ ହୃଦଟି ।
ଏସନ ଲକ୍ଷଣେ ଧାତା ନିର୍ମାଣିଲା ତୋତେ
ସର୍ବାଙ୍ଗ ନିଷ୍କମ୍ପ ତୋର ଅକଳଙ୍କ ଗାତ୍ରେ ।
ଏତେ ବିଚାର କରନ୍ତି ଭୀଷ୍ମ ଦ୍ରୋଣ ବେନି
ଅର୍ଜ୍ଜୁନକୁ ଲୟ କଲେ ଦେବୀ ଯେ ଭବାନୀ ।
ନାରାଚ ପୂରାନ୍ତେ ତାର ବିକଶିଲା ମୂର୍ତ୍ତି
ତ୍ରୈଲୋକ୍ୟ କି ବିକଶିଲା କୃଷ୍ଣ ତେଜ କାନ୍ତି ।
ବାସବ କେଶବ ବ୍ୟାସ ଯାହାର ସପକ୍ଷ
ଗୁରୁଜନ ଭାଷନ୍ତି ଯେ ବିନ୍ଧ ମହାଲାଖ ।
ବାହାରଇ ସମସ୍ତଙ୍କ ମୁଖୁ ଶୁଭଧ୍ୱନି
ତେବେ ସେ ଲାଖ ବିନ୍ଧଇ ଦେବଶର ଘେନି ।
ଲକ୍ଷେ ରାଜା ଅଭିମୁଖେ ପାର୍ଥ ମହାଯୋଦ୍ଧା
ରେ ରେ କାର କରି ଉଚ୍ଚେ ମହାଲାଖ ବିନ୍ଧି ।
ବହୁତ କାଳରୁ ଧରି ନ ଥିଲା ସେ ଧନୁ
ରୋଷେ ଛାଡ଼ିଦେଲା ଶର ବାସବର ସୁନୁ ।
ଦେବତାଙ୍କେ ସାତ ତାଳେ ନରେ ଅଣଚାଶ
ନିରୂପି ଚାହିଁଲେ ପାର୍ଥ ସେ ଅର୍ଦ୍ଧ ଆକାଶ ।
ଚକ୍ରଭେଦି ମୀନ ବାମଚକ୍ଷୁ ବାଟେ ଗଳି
ଡାହାଣ ବାଟେ ନାରାଚ ହୋଇଲାକ ଚଳି ।
ବାହାର ହୋଇ ନାରାଚ ଗଲା ଅତି ବେଗେ
ଲକ୍ଷେ ଯୋଜନକୁ ଯାଇ ବିଶ୍ରମିଲା ସର୍ଗେ ।
ସର୍ବ ଯୋଦ୍ଧାମାନେ କଲେ ସାଧୁ ସାଧୁ ଧ୍ୱନି
ହୁଳହୁଳି ଶବ୍ଦ କଲେ ସକଳ କାମିନୀ ।
ସେ ମାଛର ଗଳାରେ ଯେ ପୁଷ୍ପମାଳା ଥିଲା
ଛିଡ଼ି ସେହି ପୁଷ୍ପମାଳା ଭୂମିରେ ପଡ଼ିଲା ।
ଆକାଶରେ ବୃନ୍ଦାରକେ କଲେ ପୁଷ୍ପ ବୃଷ୍ଟି
ଜଗନ୍ନାଥ ଧ୍ୱନି କଲେ ଧରି ଶଙ୍ଖ ଗୋଟି ।
ସେ ଧ୍ୱନି ଅତି ମଧୁର ଗହ ଗହ ବାଣୀ
ଦୁଷ୍ଟଙ୍କ ଦେହ କମ୍ପିଲା କମ୍ବୁ ଶବ୍ଦ ଶୁଣି ।
ସଜ୍ଜନ ରାଜାମାନେ ଯେ ଉଠିଲେ ଝଟତି
ବୋଇଲେ ଶ୍ରୀ ନାରାୟଣ ବିଜେ କରିଛନ୍ତି ।
ଅସୁର ରାଜାଏ ଶୁଣି ପଳାନ୍ତି ସେ ଭୟେ
ଋଷି ବିପ୍ରମାନେ ଉଚ୍ଚେ କଲେ ଜୟେ ଜୟେ ।
ନୀଳୋତ୍ପଳ ମାଳା ଏକ ଧରି କୃଷ୍ଣାସତୀ
ବିଜୟ ସେ ମାହେଶ୍ୱରୀ ଅର୍ଜ୍ଜୁନର କତି ।
ଜୟ ମଙ୍ଗଳ ବାଣୀ ଯେ ଶୁଭିଲା ଆକାଶେ
ଅଜେୟ ହେଲେ ପିନାକୀ ସତ୍ୟଧର୍ମ ପାଶେ ।
ଦୁର୍ଯ୍ୟୋଧନ ବୋଲେ ରହ ରହ ରାଜବାଳା
ଆଗହୁଁ ଏ ବ୍ରାହ୍ମଣକୁ ନ ଦିଅ ଗୋ ମାଳା ।
ସମସ୍ତେ ବିଚାର କର ଏ ଲାଖକୁ ଚାହିଁ
ମାଛର ବାମ ଚକ୍ଷୁରେ ନାରାଚ ତ ନାହିଁ ।
ସ୍ୱରୂପ ଏ ଦ୍ୱିଜବର ନାରାଚ ବିନ୍ଧିଲା
ମାଛ ଚକ୍ଷୁରେ ନ ଲାଗି ଗଳି ଚାଲିଗଲା ।
ଏ ଯେବେ ଲାଖ ବିନ୍ଧନ୍ତା ସ୍ୱରୂପ ହୁଅନ୍ତା
ମାଛ ବାମଚକ୍ଷୁରେ ସେ ନାରାଚ ଥାଆନ୍ତା ।
ତା ହେଲେ ସ୍ୱରୂପ ବୋଲି ବୋଲନ୍ତୁ ଯୁବତେ
ଚିହ୍ନବର୍ଣ୍ଣ ନାହିଁ ମାଳା ଦେବୁ ତୁ କେମନ୍ତେ ।
ଶିଖଣ୍ଡୀ ବୋଇଲେ ବିପ୍ର ଯେବେ ନ ବିନ୍ଧିଲା
ବାମ ଆଖି ପୁଷ୍ପମାଳା କିପରି ଛିଡ଼ିଲା ।
ଜରାସନ୍ଧ ବୋଇଲା ସେ ସୂତ୍ରେ ଲାଗିଥିଲା
ନାରାଚ ବାହୁଡ଼ନ୍ତେ ସେ ଛିଡ଼ିଣ ପଡ଼ିଲା ।

ଶିଖଣ୍ଡୀ ବୋଲେ ଗୋସାଇଁ ଦେଖିଲ ପ୍ରତ୍ୟକ୍ଷ
ଆକାଶରୁ ପୁଷ୍ପ ବୃଷ୍ଟି ହେଲା ଭାଙ୍ଗୁଅଛ ।
ଦୁଷ୍ଟ ରାଜାଏ ସମସ୍ତେ କଲେ ନାସ୍ତି ନାସ୍ତି
ନ ବିନ୍ଧିଲା କେମନ୍ତେ ହୋ ଦେବ କୃଷ୍ଣାସତୀ ।
ଦ୍ରୁପଦ ବୋଇଲେ ପାଞ୍ଚଜନ୍ୟ ଶଙ୍ଖ ଘେନି
କେଉଁପରି ନାରାୟଣ କଲେ ଶଙ୍ଖ ଧ୍ୱନି ।
ଜରାସନ୍ଧ ବୋଲେ ତୁମ୍ଭେ କିଛି ହିଁ ନ ଜାଣ
ନନ୍ଦ ଗଉଡ଼ର ପୁଅ ଅଟେ ନାରାୟଣ ।
ତୁମ୍ଭମାନଙ୍କୁ ସେ ସିନା ଗୋବିନ୍ଦ ଗୋବିନ୍ଦ
ଗଉଡ଼ କୁଳେ ଜନ୍ମିଲା ଆମ୍ଭେ ବୋଲୁ ମନ୍ଦ ।
ଅଜ୍ଞାନ ଗଉଡ଼ ତାର ତିଳେ ଜ୍ଞାନ ନାହିଁ
ଶଙ୍ଖ ଗୋଟିଏ ବଜାଉଥାଏ ଯହିଁ ତହିଁ ।
ଜଗନ୍ନାଥ ନୁହଁଇ ସେ ଅଟଇ ଶଙ୍ଖୁଆ
ବାହାସ୍ୱାହା ଘରେ ଆସେ ନୋହି ବରଣିଆ ।
ସେ ଯେବେ ହୋ ଜଗନ୍ନାଥ ରହନ୍ତା ମୋ ଆଗେ
ଅଷ୍ଟାଦଶ ବାର ଗଲି କୁଆଇଁର ରାଗେ ।
ମଧୁପୁର ତେଜି ଯାଇଁ ଗୋ ମତେ ରହିଲା
ମୋହର ଭୟରେ ପୁଣ ତହୁଁ ପଳାଇଲା ।
ମଧୁପୁରୁଁ ପଳାଇଲା ନ ପାରିଲା ରହି
ତାହାର କଥା ଏ ମହାସଭାରେ କି କହି ।
ଭୀଷ୍ମ ବୋଇଲେ ରେ ଦୁଷ୍ଟ ନିନ୍ଦ ନାରାୟଣ
ପ୍ରେ ମରାଇବ ତୋତେ ନ ମାରି ଆପଣ ।
ଗୋମନ୍ତ ପର୍ବତ କଥା କହିଲୁ ତୁ ଏତେ
ମାରୁଥିଲେ ବଳରାମ ଶ୍ରୀହସ୍ତରେ ତୋତେ ।
ଗୋବିନ୍ଦଙ୍କ ଯୋଗୁଁ ତୁହି ପାଇଲୁରେ ପ୍ରାଣ
ଚୁଟି କାଟି ସାତବେଣ୍ଟ କଲେ ରାମ ପୁଣ ।
ଲାଜେ ତହୁଁ ପଳାଇଲୁ ନ ରହିଲୁ ତୁହି
ଜଗତର ନାଥ ସେହି ପ୍ରଭୁ ଭାବଗ୍ରାହୀ ।
ବିଷ୍ଣୁ ନିନ୍ଦା ନ ସହିବି ଏହି ମୋର ପଣ
ଯାଉଅଛୁ ଏ ସ୍ଥାନକୁ ଛାଡ଼ି ଏହିକ୍ଷଣ ।
ସରାସନ୍ଧ ବୋଲେ ତୁ କି ଅପୁତ୍ରିକ ଜନ
ଚାହିଁବାର ନ ଯୋଗାଇ ତୋହର ବଦନ ।
ଏମନ୍ତେ ସେ ଦୁହିଁଙ୍କର ଲାଗନ୍ତେ ଯେ କଳି
ମଧ୍ୟେ ପଶି ନିବାରିଲା କର୍ଣ୍ଣ ମହାବଳୀ ।
ଭୀଷ୍ମଙ୍କ ହସ୍ତକୁ ଧରି ରାଜା ଦୁର୍ଯ୍ୟୋଧନ
ପ୍ରବୋଧି ସଭାରେ ନେଇ ବସାଇଲା ପୁଣ ।
ଅଗସ୍ତିଙ୍କୁ ପଚାରିଲେ ମନୁ ବୈବସ୍ୱତ
ଅର୍ଜ୍ଜୁନର ଲାଖ ବିନ୍ଧା ନିଷ୍ଫଳ ହେଲା ତ ।
ପୁଣି କେବଣ ବିଚାର କଲେ ଫାଲ୍‌ଗୁନି
ଏହା ବିଚାରି କହିବା ହେଉ ମହାମୁନି ।

ଶୁଣ ଆହେ ଯୋଗେଶ୍ୱର ବଦନ୍ତି ଅଗସ୍ତି
ଦୁଷ୍ଟଜନେ ଭାଙ୍ଗିଦେଲେ ଆଲୋପ୍ୟ କିରତୀ ।
ମହାଗୋଳ ଶବଦ ଯେ ଶୁଭିଲା ସଭାରେ
ରାମ ହସନ୍ତି ହସ୍ତକୁ ଦେଇ ନାସିକାରେ ।
ଗୋବିନ୍ଦ ବୋଇଲେ ସ୍ୱାମୀ ହସିଲ ବି ଅର୍ଥେ
ଉପହାସ ପ୍ରାୟ ଦେବ ଜଣାଗଲା ମୋତେ ।
ବଳରାମ ବୋଇଲେ ତୁ ଶୁଣ ହୋ ଅଚ୍ୟୁତ
ଦ୍ରୁପଦ ରାଜାଠାରୁ କି ପାଇଅଛୁ ବିତ୍ତ ।
ପାଣ୍ଡବେ କି ଆଣିଛନ୍ତି ତୋତେ ଧନ ଦେଇ
ଲାଖ ନ ବିନ୍ଧିବୁ ଶଙ୍ଖ ବାଉ କାହିଁପାଇଁ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ନୀଳାମ୍ବର
ଅର୍ଜ୍ଜୁନ ମହିମା ନୁହେଁ ଦେବଙ୍କୁ ଗୋଚର ।
ଯଦ୍ୟପି ଏ ରାଜାମାନେ କରିବେଟି ଗୋଳ
ବିନ୍ଧିବ ସେ ଫାଲଗୁନି ଲାଖ ଆରବେଳ ।
କରନ୍ତୁ ଦୁଷ୍ଟେ ପଛରେ ଗୋଳ ଶତେ ବାର
ଅର୍ଜ୍ଜୁନ ହୁଁ ଦ୍ରୌପଦୀର ନାହିଁ ଅନ୍ୟଦାର ।
ଗାମ ବାକ୍ୟ କହିଲେ ଯେ ଉଚ୍ଚେ ନାରାୟଣ
ସେ କଥା ପଶିଲା ଯାଇ ଅର୍ଜ୍ଜୁନ ଶ୍ରବଣ ।
ଗୋଳ ଶୁଣିଣ ବିସ୍ମୟମାନ ଯାଜ୍ଞସେନି
ସୁମରନ୍ତି ଅଭୟା ଗୋ ଦୂରିତ ନାଶିନୀ ।
ତୁ ଯେବେ ଅଟୁ ଜଗତ ତାରିଣୀ ଗୋ ମାତ
ଭକତଜନ ବତ୍ସଳେ ଫେଡ଼ ମୋ ଆରତ ।
ତୋହର ପ୍ରସନ୍ନେ ମୁହିଁ ଲଭିଥିଲି ପତି
ତୋହର ସଞ୍ଚିତ କଥା ହୋଇଲା ଅନୀତି ।
ହସ୍ତରେ ଘେନି କନକ ପୁଷ୍ପମାଳ ବାଳୀ
ଶ୍ରୀଦୁର୍ଗାଙ୍କୁ ଲୟ କଲେ ବିକଳେ ପାଞ୍ଚାଳୀ ।
ଦ୍ରୌପଦୀ ବିକଳ ଚିତ୍ତ ଧନଞ୍ଜୟ ଦେଖି
ଶରତଚନ୍ଦ୍ର ବଦନ ଯାଇଅଛି ଶୁଖି ।
ଅର୍ଜ୍ଜୁନ ବୋଇଲେ ରହ ରହ ଯାଜ୍ଞସେନି
ଅକାରଣେ ଶୋକ କିମ୍ପା କର ଗୋମାନିନୀ ।
ଯଦ୍ୟପି ଦୁଷ୍ଟେ କରିବେ ଆଜି ଏଥେ ଗୋଳ
ଏ ଲାଖ ବିନ୍ଧିବି ସଖୀ ସହସ୍ରେକ ବେଳ ।
ଶୁଣି ଦ୍ରୌପଦୀ ବିଜୟେ ପରମ ଆନନ୍ଦେ
କୁମୁଦ କି ବିକଶିଲା ନବଘନ ଚାନ୍ଦେ ।
ଅର୍ଜ୍ଜୁନ ବୋଇଲେ ଶୁଣ ଆହେ ଧୃଷ୍ଟଦ୍ୟୁମ୍ନ
ରାଜାମାନଙ୍କୁ ତୁ ଯାଇ କର ସମାଧାନ ।
ଏବେ ଆଉ ଥରେ ମୁହିଁ ବିନ୍ଧିବି ଯେ ଲାଖ
ଚକ୍ର ସହିତେ ପଡ଼ିବ ଯାଇ ସର୍ବେ ଦେଖ ।
ତାହା ଶୁଣି ଧୃଷ୍ଟଦ୍ୟୁମ୍ନ ଘନ ଘନ କରି
ସର୍ବରାଜାଙ୍କୁ କହନ୍ତି ଶୁଣ କର୍ଣ୍ଣ ଡେରି ।

ଆଉ ଥରେ ବୀରବର ବିନ୍ଧି କରି ଲାଖ
ଛିଣ୍ଡାଇବେ ମତ୍ସ୍ୟସହ ଚକ୍ର ଯେ ପ୍ରତ୍ୟକ୍ଷ ।
ଏ ଘାନ୍ତି କି ଆର ଘାନ୍ତି ବିନ୍ଧିବି ଯେ ଲାଖ
ସାବଧାନେ ରାଜାମାନେ ସ୍ଥିର ହୋଇ ଦେଖ ।
ଧୃଷ୍ଟଦ୍ୟୁମନ ବଚନ ରାଜାମାନେ ଶୁଣି
ଯେ ଯାହାର ଆସ୍ଥାନରେ ବସିଲେକ ପୁଣି ।
କରେ ପୁଣି ଧନୁ ଧରି ଅର୍ଜ୍ଜୁନେ ଆମଞ୍ଚି
ବିଚାରଇ ଏ ଧନୁରେ ବଳ ନାହିଁ କିଛି ।
ବଳହୀନେ ସୁମରଇ ଯେବେ ମୋର ଧନୁ
କାଳେ ନାସ୍ତି କରିବେ ଏ ରାଜାଏ ଆଜ୍ଞାନୁ ।
ଦ୍ରୁପଦ ପୁତ୍ରକୁ ସେହି ସନ୍ନିଧେ ହକାରି
ପ୍ରିୟ ଭାବ କରି ତାକୁ ଅର୍ଜ୍ଜୁନ ପଚାରି ।
ଆହେ ଧୃଷ୍ଟଦ୍ୟୁମ୍ନ ତୁମ୍ଭେ ଶୁଣ ସାବଧାନେ
ଧନ ବଳହୀନ ହେଲା ବିନ୍ଧିବି କି ଆନେ ।
ଧୃଷ୍ଟଦ୍ୟୁମ୍ନ ବୋଲେ ମୁଁ ବା କରିବି ସମ୍ମତ
ରାଜାମାନଙ୍କୁ ପଚାରେ ତୋହର ଯୁକତ ।
ଏତେ ବୋଲି ଧୃଷ୍ଟଦ୍ୟୁମ୍ନ ସଭା ମଧ୍ୟେ କହି
ସାବଧାନ ହୋଇ ଶୁଣ ଆହେ ନରସାଇଁ ।
ଏ ଧନୁରେ ବଳ ନାହିଁ ଆରେକ ଧନୁରେ
ବିନ୍ଧିବାକୁ ବ୍ରାହ୍ମଣ ଯେ କହନ୍ତି ଇଚ୍ଛାରେ ।
ସେ ରାଜାମାନେ ବୋଇଲେ ଧନୁରେ ଯୁକତ
ତୋହର ହୋଇବ ସିନା ଆନ ସତ୍ୟବ୍ରତ ।
ଏକଥା ଶୁଣି ଅର୍ଜ୍ଜୁନ ବିଚାରଇ ମନେ
ସଂକଟରୁ ନାଥ ମୋତେ ତାରିବୁ କେସନେ ।
ଦୁଃସହ ସଙ୍କଟ ମୋତେ ପଡ଼ିଲାକ ଆସି
କର ପ୍ରତିକାର ମୋତେ ବଇକୁଣ୍ଠବାସୀ ।
ପାର୍ଥ ଦଇନି ଶୁଣିଲେ ଦେବ ନାରାୟଣ
ମନେ ବିଚାରିଲେ ଏହା ବାସବ ନନ୍ଦନ ।
ପଟା ଉପରକୁ ଉଠି ସ୍ମରଣ ମଘବା
ଭୋ ପିତା ଗାଣ୍ଡିବଧନୁ ମୋତେ ଆଣି ଦେବା ।
ସୁମରନ୍ତେ ଜାଣିଲେ ତା ବାସବ ସ୍ୱର୍ଗରେ
ଅନ୍ତରୀକ୍ଷେ ଆଣିଦେଲେ ଅର୍ଜ୍ଜୁନ ହସ୍ତରେ ।
ଏ ଚରିତ ନୋହିଲା ଯେ କାହାକୁ ହିଁ ଦୃଶ୍ୟ
କେବଳ ଜାଣନ୍ତି ପ୍ରଭୁ ନାରାୟଣ ବ୍ୟାସ ।
ଅର୍ଜ୍ଜୁନ ବୋଇଲେ ଧନୁ ଥୋଇବଇଁ କାହିଁ
ରାଜାଏ ଗୋଳ କରିଲେ ଏ ଧନୁକୁ ଚାହିଁ ।
ଏତେକ ବିଚାରି ସେହି ବାସବର ଶୂନୁ
ଆକର୍ଷି ଧଇଲେ ବିଷ୍ଣୁ ତେଜେ ବେନି ଧନୁ ।
ଗୋବିନ୍ଦ ବୋଇଲେ ଦେଖ ସ୍ୱାମୀ ବଳରାମ
ଅର୍ଜ୍ଜୁନର କିପରି ଯେ ଅଟେ ପରାକ୍ରମ ।
ଦୁଇ ଶରାସନ ମନଭେଦୀ ଶର ସନ୍ଧି
ଅର୍ଜ୍ଜୁନ ସେ ଶରକୁ ତା ଭକତିରେ ବିନ୍ଧି ।
ଚକ୍ରଭେଦି ମାଛ ବାମ ଚକ୍ଷୁରେ ପଡ଼ିବୁ
ଡାହାଣ ଚକ୍ଷୁର ବାଟେ ନିକିଳିଣ ଥିବୁ ।
ଆପଣାର ଗାଣ୍ଡୀବରେ ବସାଇଲା ଶର
ତୁ ଯାଇ ପଡ଼ିବୁ ଚକ୍ର ମତ୍ସ୍ୟର ଉପର ।
ଚକ୍ର ମତ୍ସ୍ୟକୁ ଛିଣ୍ଡାଇ ଆଣିବୁ ଭୂମିକୁ
ସମସ୍ତ ରାଜାଏ ମିଳି ଦେଖନ୍ତୁ ତାହାକୁ ।
ଦୁଇ ଧନୁରେ ଅର୍ଜ୍ଜୁନ ଦୁଇଶର ସନ୍ଧି
ଆକର୍ଷି ସେ ନାରାଚକୁ ଦେଲା ଟାଣେ ବିନ୍ଧି ।
ତଳକୁ ଦୃଷ୍ଟି ତାହାର ଉପରକୁ ମୁଷ୍ଟି
ବିକଶିଲା ବିଶ୍ୱରୂପ ତେଜକୁ କିରୀଟି ।
ଅନ୍ତରୀକ୍ଷ ମାର୍ଗେ ଗଲେ ସେହି ବେନି ଶର
ଦୁଇଲକ୍ଷ ବଳ ଅଟେ ସେ ଦୁଇ ଧନୁର ।
ସଭା ଅଭିମୁଖେ କୋପେ ଅଛି ଶରସନ୍ଧି
ଜଗନ୍ନାଥଙ୍କୁ ସୁମରି ପୁଣି ଅଛି ବିନ୍ଧି ।
ଶୂନ୍ୟେ ଗଲା ମନଭେଦି ନାରାଚ ସତ୍ୱରେ
ଫୁଟିଗଲା ରୋହି ମାଛ ବାମ ନୟନରେ ।
ଡାହାଣ ଚକ୍ଷୁକୁ ଭେଦ କରିଗଲା ଶର
ଆଜ୍ଞାରେ ରହିଲା ମାଛ ବାମ ନୟନର ।
ପାଶୁପତ ଶର ଚଳିଗଲା ପଛ କତି
ଚକ୍ରର ଉପରେ ଯାଇ ପଡ଼ିଲାକ ଧାତି ।
ମାଛ ସହ ଚକ୍ର ଛିଡ଼ି ପଡ଼ିଲାକ ତଳେ
ରାଜାମାନେ ଭୀଷ୍ମ ଦ୍ରୋଣ ଦେଖିଲେ ସକଳେ ।
ଆସ୍ଥାନ ମଧ୍ୟେ ରାଜାଙ୍କ ସନ୍ନିଧେଣ ପଡ଼ି
ଦେଖି ସମସ୍ତେ ଉଠିଲେ ହୋଇ ତଡ଼ବଡ଼ି ।
ଶ୍ରୀକରେ ତୋଳି ଧଇଲେ ପାଞ୍ଚାଳେଶ ରାୟେ
ଦୁର୍ଯ୍ୟୋଧନ ଅଗ୍ରତରେ ନେଇଣ ଦେଖାଏ ।
ବାବୁ ତୁ ଯେ ନାସ୍ତି କରି ପାତିଲୁ ଏ ଗୋଳ
ଭୀଷ୍ମ ଦ୍ରୋଣ ଆଦି କରି ଦେଖନ୍ତୁ ସକଳ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ପୁଣି ତହୁଁ ନେଲେ
ଜରାସନ୍ଧ ସନ୍ନିଧାନେ ନେଇ ଦେଖାଇଲେ ।
ମନଭେଦୀ ଫୁଟିଅଛି ମାଛ ବାମ ଆଖି
ଦେଖିଣ ରାଜାମାନଙ୍କୁ ନ ସ୍ଫୁରଇ କିଛି ।
ପଞ୍ଚଜନ୍ୟ ଶଙ୍ଖ ଧ୍ୱନି କରନ୍ତି ଶ୍ରୀହରି
ସେହି ଶଙ୍ଖ ଶବଦରେ ତ୍ରଇଲୋକ୍ୟ ପୂରି ।
କଲେ ଦ୍ରୌପଦୀ ଘେନିଣ ନବରତ୍ନ ମାଳି
ଅର୍ଜ୍ଜୁନ ସନ୍ନିଧେ ଆସି ମିଳିଲେ ପାଞ୍ଚାଳୀ ।
ମାଳା କଣ୍ଠରେ ଦିଅନ୍ତେ ବୋଲେ ଫାଲଗୁନି
ବରଣ ନ କର ମୋତେ ତୁ ଯେ ଯାଜ୍ଞସେନି ।

ତହୁଁ ଦ୍ରୌପଦୀକି ବରି ନ ଦେଲା ଅର୍ଜୁନ
ଶକୁନି କି ହକାରିଲା ରାଜା ଦୁର୍ଯ୍ୟୋଧନ ।
ବ୍ରାହ୍ମଣର ଆଶା ତୁ କି ଦେଖିଲୁ ମାତୁଳ
ଧନ ଆଶାରେ ବ୍ରାହ୍ମଣ ନ ଘେନିଲା ମାଳ ।
ଚଳ ତୁ ମାତୁଳ ବେଗେ ଦ୍ୱିଜବର ପାଶ
ଦ୍ରୌପଦୀ ବିପ୍ରକୁ ଘେନି ସନ୍ନିଧକୁ ଆସ ।
ଧନକୁ ବ୍ରାହ୍ମଣ ଯେବେ କଲା ଜାଣ ବାଞ୍ଛା
ଦେବା ତୋତେ ଧନ ଯେତେ ମନେ କର ଇଚ୍ଛା ।
ରାଜାର ଆଜ୍ଞାରେ ଗଲା ଗାନ୍ଧାର ସନ୍ତତି
ତକ୍ଷଣେ ମିଳିଲା ଯାଇ ବ୍ରାହ୍ମଣର କତି ।
ବ୍ରାହ୍ମଣଙ୍କୁ ସନ୍ନିଧକୁ ଏକାନ୍ତେ ହକାରି
ଧନ୍ୟ ହେ ବ୍ରାହ୍ମଣ ଧନ୍ୟ ଜୀବନ ତୁମ୍ଭରି ।
ବିନ୍ଧି ନ ପାରିଲେ ଯେଉଁ ଲାଖ ତ୍ରଇଲୋକ୍ୟେ
ତୁହି ଜୟ କଲୁ ଲକ୍ଷେ ରାଜାଙ୍କ ସମ୍ମୁଖେ ।
କୁଞ୍ଜଗଳ ଅଧିକାରୀ ଯେ ମାନଗୋବିନ୍ଦ
ସନ୍ନିଧିକି ନେବାପାଇଁ ତୋତେ ତାର ଶଧ ।
ତୁମ୍ଭେ ତ ସ୍ୱଭାବେ ଅଟ ବ୍ରାହ୍ମଣ ଭିକ୍ଷାଷୀ
କର୍ମେ ପ୍ରାପତ ହୋଇଲା ତୋତେ ଶୁଭ୍ରକେଶୀ ।
ରାଜାର ଦୁହିତା ସେହି ଅଟଇ ମାନିନୀ
ବଳେ ଧରି ଏହିକ୍ଷଣି କନ୍ୟା ଯିବେ ଘେନି ।
ଯେତେ ମନ ଇଚ୍ଛା ତୋତେ ଧନ ଆମ୍ଭେ ଦେବା
ଶତେ ବିଳାସିନୀ ତୋତେ ବିଭା କରାଇବା ।
ତୁମ୍ଭଙ୍କୁ ବେହେରା ପାତ୍ର ପଣେ ଦେବ ଶାଢ଼ୀ
ପଞ୍ଚକଟକେ ହୋଇବୁ ତୁହି ଅଧିକାରୀ ।
ଏସନ ବଚନ ଶୁଣି ବୋଇଲେ ଅର୍ଜୁନ
ଏ କଥା ମାନଙ୍କେ ମୋର ନ ପଶଇ ମନ ।
ହେ ଶକୁନି ତୁମ୍ଭର ଏ କଥା ମାନ ମିଛ
ପର ବୁଦ୍ଧି ଛାଡ଼ି ନିଜ ମନ କର ସ୍ୱଚ୍ଛ ।
ତୁମ୍ଭେ ଆମ୍ଭ ସଙ୍ଗେ ଯେବେ ଦ୍ୱନ୍ଦ୍ୱ ଆଚରିବ
ସଂଗ୍ରାମ କଲେ ତ କେହି ଜଣେ ନ ବର୍ତ୍ତିବ ।
ଏସନ କରି ତୁମ୍ଭଙ୍କୁ ଧାତା ନିର୍ମାଣିଲା
ପାଞ୍ଚାଳ ରାଜ୍ୟେ ତୁମ୍ଭର ମୃତ୍ୟୁ ଯେ ବିହିଲା ।
ଧନକୁ ଇଚ୍ଛା ଯେବେ ହୋ ବଳିଲା ତୁମ୍ଭର
ଆମ୍ଭଙ୍କୁ ଭାନୁମତୀ କି ଦିଅ ଯେ ସତ୍ୱର ।
ଯେତେ ଧନ ଇଚ୍ଛିବ ମୁଁ ତୋତେ ଧନ ଦେବି
ତୁମ୍ଭ ରାଜ୍ୟ ବଳି ରାଜ୍ୟେ ରାଜା କରାଇବି ।
ବୋଇଲେ ଯହୁଁ ଏସନ ବାକ୍ୟ ଉଚ୍ଚସ୍ୱରେ
ଗାଙ୍ଗେୟ ହସିଲେ କର ଦେଇ ନାସିକାରେ ।
କୋପେ ବୋଇଲଣା ତହିଁ ଦୁଷ୍ଟ ଦୁଃଶାସନ
କ୍ଷତ୍ରିୟ ହୋଇ ସହିବ କିଏ ଏ ବଚନ ।
ସମୁଦ୍ର ଲଙ୍ଘିଲେ ଆଉ ରହଇ କି କୂଳ
ମେରୁ ଟଳିଲେ ପୃଥିବୀ ଦିଅଇକି ସ୍ଥଳ ।
ଭିକାରୀ ବ୍ରାହ୍ମଣେ କିମ୍ପା ଏଡ଼େକ ବିଜୟ
ନୀଚ ଗଉରବ ହୁଏ ଏମନ୍ତ ଭୋ ରାୟ ।
ତା ଛାର ପାଇଁ କନ୍ୟାକୁ କିମ୍ପା ଛାଡ଼ିଦେବା
ବ୍ରାହ୍ମଣକୁ ମାରି ଚାଲ କନ୍ୟା ଘେନିଯିବା ।
ଏତେ ବୋଲି ଦୁଃଶାସନ ଉଠିଲା ଆସ୍ଥାନୁ
କରେ ଚଉଷଠି ଭାର ଗଦା ଶର ଧନୁ ।
ପ୍ରତିଜ୍ଞା ସାମର୍ଥ କରେ ରେ ରେ କାର ଧ୍ୱନି
ଆସନ୍ତି ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଏ ବେନି ।
ଦ୍ରୁପଦ ରାଜନ ଦୁଃଶାସନକୁ ପ୍ରବୋଧି
ସତ୍ୟ ଲଙ୍ଘି କରୁଅଛ ଅନୀତି ଅବିଧି ।
କୋପେ ଦୁଃଶାସନ ତାକୁ ଚାପୋଡ଼ା ମାଇଲେ
ଦ୍ରୁପଦ ରାଜା ରୁଧିର ଉଦଗାରି ପଡ଼ିଲେ ।
ରାଜାର ଅଜ୍ଞାନ ଦେଖି ଶିଖଣ୍ଡୀ ଅଇଲା
ଧୃଷ୍ଟଦ୍ୟୁମ୍ନ ଯାଇ ଦୁଃଶାସନେ ଉଗାଳିଲା ।
ଶିଖଣ୍ଡୀ ବୋଇଲା ଶୁଣ ଆହେ ଦ୍ୱିଜବର
ଦ୍ରୌପଦୀ ଘେନିଣ ତୁମ୍ଭେ ଯାଅ ଆମ୍ଭ ପୁର ।
ଦୁଃଶାସନ ଆକ୍ରମିଲା ଧୃଷ୍ଟଦ୍ୟୁମନକୁ
ଅଶୀ ସହସ୍ର ଯୋଦ୍ଧାଏ ଓଗାଳିଲେ ତାକୁ ।
ଦ୍ରୁପଦ ରାଜନ ତହୁଁ ଚେତା ପାଇ ଉଠି
ଆଶ୍ୱାସି କହିଲେ ଧରି ପାର୍ଥ କର ଗୋଟି ।
ମୁହିଁ ତୋହର ଆପଦ ଘେନଇରେ ବାବୁ
ଅପସରି ଯାଅ ଏଥି ଥିଲେ ନାଶ ଯିବୁ ।
ଯାଜ୍ଞସେନୀ ଅର୍ଜୁନର ଧରି ପାଦ ବେନି
ବୋଇଲେ ପଣ୍ଡାଏ ଘେନି ସବୁରି ଦଇନି ।
କୋପେ ଆସୁଅଛି ଦୁଷ୍ଟ ଦୁଃଶାସନ ମନ୍ଦ
ଭାଇ ମୋର ନ ସହିବେ ହେବ ମହାଦ୍ୱନ୍ଦ୍ୱ ।
ଜୟଦ୍ରଥ ଶିଶୁପାଳ କର୍ଣ୍ଣ ଜରାସନ୍ଧ
ପୁଣ୍ଡରୀକ ଦନ୍ତବକ୍ର ବାଣା ଯେ କୁମୁଦ ।
ଏ ଦୁଷ୍ଟ ରାଜାଏ ମିଳି କଲେଣି ଅନୀତି
ପ୍ରାଣ ପଣେ ଭାଇ ମୋର ଦେଖ ଯୁଝୁଛନ୍ତି ।
ଭାଇମାନେ ଭାଙ୍ଗିଗଲେ ତୁମ୍ଭେ ହେବ ଏକା
ଏଡ଼େ ଦୁର୍ଗମ ଥାଟକୁ ନ କରୁଛ ଶଙ୍କା ।
ଭୋ ସ୍ୱାମୀ ମୁହିଁ ତୋହର ଆପଦ ଘେନଇ
ଶରୀର ନାଶ ନ କର ଏ ଦୁଃଖିନୀ ପାଇଁ ।
ଏକ ପରାକ୍ରମେ କାହିଁ ଧରି ହୁଏ ପୃଥ୍ୱୀ
ଜଣକର ହସ୍ତରେ କି ସମୁଦ୍ରକୁ ମନ୍ଥି ।
ପର୍ବତ କି ଟଳେ ଏକା ଜଣକର ବଳେ
ବହୁତ ନାଶ ଯାଇ କି ଜଣେ କୋପ କଲେ ।

ଦେବତା ହୋଇଲେ ମଧ୍ୟ କି କରିବ ଏକା
ଏକା ଜଣେ ଥିଲେ ତୀର୍ଥପଦେ ନୋହେ ଲେଖା ।
ନାଶ ଯିବୁ ସ୍ୱାମୀ କାର୍ଯ୍ୟ ନୋହିବ ତ କିଛି
ଏକା ଜଣକୁ ଭୋ ସ୍ୱାମୀ କାହିଁରେ ନ ଲେଖି ।
ଏସନକ ପ୍ରବୋଧନ୍ତେ ଦ୍ରୁପଦ ଦୁଲଣୀ
ପ୍ରବେଶ ହୋଇଲା ଦୁଃଶା ଆସି ସେହିକ୍ଷଣି ।
ବହୁତ କଟାକ ଯହୁଁ କଲା ଦୁଃଶାସନ
ଶସ୍ତ୍ର ଧରି ଓଗାଳିଲେ ତାକୁ ଧୃଷ୍ଟଦ୍ୟୁମ୍ନ ।
ବ୍ୟାକୁଳେ ଦ୍ରୌପଦୀ ଦେବୀ ସୁମରନ୍ତି କାଳୀ
ଦୁର୍ଯ୍ୟୋଧନ ପାମର ତ ସତ୍ୟକୁ ନ ପାଳି ।
ଆରେ କଉରବ ତୁମ୍ଭେ ଦେଉଅଛ କଷ୍ଟ
ଧର୍ମ ବାଟକୁ ଲଙ୍ଘୁଛ ଆରେ ରେ ପାପିଷ୍ଠ ।
ମୁହିଁ ଯେ କଷ୍ଟରେ ଦେଉଅଛଇ ବୈକୁଲ୍ୟ
ଏ ମୋହର ଲୁହ ବହିଲେ ତୁମ୍ଭର କି ଭଲ ।
ଯେବେ ମୁହିଁ ହୋଇଥିବି ନିଶ୍ଚେ ଯାଜ୍ଞସେନି
ଯେବେ ଜାତ କରିଥିବେ ଯଜ୍ଞୁ ବ୍ୟାସମୁନି ।
ଏ ମୋହର ଶାପ ତୁମ୍ଭ ଉପରେ ଯେ ପଡୁ
ଏହି ସ୍ୱାମୀ ହସ୍ତେ ତୁମ୍ଭ କନ୍ଧ ପଦ ଛିଡୁ ।
ଶୁଣିଣ ବାସବୀ ମନେ ପାଇଲାକ ତ୍ରାସ
ନ ପୁଣ ଦ୍ରୌପଦୀ ବୋଲେ ବଂଶ ଯାଉ ନାଶ ।
ବେଳୁବେଳ ବଢ଼ି ଆସୁଅଛି ଏହା କୋପ
ଆମ୍ଭର ପାଶକୁ ନିକି ଆସଇ ଏ ତାପ ।
ଏ ମହାସତୀର ଶାପ ନ ଯିବ ମେଣ୍ଟଣ
ଅର୍ଜ୍ଜୁନ ବୋଇଲେ ସଖୀ ଶୁଣ ମୋ ବଚନ ।
ତୁ ଯେ ମହାସତୀ ମୋତେ ଦେଲୁ ଏକା ଏକା
ଏକା ହନୁମନ୍ତ ପୋଡ଼ି ପକାଇଲା ଲଙ୍କା ।
ଏକା ମନ୍ଦର ସମୁଦ୍ର ପକାଇଲା ମନ୍ଥି
ଦାନବ ଧ୍ୱଂସିଲା ଏକା ନାରାୟଣ ମୂର୍ତ୍ତି ।
ଗରୁଡ଼ ବିନତା ପୁତ୍ରଅଟଇ ଯେ ଏକା
ଧ୍ୱଂସିଲାକ ନାଗବଳ ନ କରିଣ ଶଙ୍କା ।
ଏକାକୀ ଗମିଣ ପୁଣି ପୁତ୍ର ଭଗୀରଥ
ଆକାଶୁ ଗଙ୍ଗା ଆଣିଣ ବଂଶ କଲା ସ୍ୱାର୍ଥ ।
ଦେଖ ଗୋ ଏକା ଅଟଇ ନାଗ ଯେ ଅନନ୍ତ
ଫଣାରେ ବହିଛି ପୃଥ୍ୱୀ ସିନ୍ଧୁ ଦ୍ୱୀପ ସାତ ।
ଏକାକୀ ପରଶୁରାମ ବହି କ୍ଷତ୍ରି ବୃତ୍ତି
ଏକୋଇଶ ବାର କଲା ପୃଥ୍ୱୀକି ନକ୍ଷତ୍ରି ।
ଦେଖ ସୋମବଂଶେ ଥିଲା ନୃପତି ଯଯାତି
ବାଣ୍ଟିଥିଲେ ନବଖଣ୍ଡ ସପ୍ତଦ୍ୱିପା କ୍ଷିତି ।
ଏକାକି ଅଗସ୍ତି ବାଲ୍ୟ ବିନୋଦର କାଳେ
ସପତ ସମୁଦ୍ର ଜଳ ଗଣ୍ଡୁଷେ ଗ୍ରାସିଲେ ।

ତୁ ମୋତେ ଗୋ ସଙ୍ଗାତୁଣୀ ନ ବୋଲତ ଏକା
ଅଗାଧ ସମୁଦ୍ର ଗର୍ଭୁ ହୁଏ ନାହିଁ ଲେଖା ।
ଏହିକ୍ଷଣି ଦେଖ ଏକା ମୋହର ଚରିତ
ମାରିଣ ଦୁଷ୍ଟ ରାଜାଙ୍କୁ କରିବି ନିପାତ ।
ପ୍ରତିଜ୍ଞା ଶୁଣି ଦ୍ରୌପଦୀ ହୋଇଲେକ ତୁନି
ମନେ ମନେ ଚିନ୍ତା କଲେ ଶଙ୍କର ଭବାନୀ ।
ଲକ୍ଷେ ଯୋଦ୍ଧା ସଙ୍ଗେ ଘେନି କୁମାର ଶିଖଣ୍ଡୀ
ବାହାର ହୋଇଲେ ବେଗେ ଗଜ ଅଶ୍ୱମଣ୍ଡି ।
ଦେଖା ଚୋଖା ହିରଙ୍ଗମ ଯୋଦ୍ଧା ପଞ୍ଚଲକ୍ଷ
ଆୟୁଧ ବୁଲାଇ ହେଲେ ଅର୍ଜ୍ଜୁନ ସପକ୍ଷ ।
ହସ୍ତେ ଧନୁ ଧରି ଗୁଣମାନଙ୍କୁ ଟଙ୍କାରି
ବେଢ଼ିଲେ ଦୁଃଶାସନକୁ ଲକ୍ଷେ ପୁର କରି ।
ସଭା ଭିତରେ ଦେଖିଲା ରାଜା କୁରୁପତି
ଆସ୍ଥାନ ତେଜି କୋପରେ ଉଠିଲା ତଡ଼ତି ।
ମଣିନାଗ ନାମେ ଏକ ମହାଯଜ୍ଞ ଗଜେ
ଧାଡିକାରେ ତା ପିଠିରେ କୁରୁପତି ବିଜେ ।
ସତୁରି ସତୁରି ଭାର ଗଦା ବେନି ହସ୍ତେ
ବସିଲେ ଯୋଦ୍ଧା ଅମାତ୍ୟ ମାନେ ଯାଇଁ ରଥେ ।
ଗଜ ଅଶ୍ୱ ସୈନ୍ୟବଳ ନ ହୁଅଇ କଳି
ଦୁନ୍ଦୁଭି ଶବଦେ ଗିରି ପଡ଼ିବ କି ଟଳି ।
ପାଶୁପତ ଶର ଗଦା ମୁଦ୍‌ଗର ଶକତି
କୁନ୍ତ ପାଶ ଅସିବର ଛେଲ ଚକ୍ର କାତି ।
ଧନୁଫଳା ଆଣିଣ ଯେ ଅସିପତ୍ର କାଠି
ନଳୀ ଗୁରୁଜ ଉଦଣ୍ଡ ଛତ୍ର ଧରି ଉଠି ।
ଧୂଆଁରେ ମୋହରେ କହି ଗଲେ ଦଣ୍ଡ ସାଜି
ଧାମନ୍ତି ଘଣ୍ଟା ଶବଦ କରି ହସ୍ତୀ ଗର୍ଜି ।
ଜରାସନ୍ଧ ଶିଶୁପାଳ ନାରକା ରୁକ୍ମଣ
ରେ ରେ କାରେ ଉଠିଲେକ ଦୁଷ୍ଟ ରାଜାଗଣ ।
ପଣ୍ଡିତ ଧାର୍ମିକ ଯେତେ ବିବେକୀ ନୃପତି
ଦୁଷ୍ଟ ରାଜାମାନଙ୍କୁ ସେ ସମ୍ବୋଧ କରନ୍ତି ।
ଅନିମିତ୍ତେ ଦ୍ୱନ୍ଦ୍ୱକୁ ନ ଡାକ ବ୍ରାହ୍ମଣକୁ
ସାମାନ୍ୟ ପ୍ରାୟକ ତୁମ୍ଭେ ନ ବୁଝ ତାହାକୁ ।
ତୁମ୍ଭମାନଙ୍କୁ ସେ ରୂପ ଦୃଶ୍ୟ ହିଁ ନୋହିଲା
ବ୍ରାହ୍ମଣ ନୁହଇ ବିଷ୍ଣୁ ନିଜେ ବିଜେ କଲା ।
ଅସ୍ତ୍ରମନ୍ତ୍ର ନାରାଚ ସେ ବିନ୍ଧିଲେ ଯୁକତେ
ତୁମ୍ଭେ ତାହା ତୁଲେ ଦ୍ୱନ୍ଦ୍ୱ କରିବ କେମନ୍ତେ ।
ଅପଣ୍ଡିତ ଦୁଷ୍ଟ ମୂର୍ଖ ଯେ ମନ୍ଦ ପ୍ରକୃତି
ପଣ୍ଡିତଙ୍କ କଥାକୁ ସେ କର୍ଣ୍ଣେ ନ ଶୁଣନ୍ତି ।
ଦୁର୍ଯ୍ୟୋଧନ ବୋଇଲା ନ ଜାଣ ତୁମ୍ଭେ କିଛି
ଆକାଶର କାହିଁ ଚିହ୍ନ ସ୍ୱରୂପ ଯେ ଅଛି ।

ସେହୁ ଯେବେ ବିଷ୍ଣୁ ଶଙ୍ଖ ଚକ୍ର ଗଦା କାହିଁ
ହୃଦରେ ଶ୍ରୀବତ୍ସ ଚିହ୍ନ ଏହାର ଯେ ନାହିଁ ।
ଦାନବଙ୍କ ନିମନ୍ତେ ଯେ ଜାତ ଜଗନ୍ନାଥେ
ତେବେ ଦୁଷ୍ଟ ନାଶ ଯିବେ ତାହାଙ୍କର ହସ୍ତେ ।
ଏ ମର୍ତ୍ତ୍ୟମଣ୍ଡଳେ ବିଷ୍ଣୁ ହୋଇଛନ୍ତି ଜାତ
ଗୋପେ ଜନ୍ମି କାହ୍ନୁ ନାମେ ହୋଇଲେକ ଖ୍ୟାତ ।
ମଧୁପୁରେ ପଶି କଂସାସୁରକୁ ମାଇଲେ
ଅଷ୍ଟମଲ୍ଲ ଆଦି କରି ଗଜ ସଂହାରିଲେ ।
ତହୁଁ ଉଗ୍ରସେନକୁ ସେ ନୃପ ପଦ ଦେଲେ
ସେ ପୁଣି ଜରାସନ୍ଧର ଭୟେ ପଳାଇଲେ ।
ଶତ୍ରୁ ପଣରେ ଆସିବେ ଯେବେ ଦେବରାଜ
କାହାର ଦର୍ପେ ଏଥୁ ସେ କନ୍ୟା ନେବ ଆଜ ।
ଅନ୍ୟାୟ କରୁଛ ତୁମ୍ଭେ ନ କରି ବିଚାର
ବିଦ୍ୟାବଳେ ବିନ୍ଧିଲା ସେ ଲାଖ ଦ୍ୱିଜବର ।
କ୍ଷତ୍ରିୟ କନ୍ୟାକୁ ବିଭା ହୋଇବ କେମନ୍ତେ
କୀଳ କାଳକୁ ଏକଥା ରହିବ ଜଗତେ ।
ଏ କାରଣୁ ଆମ୍ଭେ ଧନ ଯାଚିଲୁ ତାହାକୁ
ଗର୍ବ କରି ଗାଳିଦେଲା ସେ ଦ୍ୱିଜ ଆମ୍ଭଙ୍କୁ ।
କ୍ଷତ୍ରୀ କୂଳେ ଜାତ ହୋଇ ସହିବ କେ ତାହା
ନ ବୁଝିଣ ତୁମ୍ଭେମାନେ କହୁଅଛ ଏହା ।
ତୁମ୍ଭେମାନେ ସଂଗ୍ରାମକୁ ଯେବେ କର ଭୟ
ଥାଟ ଘେନିଣ ପଳାଇ ଯାଅ ସର୍ବ ରାୟ ।
ପ୍ରତ୍ୟକ୍ଷରେ ଚିତା ଛତା ଖଣ୍ଡିଆ ପାଣ୍ଡୋଇ
ହରି ଗୋବିନ୍ଦ ମୂଣା ଏ ତିନିଙ୍କି ପକାଇ ।
ବ୍ରାହ୍ମଣ ସଭା ମଧ୍ୟରୁ ଅଇଲେକ ଉଠି
ଧର୍ମବଳେ ଲାଖ ଗଲା ଲାଖେ ଶର ଗୋଟି ।
ତା ଘରକୁ ତୁମ୍ଭେମାନେ ବୋଲ ଦିଗପାଳ
ସିଂହ ଅଗ୍ରତରୁ କନ୍ୟା ନେବ କି ଶୃଗାଳ ।
ଏସନ ବଚନ ମାନଗୋବିନ୍ଦର ଶୁଣି
ମୁଖ ଚାହାଁ ଚାହିଁ ହେଲେ ବିବେକୀ ନୃମଣି ।
ଏତେକ ବିଚାରିଣ ସେ ହୋଇଲା ଅନ୍ତର
ଏହିକ୍ଷଣି ପ୍ରତିଜ୍ଞା ଯେ ଦେଖିବା ତୁମ୍ଭର ।
ଧର ଧର ମାର ମାର ପଡୁଅଛି ଡାକ
ଚରଣ ବିଘାତେ କମ୍ପେ ସେହି ଦେଶ ଯାକ ।
ରଥ ଗଜ ଅଶ୍ୱ ଆଦି କଳନା ନ ଯାଇ
ଭେରୀ ମହୁରୀ କଂସାଳ ମୁରଜ ବାଜଇ ।
ଉଛୁଳିଣ ମହୀକୁ ଯେ ଘୋଟେ ନଦୀରାଜ
ଶୂନ୍ୟେଣ ଶୁଭିଲା ସୈନ୍ୟ ଥାଟ ସାଜ ସାଜ ।
ଏସନକ ଶବ୍ଦ ଯହୁଁ ଶୁଣିଲେ ବ୍ରାହ୍ମଣେ
ସର୍ବେ ସଭାରୁ ଉଠିଲେ କୋପଭର ମନେ ।
ଭୀମ ନକୁଳ ଯେ ସହଦେବ ଛନ୍ତି ବସି
ଠାକୁରଙ୍କ ଆଜ୍ଞାକୁ ସେ ଉତ୍ସୁକେ ଅନ୍ୱେଷି ।
ବ୍ରାହ୍ମଣମାନେ ଉଠିଲେ କୋପେ ଧାତିକାରେ
ଆମ୍ଭର ପ୍ରତିଜ୍ଞା ଭ୍ରଷ୍ଟ ହେଉଛି ନିକରେ ।
କେ ପିଢ଼ା ଘେନି ଉଠିଲେ ଡାହାଣ ହସ୍ତରେ
କେଉଁ ଦ୍ୱିଜ ଗଡୁ ଗୋଟି ଧରିଅଛି କରେ ।
ସ୍ରୁବ ପ୍ରୋକ୍ଷଣି ବୁଲାନ୍ତି କେହି କୋପଭରେ
କେ ବୋଲଇ ଏ ଦୁଷ୍ଟକୁ ମାରରେ ମାରରେ ।
ଅନ୍ୟାୟ କରି କନ୍ୟାକୁ ନେବ ଯେବେ ଆଜ
କାଳେ କାଳେ ଆମ୍ଭେମାନେ ପାଇବା ନା ଲାଜ ।
ମାର ମାର କ୍ଷତ୍ରିୟଙ୍କୁ ଉପରୋଧ ଛାଡ଼ି
ମାଡ଼ିପଡ଼ିଲେ ବ୍ରାହ୍ମଣେ ଧରି ଛତାବାଡ଼ି ।
ରେ ରେ କାର କରି ଡେଇଁ ପଡ଼ିଲେ ବ୍ରାହ୍ମଣେ
କ୍ଷତ୍ରିୟ କୁଳରେ ଆମ୍ଭେ ନ ରଖିବା ଜଣେ ।
ଏହା ଦେଖି ଯୁଧିଷ୍ଠିର କଲେ ମହାଭୟ
ବିପ୍ର ବଧେ ମହାପାପ ହୋଇବ ନିଶ୍ଚୟ ।
କର ଯୋଡ଼ି ବୋଇଲେ ହେଁ ବ୍ରାହ୍ମଣ ଗୋସାଇଁ
ସଭାରୁ ଉଠିଲ ତୁମ୍ଭେମାନେ କାହିଁ ପାଇଁ ।
ବିପ୍ରେ ବୋଇଲେ ଦୁଷ୍ଟକୁ କରିବୁ ସଂହାର
ଯୁଧିଷ୍ଠି ବୋଇଲେ ତୁମ୍ଭେ କୋପକୁ ସଂହାର ।
ଲାଖ ବିନ୍ଧା ଦ୍ୱିଜବର ସାମାନ୍ୟ ନୁହଁଇ
କଉତୁକ ଦେଖିବା ନା ଆମ୍ଭେ ଏଥେ ଥାଇ ।
ଏକ ମୁଖେ ଆଶୀର୍ବାଦ କର ସେ ଦ୍ୱିଜକୁ
କନ୍ୟା ନେଉ ଜିଣି ଆଜି କ୍ଷତ୍ରିୟ କୁଳକୁ ।
ଯୁଧିଷ୍ଠିଙ୍କ କଥା ଶୁଣି ବସିଲେ ବ୍ରାହ୍ମଣେ
ବୋଇଲେ ମରନ୍ତୁ ଆଜି ଦୁଷ୍ଟ ରାଜାଗଣେ ।
ବ୍ରାହ୍ମଣଙ୍କ ଉଚ୍ଚ ବାକ୍ୟ ମୁଖରାବ ଶୁଣି
ଭୀମ କମ୍ପଇ କାତର ରମ୍ଭାପାତ୍ର ଜିଣି ।
ଶରୀର କମ୍ପନ୍ତେ ଦେଲେ ଯୁଧିଷ୍ଠିର ଚାହିଁ
ଲୋଡୁଛ କି ପଣ୍ଡା ଆହେ ତୁମ୍ଭେ ଯିବାପାଇଁ ।
କିଞ୍ଚିତ ଆଜ୍ଞାକୁ ଭୀମ ଲୋଡୁଥିଲା ମନେ
ଯାଅ ବୋଲି ଉଠି ଧାଇଁଗଲା ତତକ୍ଷଣେ ।
ବ୍ରାହ୍ମଣେ ବୋଇଲେ ଦ୍ୱିଜ ଏ କିସ ତୁମ୍ଭର
ଯୁଧିଷ୍ଠି ବୋଇଲେ ଏହି ମୋର ସହୋଦର ।
ଲାଖ ବିନ୍ଧା ବିପ୍ରଠାରୁ ଅଟେ ଏହି ବଡ଼
ବିପ୍ରେ ବୋଇଲେ ମରନ୍ତୁ ଦୁଷ୍ଟକ୍ଷତ୍ରି ମୂଢ଼ ।
ତିନ୍ତୁଳି ବୃକ୍ଷ ଯୋଡ଼ିଲା ଭୀମ ଦେଖେ ଆଗେ
ଧାତିକାରେ ଉପାଡ଼ିଲା ତାହା ମହାରାଗେ ।
ବଳରାମ ବୋଇଲେ ହୋ ଦେଖ ଜଗନ୍ନାଥେ
ଅର୍ଜୁନ ଚରିତ ତୋର ହେଉଛି କେମନ୍ତେ ।

ଲକ୍ଷେ ରାଜା ବେଢ଼ିଲେଣି ଯିବେ କନ୍ୟା ଘେନି
ନ ରଖିବେ ପାଞ୍ଚାଳେଶ ରାଜା ରାଜଧାନୀ ।
ଭଲ ଯୋଗେ ଉପୁଜିଲା ଦ୍ରୁପଦ ଦୁହିତା
କାଳ କାଳକୁ ତ ରହିଯିବ ଏହି କଥା ।
ଗୋବିନ୍ଦ ବୋଇଲେ ଶୁଣ ପ୍ରଭୁ ବଳରାମ
ତୁମ୍ଭଙ୍କୁ ତ ଜଣା ନାହିଁ ଅର୍ଜ୍ଜୁନ ବିକ୍ରମ ।
କ୍ଷଣକେ କରିବ ଲକ୍ଷେ ରାଜାଙ୍କୁ ସଂହାର
ନ ପାରିଲେ ନାମ ବହିଅଛି ଚକ୍ରଧର ।
କରିବି ରାଜାଙ୍କ ଶିର ଚକ୍ରରେ ଛେଦନ
ଦେଖି ବେନି ବୃକ୍ଷ ଧରିଯାଏ ଭୀମସେନ ।
ଉଭା ହୋଇ ଚାହିଁଦେଲେ ପ୍ରଭୁ ହଳପତି
ଦେଖିଲେ ଭୀମସେନର ବୃକୋଦର ମୂର୍ତ୍ତି ।
ନୃସିଂହ ଯେହ୍ନେ ହିରଣ୍ୟ ବିଦାରଣ କାଳେ
ବେନି ଡୋଳା ତାର ଚମ୍ଵାଚକ୍ର ପ୍ରାୟେ ବୁଲେ ।
ଉଡ଼ିବା ପର୍ବତ କି ବା ଆସୁଛନ୍ତି ମାଡ଼ି
ପ୍ରତ୍ୟକ୍ଷେ ପଡ଼ିଲା କି ବା କାଳଦଣ୍ଡ ଧାଡ଼ି ।
ଆରେ ଆରେ ବୋଲି ଭୀମ ରଡ଼ି ଏକ ଦେଲା
ମଞ୍ଚ ଭୁବନ କି ନାଦେ ଲେଉଟି ପଡ଼ିଲା ।
ପାଞ୍ଚଲକ୍ଷ ଯୋଜନରେ ସଞ୍ଜମନୀ ପୁର
ଆସନ ତେଜି ତ୍ରାସିଲେ ଦେବ ନାଶକର ।
କୃଷ୍ଣ ବୋଇଲେ ଯେ ବୃକ୍ଷ ଉପାଡ଼ିଲା ଭୀମ
ପାଣ୍ଡବ ବୃକ୍ଷ ବୋଲିଣ ହେଉ ତୋର ନାମ ।
ଭୀମର ମୂରତି ଯହୁଁ ଦେଖିଲେ ଯୁଧିଷ୍ଠି
ଲଲାଟେ ଢାଳିଲେ ନେଇ ନିଜ କର ଗୋଟି ।
ଦେହ କମ୍ପନ୍ତେ ବୋଇଲେ ଯିବୁକିରେ ତୁହି
ଏତିକି ମାତ୍ରେ ଧାଇଁଲା ସିଂହନାଦ ଦେଇ ।
ଆବର ଆଶ୍ଚର୍ଯ୍ୟ କର ଦେଖି ବେନି ବୃକ୍ଷ
ପ୍ରତ୍ୟକ୍ଷ ମାଇଲେ ସେହି ବକ ହିଡ଼ିମ୍ବକ ।
ବନବାସ ଅପମାନ ଶରୀରେ ସେ ଧରି
ଭାଇମାନଙ୍କୁ ମାରିବ ମନେ ରାଗ କରି ।
ବାବୁ ନକୁଳ ତୁ ଏଥୁ ଯାଅ ବେଗ ହୋଇ
ମୋ ରାଣ ଦେଇ ରାମକୁ ଆଣ ଲେଉଟାଇ ।
ଧାମଇଁ ନକୁଳ ଘେନି ସ୍ୱାମୀଙ୍କର ଆଜ୍ଞା
ଭୀମଠାରୁ ବଳିଗଲା ତାହାର ପ୍ରତିଜ୍ଞା ।
ଭୀମର ତୁଳେ ନକୁଳ ମିଳିଲା ସୁଯୋଗେ
ସେହି ପୁଣି ବେନି ବୃକ୍ଷ ଉପାଡ଼ିଣ ବେଗେ ।
ନିର୍ଦ୍ଧୂମ ଅନଳରାଶି ବିକଶିଲା କାୟେ
ପ୍ରତ୍ୟକ୍ଷେ ଦିଶନ୍ତି କେତୁ ମଙ୍ଗଳ ପରାୟେ ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହୋଇ ଢାଳେ ଦେଲେ ହସ୍ତ
ସହଦେବକୁ ବୋଇଲେ ହୋଇଲା କେମନ୍ତ ।
ଏକରୁ ଦୁଇ ଦୁଇରୁ ହେଲା ଏବେ ତିନି
ସତେ କି ଯେ ଦୁର୍ଯ୍ୟୋଧନ ଯିବ ଦେହ ଘେନି ।
ରାଗେ ଭୀମ ଆଜି ଶତେଭାଇଙ୍କୁ ମାରିବ
ଅନ୍ଧ ରାଜା ଗୋଟି ମୋର ଅନାଥ ହୋଇବ ।
ବାବୁ ଏହା ଯୋଗାଇ କି ଆମ୍ଭ ବିଚାରକୁ
ସ୍ତିରୀ ଛାର ପାଇଁ କିମ୍ବା ମାରିବ ଭାଇଙ୍କୁ ।
ନୋହୁ ନୋହୁ ସେ ଦ୍ରୌପଦୀ ତେଣେ କାର୍ଯ୍ୟ ନାହିଁ
ଯାଅ୍ ତୁ ସହଦେବରେ ଆଣ ବାହୁଡ଼ାଇ ।
ବାବୁ ତୁ ପଣ୍ଡିତ ବିଜ୍ଞ ମନ୍ତ୍ରୀ ଚୂଡ଼ାମଣି
ତୁ ବୋଇଲେ ବାହୁଡ଼ିବେ ସର୍ବେ ଏହିକ୍ଷଣି ।
ବାବୁ ନୋହୁ କି ନା ଆରେ ସ୍ତିରୀ ମାତ୍ର ଛାର
ସହୋଦର ଥିଲେ ସ୍ତିରୀ ପାଇବା ଅପାର ।
ମୋ ଶପଥ ସମସ୍ତଙ୍କୁ ଆଣ ବାହୁଡ଼ାଇ
ଧାଇଁଲେ ସହଦେବ ଯେ ଧର୍ମ ଆଜ୍ଞା ପାଇ ।
ବହନ ଧାଏଁ ସେ ବୀର ମନ୍ତ୍ରୀ ଚୂଡ଼ାମଣି
ଯୁଧିଷ୍ଠିର ବୋଲନ୍ତି ନ ରହେ ଦଣ୍ଡେ ପୁଣି ।
ସହଦେବ ଦ୍ୱନ୍ଦକାରୀ ଆମ୍ଭର ନୁହଇଁ
ଏହା ବଚନ ନ ଲଙ୍ଘୁ ଆମ୍ଭେ ଚାରିଭାଇ ।
ଏତେ ବୋଲି ସହଦେବ ମନ୍ତ୍ରୀକୁ ପେଷିଲେ
ବୃକ୍ଷେକ ଉପାଡ଼ି ସେହୁ କ୍ରୋଧରେ ଧାଇଁଲେ ।
ବନର କଷ୍ଟମାନ ଯେ ସୁମରିଣ ରାଗେ
ଭାଇ ତିନିହେଁ ଧାଇଁଲେ ତହୁଁ ଅତି ବେଗେ ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ଯୁଧିଷ୍ଠି
ସବୁହୁଁ ବଳିଲା ସହଦେବର ଅରିଷ୍ଟି ।
ଯୁଧିଷ୍ଠି ବୋଇଲେ ଆମ୍ଭେ ମନ୍ଦକୃତ୍ୟ କଲୁ
ଗୋଟିଏ ଗୋଟିଏ କରି ସବୁ ବରଗିଲୁ ।
ଏକ ତ ହୋଇଲା ଦୁଇ ଦୁଇରୁ ଯେ ତିନି
ତିନିରୁ ହୋଇଲା ଚାରି ସହଦେବ ଘେନି ।
କରିବେ ଅନେକ ଯୁଦ୍ଧ କଷ୍ଟକୁ ସୁମରି
ମହାବଳବନ୍ତ ପୁଣି ସେହି ଭାଇ ଚାରି ।
ଧାଇଁଲେ ଯେ ଏକମୁଖ ହୋଇ ଚାରି ବୀର
ଦିଅନ୍ତି ସେ ଘୋର ରଡ଼ି କମ୍ପାଇ ଶରୀର ।
ଚନ୍ଦ୍ର ଯେହ୍ନେ ଶୂନ୍ୟ ହୁଏ ରାହୁ ତେଜ ଦେଖି
ଭାଙ୍ଗିଗଲେ ଯୋଦ୍ଧାମାନେ ସମର ଉପେକ୍ଷି ।
ଦୁଃଶାସନ ଧାଇଁଗଲା ଗଦାକୁ ବୁଲାଇ
ବ୍ରାହ୍ମଣର ନିକଟକୁ ଏକମୁଖ ହୋଇ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଆଗେ ରହିଥିଲେ
ଦୁର୍ଯ୍ୟୋଧନକୁ ଦେଖିଣ ଭୟେ ପଳାଇଲେ ।
ଅର୍ଜ୍ଜୁନ ପାଶରେ ଯାଇ ହୋଇଲେ ପ୍ରବେଶ
ନ ରହ ପଣ୍ଡା ପଛକୁ ବେଗେ ଘୁଞ୍ଚିଆସ ।

ସମୁଦ୍ର ପୋତି ହୁଏ କି ଧୂଳି ପକାଇଲେ
ପର୍ବତ କି ଭାଙ୍ଗିଯାଏ ଟେଳାଏ ମାଇଲେ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ରାଜପୁତ୍ର ଅଟ
ରାଜ୍ୟ ପାଇବ କିମ୍ପାଇଁ ପାଇ ଏତେ କଷ୍ଟ ।
ପ୍ରତ୍ୟକ୍ଷେ ପାଇଛୁ ଆମ୍ଭେ ବ୍ରାହ୍ମଣ ଜନମ
ଘୁଞ୍ଚିଯାଅ ତୁମ୍ଭେ ଆଉ ନ କର ସଂଗ୍ରାମ ।
ଭିକ୍ଷାଷୀ ବ୍ରାହ୍ମଣ ଆମ୍ଭ ଜୀବନେ କି ଆଶ
ଜ୍ୱଳନ୍ତା ଅଗ୍ନିରେ ଆସି ଦେଉଅଛୁ ଝାସ ।
ଜିଣିଲେ ତ ଉପୁଜିବ ସାଧୁ ସାଧୁ ଧ୍ୱନି
ମଲେ ସ୍ୱର୍ଗପୁରେ ଯିବ ଛାଡ଼ି ସଂଯମନୀ ।
ଦୃଷ୍ଟଦ୍ୟୁମ୍ନ ବୋଇଲେ ଗୋ ଆସ ଯିବା ବେଗେ
ସମୁଦ୍ର ପରାୟେ ଯୋଦ୍ଧା ଆସୁଛନ୍ତି ରାଗେ ।
ଦ୍ରୌପଦୀ ବୋଇଲେ ଭାଇ ହେଲ କି ଅଜ୍ଞାନ
କରିବ କି ତୁମ୍ଭେ ସତ୍ୟ ବଚନ ଲଙ୍ଘନ ।
ଯେ ବିନ୍ଧିଲା ଲାଖ ଜାଣି ସେହି ମୋର ବର
ସେହି ମୋ ଜୀବନ ଧନ ମୁଁ ଦାସୀ ତାହାର ।
ସେ ମଲେ ତାହାର ସଙ୍ଗେ ମରଣ ମୋହର
ଆଉ କାହିଁପାଇଁ ମୁହିଁ ଯିବି ତୁମ୍ଭ ଘର ।
ପିତାଙ୍କୁ ସଙ୍ଗରେ ଘେନି ଯାଅ ବେନି ଭାଇ
ନଗରକୁ ରକ୍ଷା କର ସୈନ୍ୟ ସଙ୍ଗେ ନେଇ ।
ଏ ଦୁଷ୍ଟ ରାଜା ଏତିକି ବାହାନ୍ତି ପୁରକୁ
ମୁହିଁ କେବେ ନ ଛାଡ଼ିବି ଏ ଦ୍ୱିଜବରକୁ ।
ଏତେ କଥାବାର୍ତ୍ତା ହେଉ ଦୁଃଶାସନ ବୀର
ଗଦା ବୁଲାଇ ପ୍ରବେଶ ଅର୍ଜ୍ଜୁନ ଛାମୁର ।
ଆରେରେ ବ୍ରାହ୍ମଣ ତୋର ଏଡ଼େକ ଭରସା
ଜଳନ୍ତା ଯୁଇରେ ଝାସ ଦେବାକୁ ତୋ ଆଶା ।
ବେଗେ ତୁହି ଦ୍ରୌପଦୀକୁ ଛାଡ଼ରେ ବ୍ରାହ୍ମଣ
ଦୟା ନ କରି ତୋ ମୁଣ୍ଡ ମୋଡ଼ିବି ଏକ୍ଷଣ ।
ଦୁଃଶାସନ ଅର୍ଜ୍ଜୁନକୁ ବୋଲିବା ସମୟେ
ରେ ରେ କାର କରି ପଛେ ଭୀମସେନ ଧାଏଁ ।
ଦୁଃଶାସନ ଜ୍ଞାନ ନାହିଁ ବିପ୍ର କତି ବୋଲି
ପାଞ୍ଚାଳ ଧରିବ ବୋଲି ଯାଉଅଛି ପେଲି ।
ବେନି ବୃକ୍ଷ ବୁଲାଇଣ ପଛଆଡୁ ଭୀମ
ଦୁଃଶାସନକୁ ପିଟିଲା ବହି ମହାତମ ।
ଭୂମିତଳେ ପଡ଼ିଲାକ ଗଜ ଦୁଃଶାସନ
ନାସା ମୁଖରୁ ରୁଧିର ବହେ ଘନ ଘନ ।
ଯାଇ ପ୍ରବେଶିଲେ ଭୀମ ଅର୍ଜ୍ଜୁନର ପାଶେ
ପଡ଼ିଅଛି ଦୁଃଶାସନ ଡେଇଁ ଗଲା ରୋଷେ ।
ଦ୍ରୌପଦୀ ବୋଇଲେ ତୁମ୍ଭେ ଶୁଣ ହୋ ପଣ୍ଡାଏ
ଏ ପଣ୍ଡା ତୁମ୍ଭର କିସ ହୁଅନ୍ତି ହେ ଧାଏଁ ।

ଏହାଙ୍କର ତେଜ ଦିଶେ ଅନେକ ପରାୟ
ବାହୁ ଦୁଇ ଶାଳଗଜା ଗିରିତୁଲ୍ୟ କାୟ ।
ଦ୍ରୌପଦୀର ଅଗ୍ରତରେ ଅଛଇ ଫାଲଗୁନି
ଆମ୍ଭର ଏ ଜ୍ୟେଷ୍ଠ ଭ୍ରାତା ଜାଣ ଯାଜ୍ଞସେନି ।
ଗର୍ଜି ମାରୁତି ଧଇଲା ମହାକୋପ କରି
ବାମ କରେ ଦୁଃଶାସନ କେଶକୁ ଓଟାରି ।
ମୁଣ୍ଡ ତାର ମୋଡ଼ିବାକୁ ଲୋଡ଼ଇ ମାରୁତି
ଅର୍ଜ୍ଜୁନ ବୋଇଲେ ସ୍ୱାମୀ କୋପ କର ଶାନ୍ତି ।
ଯୁଧିଷ୍ଠି ଦେବ ଏହାକୁ ସୋଦର ବୋଲନ୍ତି
କିଞ୍ଚିତ ଦୋଷକୁ ନୁହେଁ ବହୁତର ଶାସ୍ତି ।
ଅର୍ଜ୍ଜୁନ ଛଡ଼ାଇ ଦେଲା ଦୁଃଶାସନ ବଳ
ଫିଙ୍ଗି ଦେଲା ଜାନୁତଳେ ଗଳାଇ କେବଳ ।
ଦୁର୍ଯ୍ୟୋଧନ ଅଗ୍ରତରେ ଶକୁନି କହିଲା
ବିପ୍ର କୋପେ ଦୁଃଶାସନ ତୋର ନାଶ ଗଲା ।
ଶକୁନି ମୁଖରୁ ଶୁଣି ଏସନ ବଚନ
କୋପରେ ଉଠିଲା ଶିର ଝୁଣି ଦୁର୍ଯ୍ୟୋଧନ ।
କୋପେ ହସ୍ତୀ କି ଚଳାଇ ଦେଲା କୁରୁପତି
ବ୍ରାହ୍ମଣ ବୋଲି ମୁଁ ଛାଡ଼ିଥିଲି କୋପମୂର୍ତ୍ତି ।
ଦୁଃଶାସନ ଅପମାନ ନ ପାରଇ ସହି
ଭିକ୍ଷାଷୀ ବିପ୍ରର ଏଡ଼େ ଗାରିମା କିମ୍ପାଇଁ ।
ଦୁଃଶାସନ ଅପମାନ ଦେଖି ସର୍ବ ଭାଇ
ଗର୍ଜି କୋପାନଳ ହୋଇଗଲେ ତହୁଁ ଧାଇଁ ।
ନକୁଳ ସହଦେବ ଏ ଆସୁଛନ୍ତି ଦୁଇ
ପଡ଼ିଲା ଦୁର୍ଜ୍ଜୟ ବୀର ତାଙ୍କ ମୁଖେ ଯାଇ ।
ଦୁର୍ଜ୍ଜୟ ମାଇଲା ବାଟେ ନକୁଳକୁ କୁନ୍ତେ
ବଞ୍ଚାଇ ନକୁଳ ତାହା ଧରି ବାମହସ୍ତେ ।
ଛଡ଼ାଇ ନେଇ ମାଇଲା କୋପେ ପଦାଘାତ
ଉତ୍ତାନ ହୋଇ ପଡ଼ିଲା ଦୁଃଶାସନ ଭ୍ରାତ ।
ସେହି କୁନ୍ତ ଘେନି ପୁଣି ପୋଡ଼ିଲା ତା ହୃଦ
ହସ୍ତୀରେ ଥାଇ ଦେଖିଣ ଯେ ମାନଗୋବିନ୍ଦ ।
ଦୁର୍ଜ୍ଜୟ ଦଶା ଦେଖିଣ ଧାଇଁଲା ଦୁର୍ଜ୍ଜଟି
ବୃକ୍ଷକୁ ବୁଲାଇ ସମଦେବ ନେଇ ଫିଟି ।
ଘାଏ ଦୁର୍ଜ୍ଜଟି ପଡ଼ିଲା ତଳେ ମୁହଁ ମାଡ଼ି
ରୁଧିରମୟ ହୋଇଲା ପାଷାଣରେ ପଡ଼ି ।
ସଂଗ୍ରାମେ ବିରତ ଯହୁଁ ହେଲେ ଭାଇ ତିନି
ସମରକୁ ଆବୋଡିଲା ମନ୍ତ୍ରୀ ଯେ ଶକୁନି ।
ଶକୁନିକୁ ଦେଖି ଧାଇଁଲାକ ସହଦେବ
ରେ ରେ କାର କରି ବୃକ୍ଷ ପ୍ରହାରିଲା ଜବ ।
ବୃକ୍ଷର ବିଘାରେତ ପଡ଼ି ମଲା ତା ସାରଥି
ଭୂମିରେ ରଥେ ବସିଲା ହୋଇଣ ବିରଥି ।

ତକ୍ଷଣେ ରଥରୁ ଡେଇଁ ପଡ଼ିଲା ଶକୁନି
ସହଦେବକୁ ବିନ୍ଧିଲା କରେ ଧନୁ ଘେନି ।
ନାରାଚକୁ ବଞ୍ଚାଇଲା ମନ୍ତ୍ରୀ ଚୂଡ଼ାମଣି
ଶକୁନିକୁ ଏକ ବୃକ୍ଷ ପ୍ରହାରିଲା ଆଣି ।
ଘାଏ ଅସାକ୍ଷମ ହୋଇ ବୀରବର ମନ୍ତ୍ରୀ
ଶକୁନିର କେଶ ଧରି ସହଦେବ ଧାତି ।
ଡାହାଣ ପାଦକୁ ସହଦେବ ଉର୍ଦ୍ଧ୍ୱେ ଟୋଳି
ଫିଙ୍ଗି ଦିଅନ୍ତି ସେ ଗଲା ଜାନୁତଳେ ଗଳି ।
ଶକୁନିର ରଥ ଘେନି ଗଲେ ଭାଇ ବେନି
ଅର୍ଜ୍ଜୁନ ପାଦରେ ଯାଇ କରନ୍ତି ଦଇନି ।
ରଥ ହୋଇଛି ଅନେକ ରତ୍ନରେ ମଣ୍ଡଣି
ଦେଖିଣ ସାନନ୍ଦ ହେଲେ ଦ୍ରୁପଦ ଦୁଲଣୀ ।
ଏମାନେ ତୁମ୍ଭର ସ୍ୱାମୀ କିସ ଯେ ହୁଅନ୍ତି
ଏ ମୋର ଅନୁଜ ବୋଲି ଅର୍ଜ୍ଜୁନ କହନ୍ତି ।
ଦେଖି ପାଞ୍ଚାଳୀ ପ୍ରଶଂସା କରନ୍ତି ଅନେକ
ସାକ୍ଷାତେ ଦିଶନ୍ତି ମୀନକେତନ ପ୍ରାୟେକ ।
ସଂଗ୍ରାମେ ଦିଶନ୍ତି କେତୁ ମଙ୍ଗଳ ପରାୟେ
କୋଳ କଲା ସେ ଦୁହିଁଙ୍କୁ ଭୀମ ଅତି ସ୍ନେହେ ।
ଏମନ୍ତ ସମୟେ ଆସେ କର୍ଣ୍ଣ ମହାରଥି
ପାଖରେ ଅଛନ୍ତି ଚାରି ଆୟୁତ ଯେ ହସ୍ତୀ ।
କର୍ଣ୍ଣର ମୂରତି ଦେଖି ସାନନ୍ଦ ପାବନୀ
ଗର୍ଜି ଉଠି ବୁଲାଇଲା କରେ ବୃକ୍ଷ ବେନି ।
ଅର୍ଜ୍ଜୁନ କହେ ପ୍ରଣମି ଭୀମସେନ ପାଦେ
ସମ୍ଭାଳି ଯୁଦ୍ଧ କରିବା ନ ଛାଡ଼ି ପ୍ରମାଦେ ।
ରାଜାଙ୍କୁ ଘଉଡ଼ି ଦିଅ ଭଙ୍ଗାଇଣ ଥାଟ
ପଳାନ୍ତି ସେ କଉରବେ ପାଇ ମହାକଷ୍ଟ ।
ଭ୍ୟାଇଲେ ଶତ୍ରୁ ମର୍ଦ୍ଦନ ବାନା ବିଦ୍ୟମାନେ
ଯୁଧିଷ୍ଠି ଠାକୁରଙ୍କର କଷ୍ଟ ହେବ ମନେ ।
ସବୁରି ମୁଖେ ଏସନ ବଚନକୁ ଶୁଣି
ଏକାଳେ କର୍ଣ୍ଣ ବିନ୍ଧିଲା ନାରାଚେକ ଆଣି ।
ଭୀମସେନ ଯୁଦ୍ଧେ ଦୁଃଶାସନକୁ ଜିଣିଲା
ଚଉଷଠି ଭାର ଗଦା ଛଡ଼ାଇ ଘେନିଲା ।
ସେ ଗଦା ବେନି କି ଭୀମ ଘେନିଅଛି ହସ୍ତେ
ଦ୍ରୁପଦ ରାଜାର ଧନୁ ଅଛି ପାର୍ଥ ହସ୍ତେ ।
ଆଦ୍ୟେ ରଚିଲେ ଯେବଣ ଧନୁ ବିଶ୍ୱକର୍ମା
ତ୍ରେତାରେ ବହିଲେ ତାହା ଈଶ୍ୱର ମହାତ୍ମା ।
ନକୁଳ ଜିଣିଲା ରଣେ ଦୁର୍ଜ୍ଜୟ ସମର୍ଥ
ତାହାର ହସ୍ତୁ ଯେ ଘେନିଗଲା ତୀକ୍ଷ୍ଣ କୁନ୍ତ ।
ସେ କୁନ୍ତ ଗୋଟି ରହିଛି ନକୁଳର କରେ
ଦୁର୍ଯ୍ୟୋଧନ ଦେଖି ଦନ୍ତ ଚାପିଣ ଅଧରେ ।

ଶକୁନିକୁ ଜିରିଲା ସେ ସହଦେବ ମନ୍ତ୍ରୀ
କରେ ଘେନିଅଛି ତାର କୋଦଣ୍ଡ ଭାରତୀ ।
ତ୍ରିକଚ୍ଛେ କାଛେଣୀ ଫେଡ଼ି ମାଳବନ୍ଧେ ପିନ୍ଧି
ଲମ୍ବିତ ଜୁଡ଼ାକୁ ଫେଡ଼ି ମାଳବନ୍ଧେ ବାନ୍ଧି ।
ବାମକନ୍ଧେ ଲମ୍ବିଛି ନ ହୋଇଛି ପଇତା
ଅଧରେ ଦନ୍ତକୁ ଚାପି କୋପ ଚାରିଭ୍ରାତା ।
ତ୍ରିପଣ୍ଡ ଚିତା ପଇତା କପଟେ ସେ ପଣ୍ଡା
ହୃଦରେ ରୁଦ୍ରାକ୍ଷମାଳା ହସ୍ତରେ ଯେ ଖଣ୍ଡା ।
ମର୍ତ୍ତ୍ୟେ ଅଧିପତି ବିଷ୍ଣୁଙ୍କର ଦ୍ୱିତୀୟାତ୍ମା
ଭାରା ନିବାରଣେ ତାଙ୍କୁ ସୃଜିଲେକ ବ୍ରହ୍ମା ।
ରେ ରେ କାର ଶବଦରେ ଉଠିଲାକ ଗର୍ଜି
ଶବଦର ଘାତେ ଗିରି ପଡ଼ିଲାକ ଭାଜି ।
ବିଦୂର ଦେଖିଲେ ଚାରି ପାଣ୍ଡବ ମୂରତି
ବନସ୍ତେ ପାଇଲେ ପୋଏ ମୋର ଅନ୍ନ ଶାନ୍ତି ।
ଭୀଷ୍ମ ବୋଇଲେ ହେ ଦ୍ରୌଣ ଏ କଥା କେମନ୍ତ
ଏ ନକୁଳ ସହଦେବ ଭୀମସେନ ପାର୍ଥ ।
ଚାରିଭାଇ ଆସି ଏବେ ହୋଇଲେକ ଏକ
ନିଶ୍ଚୟ କୌରବେ ଆଜି ହୋଇଲେ ନିରେଖ ।
ଭୀଷ୍ମ ବୋଇଲେ ହେ ସମାଧାନ କରିଦେବା
ଦ୍ରୌଣ ବୋଇଲେ ଆଜକ ସଂଗ୍ରାମ ଦେଖିବା ।
ଆଜକ ସଂଗ୍ରାମ ସେ ଯେ କରିଲେ ନିପ୍ରୋଧି
ଜାଣିବା ନା ପାଣ୍ଡବେ କେହୁ ସମାନ ଯୋଦ୍ଧୀ ।
ଚାରି ଅୟୁତ ଯୋଦ୍ଧାଙ୍କୁ ଘେନି ବୀର କର୍ଣ୍ଣ
ଦୁର୍ଯ୍ୟୋଧନକୁ ରୁହାଇ ଧାଏଁ ଘନ ଘନ ।
କର୍ଣ୍ଣ ବୀର ରଥରେ ଯେ ବିକର୍ଣ୍ଣ ସାରଥି
ବାହଇ ସେ ତୁରଙ୍ଗମ ପବନ ହୁଁ ଗତି ।
ଭୀମସେନ ଧାଇଁଗଲା ଗଦାକୁ ବୁଲାଇ
କର୍ଣ୍ଣର ରଥରେ କୋପେ ପିଟିଲା ତା ନେଇ ।
ଭାଙ୍ଗି ରଥ ଅଶ୍ୱସହ ହେଲା ଶ୍ୱେତଚୂର୍ଣ୍ଣ
କୃତାନ୍ତକ ପ୍ରାୟେକ ସେ ଆସେ ଭୀମସେନ ।
କର୍ଣ୍ଣକୁ ବିରଥ ଦେଖି କି ଆସେ ଅଶ୍ୱତ୍ଥାମା
ରଥେ ରଥ ଆବୋରିଲେ ଦେଖି ମହାତମା ।
ଧନୁଏ ଧନୁଏ ଧରି ବିନ୍ଧିଲେ ନାରାଚ
ଭୀମକୁ ବିନ୍ଧିଲେ କୋପେ ଶଲ୍ୟ ମହାରାଜ ।
ଅନ୍ତରୀକ୍ଷେ ବୁଲାଇଲା ଗଦା ଭୀମସେନ
ମାରୁତି ଅଙ୍ଗେ ନାରାଚ ପଡ଼ି ହୁଏ ଚୂର୍ଣ୍ଣ ।
ଗର୍ଜି ବୃକୋଦର ଦିଏ ଘୋର ସିଂହ ରଡ଼ି
ଶଲ୍ୟଙ୍କ ରଥକୁ କୋପେ ଧଇଲା ଦରାଣ୍ଡି ।
ବୁଲାଇଲା ସେ ରଥକୁ ଧରି ଅନ୍ତରୀକ୍ଷେ
ଅଶ୍ୱତ୍ଥାମା ରଥେ ନେଇ ପିଟିଲା ପ୍ରତ୍ୟକ୍ଷେ ।

ଭାଙ୍ଗିଣ ସେ ରଥ ଦୁଇ ହେଲା ମସିଗୁଣ୍ଡା
ରଣରଙ୍ଗେ ମାରୁତି ଯେ ମାରେ ବେନି ଖଣ୍ଡା ।
ଗଜଙ୍କ ଉପରେ ବସି ଅଛନ୍ତି ରାଉତେ
ମାରନ୍ତି ଲଙ୍କିଆ ଛେଲ ପ୍ରହାରନ୍ତି କୁନ୍ତେ ।
ବାମଅଙ୍ଗେ ପଡ଼ି ଭୀମ ନ କରଇ ଭୀତି
ଦରାଣ୍ଡି ବେନି ଭୁଜରେ ଧରି ବେନି ହସ୍ତୀ ।
ମହାହସ୍ତୀ ଯେ ଦିଶନ୍ତି ପର୍ବତର ପ୍ରାୟ
ଅନ୍ତରୀକ୍ଷରେ ବୁଲାଇ ପବନ ତନୟ ।
ଦୁଇ ହସ୍ତରେ ଧରି ସେ ବୁଲାଇ ବୁଲାଇ
ଗଜ ଯୋଦ୍ଧାଙ୍କ ଉପରେ ପ୍ରହାରିଲା ନେଇ ।
ଗଜକୁ ଭୁଜେ ଧରିଣ ଭୂମିରେ ସେ ପିଟି
ହାବୁଡ଼ା ଘାତରେ ରଥ ପଡୁଅଛି ଲୋଟି ।
ଆରେ ଆରେ ବୋଲି ଗଜମାନେ ପଦାଘାତେ
ଚରଣ ବାଜିଣ ଚୂର ହୁଅନ୍ତି ରାଉତେ ।
ଉଠିଲେ ଗୌରବ ବଳ ଦେଇ ଘୋର ରଡ଼ି
ସହସ୍ରେକ ପୂର କରି ଭୀମକୁ ଯେ ବେଢ଼ି ।
କୁଣ୍ଡଳ ଆକାରେ ଗଦା ଅସିପତ୍ର ବୁଲି
ଝଲକନ୍ତି ସେ ଶ୍ୟାମଳ ମେଳେ କି ବିଜୁଳି ।
ବେଢ଼ି ଯୋଦ୍ଧାଏ କରନ୍ତି ଭୀମକୁ ପ୍ରହାର
ଶରମାନ ନ ଭେଦନ୍ତି ଭୀମର ଶରୀର ।
ଶତଶୃଙ୍ଗ ସୁପ୍ରସନ୍ନେ ଯାକୁ ଜନ୍ମ କାଳେ
ବଜ୍ର ଅଙ୍ଗ ବୃକୋଦର ମୁରତିର ବଳେ ।
ଉଗ୍ରରୂପ ବିକାଶିଣ ଅଛଇ ପାବନୀ
ଏକୋତ୍ତର ଶତଶୃଙ୍ଗ ପରାକ୍ରମ ଘେନି ।
କହନ୍ତେ ଯେ ଅସମ୍ଭବ ସେ ସଂଗ୍ରାମ କଥା
ଭୟେ ଆସନ ଛାଡ଼ଇ ଶମନ ଦେବତା ।
ଗହଳ ଯୁଦ୍ଧ ଦେଖିଣ ନାରଦ ଯେ ମୁନି
ଆକାଶେ ଥାଇଣ ଛାଡ଼ିଦେଲେ କଳିମୁଣି ।
ଲାଗୁ ଲାଗୁ ବୋଲି ଡାକ ଦେଲେ ତପୋନିଷ୍ଠ
ସିଂହର ଗୃହରେ ପଶି ଶଶା କରେ ନାଟ ।
ଧିକ ଧିକ କ୍ଷତ୍ରିୟରେ ମୁଖେ ଲାଜ ନାହିଁ
କ୍ଷତ୍ରିୟ କନ୍ୟାକୁ ବଳେ ଭିକାରୀ ନିଅଇ ।
ଡାକନ୍ତି ସେ ପାଣ୍ଡବଙ୍କ ଗୁପ୍ତନାମ ଧରି
ମାର ମାର କ୍ଷତ୍ରିୟଙ୍କୁ ବିପ୍ରଗଣ ଘେରି ।
ଏପରି ଅନୀତି କେହି କରିବ ଜଗତେ
ବ୍ରାହ୍ମଣେ ବିନ୍ଧିଲା ଲାଖ ଦେଖିଲୁ ସାକ୍ଷାତେ ।
ଧାଅଁ ଧାଅଁ କଉରବ ନ ଘୁଞ୍ଚ ସଂଗ୍ରାମେ
ପଣ୍ଡାକୁ ଖଣ୍ଡାରେ ମାରି ଏଥୁ ଯାଅ କ୍ଷେମେ ।
ଆରେରେ କୌରବେ କିମ୍ପା ହେଳା କରୁଅଛ
ସଂଗ୍ରାମେ ବ୍ରାହ୍ମଣ ପୁଣି ହୁଅନ୍ତା ନା ଉଚ୍ଚ ।
ବ୍ରାହ୍ମଣ ପରାୟେ ତୁମ୍ଭେ ନ ବୁଝ ଏହାଙ୍କୁ
ଯମ ଦେବତା କି ବିଜେ କଲେ ସଂଗ୍ରାମକୁ ।
କଳି କୁତୁହଳ ମୁନି ଦେଖିବା ନିମନ୍ତେ
ସୈନ୍ୟକୁ ଉଚ୍ଚାଟ ବାଣୀ କହିଲେ ଏମନ୍ତେ ।
ଚାରିଗୋଟା ବ୍ରାହ୍ମଣଙ୍କୁ ଲକ୍ଷେକ ନୃପତି
କାହା ମୁଖ ଚାହିଁବଟି ଭାଙ୍ଗିଗଲେ ଏଥି ।
ଲାଗୁ ଲାଗୁ ବୋଲି ଡାକ ଦେଲେ ବ୍ରହ୍ମାସୁତ
ନିରାଶେ ଧାଇଁଲେ ସର୍ବ ନୃପତି ସାମନ୍ତ ।
କୁନ୍ତ ନାରାଚ ଖଡ଼ଗ ଫଳା ଶକ୍ତି ଘେନି
ଦୁନ୍ଦୁଭିର ଘୋର ନାଦ ଶୁଣେ ଘୋର ଧ୍ୱନି ।
କରେ ଏକ ଧନୁ ଧରି ମନ୍ତ୍ରୀ ସହଦେବ
ଧାଇଁଲେକ ଘୋର ନାଦ କରିଣ ପାଣ୍ଡବ ।
ଭୀମକୁ ଯେ ବେଢ଼ିଥିଲେ ଅନେକ ନୃପତି
ନକୁଳର କୁନ୍ତଘାତେ ବେନି ଭାଗ ହୁନ୍ତି ।
ଦୁଃସହ ସଂଗ୍ରାମ ଦେଖି ଦେବ ସୁରପତି
ଆକାଶୁ ତୂଣୀର ଦୁଇ ଛାଡ଼ିଲେ ଝଟତି ।
ମାତଳି ରଥେକ ଆଣି ଦେଲେ ଅର୍ଜ୍ଜୁନଙ୍କୁ
ସହସ୍ରାକ୍ଷ ଦେଲେ ବୋଲି ବୋଇଲା ତାହାଙ୍କୁ ।
ଦେବଶର ପାଇଣ ସେ କୁମାର ଫାଲଗୁନି
ବିନ୍ଧିଲା ନାରାଚ ସନ୍ଧି ଅନୁକ୍ଷଣେ ଘେନି ।
ପାଞ୍ଚଲକ୍ଷ ସୈନ୍ୟ ଘେନି ଉଠିଲାକ ଜରା
ଅର୍ଜ୍ଜୁନକୁ ବେଢ଼ିଲା ସେ ଆସି ହୋଇ ତ୍ୱରା ।
କେ ଶତ ନାରାଚ କେହି ବେନି ଶତ ମାରି
ସହସ୍ରେ ନାରାଚ କେହି ବିନ୍ଧନ୍ତି ବା ଧରି ।
କେ ଲକ୍ଷ ବିନ୍ଧଇ କେହି ବିନ୍ଧଇ ଅୟୁତ
କକଡ଼ା ମାସର ବୃଷ୍ଟି ଜିଣି ଶର ପାତ ।
ଦୁଃସହ ନାରାଚେ ଦେଖାଯାନ୍ତି ମହାଘୋର
ଆକଶେ ଅଦୃଶ୍ୟେ ହେଲେ ପ୍ରଭୁ ଦିନକର ।
ଅନେକ ଶର ଘେନିଣ ବିନ୍ଧନ୍ତି ସେ ରାୟେ
ଦିବସ ଦିଶିଲା ଘୋର ରାତ୍ରିର ପରାୟେ ।
ସାଧୁରେ ପାଣ୍ଡବ ତୁମ୍ଭ ମହିମା ହିଁ ଧନ୍ୟ
ଚାରି ଜଣେ ଘୋଟିଅଛି ଲକ୍ଷେ ରାଜା ସୈନ୍ୟ ।
ଗୋବିନ୍ଦ ବୋଇଲେ ଦେଖ ସ୍ୱାମୀ ବଳରାମ
ପାଣ୍ଡବଙ୍କ ଯୋଦ୍ଧାପଣେ ଦୁଃସହ ସଂଗ୍ରାମ ।
ଦଶ ସହସ୍ର ନୃପତି ଶର ଯେତେ ବିନ୍ଧି
ଏକା ଅର୍ଜ୍ଜୁନ ସମସ୍ତ ଶରକୁ ନିରୋଧି ।
ନକୁଳ ମହିମା ଦେବ କେହୁ କହିପାରେ
ଏକ କୁନ୍ତକରେ ଶତ ସହସ୍ର ହିଁ ମାରେ ।
ପବନହୁଁ ବେଗ ଦେଖ ସହଦେବ ଯୁଦ୍ଧ
ଅୟୁତେ ରଥି ମାଇଲା ପ୍ରହରକ ମଧ୍ୟ ।

ଭୀମ ଯୁଦ୍ଧ କରିବାକୁ ଦେବେ ଅଗୋଚର
ପ୍ରହରକେ ରଥ ଅଶ୍ୱ ସାରଥି ସେ ଚର ।
ରତନ ମୁକୁଟ ଶିର ସୀମାନ୍ତରେ ଭୂଷା
ସୁଗନ୍ଧ ଚନ୍ଦନ ଦେଖ ହେଲା ରକ୍ତମିଶା ।
ଜରାସନ୍ଧ ଛାମୁରେ ଯେ ମିଳିଲା କିରୀଟି
କରେ ଧନୁ ଧରି କରେ ସେ ନାରାଚ ବୃଷ୍ଟି ।
ମାଇଲାକ ତୀକ୍ଷ୍ଣ ମୁନା ଶର ସବ୍ୟସାଚୀ
ଅନ୍ତରୀକ୍ଷେ ଜରାକୁ ଯେ ନ ଦିଶିଲା କିଛି ।
ହୃଦେ ପଡ଼ିଲା ତାହାର ସେ ନାରାଚ ଗୋଟି
ସ୍ନେହ୍ନା ଭେଦି ଭିତରକୁ ଶର ଗଲା ଫୁଟି ।
ସାଧୁ ସାଧୁ ପାର୍ଥ ବୋଲି ପ୍ରଶଂସିଲେ ହଳୀ
ତୋର ପରା ସଖା ଥାଉଁ ହେଲୁ ଏତେ ଭଳି ।
ଏ ଜରା ଯୋଗୁଁ ପାଇଲୁ ଆମ୍ଭେ ଯେତେ ଦୁଃଖ
ଅଠରବାର ଅଇଲା ହୋଇଲୁ ନିରେଖ ।
ଏସନ ମହିମା ଅଛି ତୋର ବାଳକାଳେ
ଜିଣି ନ ପାରିଲି ମୁହିଁ ଗୋଟି ସିଂହବଳେ ।
ଆଦ୍ୟରୁ ଆମ୍ଭେ ଯଦ୍ୟପି ତୋତେ ବରିଥାନ୍ତୁ
ମଥୁରାପୁରକୁ ଆମ୍ଭେ କିମ୍ପାଇଁ ଛାଡ଼ନ୍ତୁ ।
ହରି ତୁହି ଆପେ ବିଜେ କର ସଂଗ୍ରାମକୁ
ଜରା ଶିରଚ୍ଛେଦ ବୋଲି ବୋଲ ଅର୍ଜ୍ଜୁନକୁ ।
ତାହାଠାରୁ ଆମ୍ଭ ଭୟ ଯାଉ ଜଗନ୍ନାଥ
ଗୋବିନ୍ଦ ବୋଇଲେ କ୍ଷତ୍ରୀଧର୍ମ ଜାଣେ ପାର୍ଥ ।
ପିଠି କରି ପଳାଇଲେ ଭୟର ବିକଳେ
ସେପରି ଲୋକକୁ କେହି ନ ମାରେ ସେ କାଳେ ।
ଜରା ପାଇଁ ଭୟ କିଛି ନାହିଁ ଦେବରାୟ
ଏହି ପାଣ୍ଡବଙ୍କ ହସ୍ତେ କରାଇବି କ୍ଷୟ ।
ଶୁଣି ବଳରାମ ହେଲେ ପରମ ଆନନ୍ଦ
ଜୀବନ ପାଇବ କାହୁଁ କଉରବ ବୃନ୍ଦ ।
ବୋଇଲେ ହେ ହରି ଚାଲ ଦ୍ୱାରକାକୁ ଯିବା
ଧୃତରାଷ୍ଟ୍ର ପୁଅଙ୍କର କଷ୍ଟ ନ ଦେଖିବା ।
ଗୋବିନ୍ଦ ବୋଇଲେ ଆଜ ରହିବାକୁ ଏଥେ
ଏ କନ୍ୟା ପାଣ୍ଡବେ ପୁଣି ନିଅନ୍ତି କେମନ୍ତେ ।
ପ୍ରତ୍ୟକ୍ଷେ ଲାଖି ବିନ୍ଧିଲା ବୀର ଧନଞ୍ଜୟ
ରଣ ମନ୍ଥନ କରୁଛି ପବନ ତନୟ ।
ଯୁଧିଷ୍ଠିର ଅଛନ୍ତି ତ ଜ୍ୟେଷ୍ଠ ଅନୁକ୍ରମେ
ପାର୍ଥ ବରଣ ନ ହେଲା ବିଚାରିଣ ଧର୍ମେ ।
କାହାକୁ ବିଭା ହୋଇବ ଏହି ଯାଜ୍ଞସେନି
କେମନ୍ତେ ଭିଆଇବେ ସେ ବ୍ୟାସ ମହାମୁନି ।
ଏହିପରି ବିଚାରନ୍ତି କୃଷ୍ଣ ବଳଦେବ
ବହୁତର ବିଚାରନ୍ତି ଯୁଦ୍ଧର ପ୍ରସ୍ତାବ ।
ଅଗାଧ ସମୁଦ୍ର ଏହି ଶ୍ରୀ ମହାଭାରତ
ବିସ୍ତାରି ଲେଖିବାକୁ କେ ହୋଇବ ସମର୍ଥ ।
ଏ ନିମନ୍ତେ ଠିକ ଠିକ ଭାବ ରଖାଇବି
ପ୍ରସନ୍ନେ ଯେ ସଦ୍‌ବୁଦ୍ଧି ଦେଲେ ବାକ୍ୟ ଦେବୀ ।
ଯାହା ମୋତେ ଦୃଶ୍ୟ ହୁଏ ତାହା ମୁଁ ଲେଖଇ
ଅତି ଅଗୋଚର ଯାହା ନ ପାରେ ମୁଁ କହି ।
ଏ ନିମନ୍ତେ କହିଲି ମୁଁ ଠିକ ଠିକ ଭାବେ
ଶ୍ରୀ ଶାରଳା ଦାସ ଏହା ବଦନ୍ତି ପ୍ରସ୍ତାବେ ।

—୦—

## ରାଜାମାନଙ୍କ ସହିତ ପାଣ୍ଡବଙ୍କର ଯୁଦ୍ଧ

ଅଗସ୍ତିଙ୍କୁ ପୁଚ୍ଛାକଲେ ବୈବସ୍ୱତ ଜ୍ଞାନୀ
ରଣରଙ୍ଗ କଉତୁକ କହିବା ହେ ମୁନି ।
ବଦନ୍ତି ଅଗସ୍ତି ମୁନି ମନୁ ପୁରୁଷଙ୍କୁ
ନିସତ ଦେଖି ଛାଡ଼ିଲି ସେ ଜରାସନ୍ଧକୁ ।
ବାଣା ନାରକା ଶମ୍ବର ବଜ୍ରନାଭ ବୀର
ଏ ଚାରିଙ୍କ ତୁଲେ ଯୋଦ୍ଧା ଚାରି ଯେ ସାଗର ।
ଏତକ ଘେନି ସଙ୍ଗରେ ଉଠିଲେ କୌଣପେ
ମନ୍ଦର ଗିରି ପରାୟେ ଦିଶନ୍ତି ସ୍ୱରୂପେ ।
ଘୋଟନ୍ତି ସେ ମେଦିନୀକୁ ଉଲକାପାତ ଜାଣି
ବିସ୍ମୟ ପାଇଲେ ଦେଖି ଦ୍ରୁପଦ ଦୁଲଣୀ ।
ବୋଇଲେ ଦ୍ରୁପଦ ଦେବୀ ଶୁଣଲୋ କେଶିନୀ
ଅନ୍ଧାରେ ନ ଦିଶେ କେତେ କାହାର ବାହିନୀ ।
ମୃଦୁସୁଳୀ ବୋଇଲା ଗୋ ଶୁଣ ଶଶି ମୁଖୀ
ଚାରି ରାଜାଙ୍କର ସୈନ୍ୟ ଆସୁଛନ୍ତି ସଖି ।
ଅଟନ୍ତି ଅସୁର ବୀର ଏହି ଚାରି ରାୟେ
ବାଣା ନାରକା ଶମ୍ବର ବଜ୍ରନାଭ ଧାଏଁ ।
ଦ୍ୱିତୀୟ ସାଗର ପ୍ରାୟ ଦିଶୁଛନ୍ତି ଥାଟ
ଦେଖି ଦେବରାଜା ଭୟେ ଛାଡ଼ିଦିଏ ବାଟ ।
ଏ ଯେବେ ଏହାଙ୍କୁ ଆଜି ଆଣିବଟି ଭୋଳେ
ପ୍ରତ୍ୟକ୍ଷେ ଜାଣିବା ସିନା ଏହି ଦିଗପାଳେ ।
ଦ୍ରୌପଦୀ ବୋଇଲେ ଶୁଣ ଆଗୋ ମୃଦୁସୁଳୀ
ଏହିକ୍ଷଣି ଜିଣିବେ ମୁଁ ଶକୁନ ଦେଖିଲି ।
ମୃଦୁସୁଳୀ ବୋଇଲା ଗୋ ଏହି ଦଣ୍ଡଧାରୀ
ବାଣା ନାରକା ଶମ୍ବର ବଜ୍ରନାଭ ଚାରି ।
ଦେବ ଦାନବେ ଏହାଙ୍କ ମହିମା ଦୁର୍ଲ୍ଲଭ
ଭୀମସେନ ବୋଇଲେ ମୋ ଭାଗେ ବଜ୍ର ନାଭ ।
ଅର୍ଜ୍ଜୁନ ବୋଇଲେ ଭୀମସେନଙ୍କର ଆଗେ
ସହସ୍ର ଭୁଜ ଯେ ବାଣା ହେଲା ମୋହ ଭାଗେ ।
ନକୁଳ ବୋଲେ ମୋ ଭାଗେ ହୋଇଲା ନାରକା
ଥାଟ ଯାକ ଏହାର ମୁଁ ଆବୋରିଲି ଏକା ।

ସହଦେବ ବୋଇଲେ ଏ ନୃପତି ଶମ୍ବର
ଥାଟ ସହିତ ରହିଲା ଭାଗରେ ମୋହର ।
ଚାରି ଭାଇ ଚାରି ରାଜା ଭାଗ କରି ବାଣ୍ଟି
ପ୍ରଥମେ ମାରୁତି ଧାଇଁଯାଏ ଗର୍ଜି ଉଠି ।
ରଥ ଚଢ଼ି ଆସେ ବଜ୍ରନାଭ ମହାବଳ
ରଥରେ ସେ ଯୋଚିଅଛି ସହସ୍ରେ ଶାର୍ଦ୍ଦୁଳ ।
ହସ୍ତରେ ସେ ଧରିଅଛି ଏକ ବଜ୍ର ଶକ୍ତି
ବୃନ୍ଦାରକେ ନ ଆସନ୍ତି ଭୟେ ତାର କତି ।
ଆଦିତ୍ୟ ଦେବତା ଅସ୍ତ ହେଉଛି ଯେ ବେଳେ
ଭୀମ ତେଜ ଦିକଶିଲା ଦିନ ଅନ୍ତକାଳେ ।
ସାରଥି ତା ରଥ ବାହୁଅଛି ଅତି ବେଗେ
ଲୌହଶର ଧନୁ ଧରି ବିନ୍ଧେ ମହାରାଗେ ।
ନିରାଶେ ଧାଇଁଲା ଭୀମ ପବନର ବସେ
ଅନ୍ଧାରବେଳେ ପ୍ରବେଶ ହେଲା ରଥ ପଛେ ।
ଆକର୍ଷି ଧାଇଁଲା ବୀର ରଥ ବେନି ଦଣ୍ଡ
ଭୀମକୁ ପ୍ରସନ୍ନ ହେଲେ ପବନ ପ୍ରଚଣ୍ଡ ।
ଅସୁର ରଥଙ୍କୁ ଧରି ବୁଲାଇଲା ରାଗେ
ଦକ୍ଷିଣକୁ ମୁଖ କରି ଫିଙ୍ଗିଦେଲା ବେଗେ ।
କୋପଭରେ ଫିଙ୍ଗିଦେଲା ବୀର ଭୀମସେନ
ବଜ୍ର ନାଭ ଉଡ଼ିଗଲା ପନ୍ଦର ଯୋଜନ ।
ରାଜାଙ୍କର ଅପମାନେ ପଳାନ୍ତି ସଇନି
ଧାଏଁ ବୀର ବୃକୋଦର କରେ ଗଦା ଘେନି ।
ପଳାନ୍ତି ସେ ଦୂରାନ୍ତକ ସଂଗ୍ରାମ ଉପେକ୍ଷି
ପଛକୁ ସେ ନ ଚାହାନ୍ତି ନ ଯାନ୍ତି ସଳଖି ।
ବିଂଶକୋଟି ଲକ୍ଷ ରଥ ତିନିକୋଟି ହସ୍ତୀ
ଅପର୍ଯ୍ୟାପ୍ତ ଅଗଣିତ ତାହାର ପଦାତି ।
ଏତେ ସୈନ୍ୟ ଭୀମ ତାର ମାଇଲାକ ରୋଳେ
ପଡ଼ିଲେ ସେ ନିଶାଚରେ ବଣ କୁତୁହଳେ ।
ବାଣାସୁର ସଙ୍ଗତରେ ଅର୍ଜୁନ ସମର
ପଞ୍ଚାଶତ ଭୁଜେ ବାଣ ବିନ୍ଧେ ବାଣାସୁର ।
ହାବୁଡ଼ା ଶର ବିନ୍ଧିଲା ବୀରବର ପାର୍ଥ
ଅସୁର ଶିରେ ପଡ଼ିଲା ଜାଣି ବଜ୍ରାଘାତ ।
ଘାଏ ମହାତ୍ରାସ କଲା ବଳିରାଜା ବାଳ
ମୋହନ ଶର ମାଇଲା ପାର୍ଥ ଅନର୍ଗଳ ।
ମୋହଯାଇ ବାଣାସୁର ଉତ୍ତାନେ ପଡ଼ଇ
ଅନ୍ତରୀକ୍ଷେ ସାରଥି ତା ରଥ ନେଲା ବାହି ।
ରାଜାଏ ବିଅର୍ଥେ ଦଣ୍ଡ ହୋଇଗଲେ ଭଗ୍ନ
ଅନେକ ସୈନ୍ୟ ଗୋଡ଼ାଇ ମାରେ ଭୀମସେନ ।
ପଡ଼ିଲେ ଅସୁର ତଳେ ଲୋଟିଲା ଯେ କାୟ
ପ୍ରଚଣ୍ଡ ପବନ ଘାତେ ରମ୍ଭାବନ ପ୍ରାୟ ।

ଭୀମ ଅର୍ଜୁନ ଏ ଦୁହେଁ ଧାଇଁଲେ ସତ୍ୱର
ଯୁଝଇ ନକୁଳ ସଙ୍ଗେ ନାରକା ଅସୁର ।
ନାରକାସୁର ରଥକୁ ଭୀମସେନ ଧରି
କଚାଡ଼େ ଶମ୍ବର ଦୈତ୍ୟ ରଥର ଉପରି ।
ଯେସନେକ ମହୋଦଧି ବାତ ଘାତେ ଉଠି
ଏକ ପାଣ୍ଡବକେ ଗଲେ ରାଜାମାନେ ଫାଟି ।
ନାରକା ଶମ୍ବର ରଥ ଚୂର୍ଣ୍ଣ ହୋଇଗଲା .
ଭାଙ୍ଗିଲା ଦନୁଜ ବଳ କେହି ନ ରଖିଲା ।
ମହାଘୋର ସମର ଯେ କଲେକ ମାରୁତି
ପଳାନ୍ତି ଦାନବ ବଳ ନ ଆସନ୍ତି କତି ।
ଆପେ ଆପେ ମରାମରି ହୁଅନ୍ତି ନ ଚିହ୍ନି
ପର ଆପଣା କେ ବାରି ନ ପାରନ୍ତି ପୁଣି ।
କେଶିନୀ ଯେ ବାହୁଥାଇ ଦ୍ରୌପଦୀର ରଥ
ଅନେକ ସଇନ୍ୟ କଲେ ପାଣ୍ଡବେ ନିପାତ ।
ଅସୁର ବଳକୁ ଧ୍ୱଂସୀ ଧାଏଁ ବୃକୋଦର
ତେର ଯୁଣଯାଏ ପଡ଼ିଅଛନ୍ତି ଅସୁର ।
ବହିଲା ରୁଧିର ନଦୀ ବନସ୍ତ ଭିତରେ
ଉପରିଥାଇ ଭାସନ୍ତି କଉଣପ ବୀରେ ।
ସମର କରନ୍ତେ ତହିଁ ରଜନୀ ପାହିଲା
କୁରୁସୈନ୍ୟ ଘେନି ମାନଗୋବିନ୍ଦ ରହିଲା ।
ଦେଖଇ କୌରବ ବଳ ପବନର ବାଳ
ଚାହଇଁ ବୀର କଟାକ୍ଷେ ହୋଇ କୋପାନଳ ।
ରୁଧିରରେ ବିଲେପନ ଚାରିଙ୍କର ଅଙ୍ଗ
ହିରଣ୍ୟ ବିଦାରକାଳେ ଯେସନେ ନୃସିଂହ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ଶଲ୍ୟ କୃପାଚାର୍ଯ୍ୟ
ଶକୁନି ଯେ ଜୟଦ୍ରଥ କର୍ଣ୍ଣ କାଶୀରାଜ ।
ଏମାନେ ସମସ୍ତେ ରଥ ଅଛନ୍ତି ଆରୋହି
ଗିରିବର ସମବୀର ଅଛନ୍ତି ଯେ ରହି ।
ଆସନ୍ତି ଅସୁରବଳ ମାରି ଚାରି ବୀରେ
ରଥକେ ଆରୋହି ଅଛି ଦ୍ରୌପଦୀ ସଙ୍ଗରେ ।
ଦୂରୁ ଦେଖିଲେ ସେ ମାନଗୋବିନ୍ଦ ସମ୍ପତ୍ତି
ଅଛଇ ସଙ୍ଗେ ଧବଳବର୍ଣ୍ଣ କେତେ ଛତ୍ରୀ ।
ସଂଗ୍ରାମ କରନ୍ତେ ପୁଣି ରଜନୀ ପାହିଲା
ରଜନୀ ଯୁଦ୍ଧରେ କୁରୁବଳ ନ ଦିଶିଲା ।
ଦେଖିଣ ଧାମଇ କୋପେ ବୀର ବୃକୋଦର
ଛଡ଼ାଇଣ ଆଣିଥିଲା ବଜ୍ର ମୁଦ୍ଗର ।
ପର୍ବତ ପ୍ରାୟେକ ତାର ଦିଶେ ବେନି ବାହୁ
ନିଶାକର ମେଳରେ କି କ୍ରୀଡ଼ା କରେ ରାହୁ ।
ତେସନ ଶୋଭା ପାଉଛି ସେହି ମହାବଳୀ
ରକ୍ତ ବିନେ ବିଲେପନ ଶରୀର ସବୁରି ।

ରେ ରେ କାର କରି ବେଗେ ଧାଏଁ ଭୀମସେନ
ଆଗ ଓଗାଳିଲା ଯାଇଁ ମହାବଳୀ କର୍ଣ୍ଣ ।
ବିନ୍ଧଇ ଅନେକ ଶର ସେହି ମହାଭାଗେ
ଅସ୍ତ୍ର ସବୁ ଭଗ୍ନ ହୁଏ ବାଜି ଭୀମ ଅଙ୍ଗେ ।
ମାଇଲା କର୍ଣ୍ଣର ରଥେ ନେଇ ବଜ୍ରମୁଥ
ମହାଭାରା ପାଇ ରଥ ହେଲା ଖଣ୍ଡ ଶତ ।
ସାରଥି ସହିତ ରଥ ଭୂମିତଳେ ଲୋଟି
ମାଇଲା କର୍ଣ୍ଣର ଅଙ୍ଗେ ନେଇ ବଜ୍ରମୁଷ୍ଟି ।
ଭୀମସେନ ମୁଥାଘାତେ କର୍ଣ୍ଣ ଯେ ଘୁମାଇ
ଓଗାଳିଲା ଅଶ୍ୱତ୍ଥାମା ରଥ ବେଗେ ନେଇ ।
ଅର୍ଜ୍ଜୁନ ମିଳିଲା ଆସି ଅଶ୍ୱତ୍ଥାମା ପାଶେ
ଦ୍ରୋଣର ନନ୍ଦନ ଶର ବିନ୍ଧେ ମହାରୋଷେ ।
ସହସ୍ର ସହସ୍ର କୋଟି ଶତ ଶତ ବାର
ପଡ଼ଇ ନାରାଚ ଯାଇ ପାର୍ଥର ଉପର ।
ତିନି ଭୁବନ କମ୍ପିଲା ଅଶ୍ୱତ୍ଥାମା ବାଣେ
ଦେଖି ଫାଲଗୁନି ତାହା ନିବାରଇ ରଣେ ।
ପୁଣି ଅୟୁତେ ନାରାଚ ପୁରାଇଣ ଦ୍ରୋଣି
ଅର୍ଜ୍ଜୁନର ଉପରକୁ ବିନ୍ଧିଲାକ ଟାଣି ।
ଜଳଧାରା ପ୍ରାୟେକ ଯେ ହେଲା ଶର ବୃଷ୍ଟି
ଦେଖି ତାହା ବଞ୍ଚାଇଲା ବୀର ଯେ କିରୀଟି ।
ପୁନରପି ଅଶ୍ୱତ୍ଥାର୍ମା ଲକ୍ଷେ ବାଣ ଘେନି
ଏମନ୍ତ ବିନ୍ଧିଲା ବାଣ ପୁଣି ବେଳ ତିନି ।
ଅର୍ଜ୍ଜୁନ ଦେଖଇ ମାରେ ଅଶ୍ୱତ୍ଥାମା ଶର
ନାରାଚ ବିନ୍ଧିଲା ଚାପେ ପାଣ୍ଡବ ସୁନ୍ଦର ।
ଅୟୁତେକ ଶର ଅଶ୍ୱତ୍ଥାମା ଉପରକୁ
ଅୟୁତେକ ଶର ମାରେ ତାର ସାରଥିକୁ ।
ଏକାବେଳକେ ସେ ଶରେ ସମସ୍ତ ନିରୋଧି
ଘୋର ଅନ୍ଧାର କରିଣ ପାର୍ଥ ଶର ବିନ୍ଧି ।
ପଡ଼ିଲେ ନାରାଚ ଧରି ଅନେକ ମୂରତି
ପ୍ରଥମେ ପଡ଼ିଲେ ତାର ହୟ ଯେ ସାରଥି ।
ଦ୍ୱିତୀୟରେ ଅଶ୍ୱତ୍ଥାମା ଧନୁ ଯାଏ ଛିଡ଼ି
ତୃତୀୟରେ ଅଶ୍ୱତ୍ଥାମା ପଡ଼େ ମୁହଁ ମାଡ଼ି ।
ଘାଏଣ ପଡ଼ିଲା ଯହୁଁ ଦ୍ରୋଣ ଅସାକ୍ଷମେ
ଶଲ୍ୟ ରଥ ଧରି ଭୀମ କଚାଡ଼ଇ ତମେ ।
ନକୁଳ ମାଇଲା ବଜ୍ରକୁନ୍ତ କୃପ ରଥେ
ରଥ ଭାଙ୍ଗି ପଡ଼ିଲାକ ସାରଥି ସହିତେ ।
ସହଦେବ ଶକୁନିକୁ ମାଇଲା ମୁଦ୍‌ଗର
ଉତ୍ତାନ ହୋଇ ପଡ଼ିଲା ଗାନ୍ଧାର କୁମର ।
ଅଶ୍ୱତ୍ଥାମା କୃପ କର୍ଣ୍ଣ ଶଲ୍ୟ ଯେ ଶକୁନି
ଏମାନେ ପଡ଼ିଲେ ରଣେ ଅଶ୍ୱସୈନ୍ୟ ଘେନି ।

ଭୟ ପାଇ ଯୁଦ୍ଧ ଛାଡ଼ି ସେହି ଚାରି ବୀରେ
ଭଗ୍ନ ହୋଇ ପଶିଲେ ସେ ଥାଟର ଭିତରେ ।
ଅଶ୍ୱତ୍ଥାମା କର୍ଣ୍ଣ ଶଲ୍ୟ କୃପ ଯେ ଶକୁନି
ଚାରିହେଁ ପଳାଇଗଲେ ନିଜକାୟା ଘେନି ।
ଆରେ ଆରେ ବୋଲି ଡାକ ଦିଏ ଭୀମସେନ
ପଶନ୍ତେ ସେ ରଣରଙ୍ଗେ ଥାଟ ହେଲେ ଭଗ୍ନ ।
ଅନେଶ୍ୱତ ଭାଇ ତୁଲେ ମାନଚକ୍ରବର୍ତ୍ତୀ
ସମସ୍ତେ ଚଢ଼ି ଅଛନ୍ତି ମଦମତ୍ତ ହସ୍ତୀ ।
ହସ୍ତେ ଧରିଅଛନ୍ତି ଯେ ଗଦା ମୁଦ୍‌ଗର
ବେଢ଼ିଣ ପ୍ରହାର କଲେ ଭୀମର ଉପର ।
ତହୁଁ ଧାଏଁ ରଣ ରଙ୍ଗେ ପାଣ୍ଡବ ସୁନ୍ଦର
କୃତାନ୍ତକ ଧାମଇଁ କି ତେଜି ସ୍ୱର୍ଗପୁର ।
ଅନ୍ତରାଳେ ନୟନ ଯେ ବଦନ ବିକଟ
ଭଇରବ ମୂରତି ତା ବିକଟାଳ ପେଟ ।
ତାଙ୍କର କେଶ ଯେ ପୁଣି ହୋଇଛି ମୁକୁଳା
କୁରାଳଚକ୍ର ପରାଏ ବୁଲେ ବେନି ଡୋଳା ।
ବେନି ଭୁଜେ ଧଇଲେ ସେ ଦୁଇଗୋଟି ହସ୍ତୀ
ଅନ୍ତରୀକ୍ଷେ ବୁଲାଇଲା କୋପାନଳ ମୂର୍ତ୍ତି ।
ରାଗେ ଭୀମସେନ ତଳେ ଗଜକୁ କଚାଡ଼ି
ରାଜା ଆରୋହିବା ହସ୍ତୀ ବାମ କରେ ମାଡ଼ି ।
ଡାହାଣ କରେ ମାଇଲା ନେଇ ବଜ୍ରମୁଥ
ଅସ୍ଥି ମାଂସ ଧୂଳି ହେଲା ପଡ଼ି ମଦମତ୍ତ ।
ପାଦଗତି କରି ଦୁର୍ଯ୍ୟୋଧନ ଯେ ପଳାଇ
ଭୀମସେନ ଡାକଇରେ ରହ ରହ ଭାଇ ।
ଦୁର୍ଯ୍ୟୋଧନ ପଳାଇଛି ପଛକୁ ନ ଚାହିଁ
ରାଜାକୁ କଟାଳ ଯହୁଁ କଲା ଭୀମ ତହିଁ ।
ଭୀଷ୍ମ ଦ୍ରୋଣ ରଥେ ରଥେ ଚଢ଼ିଣ ଧାଇଁଲେ
ପବନ ତନୟ ଭୀଷ୍ମ ଦ୍ରୋଣଙ୍କୁ ଦେଖିଲେ ।
ମାତଙ୍ଗ ପର୍ବତ ପ୍ରାୟ ଭୀମର ଶରୀର
ଭୁବି ଭୁବନ କମ୍ପାଏ ଭୀମ ପାଦଭର ।
ଦ୍ରୋଣ ଗୁରୁ ଚିହ୍ନିଲେ ଏ ପବନ ନନ୍ଦନ
ଭୀଷ୍ମ ବୋଇଲେ ହେ ବିଜେ କଲା ଭୀମସେନ ।
ଶତଶୃଙ୍ଗ ଗିରି ତୁଟେ ଯା ଚରଣ ଲାଗି
ବନରୁ କଷ୍ଟେ ମାରୁତି ଆସେ ହୋଇ ରାଗୀ ।
ମୂର୍ଖ ଅଜ୍ଞାନ ଦୁର୍ବାର ଦୁଷ୍ଟମତି ମନ୍ଦ
ଜିଣି ପାରିବା କି ଏହା ସଙ୍ଗେ କଲେ ଦ୍ୱନ୍ଦ୍ୱ ।
ଦ୍ରୋଣ ବୋଲେ ଯେ ଆମ୍ଭେ ସଂଗ୍ରାମ ନ କଲେ
ରାଜା ହିଁ କୋପ କରିବ ଏଥୁ ବାହୁଡ଼ିଲେ ।
ଭୀଷ୍ମ ଦ୍ରୋଣ ରହିଛନ୍ତି ଦୁର୍ଯ୍ୟୋଧନ ଆଗେ
ଧାଇଁ ଧଇଲା ମାରୁତି ପବନହୁଁ ବେଗେ ।

ନୟନେ ବିକାଶେ କିବା ରକ୍ତପଦ୍ମ ଫୁଟି
କୋପେ ପାଣ୍ଡବ ଲୁହାର ଗଦା ଘେନି ପିଟି ।
ରୂପାରେ ନିର୍ମିତ ରଥ କନକ ଛାଉଣୀ
ବାହାଘାତେ ଭଗ୍ନ କଲା କାର ଦଣ୍ଡପାଣି ।
ଭୀଷ୍ମଙ୍କର ରଥ ଗୋଟି ଭାଙ୍ଗି ଚୂର୍ଣ୍ଣ କଲା
ଆନରଥ ଚଢ଼ି ବେଗେ ଭୀଷ୍ମ ଆବୋରିଲା ।
ଏକ ମୁଖ ହୋଇ ଭୀଷ୍ମ ଦ୍ରୋଣ ବେନି ଯୋଦ୍ଧୀ
ଅବିଚ୍ଛିନ୍ନେ ବାଣ ଧରି ଭୀମକୁ ଯେ ବିନ୍ଧି ।
ଯେହ୍ନେ ଗଗନୁ ଗଡ଼ନ୍ତି ଜଳଧାରା ଖସି
ଭୀମ ଦେହ ଜୁଳୁ ଜୁଳା ପୋକ ପ୍ରାୟେ ଦିଶି ।
ଭୀଷ୍ମ ଦ୍ରୋଣଙ୍କ ଶସ୍ତ୍ରକୁ ନାହିଁ ତାର ଶଙ୍କା
ଶସ୍ତ୍ରେ ଚୁରହ୍ନନ୍ତି ଯେହ୍ନେ ପରବତେ ଟେକା ।
ଦୁଃସହ କଟାଳ ଦେଖି ଭୀମ ସ୍ନେହ ତେଜି
କୋପେ ଭୀଷ୍ମଙ୍କର ରଥ ଧଇଲା ବରଜି ।
ଦୁଇଦଣ୍ଡ ଯାଏ ଧରି କୋପରେ ବୁଲାଇ
ଦ୍ରୋଣଙ୍କୁ ରଥରେ ତାହା କଚାଡ଼ିଲା ନେଇ ।
ଭାଙ୍ଗି ଦୁଇଗୋଟି ରଥ ଖଣ୍ଡ ଖଣ୍ଡ ହେଲେ
ଅସାଷ୍ଟମ ହୋଇ ବେନିରଥି ଯେ ପଡ଼ିଲେ ।
ଦୂରୁ ଦେଖି ଶୋକଭରେ ସେ ମାନଗୋବିନ୍ଦ
ବିଅର୍ଥେ ମୁଁ ବୁଡ଼ାଇଲି ଏଡ଼େକ ସମ୍ପଦ ।
କର୍ଣ୍ଣ ଅଶ୍ୱତ୍ଥାମା ଦ୍ରୋଣ କୃପାଚାର୍ଯ୍ୟ ଶଲ୍ୟ
ଦେହ ଗଞ୍ଜାଇଲେ ବିନା କାର୍ଯ୍ୟେ ମହାମଲ୍ଲ ।
ଆବର ଶକୁନି ପୁଣି ଭୀଷ୍ମ ହିଁ ପଡ଼ିଲେ
ଏଡ଼େ ବିପତ୍ତି କେବଳ ପୁରୁଷ ବିହିଲେ ।
ଦୁଇ ଭାଇ ଘେନି ପ୍ରାଣ ପାଇଲି ମୁଁ ଧର୍ମେ
ବୁଡ଼ାଇଲି ରାଜ୍ୟ ମୁହିଁ କେଉଁ ମନ୍ଦକର୍ମେ ।
ଭୀଷ୍ମ ଦ୍ରୋଣ ଆକର୍ଷଇ ହୋଇ ଉର୍ଦ୍ଧ୍ୱବାହୁ
ଦୁର୍ଯ୍ୟୋଧନ ବିଚାରଇ ନିଶ୍ଚୟ ଏ ରାହୁ ।
ଗଦା ପିଟନ୍ତେ ଯେ ନେଇ ଦ୍ରୋଣଙ୍କ ଉପରେ
ଧଇଲେ ଆସି ଅର୍ଜ୍ଜୁନ ଆଦି ତିନି ବୀରେ ।
ଅର୍ଜ୍ଜୁନ ବୋଇଲେ ଆହେ ରହ ରହ ଭାଇ
ଏହାଙ୍କ ବିନାରେ ଯୁଧିଷ୍ଠିଙ୍କ ଆଜ୍ଞା ନାହିଁ ।
ଭୀମସେନ ବୋଇଲା ଏ କିମ୍ପା ନ ବିଚାରି
ଯୁଦ୍ଧ କରନ୍ତି ଆପଣା ଧର୍ମକୁ ନ ପାଳି ।
ଅର୍ଜ୍ଜୁନ ବଚନେ ଭୀମ କୋପ କଲା ଶାନ୍ତି
ଉଭା ହୋଇଲେ ସେ ଛାଡ଼ି ଦ୍ରୋଣ ମହାରଥୀ ।
ଦ୍ରୋଣ ବୋଇଲେ ସାଧୁରେ ସାଧୁ ତୋର ବାପ
ଏତେ କଷ୍ଟରେ ତୁମ୍ଭର ମନେ ନାହିଁ ତାପ ।
ଧନ୍ୟ ତୁମ୍ଭର ପିଅର ଜନନୀ ଯେ ଧନ୍ୟ
ଏମନ୍ତ ପ୍ରଶଂସା ତାଙ୍କୁ କଲେ ଭୀଷ୍ମ ଦ୍ରୋଣ ।

ଦନ୍ତବକ୍ର ରୁକ୍ମଣ ଯେ ଶାଲ୍ୱ ଶିଶୁପାଳ
ଏମାନେ ଆମ୍ଭର ଘେନି ରହିଛନ୍ତି ବଳ ।
ଭୀମସେନ ଧାଇଁଲା ଯେ ତାଙ୍କ ଉପରକୁ
ସିଂହ ଦେଖି ଧାଏଁ ଯେହ୍ନେ ବନର ଜୀବଙ୍କୁ ।
ବିକଟ ବୃଷ୍ଟି ଦେଖିଣ ପଳାଇଲେ ଭାଜି
ପଞ୍ଚରାଜାଏ ନାରାଚ ବିନ୍ଧିଲେ ଗରଜି ।
ଶସ୍ତ୍ରକୁ ବୃକୋଦର ନକରେ କିଛି ଭୟ
ପଞ୍ଚରାଜାଙ୍କର ଅସ୍ତ୍ର ଛେଦେ ଧନଞ୍ଜୟ ।
ଭୀମର ଗଦାଘାତକୁ କେହି ନୁହେଁ ସରି
ବେଳ ଆସି ହୋଇଲାଣି ଚତୁର୍ଦ୍ଦଶ ଘଡ଼ି ।
ମହାଗୋଳ ଯୁଦ୍ଧ ହେଲା ରଜନୀ ଦିବସେ
ବିନ୍ଧି ନ ପାରନ୍ତି ଜନେ ହୋଇ ଉପବାସେ ।
ଭୀମ ଅର୍ଜ୍ଜୁନ ଏ ଦୁହେଁ ସଂଗ୍ରାମ ପାଇଲେ
ଅନ୍ନ ଇଚ୍ଛା ନ କରନ୍ତି ବରଷେ ରହିଲେ ।
ଏସନ ମହାବଳ ଯେ ପାଣ୍ଡବ ଦ୍ୱିଜଣ
ପଞ୍ଚଚାଳିଶ କ୍ଷଉଣୀ ବଳେ କଲେ ଛିନ୍ନ ।
ମେରୁ ପ୍ରଦକ୍ଷିଣ ଅନ୍ତେ ଉଦେ ଦିନକର
ଉଦୟନାଥ ଯେ ଅସ୍ତ ହୋଇଲା ଅନ୍ଧାର ।
ଭୀଷ୍ମ ଦ୍ରୋଣ ପଳାନ୍ତି ଯେ ଶୋଣିତରେ ରଙ୍ଗ
କିଂଶୁକ ପୁଷ୍ପ ପରାୟ ସମସ୍ତଙ୍କ ଅଙ୍ଗ ।
ଦୁର୍ଯ୍ୟୋଧନ ରହିଥିଲା ଯୋଜନ ଅନ୍ତରେ
ଭୀଷ୍ମ ଦ୍ରୋଣ ପ୍ରବେଶିଲେ ତାର ସନ୍ନିଧିରେ ।
ଗଙ୍ଗାକୂଳେ ପର୍ବତେକ ନାମ ରଣଜୟ
ଭଗ୍ନବଳ ଘେନି ତହିଁ ରହିଅଛି ରାୟ ।
ଏଣେ ଚହଳ ଗୋଳ ତା କିଏ କହିପାରେ
ବ୍ରହ୍ମାଣ୍ଡ ଉଚ୍ଛୁଳୁଅଛି ଭୀମର ରଡ଼ିରେ ।
ଭୀଷ୍ମ ବୋଇଲେ ଏଠାରେ ଦଣ୍ଡେ ହେଁ ନ ଥିବା
ବନଗହନ ଭିତରେ ଅପସରି ଯିବା ।
ଥାଟ ଭାଜିଲେ ନ ପୁଣ ସେ ଏଥେ ଆସଇ
ସର୍ବେ ନାଶ ଯିବେ କେହି ନ ପାରିବେ ରହି ।
ତହିଁ ଘୁଞ୍ଚିଯାଇ ବନେ ପଶିଲେକ ରାୟେ
ଜରାସନ୍ଧ ସୈନ୍ୟ ଯାଇ ନ ପାରନ୍ତି ଠାଏ ।
କାହାର ଭାଙ୍ଗିଛି ହସ୍ତ କାହାର ଚରଣ
ଚାଲି ନ ପାରନ୍ତି ଗଜ ଅଶ୍ୱ ଖାଇ ବାଣ ।
କଦଳୀ ବନେ ପଶିଲେ କିବା ମହାନାଗ
ଗରୁଡ଼ ଦେଖି ବିବର କେଡ଼େ କି ଉରଗ ।
ବିଶେଷତଃ ମହାମଲ୍ଲ ପୁଣି ନିଶାକାଳ
ଭାଙ୍ଗିଲା ଦମନ ବଳ କରି ମହାବଳ ।
ଚିହ୍ନି ନ ପାରିଲେ କେହି ପର କି ଆପଣା
କିଏ ଶତ୍ରୁ ମିତ୍ର ବୋଲି ନ ଗଲା କଳନା ।

ବହୁତ ହୁଳା ଆଲୁଅ ରାତ୍ରିରେ ଲାଗିଲା
ପୁଣ ପୁଣ ପ୍ରହାରିଲା ପବନର ବଳା ।
ଅଗୋଚର ସଂଗ୍ରାମ ତା କେହୂ କହିପାରେ
ଉଭୟ ବଳ ମରନ୍ତି ରଣ କୁତୂହଳେ ।
ବିରସ ବିରୁଥ ରଣେ କରଇ ଯେ ପିଟି
ନ ମାନଇ ଉଣରଙ୍ଗେ ପାଣ୍ଡବ କିରୀଟି ।
ଭୀମସେନ ଦୈତ୍ୟବଳ ମାଇଲା ବହୁତ
ବେନି ବୃକ୍ଷ ହସ୍ତେ ଧରି ପିଟେ ନିରିଘାତ ।
ବଜ୍ରନାଭ ରଥ ଶତତାଳ ଆୟତନ
ଅୟୁତ ଶାର୍ଦ୍ଦୁଳ ଯୋଚା ହୋଇଛି ବିମାନ ।
ଦୁଇଲକ୍ଷ ପୁଣ୍ୟ ଦ୍ରବ୍ୟ ତହିଁ ଲାଗିଥିଲା
ପିଙ୍ଗିଦ୍ୟନ୍ତେ ପଞ୍ଚଦଶ ଯୋଜନେ ପଡ଼ିଲା ।
ପଳାଇଲେ ରଥଭଗ୍ନ ଦେଖି ଭୀଷ୍ମ ଦ୍ରୋଣ
କେବଣ ବାପୁଡ଼ା ରହି କରିବ ବାରଣ ।
ଯେସନେ ସିନ୍ଧୁ ମନ୍ଥନ ହୋଇଲା ମନ୍ଦରେ
କାଳଦଣ୍ଡ ଘେନି ଯମ ବିଜେ କି ସମରେ ।
ଦୁଃସହ ସଂଗ୍ରାମ କଲେ ମିଶି ଚାରିଭାଇ
ସର୍ବେ ନିବର୍ତ୍ତିଲେ କିନ୍ତୁ ଭୀମ ନ ଛାଡ଼ଇ ।
ବୃକୋଦର ମାଇଲାକ ବହୁତ ବାହିନୀ
ଶସ୍ତ୍ର ପକାଇ ପଡ଼ନ୍ତି ଦନ୍ତେ ତୃଣ ଘେନି ।
ରଥ ଗଜ ଅଶ୍ୱ ଛାଡ଼ି ଗଲେ ମହାଦୁଃଖେ
ରହ ରହ ସ୍ୱାମୀ ଦଶନଖ ଭରି ମୁଖେ ।
ନିର୍ଦ୍ଦୟ ନିରପେକ୍ଷଟି ସ୍ୱଭାବ ଯାହାର
ଶରଣ ବୋଇଲେ କରେ ଦ୍ୱିଗୁଣ ପ୍ରହାର ।
ସୈନ୍ୟଙ୍କ ବ୍ୟାକୁଳ ଦେଖି ବୋଇଲେ ଅର୍ଜ୍ଜୁନ
ସ୍ୱାମୀ ଏ ଛାର ମାରିବା କିସ ପ୍ରୟୋଜନ ।
ସେ ତିନିଙ୍କି ଭେଟି ପୁଣି ମହାଯୁଦ୍ଧ କଲା
ପନ୍ଦର ଯୋଜନ ଯାଏ ପହଡ଼ ପଡ଼ିଲା ।
ଦନ୍ତବକ୍ର ଶିଶୁପାଳ ପାଲ୍ୱ ଯେ ରୁକ୍ମଣ
ପୁଣ୍ଡରୀକ ଘେନି ଏହି ରାଜା ପାଞ୍ଚଜଣ ।
ଏକା ପ୍ରହାରକେ ତାଙ୍କୁ କରିଣ ବିରଥ
ମହାକୋପେ ଭୀମସେନ ବଢ଼ାଇଲେ ହସ୍ତ ।
ଦୁଇହସ୍ତେ ଧଇଲା ସେ ପାଞ୍ଚଙ୍କର ବାଳ
ଆକର୍ଷଣ କରି ଆଣେ ପବନ ଦୁଲାଳ ।
ଟେକି ଧରିଛି ଚରଣ ନ ପଡ଼ଇ ତଳେ
ଯୁଧିଷ୍ଠିରଙ୍କ ଛାମୁକୁ ଭୀମସେନ ଚଳେ ।
ତାହାଙ୍କ ସଙ୍ଗେ କେଶିନୀ ଦ୍ରୌପଦୀ ଚାଲନ୍ତି
ପ୍ରବେଶିଲେ ଟହିଁ ଯୁଧିଷ୍ଠିର ବସିଛନ୍ତି ।
ସନ୍ନିଧେ ପ୍ରବେଶ ଯାଇ ହେଲେ ଚାରି ବୀରେ
ମକର ମାସରେ କୃଷ୍ଣ ଦଶମୀ ଦିନରେ ।

ଚନ୍ଦ୍ର ଉଦେ ହେଲେ ରାତ୍ର ଅଢ଼ାଇ ପ୍ରହରେ
ଭାଇଙ୍କୁ ଦେଖି ଯୁଧିଷ୍ଠି ଆନନ୍ଦ ମନରେ ।
ଯୁଧିଷ୍ଠିର ଦେଖିଲେ ଯେ ଭୀମସେନ ମୂର୍ତ୍ତି
ଜଗତି ତଳରୁ ଧାଇଁ ଅଇଲେ ଝଟତି ।
ଚରଣରେ ପ୍ରଣିପାତ କରି ଚାରି ବୀରେ
ଦେଖିଲେ ପାଞ୍ଚଙ୍କ ଶିର ଭୀମର ହସ୍ତରେ ।
ଯୁଧିଷ୍ଠିର ବୋଇଲେ ହେ ଶୁଣିମା ପଣ୍ଡାଏ
ଛାଡ଼ିଦିଅ ପଳାନ୍ତୁ ଏ ସମସ୍ତ ରାଜାଏ ।
ଆମ୍ଭେ ବ୍ରାହ୍ମଣ ଆମ୍ଭର କିସ ହତ୍ୟାବାଦ
ବେଦ ଶାସ୍ତ୍ରରେ ଆମ୍ଭର ଶରୀର ସମ୍ପଦ ।
ପଞ୍ଚରାଜାଙ୍କୁ ଗଳାଇ ଦେଲା ଜାନୁତଳେ
ଛାଡ଼ିଦ୍ୟନ୍ତେ ପଳାଇଲେ ସମସ୍ତେ ବିକଳେ ।
ଭୟ ପାଇ କୁରୁଥାଟ ମଧ୍ୟେ ଯାଇ ପଶି
ପଳାନ୍ତି ସମସ୍ତେ କେହି ନ ଆସେ ଭରସି ।
ଏକୁ ଆରେକ ସମସ୍ୟା ନ କରନ୍ତି ରାୟ
ଲେଉଟି ନ ଚାହାନ୍ତି ସେ ମନେ ଏଡ଼େ ଭୟ ।
ପାଞ୍ଚଗୋଟି ରାଜ୍ୟ ତହୁଁ ଗଲେ ଯେ ପଳାଇ
ରଜନୀ ପ୍ରଭାତେ ଥାଟେ ମିଳିଲେକ ଯାଇ ।
ସୈନ୍ୟ ରହିଛନ୍ତି ଯହିଁ ନଦୀ ମନ୍ଦାକିନୀ
ପ୍ରବେଶିଲେ ସେ ନିର୍ଲଜ ଆତ୍ମାମାନ ଘେନି ।
ଦୁର୍ଯ୍ୟୋଧନ ରାଜା ନିତ୍ୟକର୍ମ ଯେ ସାରିଲେ
ସୈନ୍ୟସହ କନ୍ଦମୂଳ ଆହାର କରିଲେ ।
ତହୁଁ ସଇନି ଗଣନା କଲେ ରାଜାବର୍ଗ
କାହାର ଭାଗେକ ନାହିଁ କାର ବେନିଭାଗ ।
ଦୁର୍ଯ୍ୟୋଧନ ରାଜାର ଯେ ଅଷ୍ଟାଦଶ କ୍ଷୌଣୀ
ପଡ଼ିଲେ ସର୍ବେ ରହିଲେ ଏଗାର କ୍ଷଉଣୀ ।
ଯେତେକ ସୈନ୍ୟ ଅଇଲେ ତହିଁରୁ ଉବୁରି
ଅକ୍ଷତ ଶରୀର ହୋଇନାହିଁଟି କାହାରି ।
ଦୁର୍ଯ୍ୟୋଧନ ପୁଚ୍ଛାକଲା ସେ ପାଞ୍ଚଙ୍କୁ ରାଇ
ତୁମ୍ଭଙ୍କୁ ନେଲା ବ୍ରାହ୍ମଣେ ଛାଡ଼ିଲା କିମ୍ପାଇଁ ।
ରୁକ୍ମଣ ବୋଇଲା ତୁମ୍ଭେ ଶୁଣ ଧାର୍ତ୍ତରାଷ୍ଟ୍ରୀ
ଆମ୍ଭଙ୍କୁ ଯେ ଆବୋରିଲା ଅନୁଜ ଭାଇଟି ।
ଦୁର୍ବାର ଦ୍ୱିଜବର ସେ ଅଟେ ବୀର ଷଣ୍ଢ
ଧର୍ମବଳେ ନ ମୋଡ଼ିଲା ପାଞ୍ଚଙ୍କର ମୁଣ୍ଡ ।
ତାଙ୍କ ପିଅର କି ଜ୍ୟେଷ୍ଠ ଭ୍ରାତାଏ ଅଛନ୍ତି
ଧର୍ମବନ୍ତ ମହାବିଜ୍ଞ ସେ ପୁଣି ଅଟନ୍ତି ।
ଛାଡ଼ ହେ ପଣ୍ଡାଏ ବୋଲି ଦୟାଭାବ କଲା
ମହନ୍ତଙ୍କ ବଚନେ ସେ ଆମ୍ଭଙ୍କୁ ଛାଡ଼ିଲା ।
ଦୁର୍ଯ୍ୟୋଧନ ବୋଲେ ଏହା ନ ଗଲା ବୁଝା ତ
ଭିକ୍ଷୁକ ବ୍ରାହ୍ମଣ କାହିଁ ବୋଇଲା ଏମନ୍ତ ।

ଭୀଷ୍ମ ବୋଇଲେ ତୁ ରାଜାରାଜେଶ୍ୱର ମଣି
ଏତେବେଳ ପରିଯନ୍ତେ ତାହାଙ୍କୁ ନ ଚିହ୍ନି ।
ପୁଣ ପୁଣ ଗାଙ୍ଗେୟଙ୍କୁ ପୁଚ୍ଛେ ଦୁର୍ଯ୍ୟୋଧନ
କେହୁ ସେ ଦେବ ମୋହର ନାହିଁ ପୁଣି ଜ୍ଞାନ ।
ଇନ୍ଦ୍ର ଗୋବିନ୍ଦ କି ଅବା ଅର୍ଜୁନ ଏ ତିନି
ଜିଣନ୍ତା ନାହିଁ ଅନ୍ୟ ଏ ଅସଂଖ୍ୟ ବାହିନୀ ।
ଇନ୍ଦ୍ର ଦେବତାର ଆମ୍ଭେ ନୋହୁ ନା ବଇରୀ
ଅର୍ଜୁନ ଲେଖାରେ ପିତା ଅଟନ୍ତି ଆମ୍ଭରି ।
ଅଟନ୍ତି ତ ଆମ୍ଭ ଗଦା ଗୁରୁ ବଳଭଦ୍ର
ତାହାକୁ ଦେଖନ୍ତେ ଦୟା କରନ୍ତି ଗୋବିନ୍ଦ ।
ପାଣ୍ଡବମାନେ ତ ମଲେ ଜତୁ ଘରେ ଜଳି
ଆମ୍ଭଙ୍କୁ ଜିଣିବାକୁ କେ ସାମରଥ ବଳି ।
ଭୀଷ୍ମ ବୋଇଲେ ବୁଡ଼ିଲା ବାବୁ ତୋର ଜ୍ଞାନ
ଲାଖ ବିନ୍ଧିଲା ଯେହୁ ସେ ସାକ୍ଷାତେ ଅର୍ଜୁନ ।
ବେନି ବୃକ୍ଷ ବୁଲାଇ ଯେ ଧାମଇ ରାଗେଣ
ପବନ ନନ୍ଦନ ସେହି ଅଟେ ଭୀମସେନ ।
ଅଇଲେ ଯେ ବେନି ବେନି ବୃକ୍ଷ ଧରି କରେ
ନକୁଳ ସହଦେବ ଯେ ମାଦ୍ରୀଦେବୀ ବଳେ ।
ଯୁଧିଷ୍ଠି ମାତ୍ର ନାହାନ୍ତି ତାହାଙ୍କର ତୁଳେ
ଚାରି ପାଣ୍ଡବ ଯେ ଲକ୍ଷେ ନୃପତି ଜିଣିଲେ ।
ଦୁର୍ଯ୍ୟୋଧନ ବୋଇଲାରେ ଅତି ଅଗୋଚର
କୁନ୍ତୀ ସହିତେ ପାଣ୍ଡବେ ମଲେ ଜତୁଘର ।
ପ୍ରତ୍ୟକ୍ଷେ ଦେଖିଲୁ ସାତଜଣ ପୋଡ଼ି ମଲେ
ପୁରୋଚନ ପଣ୍ଡା ତହିଁ ସଙ୍ଗେ ନାଶ ଗଲେ ।
ଭୀଷ୍ମ ଦ୍ରୋଣ ବୋଇଲେ ଏ କଥା ମାନ ମିଥ୍ୟା
ପୁରୋଚନ ନାଶ ଗଲା ସେହି ସତ୍ୟକଥା ।
କହନ୍ତି ଶକୁନି କର୍ଣ୍ଣ ଦୁଃଶାସନ ଶଲ୍ୟ
ଆଗୁଁ କୁରୁବୃନ୍ଦଙ୍କୁ ନ ପାଅ ତୁମ୍ଭେ ଭଲ ।
ଜତୁ ଘରେ ନାଶ ଗଲେ ଦେଖିଲୁ ପାଣ୍ଡବେ
ମୋହର କଷଣ ତୁମ୍ଭେ ନ ଛାଡ଼ ଗାଙ୍ଗବେ ।
ମୃତ୍ୟୁତେଜା ବୋଲି ମଲା ଲୋକ ସ୍ନେହ କରି
ପାଣ୍ଡବଙ୍କ କଥା କହୁଅଛି ହେ ଏପରି ।
ଦ୍ରୋଣକୁ କହନ୍ତି ସେହୁ ଲାଘବ ଚରିତ
ମଲା ଲୋକଙ୍କୁ ଏହାଙ୍କ ଶୋଚନା ବହୁତ ।
ପର୍ଶୁରାମ ଅବା ଦୟା କଲେ ଅନୁରାଗେ
ଏ ଯେ ଭିକ୍ଷାଶୀ ସେ ସିନା ରହିଥାଇ ଯୋଗେ ।
ଗୁରୁ ତୋଷିବାକୁ ସିନା ବିଦ୍ୟାଏ ପାଇଲେ
ଜନ୍ମରୁ ଭିକ୍ଷାଶୀ ସେ ତ ଆନ କି ପାଇଲେ ।
ଭୀଷ୍ମ ବୋଇଲେ ଆମ୍ଭର ବୋଲ ଯେ ଭାଙ୍ଗିଲା
ଦେହ ଗଞ୍ଜାଇଲେ ଏବେ ପ୍ରାଣେ ନାଶ ଗଲା ।

ଅଜାତ ଶତ୍ରୁ ଅଟଇ ଯେ ଧର୍ମ ଯୁଧିଷ୍ଠି
ତା ବଚନ ନ ଭାଙ୍ଗନ୍ତି ଭାଇ ଚାରିଗୋଟି ।
ତେଣୁ ତୁମ୍ଭମାନଙ୍କୁ ସେ ନ ରଖିଲେ ରଣେ
କର୍ଣ୍ଣ କଳିଙ୍ଗ ସେନ ହୋଇଲେ ଜଣେ ଜଣେ ।
ବୁଡ଼ାଇଲୁ ମତ୍ତଗର୍ବ ଭାବେ ଯେ ଆମ୍ଭନ୍ତ
ଏହି ଦୁଇଦିନ ମଧ୍ୟେ ବୁଝ ସତ ମିଛ ।
ଭଗ୍ନବଳ ଘେନିଣ ଯେ ଚଳେ ଦୁର୍ଯ୍ୟୋଧନ
ବନେ ରହି ଫଳମୂଳ କଲେକ ଭୋଜନ ।
ଏଥୁଅନ୍ତେରେ ଚରିତ ଶୁଣ ସାଧୁ ବୃନ୍ଦ
ପାଞ୍ଚାଳୀକୁ ଦେଖି ହେଲେ ଯୁଧିଷ୍ଠି ସାନନ୍ଦ ।
ଯାହା ବୋଲିଥିଲେ ବାଟେ ବ୍ୟାସ ମହାମୁନି
ମହତ ବାକ୍ୟ ଲଭିଲେ ଦେବୀ ଯାଜ୍ଞସେନୀ ।
ଦୃଷ୍ଟଦ୍ୟୁମନ ସୈନ୍ୟଙ୍କୁ ନିବର୍ତ୍ତ ଯେ କଲା
ଦ୍ରୌପଦୀ କେଣେ ଗଲେ ତା ଜାଣି ନ ପାରିଲା ।
ଭୀମ ବୋଇଲା ଦ୍ରୌପଦୀ ଘେନିଣ ସଙ୍ଗରେ
ଚାଲ ବିଜେ କରିବ ନା ଜଗତୀ ଉପରେ ।
ତେବେ ଦ୍ରୁପଦ ରାଜାର ଜାଣିବା ନା ତଥ୍ୟ
ଯୁଧିଷ୍ଠି ବୋଇଲେ ବାବୁ ନୁହଁଇ ଏମନ୍ତ ।
ଆରେ ଆମ୍ଭେ ଅଇଲୁ ଯେ ବିପତ୍ତିର କାଳେ
ଦୁର୍ଗତି ବଞ୍ଚିଲୁ ଆମ୍ଭେ କୁରାଳର ଶାଳେ ।
ସମ୍ପଦ କାଳରେ ଅନ୍ୟଠାରେ କିମ୍ପା ଯିବା
ସେହି କୁରାଳ ଶାଳରେ ରହି ହେବା ବିଭା ।
ଆମ୍ଭଙ୍କୁ ବିପଦ କାଳେ ଠାବ ହେଲା ଚକ୍ରୀ
ମୁକତ ହୋଇବ ସିନା ଆମ୍ଭ ବିଭା ଦେଖି ।
ପଞ୍ଚୁପାଣ୍ଡବ କେଶିନୀ ଦ୍ରୁପଦ ଦୁହିତୀ
ବଇଦୁର୍ଯ୍ୟୋ ପବର୍ତରେ ବସିଣ ଭାଳନ୍ତି ।
ଲକ୍ଷ ଲକ୍ଷ ନୃପତି ଯେ ଭଗ୍ନ ହୋଇଗଲେ
ସର୍ବ ଏକ ହୋଇ ନିକି ରାଜ୍ୟକୁ ବାହିଲେ ।
ଆମ୍ଭେ ଥାଉଁ ପ୍ରମାଦ କି ପଡ଼ିବ ରାଜ୍ୟକୁ
ଦୁହିତା ଦେଇ ସମର୍ପି ହୋଇଲେ ଆମ୍ଭଙ୍କୁ ।
କେଶିନୀ ବୋଲେ ମହତ ତୁମ୍ଭେ ପାଞ୍ଚଜଣେ
ଲକ୍ଷେ ନୃପତି ଜିଣିଲ ଏବେ ବିଦ୍ୟମାନେ ।
ପୁତ୍ର ଘେନି ପଳାଇଲା ଦ୍ରୁପଦ ରାଜନ
ଅନେକ ବିକଳ ହୁଏ ତୁମ୍ଭଙ୍କୁ ଲୋଡ଼ିଣ ।
ଚାଲ ସ୍ୱାମୀ ଆହେ ଆମ୍ଭ ନଗରକୁ ଯିବା
ପାଞ୍ଚାଳ ରାଜାର ଦୋଷ ମନେ ନ ଧରିବା ।
ଦ୍ରୋପଦୀଙ୍କୁ ଜାତ କଲା ତାହାର ନିମନ୍ତେ
କାଳେ ସେହି ଅଇଶ୍ୱର୍ଯ୍ୟ ପାଇଲା ସେ ସତେ ।
ଯୁଧିଷ୍ଠି ବୋଇଲେ ଆମ୍ଭେ ଅଟୁ ଯେ ଭିକାରୀ
ଆମ୍ଭପାଇଁ କି ଦ୍ରୁପଦ ସଞ୍ଚିଲେ କୁମାରୀ ।

କେଶିନୀ ବୋଇଲା ଜାଣେ ମୁଁ ଏଥିର ଭାବ
ତୁମ୍ଭଙ୍କୁ ବୁଝଇ ମୁହିଁ ପଞ୍ଚ ଯେ ପାଣ୍ଡବ ।
ଦ୍ରୁପଦକୁ ଯେଉଁକାଳେ ଦ୍ରୋଣ ଧରିନେଲେ
ଅର୍ଜୁନର ହାତେ ନେଇ ବନ୍ଦି କରାଇଲେ ।
ଅନିମିତ୍ତେ ଅପମାନ ଦେଲେ ଦୁର୍ଯ୍ୟୋଧନ
ସେବିଲା ଯେ ଅପମାନ ରାଜା ତ୍ରିଲୋଚନ ।
ଅଠର ବର୍ଷେ ପ୍ରସନ୍ନ ହୋଇଲେ ଧୂର୍ଜଟି
ଦ୍ରୁପଦ ବୋଲେ ଦିଅନ୍ତୁ କନ୍ୟା ଏକଗୋଟି ।
ମୁହିଁ ତାହାକୁ ପ୍ରଦାନ କରିବି ପାର୍ଥକୁ
ତାହା ହସ୍ତେ ଗଞ୍ଜାଇବି କୌରବମାନଙ୍କୁ ।
ସେ ଈଶ୍ୱର ଆଜ୍ଞା ଦେଲେ ବ୍ୟାସ ଦୁର୍ବାସାଙ୍କୁ
ଯଜ୍ଞ କରି କନ୍ୟା ଏକ ଦିଅ ଦ୍ରୁପଦକୁ ।
ସ୍ୱାମୀର ଆଜ୍ଞାରେ ମହାମୁନି କଲେ ଯଜ୍ଞ
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଜନ୍ମ ହେଲେ ଆଗ ।
ପଛେ ଜାତ ହେଲେ ଏହି କନ୍ୟା ଯାଜ୍ଞସେନୀ
ଜତୁଘରେ ମଲେ ବୋଲି ଶୁଭିଲାକ ଧ୍ୱନି ।
ବ୍ୟାସ ଯେ ପୁଚ୍ଛିଲେ ସେହି ନ କଲେ ପ୍ରଘଟ
ମଲା ଲାଖ ପାତିଲେ ସେ କରି ବ୍ୟାସକୂଟ ।
ଅର୍ଜୁନହୁଁ ଆନ କେହୁ ନ ପାରିବ ବିନ୍ଧି
ଯେ ଲାଖ ବିନ୍ଧିବ ତାକୁ ଦେବୁ ଏ ଦ୍ରୌପଦୀ ।
ଏସନ ଚରିତ ବ୍ୟାସ ଭିଆଇଲେ କୂଟେ
ସ୍ୱୟମ୍ବର କଲା ରାଜା ତୁମ୍ଭର ଅଭେଟେ ।
ସଦାଶିବଙ୍କର ବାକ୍ୟ ଆନ ଯେ ନ ହେଲା
ଯାହାକୁ ବାଞ୍ଛିଲା ରାଜା ତାହାକୁ ପାଇଲା ।
ଯୁଧିଷ୍ଠିର ପୁଚ୍ଛାକଲେ କେଶିନୀ ଅଗ୍ରତେ
ଆମ୍ଭେ ପାଣ୍ଡବ ବୋଲି ତୁ ଜାଣିଲୁ କେମନ୍ତେ ।
କେଶିନୀ ବୋଇଲା ଏହି ଆଦ୍ୟ ଅବତାରେ
କେତୁକା ନାମ ଏହାର ଏ ସତ୍ୟଯୁଗରେ ।
ମୋହର ନାମ ଅଟଇ ଜାଣ ଉଗ୍ରତାରା
ଦାସୀପଣେ ଏହାଙ୍କୁ ମୁଁ ଖଟେ ପରମ୍ପରା ।
ଦ୍ୱିତୀୟେ ହୋଇଲା ଏକବଳା ପାରବତୀ
ହୋଇଥିଲା ମୋର ନାମ କାଉଁରୀ ମାଳତୀ ।
ସେ ଜନ୍ମେ ଏହାର ମୁହିଁ ପରିବାରି ଥାଇ
ଭୃତ୍ୟପଣେ ଏହାର ମୁଁ ଚରଣେ ଖଟଇ ।
ତୃତୀୟ ଜନମେ ଏହୁ ହେଲେ ଶଚୀଦେବୀ
ମୁହିଁ ପ୍ରିୟମ୍ବଦା ରୂପେ ତା ଚରଣ ସେବି ।
ଚତୁର୍ଥ ଜନ୍ମେ ଦ୍ରୌପଦୀ ରୂପେ ଅବତରି
କେଶିନୀ ନାମ ମୋର ମୁଁ ତାର ତପଚାରୀ ।
ତୁମ୍ଭେ ପାଞ୍ଚଜଣ ଅଟ ଏକଇ ମୂରତି
ମୁହିଁ ଜାଣିଛି ତୁମର ଜନ୍ମର ଭାରତୀ ।

ବହୁକାଳ କଥା ଯହୁଁ କହିଲା କେଶିନୀ
ଯୁଧିଷ୍ଠି ବୋଇଲେ ତୋତେ ଜାଣିଲି ସୁଜ୍ଞାନୀ ।
ଅନେକ ଯେ ଗଉରବ କଲେ କେଶିନୀକି
ଅପର୍ଣ୍ଣାମେଳେ ରଖିଲେ ଦ୍ରୋପଦୀ ଦେବୀଙ୍କି ।
କନ୍ୟାକୁ ଦେଖିଣ ତହୁଁ ପଣ୍ଡୁ ପାଞ୍ଚପୁତ୍ରେ
କୁରାଳ ଶାଳେ ଗମନ୍ତି ସେହି ଅର୍ଦ୍ଧରାତ୍ରେ ।
ପଚାରନ୍ତି କନ୍ୟାରୂପ ଦେଖି ଦେବ ଧର୍ମ
ପାର୍ଥ ନ ଘେନିଲା ମାଳା କରି ତୋର କର୍ମ ।
କନ୍ୟା ଲୋଭେ ଯୁଧିଷ୍ଠିର କରନ୍ତି ବିଚାର
ଯୁକତେ ଏ କନ୍ୟାଗୋଟି ହୋଇବ ଆମ୍ଭର ।
ଭୀମ ବିଚାରେ ଅର୍ଜୁନ ଲାଖକୁ ବିନ୍ଧିଲା
ଦୁଷ୍ଟ ମାନଗୋବିନ୍ଦ ଯେ ମହାଗୋଳ କଲା ।
ମୁଁ ଯୁଦ୍ଧ ନ କରି ଯେବେ ହୋଇଥାନ୍ତି ତୁନି
ଆଣନ୍ତା କି ପାର୍ଥ ଛାର ଦର୍ପେ ଯାଜ୍ଞସେନୀ ।
ମୋହର କନ୍ୟା ଗୋଟିଏ ହୋଇବ ଯୁକତେ
ଏ କଥା ଅର୍ଜୁନ ଅବା ଲଙ୍ଘିବ କେମନ୍ତେ ।
ଯୁକତେ ମୋତେ ଯଦ୍ୟପି ନ ଦେବ କୁମାରୀ
ବଳାକ୍ରାରେ ଅବଶ୍ୟ ମୁଁ ଘେନିବି ଉଚ୍ଛୁଡ଼ି ।
ଚାରି ହେଁ ମୋତେ ସଂଗ୍ରାମେ ନୁହନ୍ତୁ ତ ସରି
ପାଞ୍ଚାଳୀ ଘେନି ରହିବି ହିଡ଼ିମ୍ବିକୀ ପୁରୀ ।
ନକୁଳ ବିଚାରେ ମୋତେ ସୁକୁମାର ଦେଖି
ନିଶ୍ଚୟ ବରିବ ସେହି ଶରତ୍ ଚନ୍ଦ୍ରମୁଖୀ ।
ସହଦେବ ବୋଇଲା ମୁଁ ମନ୍ତ୍ରୀ ଚୂଡ଼ାମଣି
ମୋତେ ପ୍ରାପତ ହୋଇବ ଦ୍ରୁପଦ ଦୁଲଣୀ ।
ଏସନକ ବିଚାର ତ ସବୁଙ୍କରି ମନ
ଯୁଧିଷ୍ଠି ବୋଇଲେ ଆମ୍ଭେ ଲଭିବା କେସନ ।
ଆମ୍ଭେ ଲୋଭ କଲେ ନିଶ୍ଚେ ହେବ ଜାଣ ମନ୍ଦ
କଳଙ୍କ ହୋଇବ ଏକେ ହୋଇବ ଯେ ଦ୍ୱନ୍ଦ୍ୱ ।
କହିବୁ ଯେ ମାତାଙ୍କର ଅଗ୍ରେ ଗୋପ୍ୟ କରି
ଯେ ଯାହାକୁ ବୋଲିବ ସେ ନେବ ଏ କୁମାରୀ ।
ରାତ୍ର ହୋଇ ଅଛଇ ଯେ ଅଢ଼ାଇ ପ୍ରହର
କନ୍ୟା ଘେନି ପ୍ରବେଶିଲେ ପଞ୍ଚ ସହୋଦର ।
ଯୁଧିଷ୍ଠି ବୋଇଲେ ମାଗୋ ପାଣିଘଟ ଦେବା
କୁନ୍ତୀ ବୋଇଲେ ପାଇଲ କିସ କିସ ବାବା ।
ଯୁଧିଷ୍ଠି ବୋଇଲେ ତାହା ଶୁଣସି ଗୋମାଏ
ପ୍ରାପତ ହେଲା ଉତ୍ତମ ଫଳରୁ ଗୋଟିଏ ।
ପାଞ୍ଚଭାଗ କର ତୁମ୍ଭେ ସେହି ଫଳ ଗୋଟି
ପାଞ୍ଚଜଣ ସେ ଫଳକୁ ଖାଅ ବାଣ୍ଟିକୁଣ୍ଟି ।
ସେସନେକ ଆଜ୍ଞା ଦେଲୁ ପରମ ଅପର୍ଣ୍ଣା
ତୋହର ବୋଲ ପାଷାଣ ଗାର ଅଟେ ସିନା ।

ଭୀମସେନ ବୋଇଲା ମା ଫଳ ନୁହଇ ତା
ଲାଖ ବିନ୍ଧି ଆଣିଲୁ ଗୋ ଦ୍ରୁପଦ ଦୁହିତା ।
କୁନ୍ତୀ ବୋଇଲେ ବାବୁରେ ମହତ ବଚନ
ତୁମ୍ଭେ ମୋର ସାଧୁପୁତ୍ରେ କରିବ କି ଆନ ।
ଯେଉଁପରି ଆଜ୍ଞା ମୁହିଁ ଦେଲି ନିରାଧାରୀ
ପଞ୍ଚଭାଇ ବିଭାହୁଅ ଦ୍ରୁପଦ କୁମାରୀ ।
ଯାହାକି କହିବେ ଭୋଜ ରାଜାର ଦୁହିତା
ପୁତ୍ରମାନଙ୍କ ପ୍ରକୃତି ଜାଣେ ସିନା ମାତା ।
କେଶିନୀର ମୁଖ ଚାହିଁ ବୋଲେ ଯାଜ୍ଞସେନୀ
କେମନ୍ତ ବୁଲନ୍ତି ଭିକ୍ଷାପାତ୍ର କନ୍ଧେ ଘେନି ।
ପ୍ରବେଶ ହୋଇଲେ ଯାଇ କୁରାଳ ଶାଳରେ
ତୃଣ ମେଞ୍ଚାଏ ଜାଳିଲେ ସେ ନିଶା କାଳରେ ।
କେଶିନୀ ବୋଇଲା ଏବେ ଦେଖିଲଇଁ ବସା
ଦ୍ରୌପଦୀ ଆଗରେ କହେ ତୁନିକରି ଭାଷା ।
ରାଜାର ଆଗେ ବାରତା କହଇ ମୁଁ ଯାଇଁ
ଦ୍ରୁପଦଙ୍କୁ ଅଣାଇବା ଏଥକୁ କଢ଼ାଇ ।
ଏତେକ ତିଆରି ତହୁଁ ଗଲା ମୃଦୁସୁଲୀ
ଦ୍ରୁପଦର ଭବନକୁ ଗଲା ବେଗେ ଚଳି ।
କୁମ୍ଭାର ପାଉଁଶେ ଶଯ୍ୟା ଗୋଟିଏ ସେ କଲେ
କମଳ ଖଣ୍ଡିଏ ପାତି କୁନ୍ତୀ ଯେ ଶୋଇଲେ ।
ତାଙ୍କ ପାଦତଳେ ଶଯ୍ୟା ଗୋଟିଏ ପକାଇ
ଯୁଧିଷ୍ଠି ଦେବ ତହିଁରେ ଶୋଇଲେକ ଯାଇଁ ।
ତାଙ୍କ ପାଦତଳେ ଶଯ୍ୟା ଚାରିଗୋଟି ପାତି
ଆନନ୍ଦରେ ପହୁଡ଼ିଲେ ଭାଇ ଚାରିଗୋଟି ।
ତାହାଙ୍କର ପାଦତଳେ ପାଉଁଶ ଶଯ୍ୟାରେ
କୁନ୍ତୀ ବୋଇଲେ ଦ୍ରୌପଦୀ ଶୁଅ ଗୋ ଏଠାରେ ।
କ୍ଷରଶଯ୍ୟା ଦେଖି ଦେବୀ ଦ୍ରୌପଦୀ ବିକଳେ
ଭୋ ଦଇବ ବୋଲି ଦେଲେ କରକୁ କପାଳେ ।
କୁନ୍ତୀ ବୋଇଲେ ଭିକ୍ଷାଶୀ ଅଟନ୍ତି ମୋ ପୋଏ
ତୋ କର୍ମେ ଏହାଙ୍କୁ ତୁହି ପାଇଲୁ ଗୋ ମାଏ ।
ଯାହା ତୁ ଅରଜିଅଛୁ ତାହା ଭୋଗ କର
ସମ୍ପଦ ବିପଦ ଏ ଗୋ ସଂସାର ବେଭାର ।
ଦ୍ରୌପଦୀ ବିକଳ ହେଲେ ପାଉଁଶକୁ ଦେଖି
ହେ ଦଇବ ମୋର କର୍ମେ ଥିଲୁ ଏହା ଲେଖି ।
ହଂସୁଲୀ ତୁଳିର ମୁକ୍ତା ରତ୍ନଖଟ ଘେରି
ଖଟିଥାନ୍ତି ନିତ୍ୟେ ଶତ ଶତ ପରିବାରୀ ।
ସୁପାତି ଉପରେ ପୁଣି ଦାସୀ ନେତ ପାରି
ତହିଁ ଉପରେ କର୍ପୂରଗୁଣ୍ଡିକି ସିଞ୍ଚାଡ଼ି ।
ତହିଁ ଉପରେ ପଡ଼ଇ ଶରୀର ମୋହର
କେମନ୍ତ ଶୋଇବି ମୁହିଁ ପାଉଁଶ ଉପର ।
ଲକ୍ଷେକ ବ୍ରାହ୍ମଣ ଘେନି ବ୍ୟାସ ମହାଯତି
ମହାଯଜ୍ଞରୁ ମୋତେ ଗୋ କଲେ ଉତପତ୍ତି ।
ପାଞ୍ଚାଳ ରାଜାର ମୁହିଁ ଅଟଇ ଦୁଲଣୀ
ଦଇବ ପୁରୁଷ ମୋତେ ଏହା କଲା ଆଣି ।
ପାଉଁଶ ମାଡ଼ିଲେ ଦେହୁଁ ଶିରୀ ତୁଟିଯାଇ
ଉଡ଼ି ପଡ଼ିଲେ ମାସକ ସୁକୃତ ହରଇ ।
ମୁଁ ପରମ ମାହେଶ୍ୱରୀ ଦେହେ ଜ୍ଞାନ ଥାଉଁ
ଏ ପାଉଁଶ ଶଯ୍ୟାରେ ମୁଁ ଶୋଇବି ଗୋ କାହୁଁ ।
ଏହା ଦେଖି ଭୀମସେନ ତରାଟିଣ ଚାହିଁ
କି ଚାହୁଁ ଦ୍ରୌପଦୀ ଶୋଇନାହୁଁ ଲୋ କିମ୍ପାଇଁ ।
ଦେଖି ମହାଭୟ କଲେ ଦ୍ରୁପଦ କୁମାରୀ
ଏ ଦୁଷ୍ଟ ବ୍ରାହ୍ମଣ ପୁଣ ମୋତେ ତ ନ ମାରି ।
ଭୟରେ ଦ୍ରୌପଦୀ ଦେବୀ ଶୋଇଲେ ବ୍ୟାକୁଳେ
ସେହି ପଞ୍ଚପାଣ୍ଡବଙ୍କ ଚରଣର ତଳେ ।
ତମ୍ଭାର ଖପରା ହରି ଗୋବିନ୍ଦ ଯେ ମୁଣି
ଦେଖି ମୂର୍ଚ୍ଛାଗଲେ ଦେବୀ ଦ୍ରୁପଦ ଦୁଲଣୀ ।
ରାଜାର କୁମାରୀ ହୋଇ ହୀନ କର୍ମ ମୋର
ଭିକ୍ଷାଶୀ ବ୍ରାହ୍ମଣଙ୍କୁ ମୁଁ ପାଇଲଇଁ ବର ।
ଭୋ ଦଇବ ପାପ ପୁଣ୍ୟ କିମ୍ପା ନ ବିଚାରୁ
ଆବର କିମ୍ପାଇ ସ୍ତିରୀଜନ୍ମ ଗୋଟି କରୁ ।
ଆନଭଳି ରାଜା ଯେବେ ମୋତେ ପାଇଥାନ୍ତା
ମଥା ଉପରେ ବସାଇ ମୋତେ ଘେନିଯାନ୍ତା ।
ନିର୍ଦ୍ଦୟ ବ୍ରାହ୍ମଣ ଗଲେ ଏତିକିରେ ରାଗି
ଅନ୍ତେ ହୋଇଲି ମୁଁ ପୁଣି ତାଙ୍କ ପାଦଲାଗି ।
ଦ୍ରୌପଦୀର ଶୋଚନା କେ ମୁଖେ କହିପାରେ
ପୁଣ ପୁଣ ଦେବୀ ନାରାୟଣଙ୍କୁ ସୁମରେ ।
ଶ୍ରୀବତ୍ସ ଲାଞ୍ଛନ ହର କଉସ୍ତୁଭ ଧାରୀ
ମହାଲକ୍ଷ୍ମୀ ଦେବୀଙ୍କର ହୃଦୟବିହାରୀ ।
ପୀତାମ୍ବରଧାରୀ ଆହେ କମଳା ବିଳାସ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତବ ଦାସ ।

—o—

## ଦ୍ରୌପଦୀର ପୂର୍ବ ଜନ୍ମ କଥା

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
କୁଟୁମ୍ବ ବସାଇ ଭାବେ ଦ୍ରୁପଦ ନୃପତି ।
ଅକାରଣେ କିମ୍ପାଇଁ ମୁଁ ସ୍ୱୟମ୍ବର କଲି
କାର୍ଯ୍ୟ ନ ପାଇଲି ମୁହିଁ ଧନ୍ଦିହୋଇ ମଲି ।
ପ୍ରତକ୍ଷେ ଲାଖ ବିନ୍ଧିଲା ଯେ ବ୍ରାହ୍ମଣ ଗୋଟି
କାଳେ କାଳେ ଶତ୍ରୁ ମୋର ହେଲା ଧାର୍ତ୍ତ ରାଷ୍ଟ୍ରୀ ।
ଯେବେ ଗୋଳ କଲେ ମିଶି ସଭାରେ ରାଜାଏ
ମୋର କଲା କୃତ୍ୟ ଦୋଷ କାହାକୁ ନ ଦିଏ ।

କେତେ ମାରିଲେ ଦରିଦ୍ର ବ୍ରାହ୍ମଣ ଗୋଟି କି
ଭସ୍ମେ ପକାଇଲୁ ଆମ୍ଭେ ନ ପାରିଲୁ ଦେଖି ।
କେ ମୋହର ପାଞ୍ଚାଳୀକି ହରିନେଲା ବଳେ
ଦୁହିତା ଲାଗି ଦ୍ରୁପଦ ରୋଦଇ ବିକଳେ ।
ଦୃଷ୍ଟଦ୍ୟୁମ୍ନର ଶୋକ କେ ପାରିବ କହି
ରୋଦନ ଶବଦରେ ପୂର୍ଣ୍ଣ ହେଲା ମହୀ ।
ଦୁହିତା ଲାଗି ବିକଳେ କାନ୍ଦେ ପଦ୍ମାବତୀ
ଏତେ କାଳ ପାଳିବାର ବ୍ୟର୍ଥ ଦିବାରାତି ।
କେ ମାଇଲା ବ୍ରାହ୍ମଣକୁ କେଣେ ଘେନିଗଲା
ପୋଡୁ ପୋଡୁ ମୋତେ କିମ୍ପା ମରଣ ନୋହିଲା ।
ଆରେ ବାବୁ ଶିଖଣ୍ଡୀରେ ମୋର ଧୃଷ୍ଟଦ୍ୟୁମ୍ନ
ଲୋଡ଼ କି ନା ବ୍ରାହ୍ମଣର ତୁମ୍ଭେ ବର୍ଣ୍ଣଚିହ୍ନ ।
ଗୋଳବେଳେ କାହିଁ ଅବା ଥାଆନ୍ତେ ଯେ ଲୁଚି
ପଳାଇ ଅଇଲି ବିପ୍ର ନ ଅଇଲା ଘୁଞ୍ଚି ।
ତାଙ୍କ ସଙ୍ଗେ ରଣଯଜ୍ଞ କିମ୍ପାଇଁ ନ କଲ
ଦ୍ରୌପଦୀ ପାଇଁ କିମ୍ପାଇଁ ସମସ୍ତ ନ ମଲ ।
ପିତାର ବଚନ ସେହି ଦ୍ରୁପଦର ବଳା
କରେ କୁମର ଘେନିଲେ ସହସ୍ରେକ ହୁଳା ।
ସଭାର ଆୟତନ ସେ ଯାଉଛନ୍ତି ଲୋଡ଼ି
ଦେଖିଲେ ଅନେକ ରାଜା ଯୋଚାଛନ୍ତି ପଡ଼ି ।
ସୁବର୍ଣ୍ଣ ମଣି ମୁକୁଟ ବିରାଜଇ ଶିରେ
ରକତ ଗଳଇ ସେହି ଅଚେତ ଶରୀରେ ।
ରକତ ମାଂସ ଦେଖିଣ ବିଜୟ ଶ୍ମଶାନୀ
ଯୋଗିନୀବୃନ୍ଦକୁ ଦେବୀ ସଙ୍ଗତରେ ଘେନି ।
ଟହ ଟହ କୁହୁକୁହୁ ଶୁଭଇ ଶବଦ
ବ୍ରହ୍ମାଣ୍ଡ ଉଛୁଳୁ ଅଛି ଡମ୍ବରୁର ନାଦ ।
ମାତଙ୍ଗିନୀ ବଳ ଘେନି କରନ୍ତି ଭ୍ରମଣ
ନୃତ୍ୟରଙ୍ଗ ରସେ ଭୋଳ ତହିଁ ଦେବଗଣ ।
ଚାମୁଣ୍ଡା ଚର୍ଚ୍ଚିକା ଚଣ୍ଡୀ ଦେବ ଭଦ୍ରାକାଳୀ
କଙ୍କାଳୀ ବେତାଳୀ କାଳୀ ଭୈରବୀ ବାସେଳୀ ।
ମତୁଆଳ ଖେଳେ ଭୋଳ ଗଳେ ଚାପ ମାଳି
ଖେଚରୀ ଭୂଚରୀ ଦେବୀ ଚଞ୍ଚଳା କରାଳୀ ।
ମହାମତ୍ତ ବ୍ୟାଘ୍ର ସିଂହ ଶାର୍ଦ୍ଦୂଳ ବାହିନୀ
ଗଜ ଅଶ୍ୱ ଗଧବଳ ସଙ୍ଗତରେ ଘେନି ।
ନାଚନ୍ତି ଗାବନ୍ତି ଦେବ କୁତୂହଳେ ପଡ଼ି
ଭୂତଭୟଙ୍କରୀ ଦେବୀ ଦ୍ୟନ୍ତି ଘୋର ରଡ଼ି ।
ମହାନିଶାକାଳେ ସର୍ବେ ରକ୍ତ ମାଂସେ ଭୋଳା
ନମସ୍ତେ ତବ ରୂପକୁ ଗୋ ସର୍ବ ମଙ୍ଗଳା ।
ନବଗୋଟି କାତ୍ୟାୟିନୀ ଚରଣେ ଗୋ ସେବା
ଶ୍ରୀ ଶାରଳା ଦାସକୁ ଗୋ ପ୍ରସନ୍ନ ହୋଇବା ।

ହୁଳା ଲଗାଇଣ ଚଳିଗଲେ ଧୃଷ୍ଟଦ୍ୟୁମ୍ନ
ସମସ୍ତ ଦେବୀ ବିମାନେ ହେଲେ ଅନ୍ତର୍ଦ୍ଧାନ ।
ଲୋଡ଼ନ୍ତି ମେଢ଼ ମଣ୍ଡପ ଦେଉଳ ବିମାନ
ତୋଟାପୁର ନାଟ୍ୟପୁର ଗହନ କାନନ ।
ସମସ୍ତ ଗୁପତ ସ୍ଥାନେ ଲୋଡ଼ନ୍ତି ଉଦ୍ଦେଶି
ଅପ୍ରମିତ ମୃତପିଣ୍ଡ ରୁଧିରରେ ମିଶି ।
ଆସ୍ଥାନ ଆଦି ଚୌଦିଂଶ ଯୋଜନ ପର୍ଯ୍ୟନ୍ତେ
ଲୋଡ଼ି ଲୋଡ଼ି ନ ପାଇଲେ ଦ୍ରୁପଦର ପୁତ୍ରେ ।
ଭ୍ରମୁ ମିଳିଲେ କୁରାଳ ଶାଳ ପାଶେ ଯାଇ
ହୁଳା ଜାଳି ଖୋଜି ଯାଇଛନ୍ତି ବେନି ଭାଇ ।
ଶିଖଣ୍ଡୀ ବୋଲେ କୁରାଳ ଶାଳ ସନ୍ନିଧାନେ
ଏଥି ଅବା ସେହି ବିପ୍ରେ ଥାଆନ୍ତି ଗୋପନେ ।
ଦେଖିବା କୁରାଳ ଗୃହ ହୁଳା ଆଣ ଭାଇ
ଏ ଠାବରେ ଥିବା ପ୍ରାୟେ ସନ୍ଦେହ ଲାଗଇ ।
ଉତ୍ତାନଶାୟୀ ହୋଇଛି ପବନର ବାଳ
ନିଃଶ୍ୱାସ ଘାତେ ଉଠୁଛି ଉପରକୁ ଚାଳ ।
ଆହାର ନିଦ୍ରା ପନ୍ଦରଦିନ ଯାଏ ନାହିଁ
ଶତ୍ରୁଙ୍କୁ ମର୍ଦ୍ଦି ସୁଖରେ ଅଛନ୍ତି ସେ ଶୋଇ ।
ନିଃଶ୍ୱାସ ଘାତରେ ଚାଳ ଉର୍ଦ୍ଧ୍ୱକୁ ଉଠଇ
କିଛିଦୂର ପରିଯନ୍ତେ ଖଞ୍ଜାରୁ ଛାଡ଼ଇ ।
ନିଃଶ୍ୱାସ ଶୋଷନ୍ତେ ପୁଣି ବାହୁଡ଼ି ବସଇ
ଦେଖିଣ ନ ଗଲେ ଧୃଷ୍ଟଦ୍ୟୁମ୍ନ ତ୍ରାସ ପାଇ ।
ଶିଖଣ୍ଡୀ ବୋଇଲା ଭାଇ ନ ଯିବା ତା ପାଶ
ଏହିକ୍ଷଣି ଭକ୍ଷିବ ସେ କେବଣ ରାକ୍ଷସ ।
ଭୟେ କୁମରେ ନ ଗଲେ କେହି ତାର କତି
ବାହୁଡ଼ି ଯାଇ ଦ୍ରୁପଦ ରାଜାଙ୍କୁ କହନ୍ତି ।
ଭୋ ତାତ ଅନେକ ଦୂର ଗଲୁ ଆମ୍ଭେ ଭ୍ରମି
କାହାକୁ ହିଁ ନ ପାଇଲୁ ଦେଖି ଦେବସ୍ୱାମୀ ।
ଦ୍ରୌପଦୀ ବ୍ରାହ୍ମଣଙ୍କର ନାହିଁ ବର୍ଣ୍ଣ ଚିହ୍ନ
ଶୁଣିଣ ରାଜ ଦ୍ରୁପଦ ଦୁଃଖ କଲା ମନ ।
ଉଚ୍ଚ ସ୍ୱରରେ ରୋଦନ କରଇ ଭୂପତି
ପୁରଜନମାନେ ସର୍ବେ ବସି କାନ୍ଦୁଛନ୍ତି ।
ଆବର ଅଯୋନି ଜାତ ଅଗ୍ନିର କୁମାରୀ
ମୋହର ଅଧମ ପଣେ ଦୁଃଖ ହେଲୋ ଘାରି ।
ମୋହର ହୃଦର କଥା କହିବି କା ଆଗ
ଶରୀର ବିସର୍ଜିବି ନ ହେଉ ଶୋକ ଯୋଗ ।
କରନ୍ତି ଉଚ୍ଚେ ରୋଦନ ସମସ୍ତ କାମିନୀ
ଏମନ୍ତ ସମୟେ ହେଲା ପ୍ରବେଶ କେଶିନୀ ।
ଜଣାଇ ପଶିଲା ମୃଦୁସ୍ୱଳୀ ଅନ୍ତଃପୁରେ
ସମସ୍ତେ ତତ୍ପର ହୋଇଗଲେ ତା ସଙ୍ଗରେ ।

ଦ୍ରୁପଦ କହିଲେ କହ କେମନ୍ତେ ବାରତା
କେଶିନୀ ବୋଇଲା ତୁମ୍ଭେ ଛାଡ଼ ଶୋକ ଚିନ୍ତା ।
ସମସ୍ତ କୁଶଳ ବୋଲି କହେ ମୃଦୁସୁଲୀ
ଦ୍ରୁପଦ ବୋଇଲେ ମୁହିଁ ଏବେ ନିସ୍ତରିଲି ।
କେଶିନୀ କହଇ ବସି ସମସ୍ତ ବିଧାନ
ଲାଖକୁ ବିନ୍ଧିଲା ଦେବ ଦ୍ୱିଜ ଏକ ଜାଣ ।
ରଣଗୋଳ କଲେ ଯେତେବେଳେ କୁରୁବୀରେ
ଯୋଗ ଦେଲା ବୀରଭ୍ରାତା ଏକ ତା ସଙ୍ଗରେ ।
ବେନି ବୃକ୍ଷ ଉପାଡ଼ି ସେ ଧରିଛନ୍ତି ହସ୍ତେ
ଦେଖିଣ ଭାଙ୍ଗିଲେ ଦୁଷ୍ଟ ରାଜା ଏ ସମସ୍ତେ ।
ବୃକ୍ଷ ବୁଲାଇ ପବନ ପ୍ରାୟେ ଯାଇ ପିଟି
ରଥ ଗଜ ଅଶ୍ୱ ଆଦି ମହୀରେ ଯେ ଲୋଟି ।
ପୁଣି ହିଁ ଧାଇଁ ଆସିଲେ ଆଉ ଦ୍ୱିଜ ବେନି
ଆସନ୍ତେଣ ଭେଟ ହେଲେ ସେ ହୁଅଇ ତିନି ।
ବୃକ୍ଷେ ବୃକ୍ଷେ କରେ ସେହୁ ଅଛନ୍ତି ସେ ଘେନି
ଗୋଡ଼ାଇ ମାଇଲେ ରଥ ରଜ ଯେ ସଇନି ।
ତାହାକୁ ଭେଟିଲେ ମନ୍ତ୍ରୀବର ଯେ ଶକୁନି
ରଥ ହୁଡ଼ି ପକାଇଲା ପାଦଗତି ଘେନି ।
ଅନେକ ରତ୍ନ ମଣ୍ଡିଣ ଥିଲା ତାର ପାଶେ
ତହିଁ ନେଇ ରଖାଇଲେ ଦ୍ରୌପଦୀଙ୍କୁ ମୋତେ ।
ଯେପରି ସଂଗ୍ରାମ କଲେ ସେହି ଦ୍ୱିଜବର
ଦେବ ଦୁର୍ଲ୍ଲଭ ମାନବେ ଅଟେ ଅଗୋଚର ।
ଲକ୍ଷ ଲକ୍ଷ ମାଇଲେକ ବିପ୍ର ଚାରିଜଣେ
ଆଦିଅନ୍ତ ନାହିଁ କେତେ ପଡ଼ି ମଲେ ରଣେ ।
ଯେତେବେଳେ ଯୁଦ୍ଧ କଲେ ବାଣ ବଜ୍ରନାଭ
ଦେଖି ତାକୁ ଅସମ୍ଭବ କହିବା ଦୁର୍ଲ୍ଲଭ ।
ରଥେ ରଥ ଗଜେ ଗଜ କଚାଡ଼ିଣ ଧରି
ଏକା ଘାନ୍ତିକେ ପଡ଼ନ୍ତି ଦୈତ୍ୟ ଚାରି ଚାରି ।
ଭାଙ୍ଗି ପଳାନ୍ତି ଯୋଦ୍ଧାଏ ନ ରହନ୍ତି କେହି
ପନ୍ଦର ଯୋଜନ ଯାଏ ବହେ ରକ୍ତନଈ ।
ମହାବଳବନ୍ତା ଜାଣ ଅଟନ୍ତି ବ୍ରାହ୍ମଣେ
ଭାଙ୍ଗିଦେଲେ ଲକ୍ଷେ ରାଜା ଦର୍ପ ଚାରିଜଣେ ।
ଶିଶୁପାଳ ପୁଣ୍ଡରୀକ ଦମନ ରୁକ୍ମଣ
ଶାଲ୍ୱ ନୃପତି କି ଘେନି ଦୁଷ୍ଟ ପାଞ୍ଚଜଣ ।
ଏହାଙ୍କ ସୈନ୍ୟଙ୍କୁ ସେହି କ୍ଷେପିକରି ମାରି
ବଳେ ଆଣିଲେ ସେ ପଞ୍ଚ ରାଜା କେଶ ଧରି ।
ଜୟଦେବ ବୋଲି ଏକ ପଣ୍ଡାର ଯେ ନାମ
ସେ ବସିଥିଲା ଦକ୍ଷିଣ ମଣ୍ଡପରେ ଜାଣ ।
ତାହାଙ୍କ ଛାମୁରେ ନେଇ ପାଞ୍ଚଙ୍କୁ ପକାଇ
ସେ ଚାରିପଣ୍ଡା ଶୁତିଲେ ଦଣ୍ଡପ୍ରାୟ ହୋଇ ।
ବଡ଼ ଧାର୍ମିକ ସେ ପଣ୍ଡା ବଡ଼ ଦୟାବନ୍ତ
ବୋଇଲେ ଛାଡ଼ିଦିଅ ଏ ପଳାନ୍ତୁ ତ୍ୱରିତ ।
ତାହାଙ୍କର ବଚନ ଯେ ଅଟେ ଅଲଙ୍ଘିତ
ଆଜ୍ଞା ପ୍ରମାଣେ ତାହାଙ୍କୁ କରିଲେ ମୁକତ ।
ସମସ୍ତ ରାଜାଙ୍କୁ ଶାସ୍ତି ଦେଲେ ଏହି ମତେ
ନ ସରିବ ତାହାଙ୍କର ଶାସ୍ତି ମୁଁ କହନ୍ତେ ।
ସଂକ୍ଷେପି କେଶିନୀ ତାହା କହିଲା ସମସ୍ତ
ଶୁଣିଣ ପାଞ୍ଚାଳେଶ୍ୱର ବହୁତ ଉଷତ ।
ତୁ ମୋହର ମାତା ମୁଁ ତୋ ଆପଦ ଘେନଇ
ଏବେ ସେମାନଙ୍କୁ ଛାଡ଼ି ଅଇଲୁ ଗୋ କାହିଁ ।
ଆମ୍ଭଙ୍କୁ ଘେନିଣ ଦେବ ଗଲେ ପାଞ୍ଚବୀରେ
ଯାଇଣ ରହିଲେ ସେହୁ କୁରାଳ ଶାଳରେ ।
ସ୍ୱାମୀ ଅନେକ ବିନୟେ କହିଲୁ ତାହାଙ୍କୁ
ବିଜେ କରିବା ଭୋ ଦେବ ଦ୍ରୁପଦ ପୁରକୁ ।
ଇଚ୍ଛା କଲେ ତ୍ରଇଲୋକ୍ୟ ପାରନ୍ତି ସେ ଭ୍ରମି
ପ୍ରତିଜ୍ଞାରେ ମେରୁ ଟାଳି ପାରନ୍ତି ମୋ ସ୍ୱାମୀ ।
ଦ୍ରୌପଦୀ ଦେବୀ ଯେ ଆଜ୍ଞା ଦେଲେ ମୋତେ ରାଇ
ପିତାଙ୍କୁ ଘେନି ତୋହର ଆସବେଗେ ଯାଇ ।
ବିଜେ କରିବା ଭୋ ଦେବ ସେଠାକୁ ତୁରିତେ
ନ ପୁଣ ସେଠାରୁ ଚଳିଯାନ୍ତି ଅନ୍ୟପଥେ ।
ଶିଖଣ୍ଡୀ ବୋଇଲେ ଦେବ ବିପ୍ର ତହିଁ ନାହିଁ
କେବଣ ଦାନବ ବୀର ଅଛଇ ଯେ ଶୋଇ ।
କୁରାଳ ଶାଳ ନିକଟେ ଯାଇଥିଲୁ ରାଏ
ପାଖକୁ ନ ଗଲୁ ସ୍ୱାମୀ ରାକ୍ଷସର ଭୟେ ।
ଦ୍ରୁପଦ ବୋଇଲେ ଆଗ ଯାଅଲୋ କେଶିନୀ
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନକୁ ସଙ୍ଗତରେ ଘେନି ।
ତୁମ୍ଭେ ତିନିଜଣ ଯାଇ ଦେଖ ଲୋ ଗୁପତେ
ଅନ୍ତରେ ରହି ଦେଖିବ ବିପ୍ର କି ଦଇତେ ।
ଅଢ଼ାଇ ପ୍ରହର ତହିଁ ହୋଇଛି ରଜନୀ
ଚଳିଲା କେଶିନୀ ସଙ୍ଗେ କୁମାରଙ୍କୁ ଘେନି ।
କୁରାଳ ଶାଳ ସନ୍ନିଧେ ହୋଇଲେ ସେ ଯାଇଁ
ଭୟରେ ଦୂରେ ରହିଲେ ସେହି ବେନି ଭାଇ ।
ହସ୍ତରେ ଦିହୁଡ଼ି ଏକ ଘେନି ମୃଦୁସୁଲୀ
ଭିତରେ ପଶିଲା ଅତି ନିର୍ଭୟା ସେ ବାଳୀ ।
ଦେଖିଲା ଶୋଇଅଛନ୍ତି ତହିଁ ସାତଜଣ
ତୁନି କରି ହକାରିଲେ ଦେଖ ଏ ବ୍ରାହ୍ମଣ ।
ସୀମନ୍ତ ସ୍ଥାନରେ ଶୋଇଛନ୍ତି ମହାନାରୀ
ତାହାଙ୍କର ପାଦତଳେ ବିପ୍ର ସଦାଚାରୀ ।
ତାଙ୍କ ପାଦତଳେ ଦେଖ ସେ ଚାରି ବାପୁଡ଼ା
ପାଉଁଶେ ଶୋଇଅଛନ୍ତି ନାହିଁ ଯେ କପଡ଼ା ।

ତାଙ୍କ ପାଦତଳେ ଦ୍ରଉପଦୀ ଶୋଇଛନ୍ତି
ମାଗୋ କେବଣ ପାତକେ ପାଇଲା ଏ ଶାସ୍ତି ।
ତୋର ଶଯ୍ୟା ବିଚରନ୍ତି ଦାସୀ ପରିବାରୀ
ରତ୍ନ ପଲ୍ୟଙ୍କରେ ପୁଷ୍ପ ପାଖୁଡ଼ିକୁ ପାରି ।
ଲକ୍ଷେ ମାଢ଼ ତୁଳ ହୋଇ କର୍ପୂରର ଧୂଳି
ଶଯ୍ୟା ଉପରେ ସିଞ୍ଚନ୍ତି ନେଇ ଦୁଇ ବାଳୀ ।
ଆଲଟ ଚାମର ଧରି ଲକ୍ଷେ ମୁଦୁସୁଲୀ
ଅହର୍ନିଶି ବିଞ୍ଚୁଥାନ୍ତି ତୋତେ ସର୍ବ ବାଳୀ ।
ଭିକ୍ଷାସୀ ବ୍ରାହ୍ମଣ କି ବା ଦୈତ୍ୟ କାମରୂପୀ
ଏହାଙ୍କର ପାଦ ଲାଗି ହୋଇଲେ ଅଦ୍ୟାପି ।
ରାଗେ ଶୋକଭର ହୋଇ କୁମାର ଶିଖଣ୍ଡୀ
ହାଣିବି ବିପ୍ରଙ୍କୁ ବୋଲି ଧରି ଅସୀ ଖଣ୍ଡି ।
କେଶିନୀ ବୋଲେ ତୁମ୍ଭର ଏ ମରିବା ବୁଦ୍ଧି
ଏହିକ୍ଷଣି ହରାଇବ ଦ୍ରୁପଦର ଆଧି ।
ଗିରି ଚୂର୍ଣ୍ଣ ହେଲେ ପଡ଼ି ଯାହାଙ୍କର କାୟେ
କିସ ହୋଇବ ତୁମ୍ଭର ଅସୀପତ୍ର ଘାଏ ।
ଚାଲ ହୋ ଘେନି ଆସିବା ଦ୍ରୁପଦ ରାଜାଙ୍କୁ
ଭକତି କରିଣ ଘେନିଯିବା ଯେ ଏହାଙ୍କୁ ।
ଧୃଷ୍ଟଦ୍ୟୁମ୍ନ ବୋଲେ ସତ୍ୟ ଏ କଥା ଅଟଇ
ଦ୍ରୁପଦ ଆସିଣ ଦେଖୁ ଦୁହିତା କଷ୍ଟ ହିଁ ।
କନ୍ୟାକୁ ଘେନି ପଳାଇ ଅଇଲେ ଏ ଗଳି
ଲୁଚିଲେ ଏହି ଅଶୁଭ ସ୍ଥାନ ବୋଲି ଭାଳି ।
ଦଦରା ଛତା ଖଣ୍ଡିଏ ଯୋଡା ଭିକ୍ଷାମୁଣି
ଯେହ୍ନେ ପାପ କରିଅଛି ମୋହର ବହିଣୀ ।
କେଶିନୀ ବୋଇଲା ବାବୁ ଏମନ୍ତ ନ ବୋଲ
ପରକୁ ନିନ୍ଦିଲେ ନୋହେ ଆପଣାର ଭଲ ।
ପାଦରେ ଲକ୍ଷ୍ମୀଙ୍କି ତୁମ୍ଭେ ପେଲୁଛ କି ଅର୍ଥେ
ମରିବା ଉପାୟ କରୁଅଛ ବେନି ଭ୍ରାତେ ।
ଦେବଙ୍କୁ ନିନ୍ଦିଲେ ନର୍କେ ପଡ଼େ ହୋଇ ଜାତ
ବ୍ରାହ୍ମଣ ନିନ୍ଦିଲେ ବଂଶ ହୁଅଇ ନିପାତ ।
ତପୀ ନିନ୍ଦିଲେ ଶରୀର ହୋଇଯାଏ କ୍ଷୀଣ
ପୁଚ୍ଛାକଲେ ସମସ୍ତଙ୍କୁ ବୋଲେ ବିଦ୍ୟମାନ ।
ଗୁରୁ ନିନ୍ଦା କଲେ ପ୍ରାପ୍ତ ନ ହୁଅଇ ବିଦ୍ୟା
ବାତୁଳ ହୋଇ ବୁଲନ୍ତି ନୋହି ଯୋଗସିଦ୍ଧା ।
ପିତାଙ୍କୁ ନିନ୍ଦା କଲେ ଯେ ହୁଏ ଶିରଚ୍ଛେଦ
ମାତାଙ୍କୁ ନିନ୍ଦା କଲେ ଯେ ଅନେକ ପ୍ରମାଦ ।
ନ ଜାଣି ନିନ୍ଦା କରନ୍ତି ଯେହୁ ବୈଦ୍ୟ ଯୋଗୀ
ଜନ୍ମେ ଜନ୍ମେ ମହାଦୋଷେ ହୁଅନ୍ତି ସେ ରୋଗୀ ।
ଯତିଙ୍କୁ ଯେ ଜନ ନିନ୍ଦା କରନ୍ତି ନ ଜାଣି
ରାଜଦଣ୍ଡେ ପରାଜିତ ହୁଅନ୍ତି ଯେ ପ୍ରାଣୀ ।

ଶାସ୍ତ୍ର ନିନ୍ଦା କଲେ ନୋହେ ଶାସ୍ତ୍ର ଜ୍ଞାନ ବୁଦ୍ଧି
ସାଗରକୁ ନିନ୍ଦାକଲେ ହୁଏ କୁଷ୍ଠ ବ୍ୟାଧି ।
ଲକ୍ଷ୍ମୀ ନିନ୍ଦିଲେ ଦରିଦ୍ର ହୁନ୍ତି ଜନ୍ମେ ଜନ୍ମେ
ଭାରତୀ ନିନ୍ଦିଲେ ଗଜମୂର୍ଖ ହୁନ୍ତି ଜନେ ।
ମଇତ୍ରକୁ ନିନ୍ଦା କଲେ ହୁଅନ୍ତି ପାମର
ଔଷଧ ନିନ୍ଦିଲେ ରୋଗ ହୁଅଇ ଅପାର ।
ଗୋରୁ ନିନ୍ଦା କଲେ ହାନି ହୁଅଇ ଯେ କୃଷି
ଛାତ୍ର ନିନ୍ଦାକଲେ ଜନ ହୁଅଇ ନଅଂଶୀ ।
ସତୀ ନିନ୍ଦାକଲେ ତାର ନୋହେ ଗୃହବାସ
ମହତ ନିନ୍ଦିଲେ ହୋଏ ଅପ୍ରମିତ ଦୋଷ ।
ଏ ଯେ ବ୍ରାହ୍ମଣ ମହତ ପୁଣି ଶସ୍ତ୍ରଧାରୀ
ତୁମ୍ଭେ ଜ୍ଞାନବନ୍ତ ହୋଇ କିମ୍ପା ନିନ୍ଦା କରି ।
ତୁମ୍ଭେ ପଳାଇଲ ଦେଖିଅଛି ମୋର ଚକ୍ଷୁ
ଅଜ୍ଞାନେ ନାଶ ଯିବାକୁ କିମ୍ପା ଲୋଡୁଅଛୁ ।
କେଶିନୀ କହିଲା ତାଙ୍କୁ ସମସ୍ତ ବୁଝାଇ
ଶିଖଣ୍ଡୀ ଦୃଷ୍ଟଦ୍ୟୁମ୍ନକୁ ଭୟ ଯେ ଦେଖାଇ ।
ବେଳା ରାତ୍ର ହୋଇଅଛି ତୃତୀୟ ପ୍ରହର
କୁମରେ ପ୍ରବେଶ ହେଲେ ପିତାଙ୍କ ଛାମୁର ।
ମହା ଯଜ୍ଞ କରି ଜାତ କଲୁ ଯେ ଦୁହିତା
ଚଣ୍ଡାଳ ହୁଁ ବଳିଗଲା ତାହାର ଅବସ୍ଥା ।
ଦରିଦ୍ର ଭିକ୍ଷାଶୀ ପାଞ୍ଚ ବ୍ରାହ୍ମଣ ବାପୁଡ଼ା
ପାଉଁଶେ ପହୁଡ଼ିଛନ୍ତି ଧୂସରା ଧୂସରା ।
ଏ ମହା ମାଘ ଶୀତରେ କାର ନାହିଁ ବାସ
ହରି ଗୋବିନ୍ଦ ମୁଣିକି କରିଛନ୍ତି ଆଶ ।
ତୁ ଯେ ମହାସ୍ୱୟମ୍ବର କଲୁ ଅବା ଦେବ
ତାହାର କର୍ମ ଗୋଟିକ କେ ଆନ କରିବ ।
ଏସନ ପ୍ରପଞ୍ଚ ଦେଖ ମହା ଦୁଃଖ ଭାଗୀ
ଦ୍ରୌପଦୀଙ୍କୁ ଦେଖିଲୁ ହେ ତାଙ୍କ ପାଦ ଲାଗି ।
ମାତା ଶୋଇଛନ୍ତି ଦେବ କୁମ୍ଭାର ପାଉଁଶେ
ଆର ବାପୁଡ଼ା ଶୋଇଛି ତାର ପାଦଦେଶେ ।
ତାହାଙ୍କର ପାଦତଳେ ଚାରୋଟି ବାପୁଡ଼ା
ବସ୍ତ୍ରବିନେ ଦିଶନ୍ତି ଯେ ଧୂସରା ଧୂସରା ।
ତାହାଙ୍କର ପାଦତଳେ ଶୋଇଛି ପାଞ୍ଚାଳୀ
ଖାର ପାଉଁଶ ଧୂଳି ସେ ହୋଇଅଛି ବୋଲି ।
ଦରିଦ୍ର ଭିକ୍ଷୁକ ହେବ ସେହି ହୀନ ଜାତି
କନ୍ୟା ଗୋଟି ଘେନି ସେହି ଡରେ ଲୁଚିଛନ୍ତି ।
ଏହି ମୂଢ଼ୀ କେଶିନୀ ଯେ ଅଟେ ଅନାଚାରୀ
ପରିବାରୀ ପରବେଶ କାରିଣୀ ଚତୁରୀ ।
ଧନ ଥୋକାଏ ଏହାକୁ ଯେବେ ଲୋକ ଦେବ
ରୋଗୀ ଲୋକକୁ ଏ କାମଦେବ ହିଁ ବରିବ ।

ଦ୍ରୁପଦ ରାଜା ବୋଇଲେ ଶୁଣ ପୁତ୍ର ବେନି
ତୁମ୍ଭେ କିମ୍ପାଇଁରେ ନିନ୍ଦା କର ଏ କେଶିନୀ ।
ଆନ ରାଜା ଯଦି ମୋର ଦୁହିତା ପାଆନ୍ତା
ଗଙ୍ଗାଜଳ ପରି ସେହୁ ଆଦର କରନ୍ତା ।
ତାହାଙ୍କ ପାଦକୁ ଯୋଗ୍ୟ ଯେବେ ମୋ କୁମାରୀ
ନୁହନ୍ତି ବ୍ରାହ୍ମଣ ସେହୁ ସ୍ୱର୍ଗୁ ଅବତରି ।
ଦ୍ରୌପଦୀର ବଡ଼ ଭାଗ୍ୟ ମୋ ବଂଶର ପୁଣ୍ୟ
ଦେଖିଲେ ମୁକତ ହେବି ଯିବ କଷ୍ଟମାନ ।
ଦେଖି ମୁକତ ହୋଇବେ ରାଜା ନାରୀ ନର
ବାବୁରେ ପୁରେ ଉତ୍ସବ କରାଅ ସତ୍ୱର ।
ରାଜା ଆଜ୍ଞାରେ କଟକେ ଦେଲେ ସେ ଘୋଷଣ
ଦ୍ରୁପଦ ବିଜେ କଲେ ଯେ ବ୍ରାହ୍ମଣଙ୍କ ସ୍ଥାନ ।
କରୁଣାକର ନାମରେ ଚକ୍ରୀକ କୁମ୍ଭାର
କୁନ୍ତୀଙ୍କି ବୋଇଲେ ମାଗୋ କେତେ ନିଦ୍ରା କର ।
ପୁଅଙ୍କୁ ତୁମ୍ଭର ତୋଳି ଦିଅସି ଗୋ ମାଏ
ଆପେ ବିଜେ କରିଛନ୍ତି ପାଞ୍ଚାଳେଶ ରାୟେ ।
କୁନ୍ତୀ ଯେ ଯୁଧିଷ୍ଠି ଭୀମ ଅର୍ଜ୍ଜୁନକୁ ତୋଳି
ଚିଆଇଁ ଉଠିଲେ ସେହି ପାଞ୍ଚ ମହାବଳୀ ।
ରିକ୍ଷିତା ନାମେ ଅଟଇ ଜାତ କୁମ୍ଭାରୁଣୀ
ଦ୍ରୌପଦୀଙ୍କୁ ତୋଳି ଧରି ବସାଇଲେ ଆଣି ।
ନୂତନ ଘଟେ ଶୀତଳ ସଲିଳ ପୂରାଇ
ସେ ଚକ୍ରୀ ଭାରିଯା ତାକୁ ସ୍ନାନ ଯେ କରାଇ ।
ଅନେକ ସୁଗନ୍ଧ ଦ୍ରବ୍ୟେ କେଶକୁ ପଖାଳି
ଘରୁ ଆଣି ପକାଇଲେ ଝୀନ ପାଟଶାଢ଼ୀ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ଫାଲଗୁନୀ
ହୃଦପଦ୍ମେ ସୁମର ତୁ ରାମ କୃଷ୍ଣ ବେନି ।
ହୃଦୟ ପଦ୍ମେ ଅର୍ଜ୍ଜୁନ ଲଗାଇଲା ଲୟ
ନାରାୟଣ ସୁମରିଲେ କ୍ଷତ୍ରି ଧନଞ୍ଜୟ ।
ଜାଣିଲେ ତା ହରି ବଳରାମ ଯୋଗବଳେ
ଗରୁଡ଼ ପୃଷ୍ଠେ ଅଛନ୍ତି ଗଗନ ମଣ୍ଡଳେ ।
ଦ୍ୱାରକା ନାୟକ ସୋମବଂଶଙ୍କ ସହିତେ
ଅଇଲେ ଯୁଧିଷ୍ଠି ବିଭା ଦେଖିବା ନିମନ୍ତେ ।
ତାଳ ଧ୍ୱଜ ରଥେ ବିଜେ ପ୍ରଭୁ ନୀଳାମ୍ବର
ଗରୁଡ଼ ନ ସହେ କାମପାଳଙ୍କର ଭାର ।
ଛପନ କୋଟି ଯାଦବ ବୀରଙ୍କୁ ଘେନିଣ
ବଇନତେୟ ପିଠିରେ ବିଜେ ନାରାୟଣ ।
ଯୁଧିଷ୍ଠିରଙ୍କ ଚରଣେ କରନ୍ତି ପ୍ରଣାମ
ରାମ କୃଷ୍ଣଙ୍କର ପୂଜା କରନ୍ତି ଯେ ଧର୍ମ ।
ଅର୍ଜ୍ଜୁନ ନକୁଳ ଭୀମ ସହଦେବ ଚାରି
ବିନୟେ ପୁରୁଷୋତ୍ତମେ କଲେ ନିଉଛାଳି ।

ଛପନ କୋଟି ଯାଦବ ବଳିଷ୍ଠ ସଇନ୍ୟ
ଯୁଧିଷ୍ଠିଙ୍କ ପାଦତଳେ କରନ୍ତି ଯେ ମାନ୍ୟ ।
ଯେତେବେଳେ ତହିଁ ବିଜେ କଲେ ହୃଷୀକେଶ
ଷାଠିଏ ସହସ୍ର ଶିଷ୍ୟ ଘେନି ବିଜେ ବ୍ୟାସ ।
ଲକ୍ଷେକ ବ୍ରାହ୍ମଣ ଘେନି ଧୌମ ପୁରୋହିତେ
ବିଭାର ଯୋଗାଡ଼ ଘେନି ବିଜୟ ତୁରିତେ ।
ଲକ୍ଷେ ଶିଷ୍ୟ ଘେନି ଉଦ୍ଧାଦଳ ସ୍ୟମନ୍ତକ
ସହସ୍ରେକ ବାଳଖିଲ୍ୟା ଘେନି ବାଲମୀକ ।
ଭରଦ୍ୱାଜ ବିଭାଣ୍ଡକ ସହିତେ ଜନକେ
ଯୁଧିଷ୍ଠିର ବିବାହକୁ ପ୍ରବେଶ ଉତ୍ସକେ ।
ସମସ୍ତ ଋଷିଏ ତହିଁ ବିଜେ କଲେ ଯହୁଁ
ଇନ୍ଦ୍ର ଅଇଲେ ଅମରଗଣ ଘେନି ତହୁଁ ।
ଅମର ପୁରୁଁ ସୁଧର୍ମା ସଭାକୁ ଆଣିଲେ
କୁବେର ରତ୍ନାଳଙ୍କାର ଭବନୁ କାଢ଼ିଲେ ।
ଆକାଶ ପୁରୁଁ ସମସ୍ତେ ଦେବତା ପୁରୁଷେ
ସମସ୍ତେ କୁରାଳ ଶାଳେ ବିଜୟ ହରଷେ ।
ତହିଁ ରତ୍ନପୁର ରଚିଥିଲେ ଦେବତାଏ
ମାନବଙ୍କୁ ଦିଶେ କୁମ୍ଭକାର ଶାଳ ପ୍ରାୟେ ।
ଅଗସ୍ତିଙ୍କୁ ପୁଚ୍ଛା କଲେ ମନୁ ବୈବସ୍ୱତ
କହନ୍ତୁ ତହିଁ ଉତ୍ତାରୁ ହେଲା କି ଚରିତ ।
ଅଗସ୍ତି କହିଲେ ଶୁଣ ହେ ମନୁ ପୁରୁଷ
ଦ୍ରୌପଦୀର ସ୍ୱୟମ୍ବର ଯେ କାଳେ ପ୍ରବେଶ ।
ଲକ୍ଷେ ରାଜାଙ୍କୁ ଯତନେ ଯେ ବରଣ କଲା
ସେ ସଭାରେ ପାଣ୍ଡବଙ୍କ ନାମ ନ ପଡ଼ିଲା ।
ତାହା ସ୍ୱର୍ଗରେ ଜାଣିଲେ ଇନ୍ଦ୍ରଦଇବତ
ବିଶ୍ୱକର୍ମାଙ୍କୁ କହିଲେ ଚାର ପୁରୁହୁତ ।
ଅନ୍ତରୀକ୍ଷ ନାମେ ଅଛି ଏକଇ ଭୁବନ
ଦ୍ରୁପଦ ରାଜ୍ୟେ ତ୍ରିବେଣୀ ନଦୀ ସନ୍ନିଧାନ ।
ତହିଁ ନେଇ ରଖ ସେହି ଅନ୍ତରୀକ୍ଷ ପୁର
ଯାହା ଅଟଇ ମାନବଗଣ ଅଗୋଚର ।
ଅନ୍ତରୀକ୍ଷରେ ଅଦୃଶ୍ୟ ଅଟେ ସେହି ପୁର
ଦୈତ୍ୟ ଭୟ ହେଲେ ତହିଁ ଲୁଚେ ପୁରନ୍ଦର ।
ଇନ୍ଦ୍ରର ବଚନ କରିପାରିବ କେ ଆନ
ତହିଁ ବିଶ୍ୱକର୍ମା କଲା ସେ ପୁର ସ୍ଥାପନ ।
କରୁଣାକର ଗନ୍ଧର୍ବେ କୁହେ ସୁରପତି
ତୁ ଯାଇ ସେ ପୁରେ ବେଗେ କରରେ ବସତି ।
ତେଣୁ ପୁରେ ରହିଥାଏ ସେ କରୁଣାକର
ଗୋପନ ରୂପରେ ହୋଇଥାଏ ସେ କୁମ୍ଭାର ।
ଅମର ବିଳାସିନୀ ତା ନାମ ଯେ ରକ୍ଷିତା
ମେନକାର ଦୁହିତା ଯେ ତାହାର ବନିତା ।

ସେ ଦୁହିଁଙ୍କୁ ଆଜ୍ଞା ଦେଇଥିଲେ ମଘବାନ
ଅଗ୍ନି ଜାଳି ହାଣ୍ଡି ତହିଁ କରିବ ଗଠନ ।
ସେ ଠାବରେ ପାଣ୍ଡବଙ୍କୁ କରିବ ଯେ ତୁଷ୍ଟି
ମୋହର ହିତେ ପାଣ୍ଡବେ ସିନା ଏଡ଼େ କଷ୍ଟୀ ।
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ଚାରି
ଅମରପୁରକୁ ମୋର ନିତ୍ୟ ଦ୍ୟନ୍ତି ଧାଡ଼ି ।
ତାହାଙ୍କୁ ଅରଣ୍ୟେ ବଧ କରିବା ନିମନ୍ତେ
କରାଇବୁ ବନବାସ ଆମ୍ଭେ ଯେ ଗୁପତେ ।
ମୋହର ନିମନ୍ତେ ସେହି ପାଉଛନ୍ତି ଦୁଃଖ
ଦ୍ରୁପଦ ଭୁବନେ ସେ କି ନ ପାଇବ ସୁଖ ।
ଗହନ ବିପିନ ସେହି ଅସମାନ ଭୂମି
ଭବନେକ ରଚିଥିଲେ ସୁରନାଥ ସ୍ୱାମୀ ।
ଏସନକ କରିଥିଲେ ତାକୁ ସୁରରାୟେ
ସେ ଭୁବନ ଦିଶେ କୁମ୍ଭକାର ଶାଳ ପ୍ରାୟେ ।
କର୍ପୂର ରତ୍ନମୁକୁତା ଏମାନଙ୍କୁ ଚୁରି
ବେନି ଦଣ୍ଡ ବହୁତରେ ସେ ଗୃହରେ ପାରି ।
ଏସନକ କରି ସଞ୍ଚିଥିଲେ ଦେବତାଏ
ସେ ରତ୍ନ କର୍ପୂର ଗୁଣ୍ଡି ଦିଶେ ପାଂଶୁପ୍ରାୟେ ।
କରୁଣାକର ନାମରେ ସ୍ୱର୍ଗ ବିଦ୍ୟାଧର
ରିଷିତା ବିଦ୍ୟାଧରୀ ଯେ ଭାରିଯା ତାହାର ।
ସେହି ଦୁହେଁ ଜଗିଛନ୍ତି ଗୋପନେ ସେ ଗୃହେ
ଦିଶନ୍ତି ସେହି କୁମ୍ଭାର କୁମ୍ଭାରୁଣୀ ପ୍ରାୟେ ।
ପାଣ୍ଡବେ ସେ ଘରେ ରହି ଗୋପ୍ୟ ହୋଇଥିଲେ
ତାହାଙ୍କ ଗୋପ୍ୟ ସରିଲା ଉଦିତ ହୋଇଥିଲେ ।
ପରିମଳ ଭୁବନ ସେ ସ୍ୱର୍ଗ ସରସ୍ୱତୀ
ଦେଖିଣ କାମପାଳ ଯେ ପ୍ରଶଂସା କରନ୍ତି ।
ବ୍ୟାସଦେବ ବୋଇଲେ ହେ ଶୁଣ ବାସୁଦେବ
ଦ୍ରୌପଦୀକୁ ବିଭା ହେବେ ସେ ପଞ୍ଚପାଣ୍ଡବ ।
ଦ୍ରୁପଦ କିସ କହଇ ଥିବା ଏବେ ଶୁଣି
କିସ ଉତ୍ତର ଦିଅନ୍ତି ଦ୍ରୁପଦ ଦୁଲଣୀ ।
କ୍ଷଣକେ ଆମ୍ଭେ ଗୋପନ ହୋଇ ଏବେ ଥିବା
ଉଭୟ କୁଳର କଥା ଗୋପନେ ଶୁଣିବା ।
ଏସନକ ବିଚାରିଣ କୁରାଳ ଭୁବନେ
କୋଟିଏ ଋଷି ତହିଁରେ ରହିଲେ ଗୋପନେ ।
ସାତବଂଶ ଘେନି ରାମକୃଷ୍ଣ ଉଗ୍ରସେନ
ଦେବଙ୍କ ସହିତେ ବିଜେ କଲେ ମଘବାନ ।
ରତ୍ନ ଅଳଙ୍କାର ଘେନି ଅଳଙ୍କାର ଯତି
ଗୋପନେ ରହିଲେ ତହିଁ ଅନ୍ତରୀକ୍ଷ ଗତି ।
ଏ ସମୟେ କେଶିନୀକୁ ନୃପତି ବୋଇଲେ
ଅଲେଖ ତିଳକ କର ବୋଲି ଆଜ୍ଞା ଦେଲେ ।

ସୂତ୍ରଧର ରାୟ ଆଜ୍ଞା ଦେଲେ ନୃପବର
ଛାୟାମଣ୍ଡପ ଏଠାରୁ ଘରଯାଏ କର ।
ଦ୍ରୁପଦପୁରୁ କୁଶଳ ଶାଳ ପାଞ୍ଚଯୁଣ
ବିନ୍ଧାଣି ଲାଗିଲେ ତହୁଁ ପାଞ୍ଚଲକ୍ଷ ଜାଣ ।
ସଞ୍ଚିତ କଲା ତହିଁରେ ସକଳ ଦ୍ରୁପଦ
ଆଜ୍ଞାରେ ତାର ଅଇଲା ସକଳ ସମ୍ପଦ ।
ଅଲେଖ ତିଳକ ଘେନି ଅଇଲା କେଶିନୀ
ଦେବସଭା ପ୍ରାୟ ଦିଶେ ଦେଖଇ ମେଦିନୀ ।
ଦ୍ରୌପଦୀ ଦେବୀ ବୋଇଲେ ଶୁଣ ହେ କେଶିନୀ
ଧନ୍ୟ ଧନ୍ୟ ଲୋ ମୋହର ପିତାମାତା ବେନି ।
ମୁହିଁ ଯେ ଉତ୍ତମ ସ୍ତିରୀକୁଳେ ଅଛି ଜନ୍ମି
ଏ ପାଞ୍ଚ ଆକାଶ ଦେବ ଅଟନ୍ତି ମୋ ସ୍ୱାମୀ ।
ରତ୍ନରେ ନିର୍ମିତ ଏହି କନକ ଭୁବନ
ମାନବଙ୍କୁ ଦିଶେ କୁମ୍ଭକାର ଶାଳ ସମ ।
ସମସ୍ତ ଦେବତା ଆସି ଏହିସ୍ଥାନେ ଥିଲେ
ରାଜାମନ ବିଡ଼ିବାକୁ ଶାଳେ ଗୋପ୍ୟ ହେଲେ ।
ପାଉଁଶ ନୁହଇ ଏହି କର୍ପୂରର ଗୁଣ୍ଡି
ଏସବୁ ଜାଣ ରଜତ ସୁବର୍ଣ୍ଣର ହାଣ୍ଡି ।
ଖଣ୍ଡ ଖଣ୍ଡ ଦିଶୁଅଛି ରଜତ ଖପରା
ଏ ସମସ୍ତ ଜାଣ ସ୍ୱର୍ଣ୍ଣ ରତନର ସରା ।
ବିଶ୍ୱକର୍ମା ଘଟଣା ଏ ବିଧାତା ଭିଆଣ
ତେଣୁ ଜାଣି ନ ପାରନ୍ତି ତାକୁ ନରଗଣ ।
ପିତାଙ୍କ ଆଗରେ ମୋର କହ ଯା ଝଟତି
ବ୍ରାହ୍ମଣ ପ୍ରାୟ ବୁଝିଣ ନ କହ ଅନୀତି ।
କେଶିନୀ ବୋଇଲା ମୋତେ ଏହା କିମ୍ପା କହୁ
ମୁଁ ଏହା ସଂକ୍ଷେପି କହିଅଛି ତ ଆଗହୁଁ ।
ଅନେକ ସମ୍ଭାର ଘେନି ପଞ୍ଚାଳେଶ ରାୟେ
କୁରାଳ ଶାଳ ଦୁଆରେ କଲେକ ବିଜୟେ ।
ଦେଖିଲେ ଘରଗୁଡ଼ାକ ଦିଶେ ନାରଖାର
ଉପାହାସ କଲେ ଦେଖି ପଞ୍ଚାଳେଶ ବୀର ।
ଏବେ ଠାବ ଥାଉ କିମ୍ପା ଏଠାରେ ରହିଲେ
ମନ୍ଦ ଠାବ ବୋଲି ଏଥି କେହି ନ ରହିଲେ ।
ଦୁଷ୍ଟଜନମାନେ ସିନା କୁସ୍ଥାନେ ରହନ୍ତି
ଜାଣିଲ ଏମାନଙ୍କର ଅଭାବ ଜୀବତି ।
ବାହାରେ ଥାଇ ଡାକଇ ସେ ଦ୍ରୁପଦରାୟେ
ବାହାରିଆସ ହେ ଲାଖି ବିନ୍ଧିବା ପଣ୍ଡାଏ ।
ଚାରି ଡାକେ ନ ଶୁଣନ୍ତି ଦ୍ରୁପଦର ବୋଲ
ପୁଅମାନେ ବୋଲନ୍ତି ଏ ଅଟନ୍ତି କି କାଲ ।
ରାଜାଙ୍କର ସନ୍ନିଧିରେ ଅଛନ୍ତି ଯେ ଦୁଷ୍ଟ
କ୍ଷଣେ କ୍ଷଣେ ମନ୍ଦକଥା କହନ୍ତି ପାପିଷ୍ଠ ।

ଯୋଗୀ ତପସ୍ୱୀ ରାଉଳ ଯେତେକ ଭିକ୍ଷାଶୀ
ମାଗି ବଞ୍ଚନ୍ତି କହନ୍ତି କଟୁକଥା ହସି ।
ଯୁଧିଷ୍ଠି ବୋଇଲେ ବାବୁ ଯାଅ ଧନଞ୍ଜୟ
ବାକ୍ୟ ଶୁଣି ଆସ କି ନା କହନ୍ତି ନା ରାୟ ।
ଲାଖବିନ୍ଧା ପଣ୍ଡାଙ୍କୁ ଯେ ଡାକନ୍ତି ରାଜନ
ଆମ୍ଭେ କି ସମସ୍ୟା ଦେବା ବୋଇଲେ ବଚନ ।
ପଚାରିଲେ ତୁମ୍ଭେ ଲାଖବିନ୍ଧା ପଣ୍ଡା ନିକି
ଆମ୍ଭର ମୁଖରେ ମିଥ୍ୟା କଥା ଆସିବ କି ।
ଅର୍ଜୁନ ବୋଇଲେ ସ୍ୱାମୀ ମୁଁ ଯିବି କେମନ୍ତେ
ଗଲେ ଦ୍ରୁପଦ ବରଣ କରିବାକୁ ମୋତେ ।
ତୁମ୍ଭର ଯିବାର ହେବ ଦ୍ରୁପଦ ତହିଁକି
କିସ ବୋଲଇ ସେ ବାକ୍ୟ କହ କିନା ଡାକି ।
ଭୀମ ବୋଲେ ନଯା ତୁମ୍ଭେ ନ ଯାଉ ଏ ପାର୍ଥ
ଡାକି ବିମୁଖ ହେବ ସେ ପାଞ୍ଚାଳର ନାଥ ।
ମୁହିଁ ଯିବି କି ଦ୍ରୁପଦ ରାଜାର ତହିଁକି
ସାବଧାନେ ସ୍ୱାମୀ ଆଜ୍ଞା ନ ହେଉ କାହିଁକି ।
ଯୁଧିଷ୍ଠି ଦେବ ହସିଲେ ଭୀମର ବଚନେ
ଭଲେ ଜାଣିଅଛୁ ଯାହା ଅଛି ତୋର ମନେ ।
ପଞ୍ଚପାଣ୍ଡବ ଯେ ଯିବା ହୋଇ ଧରାଧରି
ଏକ ମୂର୍ତ୍ତିରେ ବାହାର ହେଲେ ଆଗସରି ।
ପାଞ୍ଚଙ୍କର ଏକମୂର୍ତ୍ତି ଦେଖିଣ ପାଞ୍ଚାଳ
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲା ପାଦତଳ ।
ବାବୁ କେବଣ ପଣ୍ଡାଏ ଲାଖ ବିନ୍ଧିଲଟି
ମୁହିଁ ପ୍ରଦାନ କରିବି ମୋ ଦୁହିତା ଗୋଟି ।
ଯୁଧିଷ୍ଠି ବୋଇଲେ ଆମ୍ଭେ ଅଟୁ ପଞ୍ଚଭ୍ରାତ
ଜଣକ ଅର୍ଜୁନ ପାଞ୍ଚ କରୁ ଯେ ଭୋଗ ତ ।
ଆମ୍ଭ ପାଞ୍ଚଜଣଙ୍କର ଏମନ୍ତ ବେଭାର
ଭିନ୍ନ ଭିନ୍ନ ଆମ୍ଭର ଯେ ନୁହିଁଇ କାହାର ।
ପଦାର୍ଥେ ପାଇଲେ ପାଞ୍ଚେ ଭୁଞ୍ଜୁ ତାହା ବାଣ୍ଟି
ଆମ୍ଭ ପାଞ୍ଚଜଣଙ୍କର ଏକ ଆତ୍ମା ଗୋଟି ।
ଦ୍ରୁପଦ ବୋଇଲେ ଏହା ଅଟଇ ଯୁକତ
ବଡ଼ ବଡ଼ଙ୍କର କଥା ଅଟଇ ଏମନ୍ତ ।
ଦ୍ରୁପଦ ବୋଇଲେ ଏହା କନ୍ୟା ରତ୍ନକାନ୍ତି
ଜଣେ ବିଭା ହୋଇବାର ଅଟଇ ଯୁକତି ।
ଯୁଧିଷ୍ଠି ବୋଇଲେ ଆମ୍ଭ ବେଭାର ଏମନ୍ତ
ଏକ ଦ୍ରୌପଦୀର ଆମ୍ଭେ ପାଞ୍ଚେ ହେବୁ କାନ୍ତ ।
ଏହି ବ୍ରତରେ ନୃପତି ଅଛି ଯେବେ କାର୍ଯ୍ୟ
ପାଞ୍ଚଙ୍କୁ କନ୍ୟା ପ୍ରଦାନ କରିବ ତ ଆଜ ।
ଏହା ଶୁଣି ମୂର୍ଚ୍ଛାଗତ ହୋଇଲେ ରାଜନ
କଟୁ ବଚନ କହିଲେ ତହିଁ ଧୃଷ୍ଟଦ୍ୟୁମ୍ନ ।

ଶିଖଣ୍ଡୀ ବୋଇଲା ତୁମ୍ଭେ ଭିକ୍ଷୁବିପ୍ର ଅଟେ
ଜାଣିଲୁ ତ ତୁମ୍ଭେ ପାଞ୍ଚ ଜଣେ ଜଣେ କୀଟ ।
ଏମନ୍ତ ବେଭାରେ ଜାଣ ଖଣ୍ଡଙ୍କର ଜାତି
ଗୋଳକୁଣ୍ଡା ଅଟନ୍ତି ଯେ ତାହାଙ୍କ ଯୁବତୀ ।
ଦ୍ରୁପଦ ବୋଇଲେ ପଣ୍ଡା କହିଲି ଅନୀତି
ଏକ ସ୍ତିରୀକୁ କେଉଁଠି ଅଛି ପାଞ୍ଚପତି ।
ଶୁଣିବାକୁ ଏ କଥା ଯେ ଅଟଇ ଅନୀତି
କିପରି କହିଲ ତୁମ୍ଭେ ଏପରି ଭାରତୀ ।
ଗୋଟିଏ ବରକୁ ହୋଇପାରେ ପାଞ୍ଚକନ୍ୟା
ଲୋକିତ କଥାରେ ଏହା ନୁହଇ ଗଣନା ।
ମହତ ହୋଇ କେମନ୍ତେ କହିଲ ଏ ବାକ୍ୟ
ପୁରୁଷେକ ବହୁସ୍ତିରୀ କରିବାକୁ ଶକ୍ୟ ।
ବୋଇଲେ ବ୍ୟାସଙ୍କ ମୁଖ ଚାହିଁ ବନମାଳୀ
ବେଳେବେଳେ ଦ୍ରୁପଦ ଯେ କହେ ମୁଖଚାଳି ।
ଭୀମସେନ ନ ସହିବ ଦ୍ରୁପଦ ଝିଙ୍ଗାସ
ଏହିକ୍ଷଣି ଏ ଦ୍ରୁପଦ ହେବେ ପ୍ରାଣ ନାଶ ।
ତତକ୍ଷଣେ ବ୍ୟାସ ତହିଁ ବାହାର ହୋଇଲେ
ଦ୍ରୁପଦ ଆଉ ପାଣ୍ଡବ ମଧ୍ୟେ ବିଜେ କଲେ ।
ବ୍ୟାସଙ୍କୁ ଦେଖି ପାଞ୍ଚାଳ ଦେଶ ନରରାୟେ
ଶତସହସ୍ର ପ୍ରଣାମ କରି ତାଙ୍କ ପାୟେ ।
ଦ୍ରୁପଦ ବୋଇଲେ ତୋର ଦୟା ସର୍ବକାଳେ
ଜାଣି ଅଇଲୁ ତୁ ସ୍ୱାମୀ ମୋ କଟାଳ ବେଳେ ।
ତୁ ଆପଣା ତୁଲେ ଘେନି ଲକ୍ଷେ ମହାମୁନି
ମହାଯଜ୍ଞରୁ ଯେ ଜାତ କଲୁ ଯାଜ୍ଞସେନୀ ।
ରାଜାକୁ ତୁ ଅଣାଇଲୁ ମୋହର ବରଣେ
ଲାଖ ବିନ୍ଧାଇଲି ତୋର ଆଜ୍ଞା ପରମାଣେ ।
ଲାଖ ବିନ୍ଧିଲା ଏ ବିପ୍ର ଆସି ଅବରଣେ
ଏ ବୋଲନ୍ତି ବିଭାହେବୁ ଆମ୍ଭେ ପାଞ୍ଚଜଣେ ।
ଷାଠିଏ ସହସ୍ର ଶାସ୍ତ୍ର କଲୁ ତୁ ନିର୍ମାଣ
ଏକ ସ୍ତିରୀ ପାଞ୍ଚପତି ଅଛଇ କି ଜାଣ ।
ବ୍ୟାସ ବୋଇଲେ ଶୁଣ ହେ ଦ୍ରୁପଦ ନୃପତି
ତୋର ଦୁହିତାକୁ ଯୋଗ ଅଛି ପାଞ୍ଚପତି ।
ଯେବେ ପଚାରିଲୁ ଶୁଣ ପୂର୍ବର ବାରତା
ସାବଧାନେ ଶୁଣ ତାର ଆଦି ଅନ୍ତ କଥା ।
କୃତସଭା ବୋଲି ଏକ ପ୍ରଳୟର କାଳେ
ନାରାୟଣ ଯୋଗବଳେ କଳ୍ପବଟ ତଳେ ।
ବିରାମଚକ୍ର ନାମରେ ଏକଇ ଉରଗ
ଅନନ୍ତ ସତ୍ୟ ବତ୍ସର ପ୍ରଭାବ ଏ ଯୋଗ ।
ନାହିଁ ସ୍ୱର୍ଗ ନାହିଁ ମର୍ତ୍ତ୍ୟ ନାହିଁ ଯେ ପାତାଳ
ନାହିଁ ପୃଥ୍ୱୀ ଆପ ତେଜ ଆକାଶ ସକଳ ।

ଦେବତା ଦାନବ ଯକ୍ଷ କିନ୍ନର ସହିତେ
ନାଗଲୋକ ଆଦି ମଗ୍ନ ଜଳରେ ସମସ୍ତେ ।
ନାହିଁ ସୂର୍ଯ୍ୟ ନାହିଁ ଚନ୍ଦ୍ର ନାହିଁ ଯେ ପବନ
ନାହିଁ ନିଶା ଦିବା ସନ୍ଧ୍ୟା ଅବକାଶ ମାନ ।
ଦକ୍ଷିଣ ଶିରରେ ମହାସର୍ପ ଅଛି ଶୋଇ
ପ୍ରଳୟ ପ୍ରାଣୀ ପେଟକୁ ତାର ନ ଅଣ୍ଟଇ ।
ସେ ସର୍ପ ଫଣାରେ ଦେବ ସୀମନ୍ତକ ଦେଇ
ମହାଯୋଗ ସାଧନରେ ନାରାୟଣ ଶୋଇ ।
ସନ୍ନିଧିରେ ବିଳାପିନୀ ଖଟେ ଆଦି ନାରୀ
ଅନାଦି ଅପର୍ଣ୍ଣା ସେହି ସବୁ ଜାତ କରି ।
ସତାଶୀ ଲକ୍ଷ ଅଠାଶୀ ସହସ୍ର ବରଷ
ତ୍ରେତାଯୁଗେ ତେରଲକ୍ଷ ପନ୍ଦର ସହସ୍ର ।
ଦ୍ୱାପର ଯେ ତେରଲକ୍ଷ ସହସ୍ର ବତ୍ସର
କଳିଯୁଗେ ଚାରିଲକ୍ଷ ବତିଶ ହଜାର ।
ଗଣ୍ଡାଏକରେ ସର୍ପକୁ ହୁଏ ଏକ ଦିନେ
ବ୍ୟାସ ବୋଇଲେ ହେ ନୃପ ଶୁଣ ସାବଧାନେ ।
ଏ ଦିନ ଅଷ୍ଟଉତ୍ତର ଶତେକ ବରଷ
ଇଷ୍ଟଦେବତା ଯେ ଏତେ କାଳେ ଯାଇ ନାଶ ।
ଏକ ଇନ୍ଦ୍ର ନାଶ ହୁଏ ବ୍ରହ୍ମାକୁ ଯେ ଦିନେ
ଏ ଦିଗେ ଅଷ୍ଟଉତ୍ତର ଶତ ବର୍ଷମାନେ ।
ଏତେକେ ସେ ବ୍ରହ୍ମାର ଯେ ଆୟୁଷ ସରଇ
ସେ ଈଶ୍ୱର ଦେବତାଙ୍କୁ ଦିନେକ ହୁଅଇ ।
ଏମନ୍ତ ଅଷ୍ଟଉତ୍ତର ଶତେକ ବରଷ
ମହାରୁଦ୍ର ଦେବତାର ତୁଟଇ ଆୟୁଷ ।
ରୁଦ୍ର ନାଶ ଗଲେ ହୁଏ ଆଦିତ୍ୟକୁ ଦିନେ
ଏ ଦିନେ ଅଷ୍ଟଉତ୍ତର ଶତ ବର୍ଷମାନେ ।
ସେ ଆଦିତ୍ୟ ଦେବତାର ତୁଟଇ ଆୟୁଷ
ଶତ ଆଦିତ୍ୟ ଇନ୍ଦ୍ରଙ୍କୁ ହୁଅଇ ଦିବସ ।
ଏ ଦିନେ ଅଷ୍ଟଉତ୍ତର ଶତେକ ବରଷେ
ଆୟୁଷ ତୁଟଇ ଚନ୍ଦ୍ର ଦେବତାର ଶେଷେ ।
ଚନ୍ଦ୍ର ନାଶ ଗଲେ ମହା ପ୍ରଳୟ ହୁଅଇ
ବିଷ୍ଣୁ ଦେବତାର ଏକ ଦିବସ ଲେଖଇ ।
ଦିବସେ ଗଲେ ଏ ବିଧି ରାତ୍ରେ ଯାଇ ନିଦ୍ରା
ତାହାଙ୍କର ନିଦ୍ରା ହେଲେ ଭାଜେ ଯୋଗମୁଦ୍ରା ।
ଅନାଦି ପୁରୁଷ ଯେତେବେଳେ ନିଦ୍ରାଯାଇ
ପୃଥ୍ୱୀ ଆପ ତେଜ ବ୍ୟୋମ ଲୁପତ ହୁଅଇ ।
ତାହାଙ୍କର ନିଦ୍ରା ହେଲେ କିଛି ହିଁ ନ ଥାଇ
ଦିବସେ ଯେତେ ରାତ୍ର ହିଁ ତେତେକାଳ ହୋଇ ।
ନିଦ୍ରା ଭାଜିଗଲେ ପୁଣି ପ୍ରସରେ ରଜନୀ
ପୁଣି ଉଦୟ କରାନ୍ତି ବିଷ୍ଣୁ ଚକ୍ଷୁ ବେନି ।

ଦେଖିଣ ସଂସାର ଜଳମୟ ନାହିଁ କିଛି
ସଂସାର ନିର୍ମାଣ ତହୁଁ ଭାଳନ୍ତି ଶ୍ରୀବତ୍ସି ।
ବସି ଅମୃତ ଦୃଷ୍ଟିରେ ଚାହିଁଲେ ଅନାଦି
ପଞ୍ଚଦଶ ବଜ୍ରଜଳୁଁ ହୋଇବକ ସିଦ୍ଧି ।
ପୁଣି ଉଦୟ ହୁଅଇ ରବି ନାରାୟଣ
ଅଶ୍ରୁପୂର୍ଣ୍ଣ ପ୍ରତେ ହେଲା ତାଙ୍କର ନୟନ ।
ସରସ୍ୱତୀଙ୍କୁ ଯୁବତୀ ଦେଖି କଟାଳିଲେ
କଟାକ୍ଷେ ବିଷ୍ଣୁ ଧବଳ ମୁଖକୁ ଚାହିଁଲେ ।
ସେହି ଅନାଦି ନାରୀର କଟାକ୍ଷ ନୟନେ
ତ୍ରୈଲୋକ୍ୟ ମୋହିନୀ କନ୍ୟା ହେଲା ଉତପନେ ।
ସେ ଆଦି ଦେବୀଙ୍କୁ ଯହୁଁ ମାଗିଲେ ଆହାର
ସେ ବୋଇଲେ ପଞ୍ଚଦଶ ବ୍ରହ୍ମାଙ୍କୁ ତୁ ମାର ।
କେତୁ ବୋଲି ବୋଇଲେକ ଯହୁଁ ଆଦି ନାରୀ
ତେଣୁ ସେ କେତୁକା ନାମ ହୋଇଲା ତାହାରି ।
ବାଗ୍‌ଦେବୀ ବଚନ ଶୁଣି ଧାମଇ କେତୁକା
ସହସ୍ର ବର୍ଷେ ବ୍ରହ୍ମାଏ ମାରଇ ସେ ଏକା ।
ଚଉଦ ବ୍ରହ୍ମା ଚଉଦ ସହସ୍ର ବରଷେ
ମାରି ରୁଧିର ପିଇଲା ମନର ହରଷେ ।
କୋଟିଏ ବ୍ରହ୍ମାଣ୍ଡଯାକ ସବୁ ଜଳମୟ
ବ୍ରହ୍ମା କେତୁକାଳ ଜଳ ଆଣ୍ଟୁ ଆଣି ପ୍ରାୟ ।
ଶୂଦ୍ରକ ବ୍ରହ୍ମାଙ୍କୁ ସେହି ଧରି ନ ପାରିଲା
ଭୋ ନାରାୟଣ ଶରଣ ଉଚ୍ଚେ ସେ ଡାକିଲା ।
ସେ ରଡ଼ି ଶବଦେ ଭାଙ୍ଗିଗଲା ଯୋଗନିଦ୍ରା
ନୟନ ମଳି ଚାହିଁଲେ ସେହି ଯୋଗସିଦ୍ଧା ।
ପଳାଇ ଶୂଦ୍ରକ କହେ ନାରାୟଣେ ଚାହିଁ
ବିଷ୍ଣୁନାଥ ବୋଇଲେ ରେ ରହ ରହ ତୁହି ।
କେତୁକା ବୋଇଲେ ଏହୁ ମୋହରଯେ ଭକ୍ଷ
ତୃପତି ହେବି ଏହାକୁ ତୁମ୍ଭେ କିମ୍ପା ରଖ ।
ଆଉ ବ୍ରହ୍ମାମାନେ ଗଲେ ଆମ୍ଭର ଗୋ କାହିଁ
ଧବଳାଙ୍ଗୀ ବୋଲେ ସ୍ୱାମୀ ଜୀବନେ କେ ନାହିଁ ।
ମୋତେ ରତି ଇଚ୍ଛା କଲେ ତୁମ୍ଭ ନିଦ୍ରାକାଳେ
ରାଗେ ଦେବତାଙ୍କୁ ଜାତ କଲି ବେନି ଡୋଳେ ।
କେତୁକା ବୋଇଲେ ସ୍ୱାମୀ ଏ ମୋହର ଭକ୍ଷ
ଏହି ମୂଢ଼ ବଡ଼ ଦୁଷ୍ଟ ତୁମ୍ଭେ କିମ୍ପା ରଖ ।
ବିଷ୍ଣୁ ବୋଇଲେ ଭୟରେ ଏ ଶରଣ ମାଗେ
ସମୟେ ରଖି ଭକ୍ଷିବ ଏ ଦ୍ୱାପର ଯୁଗେ ।
ବାକ୍‌ଦେବୀ ବୋଇଲେ ଏହା ହୋଇବ କେମନ୍ତ
ଏହା ବିଚାରି କହିବା ମୋତେ ଆଦିନାଥ ।
ନାରାୟଣ ବୋଇଲେ ଯେ ହେବ ସତ୍ୟଯୁଗ
ସତ୍ୟ ଅନ୍ତେ ପୁଣ ତେତ୍ରାଯୁଗ ହେବ ଭୋଗ ।

ତ୍ରେତାଯୁଗ ଅନ୍ତେ ପୁଣ ହୋଇବ ଦ୍ୱାପର
ଶୁଦ୍ରକ ବ୍ରହ୍ମା ହୋଇବ ଦୁଃଶାସନ ବୀର ।
ଜନମିବ ଏ କେତୁକା ଦ୍ରଉପଦୀ ହୋଇ
ଦ୍ୱାପରେ ଦୁଃଶାସନକୁ ଖାଇବ ଯେ ଏହି ।
ଏ କେତୁକା ହେଲା ଯେଣୁ ବ୍ରହ୍ମାର ବଇରୀ
ଶୁଦ୍ର ବ୍ରହ୍ମାଙ୍କୁ ଖାଇବ ଏହି ମୁଣ୍ଡ ମୋଡ଼ି ।
ବ୍ରହ୍ମାକୁ ଏ କୋପ ଏଡ଼େ କଲା ସର୍ବକାଳେ
ଏହା କେଶ ଧରିନେବ କୁରୁ ସଭାତଳେ ।
ଏ ଦ୍ରୌପଦୀ ହେବ ଏହା ସ୍ୱାମୀ ହେବ ଭୀମ
ଭୀମ ଦୁଃଶାସନର ଯେ ହୋଇବ ସଂଗ୍ରାମ ।
ଦୁଃଶାସନକୁ ସମରେ ନାଶି ବୃକୋଦର
ଭୁଜ ଉପାଡ଼ି ଏହାକୁ ଦେବ ଯେ ରୁଧିର ।
ସେ ରକ୍ତେ ସ୍ନାନ କରିବ ଦ୍ରୁପଦ ଦୁହିତୀ
ସେ ରକତ ପାନ କରି ହୋଇବ ତୃପତି ।
ଶୁଣହେ ଦ୍ରୁପଦ ଆଦ୍ୟ ସିଦ୍ଧାନ୍ତ ଏ କଥା
ଏ ରୂପେ ଦ୍ରୌପଦୀ ଜାଣ ତୋହର ଦୁହିତା ।
ଏହି ଦ୍ରୌପଦୀ ତୋହର ଏହି ଭୀମସେନ
ଦୁଃଶାସନର ରୁଧିର କରିବ ଏ ପାନ ।
ଏହା ଶୁଣିଣ ଦ୍ରୁପଦ ବ୍ୟାସଙ୍କୁ ପୁଛିଲା
ତ୍ରେତାଯୁଗକୁ ଦ୍ରୌପଦୀ କାହିଁ ପୁହାଇଲା ।
ବ୍ୟାସ ବୋଇଲେ ଶୁଣ ତୁ ପାଞ୍ଚାଳ ନୃପତି
ଦ୍ୱିତୀୟେ ହୋଇଲା ଏକ ବଳାଏ ପାର୍ବତୀ ।
ବସନ୍ତ ଋତୁରେ ଦିନେ ହସ୍ତା କନ୍ୟାରାଶି
ଚୈତ୍ର ମାସରେ ଯେ କୃଷ୍ଣପକ୍ଷ ଏକାଦଶୀ ।
ହିମାଳୟ ଗିରିତଳେ ମାଳତୀ ଯେ ନଦୀ
ତାର ତଳେ ଏକବଳା ପାର୍ବତୀ ସମାଧି ।
ଏକବଳା ପାର୍ବତୀକି ଇଚ୍ଛା କରେ ହର
ଏଣୁ ଖଟିଥାନ୍ତି ତାର ଛାମୁରେ ଈଶ୍ୱର ।
ଗାୟତ୍ରୀ ସେହି ନଦୀକୁ ଆସେ ପାଣି ହେରି
ନିରଞ୍ଜନ ଦେବ ଭର୍ତ୍ତା ଅଟଇ ତାହାରି ।
ନିରଞ୍ଜନ ପଞ୍ଚଆତ୍ମା ପଞ୍ଚଖଣ୍ଡ ହୋଇ
ସେ ଗାୟତ୍ରୀ ପଛେ ପଛେ ଅଛନ୍ତି ଗୋଡ଼ାଇ ।
ଈଶ୍ୱର ବୋଇଲେ ଏକ ବଳା ଗୋ ପାର୍ବତୀ
ମାତା ତୋହର ଗାୟତ୍ରୀ ଅଟଇ ଅସତୀ ।
ଗୋଡ଼ାଇ ଅଛନ୍ତି ଦେଖି ତାକୁ ପଞ୍ଚ ଖଣ୍ଡ
ପଞ୍ଚଙ୍କୁ ଆଶା ଦେଖାଇ କରେ ଲଣ୍ଡଭଣ୍ଡ ।
ଯେବଣ ଖଣ୍ଡକୁ ଇଚ୍ଛା ତୋହର ହୋଇବ
ଚାରିଙ୍କୁ ନିରାଶ କରି ଏକ ଆବୋରିବ ।
ପାଞ୍ଚଜଣ ଆଶା କରିଅଛନ୍ତି ଗୋଡ଼ାଇ
ସ୍ତିରୀ ଲିଙ୍ଗକୁ ଅଧର୍ମ କଥା ନ ଯୋଗାଇ ।

କପିଳାକୁ ଏକବଳା ଧଇଲା ବିକୃତି
ବୋଇଲି ଏ କଥା ମିତ ନୁହଁଇ ଯୁକତି ।
ସ୍ତିରୀ ଜନ୍ମ ହୋଇ ତୁମ୍ଭେ କର ଅବିଶ୍ୱାସ
ଏକ ବଳା ଗାଇ ହେଲା ଈଶ୍ୱରଙ୍କ ବଶ ।
ଏସନ ଚରିତ ତାର ଜାଣିଲେ କପିଳା
ବୋଇଲେ ମୋତେ ବିକୃତ କଲୁ ଏକ ବଳା ।
ଈଶ୍ୱରଙ୍କୁ ଦୃଷ୍ଟି ଦେଇ ବୋଇଲେ ଗାୟତ୍ରୀ
ତୁମ୍ଭ ନାମ ଧୃଷ୍ଟଦ୍ୟୁମ୍ନ ହେଉରେ ଦୁର୍ମତି ।
ତୁ ଯେ ଏକବଳା ମନେ ଧଇଲୁ ବିକୃତି
ତୋ ନାମ ଦ୍ରୌପଦୀ ହେଉ ତୋର ପାଞ୍ଚପତି ।
ଏତେକ ଶାପ ଦେଇଣ ଗଲେକ କପିଳା
ବସିଲାକ ମହାଯୋଗ ଘେନି ଏକ ବଳା ।
ପାଟଳ ବସନ ପଞ୍ଚାବନକୋଟି ଶାଢ଼ୀ
ମହାଳୟରେ ବସିଲା ଜଞ୍ଜାଳକୁ ଛାଡ଼ି ।
ଆଦିତ୍ୟ ଦେବତା ପୁତ୍ର ଅଟେ ଶନୈଶ୍ଚର
ତାହାର ଦୃଷ୍ଟିରେ ଦଗଧ ହୁଅଇ ସଂସାର ।
ଡରେ ତାହାକୁ ଯେ କନ୍ୟା କେହି ଦେଲେ ନାହିଁ
ଦଶଲକ୍ଷ ବରଷ ସେ ବିବାହ ନ ହୋଇ ।
ଅନଳସେନ ବୋଲିଣ ଦକ୍ଷଗଣ ରାଜା
କୀର୍ତ୍ତିମତୀ ବୋଲି ତାର ଏକଇ ଆତ୍ମଜା ।
ତାହାକୁ ରାଇ ବୋଇଲେ ଦିନକର ଜ୍ୟୋତି
ଶନୈଶ୍ଚରକୁ ତୋହର ଦିଅ କୀର୍ତ୍ତି ସତୀ ।
କର୍ତ୍ତାଙ୍କ ବଚନ ସେହି ଭାଙ୍ଗି ନ ପାରିଲା
ଦେବି ମୋହର ଦୁହିତା ବୋଲି ସତ୍ୟ କଲା ।
ବର୍ଷେକ ପାଟଳବସ୍ତ୍ର ପଞ୍ଚାବନ କୋଟି
ଘୋଡ଼ାଇ ରଖ ନ ପଡୁ ଶନୈଶ୍ଚର ଦୃଷ୍ଟି ।
ଏ ବସ୍ତ୍ରରେ ଶନିଦୃଷ୍ଟି ପଡ଼ି ଲଭୁ ଶାନ୍ତି
ଦେବଇଁ କନ୍ୟା ମୋହର ଏ ସତ୍ୟ ଭାରତୀ ।
ଅନଳସେନ ବଚନେ ସ୍ୱାମୀ ନିରାକାର
ଏକ ବର୍ଷର ପାଟଳ ବସ୍ତ୍ର ଦିନିଦ୍ଧୁର ।
ଖୋଜି ଖୋଜି ନ ପାଇଲେ ଭଣ୍ଡାରରେ ନାହିଁ
ବାଉନ କୋଟି ଭଣ୍ଡାର ଖୋଜି ଛାୟାସାଇଁ ।
ପଞ୍ଚାବନ କୋଟି ବସ୍ତ୍ର ମାଡ଼ିବସି ତହିଁ
ଏକବଳା ପାର୍ବତୀ ଯେ ମହାଯୋଗେ ରହି ।
ଘୋର ତପେ ବସିଅଛି ଅନାଦି କେତୁକା
ଦିନକରନାଥ ଯାଇ ଭେଟିଲେକ ଏକା ।
ଆଦିତ୍ୟ ଏକବଳାକୁ କରୁଛନ୍ତି ସ୍ତୁତି
ଶୁଣିଣ ବୋଇଲେ ଏକବଳା ଯେ ପାର୍ବତୀ ।
କେଉଁ କାର୍ଯ୍ୟେ ଆଗମନ ଏଥି କରତାର
ତିରଞ୍ଚି ନାରାୟଣ ସେ ଦିଅନ୍ତି ଉତ୍ତର ।

ଶନେଶ୍ଚରକୁ ମୁଁ ବିଭା ହେବି ମହାମାୟେ
ଅନଳସେନ ଦୁହିତା ଦେବାପାଇଁ କହେ ।
ପାଟଳ ବସ୍ତ୍ରକୁ ଦେବୁ ପଞ୍ଚାବନ କୋଟି
ନ ପଡ଼ିବ ତା ଦୁହିତା ଦେହେ ଶନିଦୃଷ୍ଟି ।
ବୋଇଲେ ସେ ଏକବଳା ଶୁଣ ଦେବରାଜ
ଏକବର୍ଣ୍ଣ ବସ୍ତ୍ରେ ମୋର ଅଛି ବଡ଼କାର୍ଯ୍ୟ ।
ଆଦିତ୍ୟ ବୋଇଲେ ମୁହିଁତୋର କାର୍ଯ୍ୟକାଳେ
ଏ ବସ୍ତ୍ର ଦେବଇଁ ନିଶ୍ଚେ ତୋକଟାଳ ବେଳେ ।
ଚତୁର୍ଥ ଅବତାରେ ମୁଁ ଦେବଇଁ ଦ୍ରୌପଦୀ
ଗାୟତ୍ରୀ ଶାପେ ହୋଇବେ ମୋର ପଞ୍ଚପତି ।
କଷଣ ପଡ଼ିବ ମୋତେ କୁରୁସଭା ତଳେ
ବିବସ୍ତ୍ର କରିବେ ମୋତେ କଉରବେ ବଳେ ।
ଏ ମୋହର ସତୀପଣ ଦୂଷିତା ନିମନ୍ତେ
ସେ କାଳେ ମାଗିବି ମୁହିଁ ବସ୍ତ୍ର ଦେବ ମୋତେ ।
ପଞ୍ଚାବନକୋଟି ସଙ୍ଗେ କୋଟିଏକ ଦେଇ
ଏମନ୍ତ ଛପନକୋଟି ଦେବୁ ମୋତେ ନେଇ ।
କରତା ବୋଇଲେ ମୋର ହେଲା ସତ୍ୟସତ୍ୟ
ମାଗି ନେଲେ ପଞ୍ଚାବନକୋଟି ଦିନନାଥ ।
ବିଭାବେଳେ ଘୋଡ଼ାଇଲେ କନ୍ୟାକୁ ସେ ତହିଁ
ଅନଳସେନ ନୃପତି ବସ୍ତ୍ର ଦେଲେ ନେଇ ।
ଶନୈଶ୍ଚରକୁ ପ୍ରଦାନ କଲା କୀର୍ତ୍ତିମତୀ
ଶନୈଶ୍ଚର ଦୃଷ୍ଟି ବସ୍ତ୍ରେ ପଡ଼ି ହେଲା ଶାନ୍ତି ।
ବସ୍ତ୍ର ମାଗିନେଲେ କର୍ତ୍ତା ବିବାହ ଉତ୍ତାରେ
ବସ୍ତ୍ର ସଂହରିଲେ ନେଇ ରଥର ଉପରେ ।
ଶୁଣ ହୋ ଦ୍ରୁପଦରାୟେ ବଦୟନ୍ତି ବ୍ୟାସେ
କହିଲ ଦ୍ୱିତୀୟ ଅବତାର ଅବଶେଷେ ।
ତୃତୀୟ ଅବତାରେ ଏ ଶଚୀ ରୂପ ଧରି
କ୍ଷେତ୍ରାଧିପତି ପୁଷ୍କର ଘରେ ଅବତରି ।
ଇନ୍ଦ୍ରଦେବଙ୍କୁ ପୁଷ୍କର କଲାକ ପ୍ରଦାନ
ଅକ୍ଷୟପାଟେ ଭୋଗିଲା ଅମର ଭୁବନ ।
ଦଶଲକ୍ଷ ବର୍ଷଯାଏ ଇନ୍ଦ୍ର ମନ ହରି
ଅକଣ୍ଟକ ହେଲେ ଇନ୍ଦ୍ର ଜୟଦୈତ୍ୟ ମାରି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଅନୁରଥ ପୁତ୍ର ନାମ ଅଟେ କେଶୀରଥ
କେଶୀରଥ ପୁତ୍ର ନାମ ଅଟଇ ମନ୍ମଥ ।
ମନୁରଥ ବୋଲି ତାର ପୁତ୍ରେକ ଉତ୍ପନ୍ନ
ଉଦୟରଥ ନାମରେ ତାହାର ନନ୍ଦନ ।
ଏହାର ପୁତ୍ର ଅଟନ୍ତି ଯମଦଗ୍ନି ଜାଣ
ତ୍ରିଭୁବନେ ନାହିଁ ବିପ୍ର ଏହାଙ୍କ ସମାନ ।
ଯମଦଗ୍ନିର ବ୍ରାହ୍ମଣ ପୁତ୍ର ଅର୍ଥ ବୋଲି
ଇନ୍ଦ୍ରରଥ ବୋଲି ତାର ନାମ ଯେ କହିଲି ।

ଇନ୍ଦ୍ରରଥର ପୁତ୍ର ଯେ ବୃତ୍ରରଥ ନାମ
ବେଦମନ୍ତ୍ର ପୁରାଣରେ ଜିଣିଲାକ ବ୍ରହ୍ମ ।
ବୈଶାଖ ଶୁକ୍ଳ ତୃତୀୟା ଅର୍କବାର ଦିନ
ରୋହିଣୀ ନକ୍ଷତ୍ର ବୃଷଚନ୍ଦ୍ର ବିଦ୍ୟମାନ ।
ଏକ ଦିନେ କୃଷ୍ଣାଙ୍କୁର ଅମରକୁ ଗଲେ
ବାସବ ଯେ ବସିବାକୁ ଆସନ ନ ଦେଲେ ।
ରାଗେ ଆଜ୍ଞାନୁ ଓହ୍ଲାଇ ଆସି ତପଚାରୀ
କୋପେ ଆଜ୍ଞା ଦେଲେ ବୃତ୍ରରଥକୁ ହକାରି ।
ଆରେ ବୃତ୍ରରଥ କୁହ ହର ସେବା କର
ଈଶ୍ୱରଙ୍କୁ ସେବା କରି ଭୋଗ ସ୍ୱର୍ଗପୁର ।
କୃଷ୍ଣାଙ୍କୁର ଆଜ୍ଞାରେ ଯେ ବୃତ୍ରମହାଋଷି
କପିଳାସ କନ୍ଦରେ ସେ ବିଜେ କଲା ଆସି ।
ଅନ୍ୟ କିଛି ନ ଜାଣଇ ସେହି ବାଳଶିଷ୍ୟ
ବାଳଖେଳା ତପେ ତୋଷ ହେଲା ବିଶ୍ୱବାନ୍ଧ ।
ସ୍ନାନ ପୂଜା ଷଟକର୍ମ ନିତ୍ୟକର୍ମ ସାରି
ରାତ୍ର ପ୍ରହରକେ ଥାଉ କନ୍ଦରେ ସେ ପଡ଼ି ।
ଶିବ ଶିବ ସେ ସୁମରୁଥାଇ ଅନୁବ୍ରତେ
ଗଡ଼ଘାଲି ଶୁଏ ଦେଢ଼ ପ୍ରହର ପର୍ଯ୍ୟନ୍ତେ ।
ଚଉବିଂଶ ବର୍ଷଯାଏ ଘୋର ତପ କଲା
ସେ ଈଶ୍ୱର ଦେବତାଙ୍କ ଆସନ ଟଳିଲା ।
ମେଷମାସ କୃଷ୍ଣପକ୍ଷ ପଞ୍ଚମୀର ରାତି
ସୌରୀବାର ମୃଗଶିରା ନକ୍ଷତ୍ର ପାହାନ୍ତି ।
ଗଡ଼ି ଯାଉଅଛି ନିତ୍ୟକର୍ମେ ଶିବ ଧ୍ୟାନେ
ସର୍ପଘାତ ହେଲା ତାକୁ କୈଳାସ ଈଶାନେ ।
ମହାଗରଳ ଘୋଟିଲା ନାଶ ଗଲା ବାଳ
ଶରୀର ବିଷଜ ମୁଖୁ ବହଇ ଗରଳ ।
ଆସୁଛନ୍ତି କାଶୀବାସୀ ଦେବେ ବୋଲି ବର
ବାଳକ ପଡ଼ିଛି ଦେଖି ଉମା ମହେଶ୍ୱର ।
ଉମା ବୋଇଲେ ଭୋ ସ୍ୱାମୀ ତୋ ସେବା ଏମନ୍ତ
ତୋତେ ସେବାକରି ନାଶଗଲା ବାଳସୁତ ।
ସଦାଶିବ ବୋଇଲେ ଯେ ଶୁଣସି ଗିରିଜା
ଏ ପୁତ୍ରଗୋଟି କରିବା ସ୍ୱର୍ଗପୁରେ ରାଜା ।
ଈଶ୍ୱର ବୋଇଲେ ତହୁଁ ନାରଦେ ହକାରି
ଏ ପୁତ୍ରଗୋଟିକୁ ଘେନିଯାଅ ସ୍ୱର୍ଗପୁରୀ ।
ବ୍ରହ୍ମାକୁ ବୋଲିବ ଏହୁ ଈଶ୍ୱର ଭକତ
ତୋର ତହୁଁ ଭଲସ୍ଥାନେ ଥୁଅ ନେଇ ଧାତ ।
ବସାଇ ନାରଦ ମୃତଶବ ମନଦଣ୍ଡେ
ଅମର ପୁରକୁ ଘେନିଗଲେ ତାକୁ ଚାଣ୍ଡେ ।
ବ୍ରହ୍ମାର ଆଗେ ଥୋଇଲେ ବୃତ୍ର ମହାଋଷି
ସଦାଶିବ ଆଜ୍ଞା ଭଲ ଠାବରେ ଥୁଅସି ।

ସେ ମୃତପିଣ୍ଡକୁ ଘେନି ସୃଷ୍ଟିର କରତା
ନିଜ ଆତ୍ମା ଦେଇ ତାକୁ ଚିଆଇଁଲେ ଧାତା ।
ନାରଦଙ୍କୁ ସମର୍ପିଲେ ନେଇ ବାଳସୁତ
ମୋ ତହୁଁ ଭଲ ଅମର ପୁରହି ଯୁକତ ।
ଏ ବାସବ ଦେବତାର ଗଲା ଇନ୍ଦ୍ରପଦ
ବୃତ ମହାରଷିଙ୍କୁ ହୋ ଦିଅ ଇନ୍ଦ୍ରପଦ ।
ପିତା ଆଜ୍ଞାରେ ଚଳିଲେ ସେ କଳହପ୍ରିୟ
ଇନ୍ଦ୍ରଙ୍କୁ କହିଲେ ହର ବ୍ରହ୍ମା ଅଭିପ୍ରାୟ ।
ତୋହର ତହୁଁ ଫିଟିଲା ଏବେ ଇନ୍ଦ୍ରପଦ
ବୃତ ମହର୍ଷି ଲଭିବେ ଏ ସ୍ୱର୍ଗ ସମ୍ପଦ ।
ଆଜ୍ଞା ପ୍ରମାଣେ ସ୍ୱର୍ଗକୁ ଛାଡ଼ିଲେ ମଘବା
ଯାହାକୁ ସଞ୍ଚିଲେ ପିତା ରୁଦ୍ର ତାକୁ ଦେବା ।
ଇନ୍ଦ୍ର ଦଣ୍ଡଛତ୍ରମାନ ଛାଡ଼ିଲା ସମସ୍ତ
ଶଚୀକୁ ଛାଡ଼ି ବାହାରି ଗଲା ଯେ ତୁରିତ ।
ବୃତ ମହର୍ଷି ବସିଲେ ତହୁଁ ସ୍ୱର୍ଗସ୍ଥାନେ
ପାଇଲେକ ଇନ୍ଦ୍ରପ୍ରସ୍ଥ ଈଶ୍ୱର ବଚନେ ।
ହୋଇଲେ ରଷି ଆଜ୍ଞାରେ ବ୍ରତୀ ଦିଗପାଳେ
ଐରାବତ ହସ୍ତୀଯାନ ଖଟିଲେ ସକଳେ ।
ସମସ୍ତ ବ୍ରାହ୍ମଣ ଭିଆଇଲେ ତିନିକ୍ରମେ
ସଚରାଚର ପାଳିଲେ ମହାରଷି ଧର୍ମେ ।
ଇନ୍ଦ୍ରଦେବତା ଯେଦିନୁ ସ୍ୱର୍ଗ ଭ୍ରଷ୍ଟ ହେଲା
ପଦ୍ମଦ୍ୱୀପେ ବସି ନାରାୟଣ ଚିନ୍ତା କଲା ।
ଚୌବିଂଶ ବର୍ଷେ ଜାଣିଲେ ପ୍ରଭୁ ନାରାୟଣ
ଇନ୍ଦ୍ରଦେବଙ୍କୁ ଭେଟିଲେ ଗରୁଡ଼ ବାହନ ।
ଅନେକ ବ୍ୟାକୁଳ ହୋଇ ଦେବ ଆଖଣ୍ଡଳ
ଶତ ସହସ୍ର ପ୍ରଣମି ତାଙ୍କ ପାଦତଳ ।
ସ୍ୱାମୀ ଜୟ ଦୈତ୍ୟ ମାରି ହୋଇଲି ଅମର
ଇନ୍ଦ୍ରପଦରେ ବସିଲି ମନୁ ଯେ ସତ୍ୱର ।
ଈଶ୍ୱର ହରିଲେ ଏବେ ମୋର ଇନ୍ଦ୍ରପଦ
ବୃତ୍ରରଷି ଭୋଗ କଲେ ମୋହର ସମ୍ପଦ ।
ଅନାଦିବଲ୍ଲଭ ଜଗଦ୍‌ଭୂତ ନାରାୟଣ
ତୋହର ଚରଣେ ସ୍ୱାମୀ ପଶିଲି ଶରଣ ।
ନାରାୟଣ ବୋଇଲେ ତୁ ଯାଅ ଯା ଅମର
ବୃତ୍ର ମହାରଷି ମାରି ପଦ ଘେନ ତୋର ।
ଇନ୍ଦ୍ର ବୋଇଲେ ମୋହର ଘେନିଲା ସମସ୍ତ
କି ଘେନି ଯୁଦ୍ଧ କରିବି ନାହିଁ ମୋର ଶସ୍ତ୍ର ।
ଦେଖିଲେ ତହିଁ ଅଛନ୍ତି ଦଧୀଚି ମହର୍ଷି
ତାଙ୍କୁ ରାଇ ଆଜ୍ଞା ଦେଲେ ପ୍ରଭୁ ଶିରୀବତ୍ସି ।
ତୁ ହୋ ପ୍ରାଣ ଛାଡ଼ି ଏହି ବାସବର ଅର୍ଥେ
ବୃତ୍ରରଷିକୁ ମାରିବି ତୋର ଅସ୍ଥି ଅସ୍ତ୍ରେ ।

ଏସନକ ଆଜ୍ଞା ଯହୁଁ ଦେଲେକ ଶ୍ରୀବତ୍ସି
ପ୍ରାଣ ବିସର୍ଜନ କଲେ ଦଧୀଚି ମହର୍ଷି ।
ଘେନିଲେ ଇନ୍ଦ୍ର ରଷିର ମୁଣ୍ଡସହ କଚ
ତାହାକୁ କରି ରଖିଲେ ସେ ବଜ୍ରକବଚ ।
ପଞ୍ଜରା ହାଡ଼କୁ ନେଇ କଲେ ଲୋହଦଣ୍ଡ
ତହିଁକି ପୁଣି ସେ କଲା ଗୁଣ ଶିରାଖଣ୍ଡ ।
ଆଙ୍ଗୁଳିମାନ ନାରାଚ ତହିଁ ପୁଣି କଲା
ପାଦର ହସ୍ତର ଅସ୍ଥି ଶକତି ହୋଇଲା ।
ରଷିଙ୍କର ଚର୍ମ ତହିଁ ହୋଇଲା ମେଖଳା
ଏମାନ ଘେନି ମଘବା ତହୁଁ ଚଳିଗଲା ।
ନାରାୟଣ ବୋଇଲେ ତୁ ଯାଅ ଦେବଇନ୍ଦ୍ର
ବୃତ୍ର ମହାରଷି ମାରି ଘେନ ତୋର ପଦ ।
ସେଠାରୁ ଇନ୍ଦ୍ରଦେବତା ଗଲା ଅତିରାଗେ
କ୍ଷଣକ ମଧ୍ୟେ ମିଳିଲା ଯାଇ ବେଗେ ସ୍ୱର୍ଗେ ।
ବୃତ୍ର ମହାରଷି ତୁଲେ ଘୋର ଯୁଦ୍ଧ କଲା
ବାଳୁତ ନନ୍ଦନ ସେହି ସଂଗ୍ରାମେ ହାରିଲା ।
ରଷିଙ୍କ ମୁଣ୍ଡେ କବଚ ମାଇଲା ବୁଲାଇ
ଘାଏ ବୃତ୍ର ମହାରଷି ପଡ଼ିଲା ଘୁମାଇ ।
ରଷିର ନଖ ଅଟଇ ଅତି ତୀକ୍ଷ୍ଣ ପର୍ଶୁ
ପୋଷନ୍ତେ ବୃତ୍ର ଶରୀର ହେଲା ଧୂଳିପାଂଶୁ ।
ବୃତ୍ର ମହାରଷିଙ୍କୁ ସେ ମାଇଲା ଅସ୍କନ୍ଦ
ବଳେ ମାଡ଼ି ବସିଲାକ ତାର ଇନ୍ଦ୍ରପଦ ।
ଆପଣାର ସ୍ୱର୍ଗପୁରେ ହୋଇଲା ସେ ରାଜା
ଦିଗପାଳମାନେ ତାକୁ କଲେ ପାଦପୂଜା ।
କୃଷ୍ଣାଙ୍କୁର ରଷିଙ୍କୁ ଯେ କହିଲେ ନାରଦ
ତୋହର ପୁତ୍ରକୁ ନାଶ କଲା ଦେବ ଇନ୍ଦ୍ର ।
ବାହୁଡ଼ାଇ ଇନ୍ଦ୍ରପଦ ଘେନିଲା ସେ ବଳେ
ସମସ୍ୟା ନ ଦେଲେ ରଷି ଯୋଗଲୟ ବେଳେ ।
ରାଗେ ଭୂମିକୁ ମାଇଲେ ସେ ବାଲି ମୁଠାଏ
ବାହାର ହୋଇଲେ ତହୁଁ ଦୁଇ ବାଳପୋଏ ।
ବାଲୁକା ତିଳକ ନାମ ଦୁହିଁଙ୍କର ଦେଲେ
ଇନ୍ଦ୍ର ଦେବତାକୁ ମାର ବୋଲି ଆଜ୍ଞାଦେଲେ ।
ପିତାର ଆଜ୍ଞାରେ ଗ୍ଲେ ସେ ବେନି ତନୟେ
ଅମର ଭୁବନେ ଯାଇ ପଶିଲେ ନିର୍ଭୟେ ।
ଚିତ୍ରସେନ ଜୟନ୍ତ ଯେ ଅଙ୍ଗାର ପନ୍ନଗ
କୁମାରେ ଯାଇ ତାହାଙ୍କୁ ଓଗାଳିଲେ ଆଗ ।
ଅପାର ସମର କଲେ ବାସବର ପୋଏ
ଗନ୍ଧର୍ବଙ୍କୁ ମାଇଲେ ସେ ରଷିଙ୍କ ତନୟେ ।
ମହର୍ଷି ପୁତ୍ରେ ମାଇଲେ ଯହୁଁ ଖରତରେ
ବାସବ ଭେଟିଲେ ତାଙ୍କୁ ପାଣ୍ଡବ ବନରେ ।

ଇନ୍ଦ୍ରର ତୁଲେ ବହୁତ ସମର ହୋଇଲା
ବଜ୍ରଶର ଘେନି ବଜ୍ର ତାଙ୍କୁ ନାଶ କଲା ।
ଆପଣାର ପୁଅକୁ ସେ ଦେଲାକ ଅମୃତ
ବଞ୍ଚିଲେ ଇନ୍ଦ୍ରର ସେହି ତିନିଗୋଟି ସୁତ ।
ନାରଦ କହିଲେ ଯାଇ ଆହେ କୃଷ୍ଣାଙ୍କୁର
ଇନ୍ଦ୍ର ନାଶ କଲା ମୋର ସେ ଦୁଇ କୁମର ।
ଶୁଣି କୃଷ୍ଣାଙ୍କୁର ଋଷି ହୋଇ ମହାଭାଗୀ
କାଳାନଳ ତେଜ ଘେନି ଉଠିଲା ସେ ଯୋଗୀ ।
ଇନ୍ଦ୍ର ଦେବତାଙ୍କୁ କେହି ରକ୍ଷା କରୁ ଆଜ
ବ୍ରହ୍ମା ବିଷ୍ଣୁ ରୁଦ୍ର ଆଦି ଯେତେ ଦେବରାଜ ।
ମନ ପବନ ଚଢ଼ିଣ ନାରଦ ଅଇଲେ
ଇନ୍ଦ୍ର ଦେବତାଙ୍କୁ ଆସି ବାରତା କହିଲେ ।
ଋଷି କୁମାରଙ୍କୁ ତୁହି କଲୁ ପ୍ରାଣେ ନଷ୍ଟ
ଆସୁଅଛି କୃଷ୍ଣାଙ୍କୁର ଋଷି ତପୋନିଷ୍ଠ ।
ମନୁ ଅନ୍ତେ ସେହି ତପୀ କଳ୍ପ ବ୍ରହ୍ମଚାରୀ
ବ୍ରହ୍ମାର ତୁଲ୍ୟ ଆୟୁଷ ମହାଦେବ ସରି ।
ଯାହାର କୋପେ କରନ୍ତେ ଟଳଇ ଯେ ମେରୁ
ପଳାଇ ସମୁଦ୍ରେ ପଶ ସ୍ୱର୍ଗରେ କି କରୁ ।
ଇନ୍ଦ୍ର ବୋଇଲା ମୁଁ କୃଷ୍ଣାଙ୍କୁର ଋଷି କୋପେ
ସମୂଳେ ଦହ୍ୟ ହୋଇବି ତାର ଗୁରୁତାପେ ।
ଏଡ଼େକ ମହାତ୍ମା ଯେବେ ସେ କୋପ କରିବ
ନାରାୟଣ ଆଦି କେହି ମୋତେ ନ ରଖିବ ।
ପଞ୍ଚଆତ୍ମା ଶରୀରରୁ କାଢ଼ି ସୁରପତି
ଧର୍ମେ ଏକ ଆତ୍ମା ନେଇ ଥୋଇଲାକ ଧାତି ।
ଦ୍ୱିତୀୟ ଆତ୍ମାକୁ ନେଇ ପବନେ ଥୋଇଲା
ତୃତୀୟ ଆତ୍ମାକୁ ଶୂନ୍ୟ ଭୁବନେ ରଖିଲା ।
ଚତୁର୍ଥ ଆତ୍ମା ଅଶ୍ୱିନୀଠାରେ ନେଇ ଥୋଇ
ପଞ୍ଚମ ଆତ୍ମା କୁମରେ ନେଇ ସମର୍ପଇ ।
ପଞ୍ଚଆତ୍ମା ପଞ୍ଚଠାରେ ଥୋଇ ସୁନାସୀର
ଆପଣା ଆପଣା ଘେନି ବସିଛି ଶରୀର ।
କାଳାନଳ ତେଜ ରାଶି ଅତି ପରଖର
କୃଷ୍ଣାଙ୍କୁର ପ୍ରବେଶିଲା ବାସବ ଛାମୁର ।
ତୁ ମୋର ପୁତ୍ରକୁ ନାଶ କଲୁ ଆରେ ଦୁଷ୍ଟ
ଶରୀର ତୋହର ଭସ୍ମ ହୋଇଯାଉ ନଷ୍ଟ ।
କୋପେ ଭସ୍ମ ହୁଅ ବୋଲି ମହର୍ଷି ବୋଇଲା
ଆପେ କୃଷ୍ଣାଙ୍କୁର ଯାଇ ସ୍ୱର୍ଗରେ ବସିଲା ।
ପାଳିଲା ସକଳ ଲୋକ ପରମ ଆନନ୍ଦେ
ବ୍ୟାସ ବୋଇଲେ ଦ୍ରୁପଦ ଶୁଣ ପଦେ ପଦେ ।
କୃଷ୍ଣାଙ୍କୁର କୋପେ ଇନ୍ଦ୍ରଦେବ ହେଲା ହତ
ପଞ୍ଚଆତ୍ମା ଥୋଇଲାକ ଦେବ ପୁରୁହୂତ ।

ତାହାର ଭାରିଯା ଗୋଟି ଅଟେ ଦେବୀ ଶଚୀ
ଆକାଶ ଗଙ୍ଗାକୂଳେ ସେ ରୋଦନ କରୁଛି ।
ସିଂହ ଶୁକଳ ଦ୍ୱାଦଶୀ ତିଥି ସୋମବାର
ଶତଭିଷା ନକ୍ଷତ୍ର ଯେ ଭୋଗ ସେ ଦିନର ।
ବୃଷଭ ବାହନେ ବିଜେ ଉମା ମହେଶ୍ୱର
ଅସ୍କନ୍ଦ ନାମ ବନରେ କରନ୍ତି ବିହାର ।
ବୃଷଭକୁ ରଖାଇଣ ବୋଲେ ଶଶିମୁଖୀ
ସ୍ତିରୀଏ ରୋଦନ କଲେ ହୋଇ ଅତି ଦୁଃଖୀ ।
ସଦାଶିବ ବୋଇଲେ ଏ ସ୍ତିରୀଜନ୍ମ ପାଇ
ଅସଙ୍ଗତ ଲୋକକୁ ତ ଛୁଇଁ ନ ଯୋଗାଇ ।
ଉମା ବୋଇଲେ ଭୋ ଦେବ ରହ ରହ ହର
ସ୍ତିରୀ ଜନ୍ମକୁ ଭୋ ଦେବ ଦୋଷ ଯେ ଅପାର ।
ଏକ ସ୍ତିରୀର ରୋଦନ ଆରେକ ଶୁଣିବ
ଅନ୍ୟ ଜାତି ହେଲେ ଦୂରେ ଥାଇ ଆଶ୍ୱାସିବ ।
ଯଦ୍ୟପି ଯେ କଳି ଦ୍ୱନ୍ଦ୍ୱ ହିଂସା କରିଥିବ
ରୋଦନ କାଳେ ଅବଶ୍ୟ ଯାଇ ରୁହାଇବ ।
ଏ ବିଚାର ନ କରନ୍ତି ଯେଉଁ ସ୍ତିରୀଜନେ
କାଠବେଙ୍ଗ ହୁଅନ୍ତି ସେ ଜାଣ ଜନ୍ମେ ଜନ୍ମେ ।
ସ୍ତିରୀଜନକୁ ଏସନ ଅଛି ଜାଣ ଶାସ୍ତି
କ୍ଷଣକେ ବିଶ୍ରାମ କରି କ୍ରୋଧ କର ଶାନ୍ତି ।
ଏହି ଦୋଷକୁ ଦେବୀ ପାର୍ବତୀ ଭୟ କରି
ସୁଜ୍ଞାନୀ ସ୍ତିରୀଏ ପ୍ରତିପାଳିବେ ଏପରି ।
ଈଶ୍ୱରଙ୍କୁ ବୋଧି ଦେବୀ ବୃଷଭୁଁ ଓହ୍ଲାଇ
ନ କାନ୍ଦ ଗୋ ବୋଲି ତାର ତୁଣ୍ଡେ ହସ୍ତ ଦେଇ ।
ସର୍ବଗୁଣେ ସୁଲକ୍ଷଣ ସୁନ୍ଦର ତୋ କାୟ
ପ୍ରତ୍ୟକ୍ଷ ଦିଶୁ ଅମର ନାୟିକା ପରାୟ ।
ଆଗୋ ମହାତ୍ମାଣୀ ମନେ ଯାହା କଲୁ ଇଚ୍ଛା
ଅବଶ୍ୟ ଦେବଇଁ ପ୍ରାପ୍ତ ହେବ ମନୋବାଞ୍ଛା ।
ଆମ୍ଭେ ତୁମ୍ଭେଁ ଅଟୁ ମାଗୋ ଶଙ୍କର ଗିରିଜା
ତୋ ମନ କାମନା ପୂର୍ଣ୍ଣ କରି ପୁରେ ଯା ଯା ।
ଶଚୀଦେବୀ ଯେ ବୋଇଲେ ପତି ପାଞ୍ଚଥର
ହର ପାର୍ବତୀ ବୋଇଲେ ହେଉ ପାଞ୍ଚବର ।
ଶଚୀ ବୋଇଲେ ତୁମ୍ଭେ ଯେ ଶଙ୍କର ପାର୍ବତୀ
ଏକ ସ୍ତିରୀକୁ ହୁଏ କି ପାଞ୍ଚଗୋଟା ପତି ।
ମହତ ଜନକୁ ଭେଟ ହୋଇଲେ ଅସତୀ
ଏକ ସ୍ତିରୀକୁ ତ କାହିଁ ନାହିଁ ପାଞ୍ଚପତି ।
ଏସନ ଆଜ୍ଞା କେମନ୍ତ ଦେଲ ପଶୁପତି
ଏଥିରୁ ସଂସାରେ ଆଉ ନାହିଁ ଯେ ଅନୀତି ।
ଈଶ୍ୱର ବୋଇଲେ ଆଗୋ ନ ହୁଅ ବିକଳ
କୃଷ୍ଣାଙ୍କୁର କୋପେ ନାଶଗଲା ଆଖଣ୍ଡଳ ।

ପଞ୍ଚଆତ୍ମାକୁ ଥୋଇଲା ପଞ୍ଚଠାବ କରି
ପଞ୍ଚଆତ୍ମା ପଞ୍ଚଭର୍ତ୍ତା ହୋଇବେ ତୋହରି ।
ବ୍ୟାସଋଷି ବୋଇଲେ ହୋ ଶୁଣ ଦଣ୍ଡଧାରୀ
ସେହି ପଞ୍ଚଆତ୍ମା ଆସି ମର୍ତ୍ତ୍ୟେ ଅବତରି ।
ଯେବଣ ଆତ୍ମାକୁ ଧର୍ମଠାରେ ଥୋଇଥିଲା
ଯୁଧିଷ୍ଠିର ଧର୍ମତେଜି ଘେନି ଉପୁଜିଲା ।
ଥୋଇଥିଲା ନେଇ ଯେଉଁ ଆତ୍ମାକୁ ପବନେ
ସେ ତେଜରେ ଜାତ ଭୀମ ପବନ ସମାନେ ।
ତୃତୀୟ ଆତ୍ମାକୁ ନେଇ ଶୂନ୍ୟେ ଥୋଇଥିଲା
ଅର୍ଜୁନ ବାସବ ତେଜ ଘେନି ଉପୁଜିଲା ।
ଅଶ୍ୱିନୀରେ ଥୋଇଥିଲା ଯେଉଁ ଆତ୍ମା ଗୋଟି
ସେ ଅଶ୍ୱିନୀ ତେଜ ଘେନି ନକୁଳ ପ୍ରକଟି ।
କୁମାର ସେ ଥୋଇଥିଲା ଯେବଣ ଆତ୍ମାକୁ
ସହଦେବ ଉପୁଜିଲା ଘେନି ସେ ତେଜକୁ ।
ତୁହି ଶଚୀ ଉପୁଜିବୁ ଦ୍ରୁପଦର ଯଜ୍ଞ
ପଞ୍ଚପାଣ୍ଡବଙ୍କୁ ନେଇ ଦିଅ ତୋର ଅଙ୍ଗ ।
ଏତେକ ବୋଲିଣ ହର ଉମା ଆଜ୍ଞା ଦେଲେ
ସେହି ଶଚୀ ଦେବୀ ତୋର ଭାଗ୍ୟେ ଉପୁଜିଲେ ।
ବ୍ୟାସଦେବ ବୋଇଲେ ତୁ ଶୁଣ ନରଦେବ
ତୋ ଦୁହିତା ଆଦ୍ୟ କଥା ଏମନ୍ତ ପ୍ରସ୍ତାବ ।
ଏ ପଞ୍ଚପାଣ୍ଡବେ ଇନ୍ଦ୍ର ଶଚୀ ଓ ଦ୍ରୌପଦୀ
ଭାରା ନିବାରଣ ଅର୍ଥେ ମର୍ତ୍ତ୍ୟେ ଉତପତ୍ତି ।
ତୁ ପଞ୍ଚ ମୂରତିଙ୍କୁ ନ ମଣ ଭିନ୍ନ ଭିନ୍ନ
ଲୟ କର ଏ ଅଟନ୍ତି ପାଞ୍ଚ ଏକ ଜଣ ।
ଶୁଣିଣ ସାନନ୍ଦ ହେଲା ଚନ୍ଦ୍ରଧ୍ୱଜ ସୁତ
ବ୍ୟାସଙ୍କୁ କଲାକ ସେହୁ ସ୍ତୁତି ଅପ୍ରମିତ ।
ନମସ୍ତେ ନମସ୍ତେ ସ୍ୱାମୀ ପରାଶର ଶିଷ୍ୟ
ନଉକା ଯାନରେ ଯାର ସ୍ୱରୂପ ବିକାଶ ।
ସତ୍ୟବତୀ ସୁତ ଭୂତ ଭବିଷ୍ୟତ ଜ୍ଞାତା
ଯୁକତେ ତୁହି ଅଜ୍ଞାନୀଜନ ଜ୍ଞାନଦାତା ।
ଅଣାକାର ପୁରୁଷ ତୋ ନାହିଁ ଚିହ୍ନ ବର୍ଣ୍ଣ
ଅଜପା ଲୟ କରିଣ ଠୁଳ କଲୁ ଶୂନ୍ୟ ।
ହିମ ଶିଶିର ବସନ୍ତ ଆଦି ଷଡ଼ଋତୁ
ଧାତୁବାଦ ପୁରୁଷ ତୁ ସର୍ବ କଲୁ ହେତୁ ।
କୋଟିଏ ବ୍ରହ୍ମାଣ୍ଡ ଥାଇ ତୋହର ଉଦରେ
ଶତ ପ୍ରଳୟ ବଞ୍ଚିଲୁ ଶ୍ରୀହରି ଗର୍ଭରେ ।
ପରମାନନ୍ଦ ପୁରୁଷ ଅଟୁ ଗ୍ରନ୍ଥକାରୀ
ମୁହିଁ ତୋହର ନନ୍ଦନ ପାରଇ କି କରି ।
ଅନର୍ଗଳ ସରସ୍ୱତୀ ଭଣ୍ଡାରାଧିକାରୀ
ନ ନାଶି ବୋଇଲୁ ତୁହି ସକଳ ବିଚାରି ।
କାଳ ବଞ୍ଚାଇବାକୁ ସେ ସମର୍ଥ ତୁ ଋଷି
ବ୍ରହ୍ମାର ଯେ ବ୍ରହ୍ମପଦ ଯାର ଲୟେ ଭାଷି ।
ସେହି ବେଦବ୍ୟାସଙ୍କର ଚରଣେ ମୋ ଆଶ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତୋର ଦାସ ।
ଜୟ ଜୟ ଭାରତୀ ଗୋ ଜୟ ତୋର ଭାଷ
ବଢ଼ାଇଲି ସର୍ବଦ୍ୱନ୍ଦ୍ୱ ତେଜିଣ ମାନସ ।
ନାରାୟଣ ବଲ୍ଲବ ଗୋ ଆଜ୍ଞା ମୋତେ ଦେବି
ଗିରିଦା ଆଜ୍ଞାରେ ମୁହିଁ ନୁହଁଇ ମାନବ ।
ଇତି ଶ୍ରୀମହାଭାରତ ଆଦ୍ୟପର୍ବ ସ୍ଥାପି
ସଂସାରଜନଙ୍କ ହିତେ ସଞ୍ଚିଲି ଅଦ୍ୟାପି ।
ଏହି ଗ୍ରନ୍ଥ ଗଙ୍ଗା ପ୍ରାୟ ପ୍ରୟାଗ ସମାନ
ଦଣ୍ଡେ ଲୟ କଲେ ଯିବ ବଇକୁଣ୍ଠ ସ୍ଥାନ ।
ପୁଣି ପୁତ୍ର ପୌତ୍ର ଧନ ସ୍ୱଗତି ଲଭଇ
ପଢ଼ିଲେ ଦେହରୁ ପାପଯାକ ନାଶଯାଇ ।

—o—

## ଦ୍ରୌପଦୀ ବିବାହ

ଶ୍ରୀ ବ୍ୟାସଙ୍କୁ ସ୍ତୁତି ଯହୁଁ କଲାକ ରାଜନ
ପରମ ସନ୍ତୋଷ ହେଲେ ଶୁଣି ନାରାୟଣ ।
ବନ୍ଧୁ ବର୍ଗ ପୁତ୍ର ଆଦି ସ୍ୱକୁଟୁମ୍ବ ଘେନି
ତତକ୍ଷଣେ ବିଜେ କଲେ ରାମକୃଷ୍ଣ ବେନି ।
ଦେଖି ଦ୍ରୁପଦ ରାଜନ ମହାଭୟ କଲା
ବହୁତ ପ୍ରଣାମ କରି ଚରଣେ ଶୋଇଲା ।
କୋଳ କରି ଦ୍ରୁପଦକୁ ତୋଳି ଚକ୍ରଧର
ଆଜିଠାରୁ ଦ୍ରୁପଦ ତୁ ଆମ୍ଭର ଈଶ୍ୱର ।
ଏକା ଦ୍ରୌପଦୀ ତାରିଲା ଏ ତୋହର ବଂଶ
ଦୁହିତା ଯୋଗୁ ସମସ୍ତେ ହୋଇଲୁ ସନ୍ତୋଷ ।
ଏକ ଦୁହିତାକୁ ନେଇ ଜିଣିଲୁ ତ୍ରୈଲୋକ୍ୟ
କୋଟି ପୁରୁଷର ତୋର ଦହିଲୁ ପାତକ ।
ସେ ଯେ ବିବେକୀ ପଣ୍ଡିତ ଧାର୍ମିକ ସୁଜ୍ଞାନ
ବିଚାର କରନ୍ତି ନାନା ଶୁଭ କର୍ମ ମାନ ।
ଉତ୍ତମ ପୁରୁଷ ବହୁ ଭାଗ୍ୟେ ଥିଲେ ପାଇ
ସୁରମୋହନ ପୁରୁଷେ ପାଇଲୁ ଜୁଆଇଁ ।
ଅନେକ ପ୍ରଶଂସା ତାଙ୍କୁ କଲେ ଦେବକୃଷ୍ଣ
ଦ୍ରୁପଦ ବୋଇଲେ ଦେବ ମୁହିଁ ଜ୍ଞାନଭ୍ରଷ୍ଟ ।
ସେ ମହତ ପୁରୁଷକୁ କରିଲି ଝିଙ୍ଗାସ
ଭୋ ସ୍ୱାମୀ ପାଣ୍ଡବେ ମୋର ନ ଧରିବ ଦୋଷ ।
ବିସ୍ମରିଲି ବ୍ୟାସ ଦେଇଥିଲେ ଯେ ଆଦେଶ
ମୁହିଁ ପାମର ଅଜ୍ଞାନେ କଲି ତାଙ୍କୁ ରୋଷ ।
ବୋଲୁ ହୁଏ ଦ୍ରୁପଦର ଅଶ୍ରୁଜଳ ବୃଷ୍ଟି
କ୍ଷଣେ କ୍ଷଣେ ମହାରାଜା ଶୁଏ ପଡ଼ି ଉଠି ।

ମୁଁ ଅଜ୍ଞାନ ସ୍ୱାମୀ ମୋର ଦୋଷ କର କ୍ଷମା
ମୁହିଁ ଭିକ୍ଷୁପ୍ରାୟ ମଣିଥିଲି ମାହାତମା ।
ଶ୍ୱଶୁର ପଦକୁ ମୁହିଁ ହୋଇବି କି କ୍ଷମ
ସାକ୍ଷାତରେ ପୁଣି ତୁମ୍ଭେ ଅଟ ଦେବ ଧର୍ମ ।
ପୁତ୍ରଙ୍କୁ ଘେନି ଦ୍ରୁପଦ ପୁଣି ପଦେ ଲୋଟି
ତହୁଁ କୋଳ କରି ତାଙ୍କୁ ଧଇଲେ ଯୁଧିଷ୍ଠି ।
ଅପାର ପୁରୁଷ ପୁଣ୍ୟବାନ ତୁ ସୁଜ୍ଞାନୀ
ପାଇଲୁ ପରମ ସାଧ୍ୱୀ କନ୍ୟା ଯାଜ୍ଞସେନୀ ।
ଇହ ପରଲୋକରେ ତୁ ତାରିଲୁ ସମସ୍ତ
ଅଶ୍ୱମେଧ ଯଜ୍ଞ ଆଦି କଲୁ ତୁ ବହୁତ ।
ଉପୁଜିଲା ଏସନକ କର୍ମେ ସେ ଦୁଲଣୀ
ପୁଣ୍ୟାତ୍ମା ମହତ ଜନେ ଦାନ କରି ଜାଣି ।
ଅମହତ ଅପଣ୍ଡିତ ଅକୁଳିତ ଜାତି
ଅବିଚାରେ ଦେଲେ ତହିଁ ଉପୁଜନ୍ତି ଶାସ୍ତି ।
ନାଶ ଯାଇଟି ଉଭୟ କୁଳ ଦୋଷ ଥିଲେ
ବଡ଼ ଦୁରାପଦ କାର୍ଯ୍ୟ ଅବିଚାରେ କଲେ ।
କଳଙ୍କ ଅନୀତି କଳିଯୁଗ ଅନାଚାର
ଏହା ବିଚାରି ପଣ୍ଡିତ ଜନେ କାର୍ଯ୍ୟ କର ।
ପଣ୍ଡିତ ଜନେ ବିଚାର କର ଧର୍ମ ବାଟ
ଅବିଚାରେ କର୍ମ କଲେ ହୁଏ ସର୍ବ ନଷ୍ଟ ।
ଚିତ୍ରଲେଖା ନ କଲେଟି ହେଉଛି ମାଠିଆ
ଲେଖିଲେ ଦେବତା ପ୍ରାୟ ଆରାଧନ୍ତି ତାହା ।
ଯୁଧିଷ୍ଠି ବୋଇଲେ ଆମ୍ଭେ ନ ଥିଲୁ ଆରମ୍ଭେ
ଗୋପନ ପୁରୁଷ ବୋଲି ନ ଚିହ୍ନିଲ ତୁମ୍ଭେ ।
ଧର୍ମ କଥା କହି ତାଙ୍କୁ ଯୁଧିଷ୍ଠି ସମ୍ବୋଧି
ଛାଡ଼ ଲାଜ ଭୟ ତୁମ୍ଭ କାର୍ଯ୍ୟ ହେଲା ସିଦ୍ଧି ।
ଦ୍ରୁପଦଙ୍କ ପ୍ରତିବାକ୍ୟ ଶୁଣି ଚକ୍ରଧର
କାହିଁ ତୁ ଲୁଚାଇ ଥିଲୁ ଏହି ପାଞ୍ଚବୀର ।
ଜତୁଘର ଦହନରେ ସର୍ବେ ନାଶ ଗଲେ
ଦେଶେ ଦେଶେ ଯାଇ ଲୋକ ବାରତା କହିଲେ ।
ଗୋବିନ୍ଦଙ୍କ ପ୍ରତି ବାକ୍ୟ ଶୁଣି ମହୀପତି
ଅଗ୍ନିରେ ନ ପୋଡ଼ନ୍ତି ଖଡ୍ଗେ ନ ଛିଡ଼ନ୍ତି ।
ଏହି ଯେବେ ଜତୁଗୃହେ ଦଗ୍ଧ ହୋଇଥାନ୍ତେ
ପୃଥିବୀର ଭାରା କେହୁ ଉଶ୍ୱାସ କରନ୍ତେ ।
କଳଙ୍କ ଛାଡ଼ି ଯେ ବେଳେ ନିଷ୍କଳଙ୍କ ହେଲା
ଅଦୃଶ୍ୟମାନ ସମସ୍ତ ଦୃଶ୍ୟ ଯେ ହୋଇଲା ।
ଛାରଖାର ଦିଶୁଥିଲା କୁରାଳର ଶାଳ
ଅପୂର୍ବ ସୁନ୍ଦର ଶୋଭା ଦେଖି ମହୀପାଳ ।
ଶୂନ୍ୟରୁ ଅଇଲେ ତହିଁ ଦିଗପାଳମାନେ
ବିଜୟ ମଘବା ଐରାବତ ଆରୋହଣେ ।

ଅଗସ୍ତି ବୈବସ୍ୱତ ମନୁ ଯେ ବୋଇଲେ
ଇନ୍ଦ୍ରଙ୍କୁ ଯେ କୃଷ୍ଣଙ୍କର ଋଷି ନାଶ କଲେ ।
ସ୍ୱର୍ଗକୁ କେ ସମ୍ପାଦିଲା କହିବ ଋଷି ହେ
ବିଚାରୁ ବିଚାରୁ ମୁହିଁ ପଡ଼ିଛି ସନ୍ଦେହେ ।
ବଦନ୍ତି ଅଗସ୍ତି କୁମ୍ଭଋଷିଙ୍କର ବାଳ
ଶୁଣ ସାବଧାନେ ଆହେ ମନୁ ମହୀପାଳ ।
ରାଗେ ନାଶ କଲେ କୃଷ୍ଣାଙ୍କର ଋଷି ଇନ୍ଦ୍ର
ଅମର ଭୁବନେ ବସି ନେଲେ ଇନ୍ଦ୍ରପଦ ।
ତପିଲୋକ କି ଜାଣନ୍ତି ରାଜ୍ୟର ପାଳନ
ବିଶୃଙ୍ଖଳା ହୋଇଲା ଯେ ଅମର ଭୁବନ ।
ସ୍ୱର୍ଗପୁର ବିଳାସିନୀ ଚଉଷଠି କୋଟି
ନାୟକ ବିହୁନେ ସେହୁ ବିରହରେ କଷ୍ଟି ।
ମୁନିଙ୍କର ନିତ୍ୟକର୍ମେ ଅସ୍ତ ହୋଏ ବେଳ
ଯେ ଯହିଁ ଥାଆନ୍ତି ଚଳିଯାନ୍ତି ଦିଗପାଳ ।
ଦିନେ ପିତାମହ ବିଜେ କଲେ ସ୍ୱର୍ଗପୁରେ
କୃଷ୍ଣାଙ୍କର ବୋଇଲେ ଯେ ତାହାଙ୍କ ଆଗରେ ।
ସ୍ୱର୍ଗରେ ବସିଲୁ ଆମ୍ଭେ ରାଗେ ପୁତ୍ର ଛଳେ
ଆମ୍ଭଙ୍କୁ ଏ ନ ଯୋଗାଇ ଯିବୁ ତପସ୍ଥଳେ ।
ତୁ ଦେବ ଜଗତଜନ ପିତାମହ ଧାତା
ଆନ ଜନେ ଭିଆଣ ତୁ କର ସୃଷ୍ଟି କର୍ତ୍ତା ।
ଇନ୍ଦ୍ରଦେବ ଦଗ୍ଧ ହୋଇଲେ ଯେଉଁଠାରେ
ବେଦବର ଘେନିଲେ ସେ ପାଉଁଶକୁ କରେ ।
କମଣ୍ଡଳୁ ପାଣି ସିଞ୍ଚି ତାହା କଲେ ଲୋଚି
ଶରୀର ସ୍ୱରୂପ କରି ପିତୁଳାଏ ରଚି ।
ଅମୃତ ଦୃଷ୍ଟିରେ ଚାହିଁ ଜୀବନ୍ୟାସ ମନ୍ତ୍ରେ
ପୁରୁବ ସମ୍ଭୁତ ହେଲା ଜୀବଦାନ ଦ୍ୟନ୍ତେ ।
ଯେଉଁପରି ଥିଲା ପୂର୍ବେ ଇନ୍ଦ୍ରର ଆକାର
ଚେତନା ପାଇ ଉଠିଲେ ତହୁଁ ସୁରେଶ୍ୱର ।
ସ୍ୱର୍ଗରେ ତାହାଙ୍କୁ ଦେଲେ ରାଜପଦ ବିହି
ପୂର୍ବର ଚରିତ ଏହିପରି ଯେ ଅଟଇ ।
ତୁ ଯାହା ପୁଚ୍ଛାକଲୁ ହୋ ବୈବସ୍ୱତ ରାଜା
ସ୍ୱର୍ଗେ ରାଜା ହୋଇ ଇନ୍ଦ୍ର ପାଇଲାକ ପୂଜା ।
ସର୍ବ ତେଜ୍ୟା କରିଣ ସେ କୃଷ୍ଣ ମହାଋଷି
ଆକାଶ ଗଙ୍ଗା କୂଳରେ ତପେ ଯାଇଁ ବସି ।
ଦିଗପାଳମାନଙ୍କୁ ଯେ ଦେଖିଣ ଦ୍ରୁପଦ
କୃତକୃତ୍ୟ ହୋଇ ରାଜା ଅନେକ ସାନନ୍ଦ ।
ଦିଗପାଳମାନେ ବିଜେ କଲେ ଯେତେବେଳେ
ଅମର ତେଜିଣ ବିଜେ କଲେ ଆଖଣ୍ଡଳେ ।
ବିଭାର ଯୋଗାଡ଼ ଘେନି ସେ ପାଞ୍ଚାଳ ରାଜା
ଯୁଧିଷ୍ଠିଙ୍କ ପାଦତଳେ କଲେ ଦିବ୍ୟ ପୂଜା ।

ଦେବତାଙ୍କ ସହିତରେ ବ୍ରହ୍ମାଙ୍କୁ ବରିଲା
ଗଣେଶଙ୍କୁ ସେବି ଶୂନ୍ୟ ପୁରୁଷ ସେବିଲା ।
ସମସ୍ତ ଋଷି ବିପ୍ରଙ୍କୁ କଲା ପାଦପୂଜା
ଅଷ୍ଟକୁଳ ନାଗଙ୍କୁ ଯେ ବରିଲାକ ରାଜା ।
ପ୍ରଥମ ଦିବସେ କଲି ବିଭାର ଯୋଗାଡ଼
ଡକାଇଣ ବୀଚକ୍ଷଣ ବିପ୍ର ସୂପକାର ।
ଋଷିମାନଙ୍କୁ ସେ ଗଣ୍ଡା ମାଉଁଷ ଭୁଞ୍ଜାଇ
କନ୍ଦମୂଳ ଦାରାକ୍ଷ ସେ ଯେଝା ମତେ ଦେଇ ।
ଅମୀୟମାନ ଭୋଜନ ରାମକୃଷ୍ଣ ବେନି
ଭୁଞ୍ଜାନ୍ତି ସପତବଂଶ ସୈନ୍ୟ ସଙ୍ଗେ ଘେନି ।
ଅଷ୍ଟାଦଶ ବଂଶ ସୈନ୍ୟ ଘେନିଣ ଅଚ୍ୟୁତ
କରନ୍ତି ସେ କ୍ରୀଡ଼ାରଙ୍ଗ ଆନନ୍ଦେ ଅନନ୍ତ ।
ଦ୍ରୁପଦର ନିକଟସ୍ଥ ଯେତେ ବନ୍ଧୁଗଣେ
ସେ ରାଜାମାନେ ଅଇଲେ ତହିଁ ନିମନ୍ତ୍ରଣେ ।
ବାରତା ପାଇ ଅଇଲେ ସାମନ୍ତ ନୃପତି
ଅନେକ ଦଣ୍ଡ ପଲାଣି ଘେନିଣ ଆସନ୍ତି ।
କୁମ୍ଭମାସ କୃଷ୍ଣପକ୍ଷ ତିଥି ଯେ ଚଉଠି
ହିମଋତୁ ବୃହସ୍ପତିବାର ଘେନି ଘଟି ।
ଉତ୍ତରାଫାଲଗୁନୀ ଋକ୍ଷେ ବୃହସ୍ପତି ବେଳ
ବିଭାକୁ ଧଇଲେ ବିପ୍ରେ ଶୁଭ ଅନୁକୂଳ ।
କୁମ୍ଭ ଲଗ୍ନେ ଦେବ କେହି ପାପଗ୍ରହ ନାହିଁ
ବାଳବ କରଣ ଅନ୍ତେ ବାଣିଜ୍ୟ ଭୋଗ ହିଁ ।
ତାର ବାର ନକ୍ଷତ୍ର ଯେ ଶୁଭାଶୁଭ ଯୋଗ
ମକର ସଂକ୍ରାନ୍ତିଠାରୁ ତିନି ଦିନ ଭୋଗ ।
ତୃତୀୟରେ ଚନ୍ଦ୍ର ବୃହସ୍ପତି ଯେ ଦଶମେ
ଆଦିତ୍ୟଗ୍ରହ ସପ୍ତମେ ମଙ୍ଗଳ ପଞ୍ଚମେ ।
ନବମରେ ଶନୈଶ୍ଚର ଏକାଦଶେ ରାହୁ
ପାପଗ୍ରହ ନାହିଁ ଅନୁକୂଳ କଲେ ତହୁଁ ।
ଯୁଧିଷ୍ଠିରଙ୍କୁ ନବମ ରାଶି ଦ୍ୱିଜାମେଷ
ଭୀମସେନଙ୍କର ଅଟେ ରୋହିଣୀ ଯେ ବୃଷ ।
ଅର୍ଜୁନଙ୍କ ରାଶି କନ୍ୟା ଉତ୍ତରାଫାଲଗୁନୀ
ରେବତୀ ନକ୍ଷତ୍ର ଶୁଭ ନକୁଳର ଘେନି ।
ସହଦେବର ଯେ ଶତଭିଷା କୁମ୍ଭରାଶି
ଜନ୍ମ କର୍ମ ଆଦି ସର୍ବ ପାତକ ବିନାଶି ।
ମଙ୍ଗଳ ବିଧି କରାନ୍ତି ମିଳି ପୁରୋହିତେ
କୁଙ୍କୁମ ରଜନୀ ଲେପ କରନ୍ତି ଯେ ଗାତ୍ରେ ।
ଏକେକୁ ତହିଁ ଆରେକ ହାସ୍ୟ ପରିହାସେ
ମଙ୍ଗଳ ଉତ୍ସବ ହୁଏ ମନର ହରଷେ ।
ଏ ବିଧିରେ ଅପ୍ରମିତ ଜାତ କୁତୁହଳ
ଦେବ ମାନବ ହୋଇବେ ତହୁଁ ସର୍ବମେଳ ।

ଗଙ୍ଗାଜଳରେ ପଶିଣ ପଖାଳନ୍ତି କାୟ
ନଦୀଯାକ ହେଲା ଯହୁଁ କୁଙ୍କୁମର ପ୍ରାୟ ।
ଏସନକ ଉତ୍ସବ ସେ ଦ୍ରୁପଦର ପୁରୀ
ଦେବ ଆସନେ ବସନ୍ତି ତହିଁ ନର ନାରୀ ।
ବହୁତ ଜନ ମଙ୍ଗଳ ରସ ଗୀତ ଗାଇ
ଦେବ ଦେବୀଙ୍କୁ ସୁଗନ୍ଧ ଲେପନ କରାଇ ।
ବର କନ୍ୟାକୁ କରନ୍ତି ସେଠାରେସୁବେଶ
ଦ୍ରୌପଦୀଙ୍କୁ ପଚାରନ୍ତି ମହାମୁନି ବ୍ୟାସ ।
ଅଛନ୍ତି ଏଥେ ପାଣ୍ଡବ ଏ ପାଞ୍ଚ ମୂରତି
ଏହାଙ୍କ ମଧ୍ୟେ କାହାକୁ ବଳଇ ତୋ ମତି ।
ତୁମ୍ଭେ ବ୍ରହ୍ମବେତ୍ତା ଗୁରୁ ପରମ ଯେ ଗୁରୁ
ତୁମ୍ଭର ଛାମୁରେ ମିଥ୍ୟା କେବା କହିପାରୁ ।
ପ୍ରତ୍ୟକ୍ଷ ଅଛନ୍ତି ଏତ ମୋର ବାପ ମାଏ
ପାଞ୍ଚହେଁ ଦିଶନ୍ତି ମୋତେ ଏକା ଇନ୍ଦ୍ର ପ୍ରାୟେ ।
ବ୍ୟାସ ବୋଇଲେ ଶୁଣିଲ ତୁମ୍ଭେ ତ ପ୍ରତ୍ୟକ୍ଷ
ଆମ୍ଭର ବଚନ ତୁମ୍ଭେ କହିଥିଲ ମିଛ ।
ଦ୍ରୁପଦ ବୋଇଲେ ତୁମ୍ଭେ ପ୍ରତ୍ୟକ୍ଷ ଦେବତା
କେହୁ ନିନ୍ଦା କରିପାରେ ତୋର ଦିବ୍ୟକଥା ।
ବ୍ୟାସଙ୍କ କୋଳେ ବସିଲେ ପଣ୍ଡୁ ପଞ୍ଚପୁତ୍ରେ
ମହାବାକ୍ୟ ଉଚ୍ଚାରନ୍ତି ଧୌମ୍ୟ ପୁରୋହିତେ ।
ଦେଶ କାଳ ବାକ୍ୟ ଆଗ କରନ୍ତି ପଠନ
ବିପ୍ର ଦେବତାଙ୍କୁ ତହିଁ କରି ନିମନ୍ତ୍ରଣ ।
ରାମଶିଳା ରସ ଆଦି ନାନା ତୀର୍ଥପାଣି
ପାଣ୍ଡବ ଦ୍ରୌପଦୀର ଶିରେ ନିହୁଡ଼ିଲ ଆଣି ।
ବ୍ରହ୍ମା ବରଣ ଆବର କୁଳ ପୁରୋହିତ
ପାତାଳର ଅଷ୍ଟକୁଳ ନାଗ ଦଇବତ ।
ଶଙ୍ଖ ପଦ୍ମ ମହାପଦ୍ମ ଅନନ୍ତ ତକ୍ଷକ
କର୍କୋଟକ ବାସୁକି ଯେ ଆବର କୁଳିକ ।
ସଂକଳ୍ପ ବାକ୍ୟରେ ଯହୁଁ ସୀଉକାର କରି
ସମସ୍ତ ଆନନ୍ଦ ବେଦଧ୍ୱନିକି ଉଚ୍ଚାରି ।
ହସ୍ତରେ ବନ୍ଧନ କଲେ କଉତୁକ ସୂତା
କୁଶ ବନ୍ଧନ ଆବର କାନ୍ଧରେ ପଇତା ।
ଦୁର୍ବାଙ୍କୁର ବର କୋଳି ପତ୍ର ତହିଁ ଛନ୍ଦି
ବରକନ୍ୟାଙ୍କ କମରମଣି ବନ୍ଧେ ବାନ୍ଧି ।
ଗ୍ରହପୂଜା ଗ୍ରହ ଶାନ୍ତି କଲେ ଗ୍ରହମନ୍ତ୍ରେ
ଗୋତ୍ରମାନ ଉଚ୍ଚାରିଲେ ତହିଁ ପୁରୋହିତେ ।
ଆଦିତ୍ୟ ଗୋତ୍ର କଶ୍ୟପ ସୋମଅତ୍ର ଗୋତ୍ର
ମଙ୍ଗଳର ଅଟଇ ଯେ ଭରଦ୍ୱାଜ ଗୋତ୍ର ।
ବୁଧର ଆତ୍ରେୟ ଗୋତ୍ର ଗୁରୁଅଙ୍ଗ ରସ
ଶୁକ୍ରର ଗୋତ୍ର ଭାର୍ଗବ ଭୃଗୁଋଷି ଶିଷ୍ୟ ।

ଅଟଇ କଶ୍ୟପ ଗୋତ୍ର ସୂର୍ଯ୍ୟ ଶିଷ୍ୟ ଶନି
ରାହୁର ଯେ ପେଠୀନସି କେତୁର ଜୈମିନୀ ।
ବ୍ରହ୍ମାର ଜନକ ଗୋତ୍ର ବରୁଣର ଜଳ
ଅଷ୍ଟକୁଳ ନାଗଙ୍କର ଗୋତ୍ର ଯେ କପ୍‌ପଳ ।
ଅଗ୍ନି ଦେବତାର ଗୋତ୍ର ଋଷି ବୃହଧ୍ୱଜ
ଗ୍ରାମ ଦେବତାର ଗୋତ୍ର ଅରୀକ୍ଷିତ ଦ୍ୱିଜ ।
ସୋମଗୋତ୍ରୀ ପାଣ୍ଡବ ଯେ ପ୍ରତୀପ ପ୍ରପୌତ୍ର
ଶାନ୍ତନୁର ପୌତ୍ର ପଣ୍ଡୁ ରାଜାଙ୍କର ପୁତ୍ର ।
ଉତ୍ତାନ ରାଜା ପ୍ରପୌତ୍ରୀ ଆତ୍ରେୟସ ଗୋତ୍ରୀ
ପୃଷତ ପୌତ୍ର ଦ୍ରୌପଦୀ ଦ୍ରୁପଦର ପୁତ୍ରୀ ।
ଏମନ୍ତ ଉଭୟ ଗୋତ୍ର ଉଚ୍ଚାରିଲେ ମୁନି
ଜଗନ୍ନାଥ କଲେ ଦେବଦତ୍ତ ଶଙ୍ଖ ଧ୍ୱନି ।
ନୃତ୍ୟ ଆରମ୍ଭେ ଖଟନ୍ତି ଚଞ୍ଚଳା କାମିନୀ
ହୁଳହୁଳି ଶବଦ ଯେ ସୁମଙ୍ଗଳ ଧ୍ୱନି ।
ମାହେନ୍ଦ୍ର ଯୋଗ ଆବର ଶୁଭଲଗ୍ନ ବେଳା
ସତ୍ୟବାକ୍ୟ ଉଚ୍ଚାରନ୍ତି ଅଭିନବ ବାଳା ।
ବର କନ୍ୟାଙ୍କର କର ଧରି ପୁରୋହିତେ
କରପତ୍ର ଏକଯୋଗ କରନ୍ତି ଏ ମନ୍ତ୍ରେ ।
ଦ୍ରୌପଦୀ ଦେବୀଙ୍କୁ ଜ୍ୟେଷ୍ଠ କନିଷ୍ଠ ଅଙ୍ଗୁଷ୍ଠି
ଶ୍ରୀକରେ ସଂଯୋଗ କଲେ କୁଶରେ ଯୁଧିଷ୍ଠି ।
ଦ୍ରୌପଦୀ ଦେବୀଙ୍କ କର ତର୍ଜନୀ ଅଙ୍ଗୁଳି
ଶ୍ରୀକରେ କୁଶ ସଂଯୋଗ କଲେ ଭୀମାବଳୀ ।
ଦ୍ରୌପଦୀ ଦେବୀଙ୍କ କର ମଧ୍ୟମ ଅଙ୍ଗୁଷ୍ଠି
ଶ୍ରୀକରେ କୁଶ ସଂଯୋଗ କଲେକ କିରୀଟୀ ।
ଦ୍ରୌପଦୀ ଦେବୀଙ୍କ ଅନାମିକା ଯେ ଅଙ୍ଗୁଳ
ଶ୍ରୀକରେ କୁଶ ସଂଯୋଗ କଲେକ ନକୁଳ ।
ଦ୍ରୌପଦୀ ଦେବୀ କନିଷ୍ଠ ଅଙ୍ଗୁଳିର ପବ
ଶ୍ରୀକରେ କୁଶ ସଂଯୋଗ କଲେ ସହଦେବ ।
ପାଞ୍ଚ ଅଙ୍ଗୁଳିକୁ ପାଞ୍ଚପାଣ୍ଡବଙ୍କ ହାତେ
ମନ୍ତ୍ରେ କୁଶ ଯୋଗ କଲେ ଧୌମ୍ୟ ପୁରୋହିତେ ।
ବ୍ରହ୍ମାଣ୍ଡ ଉଛୁଳେ ଶଙ୍ଖଧ୍ୱନି ଶୁଭବାଣୀ
ଆକାଶୁଁ କୁସୁମ ବୃଷ୍ଟି କଲେ ବଜ୍ରପାଣି ।
ଆକଶେ ଶୁଭିଲା ଯହୁଁ ପାଣ୍ଡବଙ୍କ ବିଭା
ଦେବସ୍ତିରୀଏ ବୋଇଲେ ଚାଲ ଦେଖିଯିବା ।
ସର୍ବଅଳଙ୍କାର ଘେନି ସୁବେଶ ବସନେ
ଦେବସ୍ତିରୀଏ ଦେଖନ୍ତି ରହିଁ ଅନ୍ତର୍ଦ୍ଧାନେ ।
ଶୂନ୍ୟରେ ଥାଇ ଦେଖନ୍ତି ସକଳ ସାଧବୀ
ହୁଳହୁଳି ଧ୍ୱନି କଲେ ମିଳି ସର୍ବଦେବୀ ।
ସାଧୁ ସାଧୁ ଧ୍ୱନି ଯହୁଁ କଲେ ଦେବସ୍ତିରୀ
ମଧ୍ୟଭୁବନେ ମଙ୍ଗଳ କଲେ ଶୁଭକାରୀ ।

ବ୍ରହ୍ମାଙ୍କର ଭାରିଯା ଯେ ବ୍ରାହ୍ମଣୀ ସାବିତ୍ରୀ
ରୁଦ୍ରଙ୍କର ଭାରିଯା ଯେ ରୁଦ୍ରାଣୀ ପାର୍ବତୀ ।
ବାସବର ଭାରିଯା ଯେ ଶଚୀ ମହାସତୀ
କୁବେର ଭାର୍ଯ୍ୟା ଅପର୍ଣ୍ଣା ତୁଲ୍ୟ ହୀରାବତୀ ।
ଇନ୍ଦ୍ରଙ୍କର ଭାରିଯା ଯେ ଅଟଇ ରୋହିଣୀ
ଆଦିତ୍ୟ ଭାରିଯା ଛାୟା ମାୟା ଦୁଇରାଣୀ ।
ଅଗ୍ନିଦେବତା ଭାରିଯା ଦୁଇ ସ୍ୱାହା ସ୍ୱଧା
ଆଗମ ପୁରୁଷ ଭାର୍ଯ୍ୟା ମେଧା ସେ ସୁମେଧା ।
ଯମ ଦେବତା ଭାରିଯା କାଳୀ ଯେ କରାଳୀ
ମେଘଙ୍କର ଭାରିଯା ଯେ କୁଣ୍ଡଳୀ ବିଜୁଳୀ ।
ବରୁଣଙ୍କର ଭାରିଯା ସେ ରେବତୀ ରାଣୀ
ବସୁଧା ସୁମତୀ ଘେନି ଏ ତିନି ବହେଣୀ ।
ଏମାନେ ଦକ୍ଷ ନନ୍ଦିନୀ ଅପର୍ଣ୍ଣା ତେଷଠି
ଏହାଙ୍କର ଆୟୁଷ ଯେ ଅଟେ କଳ୍ପ କୋଟି ।
ଏମାନେ ତହିଁ କରନ୍ତି ସାଧୁ ଶୁଭ ବାଞ୍ଛା
ଭାରା ନିବାରଣ କର ମଞ୍ଚ ସ୍ୱର୍ଗ ରକ୍ଷା ।
ଆକାଶେ ମଙ୍ଗଳ ଧ୍ୱନି ଶୁଭେ ଘନ ଘନ
ହୁଳହୁଳି ଧ୍ୱନି ପୂର୍ଣ୍ଣ ଅମର ଭୁବନ ।
ମର୍ତ୍ତ୍ୟଜନମାନେ ଯହୁଁ ଏମନ୍ତ ଶୁଣିଲେ
ସାଧୁ ସାଧୁ ଦ୍ରୁପଦ ଯେ ସମସ୍ତେ ବୋଇଲେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଏତିନି ଭୁବନେ
ମଙ୍ଗଳ ଧ୍ୱନି କରନ୍ତି ସାଧୁଜନମାନେ ।
ଡାହାଣଚର୍ତ୍ତ ଶଙ୍ଖରେ ଜଳ ତିଳ ଦେଇ
ଧୌମ୍ୟ ପୁରୋହିତେ ଦେଲେ ଦ୍ରୁପଦକୁ ନେଇ ।
ଦୁହିତା ପ୍ରଦାନ ତୁହୋ କଲୁ ପାଣ୍ଡବଙ୍କୁ
ଯଉତୁକ ଦିଏ ରାଜା ବିଧାନେ ତାହାଙ୍କୁ ।
ପାଞ୍ଚଙ୍କୁ ଯେ ପାଞ୍ଚଥର କନ୍ୟା ସମର୍ପଣେ
ମହାମନ୍ତ୍ର ଉଚ୍ଚାରନ୍ତି ବେଦୀରେ ବ୍ରାହ୍ମଣେ ।
ଦ୍ରୁପଦ ନୃପତି ଶଙ୍ଖ ଘେନିଣ ଶ୍ରୀହସ୍ତେ
ପାଞ୍ଚଲକ୍ଷ ଧେନୁ ଦେଲେ ଦକ୍ଷିଣା ସହିତେ ।
ଦଶଲକ୍ଷ ହୟ ଦେଲେ ଦଶଲକ୍ଷ ହସ୍ତୀ
ଦଶଲକ୍ଷ ପଦାତିକ ଦଶଲକ୍ଷ ରଥି ।
ଶ୍ରୀହସ୍ତେ ଜଳ ଛାଡ଼ିଲା ପଞ୍ଚାଳେଶ ରାୟେ
ଚୋଖା ଚୋଖା ଅସ୍ତ୍ର ଶସ୍ତ୍ର ଦେଲେ ଶଏ ଶଏ ।
ଯଉତୁକ ଦେଲେ ରୁଦ୍ର ମଣ୍ଡଳ ଯେ ଭୂମି
ପାଞ୍ଚ ସାତ ଯୋଜନ ତ ଦୀର୍ଘ ପ୍ରତି ଜାଣି ।
ଅଳଙ୍କାରେ ଭରିଦେଲେ ଆଣି ସର୍ବବାଳୀ
ତୋଷେ ଦେବ ଦ୍ରୌପଦୀକୁ ପାଞ୍ଚଶତ ଆଳୀ ।
ସୁବର୍ଣ୍ଣ ପଲମ ଦେଲା ପାଞ୍ଚଲକ୍ଷ ଗଢ଼ି
ଧନରତନ ଭଣ୍ଡାର ଦେଲା ଆଣି କାଢ଼ି ।

ପାଞ୍ଚଲକ୍ଷ ଚାମର ଯେ ଅୟୁତେ ଉଦଣ୍ଡ
ବିମଳ ମୟୁରକଣ୍ଠ ଦଣ୍ଡ ଶତଖଣ୍ଡ ।
ପାଞ୍ଚଲକ୍ଷ ଆଳମ୍ଭ ଯେ ଲକ୍ଷେ ଅଶ୍ୱଆର
ତୋତେ ଆଣି ଯଉତୁକ ଦେଲା ଦଣ୍ଡଧର ।
ଏତେକ ଧନ ଯୌତୁକ ଦେଇ ମହୀପାଳ
ଶତସହସ୍ର ପ୍ରଣମି ଧର୍ମ ପଦତଳ ।
ଗୋସାଇଁ ପ୍ରତ୍ୟକ୍ଷେ ତୁମେ ନିରଞ୍ଜନ ଅଂଶ
ଯାହାର ସେବକ ଅଟେ ପ୍ରଭୁ ହୃଷିକେଶ ।
ତାହା ଯଉତୁକ କିସ ଦେବାକୁ ମୋ ଶକ୍ୟ
ଦୁହିତା ଦେଲି ସମର୍ପି ଦୋଷ ମୋ ଉପେକ୍ଷ ।
ଅନେକ ବିନୟୀ ହେଲେ ପାଞ୍ଚାଳେଶ ରାୟେ
ପୁତ୍ରକୁ ଘେନିଣ ପୁଣି ଘଡ଼ଘାଲି ଶୋଏ ।
ଦ୍ରୁପଦର ପଦ୍ମାବତୀ ନାମେ ପାଟରାଣୀ
ଅନେକ ସମ୍ଭାର ଆଣି ଦେଲା ମନ ଜାଣି ।
ପ୍ରାର୍ଥନା ବାକ୍ୟେ ସମର୍ପି ବୋଇଲେ ଦୁହିତେ
କହୁଁ କହୁଁ ଅଶ୍ରୁଜଳ ପୂର୍ଣ୍ଣବେନି ନେତ୍ରେ ।
କ୍ରୋଧଭର ହୋଇ ରାଜା ବୋଲନ୍ତି ଏମନ୍ତ
ଦୁହିତା ହିଁ ଜାତ ନୋହୁ ନୋହୁ କଦାଚିତ ।
ଜ୍ୟେଷ୍ଠ ଶ୍ରେଷ୍ଠ ପୁରୁଷର ଦୁହିତା ହୋଇଲେ
ଭୃତ୍ୟର ଭୃତ୍ୟ ହୋଇ ସେ ତାକୁ ଦାନ ଦେଲେ ।
ଆପଣାର ବଳବୀର୍ଯ୍ୟ ସମସ୍ତ ତୁଟଇ
ଦୁହିତା ଜାତ ହୋଇଲେ ସକଳ ବୁଡ଼ଇ ।
ଦୁହିତା ଜାତ କରନ୍ତି ଯେବଣ ଭାରିଯା
ତାହାର ସହିତ ତାକୁ କରିବ ବା ତେଜ୍ୟା ।
ତାହା ଶୁଣି ବୋଇଲେ ସେ ବ୍ୟାସ ମହାରଷି
ବିଭାକାଳେ କ୍ରୋଧ ଜାତ ହୁଏ ଅହର୍ନିଶି ।
ଅନାଦି ସରସ୍ୱତୀ ଯେ ଆବର ଅପୂର୍ଣ୍ଣା
ଉତ୍ପତ୍ତି ପ୍ରଳୟ ସ୍ଥିତି ତାହା ତହୁଁ ସିନା ।
ଆଦି ବ୍ରହ୍ମା ଅଂଶେ ଜାତ ଦକ୍ଷ ପ୍ରଜାପତି
ଷାଠିଏ ସହସ୍ର କନ୍ୟା ତା ଯଜ୍ଞୁ ଉତ୍ପତ୍ତି ।
ଦିଗପାଳମାନଙ୍କୁ ସେ ଦେଲା ସବୁ ବାଣ୍ଟି
ଧର୍ମ ଦେବତାଙ୍କୁ ଦେଲା କନ୍ୟା ଦଶଗୋଟି ।
ମତି ଧୃତି କାନ୍ତି ଶାନ୍ତି କ୍ଷମା ତୁଷ୍ଟି ପୁଷ୍ଟି
ମେଧା ଶ୍ରଦ୍ଧା ସୁମେଧା ଏ କନ୍ୟା ଦଶଗୋଟି ।
ଦ୍ରୁପଦ ତୁ ସାବଧାନେ ଶୁଣ ତୋତେ କହୁ
ଶୂନ୍ୟ ପୁରୁଷେ ଉତ୍ପତ୍ତି ତାଙ୍କର ଯେ ତହୁଁ ।
ମତିଠାରୁ ଆବର୍ତ୍ତକ ମେଘ ଜାତ ହେଲା
ଧୃତିଠାରୁ ସମ୍ବର୍ତ୍ତକ ମେଘ ଜାତ ହେଲା ।
କାନ୍ତିଠାରୁ ଦ୍ରୋଣ ମେଘ ଶାନ୍ତିରୁ ପୁଷ୍କର
କ୍ଷମା ପୁଷ୍ଟି ତୁଷ୍ଟଠାରୁ ଜାତ ଜ୍ୟୋତିଷ୍କର ।
ମେଧା ସୁମେଧାରୁ ଜନ୍ମ ବରୁଣ ସମ୍ଭୂତ
ଶ୍ରଦ୍ଧା ଦେବୀଠାରୁ ହେଲା ଷଡ଼ରତୁ ଜାତ ।
ଈଶ୍ୱର ଦେବତା ହସ୍ତେ ଦାନ କଲା ସତୀ
ଆଦିଶକ୍ତି ଏ ତ ତହୁଁ ହେଲେ ଉତପତ୍ତି ।
କଶ୍ୟପଙ୍କୁ ଦେଲା ତେରଗୋଟି ଯେ କୁମାରୀ
ମହାବ୍ରହ୍ମବେତ୍ତା ଚରାଚର ଅଧିକାରୀ ।
ଦିତିଠାରୁ ଉତପତ୍ତି ହେଲେ ଦେବତାଏ
ଅଦିତିଠାରୁ ପବନ ଦୈତ୍ୟ ଜାତ ହୁଏ ।
କଦ୍ରୁଠାରୁ ଉତପତ୍ତି ହୋଇଲେକ ନାଗେ
ବିନତାଠାରୁ ଗରୁଡ଼ ଆଦି ଯେ ବିହଗେ ।
କାଳଠାରୁ ଜାତ କାଳ କାଳକେୟଗଣ
ଦାନୟଠାରୁ ପର୍ବତ କଉଣପଗଣ ।
ପ୍ରଧାଠାରୁ ଜାତ ହେଲେ ଗନ୍ଧର୍ବ ସମସ୍ତେ
ଆହାର ସମ୍ଭୂତ ଯକ୍ଷ ରାକ୍ଷସ ହିଁ ଯେତେ ।
ମନୁଠାରୁ ଜାତ ହେଲେ ମାନବୀ ଯେତେକ
ଦନୁଠାରୁ ଉପୁଜିଲେ ଦାନବ ଅନେକ ।
ସିଂହିକା ସୁତ ଅସୁର ରାହୁ ମହାବଳ
ସୁରଭିଠାରୁ ଜନମ ଗୋ ମାତା ସକଳ ।
ଅରିଷ୍ଟିଠାରୁ ଯେତେକ ପଶୁ ଜାତ ହେଲେ
କ୍ରୋଧାଠାରୁ ଅପସରାମାନେ ଜନମିଲେ ।
ବ୍ୟାସ ବୋଇଲେ ବାବୁରେ ଶୁଣ ତୁ ଦ୍ରୁପଦ
ଦକ୍ଷ ପ୍ରଜାପତିର ଏ ସକଳ ସମ୍ପଦ ।
କରପତ୍ର ଯୋଡ଼ି କହେ ଦ୍ରୁପଦ ନୃଦେବ
କଥାଏ କହିବି ମୋତେ କୋପ ନ କରିବ ।
ସତ୍ୟ କନ୍ୟା ହେତୁ ପ୍ରଜାପତି ନାଶ ଗଲା
କନ୍ୟା ଜାତ କରିବାର ଫଳ ସେ ପାଇଲା ।
ମାର୍କଣ୍ଡ କହିଲେ କଥା ବଢ଼ିବ କହନ୍ତେ
କନ୍ୟାକୁ ସମର୍ପି ରାଜା ଯାଅ ଯା ତୁରିତେ ।
ଦ୍ରୁପଦ ବେଦୀର ପୂର୍ବଦିଗେ ଉଭା ହେଲେ
କନ୍ୟା ଦଶଦୋଷ କ୍ଷମା କରିବ ବୋଇଲେ ।
ପାଣ୍ଡବଙ୍କ ମୁଖ ଚାହିଁ ଦ୍ରୁପଦ କହିଲେ
ବେଦୀରୁ ଓହ୍ଲାଇ ତହୁଁ ସ୍ୱପୁରକୁ ଗଲେ ।
ଚଳିଲେ ଦ୍ରୁପଦ ତହୁଁ ଆପଣା ଆଶ୍ରମ
ଧୌମ୍ୟ ପୁରୋହିତ ତହୁଁ କଲେ ଲାଜା ହୋମ ।
ଆୟୁଷକୁ ଆରୋପିଲା ଲାଜାର ଆହୁତି
ଘୃତ ସଂଯୋଗ ବହ୍ନିକୁ କଲେକ ତୃପତି ।
ଧୌମ ପୁରୋହିତ ମହାଜ୍ଞାନୀ ଯେ ଅଟନ୍ତି
ଅଗ୍ନିଙ୍କ ଜିହ୍ୱାରେ ନେଇ ଦେଲେକ ଆହୁତି ।
ଉଚ୍ଛିଷ୍ଟ ଘୃତ ଦେଲେ ସେ ବରକନ୍ୟା ହସ୍ତେ
କନ୍ୟା ଭୁଜ ଧରି ଗ୍ରାସ କଲେ ପଞ୍ଚଭ୍ରାତେ ।

ହୋମ ଘୃତ ଗ୍ରାସ ତହିଁ ଦ୍ରୌପଦୀ କରନ୍ତି
ଆଚମନ ସାରି ପୁଣି ଆସ୍ଥାନେ ବସନ୍ତି ।
ନଟ ଭାଟ ଭିକ୍ଷୁ ଛୋଟା କୁଜା କଣା ଜନେ
ଅନେକ ଦାନ ଦେଲେ ସେ ଦରିଦ୍ର ବ୍ରାହ୍ମଣେ ।
ଅପାର ଧନ ଯେ ଯଉତୁକ ପାଇଥିଲେ
କନ୍ୟାର ନିମନ୍ତେ ତାହା ବିପ୍ରେ ଦାନ ଦେଲେ ।
ଗୋଧନ ଦାନ ଦେଇ ସେ ଅସ୍ତ୍ର ଅଳଙ୍କାର
ସମସ୍ତ ଦାନ ଦେଲେକ ପଣ୍ଡୁର କୁମର ।
ଦ୍ରୌପଦୀ ଦେବୀର ମାତା ଅଟେ ପଦ୍ମାବତୀ
ଲକ୍ଷ କନ୍ୟା ଘେନି ବର ଭ୍ରମେ ଅର୍ଘ୍ୟଦ୍ୟନ୍ତି ।
କରିଣ ଅନେକ ଧନ ଜନ ଆୟୁ ଇଚ୍ଛା
ଫଳ ଶ୍ରୁତିରେ ପୂର୍ଣ୍ଣ ହୋଇବ ମନୋବାଞ୍ଛା ।
ପ୍ରତ୍ୟକ୍ଷେ ଯୁଧିଷ୍ଠିଙ୍କର ନିରଞ୍ଜନ ଦୀକ୍ଷା
ଶୁଣି ଜନେ ମୁକ୍ତ ହେଲେ ସିଦ୍ଧ ହେବ ବାଞ୍ଛା ।
ଅନେକ ଜନ୍ମର ପାପ ଦୁଃଖରାଶି ଖଣ୍ଡ
ଆଧି ବ୍ୟାଧି ଆଦି ଦୋଷ ଅଟୁ ଯମଦଣ୍ଡ ।
ଆପଦ ବିପଦମାନ ସବୁ ପାର ଯାଉ
ଦରିଦ୍ର ଦୋଷ ଯେ ଯାଇ ଶତ୍ରୁ କ୍ଷୟ ହେଉ ।
ଶୁଭବେଳେ ଶୁଭକ୍ଷଣେ ଶୁଭ ଅନୁକୂଳେ
ରାଜା ମୁଖେ ଯଶ ହେଉ ସମସ୍ତ କୁଶଳେ ।
ଯେହୁ ପଢ଼ନ୍ତି ଶୁଣନ୍ତି ଏହା ସାବଧାନେ
କୋଟି ଜନ୍ମ ପାପଖଣ୍ଡ ରହେ ପୁଣ୍ୟସ୍ଥାନେ ।
ଇହଲୋକ ପରଲୋକ ଲଭଇ ମୁକତି
ଏ ଶ୍ରୀ ମହାଭାରତର ଏହି ଫଳଶ୍ରୁତି ।
ମୁହିଁ ବାଞ୍ଛା କରି କହେ ସଂସାରଜନଙ୍କୁ
ସମସ୍ତେ ଆଶା କରିଛୁ ବୈକୁଣ୍ଠ ପୁରକୁ ।
ସମସ୍ତ ଜନ ଆପଦମାନ କ୍ଷୟ ଯାଉ
ଆୟୁ ପୁତ୍ର ଧନ ମନବାଞ୍ଛା ସିଦ୍ଧ ହେଉ ।
କଳିକାଳ ଦୁରାପଦ ଯହୁଁ କଟାକିଲା
ତା ଦର୍ପ ଧ୍ୱଂସନେ ଜଗନ୍ନାଥ ଆଜ୍ଞା ଦେଲା ।
ନ ପଢ଼ି ପଣ୍ଡିତ ମୁହିଁ ଆଜ୍ଞା ପରମାଣେ
ଗ୍ରନ୍ଥର ଅଦ୍ୟେ ରଚିଲି ଶାରଳା ପ୍ରସନ୍ନେ ।
ସେ ଯାହା କହନ୍ତି ମୁହିଁ ନୁହଁଇ ସେ ମତ
ମୂର୍ଖ ହୋଇ ଲେଖଇ ମୁଁ ନୁହଁଇ ପଣ୍ଡିତ ।
ଯେ ଅବା ଭ୍ରାନ୍ତି ହୁଅଇ ଯହିଁ ମୋର ମନେ
ଆପଣେ ପୂରାଇ ତାହା ଶ୍ରୀହସ୍ତ ଲିଖନେ ।
ସ୍ୱରୂପ ଦେଖାଇ ଦେଲା ମୋତେ ଚିହ୍ନବର୍ଣ୍ଣ
ମୋତେ କାହୁଁ ଦୃଶ୍ୟହନ୍ତା ଏ ଦିବ୍ୟଲିଖନ ।
ଶ୍ରୀଚଣ୍ଡୀ ଶାରଳା ପାଦେ ବିନୟେ ସ୍ତୁତିଓେ
ଶତସହସ୍ର ପ୍ରମାଣ ମୋର ନିତ୍ୟେ ନିତ୍ୟେ ।
ବିକଶିତ ଶତଦଳ କମଳ ଚରଣ
ଇହ ପରଲୋକ ବର ଦାନବ କାରଣ ।
ଭକତଜନ ବତ୍ସଳା ଦେବୀ ମହାମାୟେ
ତୋହର ଶରଣ ମୁହିଁ ଲୋଟଇ ତୋ ପାୟେ ।
କହିଲି ପାଣ୍ଡବ ବିଭାଘର ଅପ୍ରମାଦେ
ଏହି ଆଦ୍ୟପର୍ବ ସର୍ବମଙ୍ଗଳା ପ୍ରସାଦେ ।
ତୁଳସୀର ବଲ୍ଲଭ ଶ୍ରୀଚରଣରେ ଦାସ
ବଦନ୍ତି ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

—o—

## ପାଣ୍ଡବଙ୍କ ଅର୍ଦ୍ଧରାଜ୍ୟ ଲାଭ

ବଦନ୍ତି ଅଗସ୍ତି ଶୁଣ ମନୁ ବୈବସ୍ୱତ
କରନ୍ତି ଅଗ୍ନି ଶୀତଳ କର୍ମ ସମାପତ ।
କନ୍ୟାଙ୍କ ହସ୍ତ ଧରିଣ ପ୍ରଭୁ ଦେବରାୟେ
ଦ୍ରୁପଦ ରାଜାଭୁବନେ କଲେକ ବିଜୟେ ।
ଅନ୍ତଃପୁରରେ ମଣୋହି ଘର ସନ୍ନିଧାନେ
ପ୍ରବେଶ ହୋଇଲେ ତହିଁ ଯାଇ ଧର୍ମସ୍ଥାନେ ।
ଜଗନ୍ନାଥଙ୍କ ଭାରିଯା ସହସ୍ରେକ ବାଳୀ
ସର୍ବ ଅଳଙ୍କାର ଘେନି କରେ ଅର୍ଘ୍ୟଥାଳୀ ।
ଘେନିଲେ ଯେ ମାଣିକ୍ୟରେ ଦୀପ ନିଜ କରେ
ଅର୍ଘ୍ୟ ବନ୍ଦାନ୍ତି ସେ ବର କନ୍ୟାଙ୍କର ଶିରେ ।
ଅନେକ ମଙ୍ଗଳ ବାଞ୍ଛା କରି ସର୍ବବାଳୀ
ଦ୍ୱାରକା ସ୍ତିରୀ ମଙ୍ଗଳ ଧ୍ୱନି ଉଚ୍ଚେ କରି ।
ଦ୍ରୁପଦ ରାଜା ଅନେକ ଭକ୍ତି ତାଙ୍କୁ କଲେ
କୁଟୁମ୍ବ ଘେନି ଚରଣେ ପ୍ରଣମି ଶୋଇଲେ ।
ଗୁରୁଜନ ବିଜେ କଲେ ଅନେକ ମୋ ଭାଗ୍ୟ
ପାଣ୍ଡବ ଦର୍ଶନ କଲେ ବିଷ୍ଣୁ ଅନୁରାଗ ।
ସ୍ନାନ ଭୋଜନ କରିଲେ ଦ୍ରୁପଦର ପୁରେ
କହିଲେକ ଯୁଧିଷ୍ଠିଙ୍କୁ ପ୍ରଭୁ ନୀଳାମ୍ବରେ ।
ଆମ୍ଭେ ଏବେ ଯାଉଅଛୁ ଦ୍ୱାରକା ଭୁବନେ
କନ୍ୟା ଘେନି ତୁମ୍ଭେ ଯିବ ପଞ୍ଚଦଶ ଦିନେ ।
ଯୁଧିଷ୍ଠି ବୋଇଲେ ଦେବ ବିଜେ କର ଯିବା
ଯୋଗାନନ୍ଦ ପୁରୁଷ ତୁ ଦୟା କରିଥିବା ।
ଗୋବିନ୍ଦ ଯେ ପ୍ରଣିପାତ ଯୁଧିଷ୍ଠିଙ୍କ ପାଦେ
ଉଠି କୋଳ କରି ସ୍ୱାମୀ ପରମ ଆନନ୍ଦେ ।
ଅର୍ଜ୍ଜୁନ ନକୁଳ ଭୀମ ସହଦେବ ଘେନି
ଶ୍ରୀରାମ କୃଷ୍ଣଙ୍କ ପାଦେ କରନ୍ତି ଦୟିନୀ ।
ଦ୍ରୁପଦ କଲେ ଅନେକ ପାଦେ ଅର୍ଘ୍ୟପୂଜା
ଗରୁଡ଼ ପିଠିରେ ବିଜେ କଲେ ଦେବରାଜା ।
କନ୍ୟାଗଣ ଯାଦବଙ୍କୁ ଘେନି ଦେବ ହରି
ଦ୍ରୁପଦ ପୁରୁ ଗଗନମାର୍ଗେ ଗଲେ ଚଳି ।

ଯେତେ ଦୂରେ ଦିଶୁଛନ୍ତି ଚାରୁଧ୍ୱଜ ଚିହ୍ନ
ହୁଳହୁଳି ଦେଉଛନ୍ତି ପୁର ନାରୀଜନ ।
ଅଦୃଶ୍ୟ ହୋଇଲେ ସ୍ୱାମୀ କଲେକ ଗମନ
ନିଜପୁରେ ଆସିବାକୁ ନ ବଳେ କି ମନ ।
ନାମ ଧରନ୍ତେ ଯାହାର ଗତି ମୁକ୍ତି ପାଇ
ଦ୍ରୌପଦୀ ପ୍ରସାଦେ ତାଙ୍କୁ ସ୍ୱଚକ୍ଷୁରେ ଚାହିଁ ।
ସାଧୁରେ ପାଞ୍ଚାଳୀ ତୁହି ଦ୍ରୁପଦ ଦୁଲାଳୀ
ସାଧୁ ତୋ ଜୀବନ ରାଜା ଥିଲୁ ପ୍ରତିପାଳି ।
ଦ୍ରୌପଦୀକୁ ପ୍ରଦାନ ତୁ କଲୁ ଯେ ଯାହାକୁ
ଜଗନ୍ନାଥ ନମସ୍କାର କରନ୍ତି ତାହାଙ୍କୁ ।
ତହିଁରୁ ଅଧିକ ମୋର ପାଣ୍ଡବ ଦର୍ଶନେ
କରନ୍ତି ସେ କନ୍ୟାମାନେ ଯେ ଯାହା ଭୁବନେ ।
ଆଚମନ ସାରି ଭୁଞ୍ଜି କର୍ପୂର ତାମ୍ବୁଳ
ଚନ୍ଦ୍ରଶାଳା ପୁରେ ବିଜେ ପାଣ୍ଡବଙ୍କ ବାଳ ।
ପାଞ୍ଚଗୋଟି ପଲ୍ୟଙ୍କରେ ବିଜେ ପାଞ୍ଚଭାଇ
ଦ୍ରୌପଦୀ ପାଞ୍ଚଙ୍କ ପୁରେ ବିଜେ କଲେ ଯାଇଁ ।
ନିଦ୍ରା ଆଳସ୍ୟରେ ସୁଖେ ପାହିଲାକ ରାତି
ରାତି ଥାଉଁ ଉଠିଗଲେ ଦ୍ରୌପଦୀ ଝଟତି ।
ସ୍ନାନ ନିତ୍ୟକର୍ମ ବେଗେ ସାରି ଧର୍ମସୁତେ
ଉତ୍ସବରେ ବନ୍ଦାପନା କଲେ ତୋଷ ଚିତ୍ତେ ।
ଚତୁର୍ଥ ଦିବସ ହେଲା ଚଉଠି ରଜନୀ
ନଗରେ ଉତ୍ସବ କଲେ ଦ୍ରୌପଦୀଙ୍କୁ ଘେନି ।
କର୍ଦ୍ଦମ ଉତ୍ସବ କଲେ ପଞ୍ଚମ ଦିବସେ
ଖେଳନ୍ତି ସେ କୁତୂହଳେ କର୍ଦ୍ଦମରେ ରସେ ।
ନିଦ୍ରାରେ ଶୟନେ ବିଜେ କଲେ ସର୍ବଜନ
ପଞ୍ଚ ଉତ୍ସବ କରାଇ ଯେ ବିଧି ବିଧାନ ।
ସପ୍ତମ ଦିବସେ ରଜ ଉତ୍ସବକୁ ସାରି
ଅଷ୍ଟମ ଦିବସେ ଅଷ୍ଟମଙ୍ଗଳାଙ୍କୁ ବରି ।
ବରବେଶ ଛାଡ଼ି ଆସି ଦ୍ରୁପଦ ଭୁବନୁ
କୁରାଳ ଶାଳେ ରହିଲେ କୁନ୍ତୀଙ୍କର ସୁନୁ ।
କୁନ୍ତୀ ପରଷନ୍ତି ଅନ୍ନ ଭୁଞ୍ଜି ପଞ୍ଚଭ୍ରାତ
ପାଞ୍ଚାଳ ଦେଶେ ହୋଇଲେ ପାଣ୍ଡବେ ଉଦିତ ।
ରାମକୃଷ୍ଣ ଗଲେ ତହିଁ ଦ୍ୱାରକା ଭୁବନେ
ବଳରାମ ବୋଇଲେ ହେ ଶୁଣ ଜନାର୍ଦ୍ଦନେ ।
ଆମ୍ଭେ ଯିବା ନା ବାରୁଣଶବନ୍ତ ପୁରବାଟେ
କହିବାନା ଏ ବାରତା ରାଜା ଧୃତରାଷ୍ଟ୍ରେ ।
ବଳରାମଙ୍କ ବଚନେ ସାନନ୍ଦେ ଶ୍ରୀହରି
ବିଜୟ ଶ୍ରୀ ନାରାୟଣ ହସ୍ତିନା ନଗରୀ ।
ଜଣାଇଲେ ସେ ସଞ୍ଜୟ ରାଜା ଧୃତରାଷ୍ଟ୍ରେ
ଦ୍ୱାରକା ସମ୍ପଦ ଘେନି ବିଜେ ରାମକୃଷ୍ଣେ ।

ଦେଖିଣ ଆସ୍ଥାନ ତେଜ୍ୟା କଲେ ବେଗେ ରାଜା
ଶ୍ରୀରାମ କୃଷ୍ଣଙ୍କ ପାଦେ କଲା ଦିବ୍ୟ ପୂଜା ।
ଶତସହସ୍ର ତାହାଙ୍କ ଚରଣେ ପ୍ରଣମି
ବୋଇଲେ ଅନେକ ପୁଣ୍ୟ ଅର୍ଜିଲି ଭୋ ସ୍ୱାମୀ ।
କାହିଁକି ବିଜୟ ଦେବ ବନ୍ଧୁ ମିତ୍ର ଘେନି
ରାଜା ଉଗ୍ରସେନ ଆଉ ରାମକୃଷ୍ଣ ବେନି ।
ଶୁଣ ହେ ରାୟେ ବୋଲନ୍ତି ପ୍ରଭୁ ନୀଳାମ୍ବରେ
ଆମ୍ଭେ ଥିଲୁ ଯେ ଦ୍ରୁପଦ ରାଜ୍ୟେ ସ୍ୱୟମ୍ବରେ ।
ଅର୍ଜ୍ଜୁନ ବିନ୍ଧିଲା ଲାଖି ଲକ୍ଷେ ରାଜା ଜିଣି
ଦ୍ରୌପଦୀକୁ ବିଭା ହେଲେ ପାଞ୍ଚଭାଇ ପୁଣି ।
ଧୃତରାଷ୍ଟ୍ର ବୋଇଲେ ହୋ ଶୁଣ ନୀଳାମ୍ବର
ବଡ଼ ଅସମ୍ଭବ କଥା କହ ମୋ ଆଗର ।
ଲକ୍ଷେ ରାଜା ପୂରିଥିଲେ ଦ୍ରୁପଦର ପୁରେ
ଅସମ୍ଭବ ଲାଖ ପାତିଥିଲେ ସେ ସମରେ ।
ପାଣ୍ଡବେ ତ ପୋଡ଼ି ମଲେ ଜତୁଘରେ ପଶି
ଅର୍ଜ୍ଜୁନ ବିନ୍ଧିଲେ ଲାଖି କେମନ୍ତେ ପ୍ରକାଶି ।
ରାମ ବୋଇଲେ ହୋ ଶୁଣ ଅମ୍ବିକାର ସୁତ
କେହି ଜାଣି ନ ପାରିଲେ ଅର୍ଜ୍ଜୁନ ଚରିତ ।
ଦ୍ରୁପଦ ରାଜା ଅପୂର୍ବ ସ୍ୱୟମ୍ବର କଲା
ଅର୍ଜ୍ଜୁନଙ୍କୁ ନ ପାଇ ସେ ମୁଖକୁ ପୋତିଲା ।
ଷୋଳ ଦିବସ ପର୍ଯ୍ୟନ୍ତ ହେଲା ସ୍ୱୟମ୍ବର
ବିନ୍ଧି ନ ପାରିଲେ କେହି ଲାଖ ନୃପବର ।
ଭୀଷ୍ମ ଦ୍ରୋଣ ଶଲ୍ୟ କର୍ଣ୍ଣ କୃପ ଦୁର୍ଯ୍ୟୋଧନ
ଏମାନେ ପାଇଲେ ପୁଣି ତହିଁ ଅପମାନ ।
ବ୍ରାହ୍ମଣ ବେଶରେ ଥିଲେ ତହିଁ ପଞ୍ଚଭ୍ରାତ
ମହାଲାଖକୁ ବିନ୍ଧଇ ବାସବର ସୁତ ।
ଧୃତରାଷ୍ଟ୍ର ସନ୍ଥୀଭୂତ ହେଲେ ତାହା ଶୁଣି
କହିଲେ କେମନ୍ତ କଥାଏ ତ ସୀରପାଣି ।
ଜତୁର ଘରେ ପାଣ୍ଡବେ ହୋଇଲେ ଦହିର୍ଯ୍ୟ
ଆପଣେ ତୁମ୍ଭେ ଯେ ଦେଖିଥିଲେ ଦେବରାଜ ।
ପ୍ରେତକାର୍ଯ୍ୟ କରାଇଲେ ଆପଣ ତ ଥାଇ
ଆବର ପାଣ୍ଡବେ ବର୍ତ୍ତି ଅଛନ୍ତି ସେ କାହିଁ ।
ପୁଣ୍ଡରୀକ ବାସୁଦେବ ଯେହ୍ନେ ବହେ ନାମ
ତେହ୍ନେ ପାଣ୍ଡବେ ଦେଖିଲେ ଅବା ବଳରାମ ।
ଦେଖିଲେ ତ ଜତୁଘରେ ତୁମ୍ଭେ ନୀଳାମ୍ବର
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ନକୁଳ ଆବର ।
ସହଦେବ କୁନ୍ତୀ ଆଦି ଦେଖିଲେ ସକଳ
ପୁରୋଚନ ସହିତରେ ମାଇଲେ ସକଳ ।
ଶୁଣ ଆହେ ଧୃତରାଷ୍ଟ୍ର ବୋଇଲେ ଲାଙ୍ଗଳୀ
ସାକ୍ଷାତେ ଦେଖିଲୁ ବିଭା ପାଣ୍ଡବ ପାଞ୍ଚାଳୀ ।

ଏକ ଦ୍ରୌପଦୀକୁ ବିଭା ହେଲେ ପାଞ୍ଚଭାଇ
ଧୌମ୍ୟ ପ୍ରୋହିତ ଆବର ବ୍ୟାସ ଥିଲେ ରହି ।
ବ୍ୟାସଙ୍କ କୋଳେ ବସିଲେ ସେ ପାଞ୍ଚ ନନ୍ଦନ
ଇନ୍ଦ୍ର ଦେବତା ସହିତେ ଥିଲେ ସଭାସ୍ଥାନ ।
ପଣ୍ଡୁ ନନ୍ଦନ ବିଚିତ୍ର ବୀର୍ଯ୍ୟଙ୍କର ନାତି
ଅଟନ୍ତି ଶାନ୍ତନୁ ରାଜା ଦେବ ଅଣନାତି ।
ଅନେକ ଯେ ଯଉତୁକ ଦେଲେକ ଦ୍ରୁପଦ
ଧନଧାନ୍ୟ ଆଣିଦେଲେ ଅନେକ ସମ୍ପଦ ।
ଧୃତରାଷ୍ଟ୍ର ବୋଇଲେ ଏ ହୋଇଲା କେମନ୍ତ
ଭସ୍ମ ଅଙ୍କୁରିଲା ମୁଁ ତ ନ ଜାଣଇ ତଥ୍ୟ ।
କହିଲେ ତ ଧୃତରାଷ୍ଟ୍ର ଆଗେ ହଳପାଣି
ଏ କେବଣ ମାୟା ଆମ୍ଭେ ନ ପାରିଲୁ ଜାଣି ।
ଯୁଧିଷ୍ଠିଙ୍କୁ ପଚାରିଲୁ କହିଲେ ସମସ୍ତ
ଜତୁର ଗୃହ ଦହନ ହେଲା ଯେଉଁ ରାତ୍ର ।
ବାହାର ହୋଇ ପଳାଇ ଗଲେ ଜତୁ ଘରୁ
ବିଶ୍ରମିଲେ ସୁରନଦୀ ତୀରରେ ସେଠାରୁ ।
ନାବରେ ବସିଣ ନଦୀ ହୋଇଗଲେ ପାର
ଭୀମସେନ ମାଇଲାକ ଦୈବତ କୁମ୍ଭୀର ।
କିନ୍ନର ଦୈତ୍ୟକୁ ପୁଣ ମାରି ମଧୁବନେ
ହିଡ଼ିମ୍ବକ ଦୈତ୍ୟ ମାରି ହିଡ଼ିମ୍ବକ ବନେ ।
ବକ ଦୈତ୍ୟକୁ ମାଇଲେ ଏକଚକ୍ର ପୁରେ
ଅଙ୍ଗାରପନ୍ନଗକୁ ଯେ ଜିଣିଲେ ବାଟରେ ।
ମହାଲାଖ ବିନ୍ଧିଲେ ସେ ବ୍ରାହ୍ମଣ ରୂପରେ
ବାରି ନ ପାରିଲେ ତହିଁ ରହିଲେ ଗୋପ୍ୟରେ ।
ଯେତେବେଳେ ସେ ଲାଖକୁ ଅର୍ଜୁନ ବିନ୍ଧିଲା
ପୁଅ ତାର ଦୁର୍ଯ୍ୟୋଧନ ବ୍ୟର୍ଥେ ଗୋଳ କଲା ।
ଅନେକ ସମର ତହିଁ ହେଲା ଅନ୍ୟୋଅନ୍ୟେ
ପଡ଼ିଲେ ଯୁଦ୍ଧେ ଅନେକ ରାଜାଙ୍କ ସଇନ୍ୟେ ।
ଅନେକ ମଲେ ବହିଲା ତହିଁ ରକ୍ତନଦୀ
ବାହାରି କେତେ ପଡ଼ିଲେ ସେ ପାରୁ ସମ୍ପାଦି ।
ଦମନକ ଶିଶୁପାଳ ଆବର ରୁକ୍ମଣ
ଦନ୍ତବକ୍ର ପୁଣ୍ଡରୀକ କଲେ ମହାରଣ ।
ଏ ପାଞ୍ଚରାଜାଙ୍କ କେଶ ଧରିନେଲା ଭୀମ
ଯୁଧିଷ୍ଠିଙ୍କ ଆଗେ ହେଲା ରାଗେ ତମ ତମ ।
ବାବୁ ହୋ ଯୁଧିଷ୍ଠି ଧନ୍ୟ ମହିମା ତୋହର
ଏତେ ମତେ କୋପ ହିଁ ନ ବସିଲା ଶରୀର ।
ଛାଡ଼ିଦିଅ ବୋଲି ଆଜ୍ଞା ଭୀମସେନ ଦେଲେ
ପାଦତଳେ ଭୀମ ତାହା ଗଳାଇ ଛାଡ଼ିଲେ ।
ଧୃତରାଷ୍ଟ୍ର ବୋଇଲେକ କହିବା ନା ସତ
ବର୍ତ୍ତି ଅଛନ୍ତି କି ଶତ ଗାନ୍ଧାରୀର ସୁତ ।

ଗୋବିନ୍ଦ ବୋଇଲେ ଆମ୍ଭେ ଦିବସେ ପାଇଲୁ
ରାତ୍ରକାଳେ ଯୁଦ୍ଧଅନ୍ତ କରି ନ ପାରିଲୁ ।
ବାହୁଡ଼ିଲେ ଦଣ୍ଡଭଗ୍ନ ହୋଇ ଦଶଦିନେ
ପ୍ରବେଶ ନୋହିଲେ କିମ୍ପା ଏଥେ ଦୁର୍ଯ୍ୟୋଧନେ ।
ବଳରାମ ବୋଇଲେ ସେ ଅପଚୟ ଥାଟ
ବହୁତ ଦୂର ସେ ଚାଲି ନ ପାରନ୍ତି ବାଟ ।
ଦଣ୍ଡ ସମ୍ଭାଳି ଆଣୁଛି ରାଜା କୁରୁସାଇଁ
ତେଣୁ ବିଳମ୍ବ ହୋଇଲା ଭାଳୁଛ କିମ୍ପାଇଁ ।
ଧୃତରାଷ୍ଟ୍ର କହିଲେକ ହେଲା ଯେଉଁ କୃତ୍ୟ
ଆଉ କି ପୋଏ ମୋହର ଅଛନ୍ତି ଜୀବିତ ।
ବଳରାମ କହିଲେ ସେ ଯୁଧିଷ୍ଠି ଅକୋପୀ
ଏତେ କଷ୍ଟେ ସୋଦରଙ୍କୁ ନ ଛାଡ଼େ ତଥାପି ।
ଏତେ କହି ରାଜ ଧୃତରାଷ୍ଟ୍ରଙ୍କୁ ଆଶ୍ୱାସୀ
ଶୋକ ତେଜ ରାୟେ ବୋଲି ନାରାୟଣ ଭାଷି ।
ଆବର ବୋଇଲେ ରାୟେ ଶୁଣ ଧୃତରାଷ୍ଟ୍ର
ଦିନ ଚାରି ମଧ୍ୟେ ପୁତ୍ର ହୋଇବୁ ତୁ ଭେଟ ।
ଆମ୍ଭେ ଯାଉ ଅଛୁ ଏବେ ଦ୍ୱାରକା ପୁରକୁ
ଏବେ ତୁହି ତିଆର ହେ ତୋ ପାଞ୍ଚପୁଅଙ୍କୁ ।
ପୁତ୍ରଙ୍କୁ ଘେନି ତୁମ୍ଭେ ରହ ପାଞ୍ଚାଳଦେଶେ
ଯୁଧିଷ୍ଠିରଙ୍କୁ ଘେନି ଆସ ତୁ ଯେ ହରଷେ ।
ଧୃତରାଷ୍ଟ୍ର ବୋଇଲେ ହୋ ରହି ଦିନ ଚାରି
ଦୁର୍ଯ୍ୟୋଧନ ଅଇଲେ ଯେ ବୋଲିବା ତିଆରି ।
ଗୋବିନ୍ଦ ବୋଇଲେ ଆମ୍ଭେ କୁଟୁମ୍ବ ସହିତେ
ଯାଇଥିଲୁ ସ୍ୱୟମ୍ବର ଦେଖିବା ନିମନ୍ତେ ।
ଏହାଙ୍କୁ ଦ୍ୱାରକା ପୁରେ ଛାଡ଼ିଦେଇ ଆସୁ
ପାଞ୍ଚଦିନ ମଧ୍ୟେ ଆସି ଏଠାରେ ପ୍ରବେଶୁ ।
ସମଦଣ୍ଡ ଘେନିଯିବା ପାଞ୍ଚାଳ ଦେଶକୁ
ଅନେକ ସମ୍ଭାରେ ଘେନି ଆଣିବା ତାହାଙ୍କୁ ।
ଅନେକ ତିଆରି ତହୁଁ ରାମକୃଷ୍ଣ ବେନି
ଚଳନ୍ତି ଆପଣା ଦେଶେ ସଇନ୍ୟଙ୍କୁ ଘେନି ।
ଦ୍ୱାରକା ଭୁବନେ ଦେବ ହୋଇଲେ ପ୍ରବେଶ
ଦେଖିଣ ସମସ୍ତ ଜନେ ହୋଇଲେ ହରଷ ।
ଦ୍ୱାରକା ଭୁବନେ ଦେଲେ ଅନେକ ବଧାଇ
ଯେ ଯାହାର ଭୁବନରେ ରହିଲେକ ଯାଇ ।
କୁମ୍ଭ ଶୁକ୍ଳ ତୃତୀୟା ତିଥି ରବିବାର
ରେବତୀ ନକ୍ଷତ୍ର ଭୋଗ ଅଟେ ସେ ଦିନର ।
ଭଗବଳ ସଙ୍ଗେ ଘେନି ରାଜା କୁରୁପତି
ଆପଣାର ଦେଶେ ଆସି ପ୍ରବେଶ ହୁଅନ୍ତି ।
ସଞ୍ଜୟ କହିଲେ ଯାଇ ଧୃତରାଷ୍ଟ୍ର ପାଶେ
ରାଜ୍ୟେ ବିଜେ କଲେ ପୁତ୍ର ଅନେକ ବିରସେ ।

ଅଷ୍ଟାଦଶ ଅକ୍ଷୌହିଣୀ ବଳ ଘେନିଗଲା
ଏକାଦଶ ଅକ୍ଷୌହିଣୀ ଘେନି ବିଜେ କଲା ।
ବ୍ରଣହୀନ ହୋଇଣ ଯେ ଜଣେ କେହି ନାହିଁ
ସମସ୍ତେ ହେଁ ଆସିଛନ୍ତି ମହାଦୁଃଖ ପାଇ ।
ଅନେକ ବରଷ ହେଲା ଶୁଣି ଧୃତରାଷ୍ଟ୍ର
ନିସ୍ତରିଲି ପୁଅଙ୍କର ପାଇ ନାହିଁ ଭେଟ ।
ଭୀଷ୍ମଦ୍ରୋଣ ଭୂରିଶ୍ରବା କର୍ଣ୍ଣ ଅଶ୍ୱତ୍ଥାମା
ଯେ ଯାହାର ମାନ୍ୟ କଲେ ଭକ୍ତିଭାବ କ୍ଷମା ।
ଅନନ୍ତର ଶତପୁତ୍ର ତୀର୍ଥଜଳ ଘେନି
ଧୋଇ ଦେଇ ପାନ କରି ପିତାପାଦ ବେନି ।
ପ୍ରଣିପାତ କରି ପାଦତଳେ ଗଲେ ଶୋଇ
ଦୁର୍ଯ୍ୟୋଧନ ଭକତି ନ କଲା ପିତାକୁ ହିଁ ।
ଆସ୍ଥାନରେ ବିଜେ କଲା ରାଜା କୁରୁମଣି
ଅନେକ ଶୁଭଇ ରାଜ୍ୟେ ଶୋକଭର ବାଣୀ ।
ଏକାନ୍ତେ ବିଦୁରେ ଡାକି ରାଜା ଧୃତରାଷ୍ଟ୍ର
ବୋଇଲେ ପାଣ୍ଡବ ସଙ୍ଗେ ହୋଇଲାକି ଭେଟ ।
ବିଦୁର ବୋଇଲେ ତୁମ୍ଭେ ଶୁଣ ଜ୍ୟେଷ୍ଠଭ୍ରାତ
ମାନବଙ୍କୁ ଅଗୋଚର ପାଣ୍ଡବ ଚରିତ ।
ଦ୍ରୁପଦ ରାଜାକୁ ଧରି ଆଣିଥିଲେ ଦ୍ରୋଣ
ଅନେକ ଝିଙ୍ଗାସ ତାକୁ କଲେ କୁରୁରାଣ ।
ସେ ରାଗ ଖଣ୍ଡିବ ରାଜା ଧରି ହୃଦଗତେ
ରାଜ୍ୟକୁ ନ ଯାଇ ଦୁଃଖେ ଖଟି ବିଶ୍ୱନାଥେ ।
କୌରବେ ନାଶିବା ପାଇଁ ଘୋର ତପ କଲା
ଭୀଷ୍ମ ଦ୍ରୋଣ ଜିଣିବାକୁ ବର ସେ ମାଗିଲା ।
ଈଶ୍ୱର ବୋଇଲେ ମୋର ନୁହଇ ତ ସିଦ୍ଧି
ଅର୍ଜୁନ ସଂଗ୍ରାମେ ତାର ହେବ ପ୍ରତିବାଦୀ ।
ଦୁର୍ବାସାଙ୍କୁ ରାଇ ଆଜ୍ଞା ଦେଲେ ତ୍ରିପୁରାରି
ମହାଯଜ୍ଞ କରିଦିଅ ରାଜାକୁ କୁମାରୀ ।
ଅର୍ଜୁନକୁ ଦାନ କରୁ ଦୁହିତା ତାହାର
କୌରବେ ହୁଅନ୍ତୁ ହସ୍ତଗତ ଅର୍ଜୁନର ।
ସଦାଶିବଙ୍କ ବଚନେ ଗଲେ ଅନ୍ତଃପୁରେ
ମହାଯଜ୍ଞରେ ଆହୁତି ଦେଲେକ ସତ୍ୱରେ ।
ଯାଗେ ଯାଗନିକ ହେଲେ ଦଶଲକ୍ଷ ମୁନି
ମହାଯଜ୍ଞ ମଧ୍ୟୁ ଜାତ ହେଲେ ଯାଜ୍ଞସେନୀ ।
ଦୁହିତା ସମ୍ଭାଳି ରାଜା ଥିଲାକ ଯତନେ
ପାଣ୍ଡବେ ମଲେ ଶୁଭିଲା ଗୃହରେ ଦହନେ ।
ଅର୍ଜୁନ ନ ପାଇ ରାଜା ସ୍ୱୟମ୍ବର କଲା
ଦୁର୍ଲ୍ଲଭ ଲାଖ ପାତିଲା ଗୋଚର ନୋହିଲା ।
ଦେବତାଳେ ସାତତାଳ ନରେ ଅଣଚାଶ
ରଥଚକ୍ର ଉପରେ ଯେ ସୁବର୍ଣ୍ଣର ମାଛ ।
ଲକ୍ଷେ ବଳ ଧନୁ ଅଟେ ପିନାକ ସ୍ୱରୂପି
ତଳେ ଦୃଷ୍ଟିରଖି ପାଣି କୁମ୍ଭକୁ ନିରୂପୀ ।
ଏମନ୍ତ ରୂପେ ଦୁର୍ଲ୍ଲଭ ଲାଖ ଏକ ସଞ୍ଚି
ମାନବେ ନ ପାରିବେ ସେ ଧନୁକୁ ଆମଞ୍ଚି ।
ଷୋଳଦିନ ଯାଏ ପୁଟି ରହିଲେ ସକଳେ
ଷୋଳ ଦିନେ ଚକ୍ର ଛିଡ଼ି ପଡ଼ିଲା ଭୂତଳେ ।
ତୋର ପୁତ୍ରମାନେ ଧାଇଁ କଲେକ ଗହଳେ
ପ୍ରଥମେ ବିନ୍ଧନ୍ତେ ଦୁଷ୍ଟଲୋକ ଗୋଳ କଲେ ।
ଷୋଳଦିନ ଯାଏ କେହି ବିନ୍ଧି ନ ପାରିଲା
ଭିକ୍ଷୁକ ବ୍ରାହ୍ମଣ ଏକ ବାହାର ହୋଇଲା ।
କିଞ୍ଚିତ ପ୍ରାୟ ବିନ୍ଧିଲା ଲାଖ ଦ୍ୱିଜବର
ରାଧା ଚକ୍ର ଫୁଟି ପଡ଼େ ମାଛର ଉପର ।
ପ୍ରଥମେ ବିନ୍ଧିଲା ଦୁଷ୍ଟଲୋକ ଗୋଳ କଲେ
ସେହି ଲାଖ ଗୋଟିକ ସେ ପୁଣି ହିଁ ବିନ୍ଧିଲେ ।
ବାମ ଚକ୍ଷୁରେ ନାରାଚ ପଡ଼ିଲାକ ଗଳି
ଡାହାଣ ଚକ୍ଷୁରେ ବାଣ ଗଲାକ ନିକିଳି ।
ଯେତେବେଳେ ଦ୍ରଉପଦୀ ବରିବାକୁ ଗଲା
ତୋ ପୁଅ ମାନଗୋବିନ୍ଦ ମିଛେ ଗୋଳ କଲା ।
ବ୍ରହ୍ମ କୁମାର ବୋଲିଣ ବୋଲେ ଦୁଃଶାସନ
ସଂଗ୍ରାମକୁ ନ ଡରିଲା ବିଜ୍ଞ ଦ୍ୱିଜଜନ ।
ଆରେକ ବ୍ରାହ୍ମଣ ଦୁଇ ବୃକ୍ଷକୁ ଉପାଡ଼ି
ଗଜଯୂଥ ଦେଖି ଯେହ୍ନେ ଧାମଇଁ କେଶରୀ ।
ପ୍ରଥମେ ଆସି ସେ ଦୁଃଶାସନେ ଦେଲେ ପିଟି
ଘାଏ ନନ୍ଦନ ପଡ଼ିଲା ମହୀପରେ ଲୋଟି ।
ବାଳ ଧରି ମୁଣ୍ଡ ତାର ମୋଡ଼ନ୍ତେ ସେ ହସ୍ତେ
ଲାଖବିନ୍ଧା ପଣ୍ଡା ଭୁଜ ଧରିଲା ତା ହସ୍ତେ ।
ବଡ଼ ଦୟାଳୁ ଅଟଇ ସେହି ଦ୍ୱିଜବର
ତାହାର ପ୍ରସାଦେ ରକ୍ଷା ପାଇଲା କୁମର ।
ଏତେ କେହେଁ ନ ଘୁଞ୍ଚିଲା ସେ ମାନଗୋବିନ୍ଦ
ଚାରି ବ୍ରାହ୍ମଣ ମାଇଲେ ତାର ସୈନ୍ୟବୃନ୍ଦ ।
ଦିବସେ ଦୁଇରାତ୍ର ଯେ ହୋଇଲା ସମର
ପାଞ୍ଚଯୋଜନ ପର୍ଯ୍ୟନ୍ତେ ପଡ଼ିଲା ପ୍ରହର ।
ବହୁତ ସଂଗ୍ରାମ ମୁହିଁ ନେତ୍ରେ ଦେଖିଅଛି
ଦେଖି ଲକ୍ଷ ରାଜାଙ୍କୁ ଯେ ନ ସ୍ଫୁରଇ କିଛି ।
ଭୀଷ୍ମ ଦ୍ରୋଣ ଭାଙ୍ଗିଗଲେ ସଂଗ୍ରାମର ଅନ୍ତେ
ନିଶ୍ଚେ ପାଣ୍ଡବ ଅଟନ୍ତି ସେହି ଚାରିଭ୍ରାତେ ।
ଏସନ ବାର୍ତ୍ତା ଶୁଣିଲୁ ଆସି ଘୋର ବନେ
ତଥ୍ୟ ନ ଜାଣିଲୁ ସେ କି ପଣ୍ଡୁର ନନ୍ଦନେ ।
ଧୃତରାଷ୍ଟ୍ର ବୋଇଲେ ମୁଁ ବୁଝିଲି ଏସନ
ନିଶ୍ଚୟ ଅଟନ୍ତି ସେହି ପଣ୍ଡୁର ନନ୍ଦନ ।

ମୁଁ ଅବା ଅନ୍ଧ ହୋଇଲି ତୁମ୍ଭର ଯେ ବଂଶେ
ଚକ୍ଷୁ ଥାଉଁ ତୁମ୍ଭେ କିମ୍ପା ଅଇଲ ଅଦୃଶ୍ୟେ ।
ତୁମ୍ଭେ ପଳାଇ ଅଇଲ ଜାଣ ଯେତେବେଳେ
ପାଣ୍ଡବଙ୍କୁ ଭେଟିଲେ ଯେ ଦ୍ରୁପଦ ଭୂପାଳେ ।
ଶୁଭଯୋଗେ ବିଭା ହେଲା ଦ୍ରୁପଦ ନନ୍ଦିନୀ
ପଞ୍ଚପାଣ୍ଡବେ ବରିଲା ଏକା ଯାଜ୍ଞସେନୀ ।
ଅସଂଖ୍ୟ ଧନଭଣ୍ଡାର ବହୁ ସୈନ୍ୟବଳ
ଅପାର ଯୌତୁକ ଯେ ଦେଲା ମହୀପାଳ ।
ପଚାରିଲେ ବିଦୂର ଯେ ପୁଣି ତୋଷଚିତ୍ତେ
ଏତେ ସନ୍ଧିର ବାରତା ପାଇଲ କେମନ୍ତେ ।
ବିଦୂରଙ୍କ ଅଗ୍ରତରେ କହିଲେ ଗାନ୍ଧାରୀ
ପାଣ୍ଡବଙ୍କ ବିଭାବେଳେ ଥିଲେ ରାମହରି ।
ସମାରୋହେ ବିଭାଘର ତାହାଙ୍କର ଦେଖି
ଚାରିଦିନ ହେଲା ସେହୁ ଅଇଲେ ଏଥିକି ।
ବିଭା ଯୋଗାତୁ ଅନେକ ଅଛନ୍ତି ସେ ଆଣି
ଆମ୍ଭଙ୍କୁ ଦେଇଣ କହିଗଲେ ହଳପାଣି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ କୃପ ଅଶ୍ୱଥାମା ରାଇ
ସଞ୍ଜୟ ମନ୍ତ୍ରୀ କହିଲେ ଆସ୍ଥାନକୁ ଯାଇ ।
ମୂର୍ଖଭାବେ ତୁମ୍ଭେ ମରାଇଲ ଏ ସଇନି
ପାଣ୍ଡବ ବୋଲି ଯେ କେହି ନ ପାରିଲେ ଚିହ୍ନି ।
ବିଭାବେଳେ ଥିଲେ ଜଗନ୍ନାଥ ବଳଦେବ
ଦ୍ରୌପଦୀକି ବିଭାହେଲେ ପାଞ୍ଚ ଯେ ପାଣ୍ଡବ ।
ଧୃତରାଷ୍ଟ୍ର ବୋଇଲେ ହୋ ଚାଲ ଆମ୍ଭେ ଯିବା
ପୁତ୍ରଙ୍କୁ ଗୌରବ କରି ଘେନିଣ ଆସିବା ।
ସୋଦର ସୋଦରେ ସିନା ହେଲେ ଅନ୍ୟୋଅନ୍ୟ
ତହିଁରେ ତୁମ୍ଭେ କେହି ନ କର ଅଭିମାନ ।
ଆନ ଯେବେ ପରାୟଜ ତୁମ୍ଭଙ୍କୁ କରନ୍ତା
ତେବେ ତୁମ୍ଭର ବଂଶରେ ଲାଜ ଉପୁଜନ୍ତା ।
ସେ କଥାମାନ ଉପେକ୍ଷା କର ମନୁବାବୁ
ଆପଣାର ବଡ଼ପଣ ଆପେ ପରା ସବୁ ।
ଧୃତରାଷ୍ଟ୍ରଙ୍କ ବଚନେ ବୋଲେ କୁରୁପତି
ଚିହ୍ନୁ ଚିହ୍ନୁ ପାଣ୍ଡବେ ତ କଲେ ଏ ଅନୀତି ।
ତାହାଙ୍କୁ ଆଣିବା ପାଇଁ ଯିବଇଁ କେମନ୍ତେ
ପାଣ୍ଡବେ ଅଭାବ ମୋତେ ହୋଇଲେ ଯୁକତେ ।
ମୁଁ ଅବା ତାଙ୍କୁ ନ ଚିହ୍ନି କରଇ ସମର
ଚିହ୍ନୁ ଚିହ୍ନୁ ମାଇଲେକ ସେ ସୈନ୍ୟ ଅପାର ।
ଏଥକୁ ମୋତେ କିଛି ନ ବୋଲ ରାଜଦେବ
ଆଜହୁଁ ମୋର ପାଣ୍ଡବ ସଙ୍ଗେ ନାହିଁ ଭାବ ।
ଭୀଷ୍ମ ବୋଇଲେ ବାବୁ ନ କର ଅଭିମାନ
ସେହି ସିନା ରଖିଲେକ ତୁମ୍ଭ ବଡ଼ପଣ ।

ନିଶ୍ଚୟ ଯଦ୍ୟପି ସେହି କରନ୍ତି ସମର
ଜଣେ କେହି ଉବୁରି କି ଆସନ୍ତା ଏ ପୁର ।
ଅର୍ଜ୍ଜୁନ ଆମ୍ଭଙ୍କୁ ରଣେ କଲା ଉପରୋଧ
ଭୀମସେନ କୋପକୁ ସେ କଲେକ ବିରୋଧ ।
ଅଜ୍ଞାନ କଥାରେ ଶାସ୍ତ୍ରେ ନାହିଁ କିଛି ଦୋଷ
ଗୌରବ କରି ଆଣିଲେ ଉପୁଜିବ ଯଶ ।
ତୁ ଯଦ୍ୟପି ନ ଆଣିବୁ କୁରୁରାଜ ଦେବ
ତାହାଙ୍କର ରାଜ୍ୟକୁ କି ଆସିବା ନୋହିବ ।
ବହୁତ ମଣାଇ ଯହୁଁ ତାକୁ ଭୀଷ୍ମ ଦ୍ରୋଣ
କହିଲେକ ସନମତ କଲା କୁରୁରାଣ ।
ଦିନା ଦଶ ସୁଷ୍ଠ କଲା ନିଜ ଦଳବଳ
ସମଦଣ୍ଡ ସାଜିଲାକ କୁରୁ ମହୀପାଳ ।
ରଥ ଗଜ ଅଶ୍ୱ ରଥି ସଇନି ପଦାତି
ଭୀଷ୍ମ ଦ୍ରୋଣ କର୍ଣ୍ଣମୂଳେ ଯେତେ ମହାରଥି ।
ମୀନମାସ କୃଷ୍ଣପକ୍ଷ ଚଉଠି ଯେ ତିଥି
ଅର୍କବାର ତୁଳଚନ୍ଦ୍ର ନକ୍ଷତ୍ର ଯେ ସ୍ୱାତୀ ।
ବାଣିଜ୍ୟ ନାମେ କରଣ ପ୍ରୀତିନାମେ ଯୋଗ
କୁମ୍ଭ ସଙ୍କରାନ୍ତି ଦିନ ସତାଇଶ ଭୋଗ ।
ରାତ୍ର ଦୁଇଘଡ଼ିରେ ସେ ମୀନଲଗ୍ନ ବେଳେ
ଯୋଗଲଗ୍ନ ଘେନିଗଲେ ଶୁଭ ଅନୁକୂଳେ ।
ସମଦଣ୍ଡ ସଙ୍ଗେ ଘେନି ରାଜା କୁରୁସାଇଁ
ହସ୍ତିନାରୁ ବାହାରିଣ ଥାଟକୁ ଚଳାଇ ।
ଦୁର୍ଯ୍ୟୋଧନ ବାହାରିବା ଦିନୁ ଆରଦିନ
ପ୍ରବେଶିଲେ ଦ୍ୱାରକାକୁ ଆସି କୃଷ୍ଣ ରାମ ।
ଧୃତରାଷ୍ଟ୍ର ଅଗ୍ରତରେ ହେଲେ ଦେବରାଜା
ଦେଖି କରି କୁରୁସାଇଁ କଲେ ପାଦପୂଜା ।
ରାଜା ବୋଲେ ତିଆରିଲି ମୁହିଁ ଦୁର୍ଯ୍ୟୋଧନ
ସମଦଣ୍ଡ ଘେନି ଯାଉଅଛି ପଞ୍ଚାଳେଣ ।
ପୁଣି ବୋଲେ ମୋର ବୋଲ ଶ୍ରୀହରି କରିବା
ପଞ୍ଚାଳ ଦେଶକୁ ଚାଲ ସମସ୍ତେ ହେଁ ଯିବା ।
ଧୃତରାଷ୍ଟ୍ରଙ୍କ ବଚନେ ଦେବ ସଙ୍କର୍ଷଣ
ପଞ୍ଚାଳ ଦେଶକୁ ଶୁଭେ ଗଲେ ତତ୍କ୍ଷଣ ।
ମୀନ କୃଷ୍ଣପଞ୍ଚମୀ ଯେ ତିଥି ସୋମବାର
ଧୃତରାଷ୍ଟ୍ର ବିଜେ କଲେ ରଥର ଉପର ।
ସଞ୍ଜ[illegible]ରଥି ହୋଇ ବାହାଇ ତୁରଗ
ବିଦୂର ଯେ ଭୁରିଶ୍ରବା ହୋଇଛନ୍ତି ଆଗ ।
ପଛରେ ଚଳନ୍ତି ରାମ ନନ୍ଦପୁଅ କହ୍ନା
ରଥ ଗଜ ଅଶ୍ୱ ଘେନି ଅନେକ ସେ ସେନା ।
ପ୍ରଥମ ଦିବସେ ଗଲେ ଥାଟକୁ ଚଳାଇ
ବିଶାଳ ଯୋଜନ ଦେଶ ଉଜାଣକୁ ପାଇ ।

ଆରଦିନ ପୁଣି ରାଜା ଥାଟ ଗଲା ଚଳି
ପନ୍ଦର ଯୋଜନେ ପଦ୍ମଦଳ ଦେଶେ ମିଳି ।
ଆର ଦିବସରେ ରାଜା ଥାଟ ଟଳାଇଲା
ମନ୍ଦର ଦେଶରେ ଯାଇଁ ସେଦିନ ରହିଲା ।
ଆର ଦିବସରେ ରାଜା ଗଲା ଦଣ୍ଡ ଘେନି
ଉତୁରିଲେ ଗଙ୍ଗାକୂଳେ ରହିଲେ ସଇନି ।
ଏମନ୍ତ ପ୍ରୟାଣ କରି ରଜନୀ ଦିବସ
ଉଦ୍ଦାଳକ ଦେଶେ ଯାଇ ହୋଇଲେ ପ୍ରବେଶ ।
ଦ୍ରୁପଦ ରାଜ୍ୟ ତହିଁକି ଚୌବିଂଶ ଯୋଜନ
ବାରତା କହିଲେ ଯାଇ ଚାର ଘନ ଘନ ।
ସମଦଣ୍ଡ ଘେନି ବିଜେ ମାନଚକ୍ରବର୍ତ୍ତୀ
ପାଣ୍ଡବଙ୍କୁ ନେବାପାଇଁ ଆସେ କୁରୁପତି ।
ପାଞ୍ଚାଳ ଦେଶର ରାଜା ଆସ୍ଥାନରୁ ଉଠି
ବାର୍ତ୍ତା ଜଣାଇଲା ଯହିଁ ଅଛନ୍ତି ଯୁଧିଷ୍ଠି ।
ସମଦଣ୍ଡ ଘେନି ଆସେ ରାଜା ଧୃତରାଷ୍ଟ୍ର
ଭୀଷ୍ମ ଦ୍ରୋଣ ଭୁରିଶ୍ରବା ସଙ୍ଗେ ରାମକୃଷ୍ଣ ।
ଯୁଧିଷ୍ଠିର ବୋଇଲେ ହେ କୁମାର ଶିଖଣ୍ଡୀ
ରଥଗଜ ଅଶ୍ୱ ସବୁ ବେଗେ ଆଣମଣ୍ଡି ।
ଆପଣେ ବିଜୟେ ତେବେ କଲେ ଧୃତରାଷ୍ଟ୍ର
ପାଛୋଟି ଯିବା ତାହାଙ୍କୁ କିଛିଦୂର ବାଟ ।
ଆଜ୍ଞା ପ୍ରମାଣେ ଯେ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ
ରଥ ଗଜ ଅଶ୍ୱ ସୈନ୍ୟବଳ ବହୁ ମଣ୍ଡି ।
ଅନେକ ଯତନେ ସେହୁ ମଣ୍ଡି ଶ୍ୱେତହସ୍ତୀ
ଲମ୍ବିଥାଇ ମୁକୁତାର ମାଳ ଚଉକତି ।
ବହୁତ ଚାମର ପଡ଼େ ସବୁ ଶ୍ୱେତବର୍ଣ୍ଣ
ହସ୍ତୀର ଉପରେ ବିଜେ କଲେ ଧର୍ମନାନ ।
ହସ୍ତୀ ଏକ ଚଢ଼ି ବିଜେ ପବନ ତନୟ
ଲକ୍ଷେକ ମୁକୁଟ ବନ୍ଧା ଯୋଦ୍ଧା ଲକ୍ଷେହୟ ।
ହସ୍ତୀ ଏକ ଚଢ଼ି ବିଜେ ବାସବ କୁମର
ଲକ୍ଷେକ ମୁକୁଟବନ୍ଧା ଘେନି ସଙ୍ଗତର ।
ଆଗରେ ଚାଲଇ ଭୀମ ଦକ୍ଷିଣେ ଅର୍ଜ୍ଜୁନ
ହସ୍ତୀ ଉପରେ ଯୁଧିଷ୍ଠି କରନ୍ତି ଗମନ ।
ବେନି ଲକ୍ଷ ଯୋଦ୍ଧା ସଙ୍ଗେ ଘେନିଣ ନକୁଳ
ଯୁଧିଷ୍ଠିଙ୍କ ବାମପାଖେ ଚଳେ ମାଦ୍ରୀବାଳ ।
ଚାରିଲକ୍ଷ ଯୋଦ୍ଧା ଘେନି ମନ୍ତ୍ରୀ ଚୂଡ଼ାମଣି
ସହଦେବ କୁମର ଯେ ଥାଟର ପଲାଣି ।
ହସ୍ତୀ ଏକ ଚଢ଼ି ବିଜେ ଦ୍ରୁପଦ ନୃପତି
ଅର୍ବୁଦେକ ରଥ ଘେନିଅଛି ପଛକତି ।
ସହସ୍ରେକ ରଥ ଘେନି ପାଖେ ଧୃଷ୍ଟଦ୍ୟୁମ୍ନ
ଆରୋହୀ ସ୍ୟନ୍ଦନ ଘେନି ପାଟ ଛତ୍ରମାନ ।
ସହସ୍ରେକ ଯୋଦ୍ଧା ଘେନି ଶିଖଣ୍ଡୀ କୁମାର
ଦ୍ରୁପଦର ବାମପାଖେ ଡାଳଇ ଚାମର ।

ବୀର ତୁର ବିଜିଘୋଷ ଟମକ ନିଶାଣ
ଦୁଇଲକ୍ଷ ବାଦ୍ୟକାର ଆଗରେ ପ୍ରୟାଣ ।
ଏସନକ ସମାରୋହେ ଯୁଧିଷ୍ଠିର ବିଜେ
ଢୋଲ ଦମା ଆଦି ବାଦ୍ୟ ଆଗେ ଆଗେ ବାଜେ ।
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣ କୁରୁପତି
ବଡ଼ ହିଁ ସୁନ୍ଦର ଦିଶେ ପାଣ୍ଡବଙ୍କ ମୂର୍ତ୍ତି ।
ଧୃତରାଷ୍ଟ୍ର ବୋଇଲେକ ଶୁଣ ହୋ ବିଦୂର
ଅନେକ ସମାରୋହରେ ବାଜେ ବୀରତୂର ।
ବିଦୂର ବୋଇଲେ ତୁ ଯେ ପାପ କଲୁ ପୂର୍ବେ
ଚକ୍ଷୁ ଥିଲେ ଏ ସମ୍ପଦ ଦେଖନ୍ତୁ ଆରମ୍ଭେ ।
ଶ୍ୱେତହସ୍ତୀ ଏକ ଚଢ଼ି ଧର୍ମର ତନୟ
ପ୍ରତ୍ୟକ୍ଷେ ଦିଶୁଛି ଦେବ ଇନ୍ଦ୍ରର ପରାୟ ।
ସାତ ଅକ୍ଷୌହିଣୀ ଯୋଦ୍ଧା ଘେନିଣ ଦ୍ରୁପଦ
ଛତ୍ର ଚାମର ସହିତ ଅନେକ ସମ୍ପଦ ।
ଶକୁନି ବୋଇଲା ଶୁଣ ବାବୁ ଦୁର୍ଯ୍ୟୋଧନ
ପାଣ୍ଡବଙ୍କ ମହିମା ତ ଅସଂଖ୍ୟ ରାଜନ ।
ଦେଖି ବିସ୍ମୟ ହୋଇଲା କୁରୁକୁଳ ମଣି
ବଦନ ମଳିନ ହେଲା ମନ କଲା ଗ୍ଳାନି ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ସଞ୍ଜୟ ବିଦୂର
ଏମାନଙ୍କର ସବୁରି ଉଷତ ଶରୀର ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣ ଅଶ୍ୱଥାମା
ଏହାଙ୍କ ଦେହ କି ବିସର୍ଜନ କଲା ଆତ୍ମା ।
ପାଣ୍ଡବ ସମ୍ପଦ ଦେଖି ଉଷତ ଶକୁନି
ପିତୃକାର୍ଯ୍ୟ କରିବି ମୁଁ ପାଣ୍ଡବଙ୍କୁ ଘେନି ।
ଅଳ୍ପ ଲୋକର ହରଷ ବହୁତ ବିରସ
ଗଙ୍ଗାକୂଳେ ନଇରତେ ପରବତ ପାଶ ।
ସେହି ପର୍ବତର ତଳେ ହେଲେ ଭେଟାଭେଟି
ହସ୍ତୀ ପିଠିରୁ ଉତୁରି ଦେବ ଯେ ଯୁଧିଷ୍ଠି ।
ସୈନ୍ୟ ଦୁଇଭାଗ ହେଲେ ଯୁଧିଷ୍ଠିଙ୍କି ଦେଖି
ସମସ୍ତ ଯୋଦ୍ଧାମାନ ସେ ବହନ ଉପେକ୍ଷି ।
ଉତୁରିଲେ ନନ୍ଦିଘୋଷ ରଥୁ ଦେବ ହରି
ଯୁଧିଷ୍ଠିଙ୍କ ମୁଖ ଚାହିଁ ନମସ୍କାର କରି ।
ବଳରାମଙ୍କ ଚରଣେ ଯୁଧିଷ୍ଠି ପ୍ରଣମି
ଭୀଷ୍ମ ଦ୍ରୋଣ ଧୃତରାଷ୍ଟ୍ର ପାଦ ବନ୍ଦି ସ୍ୱାମୀ ।
ଭୂରିଶ୍ରବା ଚରଣରେ କଲେ ନମସ୍କାର
ଅଶ୍ୱଥାମା କୃପାଚାର୍ଯ୍ୟ ଶଲ୍ୟଙ୍କୁ ଆବର ।
ଏମାନଙ୍କୁ ନମସ୍କାର କରି ଧର୍ମସୁତ
ସମସ୍ତେ ବୋଇଲେ ଆମ୍ଭ ଆୟୁ ଘେନି ବର୍ତ୍ତ ।
ଶତ୍ରୁମାର ବାବୁ ତୁମ୍ଭ ବାଞ୍ଛା ହେଉ ସିଦ୍ଧି
ରାଜ୍ୟ ପ୍ରାପ୍ତ ହେଉ ଧର୍ମେ ରହୁ ତୋର ବୁଦ୍ଧି ।
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ପାଞ୍ଚାଳର ରାଜା
ଧୃତରାଷ୍ଟ୍ରଙ୍କର ପାଦେ କଲା ଦିବ୍ୟ ପୂଜା ।

ପୂଜା କଲା ଭୂରିଶ୍ରବା ଭୀଷ୍ମ ଦ୍ରୋଣାଦିଙ୍କୁ
ଜ୍ୟେଷ୍ଠ ଅନୁକ୍ରମେ ପୂଜା କଲେ ସମସ୍ତଙ୍କୁ ।
ସୁବିଧାନେ କଥାବାର୍ତ୍ତା ହୁଅନ୍ତି ସମସ୍ତେ
କୁଶଳେ ଯେ ପୁଚ୍ଛାପୁଚ୍ଛି ହେଲେ ଯେଝାମତେ ।
ସମସ୍ତ କୁଶଳ ବୋଲି କହନ୍ତି ଆନନ୍ଦେ
ହେଠମାଥେ ବସିଅଛି ସେ ମାନଗୋବିନ୍ଦେ ।
ଦୁର୍ଜ୍ଜୟ ଆଦି ଗାନ୍ଧାରୀ ସୁତ ଯେ ଏମାନେ
ଭୀମଙ୍କୁ ଦେଖି ରହିଲେ ସେ ହେଠ ବଦନେ ।
ଶକୁନି ବୋଇଲା ତୁମ୍ଭେମାନେ ବଡ଼ ଦୁଷ୍ଟ
ହାରିବା ଜିଣିବା କ୍ଷତ୍ରି ବୃତ୍ତି ବଡ଼ କଷ୍ଟ ।
ସଯୋଧି ଦ୍ରୁପଦ ଯାଙ୍କୁ ନେଲେ ନିଜପୁରେ
ଆସ୍ଥାନରେ ବିଜେ କଲେ ନୃପତି ସମ୍ଭାରେ ।
ବାହନ ଉପେକ୍ଷି ବିଜେ କଲେ ରାମକୃଷ୍ଣ
ଦ୍ରୋଣ ଭୂରିଶ୍ରବା ଆଉ ଅଶ୍ୱତ୍ଥାମା ଭୀଷ୍ମ ।
ବାହ୍ଲିକ ଆବର ସୋମଦତ୍ତ କୃତବର୍ମା
ଶଲ୍ୟ କାଶୀରାଜା ଆଦି ଯେତେ ମହାତମା ।
ଆସ୍ଥାନ ମଧ୍ୟେ ବସିଲେ ଯାଇ ସର୍ବଯୋଦ୍ଧା
ଯୁଧିଷ୍ଠିର ପୂଜାକଲେ ଯେ ଯାହାର ବିଧି ।
ଯେ ଯାହା ବିଧିଲେ କଲେ ମାନ୍ୟ ହିଁ ଅପାର
ଦୁର୍ଯ୍ୟୋଧନ କାହାକୁ ନ କଲା ନମସ୍କାର ।
ମୂର୍ଖପଣେ ତାହାର ଯେ ନମସ୍କାର ନାହିଁ
ଅନେକ କୁଶଳ ବାର୍ତ୍ତା ହେଲେ କୁହାକୁହି ।
ଧୃତରାଷ୍ଟ୍ର କୋଳ କରି ଧରି ଯୁଧିଷ୍ଠିଙ୍କି
ବାବୁ ତୁମ୍ଭର ପ୍ରସାଦ ଦେଖି ମୁଁ ନିର୍ମାଖି ।
କହୁଁ କହୁ ଶୋକଭର ହେଲେ ନୃପବର
ପ୍ରବୋଧି କହନ୍ତି ତାକୁ ବାବୁ ଯୁଧିଷ୍ଠିର ।
ଜତୁଘର ଯେତେବେଳେ ହୋଇଲା ଦହନ
ପଳାଇ ପଶିଲୁ ଆମ୍ଭେ ଯାଇ ଘୋର ବନ ।
ବହୁତ ଦୁର୍ଗମେ ପଶିଗଲୁ ଯେ ଆଗମେ
ଦେଖିଲୁ କ୍ରୀଡ଼ନ୍ତି ବନଜୀବେ ବହୁରଙ୍ଗେ ।
ବଜ୍ର କବଚର ବଂଶେ ଅସୁର ବାପୁଡ଼ା
ମେଦିନୀ ନ ସହେ ଦେବ ତାଙ୍କ ମହାଭାରା ।
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ଚାରି
ମାଇଲା ଏ ଭୀମସେନ ଏକା ଯୁଦ୍ଧ କରି ।
ଅଙ୍ଗାର ପନ୍ନଗ ଜୟ କଲା ଫାଲଗୁନୀ
ପୂଜା କଲା ବିଦ୍ୟାଧର ବହୁରତ୍ନ ଘେନି ।
ସ୍ୱୟମ୍ବର କରିବାକୁ ଏ ଦ୍ରୁପଦ ରାଣ
ଗଉତମ ତୀର୍ଥେ ସବୁ କଲା ନିମନ୍ତ୍ରଣ ।
ଆମ୍ଭେ ଯାଇଥିଲୁ ଦେବ ଗଉତମ ତୀର୍ଥେ
ଅଇଲୁଁ ଯେ ସ୍ୱୟମ୍ବର ଦେଖିବା ନିମନ୍ତେ ।
ଶୁଭ କର୍ମେ ଲାଖ ଗୋଟି ବିନ୍ଧିଲା ଏ ପାର୍ଥ
ଦୁଷ୍ଟ ରାଜାମାନେ ମିଳି କଲେକ ଅନର୍ଥ ।
ଯୁଧିଷ୍ଠିରଙ୍କ ମୁଖରୁ ସମସ୍ତ ଶୁଣିଲେ
ମନେ ମନେ ଧୃତରାଷ୍ଟ୍ର ଆନନ୍ଦ ହୋଇଲେ ।

ଧୃତରାଷ୍ଟ୍ର ବୋଇଲେକ ତୋତେ ଯେ ଦେଖିଲୁ
ଅନେକ ଆନନ୍ଦ ହେଲୁ ପାପୁଁ ନିସ୍ତରିଲୁଁ ।
ରାଜ୍ୟେ ଉତ୍ସବ କରାଇ ଦ୍ରୁପଦ ରାଜନ
ମଣୋହିର ଯୋଗାଡ଼ ସେ କରନ୍ତି ରନ୍ଧନ ।
ସ୍ନାନ ନିମନ୍ତେ ସୁଗନ୍ଧ ତୈଳ ଆଣି ଦେଲେ
ସୁଗନ୍ଧ ତଇଳ ଘେନି ଗଙ୍ଗାସ୍ନାନ କଲେ ।
ସୁପକ୍ୱ ଅନ୍ନ ସିଝିଲେ ମିଳି ସୂପକାରେ
ମଣୋହିରେ ବିଜେ କଲେ କୃଷ୍ଣ କାମପାଳେ ।
ପାରିଦଣ୍ଡ ଘେନି ଚଳେ ରାଜା ଧୃତରାଷ୍ଟ୍ର
ମଣୋହିରେ ବିଜେ କଲେ କୁରୁବଳ ଥାଟ ।
ଗଣ୍ଡା ହରିଣ ସୁପକ୍ୱ ମାଂସ ଆଦି ଭୋଜି
କଉତୁକେ ପରଶନ୍ତି ଯେହୁ ଯେତେ ଭୁଞ୍ଜି ।
ଭୁଞ୍ଜିଣ ସଇନ୍ୟମାନେ ହୋଇଲେ ତୃପତି
ହାସ୍ୟ ରସେ ସୂପକାରେ ଆଣି ପରଷନ୍ତି ।
ଶାକର ମୁଗ ଯେ ବନ୍ୟ ଦ୍ରବ୍ୟ ଖଣ୍ଡପୁଡ଼ା
ମଧୁ ରୁଚି ସରପୁଳି ଦଧି ଛେନା ଝଡ଼ା ।
ପାଚକ ମାଂସ ମାଛ ଯେ ଘୃତ ରସ ଭଜା
ପୁତ୍ର ଘେନି ପରଷନ୍ତି ପାଞ୍ଚାଳର ରାଜା ।
ଆମ୍ବିଳ ଯେ ନିରାମ୍ବିଳ ଶାକ ରସ କାଙ୍କି
ବିଶାଳ ଯୋଜନ ଲୋକ ତୃପ୍ତ ହୋନ୍ତି ଭୁଞ୍ଜି ।
ପିଷ୍ଟକର ମହିମା ତ କହିତ କେ ପାରି
ଘୃତ ମଧୁରସାମୃତ ପଣା ପାନ କରି ।
ବହୁତର ଦୁଗ୍ଧରସ ପରଷନ୍ତ ଆଣି
ଭୁଞ୍ଜନ୍ତି ସୈନ୍ୟ ସମସ୍ତ ଦ୍ୟନ୍ତି ନୃପମଣି ।
ଆଚମନ କଲେ ଘେନି କନକର ଝରି
ସୁବାସିତ ନୀରେ ଦେଲେ ମୁଖ ଧୌତ କରି ।
ସୁବର୍ଣ୍ଣ ଖଡ଼ିକା ଘେନି ଦାନ୍ତମାନ ଖୁଣ୍ଟି
କର୍ପୂର ତାମ୍ବୁଳ ଭୁଞ୍ଜି ଆସନରୁ ଉଠି ।
ଧୃତରାଷ୍ଟ୍ର ବୋଇଲେ ତୋ ମହିମା ହିଁ ସାଧୁ
ଧନ୍ୟ ମୁହିଁ ତୋର ଝିଅ ମୋର କୁଳବଧୂ ।
ବଡ଼ ହିଁ ତୃପତ ହେଲେ ଶୁଣି ପଞ୍ଚାଳେଶ
ଏହିପରି ଦୟା ଥାଉ ମୋଠାରେ ନରେଶ ।
ଦ୍ରୁପଦର ମହିମା ଯେ କହେ ଦୁର୍ଯ୍ୟୋଧନ
ଭୋ ତାତ ଆମ୍ଭର ଏହି ଅବା କେତେ ସୈନ୍ୟ ।
ଲକ୍ଷେ ରାଜା ସୈନ୍ୟ ଷୋଳଦିନ ପରିଯନ୍ତେ
ସଭିଙ୍କୁ ଯୋଗାଡ଼ ଦେଉଥିଲେ ଏହି ମତେ ।
ସାଧୁ ସାଧୁ ଦ୍ରୁପଦ ତୋ ମହିମା ତୋ ଧନ୍ୟ
ନାହିଁ ଜଣେ କରିବାକୁ ଏତେ ସନମାନ ।
ଅନେକ ବରଷ ହେଲା ରାଜା ଦୁର୍ଯ୍ୟୋଧନ
ପାଞ୍ଚାଳ ଦେଶେ ରହିଲେ ସେହି ଅଷ୍ଟଦିନ ।
ଧୃତରାଷ୍ଟ୍ର ବୋଇଲେ ହୋ ଦ୍ରୁପଦ ରାଜନ
ଯୁଧିଷ୍ଠିର ଆଦି ଏହି ପାଞ୍ଚ ଯେ ନନ୍ଦନ ।
ଆବର ଯେ ଦୁର୍ଯ୍ୟୋଧନ ଆଦି ଶତଭାଇ
ତାହାଙ୍କୁ ଘେନି ହସ୍ତିନାପୁରେ ଯିବି ମୁହିଁ ।

ଅନ୍ତଃପୁରେ ଥାଇ କୁନ୍ତିଭୋଜଙ୍କ ଦୁଲଣୀ
ଉତ୍ତର ଦେଲେ ଏ କଥା ନୃପତିର ଶୁଣି ।
ପୁଅଙ୍କୁ ମୋହର ଯେବେ ନେବ ହସ୍ତିନାକୁ
କାଳେ ସମ୍ଭାଳି ନ ପାର ମୋହର ପୁତ୍ରଙ୍କୁ ।
ପୁରୋଚନ ପଣ୍ଡା ଘେନି କଲ ଯେ କପଟ
ଘର ସଜଳସ ଗୁଆ ଘୃତ ଛଣପଟ ।
ରାତ୍ରକାଳେ ପୁରୋଚନ ଅଗ୍ନି ଲଗାଇଲା
ପର ହିଂସା କରି ଘରେ ଆପେ ନାଶଗଲା ।
ଧର୍ମେ ପାର ହୋଇ ଆମ୍ଭେ ଗଲୁ ନିଶାରାତି
ପୁଅଙ୍କୁ ଘେନି ସମୂଳେ ନାଶ ଯାଇଥାନ୍ତି ।
ଧୃତରାଷ୍ଟ୍ର ବୋଇଲେ ଗୋ ନ ଘେନ ସେ ମାନ
ଧର୍ମ ବର୍ଦ୍ଧିତ ହୁଅଇ ଏ ଚାରି ଯୁଗେଣ ।
ଧର୍ମେ ଥିଲେ ପ୍ରାଣୀ ପାର ହୋଇଯାନ୍ତି ଭଲେ
ଅଧର୍ମ ଥିଲେ ପ୍ରାଣୀକୁ ପାର ନାହିଁ କାଳେ ।
ତୁ ମହାସାଧବୀ ଏହା କର ଗୋ ବିଚାର
ମୋର ପୁଅଙ୍କର ଦୋଷ ମନରେ ନ ଧର ।
ଯୁଧିଷ୍ଠି ବୋଇଲେ ଧୃତରାଷ୍ଟ୍ର ମୋର ପିତା
ତାହାଙ୍କ ବଚନ ମାଗୋ ନ କର ଅନ୍ୟଥା ।
ମାନଗୋବିନ୍ଦ ରାଜା ଗୋ କିଛି ନ ଜାଣଇ
ଯେ ଯାହା କହଇ ସେହି କଥାରେ ପଶଇ ।
ମାତାଙ୍କୁ ତିଆରି ସେହି ଧର୍ମଦେବ ଶିଷ୍ୟ
ଶୁଭଯୋଗ ରଥରେ ଗୋ ମାତା ଯାଇ ବସ ।
ଆକାଶୁ ପୁଷ୍ପ ବିମାନ ଆଣିଲା ମାତଳି
ଦେବରଥେ ଆରୋହିଲେ କୁନ୍ତୀ ଯେ ପାଞ୍ଚାଳୀ ।
ମାତା ଆଣି ଅର୍ଘ୍ୟ ଦେଲେ ପାଞ୍ଚାଳୀର ଶିରେ
ଅନୁବ୍ରତେ ଖଟିଥିବୁ ଶାଶୁଙ୍କ ପୟରେ ।
ପ୍ରତ୍ୟକ୍ଷେ ଯେ ନିରଞ୍ଜନ ଦେବ ଅବତାର
ତାଙ୍କ ପାଦେ ଖଟିଥିବୁ ଦାସୀ ପରକାର ।
ଅନ୍ଧ ନୃପତିଙ୍କ ସେବା କରିଥିବୁ ମାତ
ଗାନ୍ଧାରୀଙ୍କ ପାଦ ସେବୁଥିବୁ ଅବିରତ ।
ଦୁହିତା ଗୋଟି କୋଟିଏ ପୁରୁଷ ଉଦ୍ଧାରେ
ଯେମନ୍ତ ମୁଁ ନିନ୍ଦା ମାତା ନ ପାଏ ସଂସାରେ ।
ଆଶୀର୍ବାଦ କରେ ତୋତେ ହୁଅ ସୁଲକ୍ଷଣୀ
ବଂଶର ଗୌରବ ରକ୍ଷା କରିବୁ ଦୁଲଣୀ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଗଲେ ବେନି ଭାଇ
କେଶିନୀ ମୃଦୁସୁଲା ଯେ ସଙ୍ଗତରେ ଯାଇ ।
ଅନେକ ସାନନ୍ଦ ମନେ ପାଞ୍ଚାଳ ରାଜନ
ଶତେକ ରଥରେ ଦେଲେ ପାଣି ଦ୍ରବ୍ୟମାନ ।
ଅର୍ବୁଦେକ ରଥ ଦେଲେ ବିଶାଶତ ହସ୍ତୀ
ପାଞ୍ଚ ଅକ୍ଷୌହିଣୀ ଦେଲେ ଆବର ପଦାତି ।
ପାଟଛତ୍ର ଆଲଟ ଯେ ଲକ୍ଷେ ଦେଲେ ବାଛି
ଚାରିଲକ୍ଷ ବାଦ୍ୟକାର ଧନ କେବା ଲେଖି ।
ଲକ୍ଷେ ଗାଈ ଦେଲେ ଲକ୍ଷେ ବସ୍ତ୍ର ଲକ୍ଷେ ଧେନୁ
ସଙ୍ଗେ ସମର୍ପିଲେ ଆଣି ଶିଖଣ୍ଡୀର ସୁନୁ ।
ଲକ୍ଷେ ପରିଚାର ଘେନି ଗଲେକ କେଶିନୀ
ସନ୍ନିଧିରେ ଖଟଇ ସେ ଘେନି ଯାଜ୍ଞସେନୀ ।
କୁମ୍ଭ ମୀନ ଏହି ବେନି ମାସର ଉତ୍ତାରେ
ଶୁଭଲଗ୍ନ ଘେନି ବିଚାରନ୍ତି ମୁନିବରେ ।
ପୂର୍ଣ୍ଣମୀର ଅନ୍ତେ ଯେଉଁ କୃଷ୍ଣପକ୍ଷ ଗୋଟି
ସୌରୀବାର ଅଶ୍ୱିନୀ ଯେ ବେଳା ବେନି ଘଟି ।
ବେନି ଘଡ଼ି ପରେ ବୃହସ୍ପତିଙ୍କର ବେଳା
ବିଷ୍କୁମ୍ଭ ଯୋଗ ତୈତିଳ କରଣ ହୋଇଲା ।
ମୀନଲଗ୍ନ ସହିତରେ ପାପଗ୍ରହ ନାହିଁ
ଏସନକ ଅନୁକୂଳେ ଗଲେ ରଥ ବାହି ।
ଅମୃତ ଲଗ୍ନେ ଚଳିଲେ ଥାଟ ସୈନ୍ୟ ଘେନି
ଦଣ୍ଡ ଘେନିଣ ପାଛୋଟି ଆସେ ନୃପମଣି ।
ଗନ୍ଧର୍ବ ନଦୀକୁ ଶଏ ସତୁରି ଯୋଜନ
ସେହୁ ପରିଯନ୍ତେ ଗଲେ ଦ୍ରୁପଦ ରାଜନ ।
ତହୁଁ ଯେ ଗନ୍ଧମାର୍ଦ୍ଦନ ପର୍ବତ ନିକଟେ
ରଥୁ ଓହ୍ଲାଇ ଓଳଗି ହେଲେ ଧୃତରାଷ୍ଟ୍ରେ ।
କୋଳ କଲେ ଧୃତରାଷ୍ଟ୍ର ଦ୍ରୁପଦ ରାଜାଙ୍କୁ
ହେ ସମୁଦି ନ କରିବ ଦୋଷୀ ମୋ ପୁଅଙ୍କୁ ।
ବାଳୁତ ଅଜ୍ଞାନ କିସ ଏହାଙ୍କର ବୁଦ୍ଧି
ଦ୍ରୋଣଙ୍କ ବଚନେ ହେଲେ ତୋର ଅପରାଧି ।
ଅର୍ଜ୍ଜୁନ ତୁମ୍ଭର ଯେଣୁ ଜାମାତା ହୋଇଲା
ତେଣୁ କରି ତ ସମସ୍ତ ଦୋଷ ପାରଗଲା ।
ଦୁହିତାକୁ ତୁମ୍ଭେ ଯେ ତିଆର ହୋ ରାୟ
ଦୋଷ ନ ଧରିବ ମୋର ବାଳୁତ ତନୟ ।
ଦୋଷ ଉପେକ୍ଷିବ ଦଶବେଳ ପରିଯନ୍ତେ
ତହୁଁ ତେଣିକି ଭୁଞ୍ଜି ବେ ଯେ ଯାହାର କୃତ୍ୟେ ।
ଏତେ ବୋଲି ଧୃତରାଷ୍ଟ୍ର ହୋଇଲେ ମଉନ
ଆନନ୍ଦରେ ଅଶ୍ରୁପୂର୍ଣ୍ଣ ହୋଇଲା ନୟନ ।
ଦ୍ରୁପଦ ବୋଲେ ଅଟନ୍ତି ସେହୁ ମାହେଶ୍ୱରୀ
ସର୍ବଜ୍ଞ ପରମାସତୀ ମୁଁ କିସ ତିଆରି ।
ଦ୍ରୁପଦ ବୋଇଲେ ତୁ ଯେ ସର୍ବଜ୍ଞ ପୁରୁଷ
ଯେ ଯାହା ଅରଜିଥିବ ଭୁଞ୍ଜିବ ଅବଶ୍ୟ ।
ଶିଖଣ୍ଡୀ ଯେ ଧୃଷ୍ଟଦ୍ୟୁମ୍ନ ଯାଆନ୍ତୁ ତୋ ଦେଶେ
ରହନ୍ତୁ ନା ତୁମ୍ଭ ପୁତ୍ର ସଙ୍ଗେ ଦିନ ଦଶେ ।
ଚଳଇ ଦ୍ରୁପଦ ତହୁଁ ଶୁଭ ବାଞ୍ଛା କରି
ଜଣେ ଜଣେ ତିଆରଇ ହସ୍ତ ଧରି ଧରି ।
ଚଳାଇ ଯେ କୁରୁନାଥ ଦକ୍ଷିଣ ମୂରତି
ଗନ୍ଧର୍ବୀ ନଦୀ ତୀରରୁ ବାହୁଡ଼େ ନୃପତି ।
ମେଷ ଶୁକ୍ଳ ପଞ୍ଚମୀ ଯେ ତିଥି ଗୁରୁବାର
ରୋହିଣୀ ନକ୍ଷତ୍ର ବୃଷଚନ୍ଦ୍ର ଯେ ଆବର ।

ଗର ନାମେ କରିଣ ଯେ ପ୍ରୀତିନାମେ ଯୋଗ
ରୋହିଣୀ ନକ୍ଷତ୍ରେ ରବି ତିନିଦଣ୍ଡ ଭୋଗ ।
ପ୍ରଥମ ତିନିଦଣ୍ଡରେ ବୃହସ୍ପତି ବେଳା
ବୃଷଲଗ୍ନେ ନାହିଁ ପାପଗ୍ରହଙ୍କର ମେଳା ।
ମାହେନ୍ଦ୍ର ଯୋଗ ଘେନିଣ ଶୁଭ ଅନୁକୂଳେ
ହସ୍ତିନା ରାଜ୍ୟେ ପ୍ରବେଶ ହେଲେ ଶୁଭବେଳେ ।
ଯୁଧିଷ୍ଠି ବୋଇଲେ ତାତ ବାରୁଣାବନ୍ତରେ
ନିର୍ମଳ ଭୁବନ ଆମ୍ଭେ ରହୁ ସେହି ପୁରେ ।
ଧୃତରାଷ୍ଟ୍ର ବୋଇଲେକ କରିବା ଏମନ୍ତ
ଏକ ଆତ୍ମା ହୋଇଥିବ ଶତେ ପଞ୍ଚଭ୍ରାତ ।
ଅନେକ ଯେ ହିଂସା ଅପବାଦ ଦେଇଥିଲୁ
ଦହନ ବାରତା ଶୁଣି ବିକଳ ହୋଇଲୁ ।
ହେ ପଣ୍ଡିତମାନେ ପରିମାଣି ଯେ ବୁଝିବା
ସୋଦରରେ ହିଂସା ଅପବାଦ ନ କରିବା ।
ସୋଦରେ ସୋଦର ଭାବ ଯେବେ ରଖିଥାଇ
ଭୂତ ଭବିଷ୍ୟତ ପାଇଁ ବିବାଦ ନ ଥାଇ ।
ପୁତ୍ରଙ୍କୁ ସମ୍ବୋଧି ଧୃତରାଷ୍ଟ୍ର ନୃପବର
ପ୍ରବେଶ ହୋଇଲେ ଯାଇ ହସ୍ତିନା ନଗର ।
ପୁରଜନମାନେ କଲେ ହାହାକାର ଧ୍ୱନି
କାହିଁ ଗୋପ୍ୟ ହୋଇଥିଲେ ଦିବ୍ୟରୂପ ଘେନି ।
ଅନେକ ମଙ୍ଗଳ ଜୟ ଜୟ ଧ୍ୱନି ତୋଳି
ଗଣିକା କଲେ ମଙ୍ଗଳ ଧ୍ୱନି ହୁଳହୁଳି ।
ନିଜ ନବରେ ପ୍ରବେଶ ହୋଇଲେ ତତ୍ପତି
ଅର୍ଘ୍ୟ ଘେନି ବାହାରିଲେ ଘରୁ ଭାନୁମତୀ ।
ଦ୍ରୌପଦୀର ଶିରେ ଆଣି ଅର୍ଘ୍ୟରେ ବନ୍ଦାଇ
ଶତ ସହସ୍ର ପ୍ରଣାମ କରି ତଳେ ଥୋଇ ।
ଅନେକ ମଙ୍ଗଳ ତହିଁ କରି ଭାନୁମତୀ
ଅନେକ ରତ୍ନ ଜଡ଼ାଉ ପାଇଲେକ ସତୀ ।
ହସ୍ତିନାପୁର ପଶ୍ଚିମ ଦିଗ କୋଣ ଆଡ଼େ
ରହିଲେ ପାଣ୍ଡବେ ପୁଣ୍ୟନଦୀ ପୂର୍ବକଡ଼େ ।
ଧର୍ମ ଯୁଧିଷ୍ଠି ଦେବଙ୍କୁ ଛାମୁରେ ଜଣାଇ
ଆସ୍ଥାନରେ ବିଜେ କରିଛନ୍ତି କୁରୁସାଇଁ ।
ସଭାରେ ସେ ବାସୁଦେବ ବଚନ ପ୍ରକାଶି
ପାଣ୍ଡବଙ୍କୁ-ଦୁର୍ଯ୍ୟୋଧନ ସମ୍ଭାଳି ରଖସି ।
ଏହାହୁଁ ସୋଦର ନାହିଁ ତୋର କେହି ଆନ
ସୋଦର ସମ୍ଭାଳି ତୋତେ ପ୍ରାପ୍ତ ହେଉ ଧନ ।
ହେ ଦୁର୍ଯ୍ୟୋଧନ ପାଣ୍ଡବେ ନ ଥିବାରୁ ସଭା
ବସୁଧା କଦାପି ପାଉ ନ ଥିଲା ଯେ ଶୋଭା ।
ତୁ ଯେ ପାଣ୍ଡବଙ୍କୁ ଅନନ୍ୟ ଭାଳ ମନରେ
ତେବେ ସିନା ଧାର୍ଯ୍ୟ ହେବୁ ଏ କୁରୁକୁଳରେ ।
ପାଣ୍ଡବେ ନାଶ ନୋହିବେ କେଭେ ଚାରିଯୁଗେ
ଏହା ପରିମାଣି ତୁହି ଥାଅ ଅନୁରାଗେ ।
ଦୁର୍ଯ୍ୟୋଧନ ବୋଇଲେକ ଶୁଣ ଦେବହରି
ତୋର ଆଜ୍ଞା ଭ୍ରଷ୍ଟ କଲେ ନିଶ୍ଚେ ସେହି ମରି ।
ତୋ ଆଜ୍ଞାରେ ଯେ ଚଳଇ ସୃଷ୍ଟି ଚରାଚର
ଯେଣୁ ତୁହି ଅଟୁ ଦେବ ସର୍ବ କର୍ଣ୍ଣଧାର ।
ସମସ୍ତଙ୍କୁ ତିଆରିଣ ଯେ ଜଗତ ଭୂତ
ଦ୍ୱାରକା ଭୁବନେ ଯାଇ ବିଜେ ଜଗନ୍ନାଥ ।
ପଚାରନ୍ତେ ବାସୁଦେବ ନନ୍ଦେ ଏ ବ୍ୟବସ୍ଥା
କହିଲେ ଶ୍ରୀକୃଷ୍ଣ ରାମ ପାଣ୍ଡବ ବାରତା ।
ପାଣ୍ଡବ ଦୁର୍ଯ୍ୟୋଧନର ଅଭେଦ୍ୟ ପୀରତି
ଭୋଜନ ଶୟନେ ନାହିଁ ନାହିଁ ଦିବାରାତି ।
ଛାଡ଼ିଲେ ସେ ହିଂସା ଅପବାଦ ମାନ ମନୁ
ବଢ଼ିଲା ଅଭେଦ୍ୟ ପ୍ରୀତି କ୍ରମେ ଦିନୁ ଦିନୁ ।
ଜୟ ଜୟ ଜଗନ୍ନାଥ କେଶବ ମୁରାରି
ବନଚାରୀ ସଙ୍ଗତରେ ତୁ ବିନୋଦକାରୀ ।
କିରାତର ଦୁହିତା ଯେ ଅଟଇ ମାଳତୀ
ତାହାକୁ ବିଭା ହୋଇଲୁ ଦେଖି ରୂପବତୀ ।
ଶିଖଣ୍ଡ ଶିଖଣ୍ଡ ଶିଖାରେ ଯେ ଶୋଭାବନ
ଗୁଞ୍ଜାମାଳ କଣ୍ଠରେ ଯେ ଦିଶଇ ଯତନ ।
ହୃଦୟରେ ନବରତ୍ନ ମାଳ ବିରାଜଇ
ସ୍ଫଟିକ କୁଣ୍ଡଳ ବେନି କର୍ଣ୍ଣେ ବିରାଜଇ ।
କଳା ଅପଘନ ପୀତପଟ ବିରାଜଇ
ପୁଣି ହୃଦୟରେ ବନମାଳ ଯେ ଶୋଭଇ ।
ଏପରି ଅବତାର ଯେ ଦେବ ଦଇତାରୀ
ତାଙ୍କ ପାଦେ ସଦା ମନ ରହୁ ଯେ ମୋହରି ।
ତୁଳସୀ ବଲ୍ଲଭ ଦେବ ପ୍ରଭୁ ନାରାୟଣ
ଚରଣେ ଶାରଳାଦାସ ସହସ୍ରେ ପ୍ରଣାମ ।
ସିଂହବାହିନୀ ଶାରଳା ଦେବୀ ଭଗବତୀ
ଝଙ୍କଡ଼ପୁରରେ ମାଗୋ ସଦା ତୋର ସ୍ଥିତି ।
ଦୁଷ୍ଟ ବିନାଶନେ ମାତ ତୋର ଅବତାର
ମହିଷାସୁରକୁ ମାରି ରଖିଲୁ ଅମର ।
ତୋ ରୂପ ବର୍ଣ୍ଣିବା ପାଇଁ କେ ଅଛି ଜଗତେ
କର ମାତ ଅନୁଗ୍ରହ ମୋଠାରେ କିଞ୍ଚିତେ ।
ସେ ଶାରଳା ଦେବୀଙ୍କର ଚରଣାରବିନ୍ଦେ
ଶୂଦ୍ରମୁନି ଯେ ଶାରଳା ଦାସ ନିତ୍ୟେ ବନ୍ଦେ ।
ଶ୍ରୀ ମାଳବତୀ ବଲ୍ଲଭ ପ୍ରଭୁ ନାରାୟଣ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ତୋ ଶରଣ ।
ଆଦ୍ୟପର୍ବ କଥା ଏହିଠାରେ ହେଲା ଶେଷ
ଆହେ ସୁଜ୍ଞଜନେ ମୋର ନ ଧରିବ ଦୋଷ ।

**ମହାଭାରତ ଆଦ୍ୟପର୍ବ ସମ୍ପୂର୍ଣ୍ଣ**

ଟେକ୍‌ନୋସଫ୍‌ଟ କମ୍ପ୍ୟୁଟର ସର୍ଭିସ୍, ମହମ୍ମଦିଆ ବଜାର, ଫୋନ୍ - ୬୦୮୩୦୨

# ମହାଭାରତ

## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି। କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ। ଏଥିରେ ସତନ୍ତ୍ର କମିଶନ ବ୍ୟବସ୍ଥା ଅଛି।

## ଅଷ୍ଟାଦଶ ପୁରାଣ

- ବ୍ରହ୍ମପୁରାଣ ସେଟ୍
- ପଦ୍ମପୁରାଣ ସେଟ୍
- ମହାବିଷ୍ଣୁ ପୁରାଣ
- ଶିବ ପୁରାଣ ସେଟ୍
- ନାରଦ ପୁରାଣ
- ମାର୍କଣ୍ଡେୟ ପୁରାଣ
- ଅଗ୍ନି ପୁରାଣ
- ଭବିଷ୍ୟ ପୁରାଣ
- ବ୍ରହ୍ମବୈବର୍ତ୍ତ ପୁରାଣ ସେଟ୍
- ଲିଙ୍ଗ ପୁରାଣ
- ବରାହ ପୁରାଣ
- ସ୍କନ୍ଦ ପୁରାଣ
- ବାମନ ପୁରାଣ
- କୂର୍ମ ପୁରାଣ
- ମତ୍ସ୍ୟ ପୁରାଣ
- ଗରୁଡ଼ ପୁରାଣ
- ବ୍ରହ୍ମାଣ୍ଡ ପୁରାଣ
- ଭାଗବତ ସେଟ୍



ପ୍ରକାଶକ-
ଧର୍ମଗ୍ରନ୍ଥ ଷ୍ଟୋର (TM)
ଅଲିଶା ବଜାର, କଟକ-୨
ଫୋନ୍ : (୦୬୭୧)୨୫୦୮୨୯୬
website : www.dharmagranthastore.com